# କେତେ ବ୍ୟଥା କେତେ ଗାଥା

ଶ୍ରୀ ମୁରଲୀଧର ପ୍ରଧାନ
ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ



କେତେ ବ୍ୟଥା କେତେ ଗାଥା
KETE BYATHÀ KETE GATHA

ଲେଖକ: ମୁରଲୀଧର ପ୍ରଧାନ
Author: Muralidhar Pradhan



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers*, Binodbehari
Cuttack-753002, Orissa (India)

ପ୍ରଥମ ସଂସ୍କରଣ : ୨୦୦୪
First Edition : 2004 (505 Copies)

ପ୍ରଚ୍ଛଦ: ବିଜୟ ପ୍ରଧାନ
Cover Design: Bijay Pradhan

ଡି.ଟି.ପି.: କମ୍ପ୍ୟୁପ୍ରିଣ୍ଟ, କଟକ
D.T.P. : Compu Print, Cuttack

ମୁଦ୍ରଣ: ଇନ୍ଦ୍ରାଣୀ ଅଫସେଟ୍, କଟକ
Printer: Indrani Offset, Cuttack

Price : **Rs.225**

ISBN 81-7401-515-9

# ଆତ୍ମକଥନ

ଆଧୁନିକ ଅର୍ଥସର୍ବସ୍ୱ ଆତ୍ମକୈନ୍ଦ୍ରିକ ସମାଜ ନୈତିକ ମୂଲ୍ୟବୋଧ ପ୍ରତି ହତାଦର ଭାବ ଦେଖାଇପାରେ । କିନ୍ତୁ ଏହି ସଂସ୍କୃତିସମ୍ପନ୍ନ ଦେଶର ସମାଜ ଜୀବନରୁ ସାଧୁତା, ନୀତିନିଷ୍ଠତା, ନିଃସ୍ୱାର୍ଥପରତା ସଂପୂର୍ଣ୍ଣ ଦୂରହୋଇଯାଇ ନାହିଁ । କୌଣସି ନା କୌଣସି କ୍ଷେତ୍ରରେ ଏହା ବିରାଜମାନ କରିଛି । ଜଣେ ବିଶିଷ୍ଟ କବି, ଚିନ୍ତକ ଓ ସାହିତ୍ୟିକ ଉଦାତ୍ତକଣ୍ଠରେ ଗାନ କରିଛନ୍ତି, 'ଆଦର୍ଶ ଶବ୍ଦଟି କହିବାରେ ବା ଶୁଣିବାରେ ଯେତିକି ମିଠା ମିଠା, କାର୍ଯ୍ୟ ଓ ଆଚରଣରେ ସେତିକି କଷା କଷା' । ସେଥିପାଇଁ ଆଧୁନିକ ଯୁଗ-ମାନସ ବିଶେଷତଃ ଯୁବ- ମାନସରେ ଏହା ଏକ୍‌ବାରେ ଅପାଙ୍‌କ୍ତେୟ, ତଥାପି ସମାଜ ଜୀବନରେ ଏହାର ଫଲ୍ଗୁଧାରା ସଂପୂର୍ଣ୍ଣ ଶୁଖିଯାଇନାହିଁ । ଅତଏବ ସାଧୁତା, କର୍ତ୍ତବ୍ୟପରାୟଣତା, ସହୃଦୟତା, ଦେଶପ୍ରେମ, ସେବାମନୋଭାବ ପ୍ରଭୃତି ସ୍ୱର୍ଗୀୟ ଗୁଣଗୁଡ଼ିକ ମହାନ୍ ଭାରତୀୟ ସଂସ୍କୃତିର ମୂଳମନ୍ତ୍ର । ପାଶ୍ଚାତ୍ୟ ଶିକ୍ଷା ଓ ସଂସ୍କୃତି ଏହା ଉପରେ ଯେତେ ପ୍ରଭାବ ପକେଇଲେ ହେଁ ଭାରତୀୟ ସଂସ୍କୃତି ସମଗ୍ର ପୃଥିବୀ ଦରବାରରେ ଉଚ୍ଚରେ ବିଦ୍ୟମାନ । ଦେଶର ଉଚ୍ଚପରମ୍ପରାକୁ ଲକ୍ଷ୍ୟ କରି ଏହି ମହାନ୍ ସଂସ୍କୃତିର ଦାୟାଦମାନଙ୍କ ସମ୍ମୁଖରେ ଏଇ ଜୀବନାଲେଖ୍ୟଟି ଉପସ୍ଥାପନ କରୁଛି । ସମଗ୍ର ମାନବଜାତିର ବିଶାଳ ଐଶ୍ୱର୍ଯ୍ୟପୂର୍ଣ୍ଣ ଇତିହାସ ପୃଷ୍ଠାରେ ମୋ ପରି ଜଣେ ଅକିଞ୍ଚନ ଶିକ୍ଷକର ଜୀବନ କାହାଣୀକୁ ନୀରସ ମୂଲ୍ୟହୀନ ମନେ କରାଯାଇପାରେ । କିନ୍ତୁ ମୋର ଆଶା ଓ ବିଶ୍ୱାସ, ଏହି ପୁସ୍ତକଟି ଉଚ୍ଚାକାଂକ୍ଷୀ ଛାତ୍ରସମାଜ ଓ ନୀତିନିଷ୍ଠ କର୍ତ୍ତବ୍ୟପରାୟଣ ଶିକ୍ଷକ ସମାଜକୁ ନିଶ୍ଚୟ ଦିଗ୍‌ଦର୍ଶନ ଦେବ ଏବଂ ସମାଜ ଜୀବନରେ ଅଗ୍ରସର ହେବାପାଇଁ ପ୍ରେରଣା ଯୋଗାଇବ ।

ପ୍ରସିଦ୍ଧ ଔପନ୍ୟାସିକ ଷ୍ଟେନ୍‌ବେକ୍ କହନ୍ତି– ''ପ୍ରତ୍ୟେକ ଆତ୍ମଜୀବନଚରିତର ଅର୍ଦ୍ଧେକ କଳ୍ପନାପ୍ରସୂତ ।'' କିନ୍ତୁ ଏହି ଉକ୍ତି ସବୁସ୍ଥଳେ ସତ୍ୟ ନୁହେଁ । ମୁଁ ଏଥିରେ ବହୁକଥା ଛାଡ଼ିଯାଇଥିଲେ ମଧ୍ୟ ସଂପୂର୍ଣ୍ଣ ସତ୍ୟକଥା ବର୍ଣ୍ଣନା କରିଛି ।

ଅନ୍ୟ ଜଣେ ଇଂରେଜ ବିଦ୍ୱାନଙ୍କ ମତରେ :

"Behind every piece of autobiography there is a special feature about life, a special view of life and a special set of values." ତେଣୁ କେହି କେହି ଅନୁସନ୍ଧିତ୍ସୁ ଉତ୍ସାହୀ ବ୍ୟକ୍ତି ଉକ୍ତ ଜୀବନୀଟିକୁ ପାଠ କରି କିଛି ସାମାଜିକ, ଐତିହାସିକ ଓ ରାଜନୀତିକ ତଥ୍ୟର ସନ୍ଧାନ ପାଇବା ସଙ୍ଗେ ନୀତିପୂର୍ଣ୍ଣ ଜୀବନ ଗଢ଼ିବାର ସୁଯୋଗ ଲାଭ କଲେ ମୋର ଶ୍ରମ ସାର୍ଥକ ହେବ ବୋଲି ମନେକରିବି ।

ଉକ୍ତ ପୁସ୍ତକର ସଂପାଦନାରେ ବହୁଶ୍ରମ ସ୍ୱୀକାର କରିଥିବାରୁ ମୋର ସୁଯୋଗ୍ୟଛାତ୍ର ତଥା ଖୋର୍ଦ୍ଧା ସାହିତ୍ୟ ସଂସଦର ପୂର୍ବତନ ସଭାପତି ଶ୍ରୀ ବୈକୁଣ୍ଠନାଥ ରାଜଗୁରୁଙ୍କୁ ଏବଂ ପୁସ୍ତକଟିର ନାମକରଣ କରିଥିବାରୁ ସାହିତ୍ୟିକ ଶ୍ରୀ ରମେଶ ଚନ୍ଦ୍ର ଭଞ୍ଜଙ୍କୁ ସାଧୁବାଦ ଜଣାଉଛି ।

୪-୧୦-୨୦୦୩ ଲେଖକ

*ବିଜୟାଦଶମୀ*

# କି ଅଭିମତ ଦେବି ?

ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନଙ୍କ ରଚିତ ଆତ୍ମଜୀବନୀମୂଳକ ରଚନା– ''କେତେ ବ୍ୟଥା କେତେ ଗାଥା''ର ପାଣ୍ଡୁଲିପି ପଢ଼ିବାର ସୁଯୋଗ ଲାଭ କଲି । ଗତ ସାତବର୍ଷ ଭିତରେ ତାଙ୍କର ସଂସ୍ପର୍ଶରେ ଆସି ତାଙ୍କୁ ଯାହା ଜାଣିଥିଲି, ବୁଝିଥିଲି, ଏହି ଲେଖା ପଢ଼ିବାପରେ ସେ ବୁଝିବା ଆହୁରି ସ୍ପଷ୍ଟ, ଆହୁରି ଗଭୀର ଓ ଉଜ୍ଜ୍ୱଳ ହୋଇଉଠିଲା । ମୁରଲୀବାବୁ ଜଣେ ନୀତିନିଷ୍ଠ ଉତ୍ସର୍ଗୀକୃତ ଆଦର୍ଶ ଶିକ୍ଷକ, ପ୍ରଧାନ ଶିକ୍ଷକଭାବେ ଅବସର ଗ୍ରହଣ କରିଛନ୍ତି ଓ ବର୍ତ୍ତମାନ ଆମ ଖୋର୍ଦ୍ଧା ଅଞ୍ଚଳରେ ଶିକ୍ଷାବିତ୍, ବୁଦ୍ଧିଜୀବୀଭାବେ ନାନା ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନର ପୃଷ୍ଠପୋଷକଭାବେ ସୁପରିଚିତ, ପୁନଶ୍ଚ ବହୁ ଜନସେବା କାର୍ଯ୍ୟରେ ଜଡ଼ିତ । ଏହି ରଚନା ବ୍ୟତୀତ ତାଙ୍କର ଅନେକଗୁଡ଼ିଏ ଉପାଦେୟ ପ୍ରବନ୍ଧ କଳିଙ୍ଗ, ସମାଜ, ସମ୍ବାଦ, ସମୟ ଓ ପ୍ରଜାତନ୍ତ୍ରର ସାହିତ୍ୟ ଆଲୋଚନା ସ୍ତମ୍ଭରେ ପ୍ରକାଶିତ । ଜୀବନୀ ପ୍ରବନ୍ଧ ସୃଷ୍ଟି କରିବାରେ ସେ ଦକ୍ଷତା ଅର୍ଜନ କରିଛନ୍ତି । କେତେଖଣ୍ଡ କ୍ଷୁଦ୍ରଗଳ୍ପ ପୁସ୍ତକ ଓ ଜୀବନୀ ପୁସ୍ତକ ପ୍ରକାଶ କରିଅଛନ୍ତି । ପ୍ରତ୍ୟହ କିଛି ନା କିଛି ଲେଖାପଢ଼ାରେ ସେ ସମୟ ବିତାନ୍ତି । ଅଶୀତି ବର୍ଷ ବୟସରେ ମଧ୍ୟ ସେ ଚଳଚଞ୍ଚଳ ଅଛନ୍ତି ।

ଜୀବନୀ ଦୁଇ ପ୍ରକାର ଲେଖାଯାଏ– ପ୍ରଥମଟି ହେଲା ଜଣଙ୍କର ଜୀବନୀ ଅନ୍ୟ ଜଣେ ଲେଖିବା । ଦ୍ୱିତୀୟଟି ହେଲା ନିଜ ଜୀବନଚରିତକୁ ନିଜେ ଲେଖିବା; ତାହା ହୁଏ ଆତ୍ମଜୀବନୀ । ଏହି ଆତ୍ମଜୀବନୀ ଲେଖିବା ସମୟରେ ଲେଖକଙ୍କୁ ଅଦୃଶ୍ୟ କାଠଗଡ଼ାରେ ସତ୍ୟପାଠ କରିବାକୁ ହୋଇଥାଏ । ସେ ଜୀବନ ଓ ଜଗତକୁ କେମିତି ଦେଖଉଛି, କେମିତି ବୁଝୁଛି, କେମିତି ଆପଣାଇଛି ଓ ଅନୁଭବ କରିଛି ଏବଂ ସର୍ବୋପରି ସେ କିପରି ଆପଣା ବାଗରେ କହେ, ଆତ୍ମସମୀକ୍ଷା କରେନାହିଁ, ନିଜର ମୂଲ୍ୟାଙ୍କନ କରେନାହିଁ, ତା ଜୀବନର ଭିତର-ବାହାର ସବୁ ଖୋଲିଦିଏ, ଯେଉଁ ଖୋଲାପଣରେ ଛାଏଁ ଛାଏଁ ତା'ର ବିଚାର ହୋଇଥାଏ ତାହା ହିଁ ସାର୍ଥକ ଆତ୍ମଜୀବନୀ ।

''କେତେ ବ୍ୟଥା କେତେ ଗାଥା''ରେ ଆମେ ଏହାହିଁ ଦେଖୁଁ । ଆହୁରି ଦେଖୁ ବିଗତ ୮୨ ବର୍ଷ ତଳ ଓଡ଼ିଶାର ରାଜନୈତିକ ଓ ସାମାଜିକ ଜୀବନର ଚିତ୍ର । ଏହାର ଅନ୍ତରାଳରେ ଯେଉଁ ଜୀବନ-ଚାରାଟି ଚାରିପାଖର ସବୁ ପ୍ରତିକୂଳତା, ବାଧାବିଘ୍ନ ସତ୍ତ୍ୱେ ଏକ ଦୁର୍ବାର ଆକାଙ୍କ୍ଷାରେ ଉର୍ଦ୍ଧ୍ୱମୁଖୀ ହୋଇ ବଢ଼ିଛି, ସେ ଆଜି ବହୁ ଶାଖାପ୍ରଶାଖା ମେଲିଥିବା ଏକ ବିଶାଳ ବନସ୍ପତି । ଦୁଃଖକୁ ଛାତିପତାଇ ସହି ହସିହସି ବାଟ ଚାଲିବାର ଅନ୍ତରଙ୍ଗବାଣୀ ଯେଉଁଠି ଧ୍ୱନିତ ହୁଏ, ସେହି ପୁରୁଣା କବିତାଟି :

'ହାରି ନାହିଁ ହାରି ନାହିଁ

ଯେ ପ୍ରଦୀପ ଜାଳିଥିଲି ସେ ତ ଲିଭିନାହିଁ ।' ଏଥିରେ ସନ୍ଦେହ ନାହିଁ, ଏହି ପୁସ୍ତକଟି ସମସ୍ତଙ୍କ ପାଖେ ଆଦୃତ ହେବ ।

କବୟିତ୍ରୀ ବନଜ ଦେବୀ
ରଥସାହି, ଭୁବନେଶ୍ୱର

# ପଦେଅଧେ

ଆତ୍ମଜୀବନୀ ରଚନା ଆପଣାକୁ ଭବିଷ୍ୟତର ପାଠକଙ୍କ ପାଖରେ ପରିଚିତ କରିବାର ସାଇତା କଥା । ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ ତାଙ୍କ ଜୀବନର ପ୍ରତ୍ୟକ୍ଷ ଅନୁଭୂତି ସଂପୃକ୍ତ ଘଟଣାବଳୀକୁ ସତ୍ୟାଶ୍ରିତ ଶୈଳୀରେ ପ୍ରତିପାଦନ କରିଛନ୍ତି, ତାଙ୍କର ଜୀବନଚରିତ— 'କେତେ ବ୍ୟଥା କେତେ ଗାଥାରେ' ।

ଲେଖକ ନିଜ ଜୀବନର ଘଟଣା ସମୂହକୁ ବର୍ଣ୍ଣନା କଲାବେଳେ ସଂଘର୍ଷରେ ଆସିଥିବା ସମାଜର ବା କର୍ମକ୍ଷେତ୍ରର ବହୁ ବ୍ୟକ୍ତିବିଶେଷଙ୍କ ବିଷୟରେ ନିଜର ମତାମତ ପ୍ରଦାନ କରିଛନ୍ତି । ଲେଖକ ଜୀବନ-ଜୀବିକା ଭାବେ ଏକ ମହତ୍ତର ଶିକ୍ଷକ ଜୀବନଯାପନ କରିଥିବାରୁ ଘଟଣାବଳୀ ପ୍ରତି ଅକପଟ ସ୍ୱୀକାରୋକ୍ତି ଲିପିବଦ୍ଧ କରିଛନ୍ତି ଏଥିରେ । ଆତ୍ମଜୀବନୀ ଲେଖକ ନିଜେ ସଂଘର୍ଷରେ ଆସିଥିବା ଅନ୍ୟମାନଙ୍କ ସଂପର୍କରେ ଲେଖିବାବେଳେ ନିଜସ୍ୱ ବିଚାରରୁ ଓ ଦୃଷ୍ଟିକୋଣରୁ ଅନ୍ୟମାନଙ୍କୁ ବିଚାର କରିଥାନ୍ତି । କାରଣ ଅନ୍ୟମାନେ ସବୁବେଳେ ଲେଖକଙ୍କର ଇଚ୍ଛାଧୀନ ନହୋଇପାରନ୍ତି । କିନ୍ତୁ ମୁରଲୀବାବୁ ଶିକ୍ଷକ-ସୁଲଭ ଉପଦେଶାତ୍ମକ ବିଚାରରେ ଅନ୍ୟମାନଙ୍କୁ ବିଚାର କରିବାରେ ସ୍ପଷ୍ଟବାଦୀ ହୋଇଛନ୍ତି ।

ବ୍ୟକ୍ତିଗତ ପ୍ରଚେଷ୍ଟା ଓ ଏକନିଷ୍ଠ ସାଧନା ବଳରେ ଜଣେ, ଜୀବନରେ ସୀମିତ କ୍ଷେତ୍ରରେ ହେଲେ ମଧ୍ୟ, କିପରି ପ୍ରତିଷ୍ଠା ଅର୍ଜନ କରିପାରନ୍ତି, ତାହା ଏହି ଲେଖାରୁ ବାରିହୋଇ ପଡ଼େ । ଛାତ୍ରମାନଙ୍କୁ ଅନୁପ୍ରାଣିତ କରିବା ଲକ୍ଷ୍ୟରେ କର୍ମକ୍ଷେତ୍ରରେ ନାନାପ୍ରକାର ବାଧାପ୍ରତିବନ୍ଧକ ସତ୍ତ୍ୱେ ଜଣେ ଦୃଢ଼ମନା ଓ କର୍ମନିଷ୍ଠ ବ୍ୟକ୍ତିଭାବେ ଗତିଶୀଳ ବ୍ୟକ୍ତିତ୍ୱ କ୍ଷେତ୍ର ବିଶେଷରେ ଯେ ଆଦରଣୀୟ ହୋଇପାରନ୍ତି, ଏହାର ଆବେଗପ୍ରବଣ ଚିତ୍ର ଏଥିରୁ ମିଳିଥାଏ ।

ଆତ୍ମବଳ, ଧୀଶକ୍ତି ଓ ବିଦ୍‌ବତ୍ତା ବଳରେ ବ୍ୟକ୍ତି କିପରି ଭାବରେ ଦୁଃସ୍ଥ ଅବସ୍ଥାକୁ ପରିବର୍ତ୍ତନ କରିପାରେ ଓ ସମାଜକୁ ବଦଳାଇବା ପାଇଁ ଅନ୍ୟମାନଙ୍କୁ ପ୍ରେରଣା ଦେଇପାରେ, ତାହାର ମନ୍ମୟ ପ୍ରକାଶ ଏଥିରେ ଲିପିବଦ୍ଧ ହୋଇଛି ।

ସମସାମୟିକ ସମାଜ, ରାଜନୀତି ଓ ସାଂସ୍କୃତିକ ପରିବେଶ କିପରି ଭାବରେ ସମାଜ ତଥା ଶିକ୍ଷାକ୍ଷେତ୍ରକୁ ପ୍ରଭାବିତ କରୁଥିଲା ତାହାର ଅର୍ଦ୍ଧଶତାବ୍ଦୀବ୍ୟାପୀ ରେଖାଚିତ୍ର ମଧ୍ୟ ଏଥିରୁ ଲବ୍ଧ ହୋଇଥାଏ । ସମସାମୟିକ ଖୋର୍ଦ୍ଧାର ସାମାଜିକ ପରିବର୍ତ୍ତନର ଚିତ୍ର ଓ ନିଜକୁ ସଂପୃକ୍ତ କରିଥିବା ଅନୁଷ୍ଠାନମାନଙ୍କ ସଂପର୍କରେ ବିବରଣୀ ଲିପିବଦ୍ଧ ହୋଇଥିବାରୁ ପରବର୍ତ୍ତୀ ପିଢ଼ିର ଦାୟାଦମାନଙ୍କ ପାଇଁ ଏହା ଏକ ତଥ୍ୟପୂର୍ଣ୍ଣ ଇତିହାସଭାବେ ଗୃହୀତ ହେବ । ଜୀବନଚରିତ ଲେଖି ମୁରଲୀବାବୁ ଏ ଦୃଷ୍ଟିରୁ ଏକ ମହତ କାର୍ଯ୍ୟ ସଂପାଦନ କରିଥିବାରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି ।

**ଡକ୍ଟର ଲକ୍ଷ୍ମୀନାରାୟଣ ରାୟସିଂହ**
ଅବସରପ୍ରାପ୍ତ ପ୍ରାଧ୍ୟାପକ

# ଅଭିମତ

ମୋ ମତରେ ଜୀବନୀ-ସାହିତ୍ୟର ସବୁଠୁ ଗୁରୁତ୍ୱପୂର୍ଣ୍ଣ ଦିଗଟି ହେଲା ଗୋଟିଏ ସମାଜର ପ୍ରାମାଣିକ ଚିତ୍ର ପ୍ରଦାନ କରିବା, ଯାହା ଇତିହାସର ଉପରଠାଉରିଆ ଦୃଷ୍ଟିଭଙ୍ଗୀ ତଳେ ପୋତି ହୋଇପଡ଼ିଥାଏ । ନିଜ ଜୀବନ-ସଂଘର୍ଷର କାହାଣୀ ଖୁବ୍ ରୋମାଞ୍ଚକର ହୋଇପାରେ, ହୋଇପାରେ ହୁଏତ ଅନୁକରଣୀୟ, କିନ୍ତୁ ତାହା ଏତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଅଥଚ ଅନେକ ଜୀବନୀ-ସାହିତ୍ୟ ରଚିତ ହୋଇଛି ଏହି ନିର୍ଦ୍ଦିଷ୍ଟ ଆଭିମୁଖ୍ୟରେ ।

ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନଙ୍କ ଏହି ତଥ୍ୟନିଷ୍ଠ ଜୀବନ କାହାଣୀ ସେସବୁ ଦୃଷ୍ଟିରୁ ଭିନ୍ନ ଓ ଗୁରୁତ୍ୱପୂର୍ଣ୍ଣ । ନିଜକୁ ମହିମାମଣ୍ଡିତ କରିବାକୁ ସେ ଉଦ୍ୟମ କରିନାହାନ୍ତି, ବରଂ ଏକ ସାମାଜିକ ଐତିହାସିକର ଭୂମିକା ଗ୍ରହଣ କରିଛନ୍ତି, ଯାହାକୁ ପାଠକଲେ ଆମ ସମାଜକୁ ଠିକ୍ ଭାବେ ବୁଝିହେବ । ବୁଝିହେବ ସାଧାରଣ ମଣିଷଜୀବନରେ ସଂଘର୍ଷର କାହାଣୀ, ତା'ର ସୁଖଦୁଃଖ, ସ୍ୱପ୍ନଭଙ୍ଗକୁ ବି । ସେ ଦୃଷ୍ଟିରୁ ଏହା ଏକ ଦଲିଲ୍ ପରି ଗୁରୁତ୍ୱପୂର୍ଣ୍ଣ ।

ଲେଖକ ତାଙ୍କର ପାଣ୍ଡୁଲିପିକୁ ପାଠ କରିବାର ସୁଯୋଗ ଦେଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି । ସେ ମୋର ଗୁରୁତୁଲ୍ୟ । ତଥାପି ନିଜର ସ୍ୱଭାବସୁଲଭ ଫଳଭରା ବୃକ୍ଷର ନମନୀୟତାରେ ମୋ'ର ମତାମତ ଚାହିଁଥିବାରୁ ମୁଁ ତାଙ୍କ ନିକଟରେ କୃତଜ୍ଞ ।

॥ ଇତି ॥

ପଦ୍ମଜ ପାଲ

ବିଶିଷ୍ଟ ଔପନ୍ୟାସିକ

ପ୍ରାଧ୍ୟାପକ



ନିଜ ପୁଷ୍ପ
ଉଦ୍ୟାନ ଭିତରେ



ଖୋର୍ଦ୍ଧା ସାହିତ୍ୟ ସଂସଦର
କର୍ମକର୍ତ୍ତା ବୃନ୍ଦ – ୧୯୮୯



ପୂଣ୍ୟମୟୀ ମା ସେଉନ୍ତୀ ଦେଈ
(୧୮୮୮-୧୯୭୨)



ନିଜ ଧର୍ମପତ୍ନୀଙ୍କ ସହ



କ୍ଷେତ୍ରବାସୀ ଏକାଡ଼େମୀ ନିରାକାରପୁର, ସହକାରୀ ଶିକ୍ଷକମାନଙ୍କ ଗହଣରେ ୧୯୭୯ (ବିଦ୍ୟାଳୟର କଚାଘର)

ନିଜ ପରିବାର ସହ (୨୦୦୧)





କ୍ଷେତ୍ରବାସୀ ଏକାଡ଼େମୀ, ନିରାକାର ପୁର, କାର୍ଯ୍ୟାଳୟରେ କାର୍ଯ୍ୟବ୍ୟସ୍ତ

ମୋକୃତ 'ଲାଲମାଟିର ସୌରଭ' ପୁସ୍ତକର ପ୍ରାଣନାଥ ମହାବିଦ୍ୟାଳୟରେ ବିଶିଷ୍ଟ ଉନ୍ମୋଚନ ସାହିତ୍ୟିକ ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ ଦ୍ୱାରା





ପୁରୁସାହି ହାଇସ୍କୁଲ୍-୧୯୯୫ରେ ଉତ୍କଳ ଦିବସ ପାଳନ ଉତ୍ସବରେ ମୁଖ୍ୟବକ୍ତା ହିସାବରେ



ପ୍ରଗତି ସାଂସ୍କୃତିକ ଅନୁଷ୍ଠାନର ସଭାପତିଙ୍କ ସହ (ଓଳସିଂହ, ଖୋର୍ଦ୍ଧା)



ଓଡ଼ିଶା ରାଜସ୍ୱମନ୍ତ୍ରୀଙ୍କ ଠାରୁ ସମ୍ମାନ ନେବାରେ (୨୯-୧୨-୨୦୦୦)



ପୁରୁସାହି ହାଇସ୍କୁଲ ପ୍ରଧାନ ଶିକ୍ଷକଙ୍କ ଗହଣରେ (୨୭.୧୦.୦୨)



୩.୧୦.୧୯୮୧ ରେ
ଉଦ୍‌ଘାଟିତ କ୍ଷେତ୍ରବାସୀ
ଏକାଡ଼େମୀ,
ନିରାକାରପୁରର
ନୂତନ ଗୃହ
(ମୋ ଉଦ୍ୟମରେ ନିର୍ମିତ)




ଖୋର୍ଦ୍ଧା
ସାହିତ୍ୟ ସଂସଦର
କର୍ମକର୍ତ୍ତା



୧୯୮୮ ପହିଲି ରଜ ଖୋରଧା
ସାହିତ୍ୟ ସଂସଦ କବିତା
ପାଠୋତ୍ସବ
ଅଧାପିକା ସଂଘମିତ୍ରା ମିଶ୍ର,
ପ୍ରାଣକୃଷ୍ଣ ମିଶ୍ର,



ନିରାକାରପୁର କ୍ଷେତ୍ରବାସୀ
ଏକାଡ଼େମୀ ସୁବର୍ଣ୍ଣଜୟନ୍ତୀ
ଉତ୍ସବରେ ଅତିଥି ହିସାବରେ
କଳାକାରଙ୍କୁ ସମ୍ବର୍ଦ୍ଧନା ଦେଉଛନ୍ତି
ପଶ୍ଚାଦ୍‌ଭାଗରେ ପ୍ରଧାନଶିକ୍ଷକ,
ଶରତଚନ୍ଦ୍ର ମିଶ୍ର



ସାଂସଦ ବାବୁ ପ୍ରସନ୍ନ ପାଟଶାଣୀଙ୍କ ସହିତ ଯାଗୁଳେଇ ପାଟଣା ରଥ ଛେରାପହଁରା କରିବା ପୂର୍ବରୁ- ୨୦୦୧



ମୁରଲୀଧର ପ୍ରଧାନ ଏବଂ ସମରେନ୍ଦ୍ର ବଳିୟାର୍ ସିଂହଙ୍କ ସହିତ ୨୦୦୦



ପ୍ରାଣନାଥ କଲେଜରେ ପ୍ରାଣନାଥଙ୍କ ଶ୍ରାଦ୍ଧ ଉତ୍ସବରେ



ସମାଜ ପାଠକ ମଞ୍ଚ, ଖୋର୍ଦ୍ଧାରେ ୨୦୦୧



ଗାନ୍ଧୀଜୟନ୍ତୀ
୨୦୦୦ରେ
ବନ୍ଧୁମାନଙ୍କ ସହ




୨୦୦୧ ଗାନ୍ଧୀଜୟନ୍ତୀ
ଉତ୍ସବରେ ଜିଲ୍ଲାପାଳ,
ବିଧାୟକ ଓ ପ୍ରଖ୍ୟାତ
ସ୍ୱାଧୀନତା
ସଂଗ୍ରାମୀ ଗୋକୁଳମଣି ରାୟ
ଚୂଡ଼ାମଣିଙ୍କ ସହିତ




ଖୋର୍ଦ୍ଧା ଟାଉନହଲରେ
ପବିତ୍ର ଗାନ୍ଧୀଜୟନ୍ତୀରେ
ଖୋର୍ଦ୍ଧାର ତତ୍କାଳୀନ
ଜିଲ୍ଲାପାଳ
ଶ୍ରୀ ମଧୁସୂଦନ ପାଢ଼ୀ
ଆଇ.ଏ.ଏସ୍. ଙ୍କ ଗହଣରେ
ମଞ୍ଚ ଉପରେ ଆସୀନ
୨୦୦୨



ଖୋର୍ଦ୍ଧା ସୂଚନା ଭବନରେ
ଗାନ୍ଧୀଜୟନ୍ତୀ ୧୯୯୯



ଦଧିମାଛଗାଡ଼ିଆ ପୁରସ୍କାର
ବିତରଣ ସଭାରେ
ମୁଖ୍ୟବକ୍ତା ଭାବେ-୨୦୦୧



ଖୋର୍ଦ୍ଧା ବାଳିକା
ବିଦ୍ୟାଳୟରେ ପୁରସ୍କାର
ବିତରଣ ସଭାରେ



ଖୋର୍ଦ୍ଧା ବାଳିକା
ବିଦ୍ୟାଳୟରେ ପୁରସ୍କାର
ବିତରଣ ସଭାରେ
ମୁଖ୍ୟବକ୍ତା-୨୦୦୧



ଉତ୍କଳମଣି ଗୋପବନ୍ଧୁ ଜୟନ୍ତୀରେ
ଖୋର୍ଦ୍ଧା ଡାକ୍ତରଖାନା ମଧ୍ୟରେ
ଅନ୍ୟ ବନ୍ଧୁମାନଙ୍କ ସହ



ଖୋର୍ଦ୍ଧା ଶତବାର୍ଷିକ ଉତ୍ସବ ଅଭ୍ୟର୍ଥନା ସମିତିର ସଭ୍ୟବୃନ୍ଦଙ୍କ ଗହଣରେ



୧୯୯୭ ମସିହାରେ ମାଣିକାଗୋଡ଼ା ଗ୍ରାମରେ ସ୍ୱାଧୀନତା ସଂଗ୍ରାମୀ ପରଶୁରାମ ପଦ୍ମାତିକରାୟଙ୍କୁ ସମ୍ମାନ ଦେବାରେ



ଖୋର୍ଦ୍ଧା ହାଇସ୍କୁଲ ଶତବାର୍ଷିକ ଉତ୍ସବରେ ଉତ୍ସବର ପୁରୋଧା ମୂଳ ପ୍ରଯୋଜକ ପୂର୍ବତନ ପ୍ରଧାନଶିକ୍ଷକ ଶ୍ରୀ ମୁରଲୀଧର ପ୍ରଧାନଙ୍କୁ ସର୍ବ ସମ୍ବନ୍ଧରେ ଖୋଲା ଜିପ୍ ଉପରେ ସହର ପରିକ୍ରମା




ଶତବାର୍ଷିକ ଉତ୍ସବରେ ପ୍ରଧାନଶିକ୍ଷକ ଶ୍ରୀ ନିତ୍ୟାନନ୍ଦ ନାୟକ, ଦଧିମାଛଗାଡ଼ିଆର ପ୍ରଧାନ ଶିକ୍ଷକ ଶ୍ରୀ ଅଲେଖ ଦାଶ ଓ ପୁରୁଷୋତ୍ତମ ହାଇସ୍କୁଲ୍ ପ୍ରଧାନଶିକ୍ଷକ ଶ୍ରୀ ବୈକୁଣ୍ଠନାଥ ରାଜଗୁରୁ ଓ ଅନ୍ୟ ଶିକ୍ଷକମାନଙ୍କ ସହ

## ମୋ ପିଲାଦିନର ଆମ ଗାଁ ଓ ତା'ର ଜୀବନଧାରା :

ଛୋଟ ପଲ୍ଲୀ ଗାଁଟିଏ । ଘର ବୋଲି ମୋଟେ ଚାଳିଶଗୋଟି । କିନ୍ତୁ ଲୋକ ସଂଖ୍ୟା ୪୦୦ । କଟଣୀ ଥାନା ଅନ୍ତର୍ଗତ ଓ କଟଣୀ ସହରଠାରୁ ଦୁଇ ମାଇଲ ଉତ୍ତରକୁ ଗହୀରବିଲ ମଧ୍ୟରେ ଅବସ୍ଥିତ । କାଗଜ ପତ୍ରରେ ଗାଁର ନାମ ଗୋବିନ୍ଦପୁର, କିନ୍ତୁ ୫୦ ଖଣ୍ଡି ମୌଜାରେ ଏ ଗାଁକୁ ଲୋକେ ତଳକ୍ଷେତା ବୋଲି ଡାକନ୍ତି । ତଳକ୍ଷେତା ଗ୍ରାମର ଗୋଟିଏ ଆକ୍ଷରିକ ଅର୍ଥଅଛି । ମୋ ମତରେ ଯେତେ ଗାଁ ବା ସହରର ନାମ ଦିଆଯାଇଛି ପ୍ରତ୍ୟେକର ଅର୍ଥ ଅଛି । ବଡ଼ ମଉଜା ହୋଇଯିବାରୁ ଗାଁଟି ଦୁଇଭାଗ ହେଲା । ଉପର କ୍ଷେତ୍ରର ନାମ ଓଗାଳପଡ଼ା ଓ ତଳକ୍ଷେତ୍ରର ନାମ ତଳକ୍ଷେତା ରହିଲା । ଏହାର କିଛି ଦିନପରେ ଯାଁଳା ଗ୍ରାମର ଜଣେ ବିଶିଷ୍ଟ ବ୍ୟକ୍ତି ପୂର୍ବତନ ଏ.ଡି.ଏମ୍. ବାବୁ ବିଷ୍ଣୁଚରଣ ପଟ୍ଟନାୟକଙ୍କ ପୂର୍ବପୁରୁଷ ଶ୍ରୀ ଗୋବିନ୍ଦ ପଟ୍ଟନାୟକ ଆମ ଗାଁର ସରବରାକାର ହେଲେ । ସାନି ବନ୍ଦୋବସ୍ତ ବେଳେ ତାଙ୍କର ନାମାନୁସାରେ ଗ୍ରାମର ନାମ ଗୋବିନ୍ଦପୁର ରଖିଲେ ଓ ତାଙ୍କ ସ୍ତ୍ରୀଙ୍କ ନାମାନୁସାରେ ପୂର୍ବଦିଗରେ ଅବସ୍ଥିତ ପୁଷ୍କରିଣୀଟିର ନାମ ହୀରା ସାଗର ଦେଲେ । ମୋ ପିଲାଦିନେ ଗାଁଟି ଛୋଟ ଥିଲା । ଏବେ ବଢ଼ି ୬୦ କି ୭୦ ଘର ହେଲାଣି । ଲୋକସଂଖ୍ୟା ସେହି ଅନୁସାରେ ବଢ଼ିଛି । ଏବେ କଟଣୀ ସହରଠାରୁ ଏକ ସୁନ୍ଦର ପିଚୁ ରାସ୍ତା ଗାଁର ପଶ୍ଚିମ ତରଫ ଦେଇ ରାଧାଚରଣପୁରଠାରେ ୫ ନମ୍ବର ଜାତୀୟ ରାଜପଥରେ ମିଳିତ ହୋଇଛି । ମୋ ପିଲାଦିନେ ଏହି ରାସ୍ତାଟି ଧଳା ମାଟିର ସଡ଼କ ଥିଲା । କେବେ ମରାମତି ହୁଏ ନାହିଁ । ସଡ଼କ ଦୁଇକଡ଼ରେ କିଆ ଗଛ ଗୁଡ଼ାଏ ବଣପରି ମାଡ଼ିଥିଲା । ୫ ନମ୍ବର ଜାତୀୟ ରାଜପଥଟି ଏବେ ଭୁବନେଶ୍ୱର ଓ ଯାଁଳା ଅତିକ୍ରମ କରି ଖୋର୍ଦ୍ଧା ଯାଇଛି । ଅର୍ଦ୍ଧ ଶତାବ୍ଦୀ ପୂର୍ବେ ଏହି ଜାତୀୟ ରାଜପଥ କଟକଠାରୁ ଚନ୍ଦକା, ମେଣ୍ଢାଶାଳ, ଖୋର୍ଦ୍ଧାଦେଇ ବ୍ରହ୍ମପୁର ଆଡ଼କୁ ଯାଇଥିଲା । ତାହାଥିଲା କଲିକତା-ମାନ୍ଦ୍ରାଜ ଟ୍ରଙ୍କରୋଡ୍ । ମୋ ବାଲ୍ୟକାଳରେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ଠାରୁ ଗୋଟିଏ ନାଲି ମାଟିର ସଡ଼କ ପିତାପଲ୍ଲୀଠାରେ କଲିକତା-ମାନ୍ଦ୍ରାଜ ରାଜପଥରେ ସଂଯୋଗ ହୋଇଥିଲା । ଏବେ ସ୍ୱାଧୀନତା ପରେ ତାହା ଦେଶର ୫ ନମ୍ବର ଜାତୀୟ ରାଜପଥରେ ପରିଣତ ହୋଇଛି ।

ଗାଁର ବୃଦ୍ଧମାନଙ୍କଠାରୁ ଶୁଣିଛି ବାବୁ ଗୋପାଳଚନ୍ଦ୍ର ପାଟ୍ଟଶାଣୀ ଯେତେବେଳେ ଗ୍ରାମର ସରବରାକାର ଥିଲେ ସେତେବେଳେ ଭୁବନେଶ୍ୱର-ପିତାପଲ୍ଲୀ ନାଲି ସଡ଼କରୁ ଗୋଟିଏ କଚାରାସ୍ତା ଆମ ଗାଁକୁ ସଂଯୋଗ କରିଥିଲେ । ଶ୍ରୀ ଗୋପାଳ ପାଟ୍ଟଶାଣୀ ଦାଣ୍ଡୁଆ ଲୋକ । ସେ ମୋର ସାଆନ୍ତବାପା ହେବେ । ମୁଁ ହାଇସ୍କୁଲରେ ପଢ଼ିବା ସମୟରେ ତାଙ୍କ ପାଖେ ବହୁଥର ବସି କଥାଭାଷା କରେ । ସେ ପୂର୍ବର ପାଠପଢ଼ା କଥା କହନ୍ତି । ପାଣିଦୋଳର ଗୋପୀ ବେହେରା ଚତୁର୍ମାସ୍ୟାରେ ତାଙ୍କର ଗାଈ ଗୋରୁ ଆଣି ଏ ପାଖେ ପରଙ୍ଗ ଅଞ୍ଚଳରେ ରହୁଥିଲେ । ମୁଣ୍ଡମୁହାଣରେ ଗୋପୀ ବାପା ସାଙ୍ଗେ ରହେ । ଖୋରଧାରେ ପାଠ ପଢୁଥାଏ । ଦିନେ ଦିଅଁ କାନ୍ଧେଇବା ପାଇଁ ଗାଁ ଲୋକେ ତା ବାପାକୁ ଖୋଜିଲେ । ମାତ୍ର ସେ ତ ନଥିଲେ ତେଣୁ ଗୋପୀକୁ ଡାକିଲେ । ଗୋପୀ ଇଂରାଜୀ ପଢୁଥିଲେ, ତେଣୁ ଉତ୍ତର ଦେଲେ ''ଆଇ ଡୋଣ୍ଟ ନୋ ଦିଅଁ କାନ୍ଧିଆ'' । ଏଥିରେ ଗାଁ ବାଲା ଉତ୍ୟକ୍ତ ହୋଇ ତାଙ୍କ ପ୍ରତି ଅଶୋଭନୀୟ ବ୍ୟବହାର ଦେଖାଇଲେ । ମୁଣ୍ଡମୁହାଣ ଗାଁରେ ବ୍ରାହ୍ମଣ ବସତି ବହୁତ । ତେଣୁ ଜାତିଭେଦ ତ ଜୋର ଥିଲା । ଗଉଡ଼କୁ ହୀନ ଦୃଷ୍ଟିରେ ଦେଖୁଥିଲେ । ଏହି ଗୋପୀ ପାଠପଢ଼ି ଓକିଲ ହେଲେ । ବାବୁ ଗୋପାଳ ଚନ୍ଦ୍ର ପାଟ୍ଟଶାଣୀ କିଛି ପାଠ ପଢ଼ିଥିଲେ । ଦେଶର ହାଲ ହଇକତ ଜାଣୁଥିଲେ ।

ସାଆନ୍ତବାପାଙ୍କଠାରୁ ଶୁଣିଛି, ଥରେ ଖୋର୍ଦ୍ଧାର ଗୋରା ସବଡିଭିଜନ ସାହେବ ଗାଁ ମୁଣ୍ଡ ପର୍ଯ୍ୟନ୍ତ ଆସିଥିଲେ । ସେ ସରବରାକାରକୁ ଡକାଇଲେ । ଗାଁମୁଣ୍ଡ ଦକ୍ଷିଣ ଦିଗରେ ଠିକ୍ ପାଇକରାୟ ମହୋଦୟଙ୍କ ବାଡ଼ିପଟେ ଏକ ବୃହତ୍ ଡେଙ୍ଗା ବରଗଛ ଥିଲା । ସେ ଗଛ ମୂଳେ ଠିଆହୋଇ ଜଟଣୀ ଆଡ଼କୁ ଦୃଷ୍ଟି ପକାଇଲେ । ସେତେବେଳକୁ ଜଟଣୀ ଏକ ରେଳ ଷ୍ଟେସନ ହେବାର ଠିକ୍ ହେଲାଣି ।

୧୮୯୬ ମସିହା କଥା । ସାହେବ ସରବରାକାରଙ୍କୁ ଆଦେଶ ଦେଲେ, ଜଟଣୀ ସହର ତ ଏଠାରୁ ଅଳ୍ପଦୂରରେ, ତୁମେ ଏଠାରୁ ଏକ ରାସ୍ତା ତିଆରି କରି ଜଟଣୀ ସହ ଯୋଗକର । ସେତେବେଳେ ଜଟଣୀକୁ ରେଳପଥ ସଂଯୋଗ ନଥିଲା । ତେବେ ତହିଁ ଆରଦିନଠୁ କାମ ଚାଲିଲା, ଜଟଣୀ ସହ ଆମ ଗାଁର ସଂଯୋଗ ହେଲା । ରାସ୍ତାଟିଏ ହୋଇଯିବାରୁ କେବଳ ଆମ ଗାଁଟି ଉପକୃତ ହେଲାନାହିଁ, ଉତ୍ତରାଞ୍ଚଳର ବହୁଲୋକ ଜଟଣୀକୁ ଏହିବାଟେ ବେପାର ବଣିଜ ଚଳେଇଲେ ଏବଂ ଯାତାୟାତର ପଥ ସୁଗମ ହେଲା । ଏବେ ଭୁବନେଶ୍ୱର ରାଜଧାନୀ ସହ ଜଟଣୀ ଅଞ୍ଚଳ ଅଧିବାସୀମାନଙ୍କର ଏହାହିଁ ହେଉଛି ମୁଖ୍ୟ ସଂଯୋଗ ପଥ ।

## ସରବରାକାରଙ୍କଠାରୁ ଶୁଣା କଥା :

ବାବୁ ଗୋପାଳ ପାଟଶାଣୀଙ୍କ ପୂର୍ବରୁ ଗାଁର ସରବରାକାର ଥିଲେ ବାବୁ ଶ୍ରୀ ଚିନ୍ତାମଣି ପ୍ରଧାନ । ସେ ବି ମୋର ଲେଖାରେ ବଡ଼ବାପା ହେବେ, କିନ୍ତୁ ମୁଁ ତାଙ୍କୁ ଦେଖିନାହିଁ । ଶୁଣିଛି ଚିନ୍ତାମଣି ପ୍ରଧାନ ଟଙ୍କା ଖର୍ଚ୍ଚ କରିବାରେ ଖୁବ୍ ମୁକ୍ତହସ୍ତ ଥିଲେ । ଆମ ଗାଁଠାରୁ ଯଜାରସିଂ (ଖୋର୍ଦ୍ଧା) ସହର ୪ କି ୫ ମାଇଲ ହେବ । ମଝିରେ ଗହୀର ପୁଣି ତା' ପରେ ବୁଦୁବୁଦିକିଆ ଜଙ୍ଗଲ ପଡ଼େ । ତା'ପରେ ଇତିହାସ-ପ୍ରସିଦ୍ଧ ଗଙ୍ଗପଡ଼ା ଗାଁ । ୧୮୧୭–୨୫ ଖୋର୍ଦ୍ଧା ପାଇକ ବିଦ୍ରୋହ ସମୟରେ ଓଡ଼ିଆ ପାଇକ ସେନାନୀର ଦୁର୍ଦ୍ଧର୍ଷ ବ୍ରିଟିଶବାହିନୀ ସହ ଏହି ଗଙ୍ଗପଡ଼ାଗଡ଼ଠାରେ ଭୟଙ୍କର ଯୁଦ୍ଧ ସଂଘଟିତ ହୋଇଥିଲା । ଆମ ଗାଁ ଯୁଆନମାନେ ଏ ଯୁଦ୍ଧରେ ଯୋଗ ଦେଇଥିଲେ ବୋଲି ବଡ଼ବାବା କହନ୍ତି । ପାଇକ ବାହିନୀର ମୁଖ୍ୟ ଗଙ୍ଗପଡ଼ା ଦଳବେହେରା ଶ୍ରୀ ଭାଗୁ ହରିଚନ୍ଦନ ଗୋରା ସେନାପତି ପେରିସ ସାହେବଙ୍କୁ ହତ୍ୟା କରିଥିଲେ ଏବଂ ପାଇକମାନେ ଆଉଜଣେ ଭାରତୀୟ ସେନାଧକ୍ଷଙ୍କୁ ମଧ୍ୟ ହତ୍ୟା କରିଥିଲେ । ବର୍ତ୍ତମାନ ଗଙ୍ଗପଡ଼ା ଗଡ଼ସାହିର ଅବସ୍ଥିତି ଯେଉଁଠି, ତାର ଉତ୍ତର-ପଶ୍ଚିମ କୋଣରେ ଠାକୁରାଣୀଙ୍କ ନିକଟରେ ପାଇକ ସୈନ୍ୟମାନେ ବ୍ରିଟିଶ୍ ସୌନ୍ୟଙ୍କର ପଥରୋଧ କରିଥିଲେ । ଗଙ୍ଗପଡ଼ା ପାରିହେଲେ ପିତାପଲ୍ଲୀ ଏବଂ ତାପରେ ମୁକୁନ୍ଦପ୍ରସାଦ ଗ୍ରାମ । ଗୋଟିଏ ଗହୀର ପାରିହେଲେ ଯଜାରସିଂ ମୌଜା, ପାଇକ ସର୍ଦ୍ଦାର ଯୁଜାହାର ସିଂହଙ୍କ ନାମରେ ନାମିତ । ତାହା ଏବେ ଖୋର୍ଦ୍ଧା ସହର ନାମରେ ନାମିତ ହୋଇଛି । ଖୋର୍ଦ୍ଧାଗଡ଼ ବର୍ତ୍ତମାନ ଖୋର୍ଦ୍ଧା ସହରଠାରୁ ଦକ୍ଷିଣକୁ ୨ ମାଇଲ ଦୂରରେ ।

ସେ ସମୟରେ ମଟରଗାଡ଼ି, ସାଇକେଲର ସେତେ ପ୍ରଚଳନ ନଥିଲା । ଛପରା ବଳଦଗାଡ଼ି, ଘୋଡାଗାଡ଼ି, ସବାରି ପାଲିଙ୍କିରେ ସମ୍ମାନାସ୍ପଦ ବ୍ୟକ୍ତିମାନେ ଯାତାୟାତ କରୁଥିଲେ । ଖୋର୍ଦ୍ଧା ଏସ୍‌ଡିଓଙ୍କର ଘୋଡ଼ାଥିଲା ଏବଂ କାର୍ ବି ଥିଲା । ଗାଁ ସରବରାକାର ବାବୁ ଚିନ୍ତାମଣି ପ୍ରଧାନ କେତେବେଳେ ସବାରିରେ ତ କେତେବେଳେ ଘଣ୍ଟିଘାଗୁଡ଼ି ସଜ୍ଜିତ ଛପରା ବଳଦଗାଡ଼ିରେ ଖୋର୍ଦ୍ଧା ଖାସମାହାଲ ଅଫିସରେ ଖଜଣା ଦାଖଲ କରିବାକୁ ଗଲାବେଳେ ଖୋରଧାର ତତ୍କାଳୀନ ମହାଜନ ଶ୍ରୀ ଯତନ ରାମଙ୍କଠାରୁ ପାଟଯୋଡ଼, କୁଣ୍ଡଳ ଭଡ଼ାସୂତ୍ରରେ ଆଣି ସଜବାଜ ହୋଇ ଯାତ୍ରା କରୁଥିଲେ । ଯେତେଦୂର ଜଣାଯାଏ ଊନବିଂଶ ଶତାବ୍ଦୀର ଶେଷପାଦରେ ଶ୍ରୀ ଚିନ୍ତାମଣି ପ୍ରଧାନଙ୍କର ଗ୍ରାମରେ ଖୁବ୍ ଖାତିରି ଥିଲା । ବିହାର ପ୍ରଦେଶରୁ ଏବଂ ଉତ୍ତର ପ୍ରଦେଶରୁ ଲୋକେ ଆସି ଖୋରଧାରେ ଅବସ୍ଥାନ କରୁଥିଲେ । ଭୋଜପୁରୀ ଶ୍ରୀ ଯତନ ମହାଜନ ସେମାନଙ୍କ ମଧ୍ୟରୁ ଅନ୍ୟତମ ।

ମୁଁ ମୋ ନିଜ ବାପାଙ୍କୁ ଦେଖିନାହିଁ । ଜନ୍ମର ୬ ମାସ ପୂର୍ବରୁ ସେ ଆରପାରିକୁ ଚାଲିଯାଇଥିଲେ । କେବଳ ଏତିକି ଶୁଣିଛି ମୋ ବାପା ଚାହାଳି ପାଠ ପଢ଼ିଥିଲେ । ବିଲବାଡ଼ି କାମରୁ ଫେରି ଆସିଲା ବେଳକୁ ହାଣ୍ଡି ମାଙ୍କଡଚିତ୍ ମାରୁଥାଏ । ତେଣୁ ସେ ଖାଲିପେଟରେ ଖଣ୍ଡେ ଭାଗବତ ପୋଥିଧରି ଦାଣ୍ଡ ପିଣ୍ଡାରେ ବସି ଏଡ଼େ ପାଟିକରି ବୋଲୁଥିଲେ ଯେ ଗାଁ ଦାଣ୍ଡ କମ୍ପି ଉଠୁଥିଲା । ମୋ ପିତାଙ୍କ ନାମ ଶ୍ରୀ ବାସୁଦେବ ପ୍ରଧାନ ଓ ମାତାଙ୍କ ନାମ ସେରନ୍ତୀ ଦେଈ । ମୋ ଅଜାଘର ଆମ ଗାଁ ଠାରୁ ଉତ୍ତରକୁ ୨ ମାଇଲ ଦୂର ପ୍ରସିଦ୍ଧ ଅରିଶଲ ଗଡ଼ ଗ୍ରାମରେ । ସେ ଗାଁଲୋକ ଦୁର୍ଦ୍ଦାନ୍ତ ଥିଲେ । ସେତେବେଳେ ଲୋକେ ନିକଟବର୍ତ୍ତୀ ଗ୍ରାମରେ ବା ସେହି ଗ୍ରାମରେ ବନ୍ଧୁ ବାନ୍ଧୁଥିଲେ । ମୋ ଅଜା ସ୍ୱପ୍ନେଶ୍ୱର ଓ ମାମୁ ବାଉରିବନ୍ଧୁ ଉଭୟ ଚାହାଳି ପାଠ ଶେଷକରି ଭାଗବତ, ରାମାୟଣ, ଗୋପୀଭାଷା, ମଥୁରାମଙ୍ଗଳ ପ୍ରାଞ୍ଜଳଭାବେ ବୋଲୁଥିଲେ । ସେତେବେଳେ ସେମାନେ ଗାଁରେ ବଡ଼ ପାଠୁଆ ।

## ସମାଜରେ 'ପ୍ରଧାନ'ଙ୍କ ସ୍ଥାନ :

ଭାରତ ଇତିହାସ ପର୍ଯ୍ୟାଲୋଚନା କଲେ ଜଣାଯାଏ ମହାରାଜା ଶିବାଜୀ ତାଙ୍କର ମନ୍ତ୍ରିମଣ୍ଡଳକୁ ୮ ଭାଗରେ ବିଭକ୍ତ କରିଥିଲେ । ସେମାନଙ୍କୁ ଅଷ୍ଟପ୍ରଧାନ କୁହାଯାଉଥିଲା । ଏବେ ମଧ୍ୟ ମହାରାଷ୍ଟ୍ର ରାଜ୍ୟରେ 'ପ୍ରଧାନ' ସଂଜ୍ଞାଧାରୀ ଲୋକେ ଉଚ୍ଚଉଚ୍ଚ ପଦବୀରେ ଅଧିଷ୍ଠିତ । ନେପାଳ ରାଜ୍ୟରେ 'ପ୍ରଧାନ' ନାମଧାରୀ ଲୋକଙ୍କୁ ଏକ ମହାନ୍ ବୀରଜାତି ବୁଝାଏ । ଓଡ଼ିଶାରେ 'ପ୍ରଧାନ' ସଂଜ୍ଞାଧାରୀ ଲୋକେ ଅଛନ୍ତି । ସ୍ୱର୍ଗତ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ଉତ୍କଳ ଇତିହାସ ଅନୁଧ୍ୟାନ କଲେ ଗଜପତି ରାଜାମାନଙ୍କ ଶାସନକାଳରେ 'ପ୍ରଧାନ'ମାନେ ଶାସନ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ତାଙ୍କ ଇତିହାସ ପୁସ୍ତକର ୧୦୭ ପୃଷ୍ଠାରେ ସେ ଉଲ୍ଲେଖ କରିଅଛନ୍ତି– "ଗ୍ରାମଗୁଡ଼ିକ ସମଗ୍ର ଦେଶର ଶାସନ ତନ୍ତ୍ରର ମୂଳଭିତ୍ତି ଥିଲା । ଗ୍ରାମମାନଙ୍କରେ ଜନପଦ ନାମରେ ଏକ ଗ୍ରାମ ପଞ୍ଚାୟତ ବା ସଭାଥିଲା । ସେଥିରେ ଗ୍ରାମ ପ୍ରତିନିଧିମାନେ ଯୋଗଦେଇ ଗ୍ରାମଗତ ସକଳ ବିଷୟ ନିର୍ବାହ କରୁଥିଲେ । 'ପ୍ରଧାନ' ବା ଦଳବେହେରା ସେହି ଗ୍ରାମ ପଞ୍ଚର ସଭାପତି ଥିଲେ । ବିଷିର ଅନୁକରଣରେ ଗ୍ରାମଶାସନ ଗଠିତ ଥିଲା । ଖଣ୍ଡପତି ସ୍ଥାନରେ 'ପ୍ରଧାନ' ବା ଦଳବେହେରା, ଖଣ୍ଡାୟତ ସ୍ଥଳରେ ଗ୍ରାମ କଟୁଆଳ ବା ପାଇକ, ଭୋଇମୂଳ ସ୍ଥାନରେ 'ଭୋଇ' ଗ୍ରାମଶାସନରେ ପ୍ରତିନିଧି ଥିଲେ । ସାଧାରଣ ଶାସନ ପ୍ରଧାନଙ୍କ ହସ୍ତରେ ଅର୍ପିତ ଥିଲା । "

ଉକ୍ତ ଉଦ୍ଧୃତାଂଶରୁ ଅନୁମିତ ହୁଏ 'ପ୍ରଧାନ' ଥିଲେ ଗ୍ରାମର ମୁଖ୍ୟ ଶାସକ । ବ୍ରିଟିଶ ଶାସନକାଳେ ଓ ସ୍ୱାଧୀନ ଭାରତରେ ସେମାନଙ୍କର ପୂର୍ବ ଗୌରବ ନାହିଁ । ବହୁପରିମାଣରେ କ୍ଷୁଣ୍ଣ ହୋଇଛି । କାରଣ ଖୋଜିଲେ ଜଣାଯାଏ ଦାରିଦ୍ର୍ୟହିଁ ସମସ୍ତ ଦୁର୍ଗତିର କାରଣ । ପୁନଃ ଶିକ୍ଷାରେ ଅନଗ୍ରସରତା । ଏବେ ସେ ଜାଣିଲେଣି, ଶିକ୍ଷା ସକଳ ପ୍ରଗତିର ମୂଳାଧାର । ତେଣୁ ଏବେ ପ୍ରତ୍ୟେକ କ୍ଷେତ୍ରରେ ସେ ଶିକ୍ଷାଲୋକ ପାଇଁ ବ୍ୟାକୁଳ । ଭବିଷ୍ୟତରେ ଗଣତାନ୍ତ୍ରିକ ଶାସନରେ ସେ ପୁନଃ ମୁଖ୍ୟ ହୋଇ ଉଭାହେବେ ବୋଲି ଭାବୁଛି ।

ଆମ ଗାଁରେ ମୋଟେ ଦୁଇଧାଡ଼ିଘର । ଗାଁର ବୟସ ବେଶି ନୁହେଁ ବୋଲି ଲୋକେ କୁହନ୍ତି । ମୋ ପିଲାଦିନେ ଶ୍ରୀ ନାରାୟଣ ବନ୍ଧୁ ମହାରଣା ଗାଆଁର ଧନୀ ଲୋକ ଥିଲେ । ତାଙ୍କର କୋଠାବାଡ଼ି ଅନେକ । ୬୦ ବାଟି ସମ୍ପତ୍ତି । କଟଣୀ ଓ ପୁରୀ ସହରରେ ତାଙ୍କର ଘରବାଡ଼ିଥାଏ । ପିପିଲି ନିକଟରେ ଆରୁହା-ପାଟଶାଣୀପୁର ନାମକ ଏକ ଜମିଦାରୀ ତାଙ୍କର ଥିଲା । ବହୁ ସମୟରେ ସେ ମଟରଗାଡ଼ିରେ ଯାତାୟାତ କରୁଥିଲେ । ଆମ ଗାଁକୁ ତାଙ୍କର ପ୍ରଥମେ ଗ୍ରାମ୍‌ଫୋନ୍ ଆଣିଲେ । କଳ କିପରି ଗାଉଛି ବୋଲି ଲୋକ ଜମାହେଲେ । ପାଖ ଆଖ ଅଞ୍ଚଳର ବହୁଲୋକ ତାଙ୍କଠାରୁ ଧାନ ଓ ଟଙ୍କାପଇସା କରଜ ନିଅନ୍ତି । 'ଯସ୍ୟାସ୍ତି ବିତ୍ତଂ ସ ନରଃ କୁଳୀନଃ' ନ୍ୟାୟରେ ସେ ପୂଜାପାଆନ୍ତି । ମହାଲକ୍ଷ୍ମୀ ତାଙ୍କ କାନ୍ଧରେ ବିରାଜମାନ କରିଥିଲେ ବୋଲି ସାଧାରଣ ଲୋକେ ତାଙ୍କୁ ଖୁବ୍ ଖାତିରି କରନ୍ତି । ଧନୀ ଲୋକର ଖାତିର ସବୁଯୁଗରେ, କିନ୍ତୁ ଅସତ୍ ଚରିତ୍ରର ହେଲେ ନାନା କ୍ଷତି ଘଟେ । ଏବେ ତାଙ୍କର ପୁଅ, ନାତିମାନେ ଅଛନ୍ତି କିନ୍ତୁ ସେ ପୂର୍ବ ବିଭବ ନାହିଁ । ସରସ୍ୱତୀ ତାଙ୍କଘରେ ଆସ୍ଥାନ ଜମେଇଲେଣି । ଜାତି ହିସାବରେ ଦେଖିଲେ ସେ କାଠ କାରିଗର ।

ମହାରଣାଙ୍କ ବ୍ୟତୀତ ସର୍ବଶ୍ରୀ ଗୋପାଳଚନ୍ଦ୍ର ପାଟଶାଣୀ, ଈଶ୍ୱରଚନ୍ଦ୍ର ପାଇକରାୟ, ପୀତବାସ ରାଉତରାୟ, ନଟବର ବରାଳ ପ୍ରଭୃତି ମଧ୍ୟବିତ୍ତ ଶ୍ରେଣୀର ଲୋକେ ଗ୍ରାମରେ ବାସ କରୁଥିଲେ । ଗାଆଁରେ ଆଚାଣ୍ଡାଳ ବ୍ରାହ୍ମଣ କକେଇ, ମାମୁଁ, ଜେଜେ, ମାଇଁ, ଖୁଡ଼ୀ ହିସାବରେ ଡକାଡ଼କି ହୁଅନ୍ତି । ପୂନିଅ, ପରବ, ବିବାହ, ବ୍ରତରେ ପରସ୍ପରକୁ ସାହାଯ୍ୟ କରନ୍ତି । ଏପରି ସହଯୋଗ ସହର ବଜାରରେ ସପନ । ମଫସଲ ଗାଁମାନଙ୍କରେ ପ୍ରୀତିବନ୍ଧନ ଜୋର । ଗାଁର ଯେଉଁମାନଙ୍କର ଚାଷଜମି ଅଛି ସେମାନେ ଅନ୍ୟର କାମକରିବାକୁ ଯାଆନ୍ତି ନାହିଁ । ତେବେ କେତେକ ଲୋକ କୃଷିଶ୍ରମିକ ଏବଂ

ଯାନିଯାତ୍ରାବେଳେ ଛୋଟକାଟର ବେପାର ବଣିଜ କରି ଗୁଜୁରାଣ ମେଣ୍ଟାନ୍ତି । ଗାଁର ଦକ୍ଷିଣ ଦିଗରେ ରଙ୍ଗିଆ ଭଙ୍ଗିଆ ନାମକ ଏକ ପ୍ରାକୃତିକ ନାଳ ବୋହିଯାଉଛି । ଏହା ଦୟାନଦୀର ଉପନଦୀ । ବର୍ଷାଦିନେ ଏହି ନାଳଟି ଆମ ଗାଁପାଇଁ ବିପଦ ସୃଷ୍ଟିକରେ । ବହୁବର୍ଷ ପର୍ଯ୍ୟନ୍ତ ନାଳଉପରେ ପୋଲ ତିଆରି ହୋଇନଥିଲା । ଲୋକେ ପାରି ହେବାବେଳେ ଭାସି ଯାଉଥିଲେ । ଉପରମୁଣ୍ଡରେ ପ୍ରବଳ ବୃଷ୍ଟିହେଲେ ୪/୫ ଦିନ ପର୍ଯ୍ୟନ୍ତ ଜଟଣୀକୁ ରାସ୍ତା ବନ୍ଦ ହୋଇଯାଏ । ମୋ ବଡ଼ବାପା ଏହି ନଦୀରେ ଭାସିଯାଇ ମୃତ୍ୟୁ ବରଣ କରିଥିଲେ । କିନ୍ତୁ ଖରାଦିନେ ଗାଁ ଲୋକେ ଏହି ନାଳର ଗଣ୍ଡମାନଙ୍କରୁ ପ୍ରଚୁର ମାଛ ଧରିଥାନ୍ତି ।

## ଗାଁରେ ମୁଖିଆଙ୍କ ସ୍ଥାନ :

ଗାଁର କଳିଗୋଳ ବାହାରକୁ ଯାଏ ନାହିଁ । ମୁଖିଆଲୋକେ ନିଷ୍ପତ୍ତି କରିଥାନ୍ତି । ମେଳା ମହୋତ୍ସବରେ ଚାଉଳ ଓ ପଇସା ଆକାରରେ ଚାନ୍ଦା ଆଦାୟ ହୁଏ । ଯେଉଁମାନେ ଦରିଦ୍ର, ଚାଉଳ, ପଇସା ଦେଇପାରନ୍ତି ନାହିଁ ସେମାନେ କାମ ଆକାରରେ ପଇଠ କରନ୍ତି । ଅଶୋକାଷ୍ଟମୀ ଓ ରାମନବମୀ ଦିନ ଆମ ଗାଁରେ ଏକ ବଡ ମହୋତ୍ସବ ପାଳିତ ହୁଏ । ତାହା ଅଷ୍ଟ ପ୍ରହରୀ ନାମରେ ନାମିତ । ଚାରିପାଞ୍ଚ ମାଇଲ ପାଖ ଗାଁମାନଙ୍କରୁ ସଂକୀର୍ତ୍ତନ ମଣ୍ଡଳୀ ଆସନ୍ତି । ଖାଇବା, ପିଇବା, ବାଜା ବଜେଇବାରେ ଗାଆଁର ଆବାଳବୃଦ୍ଧବନିତା ଭାଗ ନିଅନ୍ତି । ରୌଦ୍ର ତାପରୁ ରକ୍ଷାପାଇବା ପାଇଁ ଭାଗବତଘରଠାରୁ ୫୦୦ ଗଜ ପର୍ଯ୍ୟନ୍ତ ଛାମୁଣ୍ଡିଆ ହୋଇଥାଏ । ଲୋକେ ବଡ଼ ମଉଜରେ ସେତିକି ସମୟ ପୂର୍ଣ୍ଣପ୍ରାଣରେ ଉପଭୋଗ କରନ୍ତି ।

ଗାଁରେ ବ୍ରାହ୍ମଣ, କରଣ, ତେଲୀ ବ୍ୟତୀତ ସବୁ ଶ୍ରେଣୀର ଲୋକ ବାସ କରନ୍ତି । ପାଖ ଗାଁରୁ ବ୍ରାହ୍ମଣମାନେ ଆସି ହୋମ, ଯଜ୍ଞ, ବିବାହ, ବ୍ରତ କାମ ତୁଲାନ୍ତି । ଗାଁରେ ବ୍ରାହ୍ମଣଙ୍କ ଖାତିର ବେଶି, ଏପରିକି ବାଳକ ବ୍ରାହ୍ମଣକୁ ବୁଢ଼ାମାନେ ବିଭକ୍ତି କରନ୍ତି । ମାତ୍ର କରଣମାନେ ଗାଁକୁ ଭାଙ୍ଗି ଦିଅନ୍ତି ବୋଲି ଗାଁଲୋକଙ୍କର ସ୍ପଷ୍ଟ ଧାରଣା । ଏ ଧାରଣା କେବଳ ଆମ ଗାଁରେ ନୁହେଁ ସବୁ ଗାଁରେ ଅଛି । କିନ୍ତୁ କରଣମାନେ ଶିକ୍ଷିତ ଓ ମାର୍ଜିତ । ଗାଁରେ ଔଡ୍ର-କ୍ଷତ୍ରିୟମାନଙ୍କ ସଂଖ୍ୟା ଅଧିକ । ଶୁଣିଛି ଖୋରଧା ପାଇକ ବିଦ୍ରୋହ ସମୟରେ ସେମାନଙ୍କ ପୂର୍ବପୁରୁଷମାନେ ବ୍ରିଟିଶ ବାହିନୀକୁ ପରାସ୍ତ କରିଥିଲେ । ସେମାନେ ଗଜପତି ରାଜାଙ୍କର ଗେହ୍ଲାପୁଅ ଥିଲେ । ତେଣୁ ମହାରାଜାଙ୍କ ଠାରୁ ନିଷ୍କର ଜମିବାଡ଼ି ଭୋଗ କରୁଥିଲେ । ଦେଶରେ ସେମାନଙ୍କର ଢେର୍ ପ୍ରତିପତ୍ତି ଥିଲା । ସେମାନେ ସ୍ୱାଧୀନ

ପ୍ରକୃତିର ଲୋକ । ବ୍ରିଟିଶ ସରକାର ସେମାନଙ୍କର ହାତଗୋଡ଼ ଭାଙ୍ଗିଦେଇଛି, ସେମାନେ ଆଉ ଉଠିପାରିଲେ ନାହିଁ । ସେମାନେ ଆଜି ନିଃସ୍ୱ, ନିଷ୍ପେଷିତ, ଦଳିତ, ଅବହେଳିତ । ସେମାନଙ୍କର ପୂର୍ବ ଗୌରବ ନାହିଁ । ସ୍ୱାଧୀନ ମନୋବୃତ୍ତି ହେତୁ ନୌକରିକୁ ଘୃଣାକରି ଚାଷବାସରେ ମନ ଦେଇଛନ୍ତି । ସ୍ୱାଧୀନ ଭାରତ ହେବା ୫୦ ବର୍ଷରୁ ଊର୍ଦ୍ଧ୍ୱ ହେଲାଣି । କିନ୍ତୁ କୃଷକ ଯେଉଁ ତିମିରେ ସେହି ତିମିରେ । କଂଗ୍ରେସ ସରକାର ତଫସିଲ ଜାତି ପ୍ରତି ଯେପରି ନଜର ଦିଅନ୍ତି ଏ ଯୋଦ୍ଧା ଜାତି ପ୍ରତି ନାହିଁ ।

## ଗାଁ ଲୋକଙ୍କ ଚଳଣି :

ଗାଁ ଶ୍ରମିକମାନଙ୍କ ମଧ୍ୟରୁ ଅଧିକାଂଶ କଟଣୀ ସହରରେ ମଜୁରିଲାଗି ପେଟ ପୋଷନ୍ତି । ଗାଁରେ ମଜୁରି ଦୁଇଅଣା ତିନିଅଣା ଥିବାବେଳେ କଟଣୀରେ ପାଞ୍ଚଅଣା, ଛଅଅଣା । ଗାଁ ଲୋକ ଚୈତନ୍ୟଧର୍ମ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଗାଁ ମଝିରେ ଭାଗବତ ଟୁଙ୍ଗିଘର । ସେଠାରେ ପ୍ରତିଦିନ ରାତିରେ ଭାଗବତ ପାଠ କରାଯାଏ । ଜଣେ ଉଚ୍ଚସ୍ୱରରେ ପଢ଼ନ୍ତି, ଅନ୍ୟମାନେ ଶୁଣନ୍ତି । ଭାଗବତ ପାଠ ବ୍ୟତୀତ ଗୋଟିଏ ବର୍ଷ ରାମାୟଣ ପଢ଼ାହେଲେ ପରବର୍ଷ ମହାଭାରତ ପାଠ କରାଯାଏ । ପ୍ରତି ଏକାଦଶୀ ଦିନ ଭାଗବତ ଘରେ ଏକାଦଶୀ ପର୍ବ ପାଳିତ ହୁଏ । କେତେ ସମୟ କୀର୍ତ୍ତନ ପରେ ଖୋଳପୂଜା ହୁଏ । କୀର୍ତ୍ତନର ଗୁରୁ (ଓଡ଼ ଖଣ୍ଡାୟତ) ଖୋଳପୂଜା କରନ୍ତି । ଉପସ୍ଥିତ ବ୍ୟକ୍ତିଙ୍କୁ ଭୋଗ ବିତରଣ କରାଯାଏ । ଯାହାର ଏଥରକୁ ଏକାଦଶୀ ପାଳି ପଡ଼ିଥାଏ, ଆସନ୍ତା ଥରକୁ ସେ ତା ପାଖ ଘରକୁ ହକରା ପଠାଏ । ଏହିପରି ସାରା ବର୍ଷ ଏକାଦଶୀ ଦିନଟି କର୍ମମୁଖର ହୁଏ । ଆନନ୍ଦରେ ସମୟଟି କଟେ । କିନ୍ତୁ ଅସ୍ପୃଶ୍ୟ ଲୋକେ ଭୋଗ ଦିଅନ୍ତି ନାହିଁ । ମୋ ଜାଣିବାରେ ଗାଁର କୌଣସି ବ୍ୟକ୍ତି କେବେ ଚୋରି, ଡକାୟତିରେ ପଡ଼ିନାହାଁନ୍ତି କି ପୋଲିସ ଗାଁକୁ ଆସିନାହାଁନ୍ତି ।

## ଗ୍ରାମର ନ୍ୟାୟ ମନ୍ଦିର :

ଭାଗବତ ଟୁଙ୍ଗିଟି ଗ୍ରାମର ଧର୍ମ ମନ୍ଦିର ଓ ନ୍ୟାୟ ମନ୍ଦିର । ଗାଁରେ ଯେତେ ଯାହା ଗଣ୍ଡଗୋଳ ହୁଏ ଏଠାରେ ସେ ସବୁର ବିଚାର କରାଯାଏ । ଗାଁ ଚୌକିଦାର ସନେଇ ମଳିକ ଘରଘର ବୁଲି ସମସ୍ତଙ୍କୁ ତାଗିଦ୍ କରିଦେଇ ଆସେ । ଲୋକେ ବିଲବାଡ଼ିରୁ ଫେରି ନିଜନିଜର ନିତ୍ୟକର୍ମ ଶେଷକରି ରାତ୍ରି ୯ ଟାରେ ଭାଗବତ ଘରଠାରେ ରୁଣ୍ଡ ହୁଅନ୍ତି । ଯାହାର ଯାହା ଅଭିଯୋଗ ଥାଏ ଏଠାରେ ପଡ଼େ । ଧର୍ମପୀଠରେ ମିଛ କହିବାକୁ କେହି ସାହସ କରନ୍ତି ନାହିଁ । ଗାଁର ମୁଖିଆ ଲୋକଙ୍କୁ ଅନ୍ୟମାନେ ସମ୍ମାନ

ଦିଅନ୍ତି । ସେମାନେ ନିରପେକ୍ଷ ବିଚାର କରନ୍ତି । ଦୋଷ ଅନୁଯାୟୀ ଯାହା ଦଣ୍ଡ ବିଧାନ କରାଯାଏ ଉଭୟ ପକ୍ଷ ମାନି ନିଅନ୍ତି । ଗାଁରେ ଯାହା ଯାହା କରିବାକୁ ଥାଏ ଏଠାରେ ସିଦ୍ଧାନ୍ତ ନିଆଯାଏ । ଆଖପାଖ ଗାଁମାନଙ୍କ ମଧ୍ୟରେ ଆମ ଗାଁର ଓଜନ ଥାଏ । ସାନ ବଡ଼ମାନଙ୍କୁ ଖାତିରି କରୁଥିଲେ । ବେଳେବେଳେ ଭାଗବତ ଘରେ ଅତିଥି ଅଭ୍ୟାଗତ ଆଶ୍ରୟ ନେଉଥିଲେ । ବହୁ ପୂଜା ଭାଗବତ ଘର ବାରଣ୍ଡାରେ ପାଳିତ ହେଉଥିଲା । ବସନ୍ତ ରାସ ଆଡ଼ମ୍ବରରେ ପାଳିତ ହୁଏ । ମୁଁ ପ୍ରାୟ ସବୁ ମେଳା ମହୋତ୍ସବରେ ଯୋଗଦେଉଥିଲି । ଏବେ ଗାଁ ଗହଳିରେ ଭାଗବତ ଘର ଅଛି, କିନ୍ତୁ ପୂର୍ବର ସେ ଆତ୍ମୀୟତା ନାହିଁ ।

## ଭାଗବତ ଟୁଙ୍ଗିର ଅବକ୍ଷୟ :

ସ୍ୱାଧୀନତା ପରେ ସରକାରଙ୍କ ସହାୟତାରେ ଗାଁର ଯୁବକମାନେ କ୍ଲବ୍‌ଘର ଗଢ଼ିଲେ, ରେଡ଼ିଓ ରଖିଲେ, ସମ୍ବାଦପତ୍ର ମଗାଇଲେ । । ଦିନାକେତେ ଭଲ ଚାଲିଲା । ଏବେ ଭଟ୍ଟା ପଡିଯାଇଛି । ଦୁର୍ନୀତିର କାୟା ମାଡ଼ି ମାଡ଼ି ଚାଲିଛି । ୫୦୦ ବର୍ଷ ହେଲା ଯେଉଁ ଭାଗବତ ଟୁଙ୍ଗି ଅଲକ୍ଷ୍ୟରେ ଗାଁର ସାକ୍ଷର ସଂଖ୍ୟା ବଢ଼ାଉଥିଲା, ଏବେ ସେପରି ନାହିଁ । ପ୍ରତି ଗାଁରେ ମତଭେଦ, ଦିଫାଙ୍କ, ତିନିଫାଙ୍କ । କୁଜିନେତା ସବୁ ଗଣ୍ଡଗୋଳର ମୂଳ କାରଣ । ଗାଁମାନଙ୍କରେ ପୂର୍ବ ଶିରୀ ତ ନାହିଁ କିନ୍ତୁ ଅଶାନ୍ତ ପରିବେଶ ସଦା ଲାଗି ରହିଛି । ରାଜନୀତି, ଟାଉଟରି ଗୋଟାପଣେ ଗାଁ ଗାଁରେ ଦୁର୍ନୀତିର ମଞ୍ଜି ବୁଣି ଦେଉଛି । ସବୁ ଗାଁରେ ପ୍ରତାରଣା, ଖାଲି ପ୍ରତାରଣା । ଧର୍ମୀୟ ଚେତନାର ଘୋର ଅଭାବ । ଅପାଠୁଆ, ଦରପାଠୁଆ, ବେକାର ସଂଖ୍ୟା ବଢୁଛି । ପର୍ବପର୍ବାଣିରେ ପିଲାଏ ନାଲି ପାଣିର ଆଶ୍ରୟ ନେଲେଣି । ଏପରି ଯୁବଶକ୍ତିକୁ ଉପଯୁକ୍ତ ଦିଗ୍‌ଦର୍ଶନ ଦେଲେ ଦେଶର ନିଶ୍ଚୟ ମଙ୍ଗଳ ସାଧିତ ହେବ ।

## ଗାଁ ଲୋକଙ୍କ ବେଉସା :

ଗାଁର ସବୁଲୋକ ଚାଲାକ ଚତୁର ନଥିଲେ । ମେଳା ମହୋତ୍ସବରେ, ବିବାହ ବ୍ରତ ବେଳେ ଦାଣ୍ଡୁଆ ଲୋକେ ସେମାନଙ୍କୁ ସାହାଯ୍ୟ କରୁଥିଲେ ।  ମୋର ମନେଅଛି ଆମ ଗାଁର ଜଣେ ମାମଲତକାରିଆ ଭାଇ ପୁରୀ, କଟକ ଯା'ନ୍ତି । ସେତେବେଳେ ହୋଟେଲ ସଭ୍ୟତା ଗଢ଼ି ଉଠୁଥାଏ । ପୁରୀ, କଟକ, ଜଟଣୀରେ ହୋଟେଲ ଥାଏ । ସାଧାରଣ ମିଲ୍ ଗୋଟିକ ଦୁଇଅଣା ବା ଦଶପଇସା ଥିଲା । କେତେକ ଉଚ୍ଚବର୍ଣ୍ଣର ଲୋକ ହୋଟେଲରେ ଖାଇବାକୁ ମଙ୍ଗନ୍ତି ନାହିଁ । ଆମ ଗାଁର ସେ ଭାଇ ହୋଟେଲରେ

ଖାଆନ୍ତି । ତେଣୁ କଳି ଲାଗିଲେ ମାଇପେ ତାଙ୍କୁ ହୋଟେଲ ଖିଆ ବୋଲି ଗାଳି ଦିଅନ୍ତି । ହୋଟେଲରେ ଯେ ଖାଏ ତାର ଜାତି ଚାଲିଯାଏ ବୋଲି ଗାଁ ଲୋକ ଭାବନ୍ତି । ଏବେ ହୋଟେଲର ସଂଖ୍ୟା ଦ୍ରୁତ ଗତିରେ ବଢ଼ିଚାଲିଛି । ଏପରିକି ବାଟକଡ଼ରେ ଛକ ଜାଗାମାନଙ୍କରେ ମଧ୍ୟ । ଏବେ ଲୋକେ ବିଶେଷତଃ ଧନୀ, ମାନୀ ଲୋକେ ହୋଟେଲରେ ଖାଇବାକୁ ପସନ୍ଦ କରନ୍ତି କିନ୍ତୁ ବାସନକୁସନ ପରିଷ୍କାର ନ ହେବାଦ୍ୱାରା ରୋଗ ବଢ଼ିବାରେ ଲାଗୁଛି । ସମସ୍ତେ ସେହି ବାସନରେ ଖାଇବାଦ୍ୱାରା ମାରାତ୍ମକ ରୋଗର ଶିକାର ହେଉଛନ୍ତି ।

## ଗ୍ରାମ ଦୋକାନ :

ଆର୍ଥିକ ଅନଟନ ହେତୁ ଗାଁ ଲୋକମାନେ ସର୍ବଦା ଜଟଣୀ ବଜାରରୁ ଗୃହର ଆବଶ୍ୟକୀୟ ସଉଦା କିଣିପାରନ୍ତି ନାହିଁ । ସେମାନଙ୍କୁ ଗାଁ ଦୋକାନୀମାନଙ୍କ ଉପରେ ନିର୍ଭର କରିବାକୁ ପଡିଥାଏ । ମୋ ପିଲାଦିନେ ଆମ ଗାଁର ଦୁଇ ତିନିଜଣ ସ୍ଥାନେ ସ୍ଥାନେ ଖୁଚୁରା ଦୋକାନ ଖୋଲିଥିଲେ । ସେମାନଙ୍କ ଭିତରୁ ସୁବଳ ବେହେରା ଜଣେ । ସୁବଳ ବେହେରା ତାଙ୍କ ଦାଣ୍ଡପିଣ୍ଡାରେ ଗୋଟିଏ କଣକୁ କାନ୍ଥଦେଇ ୨୪ ବର୍ଗଫୁଟିଆ ଦୋକାନଘରଟିଏ ତିଆରି କରିଥିଲେ । ସେଠାରେ ନିତ୍ୟବ୍ୟବହାର୍ଯ୍ୟ ଘରକରଣା ଜିନିଷ– ତେଲ, ଲୁଣ, କିରାସିନି, ମସଲାମସଲି, ଧୂଆଁପତ୍ର, ଗୁଡ, ଗୁଆ, ଗୋଟାମୁଗ ପ୍ରଭୃତି ସାଇତି ରଖିଥିଲେ ଓ ପାଠପଢ଼ା ପିଲାଙ୍କ ପାଇଁ କାଗଜ, ପରକଲମ, କାଳି, ସିଲଟ ପ୍ରଭୃତି ରଖୁଥିଲେ । ସଉଦା କିଣିବା ପାଇଁ ପଇସା, ଅଧଲା, ପାହୁଲାର ବ୍ୟବହାର ହେଉଥିଲା । କେହିକେହି ମାଣେ କି ଦି ମାଣେ ଧାନ ଆଣି ବି ସଉଦା ନେଉଥିଲେ । ମୁଁ କେତେଥର ଦେଖିଛି ଆମ ଗାଁ ସଅର ସାହିର ସଉରୁଣୀମାନେ ସନ୍ଧ୍ୟାବେଳେ ସଉଦା ନେବାକୁ ଆସୁଥିଲେ । ପଇସାଟିଏ ଦେଇ ପାଞ୍ଚଟି ସଉଦା କିଣୁଥିଲେ । ପଇସାଟିର ଦାମ୍ ବି ପାଞ୍ଚବୋଡ଼ି ଥିଲା । ଫର୍ଦ୍ଦେ ବାଲି କାଗଜର ଦାମ ପୁରୁଣା ୬ ପଇସା ଥିଲା । ଦୋକାନୀ ସବୁବେଳେ ଦୋକାନ ଖୋଲୁନଥିଲା । ପ୍ରତିଦିନ ସନ୍ଧ୍ୟା ସମୟରେ ଘଣ୍ଟାଏ ବା ଦିଘଣ୍ଟା କାରବାର ଭଲ ଚାଲୁଥିଲା । ଅନ୍ୟ ସମୟରେ ବେହେରା କୁଆଡ଼େ କାମଧନ୍ଦାକୁ ଯାଇଥାଏ । ତା ବୋଉ ସରଦୀ ନାନୀ ଦୋକାନ ଖୋଲନ୍ତି । ବେଳେବେଳେ ଦୋକାନ ଖୋଲି ବୁଢ଼ୀ ଘରକାମରେ ବ୍ୟସ୍ତ ରହି ଉଠନ୍ତି ନାହିଁ । ଧାନ ବା ପଇସା ରଖି ତାକୁ କହି ଦିଅନ୍ତି ଏତିକି ନେଇ ଯା, ମୁଁ ଯାଇପାରୁନାହିଁ । ନିକିତିରେ ଓଜନ କରିବାକୁ ନ ପଡ଼ିଲେ କ୍ରେତା ଦେଖିକରି ନେଇଯାଏ । ବୁଢ଼ୀକୁ ଦେଖାଏ । ବୁଢ଼ୀ କହେ ହଉ

ଯା' । ଅବଶ୍ୟ ଏପରି କାରବାର ଅନ୍ୟ କେଉଁଠି କରାଯାଏ ନାହିଁ । କିନ୍ତୁ ଗାଉଁଲି ଲୋକେ ଖୁବ୍ ସରଳ ଓ ସଚ୍ଚୋଟ ଥିଲେ । ପରକୁ ଠକିବା ପ୍ରବୃତ୍ତି ନଥିଲା । ଲୋକମାନଙ୍କର ନୈତିକ ମୂଲ୍ୟବୋଧ ଉଚ୍ଚରେ ଥିଲା ।

## ନିମ୍ନଜାତି ଲୋକଙ୍କର ଚଳଣି :

ପିଲାଦିନେ ଗାଁ ଭିରତକୁ ହାଡି, ବାଉରି, କଣ୍ଡରା, ସଅର ପ୍ରଭୃତି ନିମ୍ନଜାତିର ଲୋକ ଆସିଲେ ଯେଉଁଠାରେ ଗାଁ ଲୋକେ ଏକତ୍ର ବସି କିଛି ଆଲୋଚନା କରୁଥାନ୍ତି, ସେହି ପଥ ଅତିକ୍ରମ କଲାବେଳେ ସିଧାହୋଇ ଚାଲନ୍ତି ନାହିଁ । ନଇଁ ନଇଁ ହାତ ଦେଇ ଦେଇ ଯାଆନ୍ତି । ସେମାନେ ନିଜକୁ ନ୍ୟୁନ ମନେ କରିବାରୁ ଏପରି ଘଟିଥାଏ । ସେମାନେ ନମ୍ର, ଡରକୁଳା । ହଜାର ହଜାର ବର୍ଷ ହେଲାଣି ବିଶେଷତଃ ଉଚ୍ଚ ହିନ୍ଦୁମାନେ ସେମାନଙ୍କୁ ହୀନଚକ୍ଷୁରେ ଦେଖିଥାଆନ୍ତି । ଅନ୍ୟ ସ୍ପୃଶ୍ୟ ହିନ୍ଦୁମାନେ ବ୍ରାହ୍ମଣଙ୍କୁ ଅନୁକରଣ କରିଥାନ୍ତି । ଏବେ ସ୍ୱାଧୀନ ଭାରତରେ ବହୁ ପରିବର୍ତ୍ତନ ହେଲାଣି । ତଥାପି ପୂର୍ବ ପରମ୍ପରା କିଛି କିଛି ଚଳୁଛି ।

ଗାଁରେ ଅଣ୍ଡିରା ବାଛୁରି ବଳଦ ହେବାକୁ ଥିଲେ ହାଡି ଦିନବାର ଦେଖି ଅଣ୍ଡିରା ବାଛୁରିର ମୁଷ୍କ ଛେଦନ କରେ । ମାଇପେ ସେ ବାଛୁରିକୁ ୨୧ ଦିନ ଛୁଅନ୍ତି ନାହିଁ । ଗାଁର ଗାଈ ବଳଦ ମରିଗଲେ ହାଡ଼ି ଆସି ସେସବୁ ନେଇଯାଏ । ବିବାହ ବ୍ରତରେ ହାଡ଼ି ବାଜା ବଜାଏ । ଶଙ୍ଖୁଆ ଶଙ୍ଖ ଫୁଙ୍କେ । ବାହାରେ ଦାଣ୍ଡପିଣ୍ଡାରେ ନଡ଼ା କୁଟା ପାରି ଶୁଏ । ସେମାନଙ୍କ ବିନା ସାହାଯ୍ୟରେ କୌଣସି ମାଙ୍ଗଳିକ କାର୍ଯ୍ୟ ସଂପନ୍ନ ହୁଏ ନାହିଁ । ଗୋପାଳମାନେ ସବାରି ପାଲିଙ୍କି କାନ୍ଧେଇ ବିବାହ ଉତ୍ସବରେ ପ୍ରଭୂତ ସାହାଯ୍ୟ କରନ୍ତି । ଆମ ଗାଁ ପାଖ ଛତାବରର ହାଡ଼ିଆଣୀମାନେ ଶୀତଦିନେ ପାଖ ଜଙ୍ଗଲରୁ ଟୋକେଇଏ ଲେଖାଏଁ ପାଚିଲା କେନ୍ଦୁ ଆଣି ଗାଁ ଦାଣ୍ଡରେ ବସି ବିକନ୍ତି । ସେମାନେ ପୂନିଅଁ ପର୍ବରେ ଟୋକେଇ, ବାଉଁଶିଆ, ଚାଙ୍ଗୁଡି ଏବଂ ଛାଞ୍ଚୁଣୀ ଦେଇ ପିଠାପଣା ନେଇଥାନ୍ତି । ଗାଁ ପାଖ ସଅର ସାହିର ସଉରୁଣୀମାନେ ମଧ୍ୟ ପିଠାପଣା ମାଗି ନିଅନ୍ତି । ସେମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥାଏ । ସମାଜର ସବୁଠାରୁ ତଳ ପାହାଚରେ ଥିବାରୁ ସେମାନଙ୍କୁ ବେଳେ ବେଳେ ଗଞ୍ଜଣା ସହିବାକୁ ପଡ଼ିଥାଏ । ସମାଜରେ ସେମାନେ ଦଳିତ ଜାତି ଥିବାରୁ ସେମାନେ ଉଚ୍ଚ ହିନ୍ଦୁଙ୍କ ଉପରେ ନିଶ୍ଚୟ କ୍ରୋଧାନ୍ୱିତ ହେଉଥିବେ । ନୀଚ କୁଳରେ ଜାତ ହେବାରୁ ନିଜକୁ ହୀନ ମନେକରୁଥିବେ । ସମାଜର ଏକ ବିରାଟ ଅଂଶ ଅସ୍ପୃଶ୍ୟ ରହିଲେ ସାମାଜର ପ୍ରଗତି ସାଧିତ ହୋଇପାରେ ନାହିଁ । ବହୁ ନୀଚ ହିନ୍ଦୁ ଖ୍ରୀଷ୍ଟିଆନ ଧର୍ମ ଅବଲମ୍ବନ କରିବାକୁ କୁଣ୍ଠିତ ହେଉନଥିଲେ ।

## ଏକ ଉଦାହରଣ :

ଆମ ଗାଁର ନିତେଇ ସେଠୀଙ୍କ ପୁଅ ଭଗବାନ ସେଠୀ ମୋ ସହିତ ଗାଁ ଚାଟଶାଳୀରେ ପଢୁଥିଲା । ଅବଧାନ ହେଉଛନ୍ତି ବ୍ରାହ୍ମଣ– ନାମ ଶ୍ରୀ ପୁରୁଷୋତ୍ତମ କର । ଭଗବାନ ସେଠୀ ଅସ୍ପୃଶ୍ୟ । ତେଣୁ ସେ ପିଲାଙ୍କ ମେଳରେ ନବସି ଦୁଆର ମୁହଁକୁ ଲାଗି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସେ । ଅବଧାନ ତାକୁ ସହଜରେ ବାଡ଼େଇ ପାରନ୍ତି ନାହିଁ । ଧଳାଲୁଗା ପିନ୍ଧି ତାକୁ ଛୁଇଁଲେ ତାହା ମାରା ହୋଇଯିବ । ତେଣୁ ଭଗବାନକୁ ପାଠ ନ ଆସିଲେ ଅବଧାନ ଗାମୁଛା ପିନ୍ଧି ବାଡ଼ାନ୍ତି । ବେଳେବେଳେ ତା ଉପରକୁ ବେତଟାକୁ ଫିଙ୍ଗନ୍ତି । ବ୍ରାହ୍ମଣମାନେ ଜାତି ହିସାବରେ ଶ୍ରେଷ୍ଠ, କିନ୍ତୁ ସଂକୀର୍ଣ୍ଣ ମନୋଭାବାପନ୍ନ ଏବଂ ରକ୍ଷଣଶୀଳ । ସେମାନଙ୍କ ଯୋଗୁ ହିନ୍ଦୁଧର୍ମର ସଂଖ୍ୟା କମିକମି ଆସୁଛି ।

## ଆମ ଗାଁ ସଅର ସାହି :

ଆମ ଗାଁ ପାଖେ ଏକ ସବର ସାହିଥିଲା । ଏବେ ଟିକିଏ ଦୂରରେ ଅଛି । ସେତେବେଳେ ସେମାନେ ଢେର ଅନୁନ୍ନତ ଥିଲେ । ଆମ ଗାଁ ଚାଟଶାଳୀକୁ ପଢ଼ିବାକୁ ଆସୁନଥିଲେ କି ଓଡ଼ିଆ ଭାଷା ଶୁଦ୍ଧଭାବରେ ଉଚ୍ଚାରଣ କରିପାରୁ ନଥିଲେ । ଏବେ କିନ୍ତୁ ସେମାନଙ୍କ ଭିତରୁ କେତେକ ପାଠଶାଠ ପଢ଼ି ଚାକିରି କରି ଆର୍ଥିକ ଭାବରେ ଉନ୍ନତ ସ୍ତରକୁ ଉଠିଆସିଲେଣି । ସେତେବେଳେ ଛୁଆଁ-ଅଛୁଆଁ ଭେଦଭାବ ଜୋରସୋରରେ ଥିଲା । ଏପରିକି ସଫା ଧଳାଲୁଗା ପିନ୍ଧି ବାହାରକୁ ଗଲେ ତାହା ଛୁଆଁ ହୋଇଯାଉଥିଲା । ଦାଣ୍ଡଘରେ ସେ ଲୁଗାକୁ ବଦଳି ଘରଭିତରକୁ ପ୍ରବେଶ କରିବାକୁ ପଡୁଥିଲା । ପିଲାମାନେ ହାଡି, କଣ୍ଡରା, ପାଣ, ବାଉରିକୁ ଛୁଇଁଲେ ମା'ମାନେ ସେମାନଙ୍କୁ ଗାଧୋଇବାକୁ ବାଧ କରୁଥିଲେ । ଅସ୍ପୃଶ୍ୟମାନେ ଗାଁ ଠାକୁରଘରେ ପଶିବାକୁ ସାହସ କରୁନଥିଲେ । ଠାକୁର ଘରେ ପ୍ରବେଶ କଲେ ତାଙ୍କ ବଂଶ ବୁଡ଼ିଯିବ ଏହି ଧାରଣା ସେମାନଙ୍କ ମନରେ ବଦ୍ଧମୂଳ ହୋଇ ରହିଥିଲା । ଅବଶ୍ୟ ମହାତ୍ମା ଗାନ୍ଧୀଙ୍କ ବହୁପୂର୍ବରୁ ମଧୁବାବୁ ଅଛବମାନଙ୍କୁ ଧରି ସେମାନଙ୍କ ମେଳରେ ରହି ପ୍ରସିଦ୍ଧ ଉତ୍କଳ ଜୋତା କାରଖାନା ଗଢ଼ିଥିଲେ ଏବଂ ସେମାନଙ୍କ ସଂଗେ ଏକତ୍ର ପାନଭୋଜନ କରୁଥିଲେ । ୧୯୩୪ ମସିହାରେ ଜାତିର ପିତା ମହାତ୍ମାଗାନ୍ଧୀ ସାରାଭାରତରେ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଚଳାଇଲେ । ତା'ର ପ୍ରଭାବରେ ଦେଶର ହାଡ଼ି, କଣ୍ଡରା ପ୍ରଭୃତି ଲୋକେ ଶିବମନ୍ଦିରରେ ପ୍ରବେଶ ନ କରିଥିଲେ ମଧ ପୂର୍ବାପେକ୍ଷା ନିର୍ଭୀକ ହେଲେଣି । ସେମାନଙ୍କ ଭିତରେ ଶିକ୍ଷାପ୍ରସାର ହେଲାଣି । ଗାଁ ଦାଣ୍ଡରେ ମୁଣ୍ଡଟେକି ବାଟ ଚାଲିଲେଣି । ଗାଁ ଦାଣ୍ଡରୁ ସେମାନେ ଆସି ଘର ବାରଣ୍ଡାରେ ବସିଲେଣି ।

ସେତେବେଳେ ଆମ ଗାଁରେ ଇଂରେଜ ପଢୁଆ ଲୋକ କେହି ନଥିଲେ । କେବଳ ନାରାୟଣ ମହାରଣାଙ୍କ ପୁତୁରା ବାବୁ ବଂଶୀଧର ମାଟ୍ରିକ ପର୍ଯ୍ୟନ୍ତ ପଢ଼ିଥିଲେ । ବାହାର ରାଇଜର କଥା ଗାଁ ଲୋକେ ବିଶେଷ କିଛି ଜାଣୁ ନଥିଲେ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ କଂଗ୍ରେସ ଆନ୍ଦୋଳନ ଜୋରସୋରରେ ଚାଲିଥିଲା । ଉତ୍କଳମଣି ଗୋପବନ୍ଧୁ ଦାସ ଓ ଜାତୀୟ ଗୌରବ ମଧୁସୂଦନ ଦାସଙ୍କ ନାମ ଓଡ଼ିଶାରେ ବିଖ୍ୟାତ ଥିଲା । ମଧୁବାବୁ ଓଡ଼ିଆମାନଙ୍କୁ ଗୋଟିଏ ପ୍ରଦେଶରେ ରଖିବାପାଇଁ ଚେଷ୍ଟାରୁ ବିରତ ନଥିଲେ । ମହାରଣାଙ୍କ ସାନଭାଇ ବାବୁ ରାମଚନ୍ଦ୍ର ମହାପାତ୍ର ଖଣ୍ଡିଏ ଉତ୍କଳ ଦୀପିକା ପତ୍ରିକା ମଗାଉଥିଲେ । ଆମ ଗାଁ ଲୋକେ ମଧୁବାବୁଙ୍କୁ ଦେଖି ନଥିଲେ, କିନ୍ତୁ ଲୋକମୁଖରେ ପ୍ରଚଳିତ ଥିଲା :

"ପାଠ ପଢ଼ିବି, ପାଠ ପଢ଼ିବି
ମଧୁବାବୁ ସଙ୍ଗେ ଲଢ଼ିବି,
କାଳିଆ ଘୋଡ଼ାରେ ଚଢ଼ିବି ।"

ଗାଁର ସାଧାରଣ ଲୋକେ ଟାହିଟାପରାରେ ପଢୁଆ ପିଲାମାନଙ୍କୁ ଦେଖେଇ ଏପରି ଗାଇଥାନ୍ତି, ମୋତେ ବି କହୁଥିଲେ । ସେହି ପ୍ରତିଭାଦୀପ୍ତ ମଧୁବାବୁଙ୍କ ସକାଶେ ଭାରତ ମାନଚିତ୍ରରେ ଓଡିଶା ସ୍ଥାନ ପାଇଲା ।

## ତତ୍କାଳୀନ ଖବରକାଗଜ :

ଉତ୍କଳ ଦୀପିକା ସମ୍ବାଦପତ୍ର ୧୮୬୬ ନଅଙ୍କ ଦୁର୍ଭିକ୍ଷ କାଳରେ କଟକରେ ଜନ୍ମଲାଭ କରିଥିଲା । କର୍ମବୀର ଶତାବ୍ଦୀପୁରୁଷ ଗୌରୀଶଙ୍କର ରାୟ ସେତେବେଳେ ପ୍ରପୀଡ଼ିତ ଲୋକଙ୍କର ଦୁଃଖ-ଦୁର୍ଦ୍ଦଶା ବିଦେଶୀ ସରକାର ଆଗରେ ଉପସ୍ଥାପନ କରିବାପାଇଁ ଏହି ମହାନ୍ ସଂବାଦପତ୍ର ପ୍ରକାଶ ପରିଥିଲେ । ପୁନଃ ଏହି ସମୟରେ ପୁରାତନ ଐତିହ୍ୟ-ସମ୍ପନ୍ନ ଓଡ଼ିଆ ଭାଷା ଏକ ଗଭୀର ସଂକଟର ସମ୍ମୁଖୀନ ହୋଇଥିଲା । "ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ" ବୋଲି ଦୁଇଜଣ ସଂକୀର୍ଣ୍ଣମନା ବଙ୍ଗାଳୀ ସମଗ୍ର ଓଡ଼ିଶାରେ ପ୍ରଚାର କଲେ । ଏହା ବଙ୍ଗଳାଭାଷାର ଉପଭାଷା ବୋଲି ବି କହିବାକୁ ଭୁଲିଲେ ନାହିଁ । ସେ ସମୟରେ ବଙ୍ଗାଳୀ କର୍ମଚାରୀମାନେ ଓଡ଼ିଶାରେ ଛାଇ ହୋଇଯାଇଥିଲେ, ଓଡ଼ିଶା ସେମାନଙ୍କର ଚରାଭୂଇଁ ଥିଲା । ଓଡ଼ିଆମାନଙ୍କୁ ସେମାନେ ହୀନଚକ୍ଷୁରେ ଦେଖୁଥିଲେ । ଓଡ଼ିଆମାନେ ବଙ୍ଗ, ବିହାର, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ପ୍ରଦେଶରେ ବିଛେଇ ହୋଇ ରହିଥିବାରୁ ସେମାନଙ୍କ ମଧ୍ୟରେ ଜାତୀୟତା ଭାବ ଜାତ ହୋଇନଥିଲା । କର୍ମବୀର

ଗୌରୀଶଙ୍କର ଓଡ଼ିଆଭାଷାକୁ ରକ୍ଷାକରିବା ପାଇଁ ପ୍ରିଣ୍ଟିଙ୍ଗ୍ ପ୍ରେସ୍ ଓ ଦୀପିକା ସ୍ଥାପନ କଲେ । ସେ ଏହି ପାଶୁପତ ଅସ୍ତ୍ର ସାହାଯ୍ୟରେ ସ୍ୱାର୍ଥପର ପରଶ୍ରୀକାତର ବଙ୍ଗାଳୀମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ଏବଂ ତାଙ୍କୁ ସାହାଯ୍ୟକଲେ ଭାଷାତତ୍ତ୍ୱବିତ୍ ଜନ୍ ବୀମସ୍ ଓ ତତ୍କାଳୀନ ପ୍ରଶାସକ ରେଭେନ୍ସା ସାହେବ ଓ ବ୍ୟାସକବି ଫକୀରମୋହନ ସେନାପତି । ଶେଷରେ ଓଡ଼ିଆ ଭାଷା ବଞ୍ଚିରହିଲା । ୧୯୩୨ ମସିହା ବେଳକୁ ଏହି ସଂବାଦପତ୍ର ଗାଁ ଗହଳିରୁ ଅନ୍ତର୍ଦ୍ଧାନ ହେଲାଣି । ଯେଉଁ ମହାନ୍ ବ୍ୟକ୍ତି ବଙ୍ଗାଳୀମାନଙ୍କ କବଳରୁ ଓଡ଼ିଆଭାଷାକୁ ରକ୍ଷା କରିଥିଲେ ଗାଁ ଗହଳର କେତେଜଣ ଓଡ଼ିଆ ଭାଷାକୁ ଚିହ୍ନନ୍ତି ?

## ଗ୍ରାମ ଚାଟଶାଳୀ :

ଗ୍ରାମର ପୂର୍ବଦିଗରେ ହୀରା ସାଗର କୂଳରେ ମହାରଣାଙ୍କ ଦୁଇବଖରିଆ ଚାଳ ଛପର ଗୃହରେ ନିମ୍ନ ପ୍ରାଥମିକ ବିଦ୍ୟାଳୟଟି ଚାଲିଥାଏ । ବିଦ୍ୟାଳୟଟି ୧୯୦୨ ମସିହାରେ ପ୍ରତିଷ୍ଠା କରିବାରେ ମହାରଣାଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ଏବେ ସେ ସ୍ଥାନରେ ସ୍କୁଲଟି ନାହିଁ । ୧୯୩୬ ମସିହାରେ ଗାଁର ପଶ୍ଚିମତରଫ ରାସ୍ତାକଡ଼ରେ ଏକ କୋଠାଘରେ ସ୍କୁଲଟି ଚାଲିଲା । ବର୍ତ୍ତମାନ ସେ ସ୍କୁଲଟି ଏକ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ପରିଣତ ହୋଇଛି । ଜଣେ ଶିକ୍ଷକ ପରିବର୍ତ୍ତେ ଦୁଇଜଣ ଶିକ୍ଷକ ଅଛନ୍ତି । ଶ୍ରୀ ପୁରୁଷୋତ୍ତମ କର ୧୯୧୧ ମସିହାରେ ଆମ ଗାଁରେ ଶିକ୍ଷକତା କଲେ । ୧୯୨୫ ମସିହାଠାରୁ ୧୯୩୨ ମସିହା ପର୍ଯ୍ୟନ୍ତ ମୁଁ ତାଙ୍କ ପାଖରେ ଦୁଇବଖୁରିଆ ଚାଳଘରେ ପଢୁଥିଲି । ପିଲାଙ୍କ ଭିତରେ ମୁଁ ଟିକିଏ ଡେଙ୍ଗା ଥିଲି । ଚାଟଶାଳୀରେ ମୁଁ ସର୍ବପ୍ରଥମେ ପହଞ୍ଚୁଥିଲି । ଘରଘର ବୁଲି ପିଲାମାନଙ୍କୁ ଡାକିବା ପାଇଁ ଅବଧାନ ମୋତେ ପଠାନ୍ତି । କୌଣସି ଥିଲାବାଲା ପିଲାଙ୍କୁ ସେ ପଠାନ୍ତି ନାହିଁ । ଚାଟଶାଳୀରେ ପିଲାସଂଖ୍ୟା ୪୫ ବା ୫୦ ଭିତରେ । ସେମାନଙ୍କ ମଧ୍ୟରୁ ଝିଅପିଲାଙ୍କ ସଂଖ୍ୟା ପ୍ରାୟ ୧୫ଜଣ । ଆମ ଗାଁର ଝିଅପିଲାମାନେ ପାଠ ପଢୁଥିଲେ କିନ୍ତୁ ଆମ ଗାଁକୁ ବୋହୂ ହୋଇ ଆସୁଥିବା ଝିଅପିଲାମାନେ ନିରକ୍ଷର । ଲୋକେ କହନ୍ତି ଝିଅପିଲା ଯେତେ ପାଠ ପଢ଼ିଲେ ବି ଚୁଲିମୁଣ୍ଡକୁ । ଆମ ଗାଁର ପୂର୍ବତନ ସରବରାକାର ଶ୍ରୀ ଗୋପାଳ ଚନ୍ଦ୍ର ପାଢଶାଣୀ ସର୍ବପ୍ରଥମ ତାଙ୍କ ଝିଅକୁ ପାଠ ପଢ଼ିବାକୁ ଛାଡ଼ିବାରୁ ଅନ୍ୟମାନେ ତାଙ୍କୁ ଅନୁକରଣ କରିଥିଲେ । ପୁଅ ପିଲାମାନେ ଗାମୁଛା ପିନ୍ଧିକରି ଓ ଝିଅପିଲାମାନେ ଅପେକ୍ଷାକୃତ ଲମ୍ବା ମୁଗେଇ ଗାମୁଛା ପିନ୍ଧିକରି ଆସୁଥିଲେ । ସିଲଟର ବ୍ୟବହାର ବେଶି ଥିଲା । ଭୂଇଁତଳେ ଲେଖିବାକୁ ଲମ୍ବା କୋଚିଲା

ଖଡ଼ି ବ୍ୟବହୃତ ହେଉଥିଲା । ମଧୁ ବର୍ଣ୍ଣବୋଧ ପଢ଼ାଯାଉଥିଲା । ୨ୟ, ୩ୟ ଶ୍ରେଣୀରେ ଚନ୍ଦ୍ରମୋହନ ମହାରଣାଙ୍କ କଥାବଳି ପଢ଼ାଯାଉଥିଲା ।

## ଗାଁ ଅବଧାନ :

ଅବଧାନଙ୍କ ରୋଷେଇ ବସିବାବେଳେ ପିଲାମାନେ ଢାଳରେ ମହାରଣାଙ୍କ ବାଡି କୂଅରୁ ପାଣି ଆଣି ଦିଅନ୍ତି । ହୀରା ସାଗରରେ ଅବଧାନଙ୍କ ବାସନ ମାଜିମୁଜି ଆଣନ୍ତି । ପିଲାମାନେ ପାଳିକରି ଅବଧାନଙ୍କୁ ଛଞ୍ଚା ଦିଅନ୍ତି । ଗାଁର ସବୁ ପିଲାଙ୍କ ଅବସ୍ଥା ସ୍ୱଚ୍ଛଳ ନଥାଏ । ସେମାନେ ପ୍ରତିଦିନ ଡାଲି ଖାଆନ୍ତି ନାହିଁ । କୁଣିଆ ମଇତ୍ର ଆସିବା ବେଳେ ବା ଅବଧାନଙ୍କୁ ପାଳି ଦେଲାବେଳେ ସୁବଳ ବେହେରା ଦୋକାନରୁ ଗୋଟା ମୁଗ କିଣିଆଣି ଡାଲି କରି ଦିଅନ୍ତି । ଗାଁ ଲୋକେ ଅବଧାନଙ୍କୁ ଖୁବ୍ ଭକ୍ତି କରନ୍ତି, ଖାତିର୍ ବି କରନ୍ତି ।

ଅବଧାନଙ୍କ ଯୋଗ୍ୟତା ଭର୍ଣ୍ଣାକୁଲାର, ୭ମ ପାଠପଢ଼ି ଇ.ଟି. ପାସ୍ । ଗାଁର ନ୍ୟାୟ ନିଶାପରେ, ମେଳା ମହୋତ୍ସବରେ ଅବଧାନ ଭାଗ ନିଅନ୍ତି । ସେ ବ୍ରାହ୍ମଣ ହୋଇଥିବାରୁ ଗାଁରେ ତାଙ୍କର ବେଶି ଖାତିରି । ବିବାହ ବ୍ରତରେ ଅବଧାନଙ୍କୁ ସ୍ୱତନ୍ତ୍ର ଯୋଡ଼ ଦିଆଯାଏ । ଅବଧାନଙ୍କର ଗଣିତ ଓ ସାହିତ୍ୟ ଜ୍ଞାନ ଅଧିକ । ଗାଁଟା ଖଣ୍ଡେଇତିଆ ଗାଁ । ହାଣୁଆ ଜାତି । ଟିକିଏ ଭୁଲ୍ ଦେଖିଲେ ହାଡ଼ ଗୋଡ଼ ଭାଙ୍ଗିଦେବେ । କିନ୍ତୁ ଅବଧାନଙ୍କ କଥା ତଳେ ପକେଇ ଦିଅନ୍ତି ନାହିଁ ।

## ଗ୍ରାମର ସାଧାରଣ ଅଧିବାସୀ :

ଗାଁ ଲୋକମାନଙ୍କ ମଧ୍ୟରେ ଅଧିକାଂଶ ନିରକ୍ଷର । ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ସେମାନଙ୍କର ବିଶେଷ ଧାରଣା ନଥିଲା । ଗାଁଟି ଗହୀର ମଝିରେ ଥିବାରୁ ଗ୍ରାମବାସୀ ଅଗଭୀର କୂପରୁ ପାନୀୟ ଜଳ ବ୍ୟବହାର କରନ୍ତି । ବର୍ଷାଦିନେ ଝାଡ଼ା ଫେରିବା ଏକ ସମସ୍ୟା ରୂପେ ଦେଖାଦିଏ । ଚାରିଆଡ଼େ ପାଣିରେ ବୁଡ଼ିଯାଏ । ଗାଁ ଦାଣ୍ଡ କାଦୁଅ । ଚାରିପାଖ ପାଣି ଚପର ଚପର । ଧାନ ବିଲ, ମାଟି ସଡ଼କ କରରେ ଲୋକେ ଝାଡ଼ା ଫେରନ୍ତି । ପଡ଼ିଆ ବୋଲି କିଛି ନଥାଏ । ପଥଚାରୀ ସଡ଼କରେ ଗଲାବେଳେ ହୁସିଆର ହୋଇ ଯାଆନ୍ତି । ଗାଁ ମହାଜନ ତାଙ୍କ ସ୍ତ୍ରୀ ପିଲାଙ୍କ ପାଇଁ ପାଇଖାନାର ବ୍ୟବସ୍ଥା କରିଥିଲେ, ମାତ୍ର ତାହା ସ୍ଥାୟୀ ନୁହେଁ । ପାଇଖାନାରେ ଝାଡ଼ାଯିବା ଅପେକ୍ଷା ବାହାରେ ଝାଡ଼ାଫେରି ଯିବାକୁ ଲୋକେ ଅଧିକ ପସନ୍ଦ କରନ୍ତି । ଏବେ ୮୦ ବର୍ଷରେ ମଧ ଗାଁର

ଅବସ୍ଥା ସେଇଆ । ନିଜ ନିଜ ବାଡ଼ିରେ ବରପାଲି ପକେଇବା ସମ୍ଭବ ହୋଇନାହିଁ । ଆମ ଗାଁର ଅବସ୍ଥା ଯେ ଏଇଆ ତା ନୁହେଁ, ସମଗ୍ର ଦେଶ ପୁରପଲ୍ଲୀର ଅବସ୍ଥା ସେଇଆ । ସହର, ବଜାରରେ ମଧ ଏପରିକି କଟକ, ବ୍ରହ୍ମପୁର, ଭୁବନେଶ୍ୱର ସହରରେ ବାହାରେ, ରାସ୍ତାକଡ଼ରେ, ପୋଖରୀ ହୁଡ଼ାରେ କେତେକେ ମଳତ୍ୟାଗ କରୁଛନ୍ତି । ଲୋକଙ୍କର ସ୍ୱାସ୍ଥ୍ୟଗତ ଚେତନା ଜାଗ୍ରତ ନହେଲେ, ପରିବେଶ ଜ୍ଞାନ ବୃଦ୍ଧି ନହେଲେ, ଏପରି କୁଅଭ୍ୟାସ ସମାଜରୁ ଦୂର ହେବନାହିଁ । ଏଣେତେଣେ ଝାଡ଼ା ଫେରିଲେ, ପୋଖରୀ ହୁଡ଼ାରେ ଝାଡ଼ା ବସିଲେ ବର୍ଷାଦିନେ ଧୋଇହୋଇ ପୋଖରୀ ପାଣିରେ ମିଶେ । ଲୋକେ ସେ ପାଣି ବ୍ୟବହାର କରନ୍ତି । ତେଣୁ ବେଳେବେଳେ ଗାଁମାନଙ୍କରେ ମହାମାରୀ ଦେଖାଦିଏ । ଭୀଷଣ ଆକାର ଧାରଣ କରେ । ହଇଜା ଆରମ୍ଭ ହେଲେ ଛାଡିବାକୁ ଡେରିହୁଏ । ସାରା ଗାଁରେ କୋକୁଆଭୟ ସୃଷ୍ଟିହୁଏ ।

## ଲୋକଙ୍କ ଅନ୍ଧବିଶ୍ୱାସ :

ହଇଜା ଲାଗିଲେ ଆମ ଗାଁ ଲୋକେ ଯୋଗମାୟା ଠାକୁରାଣୀଙ୍କୁ ଲଗାନ୍ତି । ଗାଁ ମୁଣ୍ଡ ପୋଖରୀ କୂଳେ ଯୋଗମାୟା ଠାକୁରାଣୀଙ୍କ ମନ୍ଦିର । ମନ୍ଦିରଟି ଖିଲାଣଯୁକ୍ତ ମାଙ୍କଡ଼ା ପଥରରେ ତିଆରି । ମନ୍ଦିର ଭିତରେ ଖଣ୍ଡେ ଆୟତାକାର ବିଶିଷ୍ଟ ପଥର ଦିହରେ ସିନ୍ଦୂର ବୋଳା ଯାଇ ବହଳା ହୋଇଥାଏ । ପାଖରେ ଗୁଡ଼ିଏ ମାଟିଘୋଡ଼ା ସଜା ହୋଇ ରହିଥାଏ । କେତୋଟି ବି ଭାଙ୍ଗିଯାଇଥାଏ । ଠାକୁରାଣୀ ଭାରି ପ୍ରତାପୀ ବୋଲି ସମସ୍ତେ କହନ୍ତି । ଗାଁର ଧନୀ ବ୍ୟକ୍ତି ମହାରଣାଙ୍କର ଠାକୁରାଣୀ ଉପରେ ବଡ଼ ବିଶ୍ୱାସ । ମଳିମୁଣ୍ଡିଆ, ଗରିବର ବି ସେହି ବିଶ୍ୱାସ । ଯେ ଯେତେବେଳେ ଚାହିଁଲେ ଭୋଗ ଲଗାନ୍ତି । ମୁଁ କେତେଥର ମୁଢ଼ି, ଉଖୁଡ଼ା ଭୋଗ ଲଗେଇଛି । ଭୋଗ ଲଗାଇବାରେ ପୂଜକ ବ୍ରାହ୍ମଣର ଲୋଡ଼ା ନାହିଁ । ଠାକୁରାଣୀ ସବୁଭୋଗରେ ସନ୍ତୁଷ୍ଟ । ସଅର ସାହିର ଗୁଣ୍ଡୁଚି ନାହାକ ଯୋଗମାୟା ଠାକୁରାଣୀଙ୍କ କାଳିସୀ । ଗାଁର ହାନିଲାଭରେ କାଳିସୀଠାରେ ଦିଅଁ ଲାଗେ । ହଇଜା ସମୟରେ ଲୋକେ ଭୟଭୀତ ହୁଅନ୍ତି । ରାତି ହେଉହେଉ ତାଟି କବାଟ ପଡ଼ିଯାଏ । କେହି ବାହାରକୁ ବାହାରନ୍ତି ନାହିଁ । କିଏ ମଲା ହଠାତ୍ ଜଣାପଡ଼େ ନାହିଁ । ବିଲୁଆ, କୁକୁରଙ୍କ ବିକଟାଳ ରବ ଭୟକୁ ବହୁ ପରିମାଣରେ ବଢ଼େଇଦିଏ । ଏ ଦୁର୍ଦ୍ଦିନରେ କାଳିସୀ ଲୋକଙ୍କର ସାହା ଭରସା । ଦୂରଦୂରାନ୍ତରରେ ସରକାରୀ ଡାକ୍ତରଖାନା । ଲୋକେ ବି ଏକଥା ଜାଣନ୍ତି ନାହିଁ । ବିପଦରୁ ରକ୍ଷା ପାଇବାପାଇଁ ଲୋକେ କାଳିସୀଙ୍କୁ ଲଗାନ୍ତି । କାଳିସୀ ହବିଷାନ୍ନ ଭକ୍ଷଣ କରିଥାଏ । ଗାଁ ଦାଣ୍ଡରେ ଉଭାହେଲେ ଖୋଳ କରତାଳି ବାଜେ, ହରିବୋଲ

ହୁଳହୁଳି ପଡ଼େ । ଠାକୁରାଣୀ କାଳିସୀକୁ ପଣାପାଣି ଦିଆଯାଏ, ଭୋରି ଦିଆଯାଏ । ନୂତନ ପଢୁଆ ଲୋକେ ଠାକୁରାଣୀଙ୍କୁ ବି ପୂଜା କରନ୍ତି, ଭକ୍ତି କରନ୍ତି । ଗାଁଟାଯାକ ନଗରକୀର୍ତ୍ତନ ହୁଏ । ସମସ୍ତେ କାଳିସୀ ପଛେ ପଛେ ଚାଲିଥାନ୍ତି, ତା' ବେକରେ ଗଜରା ଫୁଲମାଳ ପଡ଼ିଥାଏ । କାଳିସୀ ବେତଖଣ୍ଡେ ଧରି କୁହାଟ ମାରି ଦ୍ୱାର ଦ୍ୱାର ବୁଲେ । ଠାକୁରାଣୀ କହେ,''ଅନ୍ୟାୟ ହୋଇଛି, ଏତେମୁଣ୍ଡ ନେବି, ନେବି'' ଲୋକେ ଛାନିଆଁ । ଧନୀ ବ୍ୟକ୍ତି ଜଣକ ଆଗରେ ବସିଥାଏ ଗୋଡ଼ତଳେ ପଡ଼ିଯାଏ,'ରକ୍ଷାକର ମା' ରକ୍ଷାକର' । ଶେଷରେ ଠାକୁରାଣୀ ଅଭୟ ଦିଏ । କୀର୍ତ୍ତନ ନାଦରେ ଗାଁ ଦାଣ୍ଡ ଫାଟିପଡ଼େ । ଦିନେ କୀର୍ତ୍ତନ ହୋଇ ବନ୍ଦ ହୁଏ ନାହିଁ । ଗାଁରେ ହଇଜା ଥିବା ପର୍ଯ୍ୟନ୍ତ କୀର୍ତ୍ତନ ଚାଲେ । ଲୋକଙ୍କ ମନରୁ ଭୟ ଦୂରହୁଏ । ଦୂରଦୂରାନ୍ତରୁ ଡାକ୍ତର, କମ୍ପାଉଣ୍ଡର ଆସି କୂଅ, ପୋଖରୀ ପାଣି ବିଶୋଧନ କରି ଦିଅନ୍ତି । ଲୋକଙ୍କୁ ସତର୍କ କରାଇ ଦିଅନ୍ତି । ପାଣି ଓ ମାଛ ପ୍ରତି ଦୃଷ୍ଟିଦେବାକୁ ତାଗିଦ୍ କରନ୍ତି ।

ମୋ ପିଲାଦିନେ ଆମ ଗାଁରେ ବା ପଡ଼ୋଶୀ ଗ୍ରାମରେ ଦୁଇ ତିନିଥର ହଇଜା ଲାଗିଛି । କେତେଲୋକ ମରିଛନ୍ତି । ଏବେ ଲୋକ ପାଠଶାଠ ପଢ଼ିଲେଣି । ସ୍ୱାସ୍ଥ୍ୟ ସଚେତନ ହେଲେଣି । ସହର ବଜାରରେ ଏପରିକି ବଡ଼ ଗାଁ ଛକମାନଙ୍କରେ ଡାକ୍ତର କବିରାଜ ରହିଲେଣି । ନୂଆ ନୂଆ ଔଷଧର ଉଦ୍ଭାବନ ହେଲାଣି । ହଇଜା, ବସନ୍ତର ପ୍ରକୋପ ଆଉ ନାହିଁ । ସ୍ୱାଧୀନତା ପରେ ପରେ ବହୁ ଶିକ୍ଷାନୁଷ୍ଠାନ ଗଢ଼ି ଉଠିଲାଣି । ଲୋକେ ରୋଗ ସମ୍ବନ୍ଧେ ବହୁ ପତ୍ରପତ୍ରିକା ପାଠ କଲେଣି । ହେଲେହେଁ ପରିବେଶ ପ୍ରତି ସତର୍କ ଦୃଷ୍ଟି ରଖୁନାହାଁନ୍ତି । ପରିବେଶ ନିର୍ମଳ ରହିଲେ ସ୍ୱାସ୍ଥ୍ୟ ଯେ ଭଲ ରହିବ ଏକଥା ହୃଦୟଙ୍ଗମ କରିବାକୁ ସମର୍ଥ ହେଉ ନାହାନ୍ତି ।

## ଯୋଗମାୟା ଠାକୁରାଣୀ ଓ ବଳି ପ୍ରଥା :

ଆମ ଗାଁ ଲୋକେ ଯୋଗମାୟା ଠାକୁରାଣୀଙ୍କୁ ଖୁବ୍ ମାନନ୍ତି । କେବଳ ହଇଜା ସମୟରେ ନୁହେଁ ଅନ୍ୟ ବିପଦ ଆପଦ ପଡ଼ିଲେ ଲୋକେ କି ପୁରୁଷ କି ସ୍ତ୍ରୀ ତାଙ୍କର ଶରଣ ପଶନ୍ତି । କାହାର ପୁଅଝିଅ ଶକ୍ତ ବେମାରରେ ପଡ଼ିଲେ, ଯେକୌଣସି ରୋଗ ହେଉ ସେ ଔଷଧ ପ୍ରୟୋଗ ନ କରି ସେଥିରୁ ବର୍ତ୍ତିବା ପାଇଁ ଠାକୁରାଣୀଙ୍କୁ ବୋଦା ଯାଚନ୍ତି । ବେଳେବେଳେ ଅତି ଆକୁଳରେ ମା'ମାନେ ଠାକୁରାଣୀଙ୍କୁ ଡାହାଣ, ବାଆଁଣ ବୋଦା ଯାଚନ୍ତି । ସେତେବେଳେ ଲୋକେ ବଇଦ, ଗାଁ କବିରାଜ, ଠୁଣୁକାଠୁଣିକି ଉପରେ ବେଶି ନିର୍ଭର କରୁଥିଲେ । ସର୍ବୋପରି ଗାଁ ଦେବତୀ ସେମାନଙ୍କର ସାହାଭରସା

ଥିଲେ । ଯେଉଁ ଅଣ୍ଡିରା ଛେଳିକୁ ବୋଦା ପକାଯାଏ ତା ମୁଣ୍ଡରେ ସିନ୍ଦୂର ମରାଯାଏ, ବେକରେ ଫୁଲମାଳ ପଡ଼େ । ପିଲାମାନେ ବୋଦା ପଛେପଛେ ଗୋଡ଼ାନ୍ତି । ଶନିବାର, ମଙ୍ଗଳବାର ବୋଦା ପକାଇବାର ପ୍ରଶସ୍ତ ଦିନ । ମୁଁ କେତେଥର ବୋଦା ପଛରେ ଯାଇଛି । ପ୍ରଥମେ ବୋଦାକୁ ଠାକୁରାଣୀଙ୍କ ପାଷାଣ ମୂର୍ତ୍ତି ପାଖକୁ ନିଆଯାଇ ସମର୍ପଣ କରାଯାଏ । ତତ୍‌ପରେ ନିତେଇ ସେଠି ବୋଦାକୁ ଠାକୁରାଣୀ ମନ୍ଦିର ସାମନା ଖୁଣ୍ଟରେ ବାନ୍ଧିଦିଏ । ସେତେବେଳକୁ ବୋଦା ଦେହରୁ ଅଧେ ରକ୍ତ ଶୁଖିଯାଇଥାଏ । ସେ ଆକୁଳ ନୟନରେ ବଲବଲ କରି ଚାହୁଁଥାଏ । ସେ ଦୃଶ୍ୟ ବଡ଼ କରୁଣ । ନିତେଇ ହାତେ ଲମ୍ବର ଏକ ଦାଢୁଆ କଟୁରି ତା' କାନ୍ଧରେ ପକାଇନିଏ । ତା' ନିଜ ଲୋକ ବୋଦାର ପଛଗୋଡ଼ ଦୁଇଟାକୁ ଜୋରରେ ଭିଡ଼ିଧରେ, ଛେଳି ମେଁ-ମେଁ ଶବ୍ଦକରି ସ୍ଥାନଟା କମ୍ପାଉଥାଏ । ସେ ତା' ବେକକୁ ଲୟରଖି ଏପରି ଚୋଟ ବସାଏ ଯେ ମୁଣ୍ଡଗଣ୍ଡି ଅଲଗା ହୋଇଯାଏ । ମୁଣ୍ଡଟା ଦୂରରେ ପଡ଼ି ଛଟପଟ ହୁଏ । ବଡ଼ ବୀଭତ୍ସ ଦୃଶ୍ୟ ସେ । ମୁଁ ଥରେ ମାତ୍ର ଏପରି ଦୃଶ୍ୟ ଦେଖିଥିଲି । ଆଉ କେବେ ଯିବାପରି ମନେହେଉ ନାହିଁ । ସେ (ଧୋବା) ମୁଣ୍ଡଟାକୁ ନିଏ । ମାଲିକ ଗଣ୍ଡିଟା ଗାଣ୍ଟୁଆରେ ନିଏ । ଗାଁଯାକ ମାଂସ ବାଣ୍ଟେ । ବୋଦାହଣା ଏକ ଭୟଙ୍କର ଦୃଶ୍ୟ । ବୋଦାହଣା କଟୁରି ସ୍ୱତନ୍ତ୍ର ଧରଣର । ସେ କଟୁରି ଦେଖିଲେ ଡରମାଡ଼େ । ବୋଦାହାଣି ନିତେଇ ସେଠି କଟୁରି ଧାରରେ ସରୁ ସଫାକନା ଗୁଡ଼ାଇ ଆରଥର ପାଇଁ ସାଇତି ରଖେ । ଏବେ ବଳି ପ୍ରଥା କେତେକ ସ୍ଥାନରେ ବିଶେଷତଃ ଗଡ଼ଜାତ ଅଞ୍ଚଳରେ ବିଶେଷଭାବେ ଦେଖାଯାଉଛି । ଶହ ଶହ ପଶୁ ସୋନପୁର ଠାକୁରାଣୀଙ୍କ ପାଖେ ବଳି ପଡ଼ି ସେଠା ଲୋକଙ୍କ ମନରେ ଆତଙ୍କ ସୃଷ୍ଟି କରିଛି । ସମ୍ବାଦପତ୍ରରେ ସେ ଦୃଶ୍ୟର ଫଟୋ ଦେଖିଲେ ଦେହ ଶିହରି ଉଠେ । ସାଧାରଣ ଲୋକଙ୍କ ମନରୁ ଅନ୍ଧବିଶ୍ୱାସ ଦୂରହୋଇ ନାହିଁ । ପ୍ରଶାସନ ଏ ପ୍ରଥା ବନ୍ଦକରିବାକୁ ପଦକ୍ଷେପ ନେଲେ ମଧ ପୁରୋହିତଙ୍କ ପ୍ରରୋଚନାରେ ପାଠୁଆ ଲୋକେ ସୁଦ୍ଧା ଏହି କୁପ୍ରଥାକୁ ସମର୍ଥନ କରୁଛନ୍ତି । ଏକବିଂଶ ଶତାବ୍ଦୀରେ ମଧ ଅନ୍ଧବିଶ୍ୱାସ ଆମ୍ଭକୁ ଗ୍ରାସ କରି ରହିଛି ।

### ଗାଁର ଶିବ ମନ୍ଦିର :

ଗାଁରେ ସମସ୍ତେ ବୈଷ୍ଣବଧର୍ମ ଗ୍ରହଣ କରିଥିଲେ ମଧ ଶିବଙ୍କୁ ପୂଜା କରନ୍ତି । କିନ୍ତୁ ଗାଁରେ ଶିବମନ୍ଦିର ନାହିଁ । ଗାଁଠାରୁ ଉତ୍ତରକୁ ଅଳ୍ପଦୂରରେ ଗହୀର ମଧରେ ଓଗାଳପଡ଼ା ମୌଜାରେ ଶ୍ରୀ ଶ୍ରୀ ମଙ୍ଗେଶ୍ୱର ମହାଦେବ ବିଜେ ହୋଇଛନ୍ତି । ମନ୍ଦିରର ଉତ୍ତର-ପଶ୍ଚିମ

ଓ ଦକ୍ଷିଣ ଦିଗରେ ପାର୍ବତୀ ଦେବୀ, ଶ୍ରୀ କାର୍ତ୍ତିକେୟ ଓ ଶ୍ରୀ ଗଣନାଥଙ୍କ ମୂର୍ତ୍ତି ବିଦ୍ୟମାନ । ମାତ୍ର ମୂର୍ତ୍ତିଗୁଡିକ ଖଣ୍ଡିଆଖାବରା । ଗାଁ ଶିକ୍ଷକ ପୁରୁଷୋତ୍ତମ କର କହନ୍ତି, "କଳାପାହାଡ଼ର ଅନୁଚରମାନେ ୧୫୬୮ ମସିହାରେ ଏହି ମୂର୍ତ୍ତିଗୁଡ଼ିକର ଅଙ୍ଗହାନି କରିଛନ୍ତି ।" ଏଥିରୁ ଜଣାପଡ଼େ ମୃଗେଶ୍ୱର ମନ୍ଦିର ୫୦୦ ବର୍ଷ ତଳର ପୁରାତନ ମନ୍ଦିର । ମନ୍ଦିରଟି ଓଗାଳପଡ଼ା ମୌଜାରେ ଅବସ୍ଥିତ ହେତୁ ସେ ଗ୍ରାମର ମାଳୀ, ପୂଜାରୀମାନଙ୍କର ଦୌରାତ୍ମ୍ୟ ବେଶି । ଆମ ଗାଁ ଲୋକେ ମେଳି, ମହୋତ୍ସବରେ ନାନା ପ୍ରକାରରେ ସାହାଯ୍ୟ କଲେ ମଧ୍ୟ ସେମାନଙ୍କ (ଓଗାଳପଡ଼ାବାସୀଙ୍କ) ଆଚରଣ ଉଚ୍ଛନ୍ଦରର ହୁଏ ନାହିଁ । କାର୍ତ୍ତିକ ମାସ ପ୍ରତ୍ୟେକ ଶନିବାର ଠାକୁରଙ୍କ ବେଢ଼ା ବୁଲାଯାଏ । ପାଖ ଆଖ ଗ୍ରାମ ବିଶେଷତଃ ଗୋବିନ୍ଦପୁର, ଛେଳଦା, ଓଗାଳପଡ଼ା, ଗୋପାଳପୁରର ଭକ୍ତମାନେ ରୁଣ୍ଡ ହୁଅନ୍ତି ଏବଂ ପ୍ରତ୍ୟେକ ଦିନ ହବିଷ୍ୟାଳୀ ମହାଦେବଙ୍କୁ ଦର୍ଶନକରି ପାଟ ଅଗଣା ଓଳାଇ ଘରକୁ ଫେରନ୍ତି । ମରଦ, ମାଇପେ ଶନିବାର ଉପାସ କରନ୍ତି । ମୋ ବୋଉ ତ ପ୍ରତିଦିନ ସେଠାକୁ ଯାଏ, ପୁଣି ଶନିବାର ଉପାସ କରେ । ସେଦିନ ଅପରାହ୍ଣରେ ପାଠପଢ଼ା ବନ୍ଦ । ମୁଁ ଗାଁ ପିଲାମାନଙ୍କ ସଙ୍ଗେ କଦଳୀ, ଉଖୁଡ଼ା ପ୍ରଭୃତି ଭୋଗ ନେଇ ଠାକୁରଙ୍କ ଗମ୍ଭୀରାଘରେ ବାସୁଆବଳଦ ପାଖେ ରଖିଦେଇ ବଉଳକୋଳି ଗଛରେ ଗଳମାଙ୍କୁଡ଼ି ଖେଳେ । ଆମ ଗାଁର କୀର୍ତ୍ତନମଣ୍ଡଳୀ ଏ ଉତ୍ସବରେ ମୁଖ୍ୟ ଭାଗନିଏ । ମହାଦେବଙ୍କ ବିଜେ ପ୍ରତିମା ମନ୍ଦିର ଚାରିପଟେ ବେଢ଼ା ବୁଲନ୍ତି । ଗଦେଇ ପଣ୍ଡା ଠାକୁରଙ୍କୁ ନୈବେଦ୍ୟ ଦେବାପରେ ମୁହଁସଞ୍ଜବେଳକୁ ପିଲାଙ୍କ ସହ ମୁଁ ଘରକୁ ଫେରେ । ତପ୍‌ରେ ବୋଉ ଭୋଗ ପାଇଲାପରେ ହବିଷାନ୍ନ ଭକ୍ଷଣ କରେ ।

ଦୋଳ ପୂର୍ଣ୍ଣମୀକୁ ସେହି ମୃଗେଶ୍ୱର ମହାଦେବ ଆମ ଗାଁରେ ଚାଚେରି ଭୋଗ ଖାଆନ୍ତି । ସେ ତ ଆମ ଗାଁ ଠାକୁର ନୁହଁନ୍ତି । ଓଗାଳପଡ଼ା ଅଧିବାସୀ ଆମ ଗାଁକୁ ଠାକୁରଙ୍କୁ ପଠେଇବା ପାଇଁ ବଡ଼ ହଇରାଣ କରନ୍ତି । ଆମ ଗାଁଲୋକ ଓଗାଳପଡ଼ା ଯାଇ ମାଳୀ, ପୂଜାରୀ ଓ ଭାଇପୁଅଙ୍କ ଦୁଆରେ ଅଧିଆ ପଡ଼ନ୍ତି । ଓଗାଳପଡ଼ା ପୂର୍ବେ ଏକ ସଉରିଗଡ଼ ଥିଲା । ତେଣୁ ଭାଇପୁଅ ଖଣ୍ଡେଇତ ପ୍ରଭାବ ସେଠାରେ ବେଶିଥିଲା । ଯଦି ଆମ ଗାଁରେ କିଛି ଅନ୍ୟାୟ ଅନୀତି ହୋଇଥାଏ ତାହାହେଲେ ସେମାନେ ଟଙ୍କା ଦାବି କରନ୍ତି । ଠାକୁର ଆସିବାକୁ ଡେରିହୁଏ । ରାତି ପାହିଲା ବେଳକୁ ଠାକୁର ଆସନ୍ତି ।

**ଭାଗବତ ଠାକୁର :**

ଏହିପରି ବହୁ ନିର୍ଯ୍ୟାତନା ଭୋଗ କରିବାରୁ ଏବେ ଗ୍ରାମବାସୀ ପୁରୀରୁ ରାଧାକୃଷ୍ଣ ଯୁଗଳମୂର୍ତ୍ତି ଅଣାଇ ଭାଗବତ ଘରେ ଅବସ୍ଥାପିତ କରେଇଛନ୍ତି । ଦୋଳ ଉତ୍ସବରେ ସେ

ଭୋଗ ଖାଉଛନ୍ତି । ଶୁଣିଛି ଏହି ଭୋଗଖିଆକୁ ନେଇ ଗାଁ ଗାଁ ମଧ୍ୟରେ ମାଲି ମକଦମା ସୃଷ୍ଟିହେଉଛି । ୧୪୪ ଧାରା ଜାରି ହେଉଛି । ଭୋଗଖିଆ ବି ବନ୍ଦ ହୋଇଯାଉଛି । ତେବେ ଏ କି ଠାକୁର, ଏ କି ଭୋଗଖିଆ, ଏ କେଉଁ ଠାକୁର ଭକ୍ତି ?

## ଗ୍ରାମ ବଇଦ ରାଧୁ ଅବଧାନ :

ସେତେବେଳେ ଡାକ୍ତରଖାନା ଏତେ ନଥିଲା କି ଡାକ୍ତର ନଥିଲେ । ବହୁଦୂରରେ ସହରମାନଙ୍କରେ ଡାକ୍ତର ଥାଆନ୍ତି । ଆମ ଗାଁ ମହାଜନ ନାରାୟଣ ମହାରଣାଙ୍କ ସ୍ୱତନ୍ତ୍ର କବିରାଜ ଥାଆନ୍ତି । ତାଙ୍କ ନାମ ରାଧୁ ଅବଧାନ । ତାଙ୍କ ଘର ହରିରାଜପୁର ନିକଟ ନିମବସନ୍ତ ଗାଆଁରେ । ସେତେବେଳେ ଖୋର୍ଦ୍ଧାରେ ଡାକ୍ତରଖାନା ଥାଏ । ଜଟଣୀ ସହରର ଅଭିବୃଦ୍ଧି ଘଟି ନଥାଏ । ରାଧୁ ଅବଧାନ ମହାରଣାଙ୍କ ଘରୋଇ ଚିକିତ୍ସକ । ଗାଁର ଅନ୍ୟ କାହାର ରୋଗ ହେଲେ ସେ ରାଧୁ ଅବଧାନଙ୍କୁ ଡାକନ୍ତି । ରାଧୁ ଅବଧାନ ଦେଖିବାକୁ ଡୋଫା ଗୋରା ଓ ପୃଥୁଳକାୟ । ଧୀରେ ପାହୁଣ୍ଡ ପକାନ୍ତି । ହସହସ ମୁହଁ । ପାନ ଖାଇ ପାଟିଟା ନାଲି ଟହଟହ ଦିଶୁଥାଏ । ଯାହା ଘରକୁ ଯାଆନ୍ତି କାନ୍ଧରେ ୫ ସେର ଓଜନର ଏଡ଼େବଡ଼ ବଟୁଆ ପକେଇଥାନ୍ତି । ସେହି ବଟୁଆରେ ନାନା ରୋଗକୁ ସେ ବଟିକା ରଖିଥାନ୍ତି । ସେ ଆୟୁର୍ବେଦ ଜାଣନ୍ତି । ଜ୍ୟୋତିଷ ଶାସ୍ତ୍ରରେ ତାଙ୍କର ବି ଅଭିଜ୍ଞତା ଥାଏ । ଥରେ ପିଲାଦିନେ ମୁଁ ବେମାରରେ ପଡ଼ିଥିଲି । ମୋ ବୋଉ ତାଙ୍କୁ ଆମ ଘରକୁ ଡାକି ଆଣିଲା । ସେ ରୋଗକୁ ଔଷଧ ଦେଲେ । ମୋ ହାତ ଦେଖି କହିଲେ, ''ଏ ଷଣ୍ଢା ବେ ପଢ଼ିବ'' ସେତେବେଳେ ଆମ ଗାଁରେ କେହି ବି.ଏ. ପଢ଼ିନଥିଲେ । କଥାଟା ଅପସନ୍ଦପରି ଲାଗିଲା । ମୁଁ ତ ପିଲା, ବେ ପାଠ କ'ଣ ? ସାଧାରଣ ଲୋକ ବି.ଏ. ବୁଝି ନଥିବେ । ବେ ପଢ଼ିଲେ ଡେପୁଟି ହୁଅନ୍ତି ବୋଲି ଲୋକେ ଜାଣୁଥିଲେ । ସେତେବେଳେ ଏତେ ହାଇସ୍କୁଲ ନଥିଲା, କୋଡ଼ିଏ ପଚିଶ ଖଣ୍ଡ ମୌଜାରେ ମାଟ୍ରିକ ପାସ୍‌ବୋଲି ଜଣେ ନଥିଲେ । ପୁଣି ଆମ ଗାଁର ଦରିଦ୍ରତମ ବାଳକ ପକ୍ଷେ ପାଠ ପଢ଼ିବା ଧୃଷ୍ଟତା ମାତ୍ର । ସେତେବେଳକୁ ମୁଁ ଚାଟଶାଳୀକୁ ଯାଇଥିଲି କି ନାହିଁ । ରାଧୁ ଅବଧାନଙ୍କ କଥା କିଏ ମନେ ରଖିବ କାହିଁକି ? ଦିନପରେ ଦିନ ଗଡ଼ି ଚାଲିଲା ।

## ତତ୍‌କାଳୀନ ବିଦେଶୀ ଶାସନ ଓ ଲୋକଙ୍କ ଅବସ୍ଥା :

ବ୍ରିଟିଶ ସରକାର ଲୋକଙ୍କୁ ଭୟଭୀତ କରାଇ ରଖିଥାଏ । ଟଙ୍କାରେ ଧାନ ୩ ସେରିଆରେ ୧୨ କି ୧୪ ଗୌଣୀ । ଚାଉଳ ୮ସେର । କିନ୍ତୁ ବହୁ ଲୋକ ଉପାସ ରହନ୍ତି । ପଇସାଟିଏ ନାହିଁ । ଜାତୀୟ ଚରିତ୍ରରେ ଲୋକଙ୍କର ନିର୍ଭୀକ ଗୁଣର ଘୋର

ଅଭାବ । ପାଇକ ବିଦ୍ରୋହର ଗାଥା ପାଇକ ଜାତି ପୂରା ଭୁଲିଗଲେଣି । କେବଳ ଗାଁ ଗହଳିରେ ବେଳେବେଳେ ଲୋକେ ମାତି ଯାଆନ୍ତି । ବ୍ରିଟିଶ ସରକାରର କଡ଼ା ଶାସନ । ସ୍ୱାଧୀନତା ପାଇଁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଆନ୍ଦୋଳନ ଚାଲିଥିଲେ ମଧ ତାଙ୍କ ଶାସନ ନିର୍ଦ୍ୱନ୍ଦ୍ୱରେ ଚାଲିଥିଲା । ଗାଁ ଲୋକେ ନାଲି ପଗଡ଼ିଆକୁ ଦେଖିଲେ ଲୁଚୁଥିଲେ । କିନ୍ତୁ ଅନ୍ୟାୟର ପ୍ରତିରୋଧ ପାଇଁ ବେଳେବେଳେ ମାତିଯାଉଥିଲେ । ଗୋଟିଏ ଘଟଣା ମନେ ଅଛି, ପିଲାଦିନେ ମୋତେ ଆଠ ଦଶବର୍ଷ ସମୟରେ ଦିନେ ଆମ ଗାଁ ପାଖ ଦୟାନଦୀ କୂଳବର୍ତ୍ତୀ ନାରଣଖେତାର କେତେଜଣ ଯୁବକ ଓ ପ୍ରୌଢ଼ ତାଙ୍କ ନିଜ ଗାଁ ତ୍ୟାଗକରି ଆମ ଗାଁ ବନ୍ଧୁବାନ୍ଧବଙ୍କ ଗୃହରେ ଆଶ୍ରୟ ନେଇଥିଲେ । ଘଟଣା କଅଣ ? ବୁଝୁବଝୁ ସେମାନେ ପୁରୀର ଗୋରା କଲେକ୍‌ଟର ଓ ତାଙ୍କ ପାର୍ଶ୍ୱଚରମାନଙ୍କୁ ମାଡ଼ ମାରି ପଳେଇ ଆସି ଆମ ଗାଁରେ ଲୁଚିଥିଲେ । ସେତେବେଳେ ଦୟାନଦୀ ଉପରେ କାକୁଡ଼ିଆଠାରେ ପୋଲ ତିଆରି ହୋଇନଥିଲା । ଖରାଦିନିଆ ରାସ୍ତାପାଇଁ ଘାଟ ନିଲାମ ଦିଆଯାଉଥିଲା । ସେହି ରାସ୍ତା ଉପରେ ଘାଟ ମାହାସୁଲ ଦେବାପାଇଁ କଲେକ୍ଟରର ପାର୍ଶ୍ୱଚରମାନେ ହଇଚଇ ସୃଷ୍ଟିକଲେ । ଘାଟ ନିଲାମ ନେଇଥିବା ଲୋକକୁ ଆଗତୁରା ବାଡ଼ିଆବାଡ଼ି କଲେ । ଏଥିରେ ଘାଟବାଲା ସମ୍ଭାଳିବେ କାହିଁକି ? ସେ ମଧ୍ୟ ତା' ଲୋକଧରି ସାହେବ ଓ ତା ଲୋକମାନଙ୍କୁ ଦିଟା ଉତ୍ତମ ମଧ୍ୟମ ଦେଲେ । ସେତେବେଳେ ଲୋକେ ଜାଣିନଥିଲେ ସେମାନେ ସରକାରୀ ଲୋକ । ହେଲେହେଁ ଘାଟବାଲା ତ କିଛି ମାଗଣାରେ ଘାଟ ନେଇନାହିଁ ? ସେ ଡରିବ କାହିଁକି ? ସାହେବ ରାଗି ପୋଲିସ ଷ୍ଟେସନରେ ସଂବାଦ ଦେବାରୁ ଧରପଗଡ଼ ଚାଲିଲା । କେତକଙ୍କୁ ଦଣ୍ଡ ଦିଆହେଲେ ମଧ୍ୟ ଅନ୍ୟାୟର ପ୍ରତିରୋଧ କରିବାକୁ ଲୋକେ ପଛଉ ନଥିଲେ ।

**ଗାଁ ମହାଜନ :**

ଧନୀ ଲୋକଙ୍କର ଗାଁ ଉପରେ ଖୁବ ପ୍ରଭାବ ଥିଲା । ଗରିବ ଲୋକଙ୍କୁ ସବୁବେଳେ ନ୍ୟାୟ ମିଳୁ ନଥିଲା । ଦେଶରେ ଉଚ୍ଚଶିକ୍ଷାନୁଷ୍ଠାନ ସଂଖ୍ୟା ଆଙ୍ଗୁଠି ଅଗରେ ଗଣି ହୋଇଯାଉଥିଲା । ଦେଶବାସୀଙ୍କୁ ସେମାନଙ୍କର ପୂର୍ବ ସଂସ୍କୃତି ଓ ପରମ୍ପରା ଜଣାଇବାପାଇଁ କୌଣସି ଅନୁଷ୍ଠାନ ନଥିଲା । ଯେଉଁମାନେ ଇଂରାଜୀ ପାଠ ପଢୁଥିଲେ ସେମାନେ ଗାଁ ଲୋକମାନଙ୍କ ସହ ମିଶି ପାରୁନଥିଲେ । ଗ୍ରାମର କୃଷକ ସମ୍ପ୍ରଦାୟ ବଡ଼ ଦୁଃଖରେ କାଳ କାଟୁଥିଲେ । ତା'ର ଉତ୍ପାଦିତ ଦ୍ରବ୍ୟ ଧାନ ଖୁବ୍ କମ୍ ମୂଲ୍ୟରେ ବିକ୍ରି ହେଉଥିଲା । ସେମାନଙ୍କ ପାଖରେ ପଇସାଟିଏ ବି ନଥିଲା । ଦାରିଦ୍ର୍ୟର କଷାଘାତରେ

ସେମାନେ ସତ୍ତୁଥିଲେ । ପୁଅ ଝିଅ ବାହାଘର ପାଇଁ ଗାଁ ମହାଜନଠାରୁ ଟଙ୍କାପଇସା କରଜ କରି ଆଣୁଥିଲେ । ଠିକ୍ ସମୟରେ ଶୁଝି ନ ପାରିବାରୁ ମାଣେ ଦିମାଣେ ଜମିରୁ କିଛି ସେହି ମହାଜନଙ୍କୁ ବିକ୍ରିକରି ଋଣମୁକ୍ତ ହେଉଥିଲେ । ଗାଁ ମହାଜନର ଗାଁ ଲୋକଙ୍କ ଉପରେ ପ୍ରଭୁତ୍ୱ ଥିଲା ।

## ଗାଁ ଚୌକିଦାର :

ଗାଁ ଗୁମର ଗାଁ ଚୌକିଦାର ଥାନାରେ ଜଣେଇ ଦେଉଥିଲା । ଚୌକିଦାର କଣ୍ଡରା ହେଲେ ବି ଗାଁ ଲୋକେ ତାକୁ ମନେ ମନେ ଭୟ କରୁଥିଲେ । ଗାଁ ଚୌକିଦାର ସନେଇ ମଳିକ ଗାଁ ମୁଣ୍ଡରେ ମହାରଣାଙ୍କ ଡିହରେ ରହେ । ବର୍ଷାଦିନେ କୂଅପାଣି ପାଇଁ ମଳିକ ବା ତାର ପତ୍ନୀ ବା ତାର ପିଲାମାନେ ମାଠିଆ, ଘୁମ ନେଇ ସ୍ପୃଶ୍ୟ ଲୋକଙ୍କ ଘରୁ ପିଇବା ପାଇଁ ପାଣି ଆଣୁଥିଲେ ଏବଂ ଖରାଦିନେ ଗାଁ ପୋଖରୀର ଗୋଟିଏ କୋଣରେ ଚୂଆଟିଏ ଖୋଳି ତା'ର ପାଣି ବ୍ୟବହାର କରୁଥିଲେ । ଗାଁରେ କୌଣସି କୂଅରୁ ଏପରିକି ବାହାର କୂଅରୁ ସେ ପାଣି ଆଣି ପାରୁନଥିଲା । ସେ କୂଅ ଛୁଇଁ ନଥିଲା । ପୁରାଣରେ କେଉଁଠି ଲେଖାଅଛି– ଯେଉଁ ସ୍ଥାନରେ କଣ୍ଡରା ବସେ ସେ ସ୍ଥାନରେ ମାଟି ଫୁଟେ ପର୍ଯ୍ୟନ୍ତ ମାରା ହୋଇଯାଏ । ଏହା ପୂରାପୂରି ଏକ ଅନ୍ଧବିଶ୍ୱାସ ଏବଂ କୁସଂସ୍କାର । ଆମ୍ଭେମାନେ ଦେଖିଛୁ ହାଡ଼ିମାନେ ଗୋମାଂସ ଖାଆନ୍ତି । କିନ୍ତୁ ସନେଇ ମଳିକ କୌଣସି ଅଖାଦ୍ୟ ଖାଇବାର ଆମକୁ ଜଣାନାହିଁ, ତେବେ ତାକୁ ଏତେ ଘୃଣା କାହିଁକି ? ରାତି ଅଧରେ ସନେଇ ମଳିକ ବଡ଼ପାଟିକରି 'ହୁସିଆର' ଶବ୍ଦ ଏପରି ବିକଟାଳ ସ୍ୱରରେ ଡାକେ ଯେ ଆମ୍ଭେମାନେ ମା କୋଳରେ ଶୋଇଥିଲେ ମଧ ଡରିଯାଉ । ରାତ୍ରିରେ ଗ୍ରାମେ ଗ୍ରାମେ ପହରାଦେବା ପ୍ରଥା ଗୋଟିଏ ସୁଚିନ୍ତିତ ଦକ୍ଷ ଶାସନର ନମୁନା । ଏବେ ସେପରି ପ୍ରଥା ଆଉ ଗାଁ ଗହଳିରେ ନାହିଁ କି ପୂର୍ବର ନିର୍ମଳ ଲୋକଚରିତ୍ର ଆଉ ଦେଖାଯାଉନାହିଁ । ତେଣୁ ଚୋରି, ଡକାୟତି, ନରହତ୍ୟା ସମାଜ ଜୀବନକୁ କଳୁଷିତ କରିସାରିଲାଣି । ପାଶ୍ଚାତ୍ୟ ଅପସଂସ୍କୃତି ମାଡ଼ି ଆସି ସମାଜକୁ ଧ୍ୱଂସମୁଖୀ କରେଇବାରେ ସାହାଯ୍ୟ କରୁଛି ।

## ଦରିଦ୍ର କୃଷକ :

ଗାଁର ଦରିଦ୍ର କୃଷିଜୀବୀ ମହାଜନଘରୁ ଅସମୟରେ ଧାନ କରଜ ଆଣୁଥିଲେ । ୪ ମାସ ପରେ ପୌଷମାସରେ ଧାନ ଅମଳବେଳେ ଦେଢ଼ିଦେଇ ଋଣମୁକ୍ତ ହେଉଥିଲେ । ଦରିଦ୍ର ଲୋକେ ମହାରଣାଙ୍କ ଜମି ଧୂଳିଭାଗ ଧରିଥିଲେ । ମହାଜନକୁ ଅଧେ ଧାନ ଦେଉଥିଲେ । ଏହା ବ୍ୟତୀତ ଜମିର ଖଜଣା ବାବଦକୁ ୩ ସେରିଆ

ଗୌଣୀରେ ବାର ଗୌଣୀ ସେହି ମେଢ଼ିମୂଳେ ମାପିଦେଇ ଅବଶିଷ୍ଟ ଯାହା ବଳିଲା ଘରକୁ ଆଣୁଥିଲେ । ସେ ଧାନକୁ ଓଳିଆରେ ବାନ୍ଧି ରଖୁଥିଲେ ନଚେତ୍ ଅଗଣା ଭିତରେ ଖଣି ଖୋଳି ଖଣିଭିତରେ ବର୍ଷାଦିନ ପର୍ଯ୍ୟନ୍ତ ସାଇତି ରଖୁଥିଲେ ।

**ଶୀତଦିନେ ଗାଁର ଅବସ୍ଥା :**

ଶୀତଦିନେ ଶୀତର ପ୍ରକୋପ ଅସହ୍ୟ ହୋଇପଡ଼େ । ସାଧାରଣ ଲୋକେ ରାତ୍ରିରେ ହେଁସ ଘୋଡ଼େଇ ହୋଇ ଶୁଅନ୍ତି । ଖୁବ୍ ସକାଳୁ ନିଦ ଭାଙ୍ଗେ । ଗାଁ ଦାଣ୍ଡରେ ଠାଏ ଠାଏ ନିଆଁ ଜଳା ହେଉଥାଏ । ବୁଢ଼ା, ପିଲା ସମସ୍ତେ ନିଆଁ ପୁଅଁନ୍ତି । ମୁଁ ବି ସେମାନଙ୍କ ସାଙ୍ଗେ ଯୋଗଦିଏ । ମାଘ ମାସରେ ବାଘପରି ଶୀତ ମାଡ଼ି ଆସେ । ସାଧାରଣ ଲୋକେ ନିଆଁ ପାଖେ ବସନ୍ତି । ଶୀତବସ୍ତ୍ରର ଅଭାବ ପରିଲକ୍ଷିତ ହୁଏ । ବେଳେ ବେଳେ ତୁଳା ଛିଣ୍ଟା ବା ତନ୍ତୀ ଚାଦର କେହି କେହି ବ୍ୟବହାର କରନ୍ତି । ମାଘମାସ ଶେଷରେ ଅଗିଜଳା ପୂନିଅଁ ପଡ଼େ । ସେଦିନ ରାତି ଆସୁ ଆସୁ ଗାଁର ସାନବଡ଼ ସମସ୍ତଙ୍କଠାରୁ ନଡ଼ା, କୁଟା ଚାନ୍ଦାହୁଏ ଏବଂ ଗାଁର ପୂର୍ବ ଦିଗରେ ଗହୀର ବିଲ ମଝିରେ· ଅଗି ଜଳାଯାଏ । ଦୁଇଟି ପାଳଗଦା ତିଆରି ହୁଏ । ବିଳମ୍ବ ରାତ୍ରିରେ ଗାଁର କୀର୍ତ୍ତନିଆ ଦଳ ଖୋଳ କରତାଳ ଧରି ସେଠାରେ ପହଞ୍ଚନ୍ତି । ବ୍ରାହ୍ମଣ ଆସି ମନ୍ତ୍ରପାଠ କରନ୍ତି । ଗଦା ଉପରକୁ ଫୁଲତୋଡ଼ା ଫିଙ୍ଗନ୍ତି । ଘିଅ ଢଳାଯାଏ । କୀର୍ତ୍ତନ ଦଳ ଗଦା ଚାରିପାଖରେ ୭ ଘେରା ପ୍ରଦକ୍ଷିଣ କରନ୍ତି । ତତ୍‌ପରେ ପାଳଗଦାରେ ଘିଅବଳିତା ସାହାଯ୍ୟରେ ଅଗ୍ନି ସଂଯୋଗ ହୁଏ । ଯାଚଞ୍ଚାଲୋକ ଆଳୁ, ବାଇଗଣ, କଦଳୀ, ନଡ଼ିଆ ପ୍ରଭୃତି ଫଳ ଅଗ୍ନିକୁ ନିକ୍ଷେପ କରନ୍ତି । ହରିବୋଲ, ହୁଳହୁଳି ଧ୍ୱନିରେ ଆକାଶ କମ୍ପିଯାଏ । ଅନ୍ଧକାର ନିର୍ଜନ ରାତ୍ରିର ନିଦଭାଙ୍ଗେ । ମୁହୂର୍ତ୍ତକ ମଧ୍ୟରେ ଅଗ୍ନି ତାର ଲେଲିହାନ ଜିହ୍ୱା ବିସ୍ତାର କରି ସମସ୍ତ ଗ୍ରାସ କରିଯାଏ । ଫେରିଲା ବେଳେ ଉପସ୍ଥିତ ଜନଗଣ ସେହି ପାଉଁଶରୁ କିଛି ସଂଗ୍ରହ କରି ଅଗ୍ନିଦେବତାକୁ ମୁଣ୍ଡିଆମାରି ଗ୍ରାମର ମଙ୍ଗଳ କାମନା କରି ଫେରନ୍ତି । ଗ୍ରାମର ଗୃହଗୁଡ଼ିକ ମୁଖ୍ୟତଃ ଚାଳଛପର ଗୃହ । ତେଣୁ ଅଗ୍ନିଦେବତାକୁ ପୂଜାକଲେ ବର୍ଷଯାକ ଅଗ୍ନ୍ୟୁତ୍ପାତ ହେବନାହିଁ ବୋଲି ଗ୍ରାମବାସୀଙ୍କ ଦୃଢ଼ ଧାରଣା । କେବଳ ମହାରଣାଙ୍କ ପନ୍ଦର କି କୋଡ଼ିଏ ବଖରା କୋଠାଘର । ଆଜିକାଲି ଆମ ଗ୍ରାମରେ କେବଳ ନୁହେଁ ସବୁ ଗ୍ରାମର ରୂପ ବଦଳି ଗଲାଣି । ଚାଳଘର ନିର୍ମାଣ କରିବା ଅପେକ୍ଷା କୋଠାଗୃହର ଚାହିଦା ବେଶି । ଲୋକଙ୍କ ଖାଦ୍ୟପେୟରେ ରୁଚି ବଦଳି ଗଲାଣି । ପୋଷାକପତ୍ରରେ ମଧ୍ୟ ପରିବର୍ତ୍ତନ ଦେଖାଦେଇଛି । କିନ୍ତୁ ଲୋକଚରିତ୍ରରେ ଅଧଃପତନ ଘଟିଛି ।

## ଧାନକଟା ସମୟେ ଗହୀର ବିଲର ଦୃଶ୍ୟ :

ଗାଁର ଧାନକଟା ଦୃଶ୍ୟ ଉପଭୋଗର ବିଷୟ । ସେତେବେଳର କୃଷକ ସରଳ ନୀତିମୟ ଜୀବନଯାପନ କରୁଥିଲା । ଖାଦ୍ୟ ଉପାର୍ଜନ ପାଇଁ କେହି ଅନୀତି ଅନାଚାର କରୁନଥିଲେ । ମାର୍ଗଶିର-ପୁଷ ମାସରେ ଧାନକଟା ଆରମ୍ଭ ହୁଏ । ମାସେ ଦେଢ଼ମାସ ପର୍ଯ୍ୟନ୍ତ ଧାନକଟା, କଳେଇବୁହା, ନଡ଼ାବୁହା ଚାଲେ । ଗାଁର ବଡ଼ ମଣିଷଠାରୁ ଅଣ୍ଡାବଚା ପର୍ଯ୍ୟନ୍ତ ସମସ୍ତେ ବିଲରେ ହାଜର । ମୂଳପଡୁଥାଏ, ଖୁଣ୍ଟାଚାଲିଥାଏ, ନଡ଼ା ବନ୍ଧା ହେଉଥାଏ । ସବୁଠାରୁ କମ୍ ବେଗ ଶଗଡ଼ ଗାଡ଼ିରେ ଧାନ ବୁହା ଚାଲିଥାଏ । ମୁଁ ବି ଧାନକଟା ବେଳେ ବହୁବାର ଖାଲି ଶଗଡ଼ ଗାଡ଼ିରେ ବସି ବିଲକୁ ଯାଏ । ଦିନରାତି ଗହୀର ଭିତରେ କୋଳାହଳ ଚାଲିଥାଏ । ଭ୍ରାତୃଦ୍ୱୟଙ୍କ କର୍ଷିତ ଜମିରୁ କଳେଇ, ନଡ଼ା ବୁହାହେବା ବେଳେ ମୁଁ ବଳଦ ସଙ୍ଗରେ ଯାଏ । ଆଜିକାଲିପରି ଗାଁମାନଙ୍କରେ ବିଜୁଳି ଆଲୁଅ ନଥିଲା । କୌଣସି କୌଣସି ଚାଷୀ ଦୂରଜମି କାଟିଲା ବେଳେ ଚୋର ଭୟରେ ଧାନ ଜଗି କୁଡ଼ିଆ ଭିତରେ ରାତ୍ରିଯାପନ କରନ୍ତି । ଶୀତର ପ୍ରକୋପ ମାଡ଼ିଆସେ । ହେଲେହେଁ ଜଣକ ପରିବର୍ତ୍ତେ ଦୁଇଜଣ ନିଆଁହୁଳା ଜାଳି ରହିବାକୁ ପଡ଼ିଥାଏ । ଆମ ଗାଁ ନିକଟରେ ଗୋଟିଏ ଗାଁ ଅଛି । ସେ ଗ୍ରାମର କେତେକ ଲୋକ ନୁଙ୍ଗୁଡା ପ୍ରକୃତିର । ସେମାନେ କଳେଇ ଚୋରିକରି ନେଇଯାଆନ୍ତି । ଏପରିକି ଢିଙ୍କିଶାଳରୁ ଢିଙ୍କି ବା ଧାନ ଉଷୁଆଁ ହାଣ୍ଡି ନେଇ ଯାଆନ୍ତି । ସେଥିପାଇଁ ଗାଁ ଲୋକେ ସତର୍କ ଥାନ୍ତି । ମୋ ପରି ବହୁପିଲା ଖାଲି ଶଗଡ଼ରେ ବସି ବିଲକୁ ଯାଆନ୍ତି । ସାଙ୍ଗରେ ଫାଉଡ଼ା ବା କାଙ୍କ ନିଆଯାଇଥାଏ । ହିଡ଼ ହଣାଯାଇ ଗୁଳା ତିଆରି ହୁଏ । ବଳଦଗୁଡ଼ାକ ଦୌଡ଼ିବା ବେଳେ ଆମେ ଯେଉଁମାନେ ଫଳୀ ଉପରେ ବସିଥାଉ ପିଚା ବାଡ଼େଇ ହୋଇଯାଏ । ଶଗଡ଼ ଫଳୀକୁ ଜୋରରେ ନ ଧରିଲେ ତଳେ ପଡ଼ିଯିବାର ଏବଂ ଦୁର୍ଘଟଣା ଘଟିବାର ସମ୍ଭାବନା ଥାଏ । ଖାଲି ଶଗଡ଼ ନେଇ ଗହୀର ଭିତରେ ବଳଦ ଦୌଡ଼ିଲା ବେଳେ ପିଲାଗୁଡ଼ାକ ଆନନ୍ଦରେ କୁରୁଳି ଉଠନ୍ତି । ଫେରନ୍ତା ଶଗଡ଼ରେ କଳେଇ ବୋହିଲା ବେଳେ ରାତି ପହରେ ହୋଇଯାଏ । ଧାନକଟା ସରିଗଲେ ପନ୍ଦର କି କୋଡ଼ିଏ ଦିନ ପରେ ମାଘ ମାସ ଶନିବାର ବା ମଙ୍ଗଳବାର ଦିନ କ୍ଷେତ ବଢ଼ିଆ ହୁଏ । ଯାହାର ନିଜ ଚାଷ ସେ କ୍ଷୀରୀ ପିଠାର ସବୁ ସରଞ୍ଜାମ ଘରୁ ବୋହିନିଏ । ତା ପିଲାକବିଲାଙ୍କୁ ଏଥିରେ ନିୟୋଜିତ କରେ । କାଠ, ବିଶୁଦ୍ଧ ଜଳ ଘରୁ ନେଇଥାଏ । ପୁତ୍ର କନ୍ୟାମାନେ ଆନନ୍ଦରେ ବାପା, ଦାଦାଙ୍କୁ ସାହାଯ୍ୟ କରନ୍ତି । କ୍ଷୀରୀ ତ ହୁଏ, ଖାଣ୍ଟି ଗୁଆଘିଅରେ ପିଠା ତିଆରି ହୁଏ । କଦଳୀ, ଉଖୁଡ଼ା, ନଡ଼ିଆ ଘରୁ ନେଇଥାଏ । ଏକାଦିନ ବହୁଲୋକ କ୍ଷେତ ବଢ଼ାଇଲେ

ଗହୀରର ଦୃଶ୍ୟ ଅତି ମନୋହର ଦେଖାଯାଏ । ଏହିପରି ବହୁ କୃଷିପର୍ବ ଓଡ଼ିଶାର କୃଷକମାନେ ପାଳନ କରିଥାନ୍ତି । ସ୍ୱାଧୀନ ବୃତ୍ତିରେ ନୌକରିର ଭୟନାହିଁ ଯେହେତୁ ଓଡ଼ିଆ କୃଷକ ଦିନେ ଯଓ୍ୱାନ ରୂପେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଉଥିଲା । ପରଦ୍ୱାରେ ନୌକରି କରି ପେଟ ପୋଷିବାକୁ ଘୃଣା କରୁଥିଲା । ପାଠ ପଢ଼ିଲା ନାହିଁ । ତେଣୁ ବହୁ ପଛରେ ରହିଗଲା । ଏବେ ଫଳ ଭୋଗିବାରେ ଲାଗିଛି ।

ଯେଉଁମାନଙ୍କର ନିଜର କାଳିପଟା ଜମିନାହିଁ ସେମାନେ କ୍ଷେତ ବଢ଼ାନ୍ତି ନାହିଁ । ମାତ୍ର ସେମାନଙ୍କ ଘରେ କ୍ଷୀରୀପିଠା ବେଶି ପହଞ୍ଚେ । ଗାଁରେ ପରସ୍ପର ସ୍ନେହପ୍ରୀତି ବେଶିଥାଏ । ଗ୍ରାମ୍ୟଜୀବନ କି ସରସ, କି ମଧୁମୟ ! ଏବେ ଗାଁର ଶିରୀ କମିକମି ଆସିଲେ ମଧ ସେହି ଭାବନା ଉଣାଅଧିକେ ସବୁ ଗାଁରେ ଅଛି । ତେବେ କୁଜି ନେତାମାନେ ଗାଁରେ ଦିଫାଙ୍କ ତିନିଫାଙ୍କ ସୃଷ୍ଟି କଲେଣି । ଗାଁ ମୁରବୀହୀନ ହୋଇପଡ଼ିଛି । ଯେଝା ହାତରେ ଯେ ଚଉଦ ପା' । ଗୁଣ୍ଡାହୁଣ୍ଡା ରାଜନୀତିଆ ଲୋକଙ୍କର ହାତବାରିସି ସାଜିଲେଣି । ତେଣୁ ଗାଁରେ ବିଭ୍ରାଟ ଘଟୁଛି । ପଢୁଆଲୋକେ ନିଜ ମାନ ସମ୍ମାନ ରକ୍ଷାକରି ଗାଁ ଛାଡି ସହରକୁ ଧାଡ଼ି ଲଗେଇଛନ୍ତି । ଗାଁ ଲୋକଙ୍କୁ ଉଚିତ ଦିଗ୍‌ଦର୍ଶନ ଦେବାପାଇଁ ଲୋକ ନାହାଁନ୍ତି । ଗାଁର ପାଞ୍ଚଦଶ ଜଣ ପଢୁଆ ବ୍ୟକ୍ତି ଯଦି ସ୍ୱାର୍ଥ ତ୍ୟାଗକରି ଗାଁ ସେବାରେ ଉତ୍ସର୍ଗୀକୃତ ଜୀବନଯାପନ କରିବେ ତେବେ ଗାଁର ପୂର୍ବ ବିଭବ ଫେରିଆସିବ, ଏଥିରେ ସନ୍ଦେହ ନାହିଁ ।

## ଆଖଡ଼ା ଓ ଅନ୍ୟାନ୍ୟ ଦଳ :

ଗାଁ ଦାଣ୍ଡ ବଉଳ କୋଳି ଗଛମୂଳେ ପ୍ରତିଦିନ ପଟାଖେଳ, ବାଡ଼ିଖେଳ, ଛୁରୀଖେଳରେ ଗାଁର ଯୁବକମାନେ ତାଲିମ ପାଉଥିଲେ । ଗାଁର ଅବଧାନ ପୁରୁଷୋତ୍ତମ କର 'ରାମଲୀଳା' ନାଟକ ରଚନା କରିଥିଲେ । ତାହା ପାଖଆଖ ଗ୍ରାମରେ ବଡ଼ ଆଦୃତ ହେଉଥିଲା । ବହୁଦିନ ପର୍ଯ୍ୟନ୍ତ ଉକ୍ତ ରାମଲୀଳା ଭିନ୍ନଭିନ୍ନ ସ୍ଥାନରେ ପରିବେଷଣ କରାଯାଉଥିଲା ।

## ମୋ ବାଲ୍ୟକାଳ ଓ ପାଠପଢ଼ା :

କେଉଁ ବର୍ଷ ମୋର ଜନ୍ମ ମୋତେ ଜଣାନାହିଁ । ମୋର ବି ଜନ୍ମ ପତ୍ରିକା ନଥିଲା । ସ୍କୁଲ ରେକର୍ଡରୁ ଜଣାପଡ଼େ ମୋ ଜନ୍ମ ୧୯୨୩ ମସିହାରେ । ମାତ୍ର ମୋ ମା'କୁ ପଚାରିଲେ ସେ କହେ, 'ମୋର ଜନ୍ମ ୨୬ ସାଲ ମରୁଡ଼ିର ପରବର୍ଷ । ସେ ମସିହା କଥା ବା କଅଣ ଜାଣିବ, ସରଳ ନିଷ୍କପଟ ମଣିଷ । କେବଳ ଏତିକି କହିଲା

ଗାଁର ଅମକଲୋକ ଯେଉଁଦିନ ଜନ୍ମହେଲା ସେଇଦିନ ।' ପୁଣି କହିଲା,'ଅମକ ଲୋକର ବାହାଘର ଦିନ– ସକାଳେ ସୂର୍ଯ୍ୟ ଉଇଁ ଆସୁଥିବା ବେଳେ । ସେଦିନ ମଗୁଶିର ମାସ ମାଣବସା ଶେଷ ଗୁରୁବାର ।' ମୁଁ ମା' ପେଟରେ ଥିବାବେଳେ ଜନ୍ମର ୬ ମାସ ଆଗରୁ ମୋ ବାପାଙ୍କର କାଳ ହୋଇଥିଲା । ମୂଳରୁ ବାପାଙ୍କୁ ଖାଇଥିବାରୁ ଗାଁ ମାଇପେ ମୋ ନାମ ମୂଳି ଦେଲେ । ଏବେ ମଧ୍ୟ ମୂଳି ନାମଟି କେଉଁଠି ଶୁଣିବାକୁ ମିଳେ ନାହିଁ । ହଜାର ହଜାର ଶିକ୍ଷିତ ଅଶିକ୍ଷିତ ଲୋକଙ୍କ ସଂସ୍ପର୍ଶରେ ଆସିଛି । ଏପରି ଅପରିଚ୍ଛନିଆ ନାଁ କାହାର ନାହିଁ । କେବଳ ମହର୍ଷି ଦୟାନନ୍ଦ ସରସ୍ୱତୀ ଯାହାଙ୍କ ନାମରେ ସମଗ୍ର ଦେଶରେ ହଜାର ହଜାର ଶିକ୍ଷାନୁଷ୍ଠାନ ନିର୍ମିତ ହୋଇଛି ଓ ଆର୍ଯ୍ୟସମାଜ ଗଢ଼ାହୋଇଛି ତାଙ୍କର ପିଲାଦିନର ନାମ ଥିଲା ମୂଳ ଶଙ୍କର । ଓଡ଼ିଶାରେ ନାଁ ଶେଷରେ 'ଆ' ଯୋଗକରି ଲୋକେ ଡାକନ୍ତି– ଯେପରିକି ଗୋପୀ-ଗୋପିଆ, ହରି-ହରିଆ, ମଧୁ-ମଧୁଆ, ପାଣ୍ଡୁ-ପାଣ୍ଡୁଆ, କୃଷ୍ଣ-କୃଶୁନିଆ ଇତ୍ୟାଦି । ସେହିପରି ମୋ ନାଁରେ ଆ ଯୋଗକରି ଗାଁ ଲୋକେ ଡାକିଲେ । ଗାଁ ଲୋକ ପ୍ରାୟତଃ ଅଶିକ୍ଷିତ । ଏବେ ମଧ୍ୟ ଗାଁକୁ ଗଲେ ସେକାଳର ବଢ଼ାବୁଢ଼ୀ ସେହି ଆ ଯୋଗକରି ଡାକନ୍ତି । ଦରିଦ୍ରତମ ପରିବାରର ବାପ ଛେଉଣ୍ଡ ପିଲା ମୁଁ । ମୋର ଦୁଇଟି ବଡ଼ଭାଇ ମୋଠାରୁ ୫ ବର୍ଷ, ୧୦ ବର୍ଷ ଲେଖାଏଁ ବଡ଼ । ବୋଉ ତ କମ୍ ବୟସରେ ବିଧବା ହେଇଗଲା । ଘରର ମାନରକ୍ଷି ଅନ୍ୟ କାହାଘରକୁ ଯିବନାହିଁ । କେବଳ ସାଆନ୍ତବାପା ଗୋପାଳ ଚନ୍ଦ୍ର ପାଟଶାଣୀଙ୍କ ଘରେ କାମ କଲା । ତାଙ୍କର ସାନଭାଇଙ୍କ ପୁଅ ସୁରିଆ ମୋର ବଡ଼ ସାଙ୍ଗ, ସେ କିନ୍ତୁ ଅକାଳରେ ଆରପାରିକି ଚାଲିଗଲା । ତାଙ୍କ ବଡ଼ପୁଅ ରଘୁନାଥ ପାଟଶାଣୀ ମୋତେ ଭଲପାଆନ୍ତି । ସାଆନ୍ତବାପାଙ୍କର ଗାଁରେ ମାନସମ୍ମାନ ଉଚ୍ଚରେ ଥାଏ । ମୁଁ ତାଙ୍କ ଘରେ ପିଲାଦିନେ ବହୁ ସମୟ କଟାଇଛି । ଖିଆପିଆ କରି ଚାଟଶାଳୀକୁ ଯାଇଛି । ଗାଁ ଲୋକେ କ୍ୱଚିତ୍ ଡାଲି ଖାଆନ୍ତି । ପଖାଳ, ବିଲମାଛ, ଶାଗଭଜା ଖାଇ ସମୟ କାଟନ୍ତି ।

ଗାଁ ଚାଟଶାଳୀକୁ କେବେ ପଢ଼ିବାକୁ ଗଲି ମୋର ମନେ ନାହିଁ । ଏତିକି ମନେ ଅଛି ମୋ ବଡ଼ବାପାଙ୍କ ଝିଅ ପୂଜା ଧରି ପ୍ରଥମେ ମୋତେ ଗାଁ ଚାଟଶାଳୀରେ ବସେଇ ଥିଲା । ସେତେବେଳକୁ ଗାଁରେ କୋଡ଼ିଏ ବାଇଶ ବର୍ଷହେବ ନିମ୍ନ ପ୍ରାଥମିକ ସ୍କୁଲଟିଏ ଗଢ଼ି ଉଠିଲାଣି । ଗାଁର ଧନାଢ଼୍ୟ ବ୍ୟକ୍ତି ନାରଣବନ୍ଧୁ ମହାରଣାଙ୍କ ଉଦ୍ୟମରେ ଚାଟଶାଳୀଟି ଖୋଲା ହୋଇଥାଏ । ସେତେବେଳେ ଆମ ଗାଁ ପାଖ ଗାଁରେ ଷଣ୍ଢପୁର, ଗୋପୀନାଥପୁର, ଓଗାଳପଡ଼ା, ଛେଳଦା, ଓଗରସୁଆଁ, ଗୋପାଳପୁର, କାଶୀପୁର ଓ ପିତାପଲ୍ଲୀରେ ନିମ୍ନ ପ୍ରାଥମିକ ବିଦ୍ୟାଳୟଟିଏ ନଥିଲା । ଛେଳଦା, ଓଗରସୁଆଁର ପିଲାମାନେ ବର୍ଷାଦିନେ

ହିଡ଼େ ହିଡ଼େ ଓ ଖରାଦିନେ ଶଗଡ଼ ଗୁଳାରେ ଚାଲିଚାଲି ଆସି ଆମ ଗାଁ ସ୍କୁଲରେ ପଢୁଥିଲେ । ଏ ଦୁଇଟି ଗାଁକୁ ସଡ଼କପଥ ନଥିଲା । ଶିକ୍ଷକ ପଣ୍ଡିତ ପୁରୁଷୋତ୍ତମ କର ଯାଁଳା ଭର୍ଣ୍ଣାକୁଳାର ସ୍କୁଲ୍‌ରେ ବୃତ୍ତିପାଇ ଖୋର୍ଦ୍ଧାରେ ଇ.ଟି. ପାସ୍ କରି ୧୯୧୧ ମସିହାରୁ ଆମ ଗାଁରେ ଶିକ୍ଷକତା କରୁଥିଲେ । ସେ ଆମ ଗାଁରୁ ଯାଇ ଜାମୁଝରୀରେ ଆଠ ବର୍ଷ ରହି ପୁଣି ଆମ ଗାଁକୁ ଫେରିଆସିଲେ । ସେତେବେଳେ ଛେଳଦାର ବାବୁ ମଧୁସୂଦନ ହରିଚନ୍ଦନ ମୋ ସଙ୍ଗେ ପଢୁଥିଲେ । ତାଙ୍କର ହସ୍ତାକ୍ଷର ଅତି ସୁନ୍ଦର, ମାଛ ମଞ୍ଜିପରି, ଖାତା, ବହି ପରିଷ୍କାର ପରିଚ୍ଛନ୍ନ । ବସ୍ତାନିଟିରେ କେଉଁଠି କାଳି ଦାଗ ବି ଲାଗିନଥାଏ । ସେ ଯେଉଁ ଗାମୁଛାଖଣ୍ଡକ ପିନ୍ଧିକରି ଆସୁଥିଲେ ଓ ଅନ୍ୟ ଯେଉଁ ଗାମୁଛା ଖଣ୍ଡକ କାନ୍ଧରେ ପକାଉଥିଲେ ସେଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ ନଥିଲେ ମଧ ସେଗୁଡ଼ିକୁ ସୁନ୍ଦରଭାବରେ ସଜାଇ କୁଞ୍ଚକାଞ୍ଚ ପିନ୍ଧିକରି ଆସନ୍ତି । ତାଙ୍କ ବହି ଓ ଖାତାରେ ଟିକିଏ ହେଲେ କାଳିଦାଗ ଲାଗିନଥାଏ । ମୋର ମନେ ଅଛି ଅବଧାନ ଆମ୍ଭମାନଙ୍କ ସମ୍ମୁଖରେ ତାଙ୍କୁ ଖୁବ୍ ପ୍ରଶଂସା କରନ୍ତି । ମୋ ଖାତାରେ କିଛି ବାଗ ବାଇଶ ନଥାଏ । ଦରିଦ୍ର ହେତୁ ମୋ ଗାମୁଛାଖଣ୍ଡିକ ମସିଆ । ମୋ ବସ୍ତାନିରେ କାଳିଛିଟା ଅନେକ । ଏକଥା ସତ ମଧୁ ଆମ୍ଭମାନଙ୍କ ଅପେକ୍ଷା ଭଲ ଚଳଣିର ପିଲା । କିନ୍ତୁ ମୁଁ ପାଠ ଭଲ ମନେରଖେ । ମୋର ଲୟ ଟିକିଏ ଟାଣ । ମଧୁସୂଦନ ସେଠା ପାଠ ଶେଷକରି ଉପରକୁ ଆଉ ପଢ଼ିଲେ ନାହିଁ । କ୍ଷେତ କାମରେ ଲାଗିଲେ । ବୋଧହୁଏ ମୋର ଭାଗ୍ୟ ଜୋର୍‌ଥିଲା । ନଚେତ୍ ମୁଁ ସେଇ ଚାଷ କାମରେ ଜୀବନ ବିତାଇଥାନ୍ତି ।

**ସେ ସମୟର ପରିଦର୍ଶକ :**

ଗାଁ ଚାଟଶାଳୀରେ ପଢ଼ିଲାବେଳେ ସ୍କୁଲ ସବ୍‌ଇନସ୍‌ପେକ୍ଟର ରଣପୁର ଗଡ଼ଜାତ ନିବାସୀ ଶ୍ରୀ ଶଙ୍କର ଷଡ଼ଙ୍ଗୀ ଛପରା ବଳଦ ଗାଡ଼ିରେ ବହୁଥର ସ୍କୁଲ୍ ପରିଦର୍ଶନ କରିବାକୁ ଆସିଛନ୍ତି । ଯେଉଁଦିନ ସେ ଆସନ୍ତି ସେଦିନ ମହାରଣାଙ୍କ ଘରୁ ତାଙ୍କ ପାଇଁ ସ୍ୱତନ୍ତ୍ର ଛଞ୍ଚା ଆସେ । ଅବଧାନ ବ୍ରାହ୍ମଣ, ତେଣୁ ଷଡ଼ଙ୍ଗୀବାବୁ ତାଙ୍କ ପାଖେ ଦିନେ ଦୁଇଦିନ ରହିଯାନ୍ତି । ଖାଇବାକୁ ମାଗଣା ମିଳେ । ତାଙ୍କପରେ କଟକ ଜିଲ୍ଲାର ବାବୁ ନଦୀୟାଚାନ୍ଦ ଦତ୍ତ ସବ୍‌ଇନସ୍‌ପେକ୍ଟର ହୋଇ ଆସିଲେ । ସେ ବିଦ୍ୟାଳୟ ପରିଦର୍ଶନ କରନ୍ତି । ସାଙ୍ଗେ ସାଙ୍ଗେ ନିଜ ସାଇକେଲରେ ଫେରିଯାଆନ୍ତି । ମୋ ପଢ଼ିବା ସମୟରେ କଟକ ଜିଲ୍ଲାର ଜଣେ ଡେପୁଟି ଇନସ୍‌ପେକ୍ଟର ବିଦ୍ୟାଳୟକୁ ଆସିଥିଲେ, ସେ ରାତ୍ରିରେ ରହିଲେ । କହିଲେ, ''ତୁମେମାନେ ପୁରୀ ଜିଲ୍ଲାରେ ଜନ୍ମହୋଇ ଭାଗ୍ୟବାନ'' । ସେ ଜଗନ୍ନାଥଙ୍କ ଭକ୍ତପରି ଜଣା ପଡୁଥିଲେ ।

**ସେତେବେଳର ପାଠପଢ଼ା :**

ସେତେବେଳେ ଚାଟଶାଳୀରେ ଗଣିତ, ସାହିତ୍ୟ, ଇତିହାସ, ଭୂଗୋଳ, ପ୍ରକୃତି ପାଠ ପ୍ରଭୃତି ପଢ଼ାଯାଉଥିଲା । ପିଲାମାନେ ପଣକିଆ, କାଢ଼ାଗଣ୍ଡା ମୁଖସ୍ଥ କରୁଥିଲେ । ଲୀଳାବତୀ ସୂତ୍ର ଘୋଷୁଥିଲେ । ଶୁଭଙ୍କରୀ, ସାଙ୍କେତିକ ପାଠ ପଢୁଥିଲା । ରାମାୟଣ, ମହାଭାରତ ବିଷୟରେ ପିଲାମାନଙ୍କୁ ସମ୍ୟକ୍ ଧାରଣା ଦିଆଯାଉଥିଲା । ଟଙ୍କା, ଅଣା, ପଇସା, ଗଜ, ଫୁଟ, ଇଞ୍ଚ ସମ୍ବନ୍ଧରେ ଶିକ୍ଷା ଦିଆଯାଉଥିଲା । କାହାଣକ ୧୬ ପଣ, ପଣକ ୨୦ ଗଣ୍ଡା, ଗଣ୍ଡାକ ୪ଟା ବୋଲି ଆମ୍ଭେମାନେ ଶିକ୍ଷାଲାଭ କରୁଥିଲୁ । ପ୍ରତିଦିନ ସକାଳ ୬ଟାରୁ ଦିନ ୧୨ଟା ପର୍ଯ୍ୟନ୍ତ ଓ ଅପରାହ୍ଣରେ ୩ଟା ଠାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ପାଠପଢ଼ା ସମୟ । ତିନିଗୋଟି ଶ୍ରେଣୀକୁ ଜଣେ ଶିକ୍ଷକ ଏବଂ ବେଳେବେଳେ ଆଉଜଣେ ଆସନ୍ତି । ସେତେବେଳେ ଯାଁଳା-ମୁଣ୍ଡମୁହାଣରେ ଦୁଇଖଣ୍ଡ ଗ୍ରାମରେ ଗୋଟିଏ ପ୍ରାଥମିକ ସ୍କୁଲ ଥାଏ । ଆଖ ପାଖରେ ଆଉ କେଉଁ ଗ୍ରାମରେ ସ୍କୁଲ ନଥାଏ ତେଣୁ ଆମ ଗାଁର ଲୋକେ ଗର୍ବ କରନ୍ତି । ଆମ ଗାଁ ବିଦ୍ୟାଳୟଟି ମହାଜନ ନାରାୟଣ ବନ୍ଧୁ ମହାରଣାଙ୍କ ଚେଷ୍ଟା ଯୋଗୁଁ ସ୍ଥାପିତ ବୋଲି ଗାଁ ଲୋକେ କହନ୍ତି ।

ଗାଁ ପିଲାମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଚାଟଶାଳୀକୁ ଆସୁଥିଲେ । ସକାଳ ହେଉହେଉ ପିଲା ସ୍କୁଲକୁ ଆସୁଥିଲେ । ତେଣୁ ପିଲା ଝାଡ଼ାଫେରିଗଲା କି ନଗଲା, ଦାନ୍ତ ଘଷିଲା କି ନାହିଁ ଏପରିକି ମୁହଁ ଧୋଇ କୁଳି କରି ସ୍କୁଲକୁ ଗଲା କି ନାହିଁ ଏକଥାକୁ ଅବଧାନ ଦୃଷ୍ଟି ଦେଉନଥିଲେ । ସ୍କୁଲରେ ଆଗ ପହଞ୍ଚିଲେ ସୁନାପାଗ ହେବ । ଶିକ୍ଷକ ମହାଶୟ ମଧ୍ୟ ପିଲାର ସ୍ୱାସ୍ଥ୍ୟ ସମ୍ବନ୍ଧରେ କିଛି ବୁଝନ୍ତି ନାହିଁ । ପରିଷ୍କାର, ପରିଚ୍ଛନ୍ନ କଥା ଆଦୌ ନଜରକୁ ନିଅନ୍ତି ନାହିଁ । ତେଣୁ ପିଲାମାନେ ରୋଗ ଭୋଗ କରିବା ସ୍ୱାଭାବିକ ଥିଲା । ପରିବେଶ ଜ୍ଞାନ ଶିକ୍ଷକଙ୍କର ନଥିଲା । ସକାଳୁ ଯେ ଆଗ ଆସି ସ୍କୁଲରେ ପହଞ୍ଚେ ସେ ସାବାସ୍ ନିଏ । ତେଣୁ ମୁଁ ଆଗ ପହଞ୍ଚେ । ମୋର ସମୟ ସଚେତନତା ସେବେଠାରୁ ବେଶିଥିଲା । ରବିବାର ମଧ୍ୟ ଅବଧାନ ପାଠ ପଢ଼ାଉଥିଲେ । ପିଲାମାନଙ୍କୁ ଆଦୌ ଛୁଟି ମିଳୁନଥିଲା । ଅବଧାନ ରବିବାର ନ ପଢ଼ାଇଲେ ଅଭିଭାବକମାନେ ବିରକ୍ତଭାବ ଦେଖାନ୍ତି । ତେବେ କେତେବର୍ଷ ପରେ ଅବଧାନ ରବିବାରରେ ପଢ଼ାଇଲେ ନାହିଁ । ଗାଁକୁ ଗଲେ । ପିଲାମାନେ ସ୍କୁଲକୁ ଯାଇ ଯାଇ ଅତିଷ୍ଠ ହୋଇପଡୁଥିଲେ । ଏପରିକି କେତେକ ଛୋଟ ଛୋଟ ପର୍ବରେ ଅବଧାନ ସ୍କୁଲରେ ରହି ପଢ଼ାଉଥିଲେ । ଅବଧାନଙ୍କ ଦେହ

ବେମାର ହେଲେ କି କୌଣସି ପାରିବାରିକ କାମରେ ଅବଧାନ ଗାଁରେ ରହିଗଲେ ଆମ୍ଭେମାନେ ଖୁସି ହେଉଥିଲୁ । ପାଠପଢ଼ା ବଡ଼ କଷ୍ଟ । ସ୍କୁଲକୁ ଗଲେ ଦିନଯାକ ବନ୍ଦୀହୋଇ ରହିବାକୁ ପଡ଼େ । ବେଳେବେଳେ ମାଷ୍ଟ୍ରେ ବେତ୍ରାଘାତ କରନ୍ତି । ମାଷ୍ଟ୍ରଙ୍କୁ ହାଲେ ଡର । ଏହିପରି ଅବସ୍ଥାରେ ମୁଁ ୭ ବର୍ଷ ବିଦ୍ୟାଳୟରେ ପାଠ ପଢ଼ିଲି । ମୁଁ ଭଲ ପଢୁଛି କି ନାହିଁ କିଏ କେମିତି ଜାଣିବ ? ଆମର କେବେ ପରୀକ୍ଷା ହେବାର ଦେଖିନାହିଁ । ମାତ୍ର ଶିକ୍ଷକ ପିଲାମାନଙ୍କ ପାଠପଢ଼ା ପ୍ରତି ଲକ୍ଷ୍ୟରଖି ଗୋଟିଏ ରେଜିଷ୍ଟରରେ ନମ୍ବର ଚଢ଼ାଇ ଦିଅନ୍ତି । ଅବଧାନ ଗାଁରେ ନଥିଲେ ଆମ୍ଭେମାନେ ଦୁଷ୍ଟାମି କରୁ । ଯେତେବେଳେ ସେ ଗାଁରୁ ଫେରନ୍ତି ଆମ୍ଭମାନଙ୍କ ଦେହରୁ ଅଧେ ରକ୍ତ ଶୁଖିଯାଏ । ମୋର ୩ୟ ଶ୍ରେଣୀପାଠ ୧୯୩୦ ମସିହାରେ ଶେଷ ହେଲା । ମୁଁ ପଣକିଆ ବୋଲିବାରେ ଧୁରୀଣ ଥିଲି । ମୋ ତୁଣ୍ଡଟା ଖୁବ୍ ପରିଷ୍କାର ଥିଲା । କିନ୍ତୁ କ'ଣ ହେବ ଉପରକୁ ପଢ଼ିବାର କିଛି ବାଟ ନଥିଲା । ତେଣୁ ଆଉ ଦୁଇବର୍ଷ ଅବଧାନଙ୍କ କହିବା ଅନୁସାରେ ତାଙ୍କ ପାଖରେ ପଢ଼ିଲି । ରୋଜଗାର କରିବାର ବୟସ ହୋଇନଥିଲା । ସେ ଦୁଇ ବର୍ଷରେ ୪ର୍ଥ, ୫ମ ପାଠ ପଢ଼ିଲି ।

## ମୋହରିର ରାମକୃଷ୍ଣବାବୁ :

ସେତେବେଳେ ଛେଲଦାର ବାବୁ ରାମକୃଷ୍ଣ ମହାନ୍ତି ଖୋରଧାରେ ମୋହରିର କାମ କରୁଥିଲେ । ସେପର୍ଯ୍ୟନ୍ତ ମୁଁ ଖୋର୍ଦ୍ଧା ସହର ଦେଖିବାର ସୁଯୋଗ ଲାଭ କରିନଥିଲି । ରାମକୃଷ୍ଣବାବୁ ପ୍ରତିଦିନ ଆମ ଗାଁ ଚାଟଶାଳୀ ବାଟେ ଗୃହକୁ ଫେରନ୍ତି । ଖରାଦିନ ସକାଳୁଆ କଚେରି । ସେ ଫେରିବା ବାଟରେ ୧୨ଟା ବେଳେ ଆମ ସ୍କୁଲ୍ ବାରଣ୍ଡାରେ ଦମ୍ଭ ନିଅନ୍ତି । ଆମ ଅବଧାନ ପୁରୁଷୋତ୍ତମ କରଙ୍କ ସହ କଥାଭାଷା କରନ୍ତି । ତାଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ ରଖି ଓ ମୁଁ ଭଲ ପଢୁଥିବା ଜାଣି ମହାଜନ ନାରାୟଣ ବନ୍ଧୁ ମହାରଣା କେତେଥର କହିବାର ଶୁଣିଛି, ''ଏ ପିଲାଟି ଖୋର୍ଦ୍ଧାରେ ମୋହରିର କାମ କଲେ ଖୁବ୍ ଭଲ କରିବ । '' ତୃତୀୟ ଶ୍ରେଣୀ ପରେ ମୋର ଆଉ ପଢ଼ିବାର ସୁବିଧା ନଥିଲା । ଗୁରୁଜୀ ପୁରୁଷୋତ୍ତମ କର ମୋତେ ଭଲ ପାଉଥିଲେ । ତେଣୁ ତାଙ୍କ ପାଖେ ଆଉ ଦୁଇବର୍ଷ ପଢ଼ିଲି । ନାଁଟା ତିନି ଶ୍ରେଣୀରେ ଥାଏ । ଦଲିଲ ଲେଖା, ହ୍ୟାଣ୍ଡନୋଟ ଲେଖା, ରସିଦ୍ ଲେଖା ଶିଖିଲି, ଉଚ୍ଚତର ଗଣିତ ଓ ସାହିତ୍ୟ ସେ ମୋତେ ଶିକ୍ଷା ଦେଲେ । ମାତ୍ର ଇଂରାଜୀ ବିଷୟରେ ସେ ଅଜ୍ଞ ଥିଲେ । ଦାଶରଥି ପାଣିଗ୍ରାହୀଙ୍କ ପାଟୀଗଣିତ କରେଇଲେ । ତାଙ୍କର ଲକ୍ଷ୍ୟ ଥିଲା ମୁଁ ମୋହରିର ହେବି । ସେ ମୋ

ଜୀବନରେ ଗଣିତ ଓ ସାହିତ୍ୟରେ ଯେଉଁ ମୂଳଦୁଆ ପକେଇଥିଲେ ମୋ ଭବିଷ୍ୟତ ଜୀବନ ତା'ରି ଉପରେ ଗଢ଼ା ହୋଇଛି ।

## ଓଡ଼ିଆ ସାହିତ୍ୟର ଦୁଇ ଅଗ୍ରଣୀ ଲେଖକ :

ସେତେବେଳେ ବିଶିଷ୍ଟ ଶିକ୍ଷାବିତ୍ ବାବୁ ଚନ୍ଦ୍ରମୋହନ ମହାରଣାଙ୍କ ବାଳବୋଧ ଓ ଭକ୍ତକବି ମଧୁସୂଦନ ରାଓଙ୍କର ବର୍ଣ୍ଣବୋଧ ଓ ଶିଶୁବୋଧ ପ୍ରାଥମିକ ସ୍ତରରେ ପଢ଼ା ହେଉଥିଲା । ଆମ ସମୟକୁ ଭକ୍ତକବି ନଥିଲେ କି ବିଶିଷ୍ଟ ଶିକ୍ଷାବିତ୍ ଚନ୍ଦ୍ରମୋହନ ନଥିଲେ । ମାତ୍ର ଓଡ଼ିଆ ସାହିତ୍ୟର ଉନ୍ମେଷ ପାଇଁ ଉଭୟଙ୍କର ଯେଉଁ ଅବଦାନ ତାହା ଅବିସ୍ମରଣୀୟ ।

## ରାଜକିଶୋରଙ୍କ ପାଠପଢ଼ା :

୧୯୩୦ ମସିହାରେ ନାରାୟଣ ବନ୍ଧୁ ମହାରଣାଙ୍କ ପୁତୁରା ବାବୁ ରାଜକିଶୋର ମହାପାତ୍ର ଯାଁଳା ମଧ-ଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । ନାରଣ ବନ୍ଧୁ ରାଜକିଶୋରକୁ ପୁତ୍ରଠାରୁ ଅଧିକ ସ୍ନେହ କରନ୍ତି । ରାଜକିଶୋରକୁ ଥାଳିପାଖେ ନ ବସାଇଲେ ସେ ଅନ୍ନ ଛୁଅନ୍ତି ନାହିଁ । ଅବଶ୍ୟ ସେତେବେଳକୁ ତାଙ୍କର କୌଣସି ପୁତ୍ର ସନ୍ତାନ ଜନ୍ମି ନଥିଲେ । ରାଜକିଶୋର ସାଇକେଲ୍‌ରେ ବୁଲାବାଟ ସଡ଼କ ପଥରେ ସ୍କୁଲକୁ ଯାଉଥିଲେ । ରାତ୍ରିରେ ଓ ସକାଳେ ସେ ପୁରୁଷୋତ୍ତମ କରଙ୍କ ପାଖେ ଟିଉସନ ହୁଅନ୍ତି । ମୁଁ ସ୍କୁଲ ଛାଡ଼ି ନଥାଏ । ମୋର କଣ ବା ଚାରାଥିଲା । ୧୯୩୧ ମସିହାରେ ମାଇନର ସ୍କୁଲରେ ମୋର ପଢ଼ିବାର କଥା । ମହାଜନ ପୁଅ ଉପରକୁ ଗଲେ । ମୁଁ ଜଳକାଭଳି ଚାହିଁ ରହିଲି । ରାଜୁ ଧନୀଘର ସନ୍ତାନ, ଗରିବଙ୍କ ଅବସ୍ଥା ବୁଝି ପାରନ୍ତି ନାହିଁ । ମୋ ଅଜା ମୋତେ କେତେଗୁଡ଼ିଏ ଚଟି ବହି, କୋଇଲି, ଗୋପୀଭାଷା, ମୃଗୁଣୀ ସ୍ତୁତି, ଦେଉଳତୋଳା, ସୁନାଦେଇ କାନ୍ଦ, ଶଶୀଦେଇ କାନ୍ଦ ପ୍ରଭୃତି କିଣି ଦେଇଥିଲେ । ସେ ସବୁ ବହି ବସ୍ତାନିରେ ରଖି ଘରକୁ ଖାଇବାକୁ ଯାଇଥିଲି । ମୁଁ ଫେରିଆସି ଦେଖିଲି ରାଜ ସେ ବହିଗୁଡ଼ିକ କତୁରିରେ କାଟି ଟିକିଟିକି କରି ଦେଇଛନ୍ତି । ମୁଁ କାନ୍ଦି କାନ୍ଦି ଗୁରୁଜୀଙ୍କୁ ଫେରାଦି ହେଲି । ସେ ଧନୀ ସନ୍ତାନ ହେତୁ ଅବଧାନ ତାକୁ କିଛି କହିଲେ ନାହିଁ । ମୋତେ ବିରକ୍ତ ହେଲେ । କାହିଁକି ବାଜେ ବହିଗୁଡ଼ିକ ଆଣିଛୁ ବୋଲି କହିଲେ । କିନ୍ତୁ ତା ବାପାକୁ କହି ବହିତକ କିଣି ଦେଲେ । ସେତେବେଳେ ବହିଗୁଡ଼ିକର ଦାମ୍ ଦଶଅଣା ଦୁଇପଇସା ପଡ଼ିଲା । ଉପରଲିଖିତ ବହିଗୁଡ଼ିକ ଓ ଭାଗବତ ଏକାଦଶ ସ୍କନ୍ଦ, ଦଶମ ସ୍କନ୍ଦ, ମଥୁରା ମଙ୍ଗଳ ଇତ୍ୟାଦି ପଢ଼ିଲେ ପାଠ ହୋଇଗଲା ବୋଲି ଗାଁ ଲୋକେ ମନେ କରୁଥିଲେ । ଏତକ

ବହି ପଢ଼ିଦେଲେ ଯେକେହି ଛାନ୍ଦ ରତ୍ନାକର, ରାମାୟଣ, ମହାଭାରତ ପଢ଼ିପାରିବ ବୋଲି ସମସ୍ତେ ଅନୁଭବ କରୁଥିଲେ ।

**ଗୁରୁଜୀଙ୍କ କଥା :**

ଗୁରୁଜୀଙ୍କ ମାସିକ ଦରମା ବାର ଟଙ୍କା ଥିଲା । ସେତିକି ଦରମାରେ ସେ ପାଞ୍ଚପ୍ରାଣୀ କୁଟୁମ୍ବ ଚଳେଇ ବାଟିଏ ଜମି କିଣିଥିଲେ । ଜମି ମାଣଟା ସେତେବେଳେ ୫୦ କି ୬୦ ଟଙ୍କା ଥିଲା । ଜମିର ମୂଲ୍ୟ କିଛି ନଥିଲା । ଚାଷୀକୁଳ ହତାଶ ହେଉଥିଲା । ପଇସାଟିଏ ପାଇବା ସପନ ଥିଲା । ସାଧାରଣ ଚାଷୀ ଯେ କେବଳ ଜମି ଉପରେ ଭରସା କରି ଚଳୁଥିଲା ସେ କ'ଣ କରିବ ? ଦିନକୁଦିନ ଜମି ଖଣ୍ଡିଏ ଖଣ୍ଡିଏ ତା ହାତରୁ ଖସିଯାଉଥିଲା । ଜନିଷ ଥିଲା ଶସ୍ତା ଟଙ୍କା ଥିଲା ମହଙ୍ଗା । ଗୁରୁଜୀଙ୍କର ଇଂରାଜୀ ଜ୍ଞାନ କିଛି ନଥିଲା । ପାନଖିଆ ବ୍ୟତୀତ ତାଙ୍କର କିଛି ବଦ୍‌ଗୁଣ ନଥିଲା । ପାନ, ବିଡ଼ି ପ୍ରଭୃତି ନଖାଇବାକୁ ଆମ୍ଭମାନଙ୍କୁ ସେ ପରାମର୍ଶ ଦେଉଥିଲେ । ଗାଁ ଭିତରେ ସେ ସେତେବେଳେ ପାଠୁଆ ଥିଲେ । ଗାଁ ଲୋକେ ତାଙ୍କୁ ସମ୍ମାନ ଦେଉଥିଲେ । ମାତ୍ର ସେ ସ୍ୱଭାବତଃ ଖୁବ୍ ସରଳ ଥିଲେ । ଥରେ ତାଙ୍କର ଆଖି ଧରିଲା । ଭୀଷଣରୁ ଭୀଷଣତର ହେଲା । ସେତେବେଳେ ରୋଗ ବଇରାଗ ହେଲେ ଲୋକେ ବୁଢ଼ା ମଣିଷଙ୍କୁ ପଚାରନ୍ତି । ମାଷ୍ଟ୍ରେ କାହାକୁ କେମିତି ପଚାରିଲେ । ଥରେ ରାଘବ ସ୍ୱାଇଁ ସ୍କୁଲ ଭିତରକୁ ପଶି ଆସିଲେ । ନାଁଟି ଯେପରି ବଡ଼, ଲୋକଟି ଦେଖିବାକୁ ଠିକ୍ ସେହିପରି । ବିଶାଳ ଶରୀର । ସେ କଥାଳାଷା ଛଳରେ ମାଷ୍ଟ୍ରେଙ୍କୁ ଔଷଧଟିଏ ବତେଇଦେଲେ । କହିଲେ, ''ମାଷ୍ଟ୍ରେ ଆଜ୍ଞା, କଳିଚୂନ ଆଖିରେ ଅଞ୍ଜନପରି ଲଗାଇ ଦେଲେ ଆଖିଧରା ଛାଡ଼ି କୁଆଡ଼େ ପଳେଇବ– କ'ଣ ଆଖିଧରା, ଆଖିଧରା ହେଉଛ ? ଗୁରୁଜୀ ସିନା ପାଠ ପଢ଼ିଛନ୍ତି ବଡ଼ ସରଳବିଶ୍ୱାସୀ । ସେ ଅବିଳମ୍ବେ ରାଘବଙ୍କ କଥା କରିଦେଲେ । ଦେଖୁ ଦେଖୁ ଆଖି ବାତେଇ ଗଲା, ଭୟଙ୍କର ଯନ୍ତ୍ରଣା ଦେଲା । ଗୁରୁଜୀ ମହରଗରୁ ଯାଇ କାନ୍ତାରରେ ପଡ଼ିଲେ । ଆଖି ତ ଅମୂଲ୍ୟଧନ । ନଷ୍ଟ ହୋଇଗଲେ ସାରା ଜୀବନଟା ମାଟି ହୋଇଯିବ । ତାଙ୍କ ଶ୍ୱଶୁର ଘର ସାହାଯ୍ୟରେ କଟକ ମେଡିକାଲରେ ୪ମାସ ଚିକିତ୍ସିତ ହେଲେ, ବହୁ କଷ୍ଟରେ ଆଖି ଦୁଇଟି ପୁଣି ବାଗକୁ ଆସିଲା ।

କଥାରେ ଅଛି–''ନିଜ ବୁଦ୍ଧିରେ ଘାସ କାଟିବ ସିନା ପର ବୁଦ୍ଧିରେ ଘୋଡ଼ା ଚଢ଼ିବ ନାହିଁ । '' ଗୁରୁଜୀ ପରେ ନିଜକୁ ବହୁତ ଧିକ୍କାରିଲେ । ଗୁରୁଜୀଙ୍କ ଉପଦେଶକୁ ମୁଁ ଅକ୍ଷରେ ଅକ୍ଷରେ ପାଳନ କରିଥିଲି । କୌଣସି ମାଦକ ଦ୍ରବ୍ୟ ସେବନ କଲିନାହିଁ ।

କଥାରେ ଅଛି – " ପାନ ବିଡ଼ି ନୁହେଁ ଛୋଟିଆ ନିଶା
ଜଣା ପଡ଼େ ନାହିଁ ଟାଣେ ପଇସା ।"

**ବିଦ୍ୟାଳୟରେ ପର୍ବ ପାଳନ :**

ଆମ ଗାଁ ବିଦ୍ୟାଳୟରେ ଦୁଇଟି ପର୍ବ ପାଳନ କରାଯାଏ । ଗୋଟିଏ ହେଉଛି ଶ୍ରୀପଞ୍ଚମୀ, ଅପରଟି ଗଣେଶ ଚତୁର୍ଥୀ ପୂଜା । ପିଲାମାନେ ଯାହା ଚାନ୍ଦା ଦିଅନ୍ତି ମାଷ୍ଟ୍ରେ ନିଅନ୍ତି ଏବଂ ଭୋଗ ନଡ଼ିଆରୁ ଫାଳେ ଫାଳେ ରଖି ପ୍ରାୟ ୪୦ କି ୪୫ ଫାଳ ପାଆନ୍ତି । ଉଖୁଡ଼ା କଳଦୀ ବି ପାଆନ୍ତି । ସନ୍ଧ୍ୟା ହେଲେ ନଡ଼ିଆ, କଦଳୀ, ଉଖୁଡ଼ା ଗଣ୍ଡିଲି ଧରି ଆମେ ପିଲାମାନେ ମାଷ୍ଟ୍ରେଙ୍କୁ ତାଙ୍କ ଗାଁକୁ ଛାଡ଼ିବାକୁ ଯାଉ । ତାଙ୍କ ଧର୍ମପତ୍ନୀ ଆମକୁ ଦେଖି ଖୁସିରେ ପଖାଳ ଖାଇବାକୁ ଦିଅନ୍ତି । ବ୍ରାହ୍ମଣମାନେ ପଖାଳ ଖାଇବାରେ ପାରଙ୍ଗମ । ବ୍ରାହ୍ମଣ ପଖାଳ ବି ଖାଇବାକୁ ଭଲ ଲାଗେ । ମୁଁ ବହୁବାର ଉଖୁଡ଼ା, କଦଳୀ, ନଡ଼ିଆ ଗଣ୍ଡିଲି ଧରି ମାଷ୍ଟ୍ରେଙ୍କ ଘରକୁ ଯାଇଛି । ଗୁରୁଜୀଙ୍କର ମୁଁ ବାଧ୍ୟଛାତ୍ର । ତାଙ୍କ ପାଖେ ପଢ଼ିଲାବେଳେ ସେ ପାଠ ବତାଇ ଦିଅନ୍ତି, ପଇସା ନିଅନ୍ତି ନାହିଁ । ରାତିରେ ଟିଉସନ୍ କ୍ଲାସପରି ପିଲାଙ୍କୁ ପଢ଼ାନ୍ତି । ମୋ ସହିତ ମହାରଣାଙ୍କ ପିଲା ବି ରାତିରେ ତାଙ୍କ ପାଖେ ପଢ଼ନ୍ତି । ମୋର ଲଣ୍ଠନ ନଥାଏ । ମହାରଣାଙ୍କ ପୁଅ ଲଣ୍ଠନରେ ମୁଁ ପଢୁଥିଲି ।

**ଗୁରୁଜୀଙ୍କ କଠୋରପଣ :**

ଯେତେଦୂର ମନେ ପଡୁଛି ଗୁରୁଜୀ ୩୫ବର୍ଷ ବୟସରେ ବିପତ୍ନୀକ ହେଲେ । ସେତେବେଳକୁ ତାଙ୍କର ଦୁଇଗୋଟି ପୁତ୍ର ସନ୍ତାନ ଜାତ ହୋଇଥିଲେ । ସେ ସେହି ପୁତ୍ର ଦୁଇଟିର ମୁହଁଚାହିଁ ସାରାଜୀବନ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରିଥିଲେ । ୮୮ବର୍ଷ ବୟସରେ ସେ ଇହଧାମ ତ୍ୟାଗ କଲେ । ମୋ ପ୍ରତି ତାଙ୍କର ଅତୁଟ ସ୍ନେହ ଥିଲା । ସେ ନିଷ୍କଳଙ୍କ ଚରିତ୍ରର ଅଧିକାରୀ ହୋଇଥିଲେ । ଏପରି ଆଦର୍ଶ ଚରିତ୍ରର ଗୁରୁ କ୍ୱଚିତ୍ ଦେଖାଯାଆନ୍ତି ।

କଥାରେ ଅଛି– "ଗୁରୁଃ ବ୍ରହ୍ମା, ଗୁରୁଃ ବିଷ୍ଣୁଃ, ଗୁରୁଃ ଦେବ ମହେଶ୍ୱରଃ
ଗୁରୁଃ ସାକ୍ଷାତ୍ ପରଂବ୍ରହ୍ମଃ, ତସ୍ମୈଶ୍ରୀ ଗୁରବେ ନମଃ ।"
" ଗୁରୁଙ୍କୁ ନ ମଣିବ ନର, ଗୁରୁଟି ସାକ୍ଷାତ ଈଶ୍ୱର ।"

ସେ ଥିଲେ ପ୍ରକୃତ ପୁରାଣବର୍ଣ୍ଣିତ ଗୁରୁ ।

**ଖୋର୍ଦ୍ଧା ସବ୍‌ଡିଭିଜନ ସାହେବ ରାଧାଚରଣ ଦାସ :**

ଯେତେଦୂର ମନେ ପଡୁଛି ୧୯୩୦ ବା ୧୯୩୧ ମସିହାରେ ଖୋରଧାର ତତ୍କାଳୀନ ସବ୍‌ଡିଭିଜନ ସାହେବ ରାୟ ବାହାଦୁର ରାଧାଚରଣ ଦାସ କୌଣସି ଜରୁରୀ

କାର୍ଯ୍ୟରେ ଆମ ଗାଁକୁ ଆସି ଚାଟଶାଳୀ ଭିତରକୁ ପଶିଗଲେ । ପିଲାଏ ଏକ ପ୍ରକାର ମସିଆ ଗାମୁଛା ପିନ୍ଧିଥିଲେ । ଆମ ଗାଁ ପିଲାଙ୍କର ଏହା ଯେ ଅବସ୍ଥା ତାହା ନୁହେଁ, ସାରା ରାଜ୍ୟରେ ଏହିପରି ଅବସ୍ଥା । ଗୁରୁଜୀ କିନ୍ତୁ ସଫା ଧୋତି ପିନ୍ଧିଥିଲେ । କଲା ସାହେବ ମହୋଦୟ ଖୁବ୍ କଡ଼ା ବୋଲି ଜଣାପଡ଼ିଲା । ସେ ପୂରାପୂରି ବ୍ରିଟିଶ ସମର୍ଥକ ଥିଲେ । ତେଣୁ ତାଙ୍କ ସମୟରେ ଖୋର୍ଦ୍ଧାରେ କଂଗ୍ରେସ ଆନ୍ଦୋଳନ ମୁଣ୍ଡ ଟେକିପାରିନଥିଲା । କିନ୍ତୁ ସେ ବିଚାରବନ୍ତ ବ୍ୟକ୍ତି ଥିଲେ । ସେ ଆମ ଗାଁକୁ ଯେଉଁଦିନ ଆସିଥିଲେ ସେଦିନ ଆମ ଗାଁ ପାଖ ସଅର ସାହି ଲୋକେ ତାଙ୍କ ଗୋଡ଼ ତଳେ ପଡ଼ିଗଲେ । ସେମାନେ ମହାରଣାଙ୍କ ଜାଗାରେ କୁଡ଼ିଆ କରି ଦୁଃସ୍ଥ ଜୀବନ ଯାପନ କରୁଥିଲେ । ସାହେବ ପଚାରିଲେ କ'ଣ ଚାହୁଁଛ ? ସେମାନେ ଏକ ସ୍ୱରରେ ଉତ୍ତର ଦେଲେ "ହଜୁର, ଆମର ଡିହ ବାଡ଼ି କିଛି ନାହିଁ । ରହିବା ପାଇଁ ଖଣ୍ଡେ ଖଣ୍ଡେ ଜାଗା ଦିଅନ୍ତୁ ।" ତଳକ୍ଷେତା ଛକ ଉପରେ ଯେଉଁ ବିରାଟ ସଅର ସାହି ଗଢ଼ିଉଠିଛି ତାହା ରାଧାଚରଣ ବାବୁଙ୍କ ଦାନ । ପରେ ଶୁଣିଲି କଥା କହି ଜାଣୁନଥିବା ଆଦିବାସୀ ଜନତା ତତ୍କାଳୀନ କଂଗ୍ରେସ କର୍ମୀ ମୁଣ୍ଡମୁହାଣ ଗ୍ରାମ ନିବାସୀ ବାବୁ କୁଳମଣି ସାମନ୍ତରାୟଙ୍କ ପ୍ରରୋଚନାରେ ବାସଭୂମି ଲାଭ କରିଥିଲେ । ଉକ୍ତ ରାଧାଚରଣପୁର ୫ ନମ୍ବର ଜାତୀୟ ରାଜପଥ ନିକଟରେ ଜଟଣୀ-ଗୋବିନ୍ଦପୁର ରାସ୍ତା ସଂଯୋଗ ସ୍ଥଳରେ ଅବସ୍ଥିତ । ବର୍ତ୍ତମାନ ଏହି ସାହିର କେତେକ ଯୁବକ ସ୍ୱାଧୀନ ସରକାରଙ୍କ ଆଦିବାସୀ ନୀତି ଅନୁଯାୟୀ ସରକାରୀ ଚାକିରିରେ ନିଯୁକ୍ତି ପାଇଲେଣି ଏବଂ ସେମାନଙ୍କର ଆର୍ଥିକ ଅବସ୍ଥା ପୂର୍ବାପେକ୍ଷା ଢେର୍ ଉନ୍ନତ ହେଲାଣି । ସ୍ପୃଶ୍ୟ ଜାତିଙ୍କ ପରି ଜୀବନଯାପନ କଲେଣି । ସେମାନଙ୍କ କଥାଭାଷା, ଚାଲିଚଳନରେ ପରିବର୍ତ୍ତନ ହେଲାଣି । ଏବେ ସେମାନଙ୍କ ଚେଷ୍ଟାରେ ଏକ ବିରାଟ ଫୁଟବଲ ଖେଳ ଜୋରସୋରରେ ଚାଲିଛି ।

## ପାଠ ନପଢ଼ି କ'ଣ କରିବାକୁ ମନ :

ମୋର ଉପରକୁ ପଢ଼ିବାର କିଛି ବାଟ ନଥିଲା । ଆମ ଗାଁରେ ଏକ ଦକ୍ଷ କୀର୍ତ୍ତନ ମଣ୍ଡଳୀ ଥିଲା । ୨୦ କି ୩୦ଖଣ୍ଡ ମୌଜାରେ ଆମ ଗାଁ କୀର୍ତ୍ତନିଆ ଖୁବ୍ ନାଁ କରିଥିଲେ । ଗାଁର ମହାଜନ କୃଷ୍ଣଚନ୍ଦ୍ର ମହାପାତ୍ର ଏହି କୀର୍ତ୍ତନ ଦଳକୁ ତାଲିମ ଦେଉଥିଲେ । କୀର୍ତ୍ତନ ଗାୟକ ମୋହନ ସୁନ୍ଦର ପାଇକରାଙ୍କର କଣ୍ଠସ୍ୱର ଅତି ଚମତ୍କାର ଥିଲା । ମାତ୍ର ସେ ବୃଦ୍ଧ ହୋଇଯିବାରୁ ଜଣେ ଗାୟକର ଆବଶ୍ୟକ ପଡ଼ିଲା । ମୁଁ ଭଲ ପଢୁଥିଲି ଓ ମୋର କଣ୍ଠସ୍ୱର ଖୁବ୍ ପରିଷ୍କାର ଥିଲା । ଆମ ପଡ଼ିଶା ଘରର ପ୍ରବୀଣ ଗାୟକ ଭ୍ରାତୃକଳ୍ପ

ବାବୁ ଗୋଲକ ବରାଳ ଯେତେବେଳେ ମୋତେ ଦଳରେ ନେବାପାଇଁ ପ୍ରବର୍ତ୍ତାଇଲେ ସେତେବେଳେ ମୁଁ ଆନନ୍ଦରେ ନାଚି ଉଠିଲି । ପାଠ ପଢ଼ିବାଟା ଭାରି କଷ୍ଟ ଲାଗୁଥାଏ । ତେଣୁ କୀର୍ତ୍ତନ ଗୁରୁ ହେବି ବୋଲି ମନେମନେ ସ୍ଥିର କଲି, ପଢ଼ିବା ବୟସ ଗଡ଼ିଗଡ଼ି ଯାଉଥାଏ । ପାଠ ଭୁଲି ଭୁଲି ଯାଉଥାଏ । ବିଲବାଡ଼ିରେ କାମ କରିବା ଗାଁ ଲୋକମାନଙ୍କର ବେଉସା । ମୁଁ ସେ କାମ କରିବି, ଆଉ ପାଠ ପଢ଼ା କ'ଣ ? ମୋହରିର କାମ ପାଇଁ ନାରଣ ବନ୍ଧୁ ମହାରଣା କିଛି ବନ୍ଦୋବସ୍ତ କଲେ ନାହିଁ । ଦି ତିନି ବର୍ଷ ଗାଁରେ ତୋଟାମାଳରେ ପିଲାଙ୍କ ସଙ୍ଗେ ବୁଲିବାରେ କଟେଇଲି । ଅନ୍ନଧ୍ୱଂସ କରିବା ସାର ହେଲା । କିଛି ଦିନ କୀର୍ତ୍ତନ ଶିଖିବାକୁ ଭାଗବତ ଘରକୁ ଗଲି । ମାତ୍ର ତେଣେ ମନ ଯାଉ ନଥାଏ ।

## ବହୁ ଆକାଂକ୍ଷିତ ମାଇନର ସ୍କୁଲରେ ପ୍ରବେଶ :

ଆମ ଦେଶରେ ଗୋଟିଏ ଆପ୍ତ ବାକ୍ୟ ଅଛି ''କପାଳ ଲିଖନ, କେ କରିବ ଆନ ?'' ପ୍ରକୃତରେ କପାଳରେ କିଛି ଲେଖା ହୋଇ ନଥାଏ । ଲୋକେ ତ ଆଜନ୍ମ ଭାଗ୍ୟବାଦୀ, ତେଣୁ ଏପରି କହିଥାନ୍ତି । ତେବେ ବହୁ ସମୟରେ ଏହି ବାକ୍ୟ ଫଳପ୍ରଦ ହୋଇଥାଏ । କାହାର ଭବିଷ୍ୟତ କ'ଣ ହେବ କେହି କହିପାରିବେ ନାହିଁ । ବେଳେ ବେଳେ ଜ୍ୟୋତିଷମାନଙ୍କର କଥା ସତ୍ୟରେ ପରିଣତ ହୁଏ । ଆମ ଗାଁରେ ଆମ ଘରଠାରୁ ଗୋଟିଏ ଘର ଛାଡ଼ି ଜଣେ ଦାଣ୍ଡୁଆ ଲୋକ ଥିଲେ । ତାଙ୍କ ନାମ ଶ୍ରୀ ଭ୍ରମରବର ସ୍ୱାଇଁ । ମାମଲତକାରିଆ ଲୋକ । ଆଳାପୀ ଓ ମିଷ୍ଟଭାଷୀ । ଉପର ମହଲର ଲୋକଙ୍କ ସଙ୍ଗେ ଭଲ ମିଶି ପାରନ୍ତି । ତାଙ୍କର ଭଲ ଚାଷ ଜମି ଥିଲା । ସେ ସଉକିଆ ଲୋକ, ବାପ ମରିଗଲାପରେ ବଡ଼ ଶୁଖୁଆ ଖାଇ ଜମି ବିକି ବିକି ଶେଷକଲେ । ''ବସି ଖାଇଲେ ନଈବାଲି ସରେ'' । ଗାଁରେ ତ ଅଧିକାଂଶ ମଳିମୁଣ୍ଡିଆ । ସେହି ମଳିମୁଣ୍ଡିଆଙ୍କ ଭିତରେ ସେ ଟିକିଏ ସଫାଧୋତି ଓ ପେଡ଼ି କୁର୍ତ୍ତା ପିନ୍ଧନ୍ତି । ଯାଁଳା ତାଙ୍କର ଭିଣୋଇ ଘର । ବହୁ ସମୟ ଯାଁଳା ଯାଆନ୍ତି । ସେଠାର ବିଶିଷ୍ଟ ଲୋକ ପୋଷ୍ଟମାଷ୍ଟର ବାବୁ ରାମକୃଷ୍ଣ ମହାପାତ୍ର ଓ ବିଶିଷ୍ଟ ଧନୀବ୍ୟକ୍ତି ବାବୁ କୈଳାସ ଚନ୍ଦ୍ର ସାମନ୍ତରାୟଙ୍କ ସଙ୍ଗେ ସେ ସୁପରିଚିତ ଥିଲେ । ୧୯୨୫ ମସିହାରେ ଯାଁଳା ଭର୍ଣ୍ଣାକୁଲାର ସ୍କୁଲ ମାଇନର ସ୍କୁଲରେ ପରିଣତ ହୋଇଥିଲା । ସେତେବେଳେ ସ୍କୁଲ ପାଇଁ ଭଲ ପିଲାର ଅଭାବ ପଡୁଥିଲା । ତେଣୁ କୈଳାସବାବୁ କେତୋଟି ଭଲପିଲା ଯୋଗାଡ଼ କରିବାକୁ ଭ୍ରମର ସ୍ୱାଇଁଙ୍କୁ ସର୍ବଦା କହୁଥିଲେ । ମୁଁ ତ ଭଲ ପଢୁଥିଲି ତେଣୁ ଭ୍ରମର ଭାଇ ମୋତେ ସେ ସ୍କୁଲରେ ପଢ଼େଇବା ପାଇଁ ମୋ ଭ୍ରାତୃଦ୍ୱୟଙ୍କୁ ଖୁବ୍ ପ୍ରବର୍ତ୍ତାଇଲେ ଏବଂ ବିନା ଦରମାରେ ମୁଁ ପଢ଼ିବି ବୋଲି ଭ୍ରାତୃଦ୍ୱୟଙ୍କୁ

ବୁଝାଇଲେ । ସବୁ ତ ସୁଯୋଗ । ସେତେବେଳେ ୪ର୍ଥ ଶ୍ରେଣୀରେ ଗୋଟିଏ ପିଲାର ମାସକୁ ଦରମା ଏକଟଙ୍କା ଚାରିଅଣା । ଅଭିଭାବକମାନଙ୍କ ମଧ୍ୟରୁ ଅଧିକାଂଶ କୃଷି ଉପରେ ନିର୍ଭର କରନ୍ତି । ତେଣୁ ଏତିକି ପଇସା ଦେଇ ଖୁବ୍ କମ୍ ଲୋକ ପିଲାଙ୍କୁ ପଢ଼ାନ୍ତି । ବାରମ୍ବାର ନାଁ କଟିଯାଉଥାଏ । ତା ସାଙ୍ଗରେ ପୁଣି ବହି, ଖାତା, କଲମ, କାଳି ଅଛି । ଜଣେ କୃଷି ଶ୍ରମିକର ଦିନକୁ ମଜୁରି ମୋଟେ ଦୁଇ କି ତିନିଅଣା । ସେ ପିଲାକୁ ପଢ଼ାଇବାକୁ ସମର୍ଥ ହେବ କିପରି ? ମୋତେ ଯେତେବେଳେ ସ୍କୁଲ ଫି ପଡ଼ିବ ନାହିଁ ବୋଲି ମୋ ଭାଇମାନେ ଜାଣିଲେ ସେମାନେ ସହଜରେ ରାଜି ହୋଇଗଲେ । ମୁଁ ସେତେବେଳକୁ ବିଲ ବାଡ଼ିରେ କାମ କରୁ ନଥିଲି । ମୋ ଭ୍ରାତୃଦ୍ୱୟଙ୍କ ରୋଜଗାର ଧନରେ ମୁଁ ପ୍ରତିପୋଷିତ ହେଉଥିଲି । ତେବେ ''ଭାଗ୍ୟଫଳତି ସର୍ବତ୍ର'' ଏହି ନ୍ୟାୟରେ ଭାଗ୍ୟାନୁସାରିଣୀ ହେଲି ।

ଯାଁଳା ପୁରୁଣା ସ୍କୁଲ । ସମଗ୍ର ଜିଲ୍ଲାରେ ତା'ର ନାଁ ଥିଲା । ମୋର କୀର୍ତ୍ତନ ଗାୟକ ହେବା ନୋହିଲା । ମୁଁ ପୁଣି ପାଠ ପଢ଼ିବାକୁ ଯିବାକୁ ପ୍ରସ୍ତୁତ ହେଲି । ଭାଇ ଭ୍ରମରବର ମୋତେ ସାଙ୍ଗରେ ନେଇ ଯାଁଳା ମାଇନର ସ୍କୁଲରେ ମୋ ନାଁ ୧୯୩୩ ମସିହା ଜାନୁଆରୀ ମାସରେ ଲେଖେଇଦେଲେ । ସେତେ଼ବେଳେ ଜାନୁଆରୀ ମାସରେ ଶିକ୍ଷାବର୍ଷ ଆରମ୍ଭ ହେଉଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ପାଇନଥାଏ । ମଧୁବାବୁ ମୃତ୍ୟୁ ଶଯ୍ୟାରେ ପଡ଼ିଥାନ୍ତି । ପାରଳା ମହାରାଜା ପରଳାଖେମୁଣ୍ଡିକୁ ଓଡ଼ିଶାରେ ମିଶେଇବା ପାଇଁ ଗୋଲଟେବୁଲ ବୈଠକରେ କୃତକାର୍ଯ୍ୟ ହୋଇଥାନ୍ତି । ମଧୁବାବୁଙ୍କ ପାଖେ ସମ୍ବାଦ ପହଞ୍ଚୁଥାଏ । ଏହି ସମୟରେ ମୋ ଜୀବନରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ଘଟିଲା । ବଲମ ଛାଡ଼ି କଲମ ଧରିଲି । ଗୋଟାଏ ଗଡ଼ ଜିଣିଲା ପରି ମୋତେ ବୋଧହେଲା ।

ସେ ସମୟରେ ଜଟଣୀରେ ମାଇନର ସ୍କୁଲଟିଏ ନଥିଲା । ଭୁବନେଶ୍ୱରଠାରୁ ଖୋର୍ଦ୍ଧା ଓ ଚନ୍ଦକା-ଦାରୁଠେଙ୍ଗଠାରୁ ହରିରାଜପୁର ମଧ୍ୟରେ ମାଇନର ସ୍କୁଲଟିଏ ବି ନଥିଲା । ଏଥିରୁ ସାକ୍ଷରତାର ହାର ଜଣାପଡ଼େ । ମୁଁ ବଡ଼ସ୍କୁଲରେ ପଢ଼ିବାରୁ ଗାଁରେ ମୋର ସମ୍ମାନ ବଢ଼ିଲା ।

**ସ୍କୁଲକୁ ଯିବା ପାଇଁ ଦୁଃସାଧ ରାସ୍ତା :**

ସେତେବେଳକୁ ଆମ ଗାଁର ରାଜକିଶୋର ୭ମ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ତାଙ୍କର ଶେଷ ବର୍ଷ । ସେ ସେତେବେଳେ ବୋର୍ଡିଂରେ ଅବସ୍ଥାନ କରୁଥିଲେ । ମୁଁ ପ୍ରତିଦିନ

ପଦବ୍ରଜରେ ଗ୍ରାମରୁ ଯାତାୟାତ କରୁଥିଲି । ଆମ ଗାଁଠାରୁ ଯାଁଳା ସ୍କୁଲ ତିନି କିଲୋମିଟର ରାସ୍ତା ହେବ । ମାତ୍ର ଏକ ବିରାଟ ଗହୀର ଅତିକ୍ରମ କରିବାକୁ ପଡ଼େ । ''ଏକା ମାଧିଆ ବାଇଶ ପଲ'' ବର୍ଷା ଦିନେ ହିଡ଼ବାଟ, ପାଣି କାଦୁଅ ବିଲ, ତିନିଗୋଟି ନାଳ ପାରହୋଇ ଯିବା କଷ୍ଟସାଧ । ସଡ଼କ ବାଟେ ଗଲେ ହୁଅନ୍ତା, ମାତ୍ର ଦୁଇଗୁଣ ରାସ୍ତା । ଯଦି ମୂଷଳଧାରାରେ ବର୍ଷା ହୋଇଗଲା ତେବେ ପିନ୍ଧାଲୁଗା ଟେକି ବା ସମୟରେ ଦିଗମ୍ବର ବେଶଧରି ବହୁତ ବାଟ ଗହୀର ବିଲ ହିଡ଼ରେ ବୁଲିକରି ଯିବାକୁ ପଡ଼େ । ସର୍ପ ପ୍ରଭୃତି ଜନ୍ତୁମାନଙ୍କୁ ଭୟ ଲାଗେ । ପାଣିଭିତରୁ କଅଣଟେ ବାହାରିପଡ଼ିଲେ ଚମକି ପଡ଼େ । ପାଣି ସ୍ରୋତରେ ସାପ ମୁଣ୍ଡ ଦିଖଣ୍ଡ ହୋଇଯିବ । ତଥାପି ଦିନେ ହେଲେ ସ୍କୁଲକୁ ଯିବା ବନ୍ଦ କରେ ନାହିଁ । ପୁରୁଷୋତ୍ତମ କରଙ୍କ ଉପଦେଶ ଅନୁଯାୟୀ 'ଆସ୍ତିକ', 'ଆସ୍ତିକ' ନାମ ଉଚ୍ଚାରଣ କରି ବାଟ ଚାଲୁଥାଏ । ବର୍ଷାକାଳେ ଗହୀର ବିଲରେ ଯାଉଥିବାବେଳେ ଘଡ଼ଘଡ଼ି, ଚଡ଼୍‌ଚଡ଼ି ଜୋରରେ ମାରେ । ଭୟରେ ଛାତି ଦପ୍‌ଦପ୍ ହୁଏ । 'କୃଷ୍ଣ କୃଷ୍ଣ' ନାମ ଘୋଷିଲେ ମନରେ ଦମ୍ଭ, ସାହସ ଆସେ । ମୋର ଠାକୁରଙ୍କ ଉପରେ ଅଟଳ ବିଶ୍ୱାସ ଥିଲା ।

**ଯାଁଳା ମାଇନର ସ୍କୁଲ :**

ନିମ୍ନ ପ୍ରାଥମିକ ସ୍କୁଲରେ ପଢ଼ାପଢ଼ିରେ ଟିକିଏ ଖଇଚା କରୁଥିଲି ମାତ୍ର ଏଠାରେ ମନଟା ପୂରାପୂରି ପାଠରେ ଲାଖି ରହିଲା । ସ୍ୱଭାବତଃ ମୁଁ ଡରକୁଳା ଆଉ ସରଳ ଥିଲି । କାହାସଙ୍ଗେ କଳିକଜିଆ କରୁନଥିଲି । କଥାରେ ଅଛି ''ବାପ ଥିଲା ପୁଅ ସଭାରେ ହାରେ ନାହିଁ ।'' ମୁଁ ତ ମା ପେଟରୁ ବାପକୁ ଖାଇଛି, ତେଣୁ ସମସ୍ତଙ୍କୁ ଭୟକରେ । ସବୁ କାମରେ ସଙ୍କୋଚ ବୋଧ । ମୁଁ ଚାଲାକ ଚତୁର ନୁହେଁ, ମୁହଁଫିଟା ନୁହେଁ, ତେଣୁ ଗାଁ ଲୋକେ ମୋତେ ନିମ୍ନ ଦୃଷ୍ଟିରେ ଦେଖନ୍ତି । ଏପରିକି ମୋ ବଡ଼ଭାଇ ମୋ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି 'ଗଧ' ବୋଲି କହନ୍ତି । ସେତେବେଳେ ମୋତେ ଲାଜ ମାଡ଼େ । ମାତ୍ର ମୋର କେତେଗୁଡ଼ିଏ ଭଲ ଗୁଣ ଥାଏ । ପାଠପଢ଼ିବାରେ ଭଲ ମନଦିଏ । ଗୁରୁଜନ ଓ ଶିକ୍ଷକ ମହାଶୟଙ୍କୁ ଖୁବ୍ ଭକ୍ତି କରେ । ଭଲ ପଢ଼େ । ଏଣେ ନମ୍ର, ଧୀର ସ୍ୱଭାବ ଯୋଗୁଁ ଯାଁଳା-ମୁଣ୍ଡମୁହାଣରେ ସମସ୍ତେ ବିଶେଷତଃ ବ୍ରାହ୍ମଣମାନେ ମୋତେ ଆଦର କରନ୍ତି । ଯାଁଳା ସ୍କୁଲ ପ୍ରଥମେ ଢାଉରଙ୍ଗ ଗଛପାଖେ ଗାଁ ଭିତରେ ଥିଲା । ମାଇନର ସ୍କୁଲ ହେଲାପରେ ରାସ୍ତାକଡ଼ରେ ଦଶ ବାର ଏକର ଜମି ଉପରେ ୫ ବଖରାର ଏକ ସୁଦୃଶ୍ୟ କୋଠାଘର ନିର୍ମାଣ କରାଗଲା । ଏହା ବ୍ୟତୀତ କାର୍ପେଣ୍ଟାରୀ କ୍ଲାସ ଓ ବୋଡ଼ିଂ ଘର ପାଇଁ ୩ ଦାଣ୍ଡି ଚାଳଛପର ଗୃହ ନିର୍ମିତ ହୋଇଥିଲା ।

ଯାଁଳା ଗୋଟିଏ ପୁରାତନ ଗ୍ରାମ । ଏହି ଗ୍ରାମର ଜଗଦେବ ବଂଶ ଖୋର୍ଦ୍ଧା ପାଇକ ବିଦ୍ରୋହର ବିପ୍ଳବୀ ବୀର ଥିଲେ ।୧୮୩୮ ମସିହାରେ ଦହିମାଛଗାଡ଼ିଆର ମଧୁସୂଦନ ପଟ୍ଟନାୟକ ଖୋର୍ଦ୍ଧାର ଏସ୍.ଡି.ଓ. ଥିଲାବେଳେ ଏହି ଯାଁଳା ଗ୍ରାମର ସତ୍ୟବାଦୀ ପଟ୍ଟନାୟକ ତାଙ୍କର ପେସ୍କାର ଥିଲେ । ସତ୍ୟବାଦୀ ପଟ୍ଟନାୟକଙ୍କ ସକାଶେ ମଧୁସୂଦନ ପଟ୍ଟନାୟକ ଚାକିରିରୁ ବରଖାସ୍ତ ହୋଇଗଲେ । ଯାଁଳା ଗ୍ରାମର ବିଶିଷ୍ଟ କବି କଳିଙ୍ଗ ଭାରତୀର ପ୍ରାଣପ୍ରତିଷ୍ଠାତା ଶ୍ରୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ସତ୍ୟବାଦୀ ପଟ୍ଟନାୟକଙ୍କର ନାତି ଥିଲେ । ଏତଦ୍ ବ୍ୟତୀତ ଶିକ୍ଷାବିତ୍ ପଦ୍ମଚରଣ ଓ ପ୍ରଶାସକ ଗୋପାଳ ପଟ୍ଟନାୟକଙ୍କର ଘର ଏହି ଗ୍ରାମରେ । ମୁଁ ପାଠ ପଢ଼ିଲା ବେଳକୁ ଏଠାରେ କେବଳ ଶାଖା ଡାକଘରଟିଏ ଥିଲା ଏବେ ଏଠାରେ ଫାଣ୍ଡି ଓ ଡାକ୍ତରଖାନା ଖୋଲିଲାଣି । ଏହା ୫ ନମ୍ବର ଜାତୀୟ ରାଜପଥ ଉପରେ ଅବସ୍ଥିତ । ମୁଣ୍ଡମୁହାଣର ବାବୁ କୈଳାସ ଚନ୍ଦ୍ର ସାମନ୍ତରାୟ ଏହି ମି.ଇ. ସ୍କୁଲର ସେକ୍ରେଟାରୀ । ତାଙ୍କ ଜ୍ୟେଷ୍ଠଭ୍ରାତା କୃଷ୍ଣଚନ୍ଦ୍ର ସାମନ୍ତରାୟଙ୍କ ନାମରେ ଏଠାରେ ୧୯୯୫ ମସିହାରେ ହାଇସ୍କୁଲ ସ୍ଥାପିତ ହୋଇଛି । ପୁରାତନ ଶିକ୍ଷାକେନ୍ଦ୍ର ହେଲେ ମଧ ଏଠାରେ କଲେଜଟିଏ ନିର୍ମାଣ କରାଯାଇନାହିଁ । ଅଥଚ ଏହାଠାରୁ ଢେର୍ ଅନଗ୍ରସର ସ୍ଥାନରେ ସ୍ୱାଧୀନତାପରେ ଅଭୂତପୂର୍ବ ଉନ୍ନତି ସାଧିତ ହୋଇଛି ।

**ଯାଁଳା ମାଇନର ସ୍କୁଲ ଶିକ୍ଷକ ବୃନ୍ଦ :**

ସେତେବେଳେ ଯାଁଳା ମଧଇଂରାଜୀ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ସାକ୍ଷୀଗୋପାଳ ନିକଟବର୍ତ୍ତୀ ବୀର ବିଶ୍ୱନାଥପୁର ଶାସନର ଶ୍ରୀ ରାମକୃଷ୍ଣ ମହାପାତ୍ର । ସେ ଜଣେ ଉତ୍ତମ ଗଣିତ ଶିକ୍ଷକ ଥିଲେ । ତାଙ୍କ ସାନଭାଇ ଗଙ୍ଗାଧର ଓ ପୁତ୍ର ଶରତ ଚନ୍ଦ୍ର ଯାଁଳା ସ୍କୁଲରେ ପଢୁଥିଲେ । ଶରତଚନ୍ଦ୍ର ପରେ ପ୍ରାଧାପକ ଭାବେ ଅବସର ନେଇଥିଲେ । ବିଦ୍ୟାଳୟରେ ୫ ଜଣ ଶିକ୍ଷକ ଥିଲେ । ୨ୟ ଶିକ୍ଷକ କେନ୍ଦ୍ରାପଡ଼ା ଅଞ୍ଚଳର ଶ୍ରୀ ନୀଳମଣି ଜେନା । ସେ ଔଗ୍ର କ୍ଷତ୍ରିୟ । ଏକ ସଫା ପଇତା କାନ୍ଧରେ ପକାଉଥିଲେ । କଡ଼ା ମିଜାସର ଲୋକ । ପାଠ ପଢ଼େଇବାରେ ଧୁରନ୍ଧର । ଭାରି ରାଗୀ । କୌଣସି ପିଲା ସ୍କୁଲକୁ ନ ଆସିଲେ ସେ ଖୁବ୍ ରାଗୁଥିଲେ । ୪ର୍ଥ ଓ ୫ମ ଶ୍ରେଣୀରେ ଇଂରାଜୀ ପଢ଼ାଉଥିଲେ । ଜଣେ ଇଂରେଜ ଶିକ୍ଷାବିତ୍ ଇଂରାଜୀ ପୁସ୍ତକଗୁଡ଼ିକ ଲେଖିଥିଲେ । ଦିନେ ମୁଁ ସ୍କୁଲକୁ ନଯାଇ ଗଙ୍ଗପଡ଼ା ମେଳଣକୁ ଯାଇଥିଲି । ଜେନା ସାର୍ ମୋ ଉପରେ ଖୁବ୍ ରାଗିଥିଲେ । ମାତ୍ର ସେ ପୂର୍ବଦିନ ଦେଇଥିବା ପାଠ ମୁଁ ପ୍ରାଞ୍ଜଳ ଭାବରେ ପଢ଼ିଦେଲି । ସେତେବେଳେ ସେ ମୋ ପିଠିକି ଥାପୁଡ଼ାଇ ଦେଲେ । ତାଙ୍କ କ୍ରୋଧ ମନକୁମନ ଅନ୍ତର୍ହିତ

ହେଲା । ଆଉଥରେ ଡ୍ରିଲ୍ କ୍ଲାସରେ ସେ ଓ୍ୱାନ୍, ଟୁ, ଥ୍ରୀ ଶିକ୍ଷା ଦେଉଥିଲେ । ଏହିପରି ମୋ ପୂର୍ବ ପିଲାମାନେ କହିଗଲେ । ମୋ ପୂର୍ବପିଲା ଟୋଣ୍ଡି ନାଇନ କହିଲା । ମୁଁ ତାପରେ କହିଲି 'ଟୋଣ୍ଡି ଟେନ୍' । ସେ ତ ଧାଇଁ ଆସି ମୋ ଉପରେ ମାଡ଼ ଭରଣକ କଡ଼ାଏ କରିଦେଲେ । ମୁଁ ନୂଆକରି ଗଣି ଶିଖୁଥିଲି । ତେଣୁ ଏପରି ଭୁଲ ହେଲା । ମୁଁ ଭାବିଲି ନାଇନ ପରେ ତ ଟେନ୍, ଭୁଲ ହେଲା କେଉଁଠି ? ପରେ ଜାଣିପାରିବାରୁ ଲଜ୍ଜିତ ହେଲି ।

ଶ୍ରୀଯୁକ୍ତ ଜେନା ଇଂରାଜୀରେ ଭଲ କହିପାରୁଥିଲେ । ଇନସ୍‌ପେକ୍ଟର ଏସ୍. ରାୟଙ୍କ ସହିତ ସେ ଇଂରାଜୀରେ କଥାଭାଷା ହେଉଥିବାର ମୁଁ ନିଜେ ଦେଖିଛି । ବର୍ଷ ଶେଷବେଳକୁ ସେ କେନ୍ଦ୍ରାପଡ଼ା ବଳଦେବ ମି.ଇ. ସ୍କୁଲକୁ ଚାଲିଗଲେ । ତାଙ୍କ ପରେ ବନ୍ତଳସିଂହର ଶ୍ରୀ ଜଗନ୍ନାଥ ମିଶ୍ର ଓ ତାଙ୍କପରେ ମଦନପୁରର ଶ୍ରୀ ଅଦ୍ୱୈତାନନ୍ଦ ଚମ୍ପତିରାୟ ୨ୟ ଶିକ୍ଷକ ସ୍ଥାନ ଅଧିକାର କରିଥିଲେ । ଅଦ୍ୱୈତବାବୁ ମୋର ଖୁବ୍ ଯତ୍ନ ନେଉଥିଲେ । ସେ ବି.ଏ. ପାସ୍‌କରି ଭୁବନେଶ୍ୱର ଭକ୍ତମଧୁ ହାଇସ୍କୁଲ୍‌ରେ ୧୯୬୯ ମସିହା ପର୍ଯ୍ୟନ୍ତ ଶିକ୍ଷକତା କରିଥିଲେ । ୩ୟ ଶିକ୍ଷକ ଥିଲେ କୋଣାର୍କ କୁରୁଜଙ୍ଗର ଶ୍ରୀ ବଳଭଦ୍ର ନାୟକ । ସେ ଜଣେ ଛାତ୍ରବତ୍ସଳ ଓ ଉତ୍ତମ ଶିକ୍ଷକ ଥିଲେ । ଓଡ଼ିଆ ସାହିତ୍ୟ ଓ ଗଣିତରେ ତାଙ୍କର ଭଲ ଦଖଲ ଥିଲା । ସେ ଭି.ଏମ୍. ପଣ୍ଡିତ ଥିଲେ । ତାଙ୍କ ପୁତ୍ର ହରି ଏଠାରେ ପଢୁଥିଲେ । ପରେ ଜଣେ ପ୍ରଶାସନିକ ଅଫିସର ହେଲେ । ଚତୁର୍ଥ ଶିକ୍ଷକ ମୁଣ୍ଡମୁହାଣ ଗ୍ରାମର ନୀଳକଣ୍ଠ ମହାପାତ୍ର । ପଞ୍ଚମ ଶିକ୍ଷକ ଜଣେ କାଠଶିଳ୍ପୀ ନାମ ସୁଦର୍ଶନ ବିଶ୍ୱାଳ । ପଞ୍ଜାବରୁ କାଠ ଶିଳ୍ପରେ ତାଲିମ ହାସଲକରି ଏଠାରେ ନିୟୋଜିତ ହୋଇଥିଲେ । ପୂର୍ବ କାଠଶିଳ୍ପୀ ମାସକୁ ପନ୍ଦର ଟଙ୍କା ବେତନ ପାଉଥିଲେ । ହେଡମାଷ୍ଟର ପଚାଶ ଟଙ୍କା, ଦ୍ୱିତୀୟ ଶିକ୍ଷକ ପଇଁତିରିଶ ଟଙ୍କା, ତୃତୀୟ ଶିକ୍ଷକ ପଚିଶ ଟଙ୍କା, ଚତୁର୍ଥ ଶିକ୍ଷକ କୋଡ଼ିଏ ଟଙ୍କା ଦରମା ପାଉଥିଲେ । କାଠଶିଳ୍ପୀ ସୁଦର୍ଶନ ବିଶ୍ୱାଳ ପଇଁତିରିଶ ଟଙ୍କା ବେତନ ପାଉଥିଲେ ।

ସଂପାଦକ ଶ୍ରୀ କୈଳାସ ଚନ୍ଦ୍ର ସାମନ୍ତରାୟ ବିଦ୍ୟାନୁରାଗୀ ଓ ସର୍ବଜନପ୍ରିୟ ଥିଲେ । ମୋତେ ବିନା ବେତନରେ ତାଙ୍କୁ ସ୍କୁଲରେ ସ୍ଥାନ ଦେଲେ । ମୁଁ ୪ର୍ଥ ଶ୍ରେଣୀ ଠାରୁ ୭ମ ଶ୍ରେଣୀ ପର୍ଯ୍ୟନ୍ତ ସବୁ ପରୀକ୍ଷାରେ ୧ମ ସ୍ଥାନ ଲାଭ କରିଥିଲି । ସେତେବେଳେ ବର୍ଷକରେ ତିନିଗୋଟି ସାଧାରଣ ପରୀକ୍ଷା କରାଯିବାର ବିଧି ଥିଲା । ମୁଁ ଗୋଟିଏ ହେଲେ ପରୀକ୍ଷାରେ ୨ୟ ସ୍ଥାନ ଅଧିକାର କରିନାହିଁ । ଗାଁଠାରୁ ସ୍କୁଲକୁ ଗଲାବେଳେ ଆଗରୁ ଯିବାକୁ ପଡ଼େ । ଗାଁରେ କାହାଘରେ ଘଣ୍ଟା ନଥାଏ କେବଳ ମହାରଣାଙ୍କ କଚେରି ଘରେ ଘଣ୍ଟାଟିଏ ଥାଏ । ତେଣୁ ସେ ଘଣ୍ଟା ମୋତେ କିପରି ସାହାଯ୍ୟ କରିବ ? ଖରା

ଚାଲତେଇଁ ଅଗଣାକୁ ଏତିକି ବାଟେ ଆସିଲେ ମୁଁ ଗାଧୋଇ ଯାଏ ଏବଂ ଖାଇସାରି ଏକାକୀ ସ୍କୁଲକୁ ଯିବାକୁ ପଡ଼ିଥାଏ । ମେଘୁଆ ପାଗରେ ଅନୁମାନକରି ଯିବାକୁ ପଡ଼ିଥାଏ । ଖରାଦିନେ ସକାଳୁଆ ସ୍କୁଲ ହୁଏ । ସେତେବେଳେ ପାହାନ୍ତି ତାରା ମୋର ପଥପ୍ରଦର୍ଶକ ହୋଇଥାଏ । ଖରାଦିନେ ସକାଳ ନିତ୍ୟକର୍ମ ସାରି ପଖାଳ ଭାତକୁ ପୋଖରୀ ପାଖ ଗଛରୁ ଆମ୍ବ ଗୋଟେଇ ଆଣି ଖାଇ ତରବର ହୋଇ ବାହାରି ପଡ଼େ । ଓଗାଳପଡ଼ା ହାଟୁଆଳି ପୋଖରୀ ପାଖରେ ସୂର୍ଯ୍ୟ ଉଦୟ ହେଲେ ସ୍କୁଲରେ ପହଞ୍ଚିବାକୁ ସମୟ ମିଳେ । ତେବେ ବର୍ଷାଦିନେ, ଶୀତଦିନେ ବା ଖରାଦିନେ ସ୍କୁଲରେ ପହଞ୍ଚିଲା ବେଳକୁ ସମୟ ହୋଇ ନଥାଏ । ତେଣୁ ସମୟର ଉଚିତ ବିନିଯୋଗ କରିବା ପାଇଁ ମୁଁ ଶ୍ରେଣୀ ଦୁଆରେ ବସି ଇତିହାସ, ଭୂଗୋଳ, ସାହିତ୍ୟ ପ୍ରଭୃତି ପାଠ ଲେଖି ପକାଏ । ପଢ଼ିବା ଅପେକ୍ଷା ଅଧିକ ମନେ ରୁହେ । ଏପରି ଅଭ୍ୟାସ ମୋର ଜୀବନଯାକ ରହିଥିଲା । ମୁଁ ଶିକ୍ଷକମାନଙ୍କ କଥା ତଳେ ପକେଇ ଦେଉନଥିଲି । ମୋ ଭକ୍ତିଭାବରେ ପ୍ରଧାନ ଶିକ୍ଷକ ମହୋଦୟ ମୋତେ ମାଗଣା ଖାଇବାକୁ ଦେଇ ଛାତ୍ରାବାସରେ ଶେଷ ବର୍ଷ ରଖାଇଲେ । ତାଙ୍କର ଦୃଢ଼ ଆଶା ଥିଲା ମୁଁ ବୃତ୍ତିପାଇ ସ୍କୁଲର ନାଁ ରଖିବି । ତେଣୁ ପୂର୍ବରୁ ମୋ ବୟସରୁ ପ୍ରାୟ ୩ବର୍ଷ କୋର୍ଟରେ ଆଫିଡ଼େଭିଟ୍ କରି କମାଇ ଦେଇଥିଲେ । କିନ୍ତୁ ମୁଁ ମନକୁ ଯେତିକି ପରିଶ୍ରମ କରୁଥିଲି ସେତିକି, ମୋତେ ଯଦି କୌଣସି ଶିକ୍ଷକ ବତେଇଥାଆନ୍ତେ ତେବେ ମୁଁ ନିଶ୍ଚିତ ବୃତ୍ତି ପାଇଥାନ୍ତି । ସବୁ ଦୌଡ଼ରେ ମୁଁ ଭାଗନେଉଥିଲି କିନ୍ତୁ ସୀମାକୁ ଛୁଇଁ ପାରୁନଥିଲି । ମୋ ସାରାଜୀବନଟା ଏଇଆ । ମୋତେ ଉଚିତ ଦିଗଦର୍ଶନ ଦେବାକୁ କେହି ଆଗେଇ ଆସିନଥିଲେ । ନିଷ୍କାପରଭାବେ ମୋତେ କେହି ଉପଦେଶ ଦେଇ ନାହାଁନ୍ତି । ମନକୁମନ ବିବେଚନା କରି ଯାହା ପଢ଼ିଲି, ଯାହା ବୁଝିଲି ଏଥିପାଇଁ ଭାଗ୍ୟକୁ ଦୋଷଦେବା ବ୍ୟତୀତ ଅନ୍ୟ କାହାକୁ ଦୋଷଦେବା ଉଚିତ ନୁହେଁ ।

### ଛାତ୍ରାବାସରେ ମାସିକ ଖର୍ଚ୍ଚ :

ସେତେବେଳେ ଛାତ୍ରାବାସରେ ମାସକୁ ଟ୨.୦୦ ଓ ୧୫ ସେର ଚାଉଳ ଗୋଟିଏ ପିଲାକୁ ଦେବାକୁ ପଡୁଥିଲା । ଏତିକି ଦେଇ ମଧ୍ୟବିତ୍ତ ପିଲାମାନେ ବୋଡ଼ିଂରେ ରହିପାରୁନଥିଲେ । ବୋଡିଂରେ ପ୍ରାୟ ୫୦ ଜଣ ପିଲା ରହୁଥିଲେ । ସ୍କୁଲର ପରିବେଶ ବେଶ୍ ମନୋରମ ଥିଲା । ଖୋର୍ଦ୍ଧା-ଭୁବନେଶ୍ୱର ନାଲି ସଡ଼କର ଉଭୟ ପାର୍ଶ୍ୱରେ କୃଷ୍ଣଚନ୍ଦ୍ର ସାମନ୍ତରାୟ ବର, ଓସ୍ତ ପ୍ରଭୃତି ଛାୟାପ୍ରଦ ବୃକ୍ଷ ରୋପଣ କରୁଥିଲେ । ସେତେବେଳେ ଚାରିଆଡ଼େ ଶୂନଶାନ ଥିଲା । ଗୁଳୁରି ଜଙ୍ଗଲ ପୂରି ରହିଥିଲା ।

**ବିଦ୍ୟାଳୟର ପୁରସ୍କାର ବିତରଣ ସଭା :**

ମାଇନର ସ୍କୁଲରେ ମୋର ଚାରି ବର୍ଷ ପାଠପଢ଼ା ମଧ୍ୟରେ ତିନିଥର ପୁରସ୍କାର ବିତରଣ ଉତ୍ସବ ପାଳିତ ହୋଇଥିଲା । ୧୯୩୪ରେ ଡକ୍ଟର ପ୍ରାଣକୃଷ୍ଣ ପରିଜା, ପରବର୍ଷ ପୁରୀ ଜିଲ୍ଲାବୋର୍ଡ ଚେୟାରମ୍ୟାନ ପାରିକୁଦର ରାଜାସାହେବ, ୩ୟ ବର୍ଷ ପୁରୀଜିଲ୍ଲା ଇନସ୍ପେକ୍ଟର ରାମାନୁଜ ଦାସ ସଭାପତି ଆସନ ଅଳଙ୍କୃତ କରିଥିଲେ । ସେତେବେଳେ ସମଗ୍ର ଓଡ଼ିଶା ଡିଭିଜନ ପାଇଁ ଏସ୍.ରାୟ ସ୍କୁଲ ଇନସ୍ପେକ୍ଟର ରୂପେ ନିଯୁକ୍ତି ପାଇଥିଲେ । ଥରେ ତାଙ୍କ ସହିତ ଜିଲ୍ଲା ଇନ୍ସପେକ୍ଟର ଭୀମ ରାଉତ ଆସିଥିଲେ । ଭୀମ ବାବୁ ଖୁବ୍ କଡ଼ା ଥିଲେ । ଶିକ୍ଷକମାନେ ତାଙ୍କୁ ଦେଖିଲେ ବଡ଼ ଭୀତ ହେଉଥିଲେ । ଭୀମ ବାବୁ ଫୁଲ୍‌ପ୍ୟାଣ୍ଟ ପିନ୍ଧୁଥିଲେ । ମାତ୍ର ଏସ୍.ରାୟ ହାଫ୍ ପ୍ୟାଣ୍ଟ, ଆଣ୍ଠୁ ପର୍ଯ୍ୟନ୍ତ ମୋଡ଼ା ମୋଡ଼ା ମୋଜା, ଫୁଲ୍ ଜୋତା ପିନ୍ଧୁଥିଲେ । ଏସ୍. ରାୟଙ୍କ ମୁଣ୍ଡରେ ସାହେବୀ ହ୍ୟାଟ ଥିଲା । ସେ ହାଫ୍ ସାର୍ଟ ପିନ୍ଧୁଥିଲେ । ତାଙ୍କର ପୃଥୁଳ ଶରୀରକୁ ପୋଷାକଟା ଭଲ ମାନୁଥିଲା । ସେ ଦୁଆର ମୁହଁରେ ଠିଆହୋଇ ଗୋଟିଏ ଗୋଟିଏ ପ୍ରଶ୍ନ ପଚାରି ଉତ୍ତର ପାଇ ଚାଲିଯାଉଥିଲେ । ତାଙ୍କ ପୋଷାକରେ ଯେପରି ଠାଣିଥିଲା, ମନୋଭାବରେ ସେହିପରି ଗମ୍ଭୀରତା ଥିଲା । ଥରେ ସେ ୪ର୍ଥ ଶ୍ରେଣୀ ଦୁଆର ମୁହଁରେ ଠିଆହୋଇ ସ୍ୱୟମ୍ବର କ'ଣ ପଚାରିଲେ । ମୁଁ ଭଲ ପଢୁଥିଲି, ତାଙ୍କ ପ୍ରଶ୍ନର ଉତ୍ତର ଦେଇଥିଲି, ମୁଁ ଶ୍ରେଣୀରେ ପ୍ରଥମ ହେଉଥିଲି ତାର ପୁରସ୍କାର ସ୍ୱତନ୍ତ୍ର । କିନ୍ତୁ ପ୍ରବନ୍ଧ ପ୍ରତିଯୋଗିତା, ଡ୍ରଇଂ ପ୍ରତିଯୋଗିତା, ବକ୍ତୃତା ପ୍ରତିଯୋଗିତା, କାଠଶିଳ୍ପ ପ୍ରତିଯୋଗିତା ଏହିପରି ବହୁ ପ୍ରତିଯୋଗିତାରେ ତିନିରୁ ଗୋଟିଏ ସ୍ଥାନ ଅଧିକାର କରୁଥିଲି । ସଚ୍ଚରିତ୍ର ବାଳକ ହିସାବରେ ମଧ୍ୟ ପୁରସ୍କାର ପାଉଥିଲି । ପୁରସ୍କାର ବିତରଣୀ ସଭା ଶେଷ ହେଲେ ପୁରସ୍କୃତ ବହିଗୁଡ଼ିକ ମୁଣ୍ଡେଇକରି ଗୃହକୁ ପ୍ରତ୍ୟାଗମନ କରୁଥିଲି । ଏତେ ବହି ଦେଖି ଅନ୍ୟ ପିଲାମାନେ ତ ଆଶ୍ଚର୍ଯ୍ୟ ହୁଅନ୍ତି ଗାଁ ଲୋକେ ମଧ୍ୟ ଆଶ୍ଚର୍ଯ୍ୟ ହୁଅନ୍ତି ।

**ଯାଁଳାର ମହତ୍ତ୍ୱ :**

ଆମ ସେ ଅଞ୍ଚଳରେ ପ୍ରଥମେ ଶିକ୍ଷାଲୋକ ପ୍ରବେଶ କରିଥିଲା ଏହି ଯାଁଳା ଗ୍ରାମରେ । ପ୍ରଥମେ ଶିକ୍ଷାଲୋକ ପାଇ ଯାଁଳା ଏବେ ପଛରେ ପଡ଼ିଯାଇଛି । ମଦନପୁର, ତମାଣ୍ଡୋ, ପାତ୍ରପଡ଼ା ଉପରକୁ ଉଠିଛନ୍ତି ।

**ବିଦ୍ୟାଳୟର ଖେଳ :**

ବିଦ୍ୟାଳୟର ପୂର୍ବଦିଗରେ ଏକ ବିରାଟ ଖେଳପଡ଼ିଆ ଥିଲା । ଫୁଟବଲ ଖେଳ ସେତେବେଳେ ଜନପ୍ରିୟ ଖେଳଥିଲା । ପିଲାଙ୍କ ସହିତ ଶିକ୍ଷକମାନେ ବି ଖେଳନ୍ତି । ମୁଁ

କେବେ ଖେଳେ ନାହିଁ । କେବଳ ପଢ଼ାପଢ଼ିରେ ମନଦିଏ । ଶ୍ରେଣୀରେ ପ୍ରଥମ ହୁଏ । ମୋତେ ଡବଲ ପ୍ରମୋସନ ଦେବାପାଇଁ ପ୍ରଧାନ ଶିକ୍ଷକ ଚିନ୍ତା କରିଥିଲେ, ମାତ୍ର ସେ ବର୍ଷ ଶିକ୍ଷାବିଭାଗରୁ ଏ ପ୍ରଥା ଉଠିଗଲା । ଯାଁଳା ମାଇନର ସ୍କୁଲଟିର ସାରା ପୁରୀ ଜିଲ୍ଲାରେ ସୁନାମ ଥିଲା । ସେତେବେଳେ ସମଗ୍ର ପୁରୀ ଜିଲ୍ଲାରେ ମୋଟେ ୨୨ଟି ମାଇନର ସ୍କୁଲ ଥିଲା ।

**ସ୍କୁଲରେ ସାମାଜିକ ପର୍ବ :**

ସ୍କୁଲରେ କେତେକ ଗ୍ରାମ୍ୟ ଚଳଣି ଥିଲା । ୫ମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ବାବୁ ଚନ୍ଦ୍ରମୋହନ ମହାରଣାଙ୍କ କୃତ ସାହିତ୍ୟ ପୁସ୍ତକ କଥାବଳୀ ଯେଉଁଦିନ ଶେଷହେଲା ତା ପରଦିନ ବହି ବଢ଼ାଯିବା କଥା, ଶ୍ରେଣୀ ଶିକ୍ଷକ ଶ୍ରୀ ବଳଭଦ୍ର ନାୟକ ଆମ୍ଭମାନଙ୍କୁ ଜଣାଇଥିଲେ । ଚୁଡ଼ାଘଷା ହେବ, କଦଳୀ ଚକଟା ହେବ, ଶ୍ରେଣୀ ପିଲାମାନେ ତ ଖାଇବେ, ଶିକ୍ଷକମାନେ ବି ଖାଇବେ । ପ୍ରତ୍ୟେକ ପିଲା ଦୁଇଅଣା ଚାନ୍ଦା ଦେଲେ, ମାତ୍ର ମୁଁ କିଛି ଦେଇପାରିଲି ନାହିଁ । ମୋ ପକ୍ଷେ ତାହା ପାହାଡ଼ ସଦୃଶ ଥିଲା । ଆଜିକାଲି ପଇସା ଗୁଡ଼ାକ ଯେପରି ହାଉଯାଉ ହେଉଛି ସେତେବେଳେ ତାର କାଣିଚାଏ ନଥିଲା । ମୁଁ ଓ ମୋର ସାଥୀ ସର୍ବେଶ୍ୱର ସେଦିନ ସ୍କୁଲ ବନ୍ଦକରି ଛଟଣୀ ହାଟରୁ ନଡ଼ିଆ ଓ ଗୁଡ଼ କିଣିବା ପାଇଁ ବାହାରିଲୁ । ନଡ଼ିଆ ଗୋଟିକର ଦାମ୍ ଦୁଇପଇସା ବା ଅଢ଼େଇ ପଇସା, ଗୁଡ଼ କଟକୀ ସେର ଦାମ୍ ଥିଲା ଏକ ଅଣା ଏକ ବା ଦୁଇ ପଇସା । ସେତେବେଳେ ଦୁଇପ୍ରକାର ସେର ଚଳୁଥିଲା । କଟକୀ ସେର ଓ ବାଲେଶ୍ୱରୀ ସେର । କଟକୀ ସେର ଟ.୧୦୫.୦୦ ବା ୧୦୫ ତୋଳା ଓଜନ । ବାଲେଶ୍ୱରୀ ସେର ଟ ୮୦.୦୦ ବା ୮୦ ତୋଳା ଓଜନ । କେବଳ ଲୁଣ ବ୍ୟତୀତ ଆଉ ସବୁ ଜିନିଷ କଟକୀ ସେରରେ ବିକ୍ରି ହେଉଥିଲା । ଆମେ ଗୁଡ଼ ନଡ଼ିଆ ପ୍ରଭୃତି ଆବଶ୍ୟକୀୟ ଜିନିଷ ଆଣିଲୁ । ଚୁଡ଼ାଘଷା ହେଲା, ପୁସ୍ତକ ପୂଜା ହେଲା, ତପ୍ରେ ସମସ୍ତେ ଆନନ୍ଦ କୋଳାହଳ ଭିତରେ ପର୍ବଟିକୁ ପାଳନ କଲୁ ।

**ପୂର୍ବେ ଟିଉସନ କିପରି ? :**

ଆଜିକାଲିର ଟିଉସନ ହାଉଆ ଖୁବ୍ ଜୋର୍ । ଏପରିକି ୧ମ ଶ୍ରେଣୀଠାରୁ ଟିଉସନ ନକଲେ ପିଲା ପାରିଉଠୁନାହିଁ । ଶ୍ରେଣୀମାନଙ୍କରେ ଶିକ୍ଷକ କେବଳ ଧାରାଟି ବତେଇ ଦେଉଛନ୍ତି । ସେତେବେଳେ ପିଲାମାନେ ଶିକ୍ଷକଙ୍କଠାରୁ ଶ୍ରେଣୀରେ ଯେତିକି ଶିଖୁଥିଲେ ସେତିକି । ଅବଶ୍ୟ ଶ୍ରେଣୀ ପାଠପଢ଼ା ଖୁବ୍ କଡ଼ା ଥିଲା । ଶିକ୍ଷକମାନେ

ଦେଉଥିବା ଟାସ୍କ ତା'ପରଦିନ ଆଦାୟ କରୁଥିଲେ । କଠିନ ଶୃଙ୍ଖଳା ଭିତରେ ପାଠ ପଢ଼ା ହେଉଥିଲା । ତଥାପି କେତେକ ଛାତ୍ରଙ୍କର ବୁଝିବାରେ ଅଭାବ ରହିଯାଉଥିଲା । ଅନ୍ୟ ସମୟରେ ଶିକ୍ଷକମାନଙ୍କଠାରୁ ଛାତ୍ରଟି ପାଠ ବିଷୟରେ କିଛି ବୁଝିପାରୁନଥିଲା । ଶିକ୍ଷକ ମହାଶୟ ଶ୍ରେଣୀରେ ଉତ୍ତମ ରୂପେ ଶିକ୍ଷାଦାନ କଲେ ଘରୋଇ ଶିକ୍ଷାର ଆବଶ୍ୟକତା ପଡ଼େ ନାହିଁ । ମାତ୍ର ଘରୋଇ ଟିଉସନର କେତେକ ଭଲଗୁଣ ଅଛି । ଜଣେ ଶିକ୍ଷକ କେତେଜଣଙ୍କୁ ପଢ଼ାଇବ ତା'ର ଏକ ନୀତି ରହିବା ଆବଶ୍ୟକ । ସେତେବେଳେ ଶିକ୍ଷକମାନଙ୍କର ନିଷ୍ଠାଥିଲା ଏବଂ କେତେକ ମହାନ୍ ଗୁଣର ସେମାନେ ଅଧିକାରୀ ଥିଲେ । ଆମ୍ଭେମାନେ ଶିକ୍ଷକମାନଙ୍କୁ ଭାରି ଭୟ କରୁଥିଲୁ । ତେଣୁ ଭରସି କରି କିଛି ପଚାରି ପାରୁନଥିଲୁ । ଆଜିକାଲି ପିଲାମାନଙ୍କୁ ନାନାପ୍ରକାର ସୁବିଧା ମିଳୁଛି । ଶିକ୍ଷକମାନେ ଦିନକୁ ୮୦ଜଣ ପିଲାଙ୍କୁ ଟିଉସନ କ୍ଲାସରେ ଜଗି ଅଜସ୍ର ଅର୍ଥ ଉପାର୍ଜନ କରୁଛନ୍ତି । ଦିନକୁ ଦିନ ଶିକ୍ଷାର ମାନ କମିକମି ଆସୁଛି । ସେତେବେଳେ ସବୁଘରର ପିଲା ପାଠ ପଢ଼ିପାରୁନଥିଲେ । ବଣମଲ୍ଲୀ ତା ବାସନା ପ୍ରସ୍ଫୁଟିତ ନ'କରି ଅଲକ୍ଷ୍ୟରେ ମଉଳି ଯିବାପରି କେତେକ ମେଧାବୀ ଛାତ୍ର ପାଠପଢ଼ାରୁ ବଞ୍ଚିତ ହେଉଥିଲେ । ମୁଁ ମଧ୍ୟ ସେହିପରି ମଉଳି ଯାଇଥାଆନ୍ତି ।

୧୯୩୬ ମସିହାରେ ମହାନ୍ ଯୋଗୀ ସାଧକ ଶ୍ରୀ ଶ୍ରୀ ରାମକୃଷ୍ଣ ପରମହଂସ ଦେବଙ୍କର ସମଗ୍ର ବିଶ୍ୱରେ ଜନ୍ମ ଶତବାର୍ଷିକୀ ପାଳନ କରାଗଲା । ଭୁବନେଶ୍ୱରରେ ତାଙ୍କର ଏକ ପ୍ରକାଣ୍ଡ ମଠ ସ୍ଥାପନ କରାହୋଇଛି । ଏହି ଜନ୍ମବାର୍ଷିକୀ ଅବସରରେ ବେଲୁଡ଼ ମଠ ତରଫରୁ ସ୍ଥାନୀୟ ମାଇନର ସ୍କୁଲଗୁଡ଼ିକର ପିଲାମାନଙ୍କ ମଧ୍ୟରେ ମାତୃଭାଷାରେ ପ୍ରବନ୍ଧ ପ୍ରତିଯୋଗିତା ପରିଚାଳନା କରାଯାଇଥିଲା, ସେତେବେଳେ ଭୁବନେଶ୍ୱର ପାର୍ଶ୍ୱବର୍ତ୍ତୀ ଅଞ୍ଚଳରେ ହାଇସ୍କୁଲମାନ ଗଢ଼ା ହୋଇନଥିଲା । ଦେଶ ଶିକ୍ଷାବିଷୟରେ କେତେ ଅନଗ୍ରସର ଥିଲା ଏଥିରୁ ବୁଝାପଡ଼େ । ଭୁବନେଶ୍ୱର, ଚଣାହାଟ, ଭିଙ୍ଗାରପୁର ଓ ଯାଁଳା ମାଇନର ସ୍କୁଲର ପିଲାମାନେ ଏହି ପ୍ରତିଯୋଗିତାରେ ଅଂଶଗ୍ରହଣ କରିଥିଲେ । ଏହି ପ୍ରତିଯୋଗିତାରେ ଭାଗନେଇ ମୁଁ ଦ୍ୱିତୀୟ ପୁରସ୍କାର ସ୍ୱରୂପ କାଚ ନିର୍ମିତ ଏକ ଦୁଆତଦାନି ଓ ହାତୀଦାନ୍ତ ନିର୍ମିତ ଏକ ନିବ୍‌ଯୁକ୍ତ କଲମ ଉପହାର ପାଇଥିଲି । ସ୍ମାରକ ସ୍ୱରୂପ ବର୍ତ୍ତମାନ ସୁଦ୍ଧା ସେଗୁଡ଼ିକ ମୋ ପାଖେ ଗଚ୍ଛିତ ଅଛି ।

**ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି :**

ଯାଁଳା ପୁରାତନ ସ୍କୁଲହେତୁ ସେଠାରେ ଗୋଟିଏ ସୁନ୍ଦର ଲାଇବ୍ରେରୀ ଥିଲା । ନାନାପ୍ରକାର ଉପାଦେୟ ପୁସ୍ତକଦ୍ୱାରା ପୁସ୍ତକାଗାରଟି ସମୃଦ୍ଧ ଥିଲା । ଶିକ୍ଷକ

ମହାଶୟ ଆମ୍ଭମାନଙ୍କୁ ନିୟମିତ ପୁସ୍ତକ ଦେଉଥିଲେ । ଏହି ସ୍କୁଲରୁ ପୁସ୍ତକ ପଠନ ପ୍ରତି ମୋର ରୁଚି ବୃଦ୍ଧି ପାଇଥିଲା । ଇଂରାଜୀ ଲେଖକ ବେକନ ସାହେବ କହିଛନ୍ତି "Reading Makes a Full Man." ମୁଁ ନେପୋଲିଅନ, ଶିବାଜୀ, ରାଣାପ୍ରତାପ ପ୍ରଭୃତି ଜୀବନୀପୁସ୍ତକ ପାଠ କରୁଥିଲି । ସେତେବେଳେ ପଣ୍ଡିତ ଗୋଦାବରୀଶ ମିଶ୍ର, କୁନ୍ତଳାକୁମାରୀ ସାବତ, ରାମଚନ୍ଦ୍ର ଆଚାର୍ଯ୍ୟ, ଅପର୍ଣ୍ଣାଦେବୀ, ବଳାକୃଷ୍ଣ କର ପିଲାମାନଙ୍କ ପାଇଁ ଉପାଦେୟ ପୁସ୍ତକ ପ୍ରଣୟନ କରୁଥିଲେ । ଆଜିକାଲି ପରି ସେତେବେଳେ ଏତେ ଗ୍ରନ୍ଥାବଳୀ ଦେଖାଯାଉନଥିଲା । କେବଳ ରାଧାନାଥ, ମଧୁସୂଦନ ଗ୍ରନ୍ଥାବଳୀ ପ୍ରାଧାନ୍ୟ ବିସ୍ତାର କରିଥିଲା । ଫକୀରମୋହନଙ୍କ ଲେଖାଗୁଡିକ ଏକତ୍ର ହୋଇ ଗ୍ରନ୍ଥାବଳୀ ଆକାରରେ ଛପା ହୋଇନଥିଲା । ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତିଙ୍କର ଉପନ୍ୟାସ ବାହାରୁଥିଲା । ସେଗୁଡ଼ିକ ସୁଖପାଠ୍ୟ ହେଉଥିଲା । ଉକ୍ତ ଲେଖକମାନଙ୍କର ବହୁ ପୁସ୍ତକ ମୁଁ ପିଲାଦିନେ ପଢ଼ିଛି । ପ୍ରାବନ୍ଧିକ ବାଗ୍ମୀ ଶ୍ରୀ ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକା ପ୍ରକାଶ କରୁଥିଲେ ଓ ଶ୍ରୀ ବାଳକୃଷ୍ଣ କର 'ସହକାର' ମାସିକ ପତ୍ରିକା ଛାପୁଥିଲେ । 'ମୁକୁର' ମାସିକା ପତ୍ରିକା ବି ଛପା ହେଉଥିଲା । 'ମୁକୁର' ଗୋଟିଏ ପୁରାତନ ପତ୍ରିକା । ୧୯୦୭ ମସିହାରୁ ଛପା ଆରମ୍ଭ ହୋଇଥିଲା । ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ ଏହାର ସମ୍ପାଦକ ଥିଲେ ।

୧୯୩୨ ମସିହା ବେଳକୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ନୂତନ ଯୁଗର ସୂତ୍ରପାତ ହେଲା । ସତ୍ୟବାଦୀଯୁଗର ପ୍ରଭାବ କମିଲାଣି, ସବୁଜ ସାହିତ୍ୟ ଯୁଗ ଆରମ୍ଭ ହେଲାଣି । ଏଥିରେ ପାଞ୍ଚଜଣ କବି ଓ ଲେଖକ ଅଂଶ ଗ୍ରହଣ କରିଥିଲେ । ସେମାନେ ନୂତନ ସମ୍ଭାର ନେଇ ସବୁଜ ସାହିତ୍ୟକୁ ପରିପୁଷ୍ଟ କରୁଥିଲେ । ସେମାନେ ହେଲେ ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, ବୈକୁଣ୍ଠନାଥ ପଟ୍ଟନାୟକ, ଅନ୍ନଦାଶଙ୍କର ରାୟ, ଶରତଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ର । ଏମାନେ ମାସିକ ପତ୍ରିକାମାନଙ୍କରେ ପ୍ରବନ୍ଧ ଓ ଅନ୍ୟଲେଖା ପ୍ରକାଶ କରୁଥିଲେ । ଶ୍ରୀ ଅନ୍ନଦାଶଙ୍କର ଓଡ଼ିଶାର ପାଣିପବନରେ ଲାଳିତ ପାଳିତ ହୋଇ ଓଡ଼ିଆ ଭାଷାରେ ଲେଖୁଥିଲେ । ପରେ ବଡ଼ ଚାକିରି କରି ବଙ୍ଗଳା ସାହିତ୍ୟରେ ଶକ୍ତିଶାଳୀ ଲେଖକ ହେଲେ । କିନ୍ତୁ ଜଣେ ନାରୀକବିଙ୍କ ସମ୍ମୁଖରେ ଓଡ଼ିଆ ଭାଷାକୁ ତାଚ୍ଛଲ୍ୟକରି କହିଲେ, "ଏହା ଆମାଦେର ଧାଈର ଭାଷା" । ବ୍ୟକ୍ତି ବଡ଼ ହୋଇଗଲେ ନିଜ ପିଲାଦିନ କଥା ଭୁଲିଯାଇ ଏପରି କହିଥାନ୍ତି । ପିଲାଦିନେ ତାଙ୍କ ବାପା ଢେଙ୍କାନାଳରେ ଚାକିରି କରୁଥିଲେ । ସେ ସେଠାରେ ରହି ପ୍ରଥମେ ଜୀବନ ଗଢ଼ିଥିଲେ । ମାଟ୍ରିକ୍ ବି ପାସ୍ କରିଥିଲେ ଏବଂ ରେଭେନ୍ସାରେ ବି.ଏ. ଅଧ୍ୟୟନ

କରିଥିଲେ । ସତ୍ୟବାଦୀ ଯୁଗର ପ୍ରଭାବ କମିଆସି ରବୀନ୍ଦ୍ରଙ୍କ ପ୍ରଭାବ ଓଡ଼ିଆ ସାହିତ୍ୟ ଉପରେ ପଡ଼ିଲା । ବାବୁ ବାଳକୃଷ୍ଣ କର ପିଲାମାନଙ୍କ ପାଇଁ କେତେଖଣ୍ଡ ବିଶ୍ୱକୋଷ ପ୍ରଣୟନ କରିଥିଲେ । ସେଗୁଡ଼ିକ ଖୁବ୍ ସୁଖପାଠ୍ୟ ଥିଲା । ମୁଁ ସେ ବହିଗୁଡ଼ିକ ପାଠ କରିବାର ସୁଯୋଗ ପାଇଥିଲି ।

ଏହି ସମୟରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ଚାଲିଥିଲା । ଗାଁ ଗହଳି, ଅନ୍ଦି କନ୍ଦିକୁ ଏହା ପ୍ରସାରିତ ହୋଇନଥିଲେ ମଧ ବହୁଲୋକ ସତ୍ୟାଗ୍ରହ କରି କାରାବରଣ କରିଥିଲେ । ୧୯୩୦ ମସିହାର ଲବଣ ସତ୍ୟାଗ୍ରହ ଏକ ବିଶିଷ୍ଟ ଘଟଣା । ଗାନ୍ଧୀ-ଇରଉଇନ୍ ଚୁକ୍ତି ମଧ ଏକ ଯୁଗାନ୍ତକାରୀ ପଦକ୍ଷେପ । ଏହାପରେ ଗାନ୍ଧିଜୀ ଦଳବଳସହିତ ଗୋଲଟେବୁଲ ବୈଠକରେ ଯୋଗଦାନ କରି ଅକୃତକାର୍ଯ୍ୟ ହେବାରୁ ଜାତୀୟ କଂଗ୍ରେସକୁ ବିଦେଶୀ ସରକାରଙ୍କ ଦ୍ୱାରା ବେଆଇନ ଘୋଷଣା କରାଗଲା । ତେଣୁ ୧୯୩୨ ମସିହାରେ ହେବାକୁ ଥିବା ପୁରୀ କଂଗ୍ରେସ ଅଧିବେଶନ ବନ୍ଦ ହେଲା । ତପ୍ରରେ ଅସ୍ପୃଶ୍ୟତା ନିବାରଣ ପାଇଁ ଗାନ୍ଧିଜୀଙ୍କର ସମଗ୍ର ଭାରତରେ ପଦଯାତ୍ରା ଏବଂ ସମାଜର ପ୍ରବଳ ବିରୋଧ ସତ୍ତ୍ୱେ ହରିଜନମାନଙ୍କର ମନ୍ଦିର ପ୍ରବେଶ ପ୍ରଭୃତି ଉଲ୍ଲେଖନୀୟ ଘଟଣା । କଂଗ୍ରେସର ହାଉଆ ଦୂରଦୂରାନ୍ତରକୁ ପ୍ରସାରିତ ହେଉଥିଲେ ମଧ ବ୍ରିଟିଶ ଶାସନ ନିର୍ଦ୍ୱନ୍ଦ୍ୱରେ ଚାଲିଥିଲା । ଏହି ପରିପ୍ରେକ୍ଷୀରେ ସରକାର ଭାରତ ପାଇଁ ୧୯୩୫ ମସିହା ଶାସନ ଖସଡ଼ା ଘୋଷଣା କଲେ ।

**ଉତ୍କଳ ସମ୍ମିଳନୀର ସ୍ରଷ୍ଟା :**

ପ୍ରଖ୍ୟାତ ଆଇନଜ୍ଞ, ସୁବକ୍ତା, ଭାରତ ଶାସନରେ 'କାଟୋ' ନାମରେ ପରିଚିତ ପ୍ରତିଭାଧର ନେତା ଜାତୀୟ ଗୌରବ ଶ୍ରୀଯୁକ୍ତ ମଧୁସୂଦନ ଦାସ, ପାରଳା ମହାରାଜା ଓ ବ୍ରଜସୁନ୍ଦର ଦାସଙ୍କ ଉଦ୍ୟମ ଯୋଗୁ ୧୯୩୬ ମସିହା ଏପ୍ରିଲ ପହିଲା ତାରିଖରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହିସାବରେ ଭାରତ ମାନଚିତ୍ରରେ ସ୍ଥାନ ପାଇଲା । ଓଡ଼ିଆମାନଙ୍କ ଭିତରେ ଜାତୀୟତା ଭାବ ଉଦ୍ରେକ କରିବା ପାଇଁ ମଧୁବାବୁ ଆପ୍ରାଣ ଚେଷ୍ଟା କରୁଥିଲେ ଏପରିକି ଉତ୍କଳ ସମ୍ମିଳନୀ ମଣ୍ଡପରୁ ଦୈନିକ ୫ ମିନିଟ୍ ଦେଶ ଜାତିକଥା ଚିନ୍ତା କରିବା ପାଇଁ ସେ ରାଜ୍ୟବାସୀଙ୍କୁ ଆହ୍ୱାନ ଦେଉଥିଲେ । ଯାହା ଆମେ ଏପର୍ଯ୍ୟନ୍ତ କରିପାରି ନାହୁଁ । ୧୯୦୩ ର ଉତ୍କଳ ସମ୍ମିଳନୀର ପ୍ରସ୍ତାବଗୁଡ଼ିକ ମାତୃଭାଷା ଓଡ଼ିଆରେ ଲିପିବଦ୍ଧ କରିବାପାଇଁ ସେ ଆଗଭର ହୋଇଥିଲେ । ଉତ୍କଳ ସମ୍ମିଳନୀ ସହାୟତାରେ ବ୍ରିଟିଶ ସରକାରକୁ ସେ ଗଭୀର ଭାବରେ ପ୍ରଭାବିତ କରିଥିଲେ । ଏପରିକି

ତାଙ୍କର ଉଦ୍ୟମ ହେତୁ ୧୯୦୫ରେ ସମ୍ବଲପୁର ପୁନଃ ଓଡ଼ିଶା ଅନ୍ତର୍ଭୁକ୍ତ ହେଲା । ତାଙ୍କର ପ୍ରତିଭା ଓ ସଂଗଠନ ଶକ୍ତି ଏବଂ ଦେଶପ୍ରେମ ସନ୍ଦର୍ଶନ କରି ଶ୍ରୀ ଅରବିନ୍ଦ ତାଙ୍କ ବନ୍ଦେ ମାତରଂ ପତ୍ରିକାରେ ୧୯୦୭ ମସିହାରେ ତାଙ୍କର ଭୂୟସୀ ପ୍ରଶଂସା କରିଥିଲେ । ସେ ଲେଖିଥିଲେ– "It is for instance for a cause of gratification that Orissa is beginning to feel its separate consciousness and to attempt to grow into an organised life under a very capable and high spirited leader Mr. Madhusudan Das." ମଧୁବାବୁ ଓଡ଼ିଆ ଜାତୀୟତାର ପିତା ଥିଲେ । ତାଙ୍କ ଗୁଣ ଅବର୍ଣ୍ଣନୀୟ । ଏପରିକି ଇଂରେଜ ଜାତିର ସୁଯୋଗ୍ୟ ପ୍ରଧାନ ମନ୍ତ୍ରୀ ରାମ୍‌ସେ ମାକ୍‌ଡୋନାଲ୍‌ଡ ଏକଦା କହିଥିଲେ– "Mr. Madhusudan Das is the uncrowned king of Orissa." ପୁନଃ ସମଗ୍ର ଭାରତ ବର୍ଷରେ ମହିଳା ଓକିଲମାନଙ୍କୁ କୋର୍ଟରେ ଜେରା କରିବା ପାଇଁ ୧୯୨୩ ମସିହାରେ ସେ ଯେଉଁ ଅଧିକାର ପ୍ରଦାନ କରେଇ ପାରିଥିଲେ ତାହା ତାଙ୍କର ବାଗ୍ମିତାର ପରିଚୟ ପ୍ରଦାନ କରେ । ୧୯୦୮ ମସିହାରେ ଓଡ଼ିଶାରେ ସେ ଅରଟ ପ୍ରଚଳନ କରି ସୂତାକଟା ଆରମ୍ଭ କରିଥିଲେ । ଗାନ୍ଧିଜୀଙ୍କ ଚିନ୍ତାଧାର ବହୁପୂର୍ବରୁ ୧୮୮୯ ମସିହାରେ ସେ ସ୍ୱଦେଶୀ ଶିଳ୍ପର ପ୍ରତିଷ୍ଠା କରିଥିଲେ । ୧୯୦୫ ମସିହାରେ ମଧୁବାବୁ କଟକରେ ଯେଉଁ ଜୋତାକାରଖାନା ନିର୍ମାଣ କରିଥିଲେ ଏବଂ ସେତେବେଳେ ଅସ୍ପୃଶ୍ୟତା ନିରାକରଣ ପାଇଁ ସେ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ ତାହା ଅତୀବ ପ୍ରଶଂସନୀୟ । ୧୯୨୩ ମସିହାରେ ମଧୁବାବୁ ନୀତିଗତ କାରଣରୁ ଲୋଭନୀୟ ମନ୍ତ୍ରୀପଦ ତ୍ୟାଗ କରିଥିଲେ । ଏପରି ଦୃଷ୍ଟାନ୍ତ ସମଗ୍ର ଭାରତରେ ପ୍ରଥମ । ତାଙ୍କ ଜୀବନକୁ ଅନୁଧ୍ୟାନ କଲେ ସମଗ୍ର ଭାରତ ଉପ ମହାଦେଶରେ ସେ ଯେ ବହୁବିଷୟରେ ପ୍ରଥମ ଏଥିରେ ମତଦ୍ୱୈଧ ନାହିଁ । ତେଣୁ ମଧୁବାବୁଙ୍କ ପରି ଯୋଗଜନ୍ମା ବ୍ୟକ୍ତିଙ୍କୁ ଲାଭକରି ଓଡ଼ିଶା ଧନ୍ୟ, ଭାରତ ଧନ୍ୟ । ଭକ୍ତ ମଧୁବାବୁ ଓଡ଼ିଶାରେ ଜନ୍ମ ନହୋଇ ଅନ୍ୟ କୌଣସି ପ୍ରଦେଶ ବା ଦେଶରେ ଜନ୍ମ ଗ୍ରହଣ କରିଥିଲେ, ସେ ସମଗ୍ର ପୃଥିବୀର ଜଣେ ଶ୍ରେଷ୍ଠ ପୁରୁଷ ରୂପେ ଖ୍ୟାତିଲାଭ କରିଥାନ୍ତେ ।

ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ମଧୁବାବୁ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଖଲ୍ଲିକୋଟ ରାଜା ହରିହର ମର୍ଦ୍ଦରାଜ, ଉତ୍କଳମଣି ଗୋପବନ୍ଧୁ, ବ୍ୟାସକବି ଫକୀରମୋହନ ସେନାପତି, ମୁକୁର ପତ୍ରିକାର ସଂପାଦକ ଦେଶପ୍ରାଣ ବ୍ରଜସୁନ୍ଦର ଦାସ, ଜୟପୁର ଜମିଦାର ବିକ୍ରମଦେବ ବର୍ମା, ନୀଳମଣି ବିଦ୍ୟାରତ୍ନ, ଶତାବ୍ଦୀ ପୁରୁଷ ଗୌରୀଶଙ୍କର ରାୟ, କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରମୁଖ

ବରପୁତ୍ରମାନେ ପ୍ରଗାଢ଼ ଉଦ୍ୟମ କରିଥିଲେ । ୧୮୦୩ ମସିହାରୁ ଓଡ଼ିଶାର ବହୁ ଅଞ୍ଚଳ ମାନ୍ଦ୍ରାଜ, ମଧ୍ୟପ୍ରଦେଶ ଓ ବଙ୍ଗପ୍ରେସିଡ଼େନ୍ସି ସଙ୍ଗେ ରହିଥିଲା ଏବଂ ଓଡ଼ିଶା ଡିଭିଜନ ବଙ୍ଗଳା ସହିତ ୧୯୧୧ ମସିହା ପର୍ଯ୍ୟନ୍ତ ରହି ପୁନଃ ୧୯୧୨ ଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ବିହାର ସହିତ ଯୋଡ଼ି ହୋଇରହିଥିଲା । ଏହିପରି ଭାବରେ ବଡ଼ ବଡ଼ ପ୍ରଦେଶର ଲାଙ୍ଗୁଳହୋଇ ରହୁଥିବାରୁ ଓଡ଼ିଶା ତାର ସ୍ୱାଭିମାନ ଓ ସ୍ୱାତନ୍ତ୍ର୍ୟ ହରାଇ ବସିଥିଲା । ଓଡ଼ିଶା କଣ, ବାହାରେ କେହି ଜାଣୁନଥିଲେ । ଜଗନ୍ନାଥ ଦେଶ କହିଲେ କେହି କେହି ବୁଝୁଥିଲେ । ୧୯୩୬ ମସିହାପରେ ଓଡ଼ିଆମାନେ ମୁଣ୍ଡଟେକି ବାଟ ଚାଲିଲେ । ଭାରତ ମାନଚିତ୍ରରେ ଓଡ଼ିଶା ପରିଚିତ ହେଲା ।

**ଭାଷାଭିତ୍ତିକ ପ୍ରଦେଶ ଗଠନ :**

ଏଠାରେ ଗୋଟିଏ କଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ଯେତେବେଳେ ୧୯୨୦ରେ ନାଗପୁର କଂଗ୍ରେସରେ ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ଭାଷାଭିତ୍ତିକ ପ୍ରଦେଶ ଗଢ଼ିବାପାଇଁ ନିଷ୍ପତ୍ତି ନିଆଗଲା ସେତେବେଳେ ଗୋପବନ୍ଧୁ ଆତ୍ମହରା ହୋଇପଡ଼ିଲେ ଏବଂ ଓଡ଼ିଶାକୁ ଆସି ପ୍ରଚାରକଲେ ଯେ ଆଉ ଉତ୍କଳ ସମ୍ମିଳନୀର ଆବଶ୍ୟକତା କଣ ? ମଧୁବାବୁଙ୍କ ସହ ଓଡ଼ିଶା କଂଗ୍ରେସର ବଡ଼ପଣ୍ଡାମାନେ ଅସହଯୋଗ କଲେ । ଚକ୍ରଧରପୁର ଅଧିବେଶନ ପରେ ଉତ୍କଳ ସମ୍ମିଳନୀର ସଭା ବସିଲା ନାହିଁ । ଏପରିକି ବିହାର-ଓଡ଼ିଶା ରାଜଧାନୀ ପାଟନାଠାରେ ସାଇମନ କମିଶନକୁ ସାକ୍ଷାତ କରିବା ପାଇଁ ଯେତେବେଳେ ଉତ୍କଳ ଗୌରବ ସ୍ଥିର କଲେ ସେତେବେଳକୁ ଉତ୍କଳ ସମ୍ମିଳନୀର ସତ୍ତା ନଥିଲା । ମଧୁବାବୁ ଶାରୀରିକ ଅସୁସ୍ଥତା ହେତୁ ପାଟନା ଯାଇ ନ ପାରି ସେଠାକୁ ବ୍ରଜସୁନ୍ଦର ଦାସଙ୍କୁ ପଠାଇଲେ । ଗୋଟିଏ ନୂଆ ଅନୁଷ୍ଠାନ ଗଢ଼ି ତାର ନାମ ଉତ୍କଳ ଲିଗ୍ ଦେଇ ତାର କର୍ତ୍ତା ହିସାବରେ ବ୍ରଜସୁନ୍ଦରଙ୍କୁ ବାଛିଲେ । ଉତ୍କଳ ପଗଡ଼ି ପରିଧାନକରି ବ୍ରଜସୁନ୍ଦର ସେଠାକୁ ଯାତ୍ରାକରି ରାଜେନ୍ଦ୍ର ନାରାୟଣଙ୍କ ସହାୟତାରେ ସାଇମନ କମିଶନକୁ ଷ୍ଟେସନପାଖ ହାର୍ଡିଞ୍ଜପାର୍କରେ ଭବ୍ୟ ସ୍ୱାଗତ ଜଣାଇଲେ । ସାରା ଭାରତ ବର୍ଷରେ ସବୁଠାରେ 'ସାଇମନ' ଫେରିଯାଅ ସ୍ଲୋଗାନ୍ ଶୁଣି ଏଠାରେ ଯଥୋଚିତ ସମ୍ବର୍ଦ୍ଧନା ପାଇବାରୁ କମିଶନର ଓଡ଼ିଶା ଦାବିପ୍ରତି ସହାନୁଭୂତିଶୀଳ ହେଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ଆଶା ଅଙ୍କୁରିତ ହେଲା ଏବଂ ୧୯୩୬ ମସିହାରେ ଓଡ଼ିଶାର ଦାବି ପୂରଣ ହେଲା । ୧୯୩୬ ଏପ୍ରିଲ୍ ପହିଲା ଉତ୍ସବରେ କଂଗ୍ରେସ ଲୋକ ଯୋଗ ଦେଇନଥିଲେ । ତେଣୁ ଉତ୍କଳ ସ୍ୱତନ୍ତ୍ର ହେବାରେ କଂଗ୍ରେସର କିଛି ଅବଦାନ ନଥିଲା

ପରି ଜଣାଯାଏ । ମାତ୍ର ବେଶି ଲାଭ ସେମାନେ (କଂଗ୍ରେସୀ ଲୋକେ) ପାଇଲେ । ପରବର୍ତ୍ତୀ କାଳରେ କଂଗ୍ରେସ ହାତରେ ଓଡ଼ିଶା ଶାସନ ରହିଲା ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାବେଳେ ନବେ ପ୍ରତିଶତ ଓଡ଼ିଆ ନିରକ୍ଷର ଥିଲେ । ସେମାନେ ସ୍ୱତନ୍ତ୍ର ଓଡ଼ିଶାର ମହତ୍ତ୍ୱ ବା କ'ଣ ବୁଝିବେ ? ମୋର ମନେ ଅଛି ମୁଁ ଷଷ୍ଠ ଶ୍ରେଣୀରେ ପଢ଼ିବା ବେଳେ ୧୯୩୫ ମସିହାରେ ୫ମ ଜର୍ଜଙ୍କ ରଜତ ଜୁବୁଲି ଉତ୍ସବ ଯେପରି ଜାକଜମକରେ ପାଳିତ ହୋଇଥିଲା ୧୯୩୬ ମସିହା ଏପ୍ରିଲ ପହିଲା ସ୍ୱତନ୍ତ୍ର ଉତ୍କଳ ଦିବସ ସେପରି ପାଳିତ ହୋଇନଥିଲା । କିନ୍ତୁ ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ହେବାରେ କଂଗ୍ରେସିଆଙ୍କର ବେଶି ଲାଭ ହେଲା । ଦେଶର ଲଗାମ ସେମାନଙ୍କ ହାତକୁ ଗଲା । ମହାନ୍ ମଧୁବାବୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ସୃଷ୍ଟିହେବାର ଗୁଞ୍ଜରଣ ଶୁଣିପାରିଥିଲେ ମଧ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନକୁ ଦେଖିପାରି ନଥିଲେ । ସେ ୧୯୩୪ ମସିହା ଫେବୃଆରୀ ୩ ତାରିଖ ରାତ୍ରି ଘ ୧.୨୦ ମିନିଟରେ ଶେଷ ନିଶ୍ୱାସ ତ୍ୟାଗକଲେ । ମାତ୍ର ମୃତ୍ୟୁପୂର୍ବରୁ ପଣ୍ଡିତ ନୀଳକଣ୍ଠ ଦାସ ପଚାରିଲେ, ''ଆପଣଙ୍କର ଓଡ଼ିଶାବାସୀଙ୍କ ପାଇଁ ଶେଷ ବାର୍ତ୍ତା କ'ଣ ?'' ମଧୁସୂଦନ କହିଥିଲେ, '' ଯାଅ ଲୋକଙ୍କୁ କହିବ ପେଟରେ ଥିବା ମଇଳାକୁ ପରିଷ୍କାର କରନ୍ତୁ । ତାହେଲେ ଆତ୍ମା ସହଜରେ ପରିଷ୍କାର ହୋଇଯିବ ।''ତାପରେ କ୍ଷୀଣ କଣ୍ଠରେ କହିଲେ, ''ମୁଁ ତ ଯାଉଛି, ମନେ ରଖିଥିବ ଜଣେ ଓଡ଼ିଆ ଥିଲା ।''

ତାଙ୍କର ଏହି ଉତ୍ତରରୁ ଜଣାପଡ଼େ ଓଡ଼ିଆ ହିସାବରେ ତାଙ୍କର ସ୍ୱାଭିମାନ କେତେ ପ୍ରବଳ ଥିଲା । ମଧୁବାବୁ ଓଡ଼ିଆମାନଙ୍କ ପାଇଁ ଦାଣ୍ଡରେ ଭିଖାରି ହେଲେ, ତଥାପି ଓଡ଼ିଆମାନେ ତାଙ୍କୁ ଚିହ୍ନି ପାରିଲେ ନାହିଁ । ଧନ୍ୟ ଓଡ଼ିଆ ବୀର ଜାତି !

୧୯୩୬ ମସିହାରେ ମୁଁ କୃତିତ୍ୱର ସହ ମାଇନର ପାସ୍ କରିଥିଲେ ମଧ ବୃତ୍ତି ପାଇପାରିନଥିଲି । ସେତେବେଳେ ଆମ ସ୍କୁଲରେ ସ୍ୱତନ୍ତ୍ର କୋଚିଙ୍ଗ ଦିଆଯିବାର ମୁଁ କେବେ ଦେଖି ନାହିଁ । ମୁଁ ଶ୍ରେଣୀରେ ୧ମ ହେଉଥିଲି ମାତ୍ର ସ୍ୱତନ୍ତ୍ର କୋଚିଙ୍ଗ ପାଇଥିଲେ ନିଶ୍ଚୟ ଅଧିକା ସଫଳତା ପାଇଥାନ୍ତି । କିନ୍ତୁ ଜୀବନ ସାରା ମୁଁ କେବେ ଶୀର୍ଷରେ ପହଞ୍ଚି ନପାରି ଠିକ୍ ପାଖରେ ପହଞ୍ଚିଛି । ଏହା ମୋର ଭାଗ୍ୟର ବିଡ଼ମ୍ବନା । ଆମ ଗାଁରେ କେହି ପାଠୁଆ ନଥିଲେ । ମୁଁ କାହାଠାରୁ ଇଂରାଜୀରେ ବା ଗଣିତରେ ମୋର ଭ୍ରମ ସଂଶୋଧନ କରିପାରୁନଥିଲି । ତେବେ ପରମେଶ୍ୱରଙ୍କ ଆଶୀର୍ବାଦ ମୋ ଉପରେ ଥିଲା । ମୋ ପଛେପଛେ ଗୋଟିଏ ଅଦୃଶ୍ୟ ଶକ୍ତି କାମକରୁଥିଲା ବୋଲି ମୋର ଧାରଣା ହୋଇଥିଲା ।

ଷଷ୍ଠ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଗୋଟିଏ ଘଟଣା ବର୍ଣ୍ଣନା କରୁଛି– ଛେଳଦା ଗ୍ରାମରେ ସର୍ବେଶ୍ୱର ପଟ୍ଟନାୟକ ମୋ ସଙ୍ଗେ ପଢୁଥିଲା । ତାଙ୍କ ଗାଁର କି ଆମ ଗାଁର ଆଉ କେହି ପଢୁନଥିଲେ । ମୁଁ ପ୍ରତିଦିନ ସର୍ବେଶ୍ୱର ଘରବାଟ ଦେଇ ଯାତାୟାତ କରିଥାଏ । ସର୍ବେଶ୍ୱର ଭାରି ଫିସାଦିଆ । ଦିନେ ଦିନେ ସ୍କୁଲକୁ ଯାଏ ନାହିଁ । କଥା ଏପରି ଫାନ୍ଦିକରି କହେ ଯେ ତା କଥା ସମସ୍ତେ ବିଶ୍ୱାସ କରନ୍ତି । ଯେତେବେଳେ ସେ ସବୁଦିନ ସ୍କୁଲକୁ ଗଲାନାହିଁ ମୁଁ ତା ସାଙ୍ଗ ଛାଡ଼ିଲି କିନ୍ତୁ ମୁଁ ଏକାକୀ ଯାଉଥିବାରୁ କଷ୍ଟ ହେଲା । ତାଙ୍କ ଗାଁ ବାଟରେ ଗଲିନାହିଁ, ଏଣେ ସିଧା ବାଟରେ ଗଲି ।

## ମୋତେ ବିଭୁକୃପା ମିଳିଲା :

ଥରେ ବିଦ୍ୟାଳୟରେ ପୁରସ୍କାର ବିତରଣ ସଭା ଅନୁଷ୍ଠିତ ହେଲା । ସେଦିନ ବିଦ୍ୟାଳୟ ଛାଡ଼ିଲାବେଳେ ରାତି ହୋଇଯାଇଥିଲା । ମୁଁ ପୁରସ୍କାର ପାଇଥିବା ପୁସ୍ତକ ଗୁଡ଼ିକ ଧରି ଯିବାକୁ ପ୍ରସ୍ତୁତ ହେଲି କିନ୍ତୁ ମୁଁ ଏକା, ଡର ଲାଗୁଛି । କିପରି ଯିବି ? ଯିବାକୁ ତ ପଡ଼ିବ । ଆଗପଛ କିଛି ଚିନ୍ତା ନ କରି ଗହଳି ଭିତରେ ମୁଣ୍ଡମୁହାଣ, ଗୋପାଳପୁର ପାରିହେଲି । ଓଗାଳପଡ଼ା ଗାଁ ମୁଣ୍ଡକୁ ଗଲି । ସେତେବେଳକୁ ରାତି ଟିକିଏ ହୋଇଗଲାଣି । ବାଟରେ ଦାତାଦଇବ କେହି ନାହାନ୍ତି । ଚନ୍ଦ୍ରପକ୍ଷ ରାତ୍ରି, ମାତ୍ର କାହାଲିଆ କାହାଲିଆ ପାଗ ହୋଇଥିବାରୁ ଦୂରେଦୂରାନ୍ତର ଝାପ୍‌ସା ଦେଖାଯାଉଛି । ସେ ଗାଁ ମୁଣ୍ଡରେ କିଛି ସମୟ ଠିଆହୋଇ ଭାବିଲି । ଆଗକୁ ଯିବାକୁ ସାହସ ହେଉନଥାଏ । ପଛକୁ ଫେରିଲେ ରହିବି କେଉଁଠାରେ ? ସେ ଗାଁରେ ଆମ ବାରିକର ଘର । ତା' ଘରକୁ ଗଲେ ସେ ଅବଶ୍ୟ ନାହିଁ କରିବ ନାହିଁ । ମାତ୍ର ମୁଁ ସ୍ୱଭାବତଃ ଲାଜକୁଳା, ତେଣୁ ଗଲିନାହିଁ । ବଡ଼ ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ିଲି । ଗାଁ ଆଡ଼କୁ ଚାହିଁଲାବେଳକୁ ଆଖିପାଉନଥାଏ, ବଡ଼ ଗହୀରଟାଏ । ତିନିଗୋଟି ଗହୀରର ସଂମିଶ୍ରଣ । ଖରାଦିନ ରାତି, ଖାଁ ଖାଁ ଲାଗୁଥାଏ । ଛାତିରେ ଛନକା ପଶିଲା । ବାଲ୍ୟଗୁରୁ କହିଥିଲେ "ବିପଦ ଆପଦରେ ଠାକୁରଙ୍କୁ ଡାକିବୁ" । ଠାକୁରଙ୍କ ନାମ ଗୁଣିହେଲି । ପାଦ ଆଗକୁ ପକାଇଲି । ଗୋଟିଏ ବଡ଼ ଦେଶୀ ବାଦାମି ରଙ୍ଗର କୁକୁର ହଠାତ୍ ଆଗରେ ଉଭା ହୋଇଗଲା । ହଠାତ୍ ଏତେବଡ଼ କୁକୁରକୁ ଦେଖି ମୁଁ ଟିକିଏ ଚମକି ପଡ଼ିଲି । କିନ୍ତୁ କିଛି ସମୟପରେ ସାହସ ବାନ୍ଧିଲି । କୁକୁର ମୋ ଆଗେ ଆଗେ ଚାଲିଥାଏ । ମୋ ମନରୁ ଭୟ ଦୂରହୋଇଗଲା । କୁକୁର ସେହିପରି ଚାଲିଥାଏ । ଓଗାଳପଡ଼ା ଗହୀର ଶେଷହୋଇ ଛେଳଦା ଗହୀର ପଡ଼ିଲା । କୁକୁରର ଗତିବିଧିରେ ମୁଁ କିଛି ବ୍ୟତିକ୍ରମ ଦେଖିଲି ନାହିଁ । ସେ ସେହିପରି ଚାଲିଥାଏ, ମନୁଷ୍ୟକୁ ସାଙ୍ଗରେ ନେଲାପରି । ଅବଶ୍ୟ ମନରେ ମଝିରେ

ମଝିରେ ଶଙ୍କା ଉପୁଜୁଥିଲା । ଛେଲଦା ଗହୀର ଶେଷହୋଇ ଆସିଲା, ଆମ ଗାଁ ଗହୀର ପଡ଼ିଲା । ବାଟରେ ଯୋଡ଼ି ଆମ୍ବ ଗଛର ଗହଳିଆ ଛାଇ ମନରେ ଭୀତି ସଞ୍ଚାର କଲା । ଗହଳ ପତ୍ର ଉହାଡ଼ରୁ ଭୂତପ୍ରେତଙ୍କ ଜୁଳୁଜୁଳୁ ଆଖିଗୁଡ଼ାକ ମୋ ଆଡ଼କୁ ଏକ ଲୟରେ ଚାହିଁବାପରି ଜଣାପଡୁଥିଲା । ତେବେ କୁକୁରର ଉପସ୍ଥିତି ମୋ ଭୟଭ୍ରାନ୍ତିକୁ ଦୂରେଇ ରଖୁଥିଲା । ସେ ମୋ ମନ କଥା ଜାଣିଲା କିପରି ? କୁକୁର ଆମ୍ବଗଛ ବାଟେ ନ ଆସି ବିଲ ମଝିରେ ଡଗର ବାଟରେ ଚାଲିବାକୁ ଆରମ୍ଭ କଲା । ପିଲାମନରେ ଭାବୁଥାଏ ଏ କିଏ ସେ ? ଆମ ଗାଁ ପାଖ ହେଲା । ଆମ ଗାଁ ଭିତରକୁ ଯିବାକୁ ହେଲେ ଗଡ଼ଖାଇପରି ଗୋଟିଏ ନାଳ ପଡ଼େ । ଖରାଦିନେ ପାଣିନଥାଏ । ଆରପଟେ ଗାଁ ଚୌକିଦାର ସନେଇ ମଲିକର ଘର । ନାଳଟା ଭାରି ଗହୀରିଆ । ତା ଭିତରେ କାଳେ କିଏ ଥିବ ? ତେବେ ଅଦୂରରେ ଗାଁ ଦାଣ୍ଡରେ ପିଲାମାନଙ୍କର କୋଳାହଳ ଧ୍ୱନି ଶୁଣାଗଲା । ମୋର ଦମ୍ଭ ଆଉ ସାହସ ଜାଗ୍ରତ ହେଲା । ଭୟର ମାତ୍ରା କମିଗଲା । ମୁଁ ନାଳ ପାରିହୋଇ ଅପର ପାର୍ଶ୍ୱକୁ ଗଲି ମାତ୍ର କୁକୁରଟି ମୋତେ ଅନୁସରଣ କଲାନାହିଁ । ଏପର୍ଯ୍ୟନ୍ତ ମୁଁ ତାକୁ ଅନୁସରଣ କରୁଥିଲି । ନାଳ ବନ୍ଧର ଆରପଟେ କୁକୁରଟି ରହିଲା । ମୋର ମନ କୃତଜ୍ଞତାରେ ଭରିଗଲା । ଯେତେ ଡାକିଲେ ସେ ମୋଟେ ଆସିଲା ନାହିଁ । ମୋତେ ଗାଁ ମୁଣ୍ଡରେ ଛାଡ଼ିଦେଇ ସେ ସଙ୍ଗେ ସଙ୍ଗେ ଅନ୍ତର୍ଦ୍ଧାନ ହୋଇଗଲା । ପାହୁଣ୍ଡେ ଆଗକୁ ପକାଇ ପୁଣି ପଛକୁ ଚାହିଁଲାବେଳକୁ ସେ ସେଠାରେ ନାହିଁ । ମନରେ ବିସ୍ମୟ ଭାବ । କିଛି ଠଉରାଇ ପାରିଲି ନାହିଁ । ପର ମୁହୂର୍ତ୍ତରେ ଭାବିଲି ଦୟାମୟ ପରମେଶ୍ୱର ମୋତେ ସାହାଯ୍ୟ କରିବାପାଇଁ ଏପରି ଦୂତ ମୋ ପାଇଁ ପଠାଇଥିଲେ ।

ଘରେ ପହଞ୍ଚିଲି, ''ଭାଇ ପଚାରିଲେ କିରେ ଅନ୍ଧାର ରାତିରେ ନିଛାଟିଆ ବାଟରେ ଏକୁଟିଆ ଆସିଲୁ କିପରି ? ସଙ୍ଗରେ କିଏ ଆସିଥିଲା ?'' ହଁ ଭାଇ, ''ଗୋଟିଏ ବଡ଼ କୁକୁର ମୋ ସାଙ୍ଗେ ଆସି ମୋତେ ଗାଁ ମୁଣ୍ଡ ଯୋର ପାଖେ ଛାଡ଼ିଦେଇ ଚାଲିଗଲା । ମୁଁ ଏପାରିକୁ ଆସି ଯେତେ ତାକୁ ଡାକିଲି ସେ ଆଦୌ ଆସିଲା ନାହିଁ ।''

ଭାଇ ବିସ୍ମୟରେ ଏଡ଼େ ଏଡ଼େ ଆଖିକରି ଚାହିଁ ରହିଲେ । ସେଠାରେ ଉପସ୍ଥିତ ଥିବା ମୋ ବୋଉ କହିଲା, ''ବାବୁରେ ସେ କୁକୁର ନୁହେଁ, ସେ ଠାକୁର–ଅରକ୍ଷିତକୁ ଦଇବ ସାହା ।''

ବିଭୁକୃପା ସବୁଠାରୁ ବଡ଼ ବୋଲି ମନେକରୁଛି । ମୋର ଭବିଷ୍ୟତ ଚିନ୍ତା କିଛି ନଥିଲା । ପଢ଼ିବାଦ୍ୱାରା ଯେ ଜ୍ଞାନଚକ୍ଷୁ ଖୋଲେ, ସେ ବ୍ୟକ୍ତି ଦେଶର ଜଣେ ଉନ୍ନତ

ମାନବରେ ପରିଣତ ହୁଏ, ଏକଥା ବି ମନକୁ ଆସିନଥିଲା । ତେବେ ଗୋଟିଏ କଥା ମନ ଆଗରେ ଦୃଶ୍ୟ ହେଉଥିଲା– ଚାକିରି କରିବି, ଦରମା ଅଧିକ ମିଳିବ, ଦେଶର କିଛି ସେବା କରିବା ସହିତ ଏକ ସୁସଂହତ ଜୀବନଯାପନ କରିବି, ଏହିପରି ଭାବନା ମନଭିତରେ ପରେ ଜାଗ୍ରତ ହୋଇଥିଲା । ପରମେଶ୍ୱରଙ୍କଠାରେ ସର୍ବଦା ବିଶ୍ୱାସ ରହୁଥିଲା ।

**ଉପରକୁ ପଢ଼ିବାର ଇଚ୍ଛା :**

ମାଇନର ପାସ୍ କରିବାପରେ ଉଚ୍ଚଶିକ୍ଷାର ଦ୍ୱାର ମୋ ପାଇଁ ବନ୍ଦ ହୋଇଗଲା ବୋଲି ମନେକଲି । ବିଲବାଡ଼ି କାମରେ ଭ୍ରାତୃଦ୍ୱୟଙ୍କୁ ସାହାଯ୍ୟ କଲି । ଗାଁ ଗହଳରେ ପାଠପଢ଼ାଟାକୁ କେହି ଗୁରୁତ୍ୱ ଦେଉନଥିଲେ । ପଢ଼ାର ହାଉଆ ଆମ ଗାଁରେ ସେପରି ନଥିଲା । ମହାରଣାଙ୍କର ଅମାପ ଧନ । ତାଙ୍କ ପୁତ୍ରରା ସେତେବେଳେ ଖୋର୍ଦ୍ଧା ହାଇସ୍କୁଲରେ ପଢୁଥିଲେ । ତେଣୁ ସେମାନଙ୍କର ଆଦର ବେଶି । ମୋର କଣ ଥିଲା କି ? ବାଡ଼ି ଗୋବରେ ତ ଗୋବେ ଭୂମି ନଥିଲା । ଏପର୍ଯ୍ୟନ୍ତ ମୁଁ ରୋଜଗାର କରିନାହିଁ । ମଜୁରି ଲାଗି ସ୍କୁଲରେ ପଢ଼ିହେବ ନାହିଁ । ମନରେ ବହୁକଥା ଉଦୟ ହେଉଛି ପୁଣି ଅଦୃଶ୍ୟ ହୋଇଯାଉଛି । ହାଇସ୍କୁଲରେ ପଢ଼ିବାକୁ ହେଲେ ଆଜିକାଲିପରି ହାଇସ୍କୁଲଗୁଡ଼ାକ ହାଉଯାଉ ହେଉନଥିଲା । ସମଗ୍ର ଓଡ଼ିଶାରେ (ଗଡ଼ଜାତ ସହ) ହାଇସ୍କୁଲ ୨୫ଟି କି ୩୦ ଟି ଭିତରେ ସୀମାବଦ୍ଧ ଥିଲା । ପୁରୀ ଜିଲ୍ଲାରେ ମୋଟେ ୫ ଗୋଟି ହାଇସ୍କୁଲ– ପୁରୀ, ଖୋର୍ଦ୍ଧା, ଓଳସିଂହ, ବାଣପୁର ଓ ନିମାପଡ଼ାରେ ଥିଲା । ହାଇସ୍କୁଲ ପଢ଼ା ବ୍ୟୟ-ସାପେକ୍ଷ ଥିଲା । ଏପରି ଅବସ୍ଥାରେ ମୁଁ ପଢ଼ିବି କେଉଁଠି ଓ କିପରି ? "ଠନ ଠନ ମଦନ ଗୋପାଳ ।"

ଇଂରେଜମାନେ ଓଡ଼ିଶା ଅଧିକାର କଲେ ୧୮୦୩ ମସିହାରେ କିନ୍ତୁ ଖୋରଧା ପାଇକ ବିଦ୍ରୋହ, ତାପଙ୍ଗ ବିଦ୍ରୋହ, ବାଣପୁର ବିଦ୍ରୋହ ୧୮୩୬ ସାଲ ପର୍ଯ୍ୟନ୍ତ ଲାଗି ରହିଲା । ଅନୁମାନ କରାଯାଏ ଏଥିପାଇଁ ଖୋରଧା ତଥା ଓଡ଼ିଶାରେ ଶିକ୍ଷା ଟିକିଏ ଧିମେଇଗଲା । ପାଠକମାନେ ସ୍ମରଣ କରିବା ଉଚିତ ଯେ ୧୮୩୫ ଖ୍ରୀ.ଅ.ରେ ଭାରତରେ ଇଂରେଜୀ ଶିକ୍ଷା ପ୍ରଚଳନ କରାଗଲା । ସେତେବେଳେ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ଲର୍ଡ ଉଇଲିୟମ ବେଣ୍ଟିକ । ଇଂରେଜ ଶିକ୍ଷା ଦେଶରେ ପ୍ରଚଳନ କରିବା ପାଇଁ ରାଜା ରାମମୋହନ ରାୟଙ୍କ ଉଦ୍ୟମ ପ୍ରଶଂସନୀୟ । ୧୮୧୩ ମସିହାରେ ଇଂରେଜମାନେ ଭାରତୀୟ ଲୋକଙ୍କ ଶିକ୍ଷାପାଇଁ କିଛି ଖର୍ଚ୍ଚ କରିବାକୁ ସିଦ୍ଧାନ୍ତ ନେଲେ ଏବଂ

୧ ଲକ୍ଷ ଟଙ୍କା ମଞ୍ଜୁର କଲେ । ସେହିଦିନଠାରୁ ପ୍ରତି ୧୦ ବର୍ଷରେ ଶିକ୍ଷା ସଂପର୍କରେ କିଛିକିଛି ଅଧିକ ଅର୍ଥ ବରାଦ କରାଗଲା । ଆଇନ ସଦସ୍ୟ ଲର୍ଡ ମାକଲେ ଶିକ୍ଷାନୀତି ପ୍ରଣୟନ କଲେ । କିନ୍ତୁ ହାଇସ୍କୁଲ ଶିକ୍ଷା ଦୀର୍ଘ ଦୁଇ ଦଶନ୍ଧି ପରେ ପ୍ରଚଳନ କରାଗଲା ।

### ଓଡ଼ିଶାରେ ଉଚ୍ଚଶିକ୍ଷାର କ୍ରମ ବିକାଶ :

ଓଡ଼ିଶାରେ ଇଂରେଜୀ ଶିକ୍ଷାର ବିକାଶ କ୍ରମରେ ୧୮୩୫ ମସିହା ନଭେମ୍ବର ମାସରେ ଶିକ୍ଷାବିକାଶର ଅୟମାରମ୍ଭ ହେଲା । ଓଡ଼ିଶାର ତତ୍କାଳୀନ କମିଶନର ହେନେରି ରିକେଟ ଓଡ଼ିଶାରେ ଇଂରେଜୀ ସ୍କୁଲ ଖୋଲିବାକୁ ବଙ୍ଗସରକାରଙ୍କଠାରୁ ଅନୁମତି ଲୋଡ଼ିଲେ । ସେତେବେଳେ ପୁରୀ, କଟକ, ବାଲେଶ୍ୱର ଏହି ତିନିଗୋଟି ଜିଲ୍ଲା ବଙ୍ଗ ପ୍ରେସିଡେନ୍ସିର ଏକ ଡିଭିଜନ ରୂପେ ନାମିତ ହୋଇଥିଲା । ବିଶାଳ ବଙ୍ଗ ପ୍ରେସିଡେନ୍ସିକୁ ଲକ୍ଷ୍ୟ କଲେ ଏହି ଡିଭିଜନଟି ଦୂରଦୂରାନ୍ତରେ ଲାଙ୍ଗୁଳ ସଦୃଶ ଅବହେଳିତ ଡିଭିଜନ ରୂପେ ବିଦ୍ୟମାନ ଥିଲା । ୧୮୩୫ ମସିହାରେ ପୁରୀ ସହରରେ ପୁରୀର ତତ୍କାଳୀନ କଲେକ୍ଟର ଉଇଲିକିନସନ ସାହେବଙ୍କ ପ୍ରଚେଷ୍ଟାରେ ପୁରୀ ଫ୍ରି ଏକାଡ଼େମୀ ଗଠିତ ହେଲା । ମାତ୍ର ଶିକ୍ଷକ କାହାନ୍ତି ? ବଙ୍ଗଳାରୁ ପୁରୀ ଆସିବାକୁ ପନ୍ଦର ଦିନ ସମୟ ଲାଗୁଥିଲା ।  ଗଙ୍ଗାନାରାୟଣ ବୋଷ ନାମକ ଜଣେ ଇଂରେଜ ପଢୁଆ ବ୍ୟକ୍ତି ପ୍ରଥମେ ଯୋଗଦେଲେ । ୧୮୨୦ ମସିହାରେ କଲିକତାରେ ଯେଉଁ  ହିନ୍ଦୁ କଲେଜ ସ୍ଥାପିତ ହୋଇଥିଲା ତାହା କାଳକ୍ରମେ ପ୍ରେସିଡେନ୍ସି କଲେଜ ନାମରେ ଚିହ୍ନିତ ହେଲା । ତେଣୁ ବଙ୍ଗାଳୀମାନେ ଓଡ଼ିଶାଠାରୁ ଶିକ୍ଷାବିଷୟରେ ଆଗୁଆ ଥିଲେ । ପୁରୀ ଫ୍ରି ସ୍କୁଲରେ ୧୮୩୫ ମସିହାରେ ୨୫ଜଣ ଛାତ୍ରଥିଲେ । ଛାତ୍ରମାନେ ଶୃଙ୍ଖଳିତ ଓ ସଦାଚାରୀ ଥିଲେ । ଶିକ୍ଷକମାନେ ପିଲାମାନଙ୍କ ଆଚାର ବ୍ୟବହାରରେ ସନ୍ତୁଷ୍ଟ ଥିଲେ । ମାତ୍ର ମାଟିବଂଶ ଅବଧାନମାନେ ଇଂରେଜ ସ୍କୁଲ ବିରୁଦ୍ଧରେ ପ୍ରଚାର କଲେ । ଇଂରେଜ ସ୍କୁଲରେ ପଢ଼ିଲେ ପିଲା ଖ୍ରୀଷ୍ଟିଆନ ହୋଇଯିବେ । ଦ୍ୱିତୀୟତଃ ଗଙ୍ଗାନାରାୟଣ ବାବୁ ଅସୁସ୍ଥ ଯୋଗୁଁ ସ୍ୱ ଗୃହକୁ ଫେରିଗଲେ । ଡେଭିଡ୍ ସାହେବ ପ୍ରଧାନ ଶିକ୍ଷକ ରୂପେ  ଯୋଗଦେଲେ । ତପୂରେ ମକାରପାନ ଓ ପରେ ୱାଲପୋଲ ମି. କର୍ଜନ ପ୍ରଧାନଶିକ୍ଷକ ରୂପେ ଯୋଗଦେଇଥିଲେ କିନ୍ତୁ ସେମାନେ କୌଣସି ଦେଶୀୟ ଭାଷା ଶିକ୍ଷାକରି ନଥିଲେ ।  ଭୁଲ ପ୍ରଚାର ଯୋଗୁଁ ପିଲା ସଂଖ୍ୟା କମିବାରେ ଲାଗିଲା । ତେଣୁ ୧୮୪୧ ମସିହାରେ ସ୍କୁଲଟି କଟକକୁ ସ୍ଥାନାନ୍ତରିତ ହେଲା । ଏହି ସ୍କୁଲଟି ପରବର୍ତ୍ତୀ କାଳରେ କଟକ ଜିଲ୍ଲାସ୍କୁଲ ଓ ୧୮୭୫ ମସିହାରେ ରେଭେନ୍ସା କଲେଜିଏଟ ସ୍କୁଲର ବୀଜ ସ୍ୱରୂପ ଥିଲା । ୧୮୫୩ ମସିହାରେ

ଚାର୍ଲସଉଡ଼ ଡେସ୍ପାଚ ବଳରେ ତିନିଜିଲ୍ଲାରେ ତିନିଗୋଟି ଜିଲ୍ଲା ସ୍କୁଲ ପ୍ରତିଷ୍ଠା ଲାଭକଲା । ୧୮୫୭ ସିପାହୀ ବିଦ୍ରୋହ ଯୋଗୁଁ ୧୮୫୩ ମସିହାରେ ଆରମ୍ଭ ହେଉଥିବା ଇଂରେଜୀ ସ୍କୁଲ ୧୮୫୮ ମସିହା ବେଳକୁ ହାଇସ୍କୁଲରେ ପରିଣତ ହୋଇଥିଲା । ଜଣାଯାଏ ପୁରୀଜିଲ୍ଲା ସ୍କୁଲରୁ ଛାତ୍ରମାନେ ୧୮୬୮ ମସିହାରେ ମାଟ୍ରିକ ପରୀକ୍ଷା ଦେଲେ । ୧୮୫୭ ମସିହାରେ କଲିକତା, ବମ୍ବେ, ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହେଲା । ଓଡ଼ିଶାର ଉକ୍ତ ୩ ଗୋଟି ଜିଲ୍ଲାସ୍କୁଲ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲେ । ୧୮୬୮ରେ ପୁରୀ ଜିଲ୍ଲା ସ୍କୁଲରୁ ପ୍ରଥମ ବର୍ଷ ଜୟକୃଷ୍ଣ ପଟ୍ଟନାୟକ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ୧୮୯୫ ମସିହା ପର୍ଯ୍ୟନ୍ତ ପୁରୀଜିଲ୍ଲା ସ୍କୁଲ ସମଗ୍ର ପୁରୀଜିଲ୍ଲା ଓ ନିକଟବର୍ତ୍ତୀ ଗଡ଼ଜାତ ସମୂହର ଏକମାତ୍ର ହାଇସ୍କୁଲ ଥିଲା । ୧୮୯୬ ମସିହାରେ ଖୋରଧାରେ ହାଇସ୍କୁଲ ପ୍ରତିଷ୍ଠିତ ହେଲା । ଶିକ୍ଷାବିତ୍ ଶ୍ରୀ ହରିହର ମିଶ୍ରଙ୍କ ଉକ୍ତି ଅନୁଯାୟୀ ୧୯୨୬ ମସିହା ବେଳକୁ ଓଡ଼ିଶାର ମୋଗଲବନ୍ଦି ଅଞ୍ଚଳରେ ୧୮ ଟି ଓ ଗଡ଼ଜାତ ମାନଙ୍କରେ ୭ଟି ହାଇସ୍କୁଲ ପ୍ରତିଷ୍ଠା ହୋଇଥିଲା । ସତ୍ୟବାଦୀ ବନ ବିଦ୍ୟାଳୟ ୧୯୦୯ ମସିହାବେଳକୁ ଆରମ୍ଭ ହୋଇ ୧୯୨୬ ମସିହା ବେଳକୁ ବିଲୟ ଭଜିଲାଣି । ୧୯୩୫ ମସିହା ପର୍ଯ୍ୟନ୍ତ ଓଡ଼ିଶା 'ବିହାର-ଓଡ଼ିଶା' ପ୍ରଦେଶର ଲାଙ୍ଗୁଳ ସ୍ୱରୂପ ଥିଲା । ଭାରତରେ ଇଂରେଜୀଶିକ୍ଷା ପ୍ରଚଳନ ହେବାର ଏକଶତବର୍ଷ ହୋଇଥିଲେ ହେଁ ଓଡ଼ିଶାରେ ସାକ୍ଷର ହାର ଶତକଡ଼ା ଦଶ ଭିତରେ ସୀମିତ ଥିଲା । ଓଡ଼ିଶା ଡିଭିଜନରେ ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ ନାମକ ୫ଟି ଜିଲ୍ଲା ଓ ଷଢ଼େଇକଳା, ଖରସୁଆଁ ସମେତ ୨୬ ଗୋଟି ଗଡ଼ଜାତ ଥିଲା । ଏତେବେଳକୁ କଟକ ସହରରେ ମୁସଲିମ, ସେମିନାରୀ, ଟାଉନ ଭିକ୍ଟୋରିଆ, ପିଆରୀମୋହାନ ଏକାଡ଼େମୀ, ରେଭେନ୍ସା ଗାର୍ଲସ୍କୁଲ ଓ ମିଶନ ସ୍କୁଲ ପ୍ରତିଷ୍ଠା ହୋଇ ସାରିଥିଲା । କଟକ ଜିଲ୍ଲା ମଧ୍ୟରେ ଯାଜପୁର, କେନ୍ଦ୍ରାପଡ଼ା, କୁଜଙ୍ଗ, ବାଙ୍କୀ ହାଇସ୍କୁଲ, ବାଲେଶ୍ୱର ଜିଲ୍ଲାସ୍କୁଲ, ରେମୁଣା ଓ ଭଦ୍ରକ ହାଇସ୍କୁଲ, ସମ୍ବଲପୁରରେ ସମ୍ବଲପୁର ଓ ବରଗଡ଼ ହାଇସ୍କୁଲ, ଅନୁଗୁଳରେ ଅନୁଗୁଳ ଜିଲ୍ଲାସ୍କୁଲ ପ୍ରତିଷ୍ଠା ହୋଇ ସାରିଥିଲା । ପୁରୀ ଜିଲ୍ଲାରେ ପୁରୀ, ଖୋର୍ଦ୍ଧା ବ୍ୟତୀତ ଓଳସିଂହ, ବାଣପୁର, ନିମାପଡ଼ା ହାଇସ୍କୁଲ ପ୍ରତିଷ୍ଠା ହୋଇ ସାରିଥାଏ । ଗଡ଼ଜାତଗୁଡ଼ିକରେ ବାରିପଦା, ଢେଙ୍କାନାଳ, ବାମଣ୍ଡା, ବୌଦ, କେନ୍ଦୁଝର, ଭବାନୀପାଟଣା, ବଲାଙ୍ଗୀର ପ୍ରଭୃତି ସ୍ଥାନରେ ଗୋଟିଏ ଗୋଟିଏ ହାଇସ୍କୁଲ ଗଢ଼ି ଉଠିଥିଲା । ସେତେବେଳେ ଓଡ଼ିଶା ସ୍କୁଲ ସମୂହର ଇନିସ୍‌ପେକ୍ଟର ଥିଲେ ଏସ୍. ରାୟ ଓ ଡାଇରେକ୍ଟର ଥିଲେ ଶ୍ରୀଯୁକ୍ତ ଟି.ପି. ସାହେବ,

ଆଇ.ଇ.ଏସ୍. । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ଡି.ପି. ସାହେବ ଓଡ଼ିଶାର ଡାଇରେକ୍ଟର ହେଲେ । ତେବେ ମୋ ପରି ଦରିଦ୍ର, ଅକ୍ଷମ ଛାତ୍ର ଜଣକ ପଢ଼ିବ କେଉଁଠି ? ଏ କ'ଣ ଖେଳଘର କଥା ହୋଇଛି କି ? ଆମ ଘର ପାଖରେ ପ୍ରାୟ ୫ ମାଇଲ ଦୂରରେ ଖୋର୍ଦ୍ଧା ହାଇସ୍କୁଲ ଅବସ୍ଥିତ ଥିଲେହେଁ ସେଠାରୁ କୌଣସି ସାହାଯ୍ୟ ପାଇବା ସମ୍ଭବ ହେଲାନାହିଁ । ମୁଁ ଫକଡ଼ରାମ ଗିରିଧାରୀ । ହାଣ୍ଡି ତ ମାଙ୍କଡ଼ଚିତ୍ ମାରୁଛି । ଛାତ୍ରାବାସରେ ଅବସ୍ଥାନ କରି ପାଠ ପଢ଼ିବା କେବଳ ଥିଲାବାଲା ପିଲାମାନଙ୍କ ପାଇଁ । ଆମ ଗାଁ ଧନାଢ଼୍ୟ ମହାରଣାଙ୍କ ପୁତୁରା ରାଜକିଶୋର ୧୦ମ ଶ୍ରେଣୀରେ ଅଧ୍ୟୟନ କରୁଥିଲେ, ଖୋର୍ଦ୍ଧା ସ୍କୁଲ ଛାତ୍ରାବାସରେ ରହୁଥିଲେ । ମୋ ପରି ପିଲା ପଢ଼ିଲେ ଲୋକେ ଟାପରା କରିବେ । ମୋର ଉପରକୁ ପଢ଼ିବାକୁ ଖୁବ୍ ଇଚ୍ଛା ହେଉଥାଏ, ମାତ୍ର ଉପାୟ କିଛି ନଥିଲା ।

## ପଢ଼ିବାପାଇଁ ବଳବତୀ ଇଚ୍ଛା :

ପଢ଼ିବା ପିପାସା ଚରିତାର୍ଥ କରିବା ପାଇଁ ଦିନେ ଯାଁଳା ଇଉନିୟନର ପ୍ରେସିଡେଣ୍ଟ ଯାଁଳା ମାଇନର ସ୍କୁଲର ସେକ୍ରେଟାରୀ ବାବୁ କୈଳାସ ଚନ୍ଦ୍ର ସାମନ୍ତରାଙ୍କର ଦ୍ୱାରସ୍ଥ ହେଲି । ବିଶାଳବପୁ, ଗୌରବର୍ଣ୍ଣ, ଥନ୍ତଲପେଟ, ଶରୀର ତୁଳନାରେ ମୁଣ୍ଡଟି କ୍ଷୁଦ୍ର କିନ୍ତୁ ସେ ଉତ୍ତମ ମଣିଷ । ଏପରି ଯେଉଁ ମହାନ୍ କୈଳାସ ଚନ୍ଦ୍ର ବାବୁ ତାଙ୍କୁ ତାଙ୍କ କଚେରି ଘର ଭିତରେ ସାକ୍ଷାତ କଲି କିଛି ପାଇବା ଆଶାରେ । କୈଳାସବାବୁଙ୍କ ପୁଅ କିଶୋରଚନ୍ଦ୍ର ମୋର ପଢ଼ାସାଥୀ ଥିଲା । ସେ କିନ୍ତୁ ସେ ବର୍ଷ ମାଇନର ପରୀକ୍ଷାରେ ଫେଲ ହୋଇ ଯାଇଥିଲା । ଏକଥା ମୋର ଖିଆଲ ନଥିଲା । ତାଙ୍କ ମନଟା ନିଶ୍ଚୟ ଦୁଃଖରେ ଜୁଡୁବୁଡୁ ହୋଇଥିବ । ତାଙ୍କ ମନକୁ ଅନୁଧ୍ୟାନ ନକରି ମୁଁ ତାଙ୍କ ନିକଟକୁ ଯାଇ କେତେବଡ଼ ଭୁଲ କରିଥିଲି, ତଥାପି ଯେତେବେଳେ ଯାଇଛି ତାଙ୍କୁ ଦୁଃଖ କହିଲି । ସେ ମୋତେ ରୋକଠୋକ ମନା ନକରି ଗୋଟିଏ ଦିଗ ଦେଖାଇଲେ । ''ମୁକ୍ତିନାଥ, ତୁମେ ନିଃସ୍ୱ, ଓଳିଏ ଖାଇଲେ ଆର ଓଳିକି ଦାନା ନାହିଁ । ମାଟ୍ରିକ ପଢ଼ିବା କାଠିକର ପାଠ । କାହିଁକି ଏପରି ଦୁଃସାହସ କରୁଛ ? ତୁମ ଗାଁ ସ୍କୁଲକୁ ଦ୍ୱିତୀୟ ଶିକ୍ଷକ ପଦ ମଞ୍ଜୁର ହୋଇଚି । ମାସକୁ ଦରମା ୨୪ଟଙ୍କା । ଏହା ତୁମ ପାଇଁ ସୁବର୍ଣ୍ଣ ସୁଯୋଗ । ଏହି ଚାକିରି ପାଇଁ ପ୍ରାର୍ଥୀ ହୁଅ । ଯାଅ ଆଉ ହେଳା କରନାହିଁ ।'' ସେ ହିମାଳୟ, ମୁଁ ତାଙ୍କୁ କି ଉତ୍ତର ଦେବି ? ତାଙ୍କ ଉପଦେଶକୁ ବାଟଯାକ ଘୋଷି ଘୋଷି ଗୃହକୁ ପ୍ରତ୍ୟାବର୍ତ୍ତନ କଲି । ମନଟା ମରିଗଲା ସିନା ଆଶାଟାରେ ଭଟା ପଡ଼ି ନଥିଲା ।

**ଏକ ପ୍ରଚେଷ୍ଟା :**

ଦିନେ ଆମ ଦୁଆର ସାମନା ଦୁଆରେ କେଳୀ ନାନୀର ମାଟି ପିଣ୍ଡାରେ ବସିଥିଲି । ତା ବର ଭରତ ପ୍ରଧାନ ବୟସଭାରରେ ନଇଁ ପଡ଼ିଥାଆନ୍ତି । ମୋର ଗାଁଉଲୀ ଭିଣୋଇ ଲେଖା ହେବେ । ବହୁ ସମୟରେ ଟାହିଟାପରା କରନ୍ତି । ମୋର ଜ୍ୟେଷ୍ଠ ଭ୍ରାତା ଓ ଭରତ ପ୍ରଧାନ ବହୁବାର କାଠ କୋଇଲା ଶଗଡ଼ରେ ପୁରୀକୁ ଚାଲାଣ କରନ୍ତି । ମୁଁ କେତେଥର ସେମାନଙ୍କ ସହ ଚାଲିଚାଲି ପୁରୀ ସଡ଼କ ପଥରେ ଯାତ୍ରା କରିଛି । ମୁଁ ପଢ଼ିବାପାଇଁ ଯେତେବେଳେ ବାଉଳି ହେଉଛି ବୋଲି ସେ ଜାଣିଲେ ମୋତେ କହିଲେ, ''ଶଳା ! ଖ୍ରିସ୍ତାନୀ ହୋଇଯାଉନୁ ଢେର୍ ପଢ଼ିବୁ ! ଭଲ ଚୋକୀ ପାଇବୁ ?'' ବୁଢ଼ାଙ୍କ କଥା ମୋ ମନକୁ ବେଶ୍ ପାଇଲା । ଚୋକୀ କଥା ଛାଡ଼, ପଢ଼ି ତ ପାରିବି । ପୂର୍ବରୁ ବହୁବାର ଶୁଣିଛି କେତେକ ଉଚ୍ଚଆଶା ପୋଷଣ କରି ଖ୍ରୀଷ୍ଟିଆନ ହୋଇଯାଉଛନ୍ତି । ସୁବିଧା ସୁଯୋଗ ପାଇଥିଲେ ମୁଁ ମଧ୍ୟ ଧର୍ମାନ୍ତର ଗ୍ରହଣ କରିଥାଆନ୍ତି । ମାତ୍ର ତାହା ତ ଭାଗ୍ୟର ଅଧୀନ । ତୁନି ହୋଇ କାନମୁଣ୍ଡା ଆଉଁସି କାଳ କଟେଇଲି ।

**ଅନ୍ୟଏକ ପ୍ରଚେଷ୍ଟା :**

ବାଲ୍ୟଗୁରୁ 'କର' ମହାଶୟ ମୋ ପାଇଁ ଭାବୁଥିଲେ । ଦିନେ ରାତିରେ ଗୋଟିଏ ଉପାୟ ପାଞ୍ଚି ତା ପରଦିନ ସକାଳେ ମୋତେ ଜଣାଇଲେ । ତାଙ୍କ କଥାରେ ମୁଁ ଖୁବ୍ ଉତ୍ସାହିତ ହେଲି । ମୋର ଭାଗ୍ୟ ଫେରିବ ବୋଲି ଭାବିନେଲି । ସେ ସମୟରେ ଜଟଣୀ ସହରରେ ବହୁ ଗୋରା ସାହେବ ଓ ଆଙ୍ଗ୍ଲୋଇଣ୍ଡିଆନ ବାସ କରୁଥିଲେ । ସେମାନେ ଶାସକ ଜାତିର ଲୋକ ହୋଇଥିବାରୁ ସେମାନଙ୍କର ଖାତିର ଥିଲା । ସେମାନେ ଧନବନ୍ତ ଥିଲେ । ମୋତେ ଆଖିଦୃଶିଆଭାବେ ସାହାଯ୍ୟ ମିଳିବ ବୋଲି ମୁଁ ଆଶା କଲି । ସେଥିପାଇଁ ଗୁରୁଜୀଙ୍କ ପରାମର୍ଶରେ ମୋର ସୀମିତ ଜ୍ଞାନରେ ଦରଖାସ୍ତ ବା ଆବେଦନ ପତ୍ର ଖଣ୍ଡିଏ ଲେଖିଲି–"I have passed the M.S.C. Examination with honours and distinction. I want to read more. Please give me some help." ତଳେ ନିଜ ନାମ ସ୍ୱାକ୍ଷର କରି ନିଜ ବଡ଼ଭାଇ ବାନାମ୍ବରଙ୍କୁ ସାଙ୍ଗରେ ଧରି ସେମାନଙ୍କ ଦ୍ୱାରସ୍ଥ ହେଲି । କଥାରେ ଅଛି ''ମାଗିବାଠାରୁ ହୀନ ନାହିଁ, ଦେବାଠାରୁ ପୁଣ୍ୟ ନାହିଁ'' । ମାଗିବା ବେଳେ ନିଜକୁ ନ୍ୟୂନ ମନେକରାଯାଏ । ଏପରି ମାଗିବା ଧାରାକୁ ପସନ୍ଦ ନକଲେ ବି ପଢ଼ିବା ଆଶାରେ ଦ୍ୱାର ଦ୍ୱାର ମାଗିଲି । ସେମାନଙ୍କ ମଧ୍ୟରୁ ଜଣେ

ମୁଁ ଏମ.ଏସ୍.ସି. ପାସ୍‌କରିଥିବା ଶୁଣି ବିସ୍ମିତ ହେଲେ । ମୁଁ ତାଙ୍କୁ ତାର ମର୍ମ ବୁଝାଇଦେଲି । ତାଙ୍କର ସନ୍ଦେହ ଦୂର ହେଲା ସତ କିନ୍ତୁ ମୋ ହାତକୁ ଜମା ଦୁଇ ଟଙ୍କା ଆସିଲା । ସେହି ପଇସାକୁ ଘଡ଼ିଏ ଚାହିଁରହିଲି । କେତେ ଦ୍ୱାର ଦ୍ୱାର ହୋଇ ବୁଲିବି ? ଆଉ ବୁଲିବି ନାହିଁ । 'ଜାତି ଗଲା ପେଟ ପୂରିଲା ନାହିଁ ।' ଏହା ଉଚିତ ପନ୍ଥା ନୁହେଁ । ଗାଁ ଲୋକେ ହସିବେ, ଟାପରା କରିବେ, କହିବେ "ଶଳା ନିଲଠା ପାଠ ନ ପଢ଼ିଲେ ନାହିଁ, ଏପରି ହୀନ ଆଚରଣ କାହିଁକି ?" ପଇସା ମିଳିବା କଥା କାହାଆଗରେ ପ୍ରକାଶ କଲିନାହିଁ । ଶୃଙ୍ଖଳା ନଈରେ ଡଙ୍ଗା ବାହି ହେବ ନାହିଁ । ଥକି ପଡ଼ିଲି, ଚାରିଆଡୁ ନିରାଶ ହେଲି ।

ମାଇନର ସ୍କୁଲରେ ପଢ଼ିବା ସମୟରେ ମୁଁ ହାଫ୍ ପ୍ୟାଣ୍ଟ ସାର୍ଟ ପିନ୍ଧୁ ନଥିଲି, ଆଠହାତି ଧୋତି ଖଣ୍ଡିଏ କୁଞ୍ଚକରି ପିନ୍ଧୁଥିଲି । ଦୋଷଡ଼ାଟିଏ କାନ୍ଧରେ ପକାଉଥିଲି । ସେତେବେଳେ କମ୍ ପିଲା ପ୍ୟାଣ୍ଟସାର୍ଟ ପିନ୍ଧୁଥିଲେ । ଚଟି ବା ଜୋତା କମ୍ ପିଲା ପିନ୍ଧୁଥିଲେ । ଆମ ଗାଁରେ କେହି ଚଟି ବା ଜୋତା ପିନ୍ଧିବାର ମୋ ନଜରକୁ ଆସିନାହିଁ । କେବଳ ଗାଁ ମହାଜନ ମାଲିମକଦ୍ଦମାରେ ପୁରୀ କିମ୍ୱା ବ୍ରହ୍ମପୁର ଯିବା ବେଳେ କୋଟ୍ ସାର୍ଟ, ଜୋତା ପିନ୍ଧୁଥିଲେ । ଆମର ତ ଜମିବାଡ଼ି କିଛି ନଥିଲା ଯେଉଁଘରେ ଆଶ୍ରୟ ନେଇଥିଲୁ ତାହା କଟକ କାଜିପାଟଣା ଗ୍ରାମର ଜମି ମାଲିକ ଧର୍ମାନନ୍ଦ ସ୍ୱାଇଁଙ୍କର । ଭ୍ରାତୃଦ୍ୱୟ ଗାଁ ମହାଜନଙ୍କର ୪/୫ ମାଣ ଜମି ଧୂଳିଭାଗରେ ଧରିଥିଲେ । ସେମାନଙ୍କର ଉତ୍ତମ ସ୍ୱଭାବ ମହାଜନଙ୍କୁ ସନ୍ତୋଷ ପ୍ରଦାନ କରୁଥିଲା । ତେଣୁ ମୁଁ ୬ଷ୍ଠ ଶ୍ରେଣୀରେ ପଢୁଥିବା ବେଳେ ମହାଜନ ନାରାୟଣ ବନ୍ଧୁ ମହାରଣା ଦୟାପରବଶ ହୋଇ ଆଠଣା ମୂଲ୍ୟର ଖଣ୍ଡିଏ ସାହିତ୍ୟ ପ୍ରସଙ୍ଗ ବହି କିଣି ଦେଇଥିଲେ । ଭକ୍ତକବି ମଧୁସୂଦନ ରାଓଙ୍କର ସାହିତ୍ୟ କୁସୁମ ଓ ସାହିତ୍ୟ ପ୍ରସଙ୍ଗ ବହୁ କାଳ ଧରି ମାଇନର ପାଠ୍ୟପୁସ୍ତକ ରୂପେ ଚଳୁଥିଲା । ନିମ୍ନ ପ୍ରାଥମିକ ସ୍ତରରେ ମଧୁବାବୁଙ୍କର ବର୍ଣ୍ଣବୋଧ ଅକ୍ଷର ପରିଚୟ ପାଇଁ ଖଣ୍ଡିଏ ଶ୍ରେଷ୍ଠ ପାଠ୍ୟପୁସ୍ତକ । ମହାଜନଙ୍କ ପୁଅ ରାଜକିଶୋରକୁ ଛାଡ଼ିଦେଲେ ମୁଁ ଆମ ଗାଁରେ ବଡ଼ପାଠୁଆ । ଅନୁନ୍ନତ ଗ୍ରାମର କେହି କେହି କହିବାର ଶୁଣିଛି– ଏ ଟୋକା ବହୁତ ପାଠ ପଢ଼ିଲାଣି । ମଧୁବାରିଷ୍ଟର ସଙ୍ଗେ ଲଢ଼ିବ ପରା ? କିନ୍ତୁ ସେତେବେଳକୁ ଓଡ଼ିଆ ଜାତୀୟତାର ଜନକ ମଧୁବାବୁ ଏ ପାରିରେ ନଥିଲେ । ମୁଁ ଏବେ କ'ଣ କରିବି ? କଳେଇବୁହା, ବେଙ୍ଗଳାପକା, ମହାଜନ କୋଠିକୁ ଧାନ ବୋହିବା କାମରେ ଭାଇମାନଙ୍କୁ ସାହାଯ୍ୟ କଲି ।

ମନକୁମନ ବୁଝାଇଲି :

"ହାତରେ ନଥାଇ ଧନ, ପୁଅ ବାହାକରି ମନ ।"

ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବି କାହିଁକି ? ଯେତିକିର ଲୋକ ସେତିକିରେ ରହିବି । ଆମ ଗାଁ ପ୍ରାଥମିକ ସ୍କୁଲରେ ଚାରିଟଙ୍କା ବେତନରେ ଦ୍ୱିତୀୟ ଶିକ୍ଷକ ହେବି ନା ଖୋରଧାରେ ମୋହରିର କାମ କରିବି, ଏହି ଚିନ୍ତାରେ କାଳ କାଟିଲି । ଦିନ ପରେ ଦିନ ଗଡ଼ି ଚାଲିଲା । ବହୁ ସମୟରେ ଗାଁ ପିଲାମାନଙ୍କ ସଙ୍ଗେ ମିଶି ତୋଟାମାଳରେ ବାଗୁଡ଼ି ଖେଳରେ ମାତିଲି । ଭାଇମାନେ କିନ୍ତୁ କୌଣସି କାମକରିବାକୁ ମୋତେ ବଳଉ ନଥିଲେ ।

## ଭାଗ୍ୟରେ ହଠାତ୍ ପରିବର୍ତ୍ତନ

କଥାରେ ଅଛି –

"ଭାଗ୍ୟଂ ଫଳତି ସର୍ବତ୍ର, ନ ବିଦ୍ୟା ନ ଚପୌରୁଷଃ ।"

ଦିନେ ଗାଁରେ ପିଲାଙ୍କ ମେଳରେ ଖେଳୁଛି, ଯାଁଳା ମାଇନର ସ୍କୁଲର ଗୁରୁଜୀ ଶ୍ରୀଯୁକ୍ତ ଅଦ୍ୱୈତ ଚମ୍ପତିରାୟ ମୋତେ ଡକାଇ ପଠାଇଲେ । ଭାଗ୍ୟର ଉଦୟ ହେବ କି ? ଅଦ୍ୱୈତବାବୁ ଜ୍ଞାନୀ ଓ ଛାତ୍ରବତ୍ସଳ । ମୋତେ ସେ ପୁତ୍ର ସଦୃଶ ଭଲପାଉଥିଲେ । ତାଙ୍କଘର ଯାଁଳା ନିକଟସ୍ଥ ଖଣ୍ଡାୟତବହୁଳ ମଦନପୁର ଗ୍ରାମରେ । ପୂର୍ବେ ସେହି ଗ୍ରାମର ଶ୍ରୀ ଅଭିରାମ ରଣସିଂହ ଡେପୁଟି ଇନ୍ସ୍‌ପେକ୍ଟର ପଦରେ ସ୍ଥାନିତ ହୋଇଥିଲେ । ବର୍ତ୍ତମାନ ମଧ ଗାଁ ଲୋକେ ପାଠପଢ଼ାରେ ଅଗ୍ରଣୀ ଅଟନ୍ତି । ଶ୍ରୀକୁଞ୍ଜବିହାରୀ ରଣସିଂହଙ୍କ ଘର ସେହି ଗ୍ରାମରେ । ଯେତେବେଳେ କୁଞ୍ଜବାବୁ ଭିଙ୍ଗାରପୁର ମାଇନର ସ୍କୁଲରେ ଦ୍ୱିତୀୟ ପଣ୍ଡିତରୂପେ କାର୍ଯ୍ୟ କରୁଥିଲେ । ୭ମ ଶ୍ରେଣୀରେ ଅଧୟନ କରୁଥିବା ସମୟରେ ମୁଁ ଗୁରୁ ଅଦ୍ୱୈତବାବୁଙ୍କ ଘରଠାକୁ କେତେଥର ଯାଇଛି । ସେ ମୋତେ ଆଦରରେ ପାଖରେ ବସାଇ ଖାଇବାକୁ ଦିଅନ୍ତି । ତାଙ୍କର ସ୍ନେହ ଅତୁଟ । ସେତେବେଳେ ମୁଁ କୁଞ୍ଜବାବୁଙ୍କୁ ଚିହ୍ନିଥିଲି । ଯେତିକି ସ୍ନେହୀ ସେତିକି ନୀତିବାନ୍ ଓ ଦୃଢ଼ ଶୃଙ୍ଖଳାରକ୍ଷକ ତଥା କର୍ତ୍ତବ୍ୟପରାୟଣ । ସେଥିପାଇଁ ଭିଙ୍ଗାରପୁରରେ ତାଙ୍କର ଆଦର ଅଧିକ । ୧୯୩୬ ମସିହାରେ ଚୌଧୁରୀ ଗଙ୍ଗାଧର ଦାସଙ୍କ ଚେଷ୍ଟାରେ ସେଠାରେ ଗୋଟିଏ ହାଇସ୍କୁଲ ଖୋଲିଥିଲା । ପୁରୀ ଜିଲ୍ଲାରେ ଏହା ହେଉଛି ଷଷ୍ଠ ହାଇସ୍କୁଲ ।

ଆଜିକାଲି ପ୍ରତି ଗାଁରେ ବା ଦୁଇ ଚାରିଖଣ୍ଡ ମୌଜାରେ ଗୋଟିଏ ଗୋଟିଏ ହାଇସ୍କୁଲ ଖୋଲିଲାଣି କିନ୍ତୁ ସେତେବେଳେ ହାଇସ୍କୁଲଟିଏ ଖୋଲିବା ଅତୀବ କଷ୍ଟକର

ବ୍ୟାପାର ଥିଲା । ଭିଙ୍ଗାରପୁରରେ ନୂଆ ହୋଇ ହାଇସ୍କୁଲ ଖୋଲିବାରୁ ଚାରିଆଡ଼କୁ ବିଶେଷତଃ ପୁରୀ, କଟକ, ବାଲେଶ୍ୱର, ଆନନ୍ଦପୁରରୁ ପିଲା ସେଠିକି ଛୁଟିଲେ । ସେଠାରେ ମୋର ପଢ଼ିବା ବିଷୟ ଅଦ୍ୱୈତବାବୁ କୁଞ୍ଜାବାବୁଙ୍କ ସହିତ ଆଲୋଚନା କରି ଠିକ୍ କରିଥିଲେ । ମୁଁ ଟିକିଏ ଭଲ ପଢୁଥିଲି, ଏହା ବ୍ୟତୀତ ମୋର ବା ଆଉ କେଉଁ ଗୁଣ ଥିଲା ? କୁଞ୍ଜବାବୁ ମହାମନା ଦୟାଳୁ ଜମିଦାର ଗଙ୍ଗାଧର ଦାସ ଚୌଧୁରୀଙ୍କ ସଙ୍ଗେ ଆଲୋଚନା କରି ମୋ ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ । ତେଣୁ ୧୯୩୭ ମସିହା ଜାନୁଆରୀ ମାସରେ ମୁଁ ସେଠାରେ ୮ମ ଶ୍ରେଣୀରେ ନାମ ଲେଖାଇଲି । ନାମ ଲେଖା ଫି କିଛି ଦେଇ ନାହିଁ । ମାସିକ ଦରମା ତ ମୂଳରୁ ଛାଡ଼୍ । କୁଞ୍ଜବାବୁ, ଚୌଧୁରୀ ମହୋଦୟ, ଅଦ୍ୱୈତବାବୁଙ୍କ ପ୍ରତି ମନ କୃତଜ୍ଞତାରେ ଭରିଗଲା ।

ସେତେବେଳେ ଭିଙ୍ଗାରପୁରରେ ଏକ ଉନ୍ନତ ଜମିଦାର ଗୋଷ୍ଠୀ ବାସ କରୁଥିଲେ । ଏପରିକି ମଧୁବାବୁ ଓଡ଼ିଶାରେ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ନାରୀ ଶିକ୍ଷାପ୍ରସାର କଲାବେଳେ ଭିଙ୍ଗାରପୁରର ପ୍ରଖ୍ୟାତ ବ୍ୟକ୍ତି ଚୌଧୁରୀ କାଶୀନାଥ ଦାସଙ୍କ ସହାୟତା ଲୋଡ଼ିଥିଲେ । ଶ୍ରୀଯୁକ୍ତ ଗଙ୍ଗାଧର ଦାସ ଚୌଧୁରୀ ଶିକ୍ଷାପ୍ରେମୀ, ଉଦାର ଭାବାପନ୍ନ ଏବଂ ନିଃସ୍ୱାର୍ଥପର ସେବକ ଥିବାରୁ ସ୍କୁଲଟିଏ ବସାଇ ପାରିଲେ । ସ୍ୱାର୍ଥତ୍ୟାଗ ନକଲେ କୌଣସି ମହତର କାର୍ଯ୍ୟ ସମ୍ପାଦନ ହୋଇପାରେ ନାହିଁ । ଶିକ୍ଷାନୁଷ୍ଠାନଟିଏ ପ୍ରତିଷ୍ଠା କରିବାକୁ କି ଉତ୍ସାହ ? ପ୍ରାଚୁର୍ଯ୍ୟର ଚରମସ୍ଥାନରେ ଥିଲେହେଁ ପ୍ରତ୍ୟହ ବିଦ୍ୟାଳୟକୁ ଆସି ସମସ୍ତ ହାଲ୍‌ଚାଲ୍ ବୁଝିଯାଉଥିଲେ । ମୁଁ ଖାସମାହାଲର ପ୍ରଜା ହୋଇଥିବାରୁ ରାଜା ବା ଜମିଦାରଙ୍କ ସମ୍ବନ୍ଧେ ମୋର ସୀମିତ ଜ୍ଞାନ ଥିଲା । ମାତ୍ର ରାଜାଙ୍କୁ ତାଙ୍କ ରାଜ୍ୟରେ ଯେପରି ସମ୍ମାନ ମିଳିଥାଏ ଜମିଦାରଙ୍କୁ ବି ତାଙ୍କ ଜମିଦାରୀରେ ସେହିପରି ସମ୍ମାନ ମିଳୁଥିଲା । ମୁଁ ସେଠାରେ ସାଢ଼େ ଚାରି ବର୍ଷ ବିଦ୍ୟା ଅଧ୍ୟୟନ କଲି, ଖାସମାହାଲ ବା ଜମିଦାରୀ ମଧ୍ୟରେ କିଛି ପ୍ରଭେଦ ଦେଖିପାରିଲି ନାହିଁ । ଖାସମାହାଲରେ ଯେପରି ପ୍ରଜାମାନଙ୍କର ସ୍ୱାଧୀନତା ଥିଲା ସେଠାରେ ସେପରି ସ୍ୱାଧୀନତା ଥିବାର ଅନୁଭବ କଲି ।

## ଭିଙ୍ଗାରପୁର ଗ୍ରାମ :

ଭିଙ୍ଗାରପୁର ଗୋଟିଏ ବୃହତ୍ ଗ୍ରାମ । ଭୁବନେଶ୍ୱର ସହରଠାରୁ ଉତ୍ତରପୂର୍ବକୁ ସାତ ଆଠ ମାଇଲ ଦୁର୍ଗମ ପଥ ପାରିହେଲେ କୁଆଖାଇ ନଦୀର ଶାଖା ନଦୀ କୁଶଭଦ୍ରା ନଦୀ ନଜରରେ ପଡ଼େ । ତା'ର ଉତ୍ତରକୁ ପ୍ରାୟ ୧ମାଇଲ ଦୂରରେ ପ୍ରାଚୀନଦୀ ପ୍ରବାହିତ ।

ମହାତ୍ମା ଜୟଦେବଙ୍କର ଜନ୍ମ ଏହି ପ୍ରାଚୀନଦୀ କୂଳ କେନ୍ଦୁଲି ଗ୍ରାମରେ । ମୁଁ ଆମ ଗାଁ ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ସଡ଼କ ପଥରେ ଚାଲିକରି ଯାଏ । ମାତ୍ର ସେଠାରୁ ଆସିଲେ ତିନିଗୋଟି ନଦୀ ଓ ଗୋଟିଏ ନାଳ ପାରିହେବାକୁ ପଡୁଥିଲା । ସାତ ସମୁଦ୍ର ତେର ନଈ ପାର ହେବା ପରି ଜଣାପଡୁଥିଲା । ବସ୍‌ରେ ଯିବାକୁ ସୁବିଧା ନଥିଲା କି ସେତେବେଳେ ବସ୍ ଚାଲୁନଥିଲା । କେବଳ ଖରାଦିନ ବ୍ୟତୀତ ଅନ୍ୟ ସମୟରେ ପଥ ସୁଗମ ନଥିଲା । ରେଳପଥରେ ଗଲେ ଭିଙ୍ଗାରପୁରଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ଓ ଜଟଣୀ ସହରଠାରୁ ଆମ ଗାଁକୁ ପଦବ୍ରଜରେ ଯିବାକୁ ପଡ଼ିଥାଏ । ତେଣୁ ସେ ପଥ ପରିହାର କରି ସିଧାବାଟରେ ଗାଁଠାରୁ ଭିଙ୍ଗାରପୁର ପଦବ୍ରଜରେ ଯାତ୍ରାକରେ । ଭୁବନେଶ୍ୱର ପାରିହେଲେ ନାଗେଶ୍ୱର ଟାଙ୍ଗି, ବିରାଟ ଟାଙ୍ଗିରେ ବ୍ରହ୍ମେଶ୍ୱର ମନ୍ଦିର, ତାପରେ ଗୋଟିଏ କ୍ଷୁଦ୍ର ଗହୀର ଓ ଗଙ୍ଗୁଆନଈ ପାରିହେଲେ ଟଙ୍କପାଣି ନଦୀ ବା କୁଆଖାଇ ନଦୀ । ପୂର୍ବର ଜଗନ୍ନାଥ ରାସ୍ତାରେ କିଛି ପଥ ଅତିକ୍ରମ କଲାପରେ ସତ୍ୟଭାମାପୁରଠାରେ ଗୋଟିଏ ଶାଖା ପଥରେ ଯିବାକୁ ପଡ଼ିଥାଏ । ଦୁଇତିନି ମାଇଲ କଚା ରାସ୍ତା । ତା' ପରେ ଭାଇଞ୍ଚୁଆ କାଛ । କାଛ ପ୍ରଭାବରେ ରାସ୍ତାଟି ଖାଲି ବାଲି ପାହାଡ଼, ବିଖଣ୍ଡିତ ରାସ୍ତା । ଖାଲ ଢିପ । କେବେ ମାଟି ଗାଣ୍ଡୁଏ ପଡ଼ି ମରାମତି ହୋଇ ନାହିଁ । ସେଠାରୁ ପୁଣି ଦୁଇ ତିନି ମାଇଲ ରାସ୍ତା ଅତିକ୍ରମ କଲେ କୁଶଭଦ୍ରା ନଦୀ । ଅପର ତୀରରେ ଭିଙ୍ଗାରପୁର ଗ୍ରାମ । ଏଠାରୁ ଗୋଟିଏ ରାସ୍ତା ନଖରାଠାରେ ଜଗନ୍ନାଥ ସଡ଼କରେ ମିଶିଛି । ଏବେ ୨୦୦୨ ମସିହାରେ ସ୍ୱାଧୀନ ସରକାର ୫୫ ବର୍ଷ ପୂରଣ କରିଥିଲେ ମଧ ଏ ଅଞ୍ଚଳକୁ ଗମନାଗମନର କିଛି ସୁବିଧା ହୋଇନାହିଁ । କେବଳ ଭାର୍ଗବୀ ନଦୀରେ ବାଳକାଟିଠାରେ ଏକ ପୋଲ ନିର୍ମାଣ କରାଯାଇ ଗୋଟିଏ ନାଲି ସଡ଼କ ବାଲିପାଟଣା ଦେଇ ଭିଙ୍ଗାରପୁର ଯାଇଛି । ଗୋଟିଏ ଦୁଇଟି ଘରୋଇବସ୍ ଭିଙ୍ଗାରପୁର ଯାଉଛି । କୁଶଭଦ୍ରା ନଦୀରେ ପୋଲ ନିର୍ମାଣ ହୋଇଗଲେ କଟକକୁ ସିଧା- ସଳଖ ବସ୍ ଚାଲିବ । ସେ ସମୟରେ ଜଟଣୀ ସହରରେ ଡାକ୍ତରଖାନାଟିଏ ନଥିଲା କିନ୍ତୁ ଭିଙ୍ଗାରପୁରରେ ଭଲ ଡାକ୍ତରଖାନା ଥିଲା । ଭିଙ୍ଗାରପୁର ଚୌଧୁରୀ ବଂଶ ଓଡ଼ିଶାରେ ଏକ ବିଖ୍ୟାତ ଜମିଦାର ବଂଶ । ଚୌଧୁରୀ ପରିବାର ଗୀତ, ବାଦ୍ୟ, ନାଚ, ତାମସାରେ ସମୟ ଅତିବାହିତ କରୁଥିଲେ । ଅମାପ ଧନ ସେମାନଙ୍କୁ ବିଳାସବ୍ୟସନରେ ମଜ୍ଜିରହିବାକୁ ସୁବିଧା ପ୍ରଦାନ କରୁଥିଲା । ସେହି ବଂଶର ଦାୟାଦମାନେ ହାଇସ୍କୁଲଟିଏ ପ୍ରତିଷ୍ଠା କରିବାରେ ପଶ୍ଚାତ୍‌ପଦ ହେବେ କାହିଁକି ? ନୂତନ ହାଇ ଇଂଲିଶ ସ୍କୁଲ' ଛାତ୍ର ବୃଦ୍ଧି ଆବଶ୍ୟକ । ମାଇନର ସ୍କୁଲ ଶିକ୍ଷକମାନଙ୍କୁ ଏକଥା ଜଣାଇ ଦିଆଗଲା । ମୁଁ ମୋ ଶ୍ରେଣୀରେ ପ୍ରଥମ ହେଉଥିଲି । ତେଣୁ ଚୌଧୁରୀ ମହୋଦୟ ମୋତେ ଗ୍ରହଣ କରିବା

ପାଇଁ ଆଗ୍ରହ ପ୍ରକାଶ କଲେ । ମୋ ପରି ହୀନକପାଳିଆକୁ ପୂର୍ଣ୍ଣାଙ୍ଗପ୍ରାପ୍ତ ବିଦ୍ୟାଳୟରେ ସ୍ଥାନ ମିଳିଲା ନାହିଁ । ପ୍ରାରମ୍ଭରୁ ଖୋର୍ଦ୍ଧା, ପୁରୀ ବା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଥିଲେ ମୋର ଭବିଷ୍ୟତ ଉଜ୍ଜ୍ୱଳ ହୋଇଥାଆନ୍ତା ଭାବିବା ସ୍ୱାଭାବିକ । ନୂଆ ସ୍କୁଲରେ ତାଲିମ ପ୍ରାପ୍ତ ଶିକ୍ଷକ ମିଳିବା କଷ୍ଟକର । କର୍ତ୍ତୃପକ୍ଷ ଟଙ୍କା ପଇସାର ଯୋଗାଡ଼ କରିପାରନ୍ତି ନାହିଁ । ଉତ୍ତମ ଶିକ୍ଷକ ମିଳିବେ କାହୁଁ ? ପାଠପଢ଼ା ଉତ୍ତମ ହେବ କିପରି ? ଦିଗ୍‌ଦର୍ଶନ ଦେବା ପାଇଁ ଶିକ୍ଷକ କାହାନ୍ତି ? ନୂତନ ସ୍କୁଲରେ ଯେପରି ପାଠପଢ଼ା ହେବାକଥା ସେପରି ହେଲା । ତେବେ ମୋର ଶିକ୍ଷକମାନଙ୍କୁ ନିନ୍ଦକାଲେ ମୁଁ ଅହିନର୍କରେ ପଡ଼ିବି । ମୋତେ ତ ସେମାନେ କେତକ ଭଲ କଥା କହିଛନ୍ତି । ମୋର ଯତ୍ନ ନେଇଛନ୍ତି । ନୂତନ ସ୍କୁଲ ନ ହୋଇଥଲେ ମୁଁ ତ ପଢ଼ିପାରି ନଥାନ୍ତି, ସ୍କୁଲକୁ ନିନ୍ଦାକରିବି କାହିଁକି ? ପ୍ରଭୁଙ୍କର ମୋ ପ୍ରତି ଅପାର କରୁଣା ନଥିଲେ ପ୍ରାଥମିକ ଶିକ୍ଷାରୁ ବା ମାଇନର ସ୍ତରରୁ ମୋ ପୋଥିରେ ଡୋର ବନ୍ଧା ହୋଇଥାନ୍ତା । ମୁଁ ଶ୍ରମିକ ପରି ଖଟିଖଟି ଏତେବେଳକୁ ମାଟିରେ ମିଶିଯାଆନ୍ତିଣି ।

ଖାଦ୍ୟପେୟର ବ୍ୟବସ୍ଥା ହୋଇଯିବାପରେ ଆଉକିଛି ଅସୁବିଧା ରହିଲା ନାହିଁ । ପଢ଼ାପଢ଼ି ଜୋରସୋରରେ ଚାଲିଲା । ଚତୁର୍ମାସ୍ୟାରେ ନଈନାଳ ବଢ଼ିଥିବାବେଳେ ଗ୍ରାମକୁ ଆସି ହୁଏ ନାହିଁ । ଗାଁ କିଛି ଅଳ୍ପବାଟ ନୁହେଁ ଯେ ପ୍ରତି ସପ୍ତାହରେ ଗ୍ରାମକୁ ଯିବି । ତେଣୁ ନିହାତି ଆବଶ୍ୟକ ସ୍ଥଳେ ବା ବଡ଼ ଛୁଟିଦିନମାନଙ୍କରେ ଘରକୁ ଯିବାକୁ ପଡୁଥିଲା । ତାହା ପୁଣି ପଦବ୍ରଜରେ । ମୋତେ ପୂରା ଦିନଟିଏ ଲାଗୁଥିଲା ।

## ସ୍କୁଲ ପରିସୀମା :

ଭିଙ୍ଗାରପୁର ମାଇନର ସ୍କୁଲ ହତା ମଧରେ ଚାରିଗୋଟି କଞ୍ଚାଇଟା ନିର୍ମିତ ଚାଳଛପର ପ୍ରକୋଷ୍ଠ । ସେଠାରେ ସ୍କୁଲ ଯଥାବିଧି ଚାଲୁଥିଲା । ଦୁଇଟି ଶ୍ରେଣୀର ସ୍କୁଲ । କିନ୍ତୁ ମାଇନର ସ୍କୁଲଟି କୋଠାଗୃହ ଏବଂ ସିମେଣ୍ଟର ଚଟାଣ । ହାଇସ୍କୁଲ ଗୃହ ଚଟାଣ ଟାଇଲଛପା । ଖାଲି ପାଦରେ ମଇଳା ଲାଗିବା ସ୍ୱାଭାବିକ । ଚଟି ପିନ୍ଧି କେହି ସ୍କୁଲକୁ ଆସିବାର ସ୍ମରଣ ହେଉନାହିଁ । ମାଇନର ସ୍କୁଲଟି ସୁଦୃଶ୍ୟ ଥିବାବେଳେ ହାଇସ୍କୁଲଟି ଶ୍ରୀହୀନ ଦେଖାଯାଏ । ଦୁଇତିନି ଜଣ ଧନବନ୍ତ ପିଲାଙ୍କର ଜୋତାଥାଏ । ସେମାନେ ଛୁଟିରେ ଗାଁକୁ ଯିବା ସମୟରେ ଜୋତା ମଡ଼ାଇ ଯାଆନ୍ତି । କେହି କେହି କଠଉ ବ୍ୟବହାର କରନ୍ତି । ମୁଁ ପ୍ରବେଶ କଲାବେଳେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ଷଡ଼ଙ୍ଗୀ ବି.ଏ. ହେଡ୍‌ମାଷ୍ଟରେ ଥିଲେ । ଗୋରା ତକତକ ଶରୀର, ସୁମୂର୍ତ୍ତିବାନ୍, ଅଫୁରନ୍ତ ଶକ୍ତିର ଭଣ୍ଡାର । ସ୍ୱଚ୍ଛଭାଷୀ ।

ଗୃହ ରଣପୁର ଗଡ଼ଜାତରେ । ପିତା– ଶଙ୍କର ଷଡ଼ଙ୍ଗୀ ସ୍କୁଲ ସବ୍‌ଇନ୍‌ସ୍‌ପେକ୍ଟର, ନୈଷ୍ଠିକ ବ୍ରାହ୍ମଣ, ରଣପୁର ରାଜାଙ୍କର ରାଜଗୁରୁ । ଅବଶ୍ୟ ୬ ମାସ ପରେ ଜୁଲାଇମାସରେ ସେ ଡି.ଇଡ଼ି. ଟ୍ରେନିଂ ପାଇଁ କଟକ ଯାତ୍ରା କଲେ । ତପ୍ରେ ବାଳକାଟିର ଶ୍ରୀ ବଂଶୀଧର ମହାନ୍ତି ବି.ଏ. ହେଡ୍‌ମାଷ୍ଟର ହେଲେ । ସେ ଧୀର, ଶାନ୍ତ ଓ ଛାତ୍ରବତ୍ସଳ ।

ସଂସ୍କୃତ ପଣ୍ଡିତ ଥିଲେ ନୟାଗଡ଼ର ଅଗାଧୁ ହୋତା । ୧୯୩୭ ମସିହାରେ ନୟାଗଡ଼ରେ ହାଇସ୍କୁଲଟିଏ ଖୋଲିବାରୁ ସେ ସେଠାକୁ ଚାଲିଗଲେ । ତେଣୁ ବୀର ନରସିଂହପୁର ଶାସନର ପଣ୍ଡିତ ଗୋବିନ୍ଦଚନ୍ଦ୍ର ମିଶ୍ର ଆମର ସଂସ୍କୃତ ପଣ୍ଡିତ ହୋଇ ଆସିଲେ । ଗୋବିନ୍ଦ ଚନ୍ଦ୍ର ମିଶ୍ର ଜଣେ ସଂସ୍କୃତ ବିଦ୍ୱାନ୍ । ଅଗାଧ ପାଣ୍ଡିତ୍ୟ । ଛାତ୍ରମାନଙ୍କୁ ପୁତ୍ର ସଦୃଶ ମନେ କରୁଥିଲେ । ବ୍ରାହ୍ମଣର ସବୁଗୁଣ ତାଙ୍କଠାରେ ଭରି ରହିଥିଲା । ସେ ବର୍ଷ ମୋପରି କେନ୍ଦୁଝର, ଆନନ୍ଦପୁର, ଭଦ୍ରକ, ପୁରୀଜିଲ୍ଲାର ଟାଙ୍ଗି, ଜଗତସିଂହପୁର, ବାଗଲପୁର, ଶଙ୍ଖତ୍ରାସ, ପାଟଳଦା, ଅସ୍ତରଙ୍ଗ, ବାଳକାଟି, ଭୁବନେଶ୍ୱର ଓ ଅନ୍ଧାରୁଆ ପ୍ରଭୃତି ଗ୍ରାମରୁ ପିଲା ଆସି ବିଦ୍ୟାଳୟରେ ନାମ ଲେଖାଇଲେ । ଗ୍ରାମ୍ୟ ପରିବେଶ ଓ ନିର୍ମଳ ବାତାବରଣରେ ଅଧ୍ୟାପନା କାର୍ଯ୍ୟ ଆଗେଇ ଚାଲିଲା ।

ଦେଶରେ ବ୍ରିଟିଶରାଜର ପୂର୍ଣ୍ଣ କର୍ତ୍ତୃତ୍ୱ ଜାରି ରହିଥାଏ ।୧୯୩୬ ଏପ୍ରିଲ ପହିଲାରେ ପଶ୍ଚିମରେ ସିନ୍ଧୁପ୍ରଦେଶ ସହ ପୂର୍ବରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଆବିର୍ଭୂତ ହେଲା । ଇଂରେଜ ଜାତି ଚତୁର ଓ କୁଟନୀତିପରାୟଣ, ନହେଲେ ଅର୍ଦ୍ଧଧରଣୀର ଅଧୀଶ୍ୱର ହୋଇନଥାନ୍ତେ ? ଭାରତରେ ବହୁକାଳ ଶାସନ କରିବା ପାଇଁ ସେ କପଟ ଆଚରଣ କରୁଥିଲେ । ତେଣୁ ହିନ୍ଦୁବହୁଳ ଓଡ଼ିଶା ପ୍ରଦେଶର ସୃଷ୍ଟି ସଂଗେସଂଗେ ମୁସଲମାନ ବହୁଳ ସିନ୍ଧୁପ୍ରଦେଶ ଗଠନ କଲେ । ୧୯୩୫ ଭାରତ ଶାସନ ଆଇନ ଅନୁଯାୟୀ ନିର୍ବାଚନ ହେବାରେ ଭାରତର ୧୧ଟି ପ୍ରଦେଶ ମଧ୍ୟରୁ ୭ଟି ପ୍ରଦେଶରେ କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ପ୍ରଥମେ କେତେକ ଜଟିଳତା ଦେଖାଇ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ଅମଙ୍ଗ ହେବାରୁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଦେବଙ୍କ ନେତୃତ୍ୱରେ ଗଞ୍ଜାମର ଗୋରାଚାନ୍ଦ ପଟ୍ଟନାୟକ ଓ ଖୋରଧାର ଲତିଫୁର ରହମନ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପରେ କଂଗ୍ରେସର ଶାସନ ଚାଲିଲା । ଶ୍ରୀ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କଲେ । କଟକର ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓ ସମ୍ବଲପୁରର ବୋଧରାମ ଦୁବେ ମନ୍ତ୍ରୀପଦରେ ଅଧିଷ୍ଠିତ ହେଲେ । ସେତେବେଳେ ଓଡ଼ିଶା ବିଧାନ ସଭାର ସଭ୍ୟସଂଖ୍ୟା ୬୦ ଥିଲା । କେନ୍ଦ୍ର ସ୍ତରରେ ଲୋକପ୍ରତିନିଧିମୂଳକ ଶାସନ ନଥିଲା ।

ଲର୍ଡ଼ ଲିନ୍‌ଲିଥ୍‌ଗୋ ଭାରତର ଭାଇସରାୟ ଥିଲେ । ଗଞ୍ଜାମ, କୋରାପୁଟ, ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ ଏହି ୭ଟି ଜିଲ୍ଲା ଓଡ଼ିଶା ପ୍ରଦେଶରେ ରହିଲା ଏବଂ ସାର ଜନ୍ ଅଷ୍ଟିନ ହବାକ୍ ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ରୂପେ ଅବସ୍ଥାପିତ ହେଲେ । ୨୬ଟି ଗଡ଼ଜାତ ଏକ ପଲିଟିକାଲ ଏଜେଣ୍ଟଙ୍କ ଦ୍ୱାରା ଶାସିତ ହେଉଥିଲା । କଟକ ଓଡ଼ିଶାର ରାଜଧାନୀ ରହିଲା । ଆସେମ୍ବ୍ଲି ଅଧିବେଶନ ବସିଲା ରେଭେନ୍ସା କଲେଜ ହଲ୍‌ରେ । ରଙ୍ଗେଇଲୁଣ୍ଡା ଓ ଖୋର୍ଦ୍ଧା ଓଡ଼ିଶାରେ ନୂତନ ରାଜଧାନୀ ହେବାପାଇଁ ବିବେଚିତ ହୋଇଥିଲା, ମାତ୍ର ଶେଷରେ କଟକ ରହିଲା ।

ଓଡ଼ିଶାର ଛାତ୍ରଛାତ୍ରୀମାନେ ୧୯୧୮ ମସିହାରୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଉଥିଲେ । ଓଡ଼ିଶାରେ ଏକ ନୂତନ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ଚେଷ୍ଟାକରାଗଲା । ସେତେବେଳେ ଓଡ଼ିଶା ଶିକ୍ଷାକ୍ଷେତ୍ରରେ ବିଶେଷ ଅଗ୍ରଗତି କରିନଥିଲା । କେଉଁଠି କିପରି କାଁଭାଁ ନୂଆ ହାଇସ୍କୁଲର ଶୁଭ ଦିଆଯାଉଥିଲା । ଆମ ଭିଙ୍ଗାରପୁର ହାଇସ୍କୁଲଟି ନୂଆହୋଇ ପୁରୀ ଜିଲ୍ଲାରେ ୬ଷ୍ଠ ହାଇସ୍କୁଲରୂପେ ଗଣାଗଲା । ପଢ଼ାପଢ଼ିରେ କେତେକ ଅସୁବିଧା ଭୋଗକରିବାକୁ ପଡୁଥିଲା । ଶ୍ରେଣୀ ଗୃହର ଅର୍ଦ୍ଧେକରେ ଶ୍ରେଣୀ ଚାଲୁଥିଲା । ଅପର ଅର୍ଦ୍ଧେକରେ ବେଳେ ବେଳେ ମୁଁ ଓ ମୋର ବନ୍ଧୁ ଅଟଳ ରହୁଥିଲୁ । ସେତେବେଳେ ମାସକୁ ଜଣେ ପିଲା ପାଇଁ କଟକୀ ୧୫ସେର ଚାଉଳ ଓ ଦୁଇ/ତିନି ଟଙ୍କା ଦେବାକୁ ପଡୁଥିଲା । ମୋର ସେ ଖର୍ଚ୍ଚପାଇଁ ଚୌଧୁରୀ ମହୋଦୟଙ୍କ ଗୁମାସ୍ତା ଚାଉଳତକ ପଠାଇ ଦେଉଥିଲେ । ଟଙ୍କା ଦିଅନ୍ତି କି ନାହିଁ ମୁଁ କହିପାରିବି ନାହିଁ । ମୋତେ କେହି ଟଙ୍କା ମାଗନ୍ତି ନାହିଁ । ବୋଡ଼ିଂରେ ହାଇସ୍କୁଲ ଓ ମାଇନର ସ୍କୁଲ ପିଲା ମିଶି ପ୍ରାୟ ୭୦ କି ୮୦ ଜଣ । ତେବେ ଦୂରଦୂରାନ୍ତରରୁ ଆସିଥିବା କେତେକ ପିଲା ଭିନ୍ନ ଭିନ୍ନ ଚଉଧୁରୀଙ୍କ ପରିବାରରେ ଗୃହଶିକ୍ଷକ ଭାବେ ରହି ଯାଉଥିଲେ । ଶିକ୍ଷକମାନେ ସମସ୍ତେ ବିଦେଶୀ । ମେସରେ ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ ଏବଂ ଛାତ୍ରାବାସରେ ସ୍ୱତନ୍ତ୍ର ଗୃହରେ ଅବସ୍ଥାନ କରୁଥିଲେ ।

ପରେ ବକ୍ରେଶ୍ୱର ମହାଦେବଙ୍କ ନାମରେ ହାଇସ୍କୁଲଟି ନାମିତ ହୋଇଥିଲା । ଏକ ବିରାଟ ପୁଷ୍କରିଣୀ ତଟଦେଶରେ ବକ୍ରେଶ୍ୱର ମହାଦେବଙ୍କ ଆସ୍ଥାନ । ମନ୍ଦିରର ଗଠନ ଅତୀବ କମନୀୟ । ସୁନିର୍ମଳ ପରିବେଶ । ପ୍ରତିବର୍ଷ ଚୈତ୍ରମାସ ଦମନକ ଚତୁର୍ଦ୍ଦଶୀରେ ଏଠାରେ ଏକ ବିରାଟ ମେଳା ଅନୁଷ୍ଠିତ ହୁଏ । ମନ୍ଦିର ସମ୍ମୁଖସ୍ଥ ଏକ ବିରାଟ ଆମ୍ରକୁଞ୍ଜରେ ଦିନରାତି ଗହଳି ଲାଗିଥାଏ । ଏହି ତୋଟାର ଏକ ଅଂଶରେ ସପ୍ତାହକେ ୨ଥର ହାଟ ବସୁଥିଲା । ଉକ୍ତ ହାଟ ମେସକୁ ପନିପରିବା ଯୋଗାଏ । ଗ୍ରୀଷ୍ମକାଳ

ଅପେକ୍ଷା ବର୍ଷା ଓ ଶୀତ ଋତୁରେ ହାଟ ଭଲ ଜମେ । ଭିଙ୍ଗାରପୁରରେ ତେଲୀ ଓ ଶୁଣ୍ଡିମହାଜନ ଅଧିକ । ବାବୁ ସୁଦାମ ସାହୁଙ୍କ ଦୋକାନ ଉପରେ ସ୍କୁଲ ମେସ୍ ପୂରାପୂରି ନିର୍ଭର କରେ । ସାହୁବାବୁ ଅତ୍ୟନ୍ତ ସ୍ନେହୀ ଲୋକ । ତାଙ୍କ ପୁଅ ମୋ ସଙ୍ଗେ ପଢୁଥିଲେ । ମୋତେ ସିନା ଖାଇବାକୁ ଗଣ୍ଡେ ମିଳିଗଲା, ମାସିକ ଜଳଖିଆ ବା କାଗଜ କାଳିପାଇଁ ଟଙ୍କାଏ ମସାଏ ଆବଶ୍ୟକ । ସେ ପୁଣି ମିଳିବ କେଉଁଠୁ ? ଅଦ୍ୱୈତବାବୁ ବେଳେବେଳେ ଦୁଇଚାରିଅଣା ଦେଉଥିଲେ । କେତେ ଦିନ ପରେ ଆଉ ଦେଇପାରିଲେ ନାହିଁ । ପ୍ରଥମ ତିନିମାସ କଷ୍ଟମଷ୍ଟ କରି ଚଳିଗଲି । ସଂସ୍କୃତରେ ବର୍ଣ୍ଣିତ ଶ୍ଳୋକ ଅନୁଯାୟୀ ଛାତ୍ରର ସବୁ ଗୁଣ ମୋ ପାଖେ ଥିଲା । ସେଥିରେ ଅଛି–କାକସ୍ନାନଂ, ବକଧ୍ୟାନଂ, ଅଳ୍ପାହାରୀ, ଗୃହତ୍ୟାଗୀ, ଶ୍ୱାନନିଦ୍ରା, ସଂଯମୀ, ଶ୍ରମୀ ବିଦ୍ୟାର୍ଥୀ ସପ୍ତଲକ୍ଷଣଂ । ଗୃହତ୍ୟାଗ କରି ଏତେବାଟରେ ପିଲାମାନଙ୍କ ସାଙ୍ଗରେ ରହୁଥିବାରୁ ବହୁସମୟ ନିରୋଳାରେ ବସି ଗାଁ ଆଡ଼କୁ ଚାହିଁ କେତେ କାନ୍ଦିଛି । ମୁଁ ଦରିଦ୍ର ହେଲେ ହିଁ ଆମ କୁଡ଼ିଆ ଘରେ ସର୍ବଦା ଶାନ୍ତି ବିରାଜମାନ କରୁଥିଲା ।

"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।"

ଆମ ଭାଇମାନଙ୍କ ମଧ୍ୟରେ ସଂପର୍କ ଖୁବ୍ ମଧୁର ଥିଲା । ମୁଁ ସେମାନଙ୍କୁ ଭକ୍ତି କରୁଥିଲି । ସେମାନେ ମୋତେ ଖୁବ୍ ସ୍ନେହ କରୁଥିଲେ । କାଖେଇ କୋଳେଇ ବଢ଼େଇଥିଲେ । ତେଣୁ ଘରକଥା ସବୁବେଳେ ମନରେ ଜାଗରୂକ ହେଉଥିଲା । ଅବଶ୍ୟ କାଳକ୍ରମେ ଏଠିକାର ପରିସ୍ଥିତି ସହ ଖାପଖୁଆଇ ଚଳିଲି । କେତେ ଦିନପରେ ଆମ ଗାଁ ପାଖର ଗଣେଶ୍ୱର ମହାପାତ୍ର ମୋ ସଙ୍ଗେ ପଢ଼ିବାକୁ ଆସିଲା । ସେ ପୋଷ୍ଟମାଷ୍ଟର ରାମକୃଷ୍ଣ ମହାପାତ୍ରଙ୍କ ପୁଅ । ମୋ ମନଟା ଟିକିଏ ଆନମାନ ହେଲା । ସମୟଟା ସବୁବେଳେ ସମାନ ଯାଏ ନାହିଁ ।

**ଏକ ପରିବର୍ତ୍ତନ :**

ସେ ସମୟରେ ଶିକ୍ଷାବର୍ଷ ଆରମ୍ଭ ହେଉଥିଲା ଜାନୁଆରୀ ମାସରେ । ଏପ୍ରିଲ ମାସ ବେଳକୁ ପଢ଼ାକାର୍ଯ୍ୟ ଜୋରସୋରରେ ଚାଲୁଥିଲା । ଆଉ ମାସେ ଦେଢ଼ମାସ ପରେ ଅର୍ଦ୍ଧବାର୍ଷିକ ପରୀକ୍ଷା ଆରମ୍ଭ ହେବ । ଏହି ସମୟରେ ମୋ ଜୀବନରେ ଏକ ପରିବର୍ତ୍ତନ ଘଟିଲା । ଏହା ବିଧି ନିର୍ଦ୍ଦେଶ ପରି ଜଣାପଡୁଥିଲା । ମେସରେ ଦୁଇବେଳା ଖାଇବା ବ୍ୟତୀତ ହାତଖର୍ଚ୍ଚ କରିବାକୁ କିଛି ନଥିଲା । ଜଳଖିଆ, କାଳି, ଖାତାପତ୍ର,

କଲମ ପାଇଁ ହାତଶୂନ୍ୟ । ଫାଉଣ୍ଟେନ କଲମର ବ୍ୟବହାର କ୍ବଚିତ୍ ପିଲା କରୁଥିଲେ । କାଠିକଲମ, ନିବ୍ ଲଗା କଲମ ବା ମୟୂର ପକ୍ଷୀ କଲମ ପିଲାଏ ବ୍ୟବହାର କରୁଥିଲେ । ଚାଉଳକୁ ପୋଡ଼ି ହାଣ୍ଡିକଳା ମିଶାଇ ମୁଁ ବ୍ୟବହାର କରୁଥିଲି । ଏପରିକି ମାଟ୍ରିକ ପରୀକ୍ଷାରେ ମଧ ଦୁଆତ କଲମ ସାଙ୍ଗରେ ନେଇ ଯିବାକୁ ପଡୁଥିଲା । ଦିନକୁଦିନ କଲମର ପ୍ରକାର ଭିନ୍ନଭିନ୍ନ ହେଲାଣି । ଟଙ୍କା ଗୋଟିଏ ଦୁଇଟି ହାତକୁ ଆସିଲେ ଅନ୍ୟାନ୍ୟ ଖର୍ଚ୍ଚ ସହଜରେ ହୋଇପାରନ୍ତା । ମାତ୍ର ସେତେବେଳେ ଚାରିଅଣା ପଇସା ପାଇବା ସାଧାରଣ କଥା ନଥିଲା । ଟଙ୍କାରେ ୧୨ ସେର ଚାଉଳ ଓ ୭ ସେର ମୁଗଡାଲି ମିଳୁଥିଲା । ସେଇ ହିସାବରେ ଅନ୍ୟ ଜିନିଷ । ଦେଶର ଦୁଇପ୍ରକାର ସେର ଥିଲା, କଟକୀ ଓ ବାଲେଶ୍ବରୀ । ଟଙ୍କାଟାର ଓଜନ ଏକ ତୋଳା ସଂଗେ ସମାନ । ସବୁ ଜିନିଷ କଟକୀ ସେର ଓ କେବଳ ଲୁଣ ଓ କିରାସିନି ବାଲେଶ୍ବରୀ ଓଜନରେ ମିଳେ । ଧାନ ବସ୍ତା ଦୁଇଟଙ୍କା ବା ଦୁଇଟଙ୍କା ଦୁଇଅଣାରେ ମିଳୁଥିଲା । ଏପରି ସ୍ଥଳେ ଟଙ୍କାଟିଏ ପାଇବା ସହଜ ନଥିଲା । ଖାଣ୍ଟି ଗୁଆଘିଅ ଟଙ୍କାରେ ୭ ଛଟାଙ୍କି ବା ଆଜିକାଲିର ଅଧକେଜିରୁ ବେଶି । ଏହିପରି ସମୟରେ କଟକ ଜିଲ୍ଲା ବାଗଲପୁରରୁ ଅଟଳ ବିହାରୀ ଦାସ ନାମରେ ଜଣେ ଧନୀ ସନ୍ତାନ ୮ମ ଶ୍ରେଣୀରେ ନାମ ଲେଖାଇଲା । ପିଲାଟା ସ୍ୱାସ୍ଥ୍ୟବାନ୍, ଡେଙ୍ଗା, ବେଶ୍ ପସନ୍ଦିଆ କିନ୍ତୁ ସରଳ ନିଷ୍କପଟ ପରି ଜଣାପଡୁଥିଲା । ସେତେବେଳକୁ ଶ୍ରେଣୀରେ ୩ ମାସର ପାଠ ଶେଷ ହୋଇଯାଇଥିଲା । ସେହି ବାକିଆ ପାଠ ପୂରଣ କରିବା ପାଇଁ ସେ ଜଣେ ଉତ୍ତମ ପଢ଼ାସାଥୀ ଖୋଜିଲା । ମୁଁ ଭଲ ପଢୁଥିଲି । ସମସ୍ତେ ଜାଣିଥିଲେ । ସେ ମୋ ସହିତ ଏକତ୍ର ଅବସ୍ଥାନ କରି ବିଦ୍ୟା ଅଧ୍ୟୟନ କରିବାକୁ ପସନ୍ଦ କଲା । ମୋର ସମସ୍ତ ଖର୍ଚ୍ଚ ବି ବହନ କଲା ।

ପ୍ରଭୁଙ୍କର ଅପାର କରୁଣା । 'ଏ ମନ ପାଞ୍ଚୁଥାଏ ଯାହା କାଳେ ପ୍ରାପତ ହୁଏ ତାହା' । ଉପରୁ ଆଶୀର୍ବାଦ ମିଳିଲା । ମୁଁ ଏପରି ସୁବିଧାକୁ ହାତଛଡ଼ା କଲି ନାହିଁ । ତା ପଢ଼ାପଢ଼ିର ସମସ୍ତ ଦାୟିତ୍ୱ ବହନ କଲି । ସେ ପ୍ରତିବର୍ଷ କିପରି ଶ୍ରେଣୀ ପ୍ରମୋସନ ପାଇବ ମୁଁ ପ୍ରାଣପଣେ ଚେଷ୍ଟା କଲି । ସେ ମୋର ସାଥୀ, ମୁଁ କିନ୍ତୁ ତା'ର ଟିଉସନ ମାଷ୍ଟର ଓ ଅଭିଭାବକ ହେଲି । ମୁଁ ତାକୁ ଅଟଳ ବୋଲି ଡାକୁଥିଲେ ମଧ ସେ ମୋତେ ମୂଳିବାବୁ ବୋଲି ସମ୍ବୋଧନ କରୁଥିଲା । ମୋ ପରି ଦୁଇଟା ପିଲାଙ୍କୁ ସେ ଟେକିକରି କଚାଡ଼ି ଦେବ । ଅଟଳ ବିହାରୀ ଭଲ ଖେଳୁଆଡ଼ । ହାଲିଆ ହୋଇ ସନ୍ଧ୍ୟା ୮ଟା ବେଳକୁ ଘୁମାଏ । ମୁଁ ତା'ର ପଢ଼ାସାଥୀ ପୁଣି ତା ଉପରେ ନିର୍ଭରଶୀଳ କିନ୍ତୁ ସେ ମୋତେ ସମ୍ମାନ ଦିଏ । ବେଳେବେଳେ ସେ ରାତ୍ରିରେ ଖାଇବାପୂର୍ବରୁ ନିଦ୍ରାଯାଏ । ଖାଇବା ସମୟକୁ ରାତ୍ରି ଅବଶ୍ୟ ୧୦ଟା ହୋଇଯାଉଥାଏ । ମୁଁ କିନ୍ତୁ ସେପର୍ଯ୍ୟନ୍ତ ପଢୁଥାଏ ।

## ଗଣେଶ୍ୱରର କୌତୁକ କଥା :

ଅଷ୍ଟମ ଶ୍ରେଣୀ ବର୍ଷ ସାହିଭିତରେ ଚଉଧୁରୀଙ୍କ ଏକ ପକ୍କା ଚଟାଣ ଗୃହରେ ଛାତ୍ରାବାସ ଖୋଲିଲା । ତଳେ ମସିଣା ଉପରେ ଶୋଇବାକୁ ପଡୁଥିଲା । ଦଶ ବାରଜଣ ପିଲା ସେ ଘରେ ରହୁଥିଲେ । ସମ୍ମୁଖରେ ଏକ ବଡ଼ ଅଗଣା ଥିଲା । ଗୃହର ଚଟାଣଟା କିନ୍ତୁ ସନ୍ତଉଥିଲା । ଖଟର ପ୍ରଶ୍ନ ନଥିଲା । ମୋ ସହିତ ମୋର ପୂର୍ବ ମାଇନର ସ୍କୁଲର ପଢ଼ାସାଥୀ ଗଣେଶ୍ୱର ମହାପାତ୍ର(ବ୍ରାହ୍ମଣ) ଅବସ୍ଥାନ କରୁଥିଲା । ଆମ ଛାତ୍ରାବାସରେ ସୁପରିଟେଣ୍ଡେଣ୍ଟ କିଏ ଆମକୁ ଜଣା ନଥାଏ କି କେହି କେବେ ଆସି ପିଲାମାନଙ୍କ ବିଷୟ ବୁଝନ୍ତି ନାହିଁ । ପିଲାମାନଙ୍କ ମଧ୍ୟରେ ବେଶ୍ ସହୃଦୟତା ଗଢ଼ି ଉଠିଥାଏ । ହସଖୁସିରେ ସମୟ କଟେ । ଥରେ ଗଣେଶ୍ୱର ଚାରିପଇସା ପାଇଲେ ଏତିକି କିରାସିନି ପିଇଦେବ ବୋଲି ପିଲାମାନଙ୍କ ଆଗରେ କହିଲା । ମୁଁ ତାକୁ କହିଲି, ''ଭାଇ ଗଣେଶ ! ଏ ଦୁର୍ବୁଦ୍ଧି କର ନାହିଁ । ହଇରେ ଚାରିଟା ପଇସା ପାଇଁ ଜୀବନକୁ ଏତେ କଷ୍ଟ ଦେବୁ ?'' ଗଣେଶ କ'ଣ ମୋ କଥା ଶୁଣିଲା ? ପିଲାମାନେ ଏ ନବରଙ୍ଗ ଦେଖୁଥାନ୍ତି, କିଏ କିପରି ହସୁଥାଏ କିନ୍ତୁ ବାହାଦୁରୀ ଦେଖାଇବା ପାଇଁ ସମସ୍ତଙ୍କ ସମ୍ମୁଖରେ ସେ ତ ପିଇଦେଲା । ମୁଁ କେବଳ କହିଲି, ''ପିଇ, ଲୋଭର ଫଳ ପାଇବୁ ଯେ'' । ସେ ଚାରି ପଇସା ନେଲା, କିଏ ଦେଲା ମୋର ମନେ ନାହିଁ । ମୁଁ ତାକୁ ଖୁବ୍ ବିରକ୍ତ ହେଲି । ତା'ପରଦିନ ତା'ର ଝାଡ଼ା ହେଲା, ଏତେ ଝାଡ଼ା ହେଲା ଯେ କୁଶଭଦ୍ରା ନଦୀ ଅପର ପାର୍ଶ୍ୱରେ ଡାକ୍ତରଖାନାକୁ ଯିବାକୁ ପଡ଼ିଲା । ପିଲାମାନଙ୍କ ମଧ୍ୟରେ ଏହିପରି କୌତୁକ ଖେଳର ନାନା ଦୃଷ୍ଟାନ୍ତ ଅଛି । ଗଣେଶ୍ୱର ପରେ ଖୋର୍ଦ୍ଧା ମୁଖ୍ୟ ଡାକଘରେ ହେଡ଼ ପୋଷ୍ଟମାଷ୍ଟର ରୂପେ ନିଯୁକ୍ତି ପାଇଥିଲା । ତାକୁ ଭେଟି ପୂର୍ବର ଏହି କୌତୁକ କଥାକୁ ସ୍ମରଣ କରାଇଲେ ବେଶ୍ ହସ ସୃଷ୍ଟି ହୁଏ, ନାନା ଖୁସି କଥା ପଡ଼େ ।

## ଉଦାର-ହୃଦୟ ଅଟଳ ବିହାରୀ :

ଅଟଳ ଓ ମୁଁ ଏକାଠି ରହିଲୁ, ଏକାଠି ପଢ଼ିଲୁ, ଏକା ଥାଳିରେ ଖାଇଲୁ । ଅଟଳ ଧନୀ ସନ୍ତାନ । ନିଜ ଜିନିଷ ପ୍ରତି ଯତ୍ନ ନିଏ ନାହିଁ । ମୁଁ ସେସବୁ ଜଗାରଖା କରେ । ଆମେ ସକାଳୁ ପଢ଼ା ଆରମ୍ଭ କଲା ବେଳକୁ ଅଗାଧୁ ସାହୁ ଗୁଡ଼ିଆ ଏତେ ବଡ଼ ବେତ ଟୋକେଇରେ ମୁଢ଼ି ଉଖୁଡ଼ା ନେଇ ଆସେ, ବେଳେବେଳେ ସିଝାବୁଟ ଆଣେ । ସିଏ ଆମେ ଦୁଇଜଣଙ୍କ ପାଇଁ ଚାରିପଇସାର ମୁଢ଼ି ଦିଏ ପୁଣି ମୁଠାଏ ଉଖୁଡ଼ା ପକାଇଦିଏ । ଦୁଇଜଣଙ୍କ ପାଇଁ ଯଥେଷ୍ଟ । ମୁଢ଼ିଖିଆ ହୁଏ ପାଠପଢ଼ା ହୁଏ । ଏହି

ପଇସା ଅଟଳ ବିହାରୀ ବହନ କରେ । ଆମେ ଦୁହେଁ ଏକପ୍ରାଣ ହୋଇଗଲୁ । ସେ କାଗଜ, କାଳି ସବୁ କିଣେ । ମୁଁ ତାକୁ ପଢ଼ାଏ । ମୁଁ ତାକୁ ଯେପରି ଚଳିବାକୁ କୁହେ ସେ ସେପରି ଚଳେ । ମୋତେ ଖୁବ୍ ମାନେ । ସେ ତ ହୁଣ୍ଡା ଧରଣର ପିଲା, କାଳେ କ'ଣ ସମସ୍ୟା ସୃଷ୍ଟି କରିଦେବ ସେଥିପାଇଁ ମୁଁ ସତର୍କ ଥାଏ ।

**କଳିଟି ନିଷ୍ପତ୍ତି ହେଲା :**

ଭଁଅରାଗଡ଼ର ଦଳବେହେରା ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀ ରବିରାୟଙ୍କ ଦାଦା ସର୍ବେଶ୍ୱର ରାୟ ମୋର ପଢ଼ାସାଥୀ । ସର୍ବେଶ୍ୱରର ମାମୁ ଘର ପ୍ରାଚୀ ନଦୀର ଅପର ପାର୍ଶ୍ୱ ଗଙ୍ଗେଶ୍ୱର ଗ୍ରାମରେ । ଥରେ ସେ ଗ୍ରାମର ଜଣେ ଖଣ୍ଡାୟତ ଭାଇ(ସର୍ବେଶ୍ୱରର ମାମୁ ଲେଖା ହେବେ) ଗୋଟିଏ ମାଟି ଝୋବାରେ ଗୁଆଘିଅ ବିକ୍ରି କରିବାକୁ ଆଣିଥିଲେ । ସ୍କୁଲର ମାଷ୍ଟ୍ରମାନଙ୍କ ମଧ୍ୟରୁ କେହି କେହି କିଣିଲେ ମାତ୍ର ଦରଦାମ୍‌ରେ ଏପଟ ସେପଟ ହେବାରୁ ଅଟଳ ସେ ଲୋକକୁ ବିଧାଏ ପକାଇଲା । ଅଟଳ କେତେବେଳେ ଯାଇ ଏପରି କାଣ୍ଡ କରିଛି ମୋତେ ଜଣା ନଥିଲା । ଲୋକଟି ମାଡ଼ ଖାଇ ତାଙ୍କ ଗାଁରେ ଯାଇ ହାଲା କଲା । ତା' ପରଦିନ ସକାଳୁ ସେ ଗାଁରୁ ୪୦ କି ୫୦ ଜଣ ଖଣ୍ଡାୟତ ଭାଇ ଠେଙ୍ଗା ବାଡ଼ିଧରି ସ୍କୁଲ ଘେରାଉ କଲେ । କ'ଣ ହୋଇଛି କ'ଣ ହୋଇଛି ବୋଲି ପଚରା ଉଚରା କଲାପରେ ଜଣାଗଲା ତା ମୂଳରେ ଅଟଳ ଅଛି । ଆମେ ସବୁ ଆତଙ୍କିତ ହେଲୁ । ନିଷ୍ପତ୍ତି କରିବାକୁ ତରସହିଲା ନାହିଁ । ଜମିଦାରୀ ଇଲାକା ହେଲେ ମଧ୍ୟ ଗଙ୍ଗେଶ୍ୱରିଆ ଖଣ୍ଡାୟତଙ୍କୁ ସେ ପାଖେ ସମସ୍ତେ ଡରନ୍ତି । ଯାହା ହେଉ ସ୍ୱୟଂ ଗଙ୍ଗାଧର ଦାସ ଚୌଧୁରୀ ଆସି ମୀମାଂସା କଲେ । ସେମାନଙ୍କୁ ବୁଝାସୁଝା କରି ଫେରାଇ ଦେଲେ । ନଚେତ୍ ଅଟଳ ଅବସ୍ଥା ବାରଣ୍ଡା ଦିକଡ଼ା ହୋଇଥାନ୍ତା । ସର୍ବେଶ୍ୱର ବହୁବାର ଡାକିଚି ତା ମାମୁ ଘରକୁ ଯିବା ପାଇଁ, କିନ୍ତୁ ଆମେ ଯାଇନାହୁଁ, ଏଣିକି ଅଟଳକୁ ମୁଁ ଗୋଡ଼େଗୋଡ଼େ ଜଗିଲି । ଅଟଳ ବିହାରୀ ପ୍ରତି ମୋର ସ୍ୱତନ୍ତ୍ର କର୍ତ୍ତବ୍ୟ ଥିଲା । ପଢ଼େଇ ପଢ଼େଇ ତାକୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ନେଇଗଲି, ସମସ୍ତେ କହିଲେ ମୂଳିନାଥ ଥିବା ପର୍ଯ୍ୟନ୍ତ ଅଟଳ ପରୀକ୍ଷାରେ ଫେଲ୍ ହେବ ନାହିଁ । କିନ୍ତୁ ଅଟଳ ବିହାରୀ ଛୁଟିରେ ଗାଁକୁ ଗଲେ ଆଉ ଫେରିବାକୁ ମନ କରେ ନାହିଁ । ତାଙ୍କ ଘର ସେଠାରୁ ୨୫ କି ୩୦ କିଲୋମିଟର ଦୂର ବାଟ । ନଈନାଳ ଅନେକ, ଗହୀର ଜମିଦେଇ ପଦବ୍ରଜରେ ଯିବାକୁ ହୋଇଥାଏ । ଅଟଳ ଗାଁର ବଡ଼ ଝିଅମାନଙ୍କ ସହିତ ସାଙ୍ଗ ହେବାକୁ ଭଲ ପାଏ । ସେମାନଙ୍କ ସାଙ୍ଗ ଛାଡ଼ି ଆସିବାକୁ ଇଛା କରେ ନାହିଁ । ଏକାଦଶ ଶ୍ରେଣୀ

ବେଳକୁ ସେ ବହୁଦିନ ଅନୁପସ୍ଥିତ ରହିଲା । ଟେଷ୍ଟ ପରୀକ୍ଷା ଦେଲା ନାହିଁ ନଚେତ୍ ମୁଁ ଲାଗିଲାଗି ନିଶ୍ଚୟ ତାକୁ ପାସ୍ କରାଇ ଦେଇଥାନ୍ତି । ମୋ ମାଟ୍ରିକ ପରୀକ୍ଷା ଶେଷ ହେବାପରେ ଅଟଳ ଆସି ମୋ ପାଖରେ ଗାଁରେ ପହଞ୍ଚିଲା । ଚାରିମାସ ଛୁଟି, ମୁଁ ଋଣ ଶୁଝିବି ବୋଲି ତାକୁ ପଢ଼ାଇବା ପାଇଁ ତା ଗାଁକୁ ଗଲି ।

**ବନ୍ୟା ବିପତ୍ତି :**

୧୯୩୭ ମସିହାରେ ଓଡ଼ିଶାରେ ପ୍ରବଳ ବନ୍ୟା ଦେଖାଯାଇଥିଲା । ମହାନଦୀରେ ବଢ଼ିପାଣି ମଡ଼ିଆସିବାରୁ ତା'ର ଶାଖା ନଦୀଗୁଡ଼ିକରେ ବନ୍ୟାଜଳ ଉଛୁଳି ଉଠିଲା । କୁଶଭଦ୍ରା କୁଆଖାଇରୁ, କୁଆଖାଇ କାଠଯୋଡ଼ିରୁ, କାଠଯୋଡ଼ି ମହାନଦୀରୁ ବାହାରି ଥିବାରୁ ମହାନଦୀରେ ବନ୍ୟାର ପ୍ରକୋପ କୁଶଭଦ୍ରାରେ ଅନୁଭୂତ ହେଲା । ଭିଙ୍ଗାରପୁର କୁଶଭଦ୍ରାର ବାମ ପାର୍ଶ୍ୱରେ ଅବସ୍ଥିତ । ଯେତେଦୂର ମନେ ପଡୁଛି ଅଗଷ୍ଟମାସ । ବର୍ଷା ଅନବରତ ଚାଲିଥାଏ । ଘଣ୍ଟାକୁ ଘଣ୍ଟା ପାଣି ଫୁଲିବାରେ ଲାଗିଥାଏ । ନଈକୂଳିଆ ଲୋକଙ୍କ ମଧ୍ୟରେ ଆତଙ୍କ । ଆଖପାଖ ଖାଲୁଆ ଅଞ୍ଚଳର ଲୋକେ ବନ୍ଧ ଉପରେ ଆସି ଆଶ୍ରୟ ନେଉଥିଲେ । ଜଣାପଡୁଥାଏ ବନ୍ଧ ଭାଙ୍ଗିଯିବ । ବହୁ ଅଞ୍ଚଳ ଜଳମଗ୍ନ ହୋଇଯିବ । ଲୋକେ ବାସ-ହରା ହୋଇଯିବେ । ସେତେବେଳେ ହାଇସ୍କୁଲର ଦୁଇଟି ଶ୍ରେଣୀ ଖୋଲଯାଇଥାଏ । ପଣ୍ଡିତ ଗୋବିନ୍ଦ ମିଶ୍ରଙ୍କ ତତ୍ତ୍ୱାବଧାନରେ ଛାତ୍ରାବାସର ପିଲାମାନେ ବନ୍ଧ ଉପରେ ମାଟି ପକାଇବାରେ ଲାଗି ପଡ଼ିଲେ । ନଦୀ ଦୁଇକୂଳ ଖାଇ ପ୍ରତି ମୁହୂର୍ତ୍ତରେ ନଦୀବନ୍ଧ ଅତିକ୍ରମ କରିବାକୁ ଧମକ ଦେଉଥିଲା, ଭୟ ଆତଙ୍କରେ ଛାତି ଦୁଲୁକି ଉଠୁଥିଲା । ଗାଁ ପିଲାମାନେ ଆମ ସଂଗେ ଆସି ଅବଶ୍ୟ ଆମକୁ ହିମତ୍ ଦେଉଥିଲେ । ନଦୀବଢ଼ି ଦୃଶ୍ୟ ଦିନବେଳେ ଭୟଙ୍କର ଦେଖାଯାଉଥିଲା । ରାତ୍ରିବେଳେ ଭୟ ଆହୁରି ବଢ଼ିଯାଉଥିଲା । ଭଗବାନଙ୍କୁ ଡାକିବା ବ୍ୟତୀତ ଅନ୍ୟ ପନ୍ଥା ନଥିଲା । ହରିବୋଲ ହୁଳହୁଳି ଧ୍ୱନିରେ ଆକାଶପାତାଳ ଫାଟିପଡୁଥିଲା । ସମସ୍ତେ ଭୀତତ୍ରସ୍ତ । ଗୁଜବ ଭୟକୁ ବଢ଼େଇ ଦେଉଥିଲା । ରାତ୍ରି ହେଲା । ବର୍ଷା ଅବିରାମ ଚାଲିଥାଏ । ରାତ୍ରିରେ ଲଣ୍ଠନମାଳ ବନ୍ଧ ଉପରେ ଜୁଳୁଜୁଳୁ ଆଖି କାଢ଼ି ଦୂରକୁ ନକ୍ଷତ୍ର ପରି ଦେଖାଯାଉଥାଏ । ଗ୍ରାମବାସୀ, ଅଞ୍ଚଳବାସୀ ଭୀତତ୍ରସ୍ତ । କୋହଲିଆ ପାଗରେ ଦେହ ଶୀତେଇ ପଡୁଥାଏ । ପିଲାମାନଙ୍କର ସେସବୁକୁ ଖାତିର ନଥାଏ । ମଝିରେ ମଝିରେ ଝିପିଝିପି ବର୍ଷା ଭୟକୁ ଦ୍ୱିଗୁଣିତ କରୁଥାଏ । ମୋ ଘର ପରଙ୍ଗରେ– ଆମ ଗାଁ ପାଖରେ କୌଣସି ବଡ଼ ନଦୀ ନାହିଁ । ନୀଦବଢ଼ି ବିଷୟରେ ମୋର ବା କି ଜ୍ଞାନ ଥିଲା ? ରାତ୍ରିରେ ଆମ୍ଭେମାନେ କେନି ଶୋଇବା ପାଇଁ

ଯାଇ ପାରିଲୁ ନାହିଁ । କେଉଁଠି ଗଳିଆଟାଏ ବନ୍ଧରେ ପଡ଼ିଗଲେ ମୁହୂର୍ତ୍ତକେ ସବୁ ଶେଷ କରିଦେବ । ନଦୀବନ୍ଧ ହେଲା ଆମମାନଙ୍କର ଶଯ୍ୟା । ଭିଙ୍ଗାରପୁର ଗାଁର ଦୁଇ ପାଖରେ ପ୍ରାୟ ମାଇଲିଏ ବନ୍ଧ ଜଗିବାର ଭାର ଆମମାନଙ୍କ ଉପରେ ପଡ଼ିଥାଏ । ଅଖିଆ ଅପିଆ ମନପ୍ରାଣ ଦେଇ ସମୂହ କାମରେ ଲାଗିଥାଉ । ତା'ପରଦିନ ଅପରାହ୍ଣ ସମୟକୁ ବଢ଼ିର ପ୍ରକୋପ କମିଲା । ତଳ ଅଞ୍ଚଳରେ ଗୋଟିଏ ଜାଗାରେ ବନ୍ଧ ଭାଙ୍ଗିଗଲା । ପାଣିଗୁଡ଼ାକ ତେଣେ ଟାଣି ହୋଇଗଲା । ଏ ଅଞ୍ଚଳବାସୀ ରକ୍ଷାପାଇଲେ ମାତ୍ର ସେମାନଙ୍କର ଦୁଃଖ ବଢ଼ିଲା । ଏହି ବନ୍ୟା ବିପତ୍ତିଠାରୁ ଆମ ରହଣି କାଳଭିତରେ ଆଉ ବନ୍ୟାର ପ୍ରକୋପ ଦୃଷ୍ଟିଗୋଚର ହୋଇନାହିଁ ।

## ବିଦ୍ୟାଳୟ ପାଇଁ କାମ :

ବିଦ୍ୟାଳୟଟି ନୂତନ ହୋଇ ପ୍ରତିଷ୍ଠା ହୋଇଥାଏ । ପ୍ରତ୍ୟେକ ରବିବାର ଦିନ ଛାତ୍ରାବାସର ପିଲାମାନେ ମୁଷ୍ଟିଭିକ୍ଷା କରିବାକୁ ଯାଉ । ନାଁ ମୁଷ୍ଟିଭିକ୍ଷା, କିନ୍ତୁ "ଦେବା ମରିବାକୁ କେହି ଭଲ ପାଆନ୍ତି ନାହିଁ ବୋଲି ପ୍ରବାଦ ଅଛି ।" କେହିକେହି ଥଳି ଭର୍ତ୍ତିକରି ଦେଉଥିଲେ ତ କେହି କିଛି ଦିଅନ୍ତି ନାହିଁ । କେତେ ଦୁଆରେ ଆମକୁ ଗାଳିଗୁଲଜ ନ କରିଲେ ମଧ ସ୍କୁଲ-କର୍ତ୍ତୃପକ୍ଷଙ୍କ ଉପରେ ବିରକ୍ତଭାବ ଦେଖାନ୍ତି । ଆମେ ଥୋବରା ମୁହଁରେ ମାଗିବାକୁ ଯାଉ । ବିଦ୍ୟାଳୟର ଆୟର ପନ୍ଥା କିଛି ନଥିଲା । ମୁଷ୍ଟିଭିକ୍ଷା ଧନ କଣ୍ଟିଜେନ୍ସି ପାଣ୍ଠିରେ ମିଶୁଥିଲା । ଦୁଇ ତିନିବର୍ଷ ପରେ ଏ ପ୍ରଥା ବନ୍ଦ ହୋଇଗଲା । କିନ୍ତୁ ଅନ୍ୟ କୌଣସି ଉପାୟରେ ଟଙ୍କା ଆଦାୟ ହେଉନଥିଲା ।

## ବିଦ୍ୟାଳୟର ଶିକ୍ଷକ ଓ ଛାତ୍ର :

ବିଦ୍ୟାଳୟରେ ପଢ଼ାପଢ଼ିର ବାତାବରଣ ଭଲ ଥିଲା । ବାୟୁମଣ୍ଡଳରେ ପବିତ୍ରତା ଥିଲା । ଶିକ୍ଷକମାନେ ବିଦ୍ୟାଳୟ ପ୍ରତି ଅନୁରାଗୀ ଥିଲେ । ଶ୍ରୀ ବଂଶୀଧର ମହାନ୍ତି ବି.ଏ. ଟ୍ରେନିଂ ପାଇଁ କଟକ ଗଲେ । ଖୋର୍ଦ୍ଧା ନିକଟସ୍ଥ ପରିଛଳ ଗ୍ରାମର ବାବୁ ଗୋପୀନାଥ ପଟ୍ଟନାୟକ ବି.ଏ.ଡି.ଇଡି. ପ୍ରଧାନ ଶିକ୍ଷକ ରୂପେ ଯୋଗଦେଲେ । ସେ ଜ୍ଞାନୀ ଓ ଗୁଣୀ, ମାତ୍ର ତାଙ୍କର ଜାତିଆଣ ଦୋଷ ଥିଲା । ମୁଁ ଜଣେ ଛାତ୍ର ହେଲେ ମଧ ତାଙ୍କର ଦୁର୍ଗଣ ଜାଣିପାରିଲି । ସେ କରଣ ପିଲାମାନଙ୍କୁ ସ୍ନେହ ଆଦର କରୁଥିଲେ । ମଣ୍ଡାସାହିର କୈଳାସ ପଟ୍ଟନାୟକଙ୍କୁ ଭଲ ପାଉଥିଲେ । ତେଣୁ ଛାତ୍ର ମହଲରେ ତାଙ୍କର ଆଦର କମିଗଲା । କିଛି ଦିନ ପରେ ସେ ସ୍କୁଲ ତ୍ୟାଗକଲେ । ସେ ବାତ ରୋଗରେ ଆକ୍ରାନ୍ତ ହୋଇଥିଲେ । ଗୋଡ଼ ହାତରେ ବାତ ରୋଗର ପ୍ରତାପ ଜଣା ପଡୁଥାଏ । ମୋର ଦଶମ ଶ୍ରେଣୀ ବର୍ଷ

କଟକ ଜିଲ୍ଲା ଅଡ଼ଙ୍ଗ ଗ୍ରାମର ତାଳଚେର ହାଇସ୍କୁଲରୁ ଅବସର ନେଇଥିବା ଶ୍ରୀ ଶଙ୍କର ତ୍ରିପାଠୀ ପ୍ରଧାନ ଶିକ୍ଷକ ହୋଇ ଆସିଲେ । ସ୍କୁଲ ସମୟ ବ୍ୟତୀତ ଅନ୍ୟ ସମୟରେ ସେ ଗେରୁଆ ବସ୍ତ୍ର ପରିଧାନ କରୁଥିଲେ । ରାତ୍ରିରେ ହରିନାମ ଭଜନରେ ମାତି ଯାଉଥିଲେ । ଖୋଳ, ଝାଞ୍ଜ ମାଡ଼ ରାତ୍ରି ଅର୍ଦ୍ଧ ପର୍ଯ୍ୟନ୍ତ ନିନାଦିତ ହେଉଥିଲା । କିନ୍ତୁ ସାତ ଆଠମାସ ପରେ ସେ ବିଦାୟ ନେଇଥିଲେ । ଏହି ସମୟରେ ବିଦ୍ୟାଳୟ କୁଶଭଦ୍ରା ନଦୀର ଅପର ପାର୍ଶ୍ୱକୁ ସ୍ଥାନାନ୍ତରିତ ହେଲା । ଶେଷ ବର୍ଷ ଶ୍ରୀ ଗଙ୍ଗାଧର ଚୌଧୁରୀଙ୍କର କନିଷ୍ଠ ଜାମାତା ଶ୍ରୀ ବୈଦ୍ୟନାଥ ମିଶ୍ର ବି.ଏ. ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତି ପାଇଲେ । ଶିକ୍ଷକମାନେ ଛାତ୍ରବତ୍ସଳ ଥିଲେ । ମାତ୍ର ଅନ୍ୟ ସମୟରେ କୋଚିଙ୍ଗ-କ୍ଲାସ ନଥିଲା । ପିଲାମାନଙ୍କ ସନ୍ଦେହମୋଚନ କରାଯାଇ ପାରିଥିଲେ ମାଟ୍ରିକ ପରୀକ୍ଷାରେ ପିଲାମାନେ ଭଲ ଫଳ ଦେଖାଇ ପାରିଥାନ୍ତେ । ପିଲାମାନେ ନିଜେ ନିଜେ ପରିଶ୍ରମ କରି ଯେତିକି ଦକ୍ଷତା ହାସଲ କରୁଥିଲେ ସେତିକି । ଘରୋଇ ଟିଉସନ ନଥିଲା । ଟିଉସନ ଫି ଦେବାର ଶକ୍ତି ଅଭିଭାବକଙ୍କର ବି ନଥିଲା । ଶିକ୍ଷକମାନେ ଶିକ୍ଷାକ୍ଷେତ୍ରରେ ପିଲାମାନଙ୍କର ଅଧିକ ଯତ୍ନ ନେବାପାଇଁ ଦୃଷ୍ଟି ଦେଉନଥିଲେ । ନୂତନ ହାଇସ୍କୁଲ ହେତୁ, ପୁସ୍ତକାଗାର ଦରିଦ୍ର ଥିଲା । ପଡ଼ିଆ ଅଭାବରୁ ଫୁଟବଲ ଖେଳ ହୋଇପାରୁନଥିଲା । କିନ୍ତୁ ଭଲି ଖେଳ ଭଲ ଚାଲୁଥିଲା । ଗଣିତ ଓ ଇଂରାଜୀରେ ନୂତନ ଦିଗଦର୍ଶନ ଦେବାପାଇଁ କୌଣସି ଶିକ୍ଷକ ଆଗଭର ହେଉନଥିଲେ । ମୋର ଚାରି ବର୍ଷ ଅଧ୍ୟୟନ ସମୟରେ ଶେଷ ବର୍ଷ ପୁରସ୍କାର ବିତରଣ ସଭା ଅନୁଷ୍ଠିତ ହୋଇଥିଲା । ମୁଁ ଗଦାଏ ବହି ପୁରସ୍କାର ପାଇଥିଲି । ଆମେମାନେ ନିଜେ ନିଜେ ଅଧ୍ୟୟନରେ ବହୁ ସମୟ ବ୍ୟୟ କରୁଥିଲୁ । ବିଦ୍ୟାଳୟର କିଛି ପରଂପରା ନଥିଲା । ଆମ୍ଭେମାନେ ପରମ୍ପରା ସୃଷ୍ଟି କଲୁ । ଶ୍ରେଣୀରେ ପ୍ରତିବର୍ଷ ମୁଁ ପ୍ରଥମ ହେଉଥିଲି ।

## ପ୍ରକୃତି ନୈବ ମୁଚ୍ୟତେ :

ଦଶମ ଶ୍ରେଣୀରେ ପଢ଼ିବା ବେଳକୁ ମୋତେ ୧୮ ବର୍ଷ ହୋଇଥାଏ । ମୁଁ ଯେ ଏକା ଏତେ ବୟସର ତା ନୁହେଁ, ଅଧିକାଂଶ ପିଲା ଏହି ବୟସର । ଯୌବନର ଉନ୍ମାଦନା ସମସ୍ତଙ୍କ ମନ, ଦେହରେ ଆସିଯାଇଥାଏ । ପିଲାମାନଙ୍କ ମଧ୍ୟରେ ବନ୍ଧୁତା ଭଲ ଗଢ଼ି ଉଠିଥିଲା । ପିଲାମାନଙ୍କ ମଧ୍ୟରେ ଝିଅ ପିଲାମାନଙ୍କ କଥା ବେଳେବେଳେ ଆଲୋଚନା ହେଉଥିଲା । ମୁଁ ସେ ଆଲୋଚନାରେ ଭାଗ ନନେଲେ ମଧ୍ୟ ସବୁ ଜାଣୁଥିଲି । ଅବଶ୍ୟ ସେମାନଙ୍କ ସହିତ ସବୁ କାର୍ଯ୍ୟରେ ଯୋଗ ଦେଉନଥିଲି । ସର୍ବେଶ୍ୱର ଓ ଶ୍ରୀଧର ଭାଇନା ଓସ୍ତାଦ୍ । ଶ୍ରୀଧର ଭାଇନା ଭୁବନେଶ୍ୱର ଟୋକା । ତା କକେଇ ମାଇନର ସ୍କୁଲରେ

ହେଡ୍ ପଣ୍ଡିତ ଥାଆନ୍ତି । ତାର ଭୟଭ୍ରାନ୍ତି କିଛି ନଥାଏ । ମୁଁ ଯେତେହେଲେ ମଫସଲ ପିଲା ପୁଣି ମା ପେଟରୁ ବାପକୁ ଖାଇଛି । ସମସ୍ତଙ୍କୁ ଭୟ । ସ୍କୁଲର ନୂଆ ତିଆରି ଘର । ସେହି ଘର ଭିତରେ ଶ୍ରୀଧର ଭାଇନା ପ୍ରଭୃତି ବସି ଭାଣ୍ଡାମି କରନ୍ତି । ଝରକା ପାଖ ରାସ୍ତାରେ ବକ୍ରେଶ୍ୱର ପୁଷ୍କରିଣୀକୁ ସ୍ନାନ କରିବା ପାଇଁ ବଡ଼ିଲା ଝିଅମାନେ ଯାଆନ୍ତି । ସେମାନଙ୍କ ଭିତରେ ମହାଜନଙ୍କର ଝିଅଟି ଖୁବ୍ ସୁନ୍ଦରୀ ଥିଲା । ସେ ମଝିରେ ରହିଥାଏ । ତାକୁ ଲକ୍ଷ୍ୟକରି ଶ୍ରୀଧର ଭାଇନା କେତେକ ଅଶୋଭନୀୟ ଶବ୍ଦ ଉଚ୍ଚାରଣ କରନ୍ତି । ସମସ୍ତେ ଆନନ୍ଦ ଉପଭୋଗ କରନ୍ତି, ମୁଁ ବି ଉପଭୋଗ କରେ । ସେ ଝିଅପିଲାମାନେ ନିଶ୍ଚୟ ଆନନ୍ଦ ପାଉଥିବେ ବୋଲି ମନେହେଉଛି । ତା ନହୋଇଥିଲେ ସେମାନେ ଅନ୍ୟବାଟେ ପୁଷ୍କରିଣୀକୁ ଯାଆନ୍ତେ । କିନ୍ତୁ ସେଇବାଟେ ସର୍ବଦା ଯାଉଥିଲେ ଏବଂ ଏହିପରି ଟାହିଟାପରା ଶୁଣୁଥିଲେ । ସାଙ୍ଗ ପିଲାମାନେ କ'ଣ ତାଙ୍କ ପକୃତି ଛାଡୁଥିଲେ ? ''ପ୍ରକୃତି ନୈବ ମୁଚ୍ୟତେ ।''

**ସର୍ବୋଦୟ ମେଳା :**

୧୯୩୮ ମସିହା ମାର୍ଚ୍ଚ ମାସ ୨୧ ତାରିଖ ଠାରୁ ୩୧ ତାରିଖ ପର୍ଯ୍ୟନ୍ତ ଡେଲାଙ୍ଗ ବେରବୋଇ ଗ୍ରାମ ପରିସରରେ ସର୍ବୋଦୟ ମେଳା ଅନୁଷ୍ଠିତ ହେଲା । ମହାତ୍ମା ଗାନ୍ଧୀଙ୍କ ସମେତ ଭାରତର ଜାତୀୟ ସ୍ତରର ବହୁନେତା ସେ ମେଳାରେ ଯୋଗ ଦେଇଥିଲେ । କସ୍ତୁରୀବାଈ ଏହି ମେଳାକୁ ଆସି ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାରେ ଗାନ୍ଧିଜୀ ବଡ଼ ବ୍ୟଥିତ ହେଲେ ଏବଂ ଅନଶନ ଧମକ ଦେଲେ । ଓଡ଼ିଶାର ପୁରପଲ୍ଲୀରୁ ବହୁଲୋକ ଏ ମେଳା ଦେଖିବାକୁ ଆସିଥିଲେ । ଏପରିକି ଖୋଦ ଭିଙ୍ଗାରପୁରର ବହୁଲୋକ ଓ ଆମ ସ୍କୁଲର ବହୁଛାତ୍ର ଓ ଶିକ୍ଷକ ଏହି ମେଳା ଦେଖିବାକୁ ଉତ୍କଣ୍ଠିତ ହେଲେ । ମାତ୍ର ବିଧିର ବିଡ଼ମ୍ବନା ମୋ ହାତରେ କାଣିକଉଡ଼ିଟିଏ ନଥିଲା । ପଦବ୍ରଜରେ ଦୂରପଥ ଯାତ୍ରାକରିବାପାଇଁ କିଏ କାହିଁକି ମୋର ସହଧର୍ମୀ ହେବ ? ମନଟା ଭାରି ବ୍ୟଥିତ ହେଲା । ଆଉ କିଛି ଚାରା ନଥିଲା । ମନକଥା ମନରେ ଚାପି ରଖି ଦାରିଦ୍ର୍ୟକୁ ଅଭିଶାପ ଦେଲି । ସେତେବେଳେ ମୋର ଗୋଟିଏ ପୂର୍ବସ୍ମୃତି ମନରେ ଉଙ୍କିମାରିଲା । ୧୯୩୬ ମସିହାରେ ଓଡ଼ିଆରେ ପ୍ରଥମ ଚଳଚ୍ଚିତ୍ର ସୀତାବିବାହ (ମୋହନ ଗୋସ୍ୱାମୀଙ୍କ କୃତ) ଜଟଣୀରେ ପ୍ରଦର୍ଶିତ ହେଉଥିଲା । ମୁଁ ସେତେବେଳେ ଯାଁଳା ମାଇନର ସ୍କୁଲ ବୋଡିଂରେ ଅବସ୍ଥାନ କରୁଥାଏ । ପିଲା ଓ ଶିକ୍ଷକ ଚଳଚ୍ଚିତ୍ର ଦେଖିବାକୁ ଗଲେ ଅଥଚ ମୋ ପାଖେ ଚାରିଟି ପଇସା ହୋଇପାରିଲା ନାହିଁ ବୋଲି ମୁଁ ସିନେମା ଦେଖାରୁ ବଞ୍ଚିତ ହେଲି । ଏବେ

୧୯୩୮ ମସିହାରେ ବି ସେଇ ଅବସ୍ଥା । ବନ୍ଧୁମାନଙ୍କ ଗହଣରେ ଧନହୀନ ଜୀବନ ନିରର୍ଥକ । ଧନ ଯାହାର ନାହିଁ ଯେତେ ପଣ୍ଡିତଗିରି ଦେଖାଇଲେ କ'ଣ ହେବ ? କଥାରେ ଅଛି– '' ନ ବନ୍ଧୁ ମଧ୍ୟେ ଧନହୀନ ଜୀବନ ।''

ସଂସ୍କୃତ କବି ଯଥାର୍ଥରେ କହିଛନ୍ତି –

''ଯସ୍ୟାସ୍ତି ବିତ୍ତଂ ସ ନରଃ କୁଳୀନଃ
ସଃ ପଣ୍ଡିତଃ, ସଃ ଶ୍ରୁତିବାନ୍ ଗୁଣଜ୍ଞଃ
ସ ଏବ ଦାତା, ସ ଚ ଦର୍ଶନୀୟଃ
ସର୍ବେଗୁଣାଃ କାଞ୍ଚନଂ ଆଶ୍ରୟନ୍ତି ।''

**ମେସରେ ଧର୍ମଘଟ :**

ମାଇନର ଓ ହାଇସ୍କୁଲର ଗୋଟିଏ ମେସ୍ ପରିଚାଳିତ ହେଉଥାଏ । ଖରାଦିନ ବ୍ୟତୀତ ସବୁସମୟରେ ମେସରେ ସାରୁ, କଖାରୁ ତରକାରିର ମୁଖ୍ୟ ଅଂଶ ଗ୍ରହଣ କରୁଥିଲା । ଆଳୁର ଦାମ୍ ଚତୁର୍ମାସ୍ୟାରେ କଟକୀ ସେର ତିନିଅଣାରେ ପହଞ୍ଚୁଥିଲା । ତେଣୁ ଚତୁର୍ମାସ୍ୟାରେ ବୋଡ଼ିଂରେ ପିଲା ଆଳୁଖାଇବା ସ୍ୱପ୍ନ ହେଉଥିଲା । ସାରୁ, କଖାରୁ ଖାଇଖାଇ ପିଲାଏ ଚିଟା ହେଉଥିଲେ । ତେଣୁ ପିଲାମାନଙ୍କ ମଧ୍ୟରେ ଅସନ୍ତୋଷର ବହ୍ନି କୁହୁଳି ଉଠିଲା । ସେମାନେ ଆଳୁ ଖାଇବା ପାଇଁ ଜିଦ୍‌କଲେ, କିନ୍ତୁ ସେମାନଙ୍କ କଥା ଶୁଣୁଛି କିଏ ? ସେମାନଙ୍କୁ କିଏ ଉସୁକେଇଲା ମୁଁ ସେ କଥା କହିପାରିବି ନାହିଁ । ତେବେ ଆମଭିତରେ ନେତା-ମାର୍କା ପିଲା ଥିଲେ । ସମସ୍ତେ ଧର୍ମଘଟରେ ଯୋଗଦେଲେ କିନ୍ତୁ ମୁଁ ଶ୍ରେଣୀରେ ପ୍ରଥମ ପିଲା, ପୁଣି ଶିକ୍ଷକମାନଙ୍କର ବାଧ୍ୟଛାତ୍ର । କୁଞ୍ଜବାବୁଙ୍କ ଦୟାରୁ ଏଠାରେ ରହି ପଢୁଛି । ଯେପରି ରହୁଛି, ଯେପରି ଖାଉଛି ସମସ୍ତେ ଜାଣନ୍ତି । ଧର୍ମଘଟରେ ଯୋଗଦେବା ଉଚିତ ହୋଇ ନାହିଁ ବୋଲି କେତେକ ଶିକ୍ଷକ ମୋତେ ପରେ କହିଲେ । ମୁଁ ବଡ଼ ଅଡୁଆରେ ପଡ଼ିଲି । କିନ୍ତୁ ଯେଉଁଥିରେ ସମସ୍ତଙ୍କ ସ୍ୱାର୍ଥ ଜଡ଼ିତ ମୁଁ ତାର ବ୍ୟତିକ୍ରମ କରିବି କିପରି ? ''ବାରଣ ବଢ଼େଇରେ ଦାୟ, ନା ପୁଅରେ ଦାୟ'' ନ୍ୟାୟରେ ମୁଁ ଧର୍ମଘଟରେ ଯୋଗଦେଲି । ପଣ୍ଡିତ ଗୋବିନ୍ଦ ଚନ୍ଦ୍ର ମିଶ୍ର ଯେ ମୋତେ ଅଧିକ ସ୍ନେହ କରୁଥିଲେ ସେ ମୋ ଉପରେ କୁପିତ ହେଲେ । ମୁଁ ତାଙ୍କୁ ଦୟାମୟଙ୍କ ଅବତାର ବୋଲି ଭାବୁଥିଲି । ସେ ମେତେ ବହୁଦିନ ପର୍ଯ୍ୟନ୍ତ କଥା କହିଲେ ନାହିଁ । ମୁଁ ବଡ଼ ସନ୍ତର୍ପଣରେ ପଣ୍ଡିତଙ୍କ ନିକଟକୁ ଯାଇ କ୍ଷମା ଭିକ୍ଷାକଲି । ତାଙ୍କର କ୍ରୋଧ ପ୍ରଶମିତ ହେଲା । ସେ ପୁଣି ମୋତେ ସ୍ନେହ କଲେ । ଧର୍ମଘଟର ପରଦିନଠାରୁ ଦାମ୍ ଦୃଷ୍ଟିରୁ ମେସରେ ଆଳୁ

ତରକାରି ହୋଇ ନପାରିଲେ ମଧ ତା ପରିବର୍ତ୍ତେ କଦଳୀ ଓ ବାଇଗଣ ଝୋଳ ବହୁଦିନ ପର୍ଯ୍ୟନ୍ତ ଚାଲିଲା । ଗଣ ଆନ୍ଦୋଳନ କେବେ ବ୍ୟର୍ଥ ହୁଏ ନାହିଁ ।

## ଚୋର ମା ଦୁଆର ଦେଇ କାନ୍ଦେ :

ଆମ ଶ୍ରେଣୀ ଗୃହରେ ତାଲା ପଡୁନଥିଲା । ଆମେ କେତେଜଣ ଶ୍ରେଣୀ ଗୃହର ଅର୍ଦ୍ଧେକରେ ରହୁଥିବାରୁ ଚୋର ଭୟ ନଥିଲା । ମୁଁ ଓ ମୋର ସୁହୃଦ୍ ଅଟଳ ବିହାରୀ ଉଭୟ ଆମ ଶ୍ରେଣୀଗୃହରେ ଟ୍ରଙ୍କ ବାକ୍ସ ବହିପତ୍ର ଧରି ରହୁଥିଲୁ । ବଜାର, ହାଟକୁ ବା ଖେଳିବାକୁ ଗଲେ କବାଟ ଆଉଜେଇ ଯାଉଥିଲୁ । କିଏ କ'ଣ ନେଇଯିବ ଏକଥା ମନରେ ଆସୁନଥିଲା । ଦିନେ ସେ ଘରୁ ମୋର କଂସାଥାଳି ପଟକ ଚୋରିଗଲା । କିଏ ନେଲା କିଛି ଜଣା ପଡ଼ିଲା ନାହିଁ । ଅପର ଦିନ ମୋ ଛତା ଖଣ୍ଡିକ କିଏ ନେଇଗଲା । ମୁଁ ଯେ ଜଣେ ଦାୟିତ୍ୱହୀନ ବାଳକ ଶିକ୍ଷକମାନେ ଜାଣିଲେ । ମାନ ଅପମାନ ସହି ରହିଲି । ଦୁଆରେ କିନ୍ତୁ ଚାବି ପଡ଼ିଲା ନାହିଁ କି ଚୋରକୁ ଧରାଯାଇ ପାରିଲା ନାହିଁ । କିଛିଦିନ ଅତିକ୍ରାନ୍ତ ହେଲା । ଦିନେ ବିଦ୍ୟାଳୟ ଛୁଟି ହେବାପରେ ଯେ ଯୁଆଡ଼େ ଚାଲିଗଲେ । ଲୋକ ପତଳା ପଡ଼ିଗଲେ । ମୁଁ ଏବଂ ଅଟଳ ହତାଭିତରେ ଅଛୁ । ଏହି ସମୟରେ ଆମ ଲୁଗାପଟା ନେଉଥିବା ଧୋବା ଭିତରେ ପଶିଲା । ଅଟଳର ଏଣ୍ଡିଚାଦର ଖଣ୍ଡିକ ବାନ୍ଧାବାନ୍ଧିକରି ନେବାକୁ ବାହାରିଥିବା ବେଳେ ମୋ ହାବୁଡ଼ରେ ପଡ଼ିଗଲା । ଚୋର ଚୋର ବୋଲି ଡାକିବାରୁ ଅଟଳ ବି ଦୌଡ଼ି ଆସିଲା । ସେ ଆଉ କେହି ନୁହେଁ, ଯେଉଁ ଧୋବା ଆମ ଲୁଗା ନିଏ ସେ ସେଇ । ''ଘର ଚୋରକୁ କଣ କନ୍ଦିବଣା'' ? ଅଟଳ ବିହାରୀ ପାଞ୍ଚହାତିଆ ଟୋକାଟାଏ, ବେଶ୍ ଗୁଣ୍ଡାପରି ଦେଖାଯାଏ । ସମସ୍ତଙ୍କ ଆଗରେ ସେ ଧୋବାକୁ ଦୁଇଟା ଉତ୍ତମ ମଧ୍ୟମ ଦେଇ ଦେବାରୁ ସେ କେତେବେଳେ କଣ ନେଇଥିଲା ମାନିଗଲା । କୁଞ୍ଜବାବୁ ଅଟଳ ପ୍ରଭୃତିକୁ ସଂଗରେ ଧରି ବଡ଼ବଜାରର ଗୋଟିଏ ଦରଜି ଦୋକାନରୁ ଥାଳି ଓ ଛତା ଉଦ୍ଧାର କରିଆଣିଲେ । ଦରଜି ଧୋବାକୁ ଦେଇଥିବା ସମସ୍ତ ଟଙ୍କା ଉଡ଼ାଗଲା । ସେ ଆଉ କାହା ଆଗେ ଗୁହାରି କରିବ ? କାନମୁଣ୍ଡା ଆଉଁସି ରହିଲା । ଦରଜି-ଧୋବା ବୃତ୍ତାନ୍ତ ଆମକୁ ଆଉ ଜଣା ନାହିଁ ।

''ଚୋର ମା କାନ୍ଦେ ନାହିଁ, ଯଦି କାନ୍ଦେ ଦୁଆର ଦେଇ କାନ୍ଦେ ।''

## ହାଇସ୍କୁଲର ନାମକରଣ :

ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଧର୍ମାନନ୍ଦ ଆଚାର୍ଯ୍ୟ । ବିଶାଳବପୁ, ଗୌରବର୍ଣ୍ଣ, ପସନ୍ଦିଆ ମଣିଷ । ତାଙ୍କ କାନ ଗହ୍ୱରରେ ବହୁତ ଗୁଡ଼ିଏ ବାଳ ଥାଏ । ସେ

ବ୍ରହ୍ମଚାରୀ ପରି ପ୍ରତୀୟମାନ ହୁଅନ୍ତି । ତାଙ୍କ ପରାମର୍ଶରେ ଗଙ୍ଗାଧର ଚୌଧୁରୀ ହାଇସ୍କୁଲ କାର୍ଯ୍ୟ ପରିଚାଳନା କରୁଥାଆନ୍ତି । ହେଡ୍‌ମାଷ୍ଟ୍ରଙ୍କ ପୁଅ ରମେଶ ଭାଇନା ମୋ ଉପର ଶ୍ରେଣୀରେ ପଢୁଥାନ୍ତି । ନନାଙ୍କ ସ୍ୱାସ୍ଥ୍ୟର ପ୍ରତିରୂପ । ସେ ଅତି ଡରକୁଳା । କେବେ ପରୀକ୍ଷାରେ ବସିନାହାନ୍ତି । ପରୀକ୍ଷା ନାଁ ଶୁଣିଲେ ତାଙ୍କ ଛାତିରୁ ଦଲକାଏ ପବନ ଖସିଆସେ । ଚେହେରାଟି ଉତ୍ତମ । ନନା ତାଙ୍କୁ ବେଶି ଭଲ ପାଉଥିଲେ । ଗେଲବସର ପିଲା ବୋଲି କିଛି କହନ୍ତି ନାହିଁ । ବିନା ପରୀକ୍ଷାରେ ପ୍ରମୋଶନ ଦିଆଇ ଦିଆଇ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ନେଇଗଲେ । ମୁଁ ଭଲ ପଢୁଥାଏ ବୋଲି ଶିକ୍ଷକମାନେ ଓ ଗାଁର କେତେକ ଶିକ୍ଷିତ ଲୋକ ମୋତେ ପ୍ରଶଂସା କରୁଥିଲେ । ବିଦ୍ୟାଳୟକୁ ସ୍ୱୀକୃତି ଦେବାପାଇଁ ସେତେବେଳର କଟକର ପ୍ରସିଦ୍ଧ ଓକିଲ, ପରେ ହାଇକୋର୍ଟ ଜଜ୍ ଶ୍ରୀଯୁକ୍ତ ହରିହର ମହାପାତ୍ର ଓ ଓଡ଼ିଶାର ତତ୍କାଳୀନ ଡି.ପି.ଆଇ. ଶ୍ରୀଯୁକ୍ତ ଶ୍ୟାମଚନ୍ଦ୍ର ତ୍ରିପାଠୀ ଆଇ.ଇ.ଏସ. ବିଦ୍ୟାଳୟ ପରିଦର୍ଶନରେ ଆସିଥିଲେ । ବର୍ଷାଦିନେ ଭିଙ୍ଗାରପୁର ଏକ ଟାପୁ ଅଞ୍ଚଳପରି ଦେଖାଯାଏ । ରାସ୍ତାଘାଟ ଅଗମ୍ୟ ହୋଇପଡ଼େ । ଏମାନେ ବର୍ଷାଦିନ ପରେ କାରରେ କଟକରୁ ଆସିଥିଲେ । ଉଭୟଙ୍କୁ ତୁଳନା କଲେ ଅଜାନାତି ପରି ଦେଖାଯାଆନ୍ତି । ଶ୍ୟାମଚନ୍ଦ୍ର ତ୍ରିପାଠୀ ଯେତିକି ଡେଙ୍ଗା, ହରିହର ମହାପାତ୍ର ସେତିକି ବାଙ୍ଗର । ଶ୍ରୀଯୁକ୍ତ ତ୍ରିପାଠୀ ଗୌରବର୍ଣ୍ଣ, ପସନ୍ଦିଆ କିନ୍ତୁ ମୁଣ୍ଡଟା ଟାଙ୍ଗରା, କିନ୍ତୁ ହରିହର ବାବୁ ପତଳା । ସେମାନେ ଦେଖିଯିବାପରେ ବିଦ୍ୟାଳୟ ସ୍ୱୀକୃତି ଲାଭକଲା । କର୍ମକର୍ତ୍ତା ଓ ଗ୍ରାମବାସୀଙ୍କ ମନରେ ଆନନ୍ଦର ଢୁଆର ଖେଳିଗଲା । ଭିଙ୍ଗାରପୁରର ପ୍ରସିଦ୍ଧ ଶୈବପୀଠ ମହାଦେବ ଶ୍ରୀବକ୍ରେଶ୍ୱରଙ୍କ ନାମାନୁସାରେ ବିଦ୍ୟାଳୟ ନାମିତ ହେଲା ।

## ଗତିକୃଷ୍ଣ ଭଞ୍ଜ ସାର୍ :

ମୁଁ ନବମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଶ୍ରୀ ଗତିକୃଷ୍ଣ ଭଞ୍ଜ ନାମରେ ଜଣେ ତାଲିମ ପ୍ରାପ୍ତ ଗ୍ରାଜୁଏଟ ଢେଙ୍କାନାଳ ଗଡ଼ଜାତରୁ ଆସି ବିଦ୍ୟାଳୟରେ ଯୋଗଦେଲେ । ଗତିବାବୁ ଯୁବକ, ବଳିଲାପରି ଦେହ, ପାଠ ପଢ଼େଇବାରେ ଧୁରୀଣ । ଗତିକୃଷ୍ଣ ସାର୍ ଆମ୍ଭମାନଙ୍କୁ ଇଂରାଜୀ ଓ ଇତିହାସ ପଢ଼ାଉଥିଲେ । ଇତିହାସରେ ବ୍ରିଟିଶ୍ ଇତିହାସ ୫୦ ନମ୍ବର ଓ ଭାରତ ଇତିହାସ ୫୦ ନମ୍ବର ଏହିପରି ୧୦୦ ନମ୍ବର ଥିଲା । ଗତିବାବୁ ଇଂରାଜୀରେ ଇତିହାସ ଅନର୍ଗଳ ଗାଇ ଯାଉଥିଲେ । ସେହି ସମୟରେ ଢେଙ୍କାନାଳ ରାଜାଙ୍କ ବୀଭତ୍ସ ଅତ୍ୟାଚାର କାହାଣୀ ବର୍ଣ୍ଣନାକରି କାନ୍ଦି ପକାଇଥିଲେ । ସେ ନିଜେ ଓ ତାଙ୍କ ପରିବାର ଏହି ଅତ୍ୟାଚାରର ଶିକାର ହୋଇଥିଲେ ବୋଲି କହନ୍ତି । ସେ

ସବୁ କାହାଣୀ ଶୁଣି ଆମ୍ଭମାନଙ୍କ ଚକ୍ଷୁ ଲୋତକାପ୍ଳୁତ ହୋଇଯାଏ । ସେତେବେଳେ ଆମେ ଶୁଣିଥିଲୁ କେବଳ ମୟୂରଭଞ୍ଜ ରାଜାଙ୍କ ବ୍ୟତୀତ ଅନ୍ୟ ଗଡ଼ଜାତ ରାଜା ସବୁ ଅତ୍ୟାଚାରୀ ଥିଲେ । ମୁଁ ଖୋର୍ଦ୍ଧା ଖାସମାହାଲର ବାସିନ୍ଦା ଥିବାରୁ ଏସବୁ ଅତ୍ୟାଚାର ବା ରାଜରାଜୁଡ଼ା ଅଞ୍ଚଳର କଥା କିଛି ଜାଣିପାରୁ ନଥିଲି । ଗତିକୃଷ୍ଣବାବୁ ଉଚ୍ଚାକାଂକ୍ଷୀ ଥିବାରୁ ସେଠାରୁ ଖୋର୍ଦ୍ଧା ସବଡିଭିଜନ ଅନ୍ତର୍ଗତ ଓଳସିଂହ ହାଇସ୍କୁଲକୁ ପ୍ରଧାନ ଶିକ୍ଷକ ହୋଇ ଚାଲିଗଲେ । ଏହି ସମୟରେ ବିଚ୍ଛିନ୍ନାଞ୍ଚଳ ଇଚ୍ଛାପୁରର ଅଧିବାସୀ ଶ୍ରୀ ବୃନ୍ଦାବନ ଚୌଧୁରୀ ଗଣିତ ଶିକ୍ଷକ ରୂପେ ଆମ ସ୍କୁଲରେ ଯୋଗଦେଲେ ।

ସେତେବେଳେ ଚଉଧୁରୀ ବଂଶର ଦୁଇ ତିନୋଟି ଝିଅପିଲା ହାଇସ୍କୁଲରେ ଅଧ୍ୟୟନ କରୁଥିଲେ । ଶ୍ରୀ ଗୋବିନ୍ଦ ଚନ୍ଦ୍ର ମିଶ୍ର ସାହିତ୍ୟାଚାର୍ଯ୍ୟ ଓ ଆୟୁର୍ବେଦାଚାର୍ଯ୍ୟରେ କୃତିତ୍ୱ ହାସଲ କରିଥିଲେ । ସେ କବିରାଜୀ ଔଷଧ ତିଆରି କରୁଥିଲେ । ଛାତ୍ରାବାସରେ ଅନ୍ତେବାସୀମାନଙ୍କର ଦେହ ମୁଣ୍ଡହେଲେ ସେ ଔଷଧ ଦେଉଥିଲେ ଓ ଅଧିକ ହେଲେ ନିକଟବର୍ତ୍ତୀ ଡାକ୍ତରଖାନାରେ indoor patient ହିସାବରେ ରହୁଥିଲେ ।

ମୋ ଦିନଗୁଡ଼ାକ କଠୋର ପାଠପଢ଼ା ମଧ୍ୟରେ କଟୁଥିଲା । ପାଠ ପଢ଼ି ନପାରିଲେ ଅଫିମା ପରି ବାଉଳି ହେଉଥିଲି । ମୋ ସାଙ୍ଗ ପିଲାମାନେ ମୋତେ "ପୁସ୍ତକ କୀଟ" ଆଖ୍ୟା ଦେଇଥିଲେ ।

ସକ୍ରେଟିସ ଆର୍ଟ ସ୍କୁଲ ନାମକ ଖଣ୍ଡିଏ ଇଂରାଜୀ ପୁସ୍ତକ ଅତିରିକ୍ତ ପାଠ୍ୟପୁସ୍ତକ ରୂପେ ଚଳୁଥିଲା । ସକ୍ରେଟିସ ବିଶ୍ୱର ପ୍ରସିଦ୍ଧ ଦାର୍ଶନିକ, ପଣ୍ଡିତ ଓ ପ୍ରତିଭାଧାରୀ ବ୍ୟକ୍ତି । କିନ୍ତୁ ଦେଖିବାକୁ ଅସୁନ୍ଦର । ମୋ ସାଥୀମାନେ ମୋତେ ଦିନାକେତେ ସକ୍ରେଟିସ୍ ବୋଲି ସମ୍ବୋଧନ କଲେ । ମୁଁ ତାଙ୍କପରି ଅସୁନ୍ଦର ଥିଲି । ମାତ୍ର ସେହି ପରମପୂଜ୍ୟ ମହାନ୍ ବ୍ୟକ୍ତିଙ୍କର କାଣିଚାଏ ଜ୍ଞାନ ପରମେଶ୍ୱର ଯଦି ମୋ ମୁଣ୍ଡରେ ଦେଇଥାଆନ୍ତେ ତେବେ ସମାଜରେ ଶିକ୍ଷାକ୍ଷେତ୍ରରେ ମୁଁ ଏତେ ନିମ୍ନସ୍ତରରେ ରହିଥାନ୍ତି କାହିଁକି ?

**ନୂତନ ଛାତ୍ରାବାସ :**

ନୂତନ ଛାତ୍ରାବାସ ଏକ ରମଣୀୟ ସ୍ଥାନରେ ଅବସ୍ଥିତ ଥିଲା । ଚତୁର୍ଦ୍ଦିଗରେ ପ୍ରକୃତି ଦେବୀଙ୍କର ନୈସର୍ଗିକ ଶୋଭା ଅତି ମନୋହର ଥିଲା । ଶସ୍ୟକେଦାର ଓ ପଂକ୍ତି ପଂକ୍ତି ତାଳବୃକ୍ଷଗୁଡ଼ିକ ଅଦୂରରେ ସ୍ୱର୍ଗୀୟ ଶୋଭାକୁ ବର୍ଦ୍ଧନ କରୁଥିଲା । ଦକ୍ଷିଣ ଦିଗରୁ ମୃଦୁମନ୍ଦ ମଳୟ ପବନ ଆରାମ ଦେବା ସଙ୍ଗେସଙ୍ଗେ ଅନ୍ତେବାସୀଙ୍କ ମନ

ହରଣ କରୁଥିଲା । ଆମ୍ଭେମାନେ ମହାଆନନ୍ଦରେ ସମୟ ଅତିବାହିତ କରୁଥିଲୁ । ସୁଖଦୁଃଖରେ ଚାରିବର୍ଷ କୁଆଡ଼େ ଅପସାରିତ ହୋଇଗଲା । ଛାତ୍ରାବାସ ଜୀବନ ଏକ କଠୋର ଶୃଙ୍ଖଳାଭିତରେ ଗତି କରୁଥିଲେ ମଧ୍ୟ ପ୍ରତ୍ୟେକେ ସ୍ନେହ ବନ୍ଧନରେ ବାନ୍ଧି ହୋଇପଡିଥିଲେ । ପରସ୍ପର ଭ୍ରାତୃଭାବ ଜାଗରିତ ହୋଇଥିଲା ।

ଝାଡ଼ାରୋଗ ମୋର ଚିର ସହଚର ଥିଲା । ଖାଦ୍ୟପେୟର ବି ବିଶୃଙ୍ଖଳା ହେଉଥିଲା, ମୁଁ ଜାଣି ପାରୁନଥିଲି । ସିଝାପାଣିର ବ୍ୟବହାର ନଥିଲା । ଅଗଭୀର କୂପ ଜଳ ବ୍ୟବହାର କରୁଥିଲୁ । ଅତ୍ୟଧିକ ପରିଶ୍ରମ ମୋ ସ୍ୱାସ୍ଥ୍ୟ ଉପରେ ପ୍ରତିକୂଳ ପ୍ରଭାବ ପକାଉଥିଲା । ସେତେବେଳେ ଗାଁ ଗହଳରେ ପାଇଖାନା ବ୍ୟବସ୍ଥା ନଥିଲା । ଶିକ୍ଷକ ଓ ଛାତ୍ରଗଣ ବାହାରକୁ ଝାଡ଼ା ଫେରିବାକୁ ଯାଉଥିଲେ । ମୁଁ ପେଟ ରୋଗୀ ପୁଣି ରାତ୍ରିରେ ନିଶା ଗରଜୁଥିବା ବେଳେ ଚାରିଆଡ଼େ ଶୂନଶାନ ଥିବାବେଳେ ଭୟଙ୍କର ଶୀତ ରାତ୍ରିରେ ବା ମେଘବାହା ରାତ୍ରିରେ ମୋତେ ଝାଡ଼ା ଦେଖାଏ । ଏଣେ ଭୟଲାଗେ । କାହାକୁ ଉଠେଇବି ? ଥରେ ଅଧେ କିଏ ସିନା ଯିବ, ସବୁବେଳେ ନୁହେଁ । ଛାତ୍ରାବାସରେ ବାପା, ମା, ଭାଇ ବନ୍ଧୁ କେହି ନାହାନ୍ତି । ଦେହ ମୁଣ୍ଡହେଲେ ସାଥୀମାନଙ୍କ ଭରସାରେ ଚଳିବାକୁ ପଡ଼ିଥାଏ । ଆମ୍ଭେମାନେ ଗୋଟିଏ ପରିବାର ପିଲାପରି ଚଳୁଥିଲୁ । କି ସୁନ୍ଦର ପ୍ରୀତିଭାବ । ଏତେଦିନ ଏକାଠି ରହିବା ଦ୍ୱାରା ଗଭୀର ମମତା ଜାଗି ଉଠିଥିଲା । ଏପରିକି ମାଟ୍ରିକ ପରୀକ୍ଷା ଶେଷହେବାଦିନ ପରସ୍ପରକୁ ଛାଡ଼ିଗଲା ବେଳେ ଭୀଷଣ କ୍ରନ୍ଦନ ଧ୍ୱନିର ସୁଅ ଛୁଟିଥିଲା । ଅଧଘଣ୍ଟା ପର୍ଯ୍ୟନ୍ତ ସମସ୍ତେ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ । କିଏ ଧନୀ କିଏ ନିର୍ଦ୍ଧନ, କିଏ ଭଲ ପଢ଼େ କିଏ ଭଲ ପଢ଼େନାହିଁ ସେଥିରେ ବନ୍ଧୁତା କ୍ଷୁଣ୍ଣ ହୋଇନଥିଲା । ଗୋଷ୍ଠୀଜୀବନ ସୁନ୍ଦର, ସରସ, ସ୍ୱର୍ଗୀୟ । ହାଇସ୍କୁଲ ଛାତ୍ରାବାସ ଜୀବନପରେ ଏପରି ସମୟ ମୋ ଜୀବନରେ ଆଉ ଆସିନଥିଲା ।

**ଗ୍ରାମ୍ୟ ଛାତ୍ରବୃନ୍ଦ :**

ଆଜିକାଲି ହାଇସ୍କୁଲ ପିଲାମାନେ ଯେପରି ସାଂସ୍କୃତିକ ଉତ୍ସବମାନଙ୍କରେ ଭାଗ ନେଉଛନ୍ତି ଏବଂ ପ୍ରବନ୍ଧ, ବକ୍ତୃତା ପ୍ରଭୃତି ପ୍ରତିଯୋଗିତାରେ ଅଂଶଗ୍ରହଣ କରି ସୁଦୃଶ୍ୟ ପ୍ରଶଂସାପତ୍ର ଓ ପୁରସ୍କାରମାନ ଲାଭକରୁଛନ୍ତି ସେତେବେଳେ ସେପରି ସୁଯୋଗ ନଥିଲା । ବିଦ୍ୟାଧ୍ୟାୟୀ ଛାତ୍ରଛାତ୍ରୀମାନଙ୍କୁ ନାନା ଉପାୟରେ ପୁରସ୍କୃତ କରାଯାଉଛି । ମାତ୍ର ସେତେବେଳେ ତାହା ସ୍ୱପ୍ନ ଥିଲା । ଏପରିକି ସହରୀ ପିଲାମାନଙ୍କ ପାଇଁ ସାଧାରଣ ଜ୍ଞାନ ଲାଭ କରିବାର ଯେଉଁ ସୁଯୋଗ ଥିଲା ମଫସଲି ପିଲାମାନେ ପାଠ ପଢ଼ିବା

ବ୍ୟତୀତ ତାର କାଣିଚାଏ ଜାଣୁନଥିଲେ । ଏଥିପାଇଁ କହନ୍ତି, ''ବୋହୂ କାଣୀ ହେଲେ ବି କଟିକିଆଣୀ'' । ମଫସଲ ପିଲାଏ ଭଲ ପଢ଼ିପାରନ୍ତି ମାତ୍ର ଆଦବ କାଇଦା, ଠାଣି ମାଣି, ଚାଲାକି ଚତୁରତା ବିଷୟରେ ସହରୀପିଲାଏ ନିଶ୍ଚୟ ବଳିଯିବେ ।

ପୁରୀର ମୁକ୍ତାର ବାବୁ ରାମଚନ୍ଦ୍ର ଦାଶ ଯେ ଉତ୍କଳମଣି ଗୋପବନ୍ଧୁଙ୍କର ରାଜନୈତିକ ଗୁରୁଥିଲେ ତାଙ୍କ ବାସଗୃହ ଏହି ଭିଙ୍ଗାରପୁର ଗ୍ରାମରେ ଥିଲା । ଏବେ ବିଂଶ ଶତାବ୍ଦୀର ୪ର୍ଥ ଦଶକରେ ଉଚ୍ଚବିଦ୍ୟାଳୟ ଗଠନ କରି ଶ୍ରୀଯୁକ୍ତ ଗଙ୍ଗାଧର ଦାଶ ଚୌଧୁରୀ କୀର୍ତ୍ତି ସ୍ତମ୍ଭଟିଏ ନିର୍ମାଣ କଲେ । ଏହା ସମଗ୍ର ପୁରୀ ଜିଲ୍ଲାର ୬ଷ୍ଠ ହାଇସ୍କୁଲ ନାମ ବହନକରି ପ୍ରଗତିପଥେ ଆଗେଇ ଚାଲିଲା । ମାତ୍ର କ୍ଷୋଭର ବିଷୟ ସ୍ୱାଧୀନତାର ୫୫ ବର୍ଷପରେ ଯେଉଁ ସ୍ଥାନରେ ମାଇନର ସ୍କୁଲଟିଏ ନଥିଲା ସେଠାରେ ୧ମ ଶ୍ରେଣୀ କଲେଜ ଗଢ଼ାହୋଇ ସାରିଲାଣି ଅଥଚ ମହାମନା ଗଙ୍ଗାଧର ଦାଶ ଚୌଧୁରୀ ୬୫ ବର୍ଷତଳେ ଯେଉଁ ସୁରମ୍ୟ ଉଚ୍ଚ ବିଦ୍ୟାପୀଠର ଶୁଭ ଉଦ୍‌ଘାଟନ କରିଥିଲେ, ସେ ସେତିକିରେ ରହିଗଲା । କେବେ ଭିଙ୍ଗାରପୁରବାସୀଙ୍କ ନିଦ ଭାଙ୍ଗିବ କିଏ କହିବ ?

## ବିଦ୍ୟାଳୟ ପାଇଁ ନୂତନ ସ୍ଥାନ :

ଆମ ଏକାଦଶ ଶ୍ରେଣୀ ବର୍ଷ ବିଦ୍ୟାଳୟ କୁଶଭଦ୍ରା ନଦୀର ଦକ୍ଷିଣ ପାର୍ଶ୍ୱରେ ଏକ ବିସ୍ତୀର୍ଣ୍ଣ ବାଲୁକାମୟ ପ୍ରାନ୍ତରରେ ବିରାଜମାନ କଲା । ଖୋଲା ସ୍ଥାନ, ସୁରମ୍ୟ ପରିବେଶ, ଶ୍ୟାମଳ ବନରାଜି, ମନଲୋଭା ଶସ୍ୟକେଦାର ଦର୍ଶକଙ୍କ ମନରେ କେବଳ ଆନନ୍ଦ ସଂଚାର କରୁନଥିଲା, ଆମ ଛାତ୍ରମାନଙ୍କ ମନରେ ଦିବ୍ୟଭାବନା, ଶାଶ୍ୱତ ଶାନ୍ତି ଜାଗ୍ରତ କରୁଥିଲା । କ୍ରୀଡ଼ାପ୍ରାନ୍ତରର ଅଭାବ ଦୂରୀଭୂତ ହେଲା । ଶିକ୍ଷାୟତନ ପାଇଁ ଏପରି ସୁନ୍ଦର ସ୍ଥାନ ନିର୍ବାଚନ କର୍ତ୍ତୃପକ୍ଷଙ୍କର ଦୂରଦୃଷ୍ଟିର ପରିଚୟ ଦିଏ । ସେ ବର୍ଷ ସ୍କୁଲ ପିଲାମାନେ ଏକ ହାତଲେଖା ମାଗାଜିନ ବାହାରକଲେ । ମହାତ୍ମା ଗାନ୍ଧୀଙ୍କ ସମ୍ବନ୍ଧେ ମୋର ଏକ ଜୀବନୀ ପ୍ରବନ୍ଧ ସେଥିରେ ପ୍ରକାଶ ପାଇଲା । ସେତେବେଳକୁ ଶ୍ରୀ ଶଙ୍କର ତ୍ରିପାଠୀ ସ୍କୁଲରୁ ବିଦାୟ ନେଲେଣି ଓ ଶ୍ରୀ ବୈଦ୍ୟନାଥ ମିଶ୍ର ବିଦ୍ୟାଳୟର ଲଗାମ ଧରିଲେଣି । ମୁଁ ଦେଖିବାକୁ ଯେମିତି କଦାକାର ମୋ ନାମଟା ସେହିପରି ଶ୍ରୁତିକଟୁ, ଅପରିଛନିଆ ନାଁ । ସେ ମୋତେ ଡାକି କହିଲେ,''ମୂଳିନାଥ, ତୁମ ନାଁଟା ବଡ଼ ଅସୁନ୍ଦର । ଅନ୍ୟ ଆଗେ ଉଚ୍ଚାରଣ କରିବାପାଇଁ ଲଜ୍ଜାକର । ନାଁଟାକୁ ପରିବର୍ତ୍ତନ କରିଦେବା ପାଇଁ ମୋତେ ଗୋଟିଏ ଆବେଦନ ପତ୍ର ଦେ ।'' ମୋ କ୍ଷୁଦ୍ରବୁଦ୍ଧିରେ ଯାହା ଉଚିତ୍ ମନେକଲି ନାମଟି ମୁରଲୀଧର ରହୁ ବୋଲି ଆବେଦନ କଲି । ସେ ସଂଗେ

ସଂଗେ ତାଙ୍କର ସାର୍ବଭୌମ କ୍ଷମତା ପ୍ରୟୋଗକରି ମୋ ନୂତନ ନାମଟି ମୁରଲୀଧର ବୋଲି ବିଦ୍ୟାଳୟ ରେଜିଷ୍ଟରରେ ଦରଜ କରିଦେଲେ । ସେହିଦିନଠାରୁ ମୋର ନୂତନ ନାମ ରେକର୍ଡ଼ପତ୍ରରେ ସ୍ଥାନ ପାଇଲା । ମୁଁ ଭଗବାନ ଶ୍ରୀକୃଷ୍ଣଙ୍କ ନାମ ଧାରଣ କରି ଦ୍ୱିଜରେ ପରିଣତ ହେଲି ଏବଂ ବାହାର ଜଗତରେ ମୁରଲୀଧର ନାମରେ ପ୍ରଖ୍ୟାତ ହେଲି । ମୁଁ ସିନା ଦ୍ୱିଜରେ ପରିଣତ ହେଲି କିନ୍ତୁ ଦ୍ୱିଜର ସମସ୍ତ ମହାନୀୟ ଗୁଣ କିପରି ଆହରଣ କରିବି ? ପ୍ରଗାଢ଼ ଅଧ୍ୟବସାୟ ବଳରେ ସେ ଗୁଣଗୁଡ଼ିକ ଲାଭ କରିବା ପାଇଁ ପ୍ରତିଜ୍ଞାବଦ୍ଧ ହେଲି । ଉଚ୍ଚତର ବିଦ୍ୟା ହାସଲ ନକଲେ ଏସବୁ ହାସଲ ହୋଇପାରିବ ନାହିଁ ବୋଲି ଭାବିଲି ।

## ଯୁବକ ଦଳ ଓ ପାଠାଗାର :

ମୁଁ ନବମ ଶ୍ରେଣୀରେ ଅଧ୍ୟୟନ କଲାବେଳେ ଆମ ଗାଁରେ ଗୋଟିଏ ଯୁବକ ଦଳ ଗଢ଼ିଲି । ମୁଁ ଜାଣିବାରେ ମୁଁ ଅତ୍ୟନ୍ତ ସରଳ । କିଛି ପଢ଼ିବାରୁ ଗାଁ ଲୋକେ ଭାବୁଥାନ୍ତି ଚଲାକ୍ । ଗାଁରେ ଶିକ୍ଷାର ପ୍ରସାର ନଥିଲା । ଅଧିକାଂଶ ଲେଖାପଢ଼ା ଶିଖିନଥିଲେ ଏବଂ ଶିକ୍ଷା ଓ ସ୍ୱାସ୍ଥ୍ୟ ସମ୍ବନ୍ଧରେ ଅଜ୍ଞଥିଲେ । ପୋଖରୀ ହୁଡ଼ାରେ ଝାଡ଼ା ଫେରିବାଟାକୁ ବନ୍ଦ କରିବାକୁ ପଡ଼ିବ । ଶିକ୍ଷା, ସ୍ୱାସ୍ଥ୍ୟ ଓ ପରିବେଶ ସମ୍ବନ୍ଧରେ ଲୋକମାନଙ୍କୁ ସଚେତନ କରେଇବାକୁ ପଡ଼ିବ । ଗାଁରେ ପର୍ବପର୍ବାଣି, ଯାନିଯାତ୍ରା ସମୟରେ ଗାଁ ଲୋକଙ୍କୁ ସାହାଯ୍ୟ କରିବା ଏହି ଦଳର ଲକ୍ଷ୍ୟ ଥିଲା । ତେଣୁ ଦଶହରା ଛୁଟି ଓ ଗ୍ରୀଷ୍ମଛୁଟିରେ ବାରମ୍ବାର ସଭା ଡକାଇଲି । ଗ୍ରାମର ସର୍ବଶ୍ରୀ ଲୋକନାଥ ରାଉତରା, ମଦନ ସୁନ୍ଦରପତି, ସୁବଳ ବେହେରା, ରଘୁନାଥ ପାଟଶାଣୀ (ନନ୍ଦୀଭାଇ), ଚନ୍ଦ୍ରମଣି ରାଉତରା, ଚକ୍ରଧର ସ୍ୱାଇଁ, ଦୟାନିଧି ବାରିକ ପ୍ରଭୃତି ଯୁବକମାନେ ଆମ୍ଭମାନଙ୍କୁ ସାହାଯ୍ୟ କରିଥିବାର ମୋର ମନେ ଅଛି । ଏମାନଙ୍କ ସାହାଯ୍ୟରେ ଗାଁ ଦାଣ୍ଡ ପରିଷ୍କାର କଲୁ, ପୋଖରୀ ହୁଡ଼ାରେ ମଳତ୍ୟାଗ କରିବା ବନ୍ଦ ହେଲା । ଦିନାକେତେ କାମ ଭଲ ଚାଲିଲା, ବିଶେଷତଃ ମୁଁ କଲେଜକୁ ଯିବାପର୍ଯ୍ୟନ୍ତ ଚାଲିଥିଲା ।

ପୁନଃ ଶିକ୍ଷାର ମଶାଲ ଜାଳିବା ପାଇଁ 'ତରୁଣ ପାଠାଗାର' ନାମକ ଏକ ପାଠାଗାର ଗଢ଼ିଲି । ଖଣ୍ଡିଏ ସାପ୍ତାହିକ ସମାଜ ମଗାଇଲି । ସଭ୍ୟମାନଙ୍କଠାରୁ କିଛି ଟଙ୍କା ଆଦାୟକରି ଜାତୀୟ ଚେତନା ସୃଷ୍ଟିକରୁଥିବା ପୁସ୍ତକ, ଯଥା– ଦେଶର ଦାବି, ଜନଶକ୍ତି, ଅବକାଶ ଚିନ୍ତା, କାରାକବିତା ପ୍ରଭୃତି କେତେଗୁଡ଼ିଏ ପୁସ୍ତକ ଅଣାଇ ପାଠାଗାରର ଶ୍ରୀ ବୃଦ୍ଧିକଲି । ମୁଁ ମାଇନର ସ୍କୁଲ ଓ ହାଇସ୍କୁଲ ମିଶି ପ୍ରାୟ ୫୦ ଖଣ୍ଡ ପୁସ୍ତକ ପୁରସ୍କାର

ପାଇଥିଲି, ସେ ସମସ୍ତ ପୁସ୍ତକ ଏଠାରେ ରଖିଲି । ମୁଁ ତ ସର୍ବହରା, ମୋର କେଉଁଠି ଘରଦ୍ୱାର ଅଛି ? ତେଣୁ ଅନ୍ୟତମ ଯୁବକ ବନ୍ଧୁ ଭାବଗ୍ରାହୀ ପାଇକରାୟଙ୍କ ଗୃହରେ ଏକ ବିରାଟ ବେତ ପେଡ଼ିରେ ପୁସ୍ତକମାନ ରଖାଇଲି । ସେତେବେଳେ ମୋତେ ଜଣାନଥିଲା କ'ଣ କଲେ ପାଠାଗାରର ସୁରକ୍ଷା ହୋଇପାରିବ, ସେ ବିଷୟରେ ଆମେ ଅଜ୍ଞଥିଲୁ । ବହିଗୁଡ଼ିଏ ସଂଗ୍ରହ କରିଦେଲେ ଯେ ପାଠାଗାର ହୋଇଗଲା ତା ନୁହେଁ । କେତେକ ଧନବାନ୍ ଯାହାଙ୍କ ଉପରକୁ ଆମମାନଙ୍କର ହାତ ପାଇବ ନାହିଁ, ସେମାନେ ବହି ନେଲେ ଆଉ ଫେରାଇଲେ ନାହିଁ । ପାଠାଗାର ସଭା ଠିକ ସମୟରେ ହୋଇପାରିଲା ନାହିଁ । ଆଇନ କାନୁନ ମାନିଲେ ନାହିଁ । ମୁଁ କଲେଜରେ ପଢ଼ିବା ପରେ ୧୯୪୨ ମସିହାରେ ପାଠାଗାରଟି ଭାଙ୍ଗିଗଲା । ମୁଁ ଏଣେ ମନ ଦେଇପାରିଲି ନାହିଁ । ମୋର କଲେଜରେ ଅନ୍ନ ଚିନ୍ତା ଚମତ୍କାର ହେଲା । ଉକ୍ତ ପୁସ୍ତକାଗାର ପାଇଁ ମୁଁ ମୋର ସମସ୍ତ ପୁରସ୍କୃତ ପୁସ୍ତକ ପ୍ରଦାନ କରିଥିବାରୁ ପରେ ଭୀଷଣ ମନସ୍ତାପ କଲି । ସବୁଗୁଡ଼ାକ ନଷ୍ଟହେଲା । ମୁଁ ତାର ସୁରକ୍ଷା କରିଥିଲେ ମୋର ପୁତ୍ର, ନାତିମାନେ ଦେଖିପାରିଥାନ୍ତେ । ଏବେ ଯୁବକ ସଂଘ ନାହିଁ କି ପାଠାଗାର ନାହିଁ । ମୋର ଗାଁକୁ ଯିବାରେ ଭଟ୍ଟା ପଡ଼ିଯାଇଛି ।

### ଓଡ଼ିଶାର ପ୍ରଥମ ପେଶାଦାର ରଙ୍ଗମଞ୍ଚ :

ମୋର ହାଇସ୍କୁଲରେ ଅଧ୍ୟୟନକାଳରେ ପ୍ରତିବର୍ଷ ଦଶହରା ଛୁଟିରେ ଆମ ଗାଁ ପାଖ ଜଟଣୀ ନୂଆଗାଁ ଉଉରାୟଣୀ ଠାକୁରାଣୀଙ୍କ ପେଣ୍ଡାଲରେ ନାଟକ ପରିବେଶିତ ହୁଏ । ଏହି ଉତ୍ସବରେ ଓଡ଼ିଶାର ପ୍ରଖ୍ୟାତ କଳାକାର ଅଭିନେତା ରାମଚନ୍ଦ୍ର ମାଣିଆ (ରାମାଣିଆ) ଅଂଶ ଗ୍ରହଣ କରନ୍ତି । ସେ ବଳଙ୍ଗା ଜମିଦାରୀର ମ୍ୟାନେଜର ନାଟ୍ୟ-ପ୍ରେମୀ ବନମାଳୀ ପତିଙ୍କ ନିକଟରେ ଅବସ୍ଥାନ କରି ମଞ୍ଚଶିଳ୍ପୀ ହିସାବରେ ପ୍ରତିଷ୍ଠା ଲାଭ କରିଥିଲେ । ବନମାଳୀ ବାବୁ ୧୯୧୧ ମସିହାରେ ବଳଙ୍ଗାରେ ଏକ ରଙ୍ଗମଞ୍ଚ ନିର୍ମାଣ କରାଇଥିଲେ । ଓଡ଼ିଶାର ପେଶାଦାର ରଙ୍ଗମଞ୍ଚ ହିସାବରେ ଏହା ପ୍ରଥମ ବୋଲି ଗଣାଯାଏ । ଏହା ରାଧାକୃଷ୍ଣ ଥିଏଟରସ୍ ନାମରେ କଥିତ । ରାମଚନ୍ଦ୍ରବାବୁ ଶିକ୍ଷକ-ଗୁରୁ ଶ୍ରୀ ବୃନ୍ଦାବନ ବିହାରୀ ଦାଶଙ୍କଠାରୁ ଅଭିନୟ କଳା ଶିକ୍ଷାକରିଥିଲେ । ମାଣିଆଙ୍କ ଚେହେରା କମନୀୟ ଥିଲା । ସେ ବହୁ ସମୟରେ ଥିଏଟରରେ ନାରୀ ଭୂମିକାରେ ଅଭିନୟ କରୁଥିଲେ । ସେତେବେଳେ କୁମାରୀ କନ୍ୟା ବା ନାରୀମାନେ ଥିଏଟରରେ ଅଭିନୟ କରିବା ସ୍ୱପ୍ନ ଥିଲା । ୧୯୨୭ ମସିହାରେ ବନମାଳୀ ପତିଙ୍କ ହତ୍ୟାକାଣ୍ଡ ଘଟିଥିଲା । ମାତ୍ର

୧୯୨୩ ମସିହାରେ ରାମାଣିଆବାବୁ ସେ ସ୍ଥାନ ତ୍ୟାଗ କରିଥିଲେ । କିନ୍ତୁ ବହୁ ସମୟରେ ସେ ସ୍ଥାନକୁ ଯାତ୍ରାକରି ନାଟ୍ୟ ପରିବେଶଣରେ ଅଂଶ ଗ୍ରହଣ କରନ୍ତି । ବନମାଳୀ ପତିଙ୍କ ହତ୍ୟାପରେ ରାମାଣିଆବାବୁ ସେଠାରୁ ଚାଲିଆସି ଝଟଣୀ ନୂଆଗାଁ ନାଟ୍ୟ ପରିଷଦ ଗଢ଼ିଲେ ବୋଲି ନୂଆଗାଁ ବଡ଼ ପଣ୍ଡାଙ୍କଠାରୁ ଜଣାଯାଏ । ଉତ୍ତର କାଳରେ ଶ୍ରୀଯୁକ୍ତ ରାମାଣିଆ ଯେଉଁଠି ଥାଆନ୍ତୁ ନୂଆଗାଁ ନାଟ୍ୟୋତ୍ସବରେ ଯୋଗଦିଅନ୍ତି । ମୁଁ ଗ୍ରାମର ଯୁବକମାନଙ୍କ ସହିତ ଉକ୍ତ ନାଟକୋତ୍ସବ ଦେଖିବାକୁ ଯାଏ । ପରେ ପରେ ଓଡ଼ିଶା ଥିଏଟରସ ଓ ଚଳଚ୍ଚିତ୍ର ଜଗତରେ ରାମାଣିଆ ପ୍ରସିଦ୍ଧ ହୋଇ ଉଠିଲେ । ତାଙ୍କର ଅଭିନୟ ପ୍ରାଣସ୍ପର୍ଶୀ, ଜୀବନ୍ତ ଓ ସରସ । ତାଙ୍କ ଗ୍ରାମବାସୀ ଯୁବକବୃନ୍ଦ ଏବେ ତାଙ୍କର ଜୀବନଚରିତ ରଚନା କରିଅଛନ୍ତି । ପୂର୍ବରୁ ମୁଁ ମୋର 'ଲାଲମାଟିର ସୌରଭ' ପୁସ୍ତକରେ ତାଙ୍କ ଜୀବନ ଚରିତ ଉପରେ ପ୍ରଥମେ ଆଲୋକପାତ କରଥିଲି । ମୋ ପୁସ୍ତକ ସେମାନଙ୍କୁ ଦିଗ୍‌ଦର୍ଶନ ଦେଇଥିଲା ।

**ଗଡ଼ଜାତ ଆନ୍ଦୋଳନ :**

୧୯୩୮ ମସିହାରେ ଓଡ଼ିଶା ପ୍ରଦେଶରେ ପ୍ରଜାମଣ୍ଡଳ ଗଠନ କରାଗଲା । ପୂର୍ବରୁ ଗଡ଼ଜାତ ପ୍ରଜାମାନେ ରାଜାଙ୍କର ଅତ୍ୟାଚାର ସହ୍ୟକରୁଥିଲେ । ଏବେ କଂଗ୍ରେସ ଆନ୍ଦୋଳନକୁ ଲକ୍ଷ୍ୟ କରି ଗଡ଼ଜାତ ପ୍ରଜାମାନେ ଆନ୍ଦୋଳନାତ୍ମକ ମନୋଭାବ ପୋଷଣ କଲେ । ଦିନକୁଦିନ ସାରା ଭାରତରେ ସଚେତନତାର ବୃଦ୍ଧି ଘଟିଲା । ବ୍ରିଟିଶ୍ ଭାରତ ସଦୃଶ ଗଡ଼ଜାତମାନଙ୍କରେ ଆନ୍ଦୋଳନ ତେଜିଉଠିଲା । ରାଜାମାନେ ବ୍ରିଟିଶରାଜ୍ୟର ସହାୟତା ଲୋଡ଼ିଲେ । ଢେଙ୍କାନାଳ ପ୍ରଜାମେଳି ଭୀଷଣ ଆକାର ଧାରଣକଲା । ପ୍ରଜାମାନଙ୍କର ଉପରକୁ ଗୁଳିବର୍ଷଣ କରାଯାଇ ନଟ, ହୁରୁଷି ପ୍ରଭୃତି କେତୋଟି ନିରୀହ ପିଲାଙ୍କୁ ହତ୍ୟାକରାଗଲା । ଘାଟ ଜଗି ରହିଥିବା ୧୧ ବର୍ଷର ବାଳକ ବାଜିରାଉତକୁ ମଧ୍ୟ ଗୁଳିର ଶିକାର ହେବାକୁ ପଡ଼ିଲା । ସେହି ବାଜିରାଉତର ମୃତଦେହକୁ କଟକ ସହରରେ ଶୋଭଯାତ୍ରାକରି ଶ୍ମଶାନକୁ ନିଆଯିବାବେଳେ ଜନସାଧାରଣ ଦେଖଣାହାରି ମର୍ମନ୍ତୁଦ ଯନ୍ତ୍ରଣା ଭୋଗକଲେ । ଜନମାନସ ବିଦେଶୀ ସରକାର ବିରୁଦ୍ଧରେ ବିକ୍ଷୋଦ୍‌ଗାର କଲେ । ପରେ ପରେ ରଣପୁର, ନୟାଗଡ଼, ନୀଳଗିରି ପ୍ରଭୃତି ଗଡ଼ଜାତମାନଙ୍କରେ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ ହେଲା । ଢେଙ୍କାନାଳ ନରହତ୍ୟାର ତାଣ୍ଡବଲୀଳା ସୃଷ୍ଟିକରି ପଲିଟିକାଲ ଏଜେଣ୍ଟ ବେଜେଲଗେଟ ନୟାଗଡ଼ର ପ୍ରଜାଆନ୍ଦୋଳନ ଦମନ ପାଇଁ ପ୍ରବେଶ କଲେ । ସେତିକିବେଳେ ରଣପୁର ଆନ୍ଦୋଳନ ତୀବ୍ରତର ହେଲା ।

ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ରଣପୁର ଆନ୍ଦୋଳନର ମୁଖ୍ୟ ପୁରୋଧା ହେଲେ । ରଣପୁର ରାଜା ବେଜେଲଗେଟ ପାଖକୁ ସ୍ୱତନ୍ତ୍ର ଦୂତ ପ୍ରେରଣ କଲେ । ୧୯୩୯ ମସିହା ଜାନୁଆରୀ ୫ ତାରିଖ ପୌଷପୂର୍ଣ୍ଣିମା ଦିନ ପ୍ରତାପୀ ବେଜେଲଗେଟ ତାଙ୍କ ପତ୍ନୀଙ୍କର ପ୍ରବଳ ବାରଣ ସତ୍ତ୍ୱେ ରଣପୁର ଅଭିମୁଖେ ଯାତ୍ରା କଲେ । ପ୍ରତିରୋଧର ସ୍ମାରକ ରୂପେ ବାଟଯାକ ବଡ଼ ବଡ଼ କାଠଗଣ୍ଡିମାନ ରଖାଯାଇଥିଲା । ସାହେବ କ୍ରୋଧରେ ଗର୍ଜି ଉଠିଲେ । କେତେଜଣ ବିଦ୍ରୋହୀ ପ୍ରଜା ଭୋବନି ପୃଷ୍ଟି ଓ କାଶୀ ରାଉତ ସାହେବଙ୍କ ଚାବୁକମାଡ଼ରେ ଲହୁଲୁହାଣ ହୋଇଗଲେ । ସେ ଦୁହିଁଙ୍କୁ ସାହେବ ମାରିଦେଲା ବୋଲି ଗୁଜବ ବ୍ୟାପିଗଲା । ଉପସ୍ଥିତ ଜନତା ଉତ୍ତ୍ୟକ୍ତ ହୋଇପଡ଼ିଲେ, ଜନସମୁଦ୍ରକୁ ସମ୍ଭାଳି ହେଲା ନାହିଁ । ସାହେବ ନିଜକୁ ରକ୍ଷାକରିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କଲେ ମାତ୍ର ସଂପୂର୍ଣ୍ଣ ବିଫଳ ହେଲେ । ତାଙ୍କର ଆଖି ଲାଲ ଲାଲ ହୋଇଗଲା । ଠେଙ୍ଗାମାଡ଼ରେ ସେଦିନ ରଣପୁର ରାଜଦାଣ୍ଡରେ ସେ ଟଳି ପଡ଼ିଲେ । ରଣପୁର ପଡ଼ିଲା ଉଠିଲା । ଚାରିଆଡ଼େ କୋକୁଆଭୟ । ସେତେବେଳେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥିଲା । ବାବୁ ବିଶ୍ୱନାଥ ଦାସ ପ୍ରଧାନମନ୍ତ୍ରୀ । କଂଗ୍ରେସ ମନ୍ତ୍ରିମଣ୍ଡଳ ଥିବାରୁ ରଣପୁରବାସୀ ଏକ ପ୍ରକାର ରକ୍ଷାପାଇଗଲେ । ସେତେବେଳର କଂଗ୍ରେର ଜଣେ ତୁଙ୍ଗନେତା ଶ୍ରୀ ହରେକୃଷ୍ଣ ମହତାବ ସାହସର ସହିତ ରଣପୁର ଭିତରେ ପ୍ରବେଶକରି ରଣପୁର ରାଜ୍ୟବାସୀଙ୍କୁ ଜଣାଇଦେଲେ "ବ୍ରିଟିଶ କର୍ତ୍ତୃପକ୍ଷ ଆସିଲେ ରଣପୁର ପୋଡ଼ିଜାଳି ପାଉଁଶ କରିଦେବ । ତୁମେମାନେ ସମସ୍ତେ ମୋଗଲବନ୍ଦି ଅଞ୍ଚଳକୁ ପଳାଅ ।" ଯେ ଯୁଆଡ଼େ ପଳାୟନ କଲେ । ତଥାପି ଧରପଗଡ଼ ଜୋରସୋରରେ ଚାଲିଲା । ରଘୁ-ଦିବାକର ଧରା ହୋଇଗଲେ । ସେମାନେ ବେଜେଲଗେଟଙ୍କ ହତ୍ୟାକାଣ୍ଡରେ ପ୍ରତ୍ୟକ୍ଷ ସଂପୃକ୍ତ ନଥିଲେ । କିନ୍ତୁ ରଣପୁର ଆନ୍ଦୋଳନର ସୂତ୍ରଧର ଥିଲେ । ତେଣୁ ବିଚାର ହୋଇ ସେ ଦୁହିଁଙ୍କୁ ଫାଶୀଦଣ୍ଡ ହୁକୁମ ହେଲା । ୧୯୪୧ ମସିହା ଏପ୍ରିଲ ୪ ତାରିଖରେ ବିହାରର ଭାଗଲପୁର ଜେଲରେ ସେ ଦୁହିଁଙ୍କୁ ଫାଶୀଦଣ୍ଡରେ ଦଣ୍ଡିତ କରାଗଲା । ଏହି ଦୁଇଜଣ ଖୋର୍ଦ୍ଧା ହାଇସ୍କୁଲରେ ଅଧ୍ୟୟନ କରୁଥିବାର ଜଣାଗଲା । ବେଜେଲଗେଟ ହତ୍ୟା ସମୟରେ ମୁଁ ୧୦ମ ଶ୍ରେଣୀରେ ଅଧ୍ୟୟନ କରୁଥିଲି । ଏ ସମ୍ବାଦ ଶୁଣି ସାଙ୍ଗପିଲାମାନଙ୍କ ଆଗରେ ନିଜର ପ୍ରୌଢ଼ି ଦେଖାଇଲି ।

ମଧ୍ୟଯୁଗରେ ଉତ୍କଳ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ଏପରିକି କାବେରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ୧୮୧୭-୨୫ ମସିହା ଏହି ୮ ବର୍ଷ ମଧ୍ୟରେ ଖୋରଧାର ବୀର ଯୋଦ୍ଧୃମଣ୍ଡଳୀ ପୁରୁଣା ଅସ୍ତ୍ରଶସ୍ତ୍ର ସାହାଯ୍ୟରେ ଗରିଲା ଯୁଦ୍ଧକରି ବ୍ରିଟିଶରାଜକୁ ପାଣି ପିଆଇ ଦେଇଥିଲେ । କିନ୍ତୁ ବର୍ତ୍ତମାନ ଓଡ଼ିଆ ଲୋକମାନଙ୍କୁ ସନ୍ଦର୍ଶନ କରି,

ସେମାନଙ୍କର ନିରୀହତା ଓ ସରଳତାକୁ ଦେଖି ଭାରତର ଅନ୍ୟାନ୍ୟ ଅଞ୍ଚଳର ଲୋକେ ଓଡ଼ିଆଙ୍କୁ ଭୀରୁଜାତି ବୋଲି ଅଭିହିତ କରିଥାନ୍ତି । ବେଜେଲଗେଟ୍ ହତ୍ୟା ଯୋଗୁଁ ଓଡ଼ିଆଙ୍କ ମାନସମ୍ମାନ ସମଗ୍ର ଦେଶରେ ପରିବ୍ୟାପ୍ତ ହେଲା । ଓଡ଼ିଶାର ମାନସମ୍ମାନ ବୃଦ୍ଧି ହେବାରୁ ମୋ ମନ ଆନନ୍ଦରେ ଉଲ୍ଲସିତ ହେଲା । ରଣପୁର ମୋ ଘର ପାଖେ ଥିବାରୁ ଓ ରଣପୁରାବାସୀ ଆଜନ୍ମବିପ୍ଳବୀ ଖୋର୍ଦ୍ଧାଜନଗଣଙ୍କ ଦ୍ୱାରା ପ୍ରଭାବିତ ହୋଇ ଏପରି ସାହସିକ ପଦକ୍ଷେପ ଗ୍ରହଣ କରିଥିବାରୁ ଭିଙ୍ଗାରପୁର ବିଦ୍ୟାଳୟ ପିଲାମାନଙ୍କ ସମ୍ମୁଖରେ ମୁଁ ଯୋଦ୍ଧାଜାତିର ଦାୟାଦରୂପେ ପରିଚୟ ଦେଇ ଯଥେଷ୍ଟ ଗର୍ବ ଅନୁଭବ କରିଥିଲି ।

**ଅବକାଶରେ ଘରବାହୁଡ଼ା:**

ଗ୍ରୀଷ୍ମାବକାଶ ବା ପୂଜା ଅବକାଶ ସମୟରେ ନିଜ ଗ୍ରାମକୁ ଯିବାକୁ ପଡ଼ିଥାଏ । ପଦବ୍ରଜରେ ଯିବା ବ୍ୟତୀତ ଅନ୍ୟ ପନ୍ଥା ନଥିଲା । ମୋର ବି ସାଇକେଲ ନଥିଲା । ଭିଙ୍ଗାରପୁରରୁ ପ୍ରତ୍ୟୁଷରେ ବାହାରେ, ବେଳକୁ ବେଳ ରୌଦ୍ରତାପ ବୃଦ୍ଧିହେଲେ ବହିତକ ମୁଣ୍ଡାଇ ଝାଳନାଳ ହୋଇଯାଏ । ଭିଙ୍ଗାରପୁରଠାରେ ଯାହା ଖାଇଥାଏ ସେତିକି । ପଥଶ୍ରମ କ୍ଲାନ୍ତି ଆଣେ । ନଦୀନାଳ ପାର ହେଲେ ଭୁବନେଶ୍ୱର ନାଗେଶ୍ୱର ଟାଙ୍ଗି ପଡ଼େ, ବିରାଟ ଟାଙ୍ଗି, ଖାଁ ଖାଁ ଲାଗେ । ସେ ଟାଙ୍ଗିରେ ଉଠିପଡ଼ି କେଦାରଗୌରୀ ବାଟଦେଇ ବିନ୍ଦୁସାଗର ପଶ୍ଚିମ ତରଫରେ ଅବସ୍ଥିତ ଗୁଡ଼ିଆ ଦୋକାନରେ ପହଞ୍ଚେ । ସେଠାରୁ ଚୂଡ଼ା ନବାତ ଖାଇ ବଢ଼େଇବାଙ୍କ ଦେଇ ଭୀମଟାଙ୍ଗି ଉପରକୁ ଉଠିଯାଏ । ସେଠାରୁ ସିଧା ରେଳପଥ କଡ଼େକଡ଼େ ଦୁଇ ମାଇଲ ପଥ ଅତିକ୍ରମ କରି ସରକନ୍ତରା ଗାଁ ଭିତରେ ପ୍ରବେଶ କରେ । ଅତ୍ୟଧିକ ରୌଦ୍ରତାପ ସହ୍ୟ କରିନପାରି ବାଟରେ ଏବର ଟେମ୍ପୁଲରୋଡ୍ ରେଲଷ୍ଟେସନ ପାଖ ବିରାଟ ବଟବୃକ୍ଷ ଚାନ୍ଦିନୀ ଉପରେ କିଛି ସମୟ ବିଶ୍ରାମ ନିଏ । ଉକ୍ତ ବଟବୃକ୍ଷ ନିକଟରେ କେହି ଜଣେ ବଦାନ୍ୟ ବ୍ୟକ୍ତି କୂପ ଖନନକରି ପାଣି ଉଠେଇବାପାଇଁ ଲୌହ ଝଞ୍ଜିରି ସହ ବାଲଟିଟିଏ ସଂଯୋଗ କରିଥିଲେ । ସେଠାରେ ତୃଷ୍ଣା ନିବାରଣକରି ପୁଣି ବାଟ ଚାଲେ । ମୋର ସେଇଟା ବଧାଜାଗା । ବହୁ ସମୟରେ ଚାନ୍ଦିନୀ ଉପରେ ବସି ଦମ୍ଭମାରେ । ମୁଣ୍ଡରେ ବୋଝମୁଣ୍ଡାଇ ମନ୍ଥର ଗତିରେ ପୁନଃ ଚାଲେ । ବେଳେବେଳେ ଭୋକରେ ଆଉଟ ପାଉଟ ହେଉଥିଲି । ଅସରାଏ ଲେଖାଏଁ କାନ୍ଦୁଥିଲି । କଷ୍ଟ ନ କଲେ କୃଷ୍ଣ ମିଳନ୍ତି ନାହିଁ ବୋଲି ଗୁରୁଜୀ କହୁଥିଲେ । କାଁଭାଁ କୌଣସି ବାଟୋଇ ହାବୁଡ଼ରେ ପଡୁଥିଲା । ଅସରନ୍ତି ବାଟ । ପିଲାଗୋଡ଼କୁ ସମ୍ଭାଳୁ ନଥାଏ । ବେଳେବେଳେ ପାଟିରୁ ବାହାରିପଡ଼େ ଏତେ କଷ୍ଟ ସହି କ'ଣ ପଢ଼ିବି ?

ସରକତରା ପରେ ପାତ୍ରପଡ଼ା, ତାପରେ ସାହାଣି କାଶୀପୁର ଯୋର ପାରିହୋଇ ବିରାଟ ଗହୀରରେ ପ୍ରବେଶ କରେ । ସେଠାରୁ ମହୁରା ନପୁଟ ଦେଇ ଭୁବନେଶ୍ୱର-ଖୋର୍ଦ୍ଧା ରାଜରାସ୍ତାକୁ ଉଠିଯାଏ । ଯାଁଳା ମାଇନର ସ୍କୁଲ ହତା ପାରହୋଇ ମୁଣ୍ଡମୁହାଣ ଗ୍ରାମପରେ କେତେଗୁଡ଼ିଏ ଗାଁ ପାରିହେଲେ ଆମ ଗାଁକୁ ଯିବାକୁ ହୁଏ । ଅପରାହ୍ଣ ୫ଟା ବେଳକୁ ଘରେ ପହଞ୍ଚ ଦମ୍ଭମାରେ ।

## ମୋର ପରିହାସପ୍ରିୟତା :

ମୁଁ ଅତ୍ୟନ୍ତ ପରିହାସପ୍ରିୟ ଥିଲି । ସାଙ୍ଗ ପିଲାମାନଙ୍କ ସହିତ ସେମାନଙ୍କ ନାଁ ଓ ଗ୍ରାମକୁ ନେଇ ଥଟ୍ଟା ପରିହାସକରେ । ନାଁଗୁଡ଼ିକର ନାନା ଅର୍ଥ କରେ । ଏବେ ମଧ୍ୟ ମୋର ସେ ଗୁଣ ଅଛି । ପିଲାମାନଙ୍କୁ ସାକ୍ଷାତ କଲାବେଳେ ଓ ଅଧ୍ୟାପନା ସମୟରେ ସେମାନଙ୍କର ନାଁ ଓ ଗାଁକୁ ନେଇ ଆକ୍ଷରିକ ଅର୍ଥ ବାହାରକରେ । ଅର୍ଥ ବାହାର କରୁକରୁ ଟାପରା ଆଡ଼କୁ ଗତିକରେ । ମୋର ପଢ଼ାସାଥୀମାନେ ମୋ ଉପରେ ଚିଡ଼ି ଯାଉଥିଲେ । ମୋ ଛାତ୍ରମାନେ ସାହସ କରି ମୋତେ କିଛି ଉତ୍ତର ଦିଅନ୍ତି ନାହିଁ । ମୋ ଉପରେ ମନେ ମନେ ଚିଡ଼ୁଥିବେ । ତେବେ ମୋ ମନରେ ସେପରି କିଛି ଆବିଳତା ନଥାଏ । କାହାକୁ ଆକ୍ଷେପ କରିବା ମୋର ଧର୍ମ ନୁହେଁ ।

## ମାଟ୍ରିକ ପରୀକ୍ଷା କେନ୍ଦ୍ର :

ସେତେବେଳେ ପ୍ରତ୍ୟେକ ଜିଲ୍ଲା ସଦରମହକୁମାରେ ଗୋଟିଏ ଗୋଟିଏ ମାଟ୍ରିକ ପରୀକ୍ଷା କେନ୍ଦ୍ର ଥାଏ । ସମଗ୍ର ଓଡ଼ିଶାରୁ ହଜାରରୁ କମ୍ ପିଲା ବି ପରୀକ୍ଷା ଦେଉଥିବେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ମଧ୍ୟ ଉତ୍ତର ଓଡ଼ିଶାର ଛାତ୍ରଛାତ୍ରୀମାନେ ପାଟଣା ବିଶ୍ୱବିଦ୍ୟାଳୟ ଓ ଦକ୍ଷିଣ ଓଡ଼ିଶାର ଛାତ୍ରଛାତ୍ରୀମାନେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ମାଟ୍ରିକ ପରୀକ୍ଷା ଦେଉଥିଲେ ।

## ଆମ ହାଇସ୍କୁଲରେ ଟେଷ୍ଟ ପରୀକ୍ଷା ଓ ଶିକ୍ଷକମାନଙ୍କର ଚିନ୍ତାଧାରା :

ସେ ବର୍ଷ ଯେତେ ପିଲା ଟେଷ୍ଟ ପରୀକ୍ଷା ଦେଇଥିଲେ, ପୂର୍ବବର୍ଷରୁ ରହିଯାଇଥିବା ପ୍ରଥମ ପିଲା ଜୟରାମ ସୁନ୍ଦରା ବି ସେଥିରେ ଥିଲେ । ଯଦିଓ ମୁଁ ପ୍ରତିବର୍ଷ ପ୍ରଥମ ହୋଇ ଆସୁଥିଲି, ମୋ ପ୍ରତି ଉପଯୁକ୍ତ ନମ୍ବର ପ୍ରଦାନ ନକରି ଜୟରାମକୁ ପ୍ରଥମ କରେଇଦେଲେ । ମୁଁ ଟିକିଏ ମାନସିକ ସ୍ତରରେ ଦବିଗଲି । ସେ ଟେଷ୍ଟ ପରୀକ୍ଷାରେ ମୋଠାରୁ କୋଡ଼ିଏ ନମ୍ବର ଅଧିକ ରଖି ପ୍ରଥମ ହେଲା । ମୁଁ ଶିକ୍ଷକମାନଙ୍କୁ ବା କ'ଣ କହିବି ? ମନେ ମନେ

ଭାବିଲି ଶେଷ ପରୀକ୍ଷାରେ ଏ ସ୍କୁଲରୁ ମୁଁ ନିଶ୍ଚୟ ପ୍ରଥମ ହେବି । ଫଳ ପ୍ରକାଶିତ ହେଲାବେଳକୁ ସତକୁ ସତ ମୁଁ ଜୟରାମ ଠାରୁ କୋଡ଼ିଏ ନମ୍ବରରୁ ଅଧିକ ନମ୍ବର ରଖି ପ୍ରଥମ ହେଲି । ସାରା ଜୀବନଟା ମୋର ଏଇ ପ୍ରକାରର । କାହାକୁ କିଛି କହେ ନାହିଁ; କିନ୍ତୁ ଜିଣିକରି ଆସେ । ସେତେବେଳେ ପରାଧୀନ ଭାରତରେ ପିଲାମାନଙ୍କ ପ୍ରତି ଯେଉଁ ଚିନ୍ତାଧାରା ଥିଲା ଏବେ ସ୍ୱାଧୀନ ଭାରତର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ସେହି ଚିନ୍ତାଧାରା ବିଦ୍ୟମାନ । ସେତେବେଳେ ଯେଉଁ ପାତରଅନ୍ତର ନୀତି ଥିଲା ଏବେ ମଧ୍ୟ ସେହି ନୀତି ଅଛି । ଭିନ୍ନ ଭିନ୍ନ ସ୍କୁଲର ପିଲାଙ୍କ ମଧ୍ୟରେ ନାନା ବିଷୟରେ ପ୍ରତିଦ୍ୱନ୍ଦ୍ୱିତା କରାଯାଉଛି । ମାତ୍ର ନିଜ ପ୍ରିୟ ଛାତ୍ରଛାତ୍ରୀମାନଙ୍କ ପ୍ରତି ନମ୍ବର ଅଧିକ ଦିଆଯାଉଛି । ଏବେ ମୋର ଏ ଉତ୍ତୀର୍ଣ୍ଣ ବୟସରେ ମୁଁ ଅନୁଭବ କରିପାରୁଛି ଜାତୀୟ ପର୍ବ ପାଳନ ଉତ୍ସବରେ ପ୍ରବନ୍ଧ ଓ ବକ୍ତୃତା ପ୍ରତିଯୋଗିତାରେ ବା ଡ୍ରଇଂ ଓ ସଙ୍ଗୀତ ପ୍ରତିଯୋଗିତାରେ ପ୍ରିୟାପ୍ରୀତି ତୋଷଣ ଚାଲିଛି । ପ୍ରତିବାଦ କଲେ ମଧ୍ୟ ବିଶେଷ ଫଳପ୍ରଦ ହେଉନାହିଁ । ଏଥିରୁ ପ୍ରତୀୟମାନ ହୁଏ ସବୁ ଯୁଗରେ ଏହା ଅଛି କିନ୍ତୁ ସେତେବେଳେ ନଗଣ୍ୟ ଥିଲା ଏବେ ବେଶି ପରିମାଣରେ ଦେଖାଯାଉଛି । ସବୁ ସ୍ଥଳରେ ଦୁର୍ନୀତି ତା'ର କାୟା ବିସ୍ତାର କରି ଚାଲିଛି ।

**ମାଟ୍ରିକ ପରୀକ୍ଷା :**

ଆମ୍ଭ ସ୍କୁଲ ପୁରୀ ଜିଲ୍ଲାରେ ଅବସ୍ଥିତ ଥିଲେ ମଧ୍ୟ ନିକଟବର୍ତ୍ତୀ ରେଭେନ୍ସା କଲିଜିଏଟ ସ୍କୁଲ କେନ୍ଦ୍ରରେ ଆମ୍ଭେମାନେ ପରୀକ୍ଷା ଦେଉଥିଲୁ । ସେତେବେଳର ପରୀକ୍ଷା କେନ୍ଦ୍ରଗୁଡ଼ିକରେ କଠୋରତା ବେଶିଥିଲା । ଛଅ ଫୁଟିଆ ଗୋଟିଏ ବେଞ୍ଚରେ ଜଣେ ବା ଦୁଇଜଣ । ଗୋଟିଏ ପରୀକ୍ଷାର୍ଥୀଠାରୁ ଅପର ପରୀକ୍ଷାର୍ଥୀର ଦୂରତ୍ୱ ଥିଲା ପାଞ୍ଚ ଫୁଟ୍ । କେହି କାହାଠାରୁ ଦେଖିବା ବା କାହାକୁ ପ୍ରଶ୍ନ ପଚାରିବା ଦୁରୂହ ବ୍ୟାପାର ଥିଲା । ଗୋଟିଏ ଅଧିବେଶନ ତିନି ଘଣ୍ଟା ପର୍ଯ୍ୟନ୍ତ ଥିଲା । ଲେଖିଲେଖି ଅଣ୍ଟାପିଠି ଲାଗିଗଲେ ମୁଣ୍ଡଟେକି ସଳଖିଲାବେଳକୁ କଲିଜିଏଟର ଶିକ୍ଷକ ଲାଲାବାବୁ ଗର୍ଜନ କରୁଥିଲେ– "ହୁସିଆର" । ସେ ଗର୍ଜନ ମୋ ମନରେ ଭୀତି ସଞ୍ଚାର କରୁଥିଲା । ସେତେବେଳର ତୃତୀୟ ଶ୍ରେଣୀ ମାଟ୍ରିକ ପାସ୍ ପିଲା ବର୍ତ୍ତମାନ ପ୍ରଥମ ଶ୍ରେଣୀ ପାସ୍ ପିଲାଠାରୁ ବି ଉତ୍କୃଷ୍ଟ । ଏବେ ପିଲାସଂଖ୍ୟା ହଜାର ଗୁଣରେ ବଢ଼ିଛି ଏବଂ ପରୀକ୍ଷାକେନ୍ଦ୍ର ବି ଅନେକ । କେଉଁଠି ବସିବାର ସୁବିଧା ଅଛି ତ କେଉଁଠି ନାହିଁ । ସିଟ୍‌ଗୁଡ଼ିକ ଦୁଇ ତିନିଫୁଟ ଅନ୍ତରରେ ପଡୁଛି । ସ୍ଥାନାଭାବକୁ ଆସବାବପତ୍ରର ଅଭାବ । କପି କରିବାକୁ ସୁବିଧା ମିଳୁଛି ପୁଲିସ୍ କିନ୍ତୁ ପଇଁତରା ମାରିବାରେ ଅଭାବ ନାହିଁ । ସେତେବେଳେ ପରୀକ୍ଷାର୍ଥୀ

ଓ ତା'ର ଅଭିଭାବକ କପିକୁ ଘୃଣା କରୁଥିଲେ । କିନ୍ତୁ ଆଜିକାଲି ଫେଲ ହେବା ପିଲାଠାରୁ ଆରମ୍ଭକରି ପ୍ରଥମ ଶ୍ରେଣୀରେ ପାସ୍ କରିବାକୁଥିବା ପିଲା ମଧ କପିକରି କିଛି ଅଧିକ ନମ୍ବର ରଖିବାକୁ ବ୍ୟାକୁଳ । ମାଇନର ପରୀକ୍ଷାରେ ପାଞ୍ଚଶହ ପଚାଶ ନମ୍ବରରୁ ଅଶୀ ନମ୍ବର ରଖିଲେ ପାସ୍ ହୋଇଯାଉଛି । ସେହିପିଲା ଅଷ୍ଟମକୁ ଆସିଲାବେଳକୁ ଇଂରାଜୀ ଛବିଶଟି ଅକ୍ଷର ଭଲରୂପେ ଶିଖି ନାହିଁ କି ଗଣିତରେ ଗୁଣନ-ହରଣ ଜାଣି ନାହିଁ । ସେ ପିଲା ବା କି ପାଠ ପଢ଼ିବ ? ଏଣେ ଶିକ୍ଷକମାନେ ପୂର୍ବାପେକ୍ଷା ଶ୍ରେଣୀରେ ପଢ଼େଇବାରେ ମନଧ୍ୟାନ ଦେଉନାହାଁନ୍ତି କେବଳ ଟିଉସନ ରୋଗ ଦ୍ରୁତଗତିରେ ବଢ଼ିଯାଉଛି । ଯେଉଁ ଶିକ୍ଷକ ଦୁଇଓଳି ଅଶୀ ପିଲା ଟିଉସନ କରି ଦରମାଠାରୁ ଅଧିକ ଉପାର୍ଜନ କରୁଛନ୍ତି ସେମାନେ ଶ୍ରେଣୀରେ କିପରି ପଢ଼ାଇବେ ? ଶିକ୍ଷାର ମାନ କମିବାରେ ଲାଗିଛି । ତୁଳନା କଲେ ସେକାଳ ଏକାଳ ମଧ୍ୟରେ ଢେର୍ ପାର୍ଥକ୍ୟ ପରିଲକ୍ଷିତ ହେଉଛି । ଏବେ ଦୁଇ ବର୍ଷ ହେଲା କେବଳ ଦଶମ ଶ୍ରେଣୀର ପାଠ୍ୟ ଶେଷ ପରୀକ୍ଷାରେ ପଡୁଛି । କପି କରିବାର ସୁଯୋଗ କମିଯାଇଛି ସତ କିନ୍ତୁ ତିନିପ୍ରକାର ସେଟ୍ ପ୍ରଶ୍ନପତ୍ରରେ ସମାନତା ନ ରହିବାରୁ କେତେକ ହତଭାଗା ଛାତ୍ର ବୃଥା କଷ୍ଟଭୋଗ କରୁଛନ୍ତି ।

ପରୀକ୍ଷାରେ ଖାତା କାହାପାଖେ ପଡ଼ିଲା ପରୀକ୍ଷାର୍ଥୀଙ୍କ ଅପେକ୍ଷା ବାପମା' ଅଧିକ ଜାଗତିଆର । ଯଦି କୌଣସି ଅଫିସରଙ୍କର ପିଲା ହେଲା ତେବେ ସେ ନାନା ଉପାୟରେ ପ୍ରଭାବ ବିସ୍ତାର କରନ୍ତି । ସେତେବେଳେ ହଜାରେ ପିଲା ପରୀକ୍ଷା ଦେଉଥିଲେ, ବର୍ତ୍ତମାନ ତିନି ଲକ୍ଷ ପିଲା ପରୀକ୍ଷା ଦେଉଛନ୍ତି ।

ଜନସଂଖ୍ୟା ବୃଦ୍ଧି ଯେପରି ଦୁର୍ଗତିର କାରଣ, ପିଲାସଂଖ୍ୟା ବୃଦ୍ଧି ସେହିପରି ନାନା ବିଶୃଙ୍ଖଳା ସୃଷ୍ଟି କରୁଛି । ପ୍ରଥମ ଶ୍ରେଣୀରେ ନାଁ ଲେଖାଇଲା ବେଳେ ଯେଉଁ ପିଲା ପଢ଼ିଲା, ବାଟରେ କୌଣସି ପ୍ରତିବନ୍ଧକ ନଥିବାରୁ ସେ ସିଧା ମାଟ୍ରିକ ପରୀକ୍ଷାରେ ବସୁଛି । ତେଣୁ ଫେଲ ସଂଖ୍ୟା ବି ଅଧିକ । ରାଜନୀତିଆ ଲୋକେ ଭୋଟ ପାଇବା ଆଶାରେ ସ୍କୁଲ ସଂଖ୍ୟା ବଢ଼େଇବାରେ ଲାଗିଛନ୍ତି ଅଥଚ ସ୍କୁଲରେ ତିନିଗୋଟି ଶ୍ରେଣୀରେ ଷାଠିଏଟି ପିଲା ନାହାନ୍ତି । ଏପରି ବିଦ୍ୟାଳୟ ସରକାର ଉପରେ ଆର୍ଥିକ ବୋଝ ପକାଉବାରେ ଲାଗିଛନ୍ତି । ଶିକ୍ଷାର ମାନ କମିକମି ଆସୁଛି । ଲୋକଚରିତ୍ରର ଅଧଃପତନ ଦେଶକୁ ରସାତଳଗାମୀ କଲାଣି । ଦେଶର ବଡ଼ପଣ୍ଡାମାନେ ପଞ୍ଚାବନ ବର୍ଷପରେ ମଧ ଶିକ୍ଷାନୀତି ସ୍ଥିର କରିପାରୁନାହାନ୍ତି । ଖଡ଼ା-ବଡ଼ି-ଥୋଡ଼ ଥୋଡ଼-ବଡ଼ି-ଖଡ଼ା ନୀତି ଚାଲିଛି । ମାଟ୍ରିକ୍ ପାସ୍ ପିଲା ଇଂରାଜୀରେ ଏପରିକି ନିଜ ମାତୃଭାଷାରେ ଦରଖାସ୍ତ

ଖଣ୍ଡିଏ ଲେଖିବାକୁ ସମର୍ଥ ହେଉନାହାନ୍ତି । ବହୁବାର ପ୍ରଶ୍ନ ବିଭ୍ରାଟ ଘଟୁଛି । ଅଧ୍ୟାପକ ବା ଅଧକ୍ଷ ସେଥିରେ ଜଡ଼ିତ ହେଉଛନ୍ତି । ବୋର୍ଡ଼ ଅଫିସର କିରାଣି, କେତେକ ସ୍କୁଲ ହେଡ୍‌ମାଷ୍ଟର ଓ କେତେକ ସର୍କଲ ଇନସ୍‌ପେକ୍ଟର ଦୁର୍ନୀତିରେ ଲିପ୍ତ ରହୁଥିବାର ବାରମ୍ବାର ସମ୍ବାଦପତ୍ରରେ ପ୍ରକାଶିତ ହେଉଛି । ଏସବୁ ଦୁର୍ନୀତି ଦୂର କରିବାକୁ ହେଲେ ଉପରସ୍ତରରୁ ବିଶେଷତଃ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ସାଂସଦ, ବିଧାୟକ ଓ ବଡ଼ ବଡ଼ ଅଫିସରଙ୍କ ଆଶୁ ଚେଷ୍ଟା ନହେଲେ ଦେଶ ଧ୍ୱଂସମୁଖୀ ହେବ ।

**କଟକ ପରୀକ୍ଷା କେନ୍ଦ୍ର :**

ଭିଙ୍ଗାରପୁର ଗ୍ରାମଠାରୁ କଟକ କୋଡ଼ିଏ କି.ମି. ରାସ୍ତା । ଆମ୍ଭେମାନେ ଦୁଇ ତିନି ଖଣ୍ଡି ଶଗଡ଼ଗାଡ଼ିରେ ନଖରା ଦେଇ ଜଗନ୍ନାଥରୋଡ଼ରେ କଟକ ଯାତ୍ରାକଲୁ । ପୁରୀଘାଟଠାରେ କାଠଯୋଡ଼ି ପାରିହୋଇ ସହର ଭିତରେ ପ୍ରବେଶ କଲୁ । ଚଉଧୁରୀ ମହାଶୟଙ୍କ ଅଟ୍ଟାଳିକାରେ ଆଶ୍ରୟ ନେଲୁ । ଚାରି ଦିନପରେ ପରୀକ୍ଷା ଶେଷ ହେଲା । ଆଜିକାଲି ସେହି ପରୀକ୍ଷା ପାଇଁ ନଅଦିନ ଲାଗୁଛି । ପୂର୍ବରୁ କଟକ ସହର ଦେଖିବାର ସୁଯୋଗ ମିଳିନଥିଲା । ପରୀକ୍ଷା ଶେଷଦିନ କଟକ ସହରର ପରୀକ୍ଷାର୍ଥୀମାନେ ମଫସଲରୁ ଆସିଥିବା ପରୀକ୍ଷାର୍ଥୀମାନଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ଭବିଷ୍ୟତରେ କ'ଣ ସେମାନେ କରିବେ ଉଦ୍‌ବୋଧନ ଦେଲେ । ସେବର୍ଷ ପରୀକ୍ଷାର୍ଥୀ ବାବୁ ଗଙ୍ଗାଧର ରଥ ଜଣେ ଛାତ୍ରନେତା ହିସାବରେ ଗୋଟିଏ ସାରଗର୍ଭକ ଭାଷଣ ପ୍ରଦାନ କଲେ । ତାଙ୍କ ଭାଷଣଟି ଗତାନୁଗତିକ ହେଲେ ମଧ୍ୟ ସମୟ ଉପଯୋଗୀ ଭାଷଣ ଥିଲା । ଗଙ୍ଗାଧରବାବୁ ପରବର୍ତ୍ତୀକାଳରେ ଓଡ଼ିଶାର ଆଡ଼ଭୋକେଟ-ଜେନେରାଲ ହୋଇ ବିପୁଳ ସମ୍ପତ୍ତିର ଅଧିକାରୀ ହେଲେ ଏବଂ ଏକ ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କଲେ । ଗଙ୍ଗାଧରବାବୁ ବାଗଲପୁରର ଅଧିବାସୀ । ସାହିତ୍ୟିକ ଚିତ୍ତରଞ୍ଜନ ଦାସ ତାଙ୍କ ଗ୍ରାମର । ଏ ଉଭୟ ସହପାଠୀ । ସେଦିନ ସମ୍ବର୍ଦ୍ଧନା ସଭା ଏକ ଉତ୍ତମ ପରମ୍ପରା ସୃଷ୍ଟି କରିଥିଲା । ଏବେ ଏପରି ସଭାର ଆୟୋଜନ କେଉଁଠି ହେବାର ମୋ ନଜରକୁ ଆସି ନାହିଁ । ସେଦିନ କଟକ ଛାଡ଼ିବା ସମୟରେ ଆମ ସାଙ୍ଗପିଲାଙ୍କ ଭିତରେ କ୍ରନ୍ଦନର ସୁଅ ଛୁଟିଲା । ବହୁଦିନ ଏକତ୍ର ବାସ କରୁଥିବାରୁ ଏକ ସ୍ନେହମୟ ବନ୍ଧନରେ ବାନ୍ଧିହୋଇ ପଡ଼ିଥିଲୁ । ପ୍ରୀତିବନ୍ଧନ ଯେତିକି ଆନନ୍ଦଦାୟକ ବିଚ୍ଛେଦ ସେତିକି ଦୁଃଖଦାୟକ । ମୋ ଜୀବନର ଆନନ୍ଦ ସରି ସରି ଗଲା ।

## ଉପରକୁ ପଢ଼ିବାର ପନ୍ଥା କ'ଣ ? :

୧୯୪୧ ମସିହାରେ ମୁଁ କୃତିତ୍ୱର ସହ ମାଟ୍ରିକ୍ ପାସ୍‌କଲି । ଗୋଟିଏ ଗଡ଼ ଜିଣିଲାପରି ଏ ଅଭାଗାକୁ ବୋଧହେଲା । କଥାରେ ଅଛି ଅଭାଗା ଯୁଆଡ଼େ ଯାଏ ସାଗର ଶୁଖିଯାଏ । ଉପରକୁ ପଢ଼ିବାପାଇଁ ପ୍ରବଳ ଆଗ୍ରହ କିନ୍ତୁ ହାଣ୍ଡିରେ ଧଣ୍ଡ ଡେଉଁଛି । ଘରେ ତ ଫଟା ପାହୁଲାଟିଏ ନାହିଁ । କଲେଜ ପାଠ କେଉଁଠି, ମୁଁ କେଉଁଠି ? ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼େଇବି କାହିଁକି ? ମାଟ୍ରିକ୍ ପରୀକ୍ଷା ଦେଇ ଗୁରୁଜୀ ଅଦ୍ୱୈତବାବୁ ମାସିକ ବାର ଟଙ୍କା ବେତନରେ ଦୁଇ ମାସ ଯାଁଳା ସ୍କୁଲରେ ରଖାଇଥିଲେ । ମୁଁ ତାଙ୍କ ଋଣ ଶୁଝିପାରିବି ନାହିଁ । କିଛିଟା ତ ପଇସା ହାତକୁ ଆସିଲା ! ଧନ ମନରେ ବଳପ୍ରଦାନ କରିଥାଏ ।

## ଋଣ ଶୁଝିବା ପାଇଁ ଚେଷ୍ଟା କଲି :

ମାଟ୍ରିକ ପରୀକ୍ଷା ପରେ ସାଙ୍ଗମାନେ ବହୁ କନ୍ଦାକଟା କରି ଯେଝା ଘରକୁ ଯେ ଗଲେ । ମୁଁ ରେଳପଥରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲି । ଗାଁରେ ଦୁଇମାସ କଟାଇଲି । ଯାଁଳା ମାଇନର ସ୍କୁଲରେ କିଛିଦିନ ଆଶ୍ରୟ ନେଲି ।

ଦିନେ ଅଟଳ ବିହାରୀ ଆସି ମୋ ପାଖେ ହାଜର । ସେ ମୋତେ ତା ଗ୍ରାମକୁ ନେଇଯିବାକୁ ଚାହିଁଲା । ସେ ସପ୍ଲିମେଣ୍ଟାରୀ ପରୀକ୍ଷା ଦେବ । ମୁଁ ପଦବ୍ରଜରେ ସିଧା ବାଟରେ ଭିଙ୍ଗାରପୁରଠାରୁ ନଈ, ନାଳ, ଗହୀର ଅତିକ୍ରମ କରି ଗ୍ରାମ ବାଗଲପୁରରେ ପହଞ୍ଚିଲି । କଂଗ୍ରେସର ଜଣେ ବଳିଷ୍ଠ କର୍ମୀ ଗୌରାଙ୍ଗ ଦାସ ଥାଆନ୍ତି । ତାଙ୍କର ଗୋଟିଏ ପାପୁଲି କେମ୍ପା । ବାଗଲପୁରରେ ଦାସ ସଂଜ୍ଞାଧାରୀ ବହୁ କରଣ ଅବସ୍ଥାନ କରନ୍ତି । ଲେଖକ ପ୍ରଫେସର ଚିତ୍ତରଞ୍ଜନ ଦାସ ଓ ଆଡଭୋକେଟ୍-ଜେନେରାଲ ଗଙ୍ଗାଧର ରଥଙ୍କ ବାସସ୍ଥାନ ଏହି ଗ୍ରାମରେ । ବିଲୁଆଖାଇ ନଦୀ ଓ ଅନ୍ୟାନ୍ୟ କ୍ଷୁଦ୍ର କ୍ଷୁଦ୍ର ନଦୀଗୁଡ଼ିକର ଉର୍ବର ମାଟି ଏହି ଗ୍ରାମକୁ ସାରାବର୍ଷ ଶସ୍ୟଶ୍ୟାମଳା କରି ରଖିଥାଏ । ଜମିଗୁଡ଼ିକ ଯେପରି ଉର୍ବର ଅଧିବାସୀମାନଙ୍କ ମସ୍ତିଷ୍କ ସେହିପରି ଉର୍ବର । ସେତେବେଳୁ ସେ ଗ୍ରାମରେ କେବଳ ମାଇନର ସ୍କୁଲଟିଏ ଥିଲା ।

ସେଦିନ ଅଟଳ ବିହାରୀର ପୁଣ୍ୟମୟୀ ମା, ଓଡ଼ିଆ ଘର ପାରମ୍ପରିକ ପିଠାପଣାରେ ମୋତେ ଆପ୍ୟାୟିତ କରିଥିଲେ । ଅଟଳବିହାରୀ ମୋତେ ଗାଁଠାରୁ ଦୁଇ କି.ମି. ଦୂରରେ ମୋର ମାଟ୍ରିକ ପଢ଼ା ସାଥୀ କୈଳାସ ପଟ୍ଟନାୟକଙ୍କ ଗାଁ ମଣ୍ଡାସାହି ନିକଟବର୍ତ୍ତୀ ଏକ ସ୍ଥାନରେ ତା ବନ୍ଧୁଙ୍କ ଗୃହରେ ଅବସ୍ଥାନ କରାଇଲେ । ଅଟଳବିହାରୀ

ପ୍ରଥମେ ପ୍ରଥମେ କେତେଦିନ ଆସିଲେ । ତପ୍‌ରେ କେତେବେଳେ ଗଲେ ତ କେତେବେଳେ ଗଲେ ନାହିଁ । ମୁଁ ତ କର୍ମନିଷ୍ଠ । ତାଙ୍କୁ ବିରକ୍ତ ହେଲି । ନିଛାଟିଆ ଜାଗାରେ ରହୁଥିବାରୁ ଦିନେ ରାତ୍ରିକାଳରେ ସେ କୋଠରିରୁ ସାହସ ସହକାରେ ଚାଲିଆସି ପାଖ ମଠରେ ଆଶ୍ରୟ ନେଲି । ପ୍ରତିଦିନ ମୁଁ ପାଠ ପଢ଼େଇବା ପାଇଁ ପ୍ରସ୍ତୁତ ହୋଇଥାଏ, ମାତ୍ର ଅଟଳ ବାବୁ କାହାନ୍ତି ? ଏପରି ଅଧାପନ୍ତରିଆ ପାଠ ପଢ଼ାଇବି କ'ଣ ? ଏଥିରେ କ'ଣ କୃତିତ୍ୱ ହାସଲ ହୋଇପାରେ ?

ବାବାଜୀ ପାଖେ ତ ଥାଏ । ସେଠାରେ ଅରୁଆଅନ୍ନ, ଡାଲମା, ଗବ୍ୟଘୃତରେ ଗୋଟା କଲାରା ଭଜା ଖୁବ୍ ସୁସ୍ୱାଦ ଲାଗେ । ମାତ୍ର କହ୍ନେଇ ତ ନାହିଁ, ଗୁହାଳ କା ପାଇଁ ? ବାବାଜୀ ହାତ ଦେଖେ । କହେ, ''ତୁ ଶଳା ବେ ପାସ୍ କରିବୁ ।'' ମୋ ପରି ଏକ ଅନାଥ ଅସହାୟ ବାଳକ ଭାବେ ଏହା କ'ଣ ସମ୍ଭବ ? ବାବାଜୀ ଅଫିମ ଖାଏ । ବି.ଏ. ପାସ୍ କଲେ ଅଫିମ ଟେଲାଏ ଦେବି ବୋଲି ପ୍ରତିଜ୍ଞା କରେ । ମାତ୍ର out of sight out of mind ନ୍ୟାୟରେ ଆଉ ବାବାଜୀ କଥା ମନେ ରହିଲା ନାହିଁ ।

ଅଟଳର ତ ପାଠପଢ଼ାରେ ବାଗବାଇଣ ରହିଲାନାହିଁ । ମୋର ଋଣଶୁଝା ନୋହିଲା । ରଜ ପାଖ ହୋଇଗଲା, ବୋଉ କଥା ମୋର ମନେପଡ଼ିଲା । ଅଟଳ ଓ ତା' ମା'ଙ୍କ ଠାରୁ ବିଦାୟ ନେଇ ସଡ଼କ ଓ ରେଳପଥରେ ଗୃହକୁ ପ୍ରତ୍ୟାବର୍ତ୍ତନ କଲି ।

**ଦ୍ୱିତୀୟ ମହାସମର ପ୍ରାରମ୍ଭ କାଳ :**

ଦଶମ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ୧୯୩୯ ମସିହା ସେପ୍ଟେମ୍ବର ଦୁଇ ତାରିଖରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇଗଲା । ଏକ ପକ୍ଷରେ ଜର୍ମାନୀ, ଇଟାଲି ଓ ଜାପାନ ଅକ୍ଷଶକ୍ତି; ଅପର ପକ୍ଷରେ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ ପ୍ରଭୃତି ମିତ୍ରଶକ୍ତି ଯୁଦ୍ଧରେ ଯୋଗଦେଲେ । ଭାରତରେ ଭାଇସରାୟ ଲର୍ଡ ଲିନ୍‌ଲିଥ୍‌ଗୋ ସରକାର ଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳର ମତ ନ ନେଇ ଯୁଦ୍ଧରେ ଯୋଗଦାନ କରିଥିବାରୁ କଂଗ୍ରେସୀ ମନ୍ତ୍ରୀମାନେ ଇସ୍ତଫା ପ୍ରଦାନ କଲେ । ପ୍ରଦେଶମାନଙ୍କରେ ପୁଣି ଗଭର୍ଣ୍ଣର ଶାସନ ଚାଲିଲା । ହାବାକ୍ ଯାଇ ହଥର୍ଣ୍ଣଲୁଇ ଗଭର୍ଣ୍ଣର ହୋଇ ଆସିଲେଣି । ବାଉଁଶ ଠେଙ୍ଗାରେ ବେଜେଲଗେଟଙ୍କୁ ହତ୍ୟାକରି ରଣପୁର ପୃଥିବୀ ଇତିହାସରେ ନାଁ ରଖିଥାଏ । ଏପରିକି ଜର୍ମାନ ଶାସକ ହର୍ ହିଟଲର ବ୍ରିଟିଶ ଜାତିକୁ ଆକ୍ଷେପକରି କହିବାର ଶୁଣାଗଲା, ''ବ୍ରିଟିଶ ଜାତି କେତେ ନିର୍ଲଜ୍ଜ, କୁକୁର ମାଙ୍କଡ଼ପରି ଭାରତରେ ବାଡ଼ିଆ ଖାଉଛନ୍ତି ଅଥଚ ଗାଦି ଛାଡୁନାହାଁନ୍ତି ।'' ଦେଶର ଅବସ୍ଥା ସରଗରମ । ବ୍ରିଟିଶ ଜାତି ବା ମିତ୍ରଶକ୍ତି ସବୁଠାରେ କିଛି ପଦକ୍ଷେପ ନେବାପାଇଁ କୁଣ୍ଠିତ ହେଉଥାଏ ।

ଏଣେ ଭାରତର ମୁକ୍ତି ସଂଗ୍ରାମ ପାଇଁ ସଶସ୍ତ୍ର ବିଦ୍ରୋହ ଆବଶ୍ୟକ ବୋଲି ଆଜନ୍ମ ବିପ୍ଳବୀ ସୁଭାଷ ବୋଷ କହୁଥାଆନ୍ତି । ସେ କଲିକତାରେ ତାଙ୍କ ଗୃହରେ ନଜରବନ୍ଦୀରେ ଥିଲେ । ଦିନେ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲେ । ଦେଶସାରା ହୁଲସ୍ଥୁଲ ପଡିଗଲା । ସେ ଯାଇ ଜର୍ମାନୀରେ ହିଟଲର ପାଖରେ । ୧୯୪୧ ମସିହା ମାର୍ଚ୍ଚ ମାସ କଥା । ଦେଶର ଅବସ୍ଥା ଏହିପରି ସଙ୍ଗୀନ ଥିବା ସମୟରେ ମୁଁ ଐତିହାସିକ, ପରମ୍ପରା ବିଜଡ଼ିତ ରେଭେନ୍ସା କଲେଜରେ ପାଠ ପଢ଼ିବି ? ଏହା ଧୃଷ୍ଟତା ମାତ୍ର । ଏପରି ମହାନ୍ କଲେଜ କଥା ଚିନ୍ତା କଲାବେଳେ ଅତୀତର ବହୁସ୍ମୃତି ମନ ରାଜ୍ୟରେ ଜାଗିଉଠିଲା ।

## ରେଭେନ୍ସା କଲେଜର ପ୍ରାଚୀନତା :

ଓଡ଼ିଶାର ଏକମାତ୍ର ପୂର୍ଣ୍ଣାଙ୍ଗ କଲେଜ ରେଭେନ୍ସା କଲେଜ । ସାରା ଭାରତରେ ଏକ ପ୍ରଖ୍ୟାତ କଲେଜ । ମହାମନା ରେଭେନ୍ସାଙ୍କ ନାମରେ ଏହା ନାମିତ । ୧୮୬୮ ମସିହା ଜାନୁଆରୀ ୨୦ ତାରିଖରେ କଲେଜର ଗୋଟିଏ ଶ୍ରେଣୀ ଛଅଜଣ ପିଲାଙ୍କୁ ନେଇ କଟକ ଜିଲ୍ଲାସ୍କୁଲରେ ଖୋଲିଲା । ୧୮୭୫ ମସିହାରେ ବଙ୍ଗଳା ପ୍ରେସିଡେନ୍ସିର ଲେଫ୍ଟନାଣ୍ଟ ଗଭର୍ଣ୍ଣର ରିଚାର୍ଡ଼ ଟେମ୍ପଲ ଓଡ଼ିଶା ପରିଦର୍ଶନରେ ଆସିଥିବାବେଳେ କଟକର ବୁଦ୍ଧିଜୀବୀମାନେ ଶିକ୍ଷାପ୍ରସାର ପାଇଁ ତାଙ୍କୁ ଆବେଦନ କରିଥିଲେ । ଓଡ଼ିଶାରେ କଲେଜଟିଏ ହେଉ ଗଭର୍ଣ୍ଣର ଚାହୁଁଥିଲେ । ତେଣୁ ଓଡ଼ିଶାର ତତ୍କାଳୀନ କମିଶନର ରେଭେନ୍ସା ସାହେବଙ୍କୁ ଆଶୁ ପଦକ୍ଷେପ  ନେବାକୁ ନିର୍ଦ୍ଦେଶ ଦେଲେ । କଟକ ହାଇସ୍କୁଲର ତତ୍କାଳୀନ ପ୍ରଧାନ ଶିକ୍ଷକ ତ୍ୟାଗୀ, କର୍ତ୍ତବ୍ୟପରାୟଣ ସାମୁଏଲ ଏଗର ଏହି  ପ୍ରସ୍ତାବିତ କଲେଜର ପ୍ରିନ୍ସପାଲ ପଦରେ ରହିବାପାଇଁ ବଙ୍ଗସରକାରଙ୍କୁ ସୁପାରିଶ କରିଥିଲେ । ସେତେବେଳେ ଓଡ଼ିଶାରେ ବଙ୍ଗଳାମାନେ ଓଡ଼ିଆଭାଷାକୁ ଲୋପକରିବାକୁ ଚେଷ୍ଟାକରି ''ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନଏ'' କହି ଆନ୍ଦୋଳନ ଚଳାଇଲେ । କାନ୍ତିଲାଲ ଭଟ୍ଟାଚାର୍ଯ୍ୟ ଓ ରାଜେନ୍ଦ୍ରଲାଲ ମିତ୍ର ଏହି ଆନ୍ଦୋଳନର ପୁରୋଭାଗରେ ଥିଲେ । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷରୁ ଉତ୍କଳ ଦୀପିକାର ଜନ୍ମ । ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟ ଓଡ଼ିଆ ଭାଷା ରକ୍ଷାକରିବା ପାଇଁ ସମ୍ମୁଖ ସମରରେ ଉଭାହେଲେ । ବାଲେଶ୍ୱରର ତତ୍କାଳୀନ କଲେକଟର ବୀମସ୍ ସାହେବ ୧୮୭୦ ମସିହାର ମେ ମାସ ଚଉଦ ତାରିଖରେ ଏସିଆଟିକ ସୋସାଇଟି ଦୃଢ଼ଯୁକ୍ତି ଦେଖାଇ ପ୍ରମାଣ କରିଦେଲେ ଯେ ଓଡ଼ିଆ ଏକ ପ୍ରାଚୀନ ସମୃଦ୍ଧ ଭାଷା । ଏହା ହିନ୍ଦୀ ଓ ବଙ୍ଗଭାଷାଠାରୁ ପ୍ରାଚୀନ । ବଙ୍ଗାଳୀମାନଙ୍କର ମୁହଁ  ବନ୍ଦ ହୋଇଗଲା । ବଙ୍ଗାଳୀ-ଓଡ଼ିଆ ଭାଷା ବିବାଦ ଯୋଗୁଁ ରେଭେନ୍ସା ସାହେବ କୌଣସି  ବଙ୍ଗାଳୀଙ୍କୁ କଟକ କଲେଜରେ ପ୍ରଥମ ପ୍ରିନ୍ସପାଲ ଭାବେ ନିଯୁକ୍ତି ନ ଦେବା

ପାଇଁ ବଙ୍ଗ ସରକାରଙ୍କୁ ଲେଖିଲେ । ସାମୁଏଲ ଏଗରଙ୍କୁ ପ୍ରଥମ ପ୍ରିନ୍‌ସପାଲ ରୂପେ ନିଯୁକ୍ତି ଦେଲେ । ଏଗର ସାହେବ ମାସିକ ତିନି ଶହ ପଚାଶ ଟଙ୍କା ବେତନରେ ଏହି ପଦରେ ରହିଲେ । ୧୮୭୬ ମସିହାରେ ଏଗର ସାହେବ ଡିଗ୍ରୀ କଲେଜରେ ଅଧକ୍ଷ ହେଲେ । ମାତ୍ର ଫଳ ସନ୍ତୋଷଜନକ ନହେଲେ କଲେଜର ସ୍ୱୀକୃତି କାଢ଼ିନିଆଯିବ ବୋଲି ସର୍ତ୍ତ ରହିଥିଲା । ମୟୂରଭଞ୍ଜର ତତ୍କାଳୀନ ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେଓ ୧୮୭୮ ମସିହାରେ କଲେଜ ପାଇଁ ଏକକାଳୀନ କୋଡ଼ିଏ ହଜାର ଟଙ୍କା ଦାନକଲେ ଏବଂ କଲେଜର ନାମ ରେଭେନ୍ସାଙ୍କ ନାମରେ ନାମିତ ହେଉ ବୋଲି ପ୍ରସ୍ତାବ ଦେଲେ । ମହାରାଜାଙ୍କ ପ୍ରସ୍ତାବ ସାଦରେ ଗୃହୀତ ହେଲା । ପୁନଃ ୧୯୨୦ ମସିହାରେ ଏହି କଲେଜରେ ଇଂରାଜୀ ଏମ.ଏ. ଶ୍ରେଣୀ ଖୋଲିବା ପାଇଁ ସୋନପୁରର ମହାରାଣୀ ପାର୍ବତୀ ଦେବୀ ଏକକାଳୀନ ପଚାଶ ହଜାର ଟଙ୍କା ଦାନକରି ଓଡ଼ିଶାବାସୀଙ୍କର ଚିରସ୍ମରଣୀୟ ହୋଇ ଅଛନ୍ତି । କଲିକତା ବିଶ୍ୱବିଦ୍ୟାଳୟରେ ପାଣ୍ଠିରଖି ଓଡ଼ିଆରେ ଏମ୍.ଏ. ଖୋଲିବାରେ ସୋନପୁରର ଅବଦାନ ଉଲ୍ଲେଖନୀୟ ।

ଏଣେ ରେଭେନ୍ସା କଲେଜରେ କେହି ବି.ଏ. ପାସ୍ କରିନପାରିବାରୁ ଏଗର ସାହେବ କଟୁ ସମାଲୋଚନାର ଶରବ୍ୟ ହେଲେ । ମାତ୍ର ୧୮୮୦ ମସିହାରେ ବାବୁ ଦୁର୍ଗାଚରଣ ସାହୁ ରେଭେନ୍ସା କଲେଜର ପ୍ରଥମ ଗ୍ରାଜୁଏଟ ହିସାବରେ ଅଧକ୍ଷଙ୍କର ସମ୍ମାନ ରକ୍ଷା କରିବାରୁ ଓଡ଼ିଶାବାସୀଙ୍କ ନିକଟରେ ଅଭିନନ୍ଦନର ପାତ୍ର ହେଲେ । ୧୯୨୦ ମସିହାରେ ଉକ୍ତ କଲେଜର ନୂତନ ସୌଧ ରେଳଷ୍ଟେସନ ନିକଟରେ ନିର୍ମାଣ କରାଗଲା । ଏଗର ସାହେବଙ୍କ ତ୍ୟାଗ ନିଷ୍ଠାବଳରେ କଟକ ଜିଲ୍ଲା ସ୍କୁଲରେ ଯେଉଁ ଚାରାଟି ୧୮୬୮ ମସିହାରେ ରୋପଣ କରାଯାଇଥିଲା ୧୯୪୧ ମସିହା ବେଳକୁ ତାହା ଏକ ବିରାଟ ବଟବୃକ୍ଷରେ କଟକ ରେଳଷ୍ଟେସନ ପାଖ ଚାଉଳିଆଗଞ୍ଜରେ ଦଣ୍ଡାୟମାନ ହୋଇଛି । ମୁଁ କ'ଣ ସେହି ଐତିହ୍ୟସମ୍ପନ୍ନ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କରିପାରିବି ? ଅହେତୁକ ଭାବନା ମୋ ବାଳୁତ ମନରେ ସବର୍ଦା ଉଙ୍କି ମାରିଲା ।

## କଲେଜରେ ପାଠପଢ଼ା

### ଚାଳିଶ ଟଙ୍କା ଓ ପନ୍ଦର ସେର ଚାଉଳ :

୧୯୪୧ ମସିହା ମଧ୍ୟଭାଗକୁ ଦ୍ୱିତୀୟ ମହାସମର ଚରମ ସୀମାରେ ପହଞ୍ଚିଥିଲା । ମାତ୍ର ଭାରତବର୍ଷରେ ଯୁଦ୍ଧର ବିଭୀଷିକା ବିଶେଷ ଅନୁଭୂତ ହୋଇନଥିଲା । ଯୁଦ୍ଧର ତାଣ୍ଡବଲୀଳା ସମ୍ବାଦପତ୍ରରୁ ଆମ୍ଭେମାନେ ଜାଣିପାରୁଥିଲୁ । ଗାନ୍ଧିଜୀ

ଦେଶକଥା ଚିନ୍ତାକରି ବ୍ୟଥିତ ହୋଇ ପଡ଼ିଥାଆନ୍ତି । କଂଗ୍ରେସ ନେତୃବୃନ୍ଦ କିଛି କୂଳକିନାରା ପାଉନଥାନ୍ତି, ବିଦେଶୀ ସରକାରଙ୍କର ଯୁଦ୍ଧନୀତିକୁ ଭାରତୀୟ ଜନଗଣ ସମର୍ଥନ କରୁନଥାନ୍ତି । ଦେଶର ଅବସ୍ଥା ଏହିପରି ସଙ୍ଗୀନ ଥିବାବେଳେ ମୁଁ ରେଭେନ୍ସା କଲେଜରେ ପଢ଼ିବାପାଇଁ ବ୍ୟାକୁଳ ହେଲି । ମୋର ଦୁଇ ବଡ଼ଭାଇ ମହାଜନଠାରୁ ଦୁଇ ଚାରିମାଣ ଜମି ଧୂଳିଭାଗରେ ଧରିଥାଆନ୍ତି । ଧାନ ଟଙ୍କାରେ ୩ ସେରିଆର ଦଶ ଗୌଣୀକୁ ଖସି ଆସିଲାଣି । କଲେଜରେ ନାଁ ଲେଖାଇବାପାଇଁ ଏକକାଳୀନ କୋଡ଼ିଏ ଟଙ୍କା ଆବଶ୍ୟକ । ପୁଣି ମାସକୁ ମାସ ଖର୍ଚ୍ଚ ଅଛି । ଏ ତ କିଛି ଖେଳଘର କଥା ନୁହେଁ । ଭବିଷ୍ୟତ ଚିନ୍ତା ନକରି ନାରାୟଣ ବନ୍ଧୁ ମହାରଣାଙ୍କଠାରୁ ଦୁଇଭାଇଙ୍କ ମୁଝାମିରେ ସୁକି ସୁଧରେ ଚାଳିଶ ଟଙ୍କା କରଜ ଆଣିଲି । ଏ ତ କେଳା ସାହସ, ତେବେ 'ସାହସ କଲେ ତରି ସାହସ କଲେ ମରି' ଏପରି ଗୋଟିଏ କଥା ଅଛି । ଦେଖାଯାଉ,ସେତିକି ଟଙ୍କା ଓ ଭ୍ରାତୃଦ୍ୱୟଙ୍କ ପ୍ରଦତ୍ତ ପନ୍ଦର ସେର ଚାଉଳଧରି କଟକ କଲେଜରେ ନାମ ଲେଖାଇବାପାଇଁ ବାହାରି ପଡ଼ିଲି । କିନ୍ତୁ ସେହି ଧୋତି ସାର୍ଟ ପିନ୍ଧିଲି । ଆମ ଗାଁରୁ କଟକକୁ ରେଳପଥ ଏକମାତ୍ର ପଥ ଥିଲା । ଟଙ୍କା, ଚାଉଳକୁ ଧରି ବର୍ତ୍ତମାନ କୋଠି ପଛପାଖ ନବୀନ ନିବାସରେ ଆଶ୍ରୟ ନେଲି । ସେ ମେସ୍‌ରେ ବରଗଡ଼ର ବାବୁ ଦେବାର୍ଚ୍ଚନ ଭୋଇ, ଅନୁଗୁଳର ଜଣେ ଭାଇ, ନୟାଗଡ଼ର ସର୍ବଶ୍ରୀ ଅକ୍ରୁର ମହାପାତ୍ର, ଗଦାଧର ପଟ୍ଟନାୟକ ଓ ନରସିଂହ ପଟ୍ଟନାୟକ ମୋର ଜଣେ ମାଟ୍ରିକ ସହପାଠୀ ବୈଦ୍ୟନାଥ ରଥ ରହୁଥିଲେ । ମାସକପରେ ମେସଖର୍ଚ୍ଚ ହିସାବ ହବାରୁ ମାସିକ ଦଶ ଟଙ୍କା ଖର୍ଚ୍ଚ ପଡ଼ିଲା । ମୁଁ ଆଶ୍ଚର୍ଯ୍ୟ ହେଲି । ଏତେ ପଇସା ଦେଇ ସେଠାରେ ରହିପାରିବି ନାହିଁ ବୋଲି ସ୍ଥିର କଲି । ମୋ ଉପରେ କିଛି ପଇସା ବାକୀ ରହିଯିବାରୁ ମେସ୍ ମ୍ୟାନେଜର ବାବୁ ଦେବାର୍ଚ୍ଚନ ମୋଠାରୁ ହିଡେନ୍ ଟ୍ରେଜର ବହିଖଣ୍ଡିକ ରଖିଲେ । ସେଠାରୁ ଯାଇ କଟକର ଗଳିକନ୍ଦିରେ ବୁଲୁବୁଲୁ ସାଆନ୍ତବାପାଙ୍କ ପୁଅ (ନନ୍ଦୀଭାଇ) ରଘୁନାଥ ପାଟଶାଣୀଙ୍କୁ ଦେଖିଲି । ତାଙ୍କୁ ସବୁ ବିଷୟରେ କହିବାରୁ ସେ ମୋତେ ସାଙ୍ଗରେ ନେଇ ବକ୍ସିବଜାର ବଢ଼େଇ ସାହିରେ ପହଞ୍ଚିଲେ । ନନ୍ଦୀଭାଇ ବେଶି ପାଠ ପଢ଼ିନଥିଲେ ମଧ ଖୁବ୍ ଚାଲାକ ଓ ଚତୁର ଥିଲେ, ମାମଲତକାର ଲୋକ । ମୁହଁଟା ଖଣ୍ଡେ ଇସ୍ପାତ୍ । ସେ ବହୁଥର କଟକ ଆସି ବହୁ ଲୋକଙ୍କୁ ସାକ୍ଷାତ୍ କରନ୍ତି । ସେ ମୋତେ ସାଙ୍ଗରେ ଧରି ଆମ ଗାଁର ଧନୀବ୍ୟକ୍ତି ମହାରଣାଙ୍କ ଜଣେ ବନ୍ଧୁଙ୍କୁ ସାଙ୍ଗରେ ନେଇ ମୋତେ ବହୁଜାଗା ଦେଖାଇଲେ । ଶେଷରେ ବଣିଆସାହିର ଜାତୀୟ ଗୌରବ ମଧୁସୂଦନଙ୍କ ଜଣେ ସହକର୍ମୀ ବାବୁ ନନ୍ଦଲାଲ ପୃଷ୍ଟିଙ୍କ ସଙ୍ଗେ ପରିଚୟ କରାଇ ଅନ୍ୟକାମରେ ଚାଲିଗଲେ ।

**ହାତରେ ରୋଷେଇ :**

ନନ୍ଦଲାଲବାବୁ ଜଣେ ସଚ୍ଚୋଟ ନିର୍ଭୀକ ବ୍ୟକ୍ତି ଥିଲେ । ସେତେବେଳକୁ ସେ ବିପତ୍ନୀକ । ତାଙ୍କ ବଡ଼ପୁଅ ଡାକ୍ତର ଯୁଦ୍ଧକୁ ଯିବାକୁ ମନାକରିଦେବାରୁ ଚାକିରି ହରାଇ ଘରେ ବସିଥାନ୍ତି । ତାଙ୍କର ଗୋଟିଏ ପୁଅର ନାଲିପାଣି ସହିତ କାରବାର, ଆଉ ଦୁଇପୁଅ ବେକାର । ସବା ସାନପୁଅ ନବମରେ ପଢୁଛନ୍ତି । ନନ୍ଦଲାଲବାବୁଙ୍କର ଆୟର ପନ୍ଥା କିଛି ନଥାଏ । ପୁଣି ବୋଝ ଉପରେ ଲଳିତା ବିଡ଼ା, ତାଙ୍କର ବିଧବାଝିଅ ଓ ତାର ପୁଅଟିକୁ ପାଖରେ ରଖିଛନ୍ତି । ଏ ଘଟଣା ବାପ ମନରେ ଅତ୍ୟନ୍ତ ଦୁଃଖ ଜାତକରେ । ତେବେ ବିଧିର ବିଧାନ । ଏତେ ଲୋକଙ୍କର ଖାଦ୍ୟ ସଂସ୍ଥାନ କରିବେ କିପରି ? ସେ ମୋତେ କିଛି ଆର୍ଥିକ ସାହାଯ୍ୟ ଦେଇ ପାରିଲେ ନାହିଁ । ତଥାପି ତାଙ୍କର ସ୍ନେହ, ସହାନୁଭୂତି ମୋତେ ଖୁବ୍ ପ୍ରେରଣାଦାୟକ ହେଲା । ନନ୍ଦବାବୁ ତାଙ୍କ ଦାଣ୍ଡପାଖ ବାରଣ୍ଡାରେ ଅଧବଖରାଏ ଘର ମୋ ପାଇଁ ଠିକ୍ କଲେ । ସେଠାରେ ମୁଁ ହାତରେ ରୋଷେଇ କରି ଖାଇବି ବୋଲି ସ୍ଥିର ହେଲା । ସେ କୋଠରିର ଚଟାଣଟି ଆବଡ଼ାଖାବଡ଼ା । ଠାଏ, ଠାଏ ସିମେଣ୍ଟ ଛାଡ଼ିଯାଇ ଖାଲ ହୋଇଯାଇଛି । କିନ୍ତୁ ଖଟଟିଏ ସେ ଘରେ ପଡ଼ିଥିଲା, ଖଟ ଉପରେ ପାରିବାକୁ ମସିଣା ଖଣ୍ଡିଏ ଦେଲେ । ତକିଆ ଫକିଆ କିଛି ନଥିଲା । ଯାହାହେଉ ଖଟ ଖଣ୍ଡିକ ଯୋଗୁଁ ସୁବିଧାରେ ଗଡ଼ତ ପଡ଼ତ ହେଲି । ପ୍ରତିଦିନ ସକାଳୁ ମହାନଦୀରେ ଗାଧୋଇଆସି ଭାତ ରାନ୍ଧେ । ପଠାସାରୁ ଭଲ ସିଝେ । ବେଳେ ବେଳେ ସାରୁ ପୋଡ଼ି କରି ଖାଏ । ମୁଗଡାଲି କନାରେ ସିଝାଇ ଚକଟିକରି ଲୁଣ ଦେଇ ଖାଏ । ଆଳୁ ବ୍ୟବହାର କଲାପରି ମୋର ମନେ ପଡୁନାହିଁ । ଏହିପରି କିଛିଦିନ ଚାଲିଲା । ବେଳେବେଳେ ରନ୍ଧାରନ୍ଧି କରିବାକୁ ବିରକ୍ତ ଲାଗେ । କିଏ ଏତେ କାମ କରୁଛି ହୋ ? 'ଅଜାତିକୁ ବଣିଜ ଅଡୁଆ' । ଓଳିଏ ରୋଷେଇ କରେ । କେତେବେଳେ ପଖାଳ ପିଆଜ ଖାଇ କଲେଜକୁ ଯାଏ । ବହିପତ୍ର କିଛି ପାଖରେ ରଖିଥାଏ । ଇଂରାଜୀ ପାଠ୍ୟପୁସ୍ତକ ଖଣ୍ଡିକ ଆମ ଗାଁର ବି.ଏ. ପଢୁଥିବା ରାଜକିଶୋର ମହାପାତ୍ରଙ୍କଠାରୁ ମାଗି ଆଣିଥାଏ । କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଲିଖିତ ଓଡ଼ିଆ ପାଠ୍ୟପୁସ୍ତକ ବହି ଖଣ୍ଡିଏ କିଣିଥାଏ । ଦୁଇ ତିନି କି.ମି. ରାସ୍ତା ଚାଲିଚାଲି ସୁରମ୍ୟ ଅଟ୍ଟାଳିକାରେ ପ୍ରବେଶ କରି ଦମ୍ଭମାରେ । ମୋ ସେକସନରେ ତିନିଶ ପଚାଶ ପିଲା । ବିଜୁଳି ପଙ୍ଖା ତଳେ ବସି ପଢ଼ିବାରୁ ନିଦ ମାଉସୀ କେଉଁଠି ଥାଏ ମାଡ଼ିଆସେ । ଘନଶ୍ୟାମବାବୁ ହୁଅନ୍ତୁ ବା ଜଗଦାନନ୍ଦବାବୁ ହୁଅନ୍ତୁ ଗୋଟିଏ ପଞ୍ଚାବନ

ମିନିଟିଆ ପିରିଅଡ଼ରେ ପଚାଶ ପୃଷ୍ଠା ଗଡ଼େଇ ଦିଅନ୍ତି । ଗିରିଜାଶଙ୍କରବାବୁ ଇଂରାଜୀ ନନ୍‌ଡିଟେଲ୍‌ଡ 'ଆଇ ଭାନୋ ହୋ' ବା 'ଭିକାର ଅଫ ଓ୍ୟାକ ଫିଲ୍ଡ' ବହିଟିର ଦୁଇ ତିନି ଅଧ୍ୟାୟ ବୁଝାଇ ଦିଅନ୍ତି । ମୁଁ ନିଦରେ ଢାଳି ହେଉଥାଏ । ପଖାଳର ମଜାଟା ଅନୁଭବ କରେ । ସ୍ୱର୍ଗ ବି ଆଙ୍ଗୁଳ ଜଣାଯାଏ । ବହି ଖୋଜି ପରେ ପଢ଼ିଦେବି ବୋଲି କହେ, କିନ୍ତୁ ବହି କାହିଁ ? ଏ ଯେ ଦିନେ ଓଳିଏ ଘଟଣା ତା ନୁହେଁ, ଅଧିକାଂଶ ଦିନ ଏହିପରି ଚାଲେ । ଚାରିଟା ବାଜେ ବା ତା ପୂର୍ବରୁ କଲେଜ ଛୁଟି ହୋଇଯାଏ ।

**କଲେଜ ଛୁଟି ପର ଜୀବନ :**

କଲେଜ ଛୁଟି ବେଳକୁ ଭୋକ ମାଡ଼ିଆସେ । କାନ୍ଦି ପକାଏ । ଭୋକ ମରିଯାଏ । ଖାଲି ପେଟରେ ଟିଉସନ ଅନ୍ୱେଷଣରେ ସହରଟା ଯାକ ଘୂରେ, ଟିଉସନ କେଉଁଠି ପଡ଼ିଛି ଯେ ଗୋଟେଇ ଆଣିବି ? ଭୟାଳୁ ହେତୁ କାହାକୁ କଛି କହିପାରେ ନାହିଁ । ବହି ନାହିଁ, ବାସ ନାହିଁ । ବାସ ଥିବା ବେଳେ ଖାଇବାକୁ ଖାଦ୍ୟ ନାହିଁ । ସବୁବେଳେ ତ ପକେଟ ଖାଲି, କାହାଘରେ କାମକରି ବା ତାଙ୍କ ପିଲାଙ୍କୁ ପାଠ ପଢ଼ାଇ ବି ପଇସା ରୋଜଗାର ସହଜ ହୋଇ ପାରିଲା ନାହିଁ । କଳପାଣି ପିଇ କେତେ ତୃଷ୍ଣା ନିବାରଣ କରିବି ? ଏଥିରେ ପାଠପଢ଼ାଟା ହେବ କିପରି ? ''ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବି କାହାଘେନି'' ମୋଟେ ତ ମାସେ ଦେଢ଼ମାସେ ଯାଇଚି । ଆଇ.ଏ. ପାସ୍ କରିବା ପାଇଁ ଢେର୍ ସମୟ ବାକୀ । ଦିନଟା ଯୁଗ ପରି ଲାଗୁଛି । ଦୁଃଖର ଦିନଗୁଡ଼ାକ ଶୀଘ୍ର ଶୀଘ୍ର ସରେ ନାହିଁ । ଦିନେ ଦିନେ କଲେଜ ଛୁଟିପରେ ଆଉ ବସାକୁ ଫେରେ ନାହିଁ । ଗୋରା କବର ଆଡ଼େ ବୁଲି ଯାଇ ଏକାକୀ ଗୋଟିଏ ପିଣ୍ଡି ଉପରେ ବସି ଭାବେ ''କାହିଁକି ଏଥିରେ ଗୋଡ଼ଦେଲି ? ମୋ ପରି ବୋକା ଜଗତରେ ନାହିଁ । ଆଉ ପଢ଼ିପାରିବି ନାହିଁ । ତାହାହେଲେ କ'ଣ ଶିଶୁପାଳ ହୋଇ ଘରକୁ ଫେରିଯିବି ? ଗାଁ ଲୋକେ ମୁହଁରେ ତାଳି ମାରିବେ । ବଡ଼ ଲଜ୍ଜା ଅପମାନର କଥା ।'' ଦୁଃଖସୁଖ ବର୍ଣ୍ଣନାକରି ଘରକୁ ଖଣ୍ଡେ ଲମ୍ୱା ଚଉଡ଼ା ଚିଠିଦେଲି । ପାଠ ପଢ଼ି ନ ପାରିଲେ ଆତ୍ମହତ୍ୟା କରିଦେବି । ଏ କି ମୂର୍ଖତା ? ଟଙ୍କା କରଜକରି କଲେଜରେ ନାଁ ଲେଖିଲି କାହିଁକି ? ମୋ ବୁଦ୍ଧିକୁ [illegible]କଲି । ଆସିଲି କାହିଁକି ପୁଣି ଦୁଇମାସରେ ଫେରିଯିବି କାହିଁକି ? ଏ ସବୁ କାର୍ଯ୍ୟ [illegible]ର ଚିତ୍ତର ପାଗଳା ମନର ନୁହେଁ କି ? ଏହିପରି ନାନା ଭାବନା ମନକୁ ଆସେ । ଭାବାନରେ ଆନନ୍ଦ କାହୁଁ ମିଳିବ ? ଯେଉଁଠାରୁ ଗୋଟିଏ ଟଙ୍କା ଆସି ପାରୁନଥିଲା, ସେଠୁ ଦଶ ପନ୍ଦର ଟଙ୍କା ଆସିବ କୁଆଡୁ ? ସାରା ସହରଟାଯାକ ଘୂରି

ବୁଲୁଥାଏ । କଲେଜକୁ ସେହିପରି ଯାଉଥାଏ । ରୋଷେଇ କରି ଦିନେ ଖାଇଲେ ଦିନେ ଖାଉନଥାଏ । ନନ୍ଦଲାଲବାବୁ ମୋର ଗତିବିଧି ଲକ୍ଷ୍ୟ କରୁଥାନ୍ତି । ମୋ ପାଖେ କିଛି ଚାଉଳ ଥିଲା । କେତେଦିନ ଯିବାପରେ ନନ୍ଦବାବୁଙ୍କ ପରାମର୍ଶରେ ତାଙ୍କ ଘରେ ଚାଉଳତକ ଦେଇଦେଲି । ରୋଷେଇ ଜଞ୍ଜାଳରୁ ମୁକ୍ତ ହେଲି । ପୂଜାଛୁଟି ପର୍ଯ୍ୟନ୍ତ ତାଙ୍କ ଘରେ ଖାଇଲି । ପଖାଳ ସାଙ୍ଗକୁ ପକଡ଼ିଟା ବେଶ୍ ଭଲ ଲାଗିଲା । ''ଭୋକ ବେଳେ ଆମ୍ବିଳା ଆମ୍ବ ସୁଆଦ'' । ମୋର ଖାଲି ମୁଣ୍ଡରେ କିଛି ସୂକ୍ଷ୍ମ ଚିନ୍ତା କରିପାରେ ନାହିଁ । ନିଜ ଜୀବନକୁ ଧିକ୍କାର କରେ ।

**ସନ୍ଧ୍ୟା ସମୟରେ ଭାବନା :**

ବର୍ଷାଦିନ ଶେଷ ହୋଇନଥାଏ ମାତ୍ର ବର୍ଷାର ପ୍ରକୋପ କମିକମି ଆସୁଥାଏ । ମଝିରେ ମଝିରେ କେତେବେଳେ କେମିତି ଅସରାଏ ଅସରାଏ ବର୍ଷା ହୋଇଯାଉଥାଏ । ସନ୍ଧ୍ୟାର ଆଗମ ପ୍ରାୟ । ରାସ୍ତାରେ ବିଜୁଳି ଆଲୁଅ ଦପ୍ ଦପ୍ ହୋଇ ଜଳି ଉଠିଲାଣି । ବିମର୍ଷ ମନରେ ସେହି ଅଡ଼ଚାଳିଶ ବର୍ଗଫୁଟ କୁଟୀରରେ ବସି ଝରକାବାଟେ ଖୋଲାପଡ଼ିଆ ଆଡ଼କୁ ଏକଲୟରେ ଚାହିଁ ରହିଛି । ପେଟରେ ଭୋକ ଥିଲେ ବି ଖାଇବାକୁ କିଛି ନାହିଁ । ଏହିପରି ସମୟରେ ନନ୍ଦବାବୁ ଡକାଇ ପଠାଇଲେ । ସମୀପରେ ତାଙ୍କ ପୁଅ ନାତି ଆସୀନ । ପ୍ରଶ୍ନକଲେ ''ମୁରଲୀ,ଏପରି କ'ଣ ପାଠପଢ଼ା ହୁଏ ? ଏପରି ଦୀନହୀନ ଭାବରେ କେତେଦିନ ଚଳିବ ?'' ମୋର ପାଠପଢ଼ା ପ୍ରତି ପ୍ରବଳ ଆକାଙ୍କ୍ଷା ଦେଖି ସେ ବ୍ୟସ୍ତ ହୁଅନ୍ତି । ତାପରେ କହିଲେ, ''ହଉ ଏବେ ପୂଜାଛୁଟି ପର୍ଯ୍ୟନ୍ତ ଏଠାରେ ରୁହ ତାପରେ ଆଉ ଆସ ନାହିଁ ।'' ମୁଁ ଖାଲି ବଲବଲ ହୋଇ ତାଙ୍କ ମୁହଁକୁ ଚାହୁଁଥାଏ । ଭାବୁଥାଏ ଆଇ.ଏ.ଟା ପଢ଼ିଦେଇଥିଲେ ଭଲ ହୋଇଥାଆନ୍ତା, ମାତ୍ର ତାଙ୍କୁ କିଛି କହି ପାରୁନଥାଏ ।

**ପୂଜା ଛୁଟି :**

ପୂଜା ଛୁଟି ଆସିଗଲା । ମନରେ ଯେତିକି ଆନନ୍ଦ ସେତିକି ଦୁଃଖ । ରେଳପଥରେ ଗ୍ରାମକୁ ଯାତ୍ରାକଲି । ଗ୍ରାମରେ ପ୍ରବେଶ କରୁକରୁ ନାନାକଥା ଶୁଣିବାକୁ ମିଳିଲା । ମୋ ଚିଠିର ପ୍ରତିକ୍ରିୟାପରି ଜଣାପଡ଼ିଲା । ମୋର ଗୋଟାଏ ଅପମାନ ବା ଲଜ୍ଜା କ'ଣ ? ସେହି ପୂଜାଛୁଟିରେ ମହାରଣାଙ୍କ ପୁତୁରା ଶ୍ରୀ ନବକିଶୋର ମହାପାତ୍ରଙ୍କୁ (ଯେ ପରେ ରେଭେନ୍ସା କଲେଜର ଉପାଧ୍ୟକ୍ଷ ହୋଇଥିଲେ) ଘରୋଇ ଟିଉସନ କଲି ମୋଟେ ଚବିଶ କି ପଚିଶ ଦିନ । ସେତେବେଳେ ନବକିଶୋର ମହାପାତ୍ର ଖୋର୍ଦ୍ଧା ହାଇସ୍କୁଲରେ ନବମ

ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ନବକିଶୋର ଧନୀ ସନ୍ତାନ । ତାଙ୍କ ପିତାଙ୍କର ତାଙ୍କୁ ପାଞ୍ଚ ବର୍ଷ ହେଲାବେଳେ ପରଲୋକ ପ୍ରାପ୍ତି ହୋଇଥିଲା । ତାଙ୍କ ବଡ଼ବାପା କୃଷ୍ଣଚନ୍ଦ୍ର ମହାପାତ୍ର ତାଙ୍କର ତତ୍ତ୍ୱ ନେଉଥିଲେ । ମୁଁ ଆଶା କରିଥିଲି ସେ ମୋତେ ଦଶ ଟଙ୍କା ଦେବେ । ମାତ୍ର ସେ ଭାରି ଚିପା ଲୋକ । ଦିନକୁ ଗଣି ଗଣି ଟଙ୍କା ପାଞ୍ଚଟା ମୋତେ ବଢ଼ାଇ ଦେଲେ । "ବଡ଼ ଲୋକଙ୍କୁ ଉଉର ନାହିଁ, ସ୍ୱର୍ଗକୁ ନିଶୁଣି ନାହିଁ ।"ସେ ତ ସବୁଆଡ଼ୁ ବିଚାର କଲେ ନାହିଁ, ମୁଁ ପିଲାଲୋକ ପୁଣି ମୁହଁଫିଟା ନୁହେଁ, ତାଙ୍କୁ କ'ଣ କହିବି ? ଯାହାହେଉ ଥୋବରା ମୁହଁରେ ସେହି ପାଞ୍ଚ ଟଙ୍କା ଓ ଭାଇମାନେ ଖଣ୍ଡେ ଭଙ୍ଗା ଶଗଡ଼କୁ ବିକି ପୁଣି ଆଠ ଟଙ୍କା ଏପରି ମୋଟରେ ତେର ଟଙ୍କା ଧରି, କିଛି ଚାଉଳ ଧରି ପୁଣି କଟକ ଯାତ୍ରାକଲି । କଲେଜ ଖୋଲିବାର ପରଦିନ ପହଞ୍ଚିବାରୁ ରେଜିଷ୍ଟରରୁ ମୋ ନାଁ କଟିଯାଇଥିଲା । ହେଡ୍‌କିରାଣି ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ପରାମର୍ଶରେ ଅଧ୍ୟକ୍ଷ ଡ.ପରିଜା ସାହେବଙ୍କୁ ଆବେଦନ କରିବାରୁ ପୁନଃ ପ୍ରବେଶ ଫି କଟିଗଲା । ମୋର ପୁନଃ ଅଧ୍ୟୟନ ପିପାସାକୁ ସେ ପୁନଃ ଉଜ୍ଜୀବିତ କରିଦେଲେ । କିନ୍ତୁ ଭବିଷ୍ୟତ କୁହେଳିକାପୂର୍ଣ୍ଣ ।

କଲେଜରୁ ସିଧା ନନ୍ଦଲାଲବାବୁଙ୍କ ଘରଠାକୁ ଗଲି । ନନ୍ଦବାବୁ ତ ଘରେ ନଥିଲେ । ତାଙ୍କ ପିଲାମାନେ ବିସ୍ମୟ ସାଗରରେ ବୁଡ଼ିଗଲେ । ପଚାରିଲେ 'କିହୋ ମୁରଲୀ, ପୁଣି କ'ଣ ଆସିଲଣି ?' ସେମାନେ ସବୁ ମୋଠାରୁ ଢେର୍ ସାନ, ମୋ ନାଁ ଧରି ଡାକିବାରୁ ମୋତେ ଖୁବ୍ ଲାଜ ମାଡ଼ିଲା । କହିଲି, "ଭାଇମାନେ, ମୁଁ ଆଉ ପଢ଼ିବି ନାହିଁ, ଏଠାରେ ରହିଯାଇଥିବା ମୋର ବହିପତ୍ର ମୁଁ ନେଇଯିବାକୁ ଆସିଛି ।" ପୂର୍ବରୁ ନନ୍ଦୀଭାଇଙ୍କ ସହିତ ସହରଟା ବୁଲି ରାଜାବଗିଚା ସ୍ଥିତ ଖଣ୍ଡାୟତ ମେସ୍‌ରେ ରହିବା ପାଇଁ ସ୍ଥିର କରିଥିଲି ।

**କଟକ ଖଣ୍ଡାୟତ ମେସ୍‌ରେ ଅବସ୍ଥାନ :**

ଟାଉନହଲ ରୋଡରେ ଶ୍ରୀ କାଶୀନାଥ ଦାସ, ଆଡଭୋକେଟ ରହନ୍ତି । ସେ ଖଣ୍ଡାୟତ ମେସର ପ୍ରେସିଡେଣ୍ଟ ଓ ସର୍ବେସର୍ବା । ଏହି ହଷ୍ଟେଲରେ ସ୍କୁଲ କଲେଜ ପିଲା ମିଶି ପ୍ରାୟ ପନ୍ଦର କି ଷୋହଳ ଜଣ ରହୁଥିଲେ । ସମସ୍ତେ କେନ୍ଦ୍ରାପଡ଼ା, ପଟ୍ଟାମୁଣ୍ଡେଇ, ଯାଜପୁର, ଜଗତସିଂପୁର ଅଞ୍ଚଳର । ବୀରଭୂମି ଖୋର୍ଦ୍ଧାର ମୁଁ ଏକମାତ୍ର କୁଳାଙ୍କୁର । ଏଠାରେ ମାସିକ ରେଣ୍ଟ ଦେବାପାଇଁ ମୋତେ ପଡ଼ିଲା ନାହିଁ । ନନ୍ଦୀଭାଇଙ୍କ ଚେଷ୍ଟାରେ କାଶୀବାବୁ ମୋତେ ମାସିକ ଦୁଇ ଟଙ୍କା ସାହାଯ୍ୟଦେଲେ ଓ କଟକର ଏକମାତ୍ର ଚାଟାର୍ଡ-ଆକାଉଟାଣ୍ଟ ଶ୍ରୀଯୁକ୍ତ ହୃଦାନନ୍ଦ ନାୟକ ବି ଦୁଇ ଟଙ୍କା ସାହାଯ୍ୟ ଦେଲେ । ମ୍ୟୁନିସିପାଲିଟି ଅଫିସ୍‌ର ଜଣେ କର୍ମଚାରୀ କ୍ଷେତ୍ରବାସୀ ବରାଳ ହଷ୍ଟେଲର

ସୁପରିଟେଣ୍ଡେଟ ଥିଲେ । ସେ ବଡ଼ ଅମାୟିକ ଓ ସରଳ ଲୋକ ଥିଲେ । ଥରେ ଆଳି ଷ୍ଟେଟର ମ୍ୟାନେଜର ମିଷ୍ଟର ସିଂହ ଛାତ୍ରାବାସ ପରିଦର୍ଶନରେ ଆସିଥିଲେ । ସେତେବେଳେ ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ାସରିଥିଲା । ସର୍ବଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ପ୍ରଧାନ ମନ୍ତ୍ରୀ, ଗୋଦାବରୀଶ ମିଶ୍ର ଶିକ୍ଷାମନ୍ତ୍ରୀ ଓ କଟକ ସହରର ଜଣେ ଆଡ଼ଭୋକେଟ ଶୋଭନ ଖାଁ ରାଜସ୍ୱ ମନ୍ତ୍ରୀ ଥିଲେ । ଶ୍ରୀ ଯଦୁମଣି ମଙ୍ଗରାଜ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥିଲେ । ସେ ଓଡ଼ିଶାର ଖଣ୍ଡାୟତ ଗୋଷ୍ଠୀର ପ୍ରଧାନ ପୃଷ୍ଠପୋଷକ ଥିଲେ । ତାଙ୍କ ଚେଷ୍ଟାରେ ଶିକ୍ଷାମନ୍ତ୍ରୀ ଶ୍ରୀ ଗୋଦାବରୀଶ ମିଶ୍ର ଛାତ୍ରାବାସ ପରିଦର୍ଶନରେ ଆସିଥିଲେ ଏବଂ କିଛି ସୁବିଧା ପ୍ରଦାନ କରିଥିଲେ । ଉକ୍ତ ଛାତ୍ରାବାସରେ ଅବସ୍ଥାନ କଲାବେଳେ ଖଣ୍ଡାୟତ ମହାସଭାର ମୁଖପତ୍ର 'ନାୟକ' ପତ୍ରିକା ମୋ ଦୃଷ୍ଟିକୁ ଆସିଲା । ତାକୁ ପାଠକରି ମୁଁ ଏ ପତିତ ନିଷ୍ପେଷିତ ଜାତିପାଇଁ ଭବିଷ୍ୟତରେ କିଛି କାର୍ଯ୍ୟକରିବା ପାଇଁ ମନେ ମନେ ପ୍ରତିଜ୍ଞାବଦ୍ଧ ହେଲି । ସେଥିପାଇଁ ମୋ ଅବସର କାଳରେ ସେହି ଦଳିତ ଜାତିକୁ ଉଠେଇବା ପାଇଁ ଚେଷ୍ଟା କରୁଅଛି ।

ରାଜାବଗିଚା ଅଞ୍ଚଳଟା କଟକ ସହର ମଧ୍ୟସ୍ଥଳରୁ ଦୂରରେ ଥିଲା । ତେଣୁ ଲୋକାରଣ୍ୟ ହୋଇନଥିଲା । ଖୋଲା ସ୍ଥାନ ଅନେକ । ବଣ, ବୁଦାରେ ପୂର୍ଣ୍ଣ । ସମୀପରେ କାଠଯୋଡ଼ି ନଦୀ । ମୁଁ ଥିଲି ମହାନଦୀ କୂଳେ ଏବେ ସେଠାରୁ ମୋର ପ୍ରମୋସନ ହେଲା କାଠଯୋଡ଼ି ନଦୀକୂଳକୁ, ଜୀବନର ଗତିପଥ ବଦଳିଗଲା । ବେଳେବେଳେ ଛାତ୍ରାବାସର ଅନ୍ତେବାସୀଙ୍କ ସହିତ କାଠଯୋଡ଼ିକୁ ସ୍ନାନ କରିବାକୁ ଯାତ୍ରାକରୁଥିଲି । ମଝିରେ ଦର୍ପଣୀ ରାଜାଙ୍କର ଏକ ବିରାଟ ଆମ୍ବତୋଟା ପଡୁଥିଲା । ବାଲୁକାମୟ ଭୂମି । କାଁଭାଁ ଘର ଗଢ଼ିଉଠିଥିଲା । ସ୍ଥାନେ ସ୍ଥାନେ ଖୋଲାପଡ଼ିଆରେ ମଲା ମୁରିକା ହାଣ୍ଡି ଗଡୁଥିଲା । ରାତି ଟିକେ ଅଧିକା ହୋଇଗଲେ ଉପର ତେଲେଙ୍ଗା ବଜାର ବା ଚଉଧୁରୀ ବଜାରରୁ ଏକାକୀ ଆମ ହଷ୍ଟେଲକୁ ଆସିବା କଷ୍ଟକର ହୋଇପଡୁଥିଲା । ଛାତ୍ରାବାସ ପଛପାଖ ଝାଞ୍ଜେରି ମଙ୍ଗଳା ପର୍ଯ୍ୟନ୍ତ ଖାଲି ନାଗୁଆରି ବଣବୁଦାରେ ପୂର୍ଣ୍ଣଥିଲା । କ୍ୱଚିତ୍ ଲୋକ ଘରଦ୍ୱାର କରୁଥିଲେ । କିନ୍ତୁ ବିଦ୍ୟା ଅଧ୍ୟୟନ ପାଇଁ ସ୍ଥାନଟି ବେଶ୍ ଉପଯୁକ୍ତ ପରିବେଶ ଯୋଗାଉଥିଲା ।

**ନନ୍ଦୀଭାଇଙ୍କର ମୋ ପ୍ରତି ସ୍ନେହ :**

ନନ୍ଦୀଭାଇ (ରଘୁନାଥ ପାଟଶାଣୀ) ମୋତେ କିଛି ଅର୍ଥ ସାହାଯ୍ୟ କରିପାରି ନଥିଲେ ମଧ୍ୟ ମୋ ପାଇଁ ସ୍ୱତଃ ଯେଉଁ ବ୍ୟବସ୍ଥା କରିଦେଇଥିଲେ ସେଥିପାଇଁ ମୁଁ ତାଙ୍କ

ପାଖେ ଚିରଋଣୀ ହୋଇ ରହିଗଲି । ମୋ ନିଜ ସହୋଦର ଭାଇମାନଙ୍କଠାରୁ ସେ ବଳିଗଲେ । ବାଲ୍ୟକାଳରେ ଗାଁ ଚାଟଶାଳୀରେ ପାଠ ପଢ଼ିବା ବେଳେ ତାଙ୍କ ଘରେ ବହୁବାର ପଖାଳ ଖାଇ ଗାଁ ସ୍କୁଲକୁ ଯାଇଛି । ସେ ମୋ ସାଆନ୍ତବାପାଙ୍କ ପୁଅ । ସେହିଦିନଠାରୁ ତାଙ୍କର ମୋ ପ୍ରତି ସ୍ନେହ ରହିଥିଲା ।

ଆଇ.ଏ. ଶେଷ କରିବା ପର୍ଯ୍ୟନ୍ତ ମୁଁ ଖଣ୍ଡାୟତ ମେସ୍‌ରେ ଅବସ୍ଥାନ କରିବାର ସୁଯୋଗ ଲାଭକରିଥିଲି । ସେବର୍ଷ ଅକ୍ଟୋବର ମାସରେ ଭିଙ୍ଗାରପୁରର ଜମିଦାର ମହାନୁଭବ ଶିକ୍ଷାପ୍ରେମୀ ଶ୍ରୀ ଗଙ୍ଗାଧର ଦାସ ଚୌଧୁରୀ ମୋତେ ମାସିକ କଲେଜ ଫିରୁ ଛାଡ଼କରିବା ପାଇଁ ତାଙ୍କ ସହପାଠୀ ଅଧକ୍ଷ ଡକ୍ଟର ପରିଜା ସାହେବଙ୍କୁ ଅନୁରୋଧ କଲେ । ଚୌଧୁରୀ ମହୋଦୟଙ୍କଠାରୁ ମୋ ଚରିତ୍ର ବିଷୟରେ ଏବଂ ପାଠପଢ଼ା ବିଷୟରେ ମୁଁ ଯେଉଁ ପ୍ରଶଂସାପତ୍ର ଲାଭକରିଥିଲି ତାହା ଅନନ୍ୟସାଧାରଣ । ସେ ପ୍ରଶଂସାପତ୍ର ବଳରେ ଡକ୍ଟର ପରିଜା ମୋତେ ଅଧାଦରମା ଛାଡ଼ କଲେ ଓ ତତ୍‌ସହ ତାଙ୍କ ହାତପାଣ୍ଠିରୁ ମାସିକ ଦୁଇ ଟଙ୍କା ପ୍ରଦାନ କରିବାକୁ ପ୍ରତିଶ୍ରୁତି ଦେଲେ । ମୁଁ ଦୀର୍ଘନିଶ୍ୱାସ ପକାଇଲି । ଗଙ୍ଗାଧର ଦାସ ଚୌଧୁରୀଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ କଲି । ତାଙ୍କ ପାଦଧୂଳି ଓ ଡକ୍ଟର ପରିଜାଙ୍କର ପାଦଧୂଳି ମୁଣ୍ଡରେ ମାରି ସେଠାରୁ ବିଦାୟ ନେଲି ।

### ମୋର ଘରୋଇ ଟିଉସନ୍ :

ହାତକୁ କିଛି ପଇସା ଆସିଲା । କଲେଜକୁ ପାଞ୍ଚ ମାସ ହେଲା ଦରମାର ଅଧା ଫେରିପାଇଲି । ଗୋଟିଏ ଫାଉଣ୍ଟେନ ପେନ୍ ଓ ଖଣ୍ଡିଏ ଶୀତ ଚାଦର କିଣିଲି । ଚୌଧୁରୀ ବଜାର ପୋଷ୍ଟଅଫିସ ଗଳିରେ ଅଷ୍ଟମ ଶ୍ରେଣୀର ଗୋଟିଏ ପିଲାକୁ ଅପରାହ୍ନ ପାଞ୍ଚ ଘଣ୍ଟାରୁ ସାତ ଘଣ୍ଟା ପର୍ଯ୍ୟନ୍ତ ବୟାଳିଶ ଦିନ ଟିଉସନ କରି ସାତ ଟଙ୍କା ପାଇଲି । ରାତ୍ରି ଆଠଟାରେ ଛାତ୍ରାବାସକୁ ଟାଉନହଲ ବାଟଦେଇ ତେଲଙ୍ଗା ବଜାର ରାସ୍ତାରେ ଫେରିଆସେ । ବହୁସମୟରେ ଉତ୍କଳ ସାହିତ୍ୟ ସମାଜରେ ସାହିତ୍ୟ ସଭା ବସେ । ମୁଁ ସେ ଦୁଆର ମୁହଁକୁ ଯାଇ କ'ଣ ଆଲୋଚନା ହେଉଥାଏ ଶୁଣେ । କିଛିଟା ପ୍ରଭାବ ମୋ ଉପରେ ପଡ଼େ । ନଅଟା ବେଳକୁ ଛାତ୍ରାବାସରେ ପହଞ୍ଚେ । ଢୋକେ ପିଇ ଦଣ୍ଡେ ଜିଇବା ଅବସ୍ଥା ମୋର । ମୋ ଶ୍ରେଣୀର କୌଣସି ପିଲା ଏ ଛାତ୍ରାବାସରେ ନଥିଲେ । ମୋ ପାଖେ ବହିପତ୍ର କିଛି ନଥିଲା । କଲେଜରେ ଯାହାକୁ ମାଗିଲେ କେହି ଦେଲେ ନାହିଁ । ଇତିହାସ ପୁସ୍ତକଗୁଡ଼ିକ ବହୁ ଦାମ୍‌ର । ଇଂରାଜୀ ଗଦ୍ୟ ପୁସ୍ତକ ବ୍ୟତୀତ ଅନ୍ୟ କୌଣସି ପୁସ୍ତକ ନଥିଲା । ଖାଇବା ପିଇବା ସଂଗ୍ରହ କରୁକରୁ ଜୀବନ ଗଲା, ବହି

କିଣିବି କଅଣ ? ପାଠ ପଢ଼ିବି କିପରି ? ଖଣ୍ଡାୟତ ହଷ୍ଟେଲର କର୍ମକର୍ତ୍ତାଗଣ ମୋତେ ବାସଖଣ୍ଡିଏ ଯୋଗାଇ ମୋର ଅଶେଷ କଲ୍ୟାଣ ସାଧନ କଲେ । ତେବେ ପଢ଼ାପଢ଼ିର କୂଳକିନାରା ପାଉ ନଥାଏ । ଏହିପରି ହେଉ ହେଉ ଅର୍ଦ୍ଧବାର୍ଷିକ ପରୀକ୍ଷା ଆରମ୍ଭ ହେଲା । ମାଟ୍ରିକ ଶ୍ରେଣୀର ସମ୍ୟକ୍‌ଜ୍ଞାନ ଥିବାରୁ ଅର୍ଦ୍ଧବାର୍ଷିକ ପରୀକ୍ଷାରେ ବିଶେଷ ଖରାପ ଫଳ ପ୍ରଦର୍ଶନ କଲିନାହିଁ । ଆବଶ୍ୟକ ପୁସ୍ତକ ପାଇବାକୁ ବାଇବିଲ୍ଲୁପରି ହେଲି । ବାର୍ଷିକ ପରୀକ୍ଷାକୁ ସଫଳତା ହାସଲ କରିବାକୁ ପଡ଼ିବ । ଶୁଣିଥିଲି କଲେଜ ପରୀକ୍ଷାରେ ଚୌକିବେଞ୍ଚ ପ୍ରମୋସନ ପାଆନ୍ତି । ବାର୍ଷିକ ପରୀକ୍ଷାକୁ ଡର ନଥାଏ । ତଥାପି ତ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କୃତକାର୍ଯ୍ୟ ହେବା ଚାହି । ତେବେ ବିଭାଘର ବେଳେ ତ ଆଉ ବାଇଗଣ ରୋଇବି ନାହିଁ । ବହିକୁ ଧରି ସିନା ପାଠ ପଢ଼ିବି ? ବହି କାହିଁ ?

**ଭାରତ ପ୍ରତି ବିପଦ :**

୧୯୪୨ ମସିହା ମାର୍ଚ୍ଚ ମାସରେ ଜାପାନ ବିମାନବାହିନୀ ରେଙ୍ଗୁନ ସହର ଦଖଲ କରିନେଲେ । ଭାରତ ପ୍ରତି ବିପଦ ଘନେଇ ଆସିଲା । ବ୍ରିଟିଶ ସରକାର ଯୁଦ୍ଧରେ ଭାରତର ପୂର୍ଣ୍ଣ ସହଯୋଗ କାମନା କଲେ । ସେତେବେଳେ ବ୍ରିଟେନର ପ୍ରଧାନମନ୍ତ୍ରୀ ଥିଲେ ଜାତୀୟ ଦଳର ନେତା ସାର୍ ଉଇନସନ ଚର୍ଚ୍ଚିଲ । ଯୁଦ୍ଧପରେ ଭାରତକୁ କି ପ୍ରକାର ଶାସନ ଦିଆଯିବ ତା'ର ଏକ ଚିଠା ପ୍ରସ୍ତାବ ସହିତ ସାର୍ ଷ୍ଟାଫୋର୍ଡ କ୍ରିପସ୍‌କୁ ଭାରତ ପଠାଇଲେ । କିନ୍ତୁ ଭାରତର କୌଣସି ଦଳ ଏହି ଚିଠା ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ । ଦ୍ୱିତୀୟ ମହାସମରର ମଧ୍ୟବର୍ତ୍ତୀ କାଳ । ଏଣେ ଓଡ଼ିଶାରେ ମରୁଡ଼ିଜନିତ ଦୁର୍ଭିକ୍ଷ । ଖାଇବା ବିନା ଲୋକେ ହନ୍ତସନ୍ତ । ଯୁଦ୍ଧର ଭୟାବହତା ବଢ଼ିବଢ଼ି ଚାଲିଥାଏ । ଋଷିଆ ଯୁଦ୍ଧରେ ଯୋଗଦେବାରୁ ଭାରତୀୟ କମ୍ୟୁନିଷ୍ଟମାନେ ଏହାକୁ ଜନଯୁଦ୍ଧ ବୋଲି ଆଖ୍ୟା ଦେଇଥାନ୍ତି । ଏ ପର୍ଯ୍ୟନ୍ତ କମ୍ୟୁନିଷ୍ଟମାନେ ଯୁଦ୍ଧକୁ ଜନଯୁଦ୍ଧବୋଲି ସ୍ୱୀକାର କରିନଥିଲେ । ସେମାନଙ୍କ ନୀତି ସବୁବେଳେ ଏଇଆ ।

**ପାଠପଢ଼ା କିପରି ଚାଲିଛି :**

ମୁଁ ପ୍ରତିଦିନ ଖଣ୍ଡାୟତ ଛାତ୍ରାବାସରୁ ପ୍ରାୟ ତିନି କି.ମି. ରାସ୍ତା ପଦବ୍ରଜରେ ଯାତ୍ରାକରେ । କେତେବେଳେ ରାଣୀହାଟ ବାଟେ ତ କେତେବେଳେ ଛତ୍ରବଜାର ବାଟେ ଯିବାକୁ ପଡ଼େ । କଲେଜରେ କାହା ସଙ୍ଗେ ବନ୍ଧୁତା କରିବାପାଇଁ ମୋର ଦମ୍ଭ କି ସାହସ କିଛି ନଥିଲା, ସମସ୍ତେ ଧନୀଘରର ପିଲାପରି ଜଣାଯାଉଥାନ୍ତି । ମୋର ସମସ୍ତେ ବନ୍ଧୁ, କେହି ବନ୍ଧୁ ନୁହଁନ୍ତି । ଛାତ୍ର କମନ୍‌ରୁମରେ ବସିଥିବାବେଳେ ପିଲାମାନେ ନାନା ଭଲମନ୍ଦ

କଥା ପକେଇ ହସନ୍ତି, ଆଳାପ କରନ୍ତ । ମାତ୍ର ସେ ସମୟରେ କିପରି ଚଳିବାକୁ ପଡ଼ିବ, ବହିପତ୍ର କେଉଁଠୁ ପାଇବି, ଏହି କଥା ମୁଁ ଭାବୁଥାଏ । ଜୀବନଟା ଦୁର୍ବିସହ ବୋଧ ହେଉଥାଏ । କୌଣସି ଭଲ ବସ୍ତୁ ଦେଖିଲେ ମୋର ପ୍ରେମଭାବ ଆସୁନଥିଲା । ମୁହଁଟା ସବୁବେଳେ ଶୁଷ୍କ ନୀରସ । ଧାନ ଉଁଷୁଆ ହାଣ୍ଡିପରି ।

ରାଜାବଗିଚାରୁ ହରିଜନ (ହାଡ଼ି) ସାହି ଦେଇ ରାସ୍ତାକୁ ଉଠିଗଲାବେଳେ ଖାନ୍‌ନଗର ଶ୍ମଶାନ ପାଖରେ ରାସ୍ତାକୁ ଲାଗି ଗୋଟିଏ ନାଲିଆ କୋଠାପଡ଼େ । ତାହା ଗୋଟିଏ ମଠ ବୋଲି କହନ୍ତି । ସେହି କୋଠାଘରଟି ଛାଡ଼ିଦେଲେ ଛତ୍ରବଜାର ରେଳପଥ ପର୍ଯ୍ୟନ୍ତ ଏକ ପ୍ରକାଣ୍ଡ ଗହୀର । ମଧୁବାବୁଙ୍କ ଜୋତା କାରଖାନାର ଭଗ୍ନ କୋଠାଟି ମୂକ ସାକ୍ଷୀରୂପେ ଦଣ୍ଡାୟମାନ । ବକ୍ସିବଜାର ଶେଷମୁଣ୍ଡରେ ରାଣୀହାଟ ଛକ ଆଡ଼କୁ ଗଲାବେଳେ ବାମ ପାଖରେ ଜଣେ ଧନୀ ଗୋପାଳଙ୍କ ଏକମହଲା କୋଠାଘରଟିଏ । ଏବେ ଯେଉଁଠି ସେକେଣ୍ଡାରୀ ବୋର୍ଡ଼ ଅଫିସ୍ ଓ ହାଇସ୍କୁଲ ଅଛି ସେଠାରେ ଏକ ପ୍ରକାଣ୍ଡ ଆମ୍ର କାନନ । ବାମ ଦକ୍ଷିଣ ପାର୍ଶ୍ୱଟା ଜନମାନବଶୂନ୍ୟ ଖାଁ ଖାଁ ଲାଗୁଥାଏ । ସେହି ରାଜପଥର ଉତ୍ତର ପାର୍ଶ୍ୱରେ ଗୋଟିଏ ଗଛମୂଳେ ସନ୍ଧ୍ୟା ଆଗମ ସମୟେ ପାଞ୍ଚ ସାତ ଜଣ ମଦୁଆଙ୍କର ଗହଳି ଜମେ । ସେ ବାଟେ ଏକକା ଗଲାବେଳେ ମୋ ମନରେ ଭୀତି ସଞ୍ଚାର ହୁଏ । ସେତେବେଳେ କଟକ ସହରର ଲୋକସଂଖ୍ୟା ଏକଲକ୍ଷରୁ କମ୍ ଥାଏ । ଏବେ ବାଦାମବାଡ଼ି, ବକ୍ସିବଜାର ଅଞ୍ଚଳ ସହରର ଜନଗହଳି ଅଞ୍ଚଳରେ ପରିଣତ ହୋଇଛି ।

**ବିପଦାଞ୍ଚଳ :**

ସେହି ମାର୍ଚ୍ଚ ମାସରେ କଟକ ବିପଦାଞ୍ଚଳ ବୋଲି ଘୋଷିତ ହୋଇଥାଏ । ମୁଖ୍ୟ ଅଫିସଗୁଡ଼ିକ ସମ୍ବଲପୁରକୁ ସ୍ଥାନାନ୍ତରିତ ହେଉଥାଏ । କଟକରୁ ବହୁ ଲୋକ ମଫସଲକୁ (ଯେଉଁମାନଙ୍କ ଘର ମଫସଲରେ) ପଳାଇ ଯାଉଥାନ୍ତି । ମୋ ମନ ଉଦ୍‌ବେଗରେ ପୂର୍ଣ୍ଣ । ମାର୍ଚ୍ଚମାସରୁ ପରୀକ୍ଷା ଶେଷ ହେଲା । ମୁଁ ଦିନ ଗଣୁଥିଲି । ପରୀକ୍ଷା ଶେଷହେବା ସଙ୍ଗେସଙ୍ଗେ ଘରକୁ ବାହାରି ପଡ଼ିଲି ପେଡ଼ିପୁଟୁଳା ବାନ୍ଧି । ଏଥିମଧ୍ୟରେ ଜାପାନ ପୂର୍ବାଞ୍ଚଳକୁ ଅକ୍ତିଆର କରିସାରିଲାଣି । କଟକରେ ମଝିରେ ମଝିରେ ସାଇରନ ବାଜି ଉଠୁଥାଏ । ଆକାଶରେ ଚିଲ ଶାଗୁଣା ପରି ଉଡ଼ାଜାହାଜଗୁଡ଼ିକ ଦେଖା ଯାଉଥାନ୍ତି । ମଫସଲକୁ ଲୋକମାନଙ୍କର ଧାଡ଼ି । କଲେଜରେ ନାଁ ଲେଖାଇବାର ବର୍ଷେ ପୂରି ନଥାଏ କିନ୍ତୁ ମୋତେ ଯୁଗପରି ଲାଗୁଥାଏ । ଶେଷରେ ଗାଁ ମୁହାଁ

ହେଲି । ସେତେବେଳେ କଲେଜ ପଢୁଆ ପିଲାଙ୍କୁ ଗାଁ ଗହଳିରେ ଭାରି ଖାତିରି । ଆମ ଗାଁର ରାଜକିଶୋର ବ୍ୟତୀତ କେହି କଲେଜରେ ପଢ଼ିନଥିଲେ । ସେତେବେଳେ ଉତ୍ତର-ପଶ୍ଚିମ ଓଡ଼ିଶା ପୁରୀ କଟକ ଜିଲ୍ଲା ସମେତ ଗୋଟିଏ ମାତ୍ର କଲେଜ ରେଭେନ୍ସା କଲେଜ । କିନ୍ତୁ ସେହି ଗୋଟିଏ ମାତ୍ର କଲେଜରେ ଆଶାଜନକ ଛାତ୍ରଛାତ୍ରୀ ଅଧ୍ୟୟନ କରୁନଥିଲେ । ଅଧ୍ୟାପକଙ୍କ ସଂଖ୍ୟା ବେଶି ନଥିଲା । ପୁଣି ଆଜିକାଲିପରି ରେଭେନ୍ସା କଲେଜରେ ସବୁ ବିଷୟରେ ବି.ଏ. ବା ବି.ଏସସି. ନଥିଲା । ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ବିଷୟରେ ଏମ୍.ଏ. ନଥିଲା । ଯେଉଁମାନେ ଅନ୍ୟ ବିଷୟରେ ଏମ୍.ଏ. କି ଏମ୍.ଏସ୍‌ସି. କରିବାକୁ ଚାହୁଁଥିଲେ ସେମାନେ ପାଟନା କି କଲିକତା ବିଶ୍ୱବିଦ୍ୟାଳୟକୁ ଯାଉଥିଲେ । ଆଜିକାଲି ଉପକୂଳ ଜିଲ୍ଲମାନଙ୍କରେ ପ୍ରତି ସବଡିଭିନରେ ପନ୍ଦର କି କୋଡ଼ିଏ ବା ତା'ଠାରୁ ଅଧିକ କଲେଜ ଖୋଲିଲାଣି । ପ୍ରତି ପରିବାରରୁ ଜାତିଧର୍ମ ନିର୍ବିଶେଷରେ ଅନ୍ଦିକନ୍ଦିରୁ ପୁଅ ଓ ଝିଅପିଲାମାନେ କଲେଜରେ ପାଠ ପଢ଼ିଲେଣି । ପୁଣି ପାଞ୍ଚଛଅ ମାଇଲ ଦୂରରୁ ସାଇକେଲରେ ପିଲାମାନେ ଆସୁଅଛନ୍ତି ।

**ଶିକ୍ଷା ପ୍ରସାର :**

ସେତେବେଳେ ଶିକ୍ଷାର ପ୍ରସାର ଏତେ ନଥିଲା । କେବଳ ଧନୀ ଓ ମେଧାବୀ ଛାତ୍ରମାନେ ରେଭେନ୍ସା କଲେଜରେ ପଢ଼ିପାରୁଥିଲେ । ଆଜିକାଲିପରି ପଢ଼ିବା ହାଉଆ ବି ନଥିଲା । ସହାୟକ ପୁସ୍ତକ ନଥିଲା । କଲେଜ ଅଧ୍ୟାପକମାନେ ଜ୍ଞାନର ଭଣ୍ଡାର ଥିଲେ । ସେମାନେ ଭାରତ ବିଖ୍ୟାତ ଥିଲେ । ଟିଉସନ କଲେ ସେମାନଙ୍କ ପଦମର୍ଯ୍ୟାଦାରେ ଆଞ୍ଚଆସିବ ବୋଲି ସେମାନେ ମନେ କରୁଥିଲେ । ବର୍ତ୍ତମାନ ଟିଉସନ ବେଉସା ହୋଇଛି । ପଢ଼ାର ମାନ କମିକମି ଆସୁଛି । ଆଜିକାଲି ଡକ୍ଟରେଟ ପାଉଥିବା ବ୍ୟକ୍ତିଙ୍କ ସଂଖ୍ୟା ବହୁତ । କିନ୍ତୁ କାମର ନୁହଁନ୍ତି । ନାମ ବଡ଼ା, କାମ ଥୋଡ଼ା । ଡକ୍ଟରେଟ କରିଦେଲେ ସବୁ ହାସଲ ହୋଇଗଲା ବୋଲି ଭାବୁଛନ୍ତି । କିନ୍ତୁ ସବୁ ଅଧ୍ୟାପକମାନେ ଯେ ଫମ୍ପା ତାହା ନୁହେଁ, ବହୁ ଜ୍ଞାନୀ, ଗୁଣୀ ଅଧ୍ୟାପକ ଅଛନ୍ତି । ସେମାନେ ପୂର୍ବର ଜ୍ଞାନଗର୍ଭା ଅଧ୍ୟାପକମାନଙ୍କ ସହିତ ତୁଳନୀୟ ।

ପ୍ରଖ୍ୟାତ କବି ଶ୍ରୀ ମାୟାଧର ମାନସିଂହ ଡକ୍ଟରେଟ କରି ସଦ୍ୟ ଇଂଲଣ୍ଡରୁ ଫେରିଥାନ୍ତି । ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ପ୍ରାଣକୃଷ୍ଣ ପରିଜା କଲେଜର ଅଧକ୍ଷ ଥା'ନ୍ତି । ସେ ମହାନ୍ ସାରଳାଦାସଙ୍କ ବଂଶଧର ବୋଲି ନିଆଖୁଣ୍ଟା କହେ । ଆମର ଅଧ୍ୟାପକ ଥିଲେ ସର୍ବଶ୍ରୀ ଆର୍ତ୍ତବଲ୍ଲଭ ମହାନ୍ତି, ଘନଶ୍ୟାମ ଦାସ, ଜନାଥନ ମହାନ୍ତି, ପି.ଏସ୍. ସୁନ୍ଦରମ୍,

ଭି.ଭି. ଜନ୍, ଜଗଦାନନ୍ଦ ମହାନ୍ତି, କୃତ୍ତିବାସ ସାମନ୍ତରାୟ, ବିପିନ ବିହାରୀ ରାୟ, ରତ୍ନାକର ପତି, ଗିରିଜା ଶଙ୍କର ରାୟ, ଠକ୍କୁର ବଳଭଦ୍ର ପ୍ରସାଦ, ହରିବନ୍ଧୁ ମହାନ୍ତି, ଗୋଲଖ ବିହାରୀ ବାନାର୍ଜୀ । ଯୁବକ ଅଧ୍ୟାପକଙ୍କ ନାମ ସବୁ କହିନପାରିଲେ ମଧ୍ୟ ସର୍ବଶ୍ରୀ ସଦାଶିବ ମିଶ୍ର, ବଂଶୀଧର ସାମନ୍ତରାୟ, ରମାନାଥ ମହାନ୍ତି, ଦାମୋଦର ମିଶ୍ର, ବାମା ଚରଣ ଦାସ, କୁଞ୍ଜବିହାରୀ ତ୍ରିପାଠୀ, ରାମଚନ୍ଦ୍ର ମହାପାତ୍ର ପମୁଖ ପଣ୍ଡିତମାନଙ୍କର ନାମ ମୋର ମନେ ପଡୁଛି । ଗାଛିକ ରାଜକିଶୋର ରାୟ ଓ ବୈଦ୍ୟନାଥ ରଥ ସାମୟିକ ଭାବରେ ଅଧ୍ୟାପକ ହୋଇ ଆସନ୍ତି । ଲେକଚର୍‌ମାନଙ୍କର ଦରମା ମାସକୁ ଶହେପଚିଶ ଟଙ୍କା ଥିଲା ଓ ଜଣେ ବି.ଇଡି. ଶିକ୍ଷକ ପଞ୍ଚଷଠି ଟଙ୍କାରୁ ଚାକିରି ଆରମ୍ଭ କରୁଥିଲେ । ଅଧ୍ୟାପକମାନେ କେହି ଘୋଡ଼ାଗାଡ଼ିରେ , କେହି କାର୍‌ରେ, କେହି ସାଇକଲରେ ଆସୁଥିଲେ ।

**କଲେଜ ସୌଧ :**

ରେଭେନ୍ସା କଲେଜ ବିଲଡ଼ିଂ ଏକ ମନୋରମ ଦୁଇତଳ ଲୋହିତ ପ୍ରାସାଦ । ଉତ୍ତର ଦିଗରେ କଲେଜର ଆର୍ଟ୍ସ ବ୍ଲକ ଓ ହଲ, କମନରୁମ, ଅଫିସ ଗୃହ ଓ ଅଧ୍ୟକ୍ଷଙ୍କ ଅଫିସ୍ ଗୃହ । ଦୁଇ ପାର୍ଶ୍ୱରେ ପୂର୍ବ ଓ ପଶ୍ଚିମ ଛାତ୍ରାବାସ, ଦକ୍ଷିଣ ଦିଗରେ ବିଜ୍ଞାନ ବିଭାଗର ଚମତ୍କାର ଅଟ୍ଟାଳିକା ଓ ତାର ମଧ୍ୟଭାଗରେ ପ୍ରସିଦ୍ଧ କନିକା ଲାଇବ୍ରେରୀ ବିଲ୍ଡିଂ ବିଦ୍ୟମାନ । ସମଗ୍ର ବିଲ୍ଡିଂର ମଧ୍ୟବର୍ତ୍ତୀ ସୁରମ୍ୟ ପ୍ରାନ୍ତରଟି ସବୁଜ ଘାସଦ୍ୱାରା ଶ୍ୟାମଳିମା ଦେଖାଯାଉଥାଏ ଏବଂ ଉତ୍ତରରୁ ଦକ୍ଷିଣକୁ ଓ ପୂର୍ବରୁ ପଶ୍ଚିମକୁ ଯେଉଁ ସଂକୀର୍ଣ୍ଣ ମାର୍ଜିତ ପଥଟି ରଖାଯାଇଛି ତା'ର ଉଭୟ ପାର୍ଶ୍ୱ ସୁବାସିତ ଓ ଦର୍ଶନୀୟ କାକଟସ୍ ଓ ପୁଷ୍ପଗୁଳ୍ମ ଦ୍ୱାରା ଶୋଭିତ । ସେଠାରେ କିଛି ସମୟ ଦଣ୍ଡାୟମାନ ରହି ପ୍ରାନ୍ତରର ଶୋଭା ସନ୍ଦର୍ଶନ କଲେ ଭାବୁକ ବା ଦର୍ଶନେଚ୍ଛୁ ଶିକ୍ଷାର୍ଥୀର ଭୋକଶୋଷ ମରିଯାଏ, ସେ ଏକ ଅଦୃଶ୍ୟ ରାଇଜରେ ଥିବା ପରି ଜଣାପଡ଼େ । ମାତ୍ର ମୋ ପରି ଅଧମ, ନୀରସ, ଶୁଷ୍କ, ଦାରିଦ୍ର୍ୟ ପ୍ରପୀଡ଼ିତ ବ୍ୟକ୍ତିର ସେ ସୌନ୍ଦର୍ଯ୍ୟକୁ ଟିକିଏ ମାତ୍ର ଉପଭୋଗ କରିବାକୁ ବେଳନାହିଁ, ତେଣୁ କବି ଗାଇଛନ୍ତି–''What is this life if full of care, we have no time to stand and stare.''

ଯୁଦ୍ଧର ଘନଘଟା ଯୋଗୁଁ ବାର୍ଷିକ ପରୀକ୍ଷା ମାର୍ଚ୍ଚ ମାସରେ ଶେଷ ହେଲା । କଲେଜ ଗ୍ରୀଷ୍ମାବକାଶ ନିମନ୍ତେ ବନ୍ଦ ରହିଲା । ମୁଁ କାଳବିଳମ୍ବ ନକରି ଗ୍ରାମାଭିମୁଖୀ ହେଲି । ৲

**ଗ୍ରୀଷ୍ମାବକାଶ :**

ଏଥର ଦୀର୍ଘ ଗ୍ରୀଷ୍ମାବକାଶ । ତା'ର ଉପଯୁକ୍ତ ବିନିଯୋଗ କରିବି କିପରି ? ମାଟ୍ରିକ୍ ପରେ ମୁଁ ଚାକିରି ନକରି ପଢ଼ିଲି କାହିଁକି ? ମୁଁଟା କେମିତି ସେଥିରେ ପଶିଗଲି । 'ନ ଯଯୌ ନ ତସ୍ଥୌ ଅବସ୍ଥା', ରହିପାରୁନାହିଁ କି ସେଥିରୁ ଖସିପାରୁନାହିଁ । ମନରେ ପ୍ରବଳ ଆକାଙ୍କ୍ଷା ନିଶ୍ଚୟ ପଢ଼ିବି । କିନ୍ତୁ ଶୂନ୍ୟେ ଶୂନ୍ୟେ ମହାଶୂନ୍ୟେ, ଶୁଖିଲା ନଦୀରେ ଡଙ୍ଗା ବାହିବି କିପରି ? ଗୋଟାଏ ବର୍ଷ ନାନା ଦୁର୍ବିପାକ ମଧ୍ୟରେ କେମିତି କେମିତି କଟିଗଲା । ବହି କାହିଁ ଯେ ଥରୁଟିଏ ମାତ୍ର ଗଡ଼ାଇଦେବି ? କାହାକୁ କେତେ ଦାନ୍ତ ନିକୁଟି ମାଗିବି ? ଏପରି କ'ଣ ପିଲା ଦୁନିଆରେ ଥା'ନ୍ତି ? ଏହିପରି ନାନା ପ୍ରଶ୍ନ ମନକୁ ପଚାରୁଥାଏ । କିନ୍ତୁ ସେଥିରୁ ଓହରି ଆସିବା ବିଜ୍ଞତାର କାର୍ଯ୍ୟ ହେବ ନାହିଁ । ଏ ଭିତରେ କିଛି ରୋଜଗାରର ପନ୍ଥା ଉଦ୍ଭାବନ ନକଲେ ପୁନଃ କଲେଜକୁ ଯିବି କିପରି ?

**ଛାତ୍ରାବାସର ଦାନ ଆମ୍ରବୃକ୍ଷ :**

ସେ ବର୍ଷ ଖଣ୍ଡାୟତ ଛାତ୍ରାବାସର ଗୋଟିଏ ଆମ୍ବ ଗଛରେ ପ୍ରଚୁର ଆମ୍ବ ଆସିଥିଲା । ମେସ୍ ପୂଜାରୀ ନୀଳମଣି ସେ ଆମ୍ବ କାଟି ଲୁଣ ପାଣିରେ ପକାଇ କୁଲାରେ ଶୁଖାଇଥିଲା । ଦରୁଟିଆ ଦରୁଟିଆ ଆମ୍ବୁଲ ପାଟିକୁ ସୁଆଦ ଲାଗେ । ଦଶ ପନ୍ଦରଦିନ ପର୍ଯ୍ୟନ୍ତ ସକାଳଓଳି ଭାତ ଖାଇସାରି ଲୁଣ ପକା ଦରୁଟିଆ ଆମ୍ବୁଲରୁ ମୁଁ ଖଣ୍ଡେ ଖଣ୍ଡେ ଖାଇଦିଏ । ପାଟିକୁ ଭଲ ଲାଗେ ମାତ୍ର ପେଟକୁ ଯେ କ୍ଷତି କରିବ ଏକଥା ମୋତେ ଜଣାଥିଲେ ମଧ୍ୟ ଜିହ୍ୱା ଲାଳସା ଛାଡ଼ି ପାରିଲି ନାହିଁ । କେତେଦିନ ପରେ ନୀଳମଣି ପାଟିକଲା, କୁଆଁରି ଆମ୍ବୁଲ କମିକମି ଆସୁଛି କାହିଁକି ? କିଏ ଖାଉଛି ? କେହି ମାନନ୍ତି ନାହିଁ । ଦିନେ ସେ ଛକିଥିଲା । ହସି ହସି ମୋତେ ଧରିନେଲା । ଏତେ ଦିନ ପରେ ଚୋର ଧରା ପଡ଼ିଛି ବୋଲି ପାଟି କରିଦେଲା । ମୁଁ ଅବଶ୍ୟ ହସିଦେଲି ମାତ୍ର ଏତେ ପିଲାଙ୍କ ଆଗରେ ଲଜ୍ଜିତ ହେଲି । ସେଦିନ ସେତିକି । ଏବେ ଆଠଦିନ ପରେ ଛୁଟି ଭିତରେ ମୁଁ ତା'ର ପରାଭବ ପାଇଲି । ପ୍ରାୟ ପନ୍ଦର ଦିନ ପର୍ଯ୍ୟନ୍ତ ନାଳଝାଡ଼ା ହେଲା । ମଉଳ ବାହାରିପଡ଼ିଲା । ତେବେ ଆରୋଗ୍ୟ ହେବାପରେ ମୁଣ୍ଡରେ ତେନ୍ତୁଳିଆ ବିଛା କାମୁଡ଼ିଲା । ପଇସା କିଛି ରୋଜଗାର ନକଲେ କଲେଜକୁ ଯିବି କିପରି ? ଏହି ଚିନ୍ତାରେ କାଳକାଟୁଥିବା ବେଳେ ଗ୍ରାମଡିହର ବାବୁ ବାଉରିବନ୍ଧୁ ସାହୁଙ୍କ ସାଙ୍ଗରେ ଅକସ୍ମାତ୍ ସାକ୍ଷାତ ହେଲା । ସେ ମାମଲତକାରିଆ ଲୋକ । ମୋ ପାଇଁ ଟିଉସନଟିଏ ବୁଝି ଦେଲେ । ଆମ ଗାଁଠାରୁ ଛଅ କି.ମି. ଦୂର ଓ ତାଙ୍କ ଗାଁଠାରୁ ପାଞ୍ଚ କି.ମି. ଦୂର ଜାମୁଝରୀ

ଗାଁର ଧନୀ ତେଲୀ ମହାଜନ ଲୋକନାଥ ସୁବୁଦ୍ଧିଙ୍କର ଅଚଳାଚଳ ସମ୍ପତ୍ତି, ସାଧବ ପୁଅ, ମହାଲକ୍ଷ୍ମୀ ତାଙ୍କ କାନ୍ଧରେ ବିରାଜମାନ କରୁଥିଲେ । ଛନ୍ଦକପଟ କିଛି ନାହିଁ । ପସନ୍ଦିଆ ମଣିଷ । ସେତେବେଳେ ତାଙ୍କ ପୁଅ ସୁର ଓ ପୁତୁରା ଗୋଲକ ଓ ଗୁମାସ୍ତାଙ୍କ ପୁଅ ବ୍ରଜ ଯାଁଳା ମଧ୍ୟଇଂରାଜୀ ସ୍କୁଲରେ ପଢୁଥାନ୍ତି । ଏହି ତିନିଜଣ ସେ ଗ୍ରାମର ପ୍ରଥମ ଇଂରାଜୀ ପଢୁଆ ପିଲା । ଏମାନେ ଧୀର, ନମ୍ର ଓ ଭକ୍ତିପରାୟଣ । ଉକ୍ତ ପିଲାମାନଙ୍କୁ ଖରା ଛୁଟିରେ ପଢ଼େଇବାପାଇଁ ମୁଁ ଜାମୁଝରୀ ଯାତ୍ରା କଲି । ମୋ ହାତରେ ଫଟାପାହୁଲାଟିଏ ମଧ ନଥିଲା । ସୁଯୋଗ ଛାଡ଼ିବି କାହିଁକି ? ପାଖରେ ଦଦରା ସୁଟକେଶ୍ ଖଣ୍ଡିଏ ନଥିଲା । ଚାଲିଲି ବ୍ୟାଗ୍ ଖଣ୍ଡିଏ ହାତରେ ଧରି, ଲୁଗା ଗାମୁଛା ସହ ।

## କିଛି ଅର୍ଥ ପାଇଁ ଟିଉସନ ପନ୍ଥା :

ଖରାଦିନ, ଛତାବର ରାସ୍ତାଠାରୁ ଜଙ୍ଗଲ ରାସ୍ତା ଦେଇ ଯିବାକୁ ପଡ଼ିଲା । ଚଙ୍ଗ ଚଙ୍ଗ ଲାଗୁଥାଏ । ହେଟା ବା ଗଧିଆଟିଏ ବାହାରି ପଡ଼ିଲେ କ'ଣ କରିବି ? ଜଙ୍ଗଲ ପଥ ଅଳ୍ପ ହେଲେ ବି ଦୀର୍ଘପଥ ଜଣାପଡୁଥିଲା । ଗ୍ରାମରେ ପ୍ରବେଶ କଲି । ମହାଜନଙ୍କ ପାଖେ ପହଞ୍ଚି ଲମ୍ବା ଚଉଡ଼ା ଦଣ୍ଡବତଟିଏ ପକାଇଲି । ମୋ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ସେ ନିରୀକ୍ଷଣ କଲେ । ପଚାରିଲେ ତୁମେ ପଢ଼େଇବ ? "ହଁ ଆଜ୍ଞା, ମୁଁ ଭଲ ପଢ଼ାଇପାରିବି ।" ସେତିକି ତାଙ୍କ ସଙ୍ଗେ ସାକ୍ଷାତ ହୋଇଥିଲା । ବଖରାଏ ବାହାର ଘର ମୋ ରହିବା ପାଇଁ ଛାଡ଼ିଦେଲେ । ପ୍ରଥମେ ପ୍ରଥମେ ଅଲକ୍ଷ୍ୟରେ ମୋ ପଢ଼ାପ୍ରତି ନଜର ଦେଉଥିଲେ । ମାତ୍ର ମୋ ନିଷ୍ଠାରେ ସନ୍ତୋଷ ପ୍ରକାଶ କଲେ । ଆଉ କେବେ ମୋ ପାଠ ପଢ଼େଇବାକୁ ତନଖି କଲେ ନାହିଁ । ମୁଁ ଔଡ୍ର-କ୍ଷତ୍ରିୟ ବଂଶଜ ଥିବାରୁ ସେତେବେଳର ପ୍ରଥାନୁଯାୟୀ ହାତରେ ରୋଷେଇକରି ଖାଇଲି । ଜଙ୍ଗଲ ପରିବେଶ । ପାଚିଲା ଆମ୍ବ ଖୁବ୍ ମିଳିଲା । ମାତ୍ର ପୂର୍ବରୁ ଦରୁଟିଆ ଲୁଣ ମିଶ୍ରିତ ଆମ୍ବୁଲ ଖାଇଥିବାରୁ ଦଗାଟାଏ ପାଇଥିଲି । ତେଣୁ ଜଗିରଖି ଚଳିବାକୁ ପଡ଼ିଲା । ମୁଁ ଯିବା ପୂର୍ବରୁ ସୁର, ବ୍ରଜ, ଗୋଲକ ଗାଁରେ ଗୋଟିଏ ତୁମୁଳ କାଣ୍ଡ ସୃଷ୍ଟି କରିଦେଇଥିଲେ । ତାର ଦାଗ ଏପର୍ଯ୍ୟନ୍ତ ଲିଭିନଥିଲା ।

## ସେ ଗ୍ରାମରେ ଏପ୍ରିଲ୍ ପହିଲା ପାଳନ :

ଏପ୍ରିଲ ପହିଲାକୁ ଇଂରେଜମାନେ ବୋକା ଦିବସ ରୂପେ ପାଳନ କରିଥାନ୍ତି । ଇଂରେଜମାନେ ଆମ ଦେଶର ଶାସକ ଥିଲେ । ତେଣୁ ଇଂରେଜ ଚାଲିଚଳଣିକୁ କେହି କେହି ଏ ଦେଶରେ ଗ୍ରହଣ କରିନେଇଥିଲେ । କୌତୁକ ଦେଖିବା ପାଇଁ କିଏ କେତେ

ପ୍ରକାର ଥଟ୍ଟା ତାମସା କରନ୍ତି । ରାଜାନୁଯାୟୀ ଧର୍ମ । ତେବେ ଇଂରେଜ ଚଳଣି ଗାଁ ଗହଳିରେ ଏତେ ଚଳିନଥିଲା । ସୁର ଓ ବ୍ରଜ ଗାଁର କେତେଜଣ ଅପାଠୁଆ ଟୋକାଙ୍କୁ ଧରି ମଜା ଦେଖିବାକୁ ବାହାରିଲେ । ସେଦିନ ଦିନ ନଅଟା କି ଦଶଟା ବେଳେ ପିଲାମାନେ ଘରଘର ବୁଲି ଲୋକମାନଙ୍କୁ କହିଦେଇ ଆସିଲେ, ''ଆଜି ଭୋଜି ହେବ, ମହାଜନଙ୍କ ଦୁଆରକୁ ଅପରାହ୍ଣ ୫ଟା ବେଳକୁ ଯିବ ।'' ଭୋଜି ନାଁ ଶୁଣି ବାପ, ମା, ପିଲାକବିଲା ଆନନ୍ଦରେ ନାଚି ଉଠିଲେ । ସୁର, ବ୍ରଜ ଓ ଗୋଲକ ଧନୀ ସନ୍ତାନ ପୁଣି ଇଂରେଜୀ ପାଠ ପଢ଼ିଲେଣି । ଲୋକେ ସେମାନଙ୍କୁ ଅବିଶ୍ୱାସ କରିବେ କାହିଁକି ? ଠିକ୍ ସମୟରେ ଜଣ ଜଣ ହୋଇ ମହାଜନଙ୍କ ଦୁଆରେ ହାଜର । ପିଲାଛୁଆ ସଙ୍ଗରେ ଅଛନ୍ତି, ଭୋଜି ଖାଇବାକୁ ଅଥୟ ହେଲେଣି । ଅତିଥିସେବକ ସେମାନଙ୍କୁ ଦୁଇଧାଡ଼ିକରି ବସାଇଦେଲେ । ପଂକ୍ତି-ଭୋଜନ ହେବ । ଜଣେ ପିଲା ଆସିଲା ଖଲିପତ୍ର ପକାଇ ଦେଇଗଲା । ଆଉଜଣେ ଆସିଲା ପାଣି ଛିଞ୍ଚି ଦେଇଗଲା । କିଛି ସମୟପରେ ଆଉ ଜଣେ ଆସିଲା ଲୁଣ ଟିକିଏ ଟିକିଏ ପକେଇ ଦେଇଗଲା । ଯେ ଯାଉଥାଆନ୍ତି ସେ ଆଉ ଫେରୁନଥାନ୍ତି । ଛୁଆ ପିଲାଗୁଡ଼ାକ ଖାଇବାକୁ ଅଥୟ ହେଉଥାନ୍ତି । ବାପା ଖାଲି କହୁଥାଏ, 'ଆସୁଛି ଆସୁଛି ରହ ଟିକିଏ ରହ' । ସେହି ସମୟରେ ସୁର ଆସି ତାଳ ଭୋଗେଇରେ ସେରେ ଡାଳିଗଜା ଆଣି ପ୍ରତ୍ୟେକ ପତ୍ରରେ ଗୋଟିଏ ଗୋଟିଏ ଲଗେଇଦେଇ ଗଲା । ଛୋଟ ପିଲା କୋଉ ଅବା ବୁଝୁଛି । ସେ ସେଗୋଟିକୁ ସାଙ୍ଗେସାଙ୍ଗେ ପାଟିରେ ପକାଇ ଦେଉଛି । ତାପରେ ବୁନ୍ଦିଆ ପୁଞ୍ଜିଏ ପୁଞ୍ଜିଏ ଦେଇଗଲା । ସେ ସାଙ୍ଗେ ସାଙ୍ଗେ ଶେଷ । ଶେଷରେ ଏପରି ହେଲା ଯେ ଅତିଥି ସେବକମାନେ ଆଉ କେହି ଆସିଲେ ନାହିଁ, ଲୁଚିଲେ । ବୁନ୍ଦର ତ ଲଗେଇ ଦେଇଛନ୍ତି । ପାଞ୍ଚମିନିଟ ଗଲା, ଦଶ ମିନିଟ ଗଲା । କିରେ କିଛି ଜିନିଷ ତ ଆସୁନାହିଁ । ଏ କ'ଣ ? ଶେଷରେ ଜଣେ ବଡ଼ପିଲା ଆସି ବଡ଼ପାଟିରେ କହିଲା, ''ଭାଇମାନେ ଆଉ ବସିଛ କାହିଁକି ? ଯାହା ଦିଆଯିବା କଥା ଦିଆଗଲା । ଏଥରକ ଉଠ, ମୁହଁ ଧୁଅ । ଆଜିପରା ଏପ୍ରିଲ୍ ଫୁଲ୍ ଦିନ । ତୁମେ କ'ଣ ଜାଣିନାହଁ ?'' ଲୋକମାନେ ଏପ୍ରିଲ୍ ପହିଲା ବୋଲି କ'ଣ ଜାଣିବେ ? ସେତେବେଳକୁ ପେଟ ଜଳିଲାଣି । ଭୋଜି ଖାଇବେ ବୋଲି ଦିନଯାକ ଲୁଣ ପାଣି ପିଇ ପେଟ ସଫା କରିଛନ୍ତି । କ୍ରୋଧ ତ ବ୍ରହ୍ମଚଣ୍ଡାଳ । ହଠାତ୍ ରାଗିଉଠି ମହାଜନ ଉପରେ ଗାଳି ବର୍ଷଣ କଲେ । ତାଙ୍କର ସବା ବଡ଼ପୁଅକୁ ଝିଙ୍କାଝିଙ୍କି କରି ଲଙ୍କାକାଣ୍ଡ ସୃଷ୍ଟି କଲେ । ଏତେ ବଡ଼ ବିଶୃଙ୍ଖଳ ଜନତାକୁ ସମ୍ଭାଳିବ କିଏ ? ମହାଜନ ଏପର୍ଯ୍ୟନ୍ତ କିଛି ଜାଣିନଥିଲେ । ଯେତେବେଳେ ସବୁ ବୁଝିଲେ ଅଡୁଆରେ ପଡ଼ିଗଲେ । ''ଝିମିଟି ଖେଳରୁ ମହାଭାରତ ସୃଷ୍ଟି ।'' କ'ଣ

କରାଯିବ । ଗାଁବାଲାଙ୍କ ଉପରେ ମହାଜନଙ୍କର ଢେର୍ ପ୍ରଭାବ ଥିଲା । କିନ୍ତୁ ତାଙ୍କ ନିଜ ପୁଅ ପୁତୁରାଙ୍କ ଖେଳ ତାଙ୍କର କାଳ ହେଲା । ଜନତାର ସମ୍ମୁଖୀନ ହେବାକୁ ପଡ଼ିବ ।

### ଗାଁ ଲୋକମାନଙ୍କୁ ମହାଜନଙ୍କର କ୍ଷମାଭିକ୍ଷା :

ଗୋଟିଏ ଉପାୟ ପାଞ୍ଚିଲେ । ହାତ ଯୋଡ଼ି ଠିଆ ହୋଇ କହିଲେ– "ଭାଇମାନେ ! ପିଲାଗୁଡ଼ାକ ବଡ଼ ଭୁଲ କରିଦେଇଛନ୍ତି । ସେମାନେ ସେମାନଙ୍କ ସ୍କୁଲରେ ଏପରି କରିଥାନ୍ତି । ନୂଆ ଇଂରାଜୀ ପଢୁଆ ପିଲା । ସେମାନଙ୍କ ଧାରଣା ଇଂଲଣ୍ଡରେ ଏପରି କରାଯାଏ । ଏ ଦେଶ ଯେ ଇଂଲଣ୍ଡ ନୁହଁ ଏକଥା ସେମାନେ ବୁଝିନାହାଁନ୍ତି । ଏଇଟା ଗୋଟିଏ କୌତୁକ ହେବା ପର୍ବ । ସେମାନେ କ'ଣ ଆପଣମାନଙ୍କର ପୁଅ ନୁହଁନ୍ତି ? ସେମାନଙ୍କ ପାଇଁ ମୁଁ ଆପଣମାନଙ୍କଠାରୁ ଭୁଲ୍ ମାଗି ନେଉଛି । ପିଲାମାନଙ୍କର ଭୁଲ୍ ପାଇଁ ମୁଁ ଅତ୍ୟନ୍ତ ଅନୁତପ୍ତ । ମୁଁ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛି ଆସନ୍ତା ପଣାସଂକ୍ରାନ୍ତି ଦିନ ମହାଦେବଙ୍କ ପାଖେ ଏକ ଭୋଜିର ଆୟୋଜନ କରିବି, ଆପଣମାନେ ସେଥିରେ ସମସ୍ତେ ଭାଗନେବେ । ଏ ପିଲାମାନଙ୍କର ଦୋଷତ୍ରୁଟି ମାର୍ଜନା କରନ୍ତୁ ।" ଗାଁ ଲୋକେ ଘୋର ମନସ୍ତାପ କରି ସେ ସ୍ଥାନ ପରିତ୍ୟାଗ କଲେ । ଇଂରେଜ ଜାତିର ପରମ୍ପରାକୁ ଅନ୍ଧଭାବରେ ଅନୁସରଣ କରିବାର ଏହା ସଦ୍ୟଫଳ ।

### ଦ୍ୱିତୀୟ ମହାସମରର ଧ୍ୱନି :

ଦ୍ୱିତୀୟ ମହାସମରର ମଧ୍ୟାହ୍ନ ସମୟ । ନେତାଜୀ ତାଙ୍କ କଲିକତା ଗୃହରେ ନଜରବନ୍ଦୀରେ ଅବସ୍ଥାନ କରୁଥିଲେ । ସେ ଗାନ୍ଧିଜୀଙ୍କ ଅହିଂସା ନୀତିକୁ ନାପସନ୍ଦ କରୁଥିଲେ । ସେ ଭାରତ ସ୍ୱାଧୀନତାର କଥା ସର୍ବଦା ଚିନ୍ତା କରୁଥିଲେ । ସେ ଅବସ୍ଥାରୁ ମୁକୁଳିବା ପାଇଁ ଏକ ଉପାୟ ଉଦ୍ଭାବନ କଲେ । ମହାରାଜା ଶିବାଜୀ ଔରଙ୍ଗଜେବଙ୍କ ବନ୍ଦିଶାଳାରୁ ମିଠେଇ ହାଣ୍ଡିରେ ଚମ୍ପଟ ମାରିଲା ପରି ସୁଭାଷ ବୋଷ ଦାଢ଼ି ଛାଡ଼ି ସନ୍ନ୍ୟାସୀ ବେଶରେ ବ୍ରିଟିଶ ଗୁଇନ୍ଦାମାନଙ୍କ ଆଖିରେ ଧୂଳି ପକାଇ ଆଫଗାନିସ୍ଥାନ ବାଟଦେଇ ୟୁରୋପ ମହାଦେଶକୁ ଛୁଟିଲେ । ଏହା ୧୯୪୧ ମସିହା ମାର୍ଚ୍ଚମାସ ଘଟଣା । ସେ ଇଟାଲୀ ଦେଇ ଜର୍ମାନୀର ଶାସକ ଇଂରେଜମାନଙ୍କ ଶତ୍ରୁ ହିଟଲରଙ୍କ ସମ୍ମୁଖରେ ହାଜର । ସେଠାରୁ ପରାମର୍ଶ ଗ୍ରହଣ କରି ବୁଡ଼ାଜାହାଜରେ ଜାପାନ ଯାତ୍ରା । ଜାପାନ ପୂର୍ବାଞ୍ଚଳ ଅଧିକାର କରିସାରିଲାଣି । ସୁଭାଷ ସମସ୍ତ ବନ୍ଦୀ ବିଦେଶୀ ଭାରତୀୟଙ୍କୁ ଏକଜୁଟ କରି ସର୍ବୋଚ୍ଚ ସେନାପତି ରହି ଆଜାଦ୍ ହିନ୍ଦ୍ ଫୌଜ ଗଠନ କରୁଥାନ୍ତି ।

ଯୁଦ୍ଧ ବିଷୟରେ ଭାରତର ଗାଁ ଗହଳରେ ଆଲୋଚନା ହେଉଥାଏ । କ୍ଷୁଦ୍ର ଢାମୁଝରୀ ଗ୍ରାମ ସେଥିରୁ ବାଦ୍ ପଡ଼ିନଥାଏ । ପୋଖରୀ ତୁଠରେ ଲୋକ ଯୁଦ୍ଧ ବିଷୟରେ ଆଲୋଚନା କରୁଥାନ୍ତି । ଜର୍ମାନ ସବୁଠାରେ ଜିଣୁଥାଏ । ହିଟଲର ଖୁବ୍ ତୁମ୍ୱିତୋଫାନ ଦେଖାଉଥାଏ । ତା ହାତରେ ଏପରି ଅସ୍ତ୍ର ଅଛି ଯେ ସେ ମୁହୂର୍ତ୍ତକେ ସହର ବଜାର ସବୁ ଧ୍ୱଂସ କରିଦେବ । ସେତେବେଳେ ପରମାଣୁ ବୋମାର ନାମଗନ୍ଧ କେହି ଜାଣିନଥିଲେ । ଜର୍ମାନ କଥାକୁ ବିଶ୍ୱାସ କରୁନଥିଲେ । ମୁଁ ବି ସେଇ ପୋଖରୀକୂଳେ ଭାବୁଥିଲି ଜର୍ମାନ ହାତରେ କ'ଣ ଏପରି ଗୋଟିଏ ଅସ୍ତ୍ର ଅଛି ଯେ ମୁହୂର୍ତ୍ତକେ ସବୁ ଧ୍ୱଂସ କରିଦେବ ? ଅସମ୍ଭବ, ପରମୁହୂର୍ତ୍ତରେ ଭାବୁଥାଏ ହଁ ଥାଇପାରେ । ବୋଧହୁଏ ସେତେବେଳକୁ ଜର୍ମାନୀର ବୈଜ୍ଞାନିକମାନେ ବୋମା ତିଆରି କୌଶଳ ପୂରା ଜାଣିନଥିଲେ ।

**ମୋର ଜଙ୍ଗଲ ଦେଖା :**

ମୁଁ ସୁର, ବ୍ରଜ, ଗୋଲକ ଓ ଗାଁ ଯୁବକଙ୍କ ସଙ୍ଗେ କେତେଥର ହରିଡ଼ା ମଡ଼ା ଜଙ୍ଗଲକୁ ଯାଇଛି । ବାଟରେ ବାଘ ଓ ହାତୀ ଖୋଜ ଦେଖି ଭୟବିହ୍ୱଳିତ ହୋଇଛି । କଜଳାଗଣ୍ଡଆଡ଼େ ଯାଇ ବିସ୍ତୀର୍ଣ୍ଣ ଜଳଭଣ୍ଡାର ଦେଖି ପୁଲକିତ ତଥା ଆଶ୍ଚର୍ଯ୍ୟାନ୍ୱିତ ହୋଇଛି । ଦୁଇମାସ ଭିତରେ ଗାଁ ଗଣ୍ଡା, ବିଲ ବାଡ଼ି, ବନ ପ୍ରାନ୍ତର ସବୁ ବୁଲି ଦେଖିଆସିଛି । ପ୍ରକୃତିର ମନୋରମ ଶୋଭା ଦର୍ଶନ କରି ଆନନ୍ଦିତ ହୋଇଛି । ଗଛ ପାଚିଲା ଆମ୍ବ ସାଙ୍ଗମେଳରେ ଜଙ୍ଗଲରେ ଖାଇଛି । ଏଥରକ ଫେରିବାର ବେଳ ହେଲାଣି । ଛୁଟି ସରିସରି ଆସିଲା, ଦୁଇ ମାସ ପାଣି ପରି ବୋହିଗଲା । ଗାଁ ଲୋକଙ୍କ ସାଙ୍ଗେ ମାୟାମମତା ଲାଗିଯାଇଥିଲା । ବିଚ୍ଛେଦ ଦୃଶ୍ୟ ଦୁଃଖଦାୟକ । କେତେଦିନର ଏ ରହଣି ତଥାପି ଆଖିରେ ଲୁହ । ମହାଜନ ମୋର ପାରିଶ୍ରମିକ ବାବଦକୁ ତିରିଶ ଟଙ୍କା ଦେଲେ । ଖାଇବା ପିଇବାକୁ ତ ଦେଉଥିଲେ । ଟଙ୍କାଧରି ବନ୍ଧୁ ପରିଜନଙ୍କଠାରୁ ବିଦାୟ ନେଇ ଗୃହକୁ ବାହୁଡ଼ିଲି ।

**ସ୍ୱଗୃହ ଯାତ୍ରା :**

ମୋର ଦୁଇଭାଇଙ୍କ ନାମ ଦିଗମ୍ବର, ବାନାମ୍ବର । ସେମାନଙ୍କୁ ମୁଁ ପିତା ସଦୃଶ ଭକ୍ତି କରେ । ମୋର ଚାକିରି କାଳ ମଧ୍ୟରେ ସେମାନଙ୍କୁ ଯେତେ ଯାହା ଦେଲେ ମଧ୍ୟ ସେମାନଙ୍କ ଋଣ ଶୁଝିବାକୁ ମୋତେ ପୁରୁଷ ପୁରୁଷ ଲାଗିଯିବ । ଘରେ ତ ଆଉ ରହିପାରିବିନି । କଟକ ପୁଣି ଟାଣିଲା । ଆଉ ବର୍ଷେ କିପରି କଟିବ ? କଟକ ଜୀବନର

କ'ଣ ଗୋଟିଏ ସ୍ଥିରତା ଅଛି ବିଶେଷତଃ ମୋ ପକ୍ଷରେ ? ଭାଇମାନଙ୍କ ପ୍ରଦତ୍ତ ପନ୍ଦର ସେର ଚାଉଳ ଓ ଟଙ୍କାତକ ଧରି ରେଳପଥରେ କଟକ ଯାତ୍ରାକଲି । ରେଲଭଡ଼ା ସାତଅଣା ଦୁଇ ପଇସା ଦେଲି । ରେଳକର୍ମଚାରୀମାନେ ସମସ୍ତେ ତେଲେଙ୍ଗା ନଚେତ୍ ବଙ୍ଗାଳୀ । ତେବେ ତେଲେଙ୍ଗାଙ୍କ ସଂଖ୍ୟା ସର୍ବାଧିକ । କାଁଭାଁ ଶହେକେ ଜଣେଅଧେ ଓଡ଼ିଆ । ଓଡ଼ିଆମାନେ ସବୁ କ୍ଷେତ୍ରରେ ପଛୁଆ, ପରିଶ୍ରମକାତର । ବ୍ୟବସାୟୀମାନଙ୍କ ମଧ୍ୟରେ ଅଧିକାଂଶ ମାରୁଆଡ଼ି, କିଛି ବିହାରୀ ବା ଉତ୍ତରର ମୁସଲମାନ । ଜଟଣୀ ସହରରେ ମାରୁଆଡ଼ି ଏବଂ କିଛି ମୁସଲମାନ ବ୍ୟବସାୟୀ । ଓଡ଼ିଶାର ଗୁଡ଼ିଆ ଓ ତେଲୀମାନେ ବ୍ୟବସାୟ କରନ୍ତି । ବ୍ୟବସାୟ କ୍ଷେତ୍ରରେ ଓଡ଼ିଆମାନେ ମଧ୍ୟ ପଛୁଆ ।

ଗୋରାମାନଙ୍କ ସାଙ୍ଗକୁ ବିହାରୀ, ବଙ୍ଗାଳୀ, ତେଲେଙ୍ଗା ବା ପଶ୍ଚିମା । ଓଡ଼ିଆମାନେ ନିଜଦେଶରେ ପରପରି ଚଳୁଥାନ୍ତି । ଆମ ଗାଁରେ ଜଣେ ପାଇକ ସର୍ଦ୍ଦାର ମୋ ପିଉସୀପୁଅ ଭାଇ ଈଶ୍ୱର ଚନ୍ଦ୍ର ପାଇକରାୟ ବାହାର ଲୋକଙ୍କର ଏସବୁ କାରବାର ଦେଖି ବାଟରେ ଚାଲିଗଲାବେଳେ ଗାଆନ୍ତି–

"ଚାରିଖାନି ଲୋକେ ଜୁଣ୍ଡ ହୋଇ
ଓଡ଼ିଶା ଜିନିଷ ଯିବେ ଖାଇ ।"

ବାସ୍ତବିକ ତାଙ୍କ ଦେହରେ ପାଇକ ରକ୍ତ ପ୍ରବାହିତ ହେଉଥିଲା । ସେ ସମ୍ଭାଳି ପାରୁନଥିଲେ । ଓଡ଼ିଆମାନେ ସେତେବେଳେ ଶିକ୍ଷାକ୍ଷେତ୍ରରେ ଢେର୍ ଅନଗ୍ରସର ଥିଲେ । ଓଡ଼ିଆମାନେ ନିରୀହ, ସହନଶୀଳ, ଆନ୍ଦୋଳନପ୍ରବଣ ନୁହଁନ୍ତି । ତେଣୁ ସବୁବେଳେ ପଛରେ । ଏ ବଢ଼ିମରୁଡ଼ି ଦେଶରେ ସେମାନେ ଚିରକାଳ ଦରିଦ୍ର । ଧନୀ, ଜମିଦାର, ରାଜକର୍ମଚାରୀମାନଙ୍କର ଗଞ୍ଜଣା ସହନ୍ତି । ଅନ୍ୟାୟର ପ୍ରତିରୋଧ କରିପାରନ୍ତି ନାହିଁ, ନିରୀହତାରୁ ମୁଁ ବାଦ୍ ଯାଇନି ।

**ପୁନଃ କଟକ ଯାତ୍ରା :**

ସେ ସମୟରେ କଟକରେ ସାଇକେଲ ରିକ୍ସାର ପ୍ରଚଳନ ନଥିଲା । ରେଳ ଷ୍ଟେସନ୍‌ଠାରୁ ରାଜାବଗିଚା ଖଣ୍ଡାୟତ ଛାତ୍ରାବାସ ପ୍ରାୟ ତିନି କି.ମି. ଦୂର । ଚାଉଳତକ ଧରି ହାତଟଣା ରିକ୍ସାରେ ମେସ୍‌କୁ ଗଲି । କିପରି ଆଉ ଆଠମାସ କଟିବ ଏ ଚିନ୍ତା ମନକୁ ଘାରିଲା । ଜୁଲାଇମାସରେ ଝାଞ୍ଜିରମଙ୍ଗଳାର ବିଶ୍ୱାଳ ବାବୁଙ୍କ ପୁଅ (ପରବର୍ତ୍ତୀ ଅଭିନେତା) ଧୀର ବିଶ୍ୱାଳ ଓ ତାଙ୍କ ସାନଭାଇଙ୍କୁ ଘରୋଇ ଟିଉସନ କରିବାକୁ ସୁଯୋଗ

ପାଇଲି । ପରମାସରେ ବିଶ୍ୱାଳବାବୁ ମୋତେ ମାସକର ଫି ଚାଳିଶ ଟଙ୍କା ଦେଲେ, ମୁଁ ଉତ୍‌ଫୁଲ୍ଲିତ ହେବାବେଳକୁ ସେ ଆଉ ଟିଉସନ କଲେ ନାହିଁ । ଏହା ମୋତେ ପ୍ରଚଣ୍ଡ ଧକ୍କା ଦେଲା । ଯାହା ଜୀବନଟା ଦୁଃଖ ଦୈନ୍ୟରେ ଭରା ତାର ସୌଭାଗ୍ୟ ଆସିବ କାହୁଁ ? ଏହାପରେ ଆଉ ଟିଉସନ ମିଳିଲା ନାହିଁ । କଷ୍ଟେମଷ୍ଟେ ଚଳିବାକୁ ପଡ଼ିଲା । ଅଗଷ୍ଟ ମାସ ନଅ ତାରିଖ ହେଲା । ସମଗ୍ର ଭାରତ ଆକାଶରେ ଏକ ପ୍ରଚଣ୍ଡ ଝଡ଼ ବୋହିଲା । ମହାତ୍ମା ଗାନ୍ଧୀଙ୍କର ଭାରତ ଛାଡ଼ ଆନ୍ଦୋଳନ ସମଗ୍ର ଉପମହାଦେଶରେ ଚହଳ ସୃଷ୍ଟି କଲା । ଏଥରକ ତାଙ୍କର ଶେଷ ଆହ୍ୱାନ 'କର ବା ମର' ଧ୍ୱନି । ମହାତ୍ମାଙ୍କ ବ୍ରିଟିଶ ସରକାରଙ୍କୁ ଚେତାବନୀ । କିନ୍ତୁ ନେତାମାନେ ସମସ୍ତେ ଜେଲ ଭିତରେ । ଜନସାଧାରଣ ମାତି ଉଠିଲେ । ଭାରତ ସାରା ନିଆଁ ଜଳିଲା । ଦ୍ୱିତୀୟ ମହାସମରର ଘନଘଟା କାଳ, ପୃଥିବୀ ସାରା ରଣହୁଙ୍କାର । ଏହିପରି ସମୟରେ ଭାରତୀୟ ଶାନ୍ତ ଜନତା ତେଜି ଉଠିଲା । ବ୍ରିଟିଶ ସରକାର ଜନତାର ଚାପରେ ତଣ୍ଟିଆଣି ହେଲାଣି । ତଥାପି ସେ ଭାରତ ଛାଡ଼ିବାକୁ ନାରାଜ । ଇଂଲଣ୍ଡରେ ନିଆଁଗିଳା ଜାଠ ଶାସନ । ସେମାନେ ଭାରତକୁ ଚିରକାଳ ଅଧୀନରେ ରଖିବାକୁ ତତ୍ପର । ମାତ୍ର ଆମେ ସବୁ କଲେଜ ପିଲାଏ ସମ୍ଭାଳୁଛୁ କେତେକେ ?

**ଭାରତ ଛାଡ଼ ଆନ୍ଦୋଳନ :**

ସମସ୍ତେ ଶ୍ରେଣୀ ବର୍ଜନ କରି ସମ୍ମୁଖସ୍ଥ ଟେନିସ ପଡ଼ିଆରେ ହାଜର । କିଏ ସେ ସେଠାରେ ଉଦ୍‌ବୋଧନ ଦେଲା ମନେ ନାହିଁ । ତେବେ ସଭା ପରେ ବିରାଟ ପଟୁଆରରେ କଟକ ମେଡ଼ିକାଲ ସ୍କୁଲ ଆଡ଼କୁ ଛାତ୍ରଛାତ୍ରୀ ଦେଶପ୍ରେମ ଉତ୍ତେଜକ ଧ୍ୱନିମାନ ପ୍ରଦାନ କରି ସଦମ୍ଭେ ଯାତ୍ରାକଲେ । ହଜାର ହଜାର ପିଲାଙ୍କର ପଟୁଆର ଏକ ବିରାଟ ଆକାର ଧାରଣ କଲା । ମୋ ମନରେ ବି ଗଭୀର ଉନ୍ମାଦନା । ଛାତ୍ରମାନେ ମେଡ଼ିକାଲ ପରିସରରେ ପ୍ରବେଶ କଲେ । ସେଠାର ଛାତ୍ରନେତା ଛାତ୍ରଛାତ୍ରୀମାନଙ୍କୁ ଆହ୍ୱାନ ଦେଲେ । ଜନଗହଳି ଆଶାତୀତ ବୃଦ୍ଧି ପାଇଲା । ବ୍ରିଟିଶ୍ କର୍ତ୍ତୃପକ୍ଷ ପ୍ରମାଦ ଗଣିଲେ । ମୋ ମନରେ ଉଗ୍ର ଜାତୀୟତା ଭାବ ଜାଗରୂକ ହେଲା । ଏହି ସମୟରେ କଟକରେ ଏସ୍.ପି. ଥିଲେ ହରଗ୍ରୀବ ସାହେବ । ସେ ଖାଲି ରକ୍ତ ଚାଉଳ ଚୋବାଇଲେ । କଲେକ୍ଟର ଥାଆନ୍ତି ଏଲ.ପି.ସିଂହ । ସେ ପରବର୍ତ୍ତୀକାଳରେ ସ୍ୱରାଷ୍ଟ୍ର ସଚିବ ଓ ପରେ ଜାପାନରେ ରାଷ୍ଟ୍ରଦୂତ ହୋଇଥିଲେ । ସେ ସ୍ୱାଧୀନ ମନୋବୃତ୍ତିର ଲୋକ ଥିଲେ । ମେଡ଼ିକାଲ ସ୍କୁଲ ହତାରେ ଉତ୍ତର ଦ୍ୱାର ବାଟେ ଶୋଭାଯାତ୍ରା ବାହାରକୁ ଯିବାକୁ ଉଦ୍ୟତ ହେଲାବେଳେ ହରଗ୍ରୀବ

ସାହେବ ସମ୍ବଲପୁର ଅଞ୍ଚଳର ବହୁସଂଖ୍ୟକ କଳାକଳା ଦେଶୀ ସିପାହି ପୋଲିସ ଅଫିସରମାନଙ୍କ ସହିତ ପ୍ରବେଶ କଲେ । ହରଗ୍ରୀବ କ୍ରୋଧରେ ନିଆଁବାଣ । କିନ୍ତୁ ପିଲାମାନେ ଏ ପର୍ଯ୍ୟନ୍ତ ଅପ୍ରୀତିକର କାର୍ଯ୍ୟ କିଛି କରିନଥିଲେ । କେବଳ ଦେଶ ଓ ନେତାମାନଙ୍କ ନାମରେ ସ୍ଲୋଗାନ ଦିଆଯାଉଥିଲା । ଏତେ ଜନସମାଗମକୁ ଦେଖି ସେ ତଟସ୍ଥ ହୋଇଗଲେ । ଏମାନେ ସହର ଭିତରକୁ ଗଲେ ଜନଆନ୍ଦୋଳନକୁ ଦମନ କରିହେବ ନାହିଁ । ତେଣୁ ଏଠାରେ ତା'ର ପରିସମାପ୍ତି ଘଟାଇବାକୁ ପଡ଼ିବ । ଚାଲିଲା ଲୁହବୁହା ଗ୍ୟାସ୍, ଚାଲିଲା ଲାଠିଚାର୍ଯ୍ୟ । ସେହି ମାଡ଼ରେ କେତେକ ଖଣ୍ଡିଆଖାବରା ହେଲେ । ମୋ ନଳୀଗୋଡ଼ରେ ପାହାରେ ଦିପାହାର ବାଜିଲାବେଳେ ମୁଁ ଆଗକୁ ଦୌଡ଼ିବାକୁ ଲାଗିଲି । ତରବରରେ ପଟେ ଚଟି ସେଠାରେ ରହିଗଲା । ଶୋଭାଯାତ୍ରା ଭାଙ୍ଗିଗଲା ସତ ମାତ୍ର ତା ପରଦିନଠାରୁ କଲେଜ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ ରହିଲା । ଧର୍ମଘଟ ଜୋରସୋର୍ ଚାଲିଲା । ଆମ୍ଭେମାନେ କଲେଜ ଟେନିସ ପଡ଼ିଆରେ ପରବର୍ତ୍ତୀ କାର୍ଯ୍ୟକ୍ରମ ସ୍ଥିର କରିବାକୁ ଏକତ୍ରିତ ହେଲୁ ।

ସେହିଦିନଠାରୁ ଛାତ୍ରମାନେ ଧର୍ମଘଟର ଆହ୍ୱାନ ଦେଲେ । ଶ୍ରେଣୀ ପ୍ରବେଶ ମନା ରହିଲା । ମାତ୍ର ସରକାରୀ କର୍ମଚାରୀ ଓ କେତେକ ଅଧାପକମାନଙ୍କର ପିଲାଏ ଶ୍ରେଣୀ ଭିତରକୁ ପ୍ରବେଶ କରିବାକୁ ଉଦ୍ୟମ କଲେ । ମାତ୍ର ଆମେ କେତେଜଣ ଦୁଆର ମୁହଁରେ ଶୋଇପଡୁଥିଲୁ, ସେତେବେଳେ ମୁଁ କେଉଁଠି ଖାଉଥିଲି, କେଉଁଠି ଶୋଉଥିଲି କିପରି ଚଳୁଥିଲି ମନେନାହିଁ । ସେ ସମୟରେ ହଠାତ୍ ଏକ କବିତା ଲେଖିଦେଲି । ସେ ସ୍ୱତଃସ୍ଫୂର୍ତ୍ତ କବିତାଟି ଏହି –

ଆରେ ଆରେ ପାଜି "ଆମେରି"
ଶୀଘ୍ର ଏଠୁ ପଳାଅ ଡରି ।
ନଗଲେ ତୋ ବେକେ ଦଉଡ଼ା ଡୋରି,
ତାକୁ ମନେ ରଖିଥା ଖାଲି ।
କରୁଛୁ ତୁ କେତେ କଟାଳ
ଭାଙ୍ଗିଦେବୁ ତୋ ମେରୁ ହାଡ଼ ।
ଯେତେ ଯେତେ କଷଣ ଦେଲୁ,
ଆମେ ସବୁ ସହି ତ ଗଲୁ ।

ଆଉ କ'ଣ ସେ ଯୁଗ ଅଛି,
ଭାବିଛୁ ତୁ ରହିବୁ ଗ୍ରାସି ।
ଛାଡ଼ ଛାଡ଼ ତୋର ଜୁଲମ,
ବାମ ହେଲା ତୋର କରମ ।
ତୋର ଆଉ ସେ ଦିନ ନାହିଁ
ଯୁଦ୍ଧ ନେଲା ସବୁ ଛଡ଼ାଇ ।
ତୋର ସବୁ ଯାଇଛି ସରି,
କରିବୁ କା ଆଗେ ଗୁହାରି ।
ଜର୍ମାନୀ ତୋ ଟାଙ୍କ ଭାଙ୍ଗିଛି,
'ତୋଜ' ର ତ ବୋମାମାଡ଼ ଚାଲିଛି ।
ଏବେ ତୋର ସୁବୁଦ୍ଧି ଫେରୁ
ଆମେ ସଙ୍ଗେ ଗୋଳ·କି କରୁ ।
ଖାଲି ହାତେ ଯାଆ ତୁ ଫେରି,
ଦଙ୍ଗାଗୋଳ ଆଉ ନକରି ।
ଆମେ ତୋତେ ନ ମଣୁ ଶତ୍ରୁ,
ତୋର କାହିଁ କଟାଳ ଏଥୁ ।
ବାପୁଙ୍କର ଅହିଂସା (ମନ୍ତ୍ର),
କାଳ ହେଲା ତୋ' ପାଇଁ ମାତ୍ର ।
ଆମ ସଙ୍ଗେ ବନ୍ଧୁତା କଲେ,
ତୋର ରିଷ୍ଟ ଖଣ୍ଡିବ ଭଲେ ।
ଆଉ ଏବେ ନକିରି ଫନ୍ଦି,
ବିନା ସର୍ତ୍ତେ କର ତୁ ସନ୍ଧି ।

ହତ୍ୟାକାରୀ, ଲୁଣ୍ଠନକାରୀ ବେପାରୀଙ୍କ ଉପରେ ଏତେ ରାଗିଗଲି ଯେ ଅତ୍ୟଧିକ ବୃଷ୍ଟି ହେଲେ ଟାଙ୍ଗରା ପାହାଡ଼ିଆ ଜାଗାରୁ ସ୍ୱତଃ ଝରଣା ବାହାରିଲା ପରି ମୋପରି ନୀରସ ଶୁଷ୍କ ମନରୁ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ନିଆଁଗିଳା ଜାଠ ଲର୍ଡ଼ ଆମେରି ଭାରତ ସେକ୍ରେଟରୀ (ବ୍ରିଟିଶ ସରକାରଙ୍କ) ବିରୁଦ୍ଧରେ ଏକ ଖଣ୍ଡ କବିତା ଲେଖି ପକେଇଥିଲି ।

ସବୁଠାରେ ମେସ୍‌ରେ ଓ ବାହାରେ ବନ୍ଧୁମାନଙ୍କ ଗହଣରେ କେବଳ ଦେଶର ସ୍ୱାଧୀନତା ବିଷୟ ଆଲୋଚନା ହୁଏ । କେତେଦିନ ପରେ କଲେଜ ଅନିର୍ଦ୍ଦିଷ୍ଟ କାଳ ପର୍ଯ୍ୟନ୍ତ ବନ୍ଦ ରହିଲା । ମୋର ସହଜେ ତ କିଛି ବହିପତ୍ର ନଥିଲା ସେଥିରେ ପୁଣି ଧର୍ମଘଟରେ ସକ୍ରିୟ ଯୋଗଦାନ । ଏପରି ଭାବରେ ସେ ବର୍ଷଟା ମୋର ମାଟି ହୋଇଗଲା । ମୁଁ ପଢ଼ିପାରିବି କି ନାହିଁ ଜାଣିପାରିଲିନାହିଁ । ଦୁଇଟି କଥାରୁ ଗୋଟିଏ କରିବାକୁ ପଡ଼ିବ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବି କି ପଢ଼ିବାରେ ମନୋନିବେଶ କରିବି ?

ଯେଉଁ ଉଚ୍ଚ ଆଶା ନେଇ କଲେଜକୁ ଆସିଥିଲି ତାହା ପଣ୍ଡ ହୋଇଯିବ ବୋଲି ଭାବିଲି । ସ୍ୱଚ୍ଛବୁଦ୍ଧି, ସ୍ୱଚ୍ଛମନ, ସ୍ୱଚ୍ଛଧନରେ ବିଦ୍ୟା ଅଧ୍ୟୟନ ନା ଦେଶ ଆନ୍ଦୋଳନ ? ଏଇଠି ମୋ ଜୀବନର ଏକ ପ୍ରଧାନ ମୋଡ଼ । ଉପରକୁ ଅଧ୍ୟୟନ କରିବାକୁ ହେଲେ ଆଇ.ଏ. ହେଉଛି ପ୍ରବେଶ ଦ୍ୱାର । ଆଇ.ଏ.ଟା ହାସଲ କଲେ ଗୃହ ମଧ୍ୟରେ କ'ଣ ଗଚ୍ଛିତ ଅଛି ଅନୁଧ୍ୟାନ କରିବି । ତେଣୁ ଅନ୍ୟ ପଥରେ ପଥିକ ହେବାକୁ ପଡ଼ିଲା । ଏହା ବୋଲି ମୁଁ କଂଗ୍ରେସ ପଛାରୁ ବିଚ୍ୟୁତ ହେଲିନାହିଁ । କଂଗ୍ରେସ ସଭାରେ ଯୋଗଦେଲି ମାତ୍ର ସର୍ବ ସମ୍ମୁଖରେ ଚିହ୍ନା ପଡ଼ିଲିନାହିଁ । ପଢ଼ାପଢ଼ିରେ ମନଦେବାପାଇଁ ପ୍ରବଳ ଆକାଙ୍କ୍ଷା ଜନ୍ମିଲା ।

**ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା :**

ଓଡ଼ିଶାରେ ମିଳିତ ମନ୍ତ୍ରିମଣ୍ଡଳ ସମୟ । ଓଡ଼ିଶା ବିଧାନସଭାର ସଭ୍ୟ ସଂଖ୍ୟା ଷାଠିଏ । ରେଭେନ୍ସା କଲେଜ ହଲ୍‌ରେ ଆସେମ୍ଭ୍ଲି ଅଧିବେଶନ ଚାଲିଥିବାବେଳେ ମୁଁ କେତେଥର ସେ ଅଧିବେଶନ ଦେଖିବାର ସୁଯୋଗ ଲାଭ କରିଛି । ପଣ୍ଡିତ ନୀଳକଣ୍ଠ ବି କଂଗ୍ରେସରୁ ଓହରି ଆସି ମିଳିତ ମନ୍ତ୍ରିମଣ୍ଡଳକୁ ସମର୍ଥନ କରୁଥିଲେ । ଯୁଦ୍ଧ ଶେଷ ହୋଇ ନଥାଏ । ମିଳିତ ମନ୍ତ୍ରିମଣ୍ଡଳ ସମୟରେ ୧୯୪୩ ମସିହା ନଭେମ୍ବର ସତେଇଶ ତାରିଖରେ ଉତ୍କଳ ବିଶ୍ୱବିଦ୍ୟାଳୟ ଜନ୍ମଲାଭ କଲା । ଗୋଦାବରୀଶ ମିଶ୍ର ଥିଲେ ଶିକ୍ଷାମନ୍ତ୍ରୀ । ସେ

ଚିରସ୍ମରଣୀୟ ହେଲେ । ପ୍ରଥମେ କଟକ ବର୍ଦ୍ଧମାନ କୋଠିରେ ବିଶ୍ୱବିଦ୍ୟାଳୟ ଅଫିସ ଚାଲିଲା । ରେଭେନ୍ସା କଲେଜର ଅଧକ୍ଷ ଡ.ପ୍ରାଣକୃଷ୍ଣ ପରିଜା ଆଇ.ଇ.ଏସ୍. ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି, ଅଧ୍ୟାପକ ଭି.ଭି.ଜନ ପ୍ରଥମ ରେଜିଷ୍ଟ୍ରାର ଓ ଜଗନ୍ନାଥ ମିଶ୍ର ପ୍ରଥମ ମ୍ୟାନେଜର ହେଲେ । ମୁଁ ଘାତ-ପ୍ରତିଘାତ ସହି ୧୯୪୩ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଆଇ.ଏ. ପରୀକ୍ଷା ଦେଇଥିଲି । ମାତ୍ର ୧୯୪୨ ଆନ୍ଦୋଳନବେଳେ ପଢ଼ାପଢ଼ିରେ ଭୀଷଣ ବ୍ୟାଘାତ ସୃଷ୍ଟି ହୋଇଥିଲା । ତେଣୁ ପ୍ରଥମ ଥର ଅକୃତକାର୍ଯ୍ୟ ହେଲି । ଯାଁଳା ମାଇନର ସ୍କୁଲରେ ଗୁରୁ ଅଦ୍ୱୈତବାବୁଙ୍କ ପାଖରେ ରହି ପଢ଼ାପଢ଼ିରେ ମନ ଦେଲି ଏବଂ ନନ୍-କଲେଜିଏଟ ଛାତ୍ର ହିସାବରେ ୧୯୪୪ ମସିହାରେ ପରୀକ୍ଷା ହଲ୍‌ରେ ବସିଲି । ଆଗ ଆଇ.ଏ. ଟା ପାସ ହୋଇଯାଉ, ବି.ଏ. କଥା ପରେ ଦେଖିବା । ଭବିଷ୍ୟତ ବଞ୍ଚାଙ୍କ କଥା ମୋର ମନେ ଥାଏ । ପରମେଶ୍ୱରଙ୍କ କୃପା ବର୍ଷିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେଇ କୃତକାର୍ଯ୍ୟ ହେଲି । ମୁଣ୍ଡରୁ ଗୋଟିଏ ବଡ଼ ବୋଝ ଉତୁରିଗଲା । ନାନା ଘାତ ପ୍ରତିଘାତ ଦେଇ ଏତେ ପଥ ଚାଲିଆସିଲି । ନାକେଦମ ହୋଇ ପଡ଼ିଥିଲି । ଅର୍ଥ ହେଉଛି ବଡ଼ ବଳ । ନଦୀ ପଠାରେ ଆଶ୍ରୟ ନେଲି । ଅପରକୂଳରେ ପହଞ୍ଚିବାର ବାସନା ରହିଲା । କେବେ ଆଶା ପୂରଣ ହେବ କେଜାଣି ?

**ରାଜଗୋପାଳାଚାରୀଙ୍କ ସଭା :**

ଗୋଟିଏ କଥା ବାକି ରହିଗଲା । ଯେତେଦୂର ମନେପଡୁଛି ୧୯୪୨ ମସିହା ଶେଷ ଆଡ଼କୁ ରେଭେନ୍ସା କଲେଜର ଦିବାଧାୟୀ ଛାତ୍ରସଭାକୁ ଜାତୀୟ କଂଗ୍ରେସର ଜଣେ ବଡ଼ପଣ୍ଡା ଚତୁର ରାଷ୍ଟ୍ରନୀତିଜ୍ଞ, ମନୀଷୀ ରାଜଗୋପାଳାଚାରୀ ଆମନ୍ତ୍ରିତ ହୋଇ ଆସିଲେ । ଫିଜିକ୍ସ ଲାବୋରୋଟୋରୀ ପଛପାଖରେ ସଭାର ବିପୁଳ ଆୟୋଜନ ହୋଇଥିଲା । ଶ୍ରୀ ରାଜଗୋପାଳାଚାରୀ ପାକିସ୍ଥାନ ଗଠନକୁ ସମର୍ଥନ କରୁଥିବାରୁ ଜାତୀୟ କଂଗ୍ରେସରୁ ଅନ୍ତର ହୋଇଯାଇଥାଆନ୍ତି । ଏହି ସଭାରେ ପାକିସ୍ଥାନ ଗଠନର କେତେକ ଯୁକ୍ତି ସେ ଉପସ୍ଥାପନ କଲେ । ''ଖଣ୍ଡିଏ ଧୋତି ଯଦି ମଝିରୁ ଫାଟିଗଲା ତେବେ ତାକୁ ଦୁଇଖଣ୍ଡ କରିଦିଅ, ପ୍ରତେକ ଖଣ୍ଡ କାମରେ ଲାଗିବ । ମୁସଲମାନ ଭାଇମାନେ ଯଦି ଭାରତରୁ ସ୍ୱତନ୍ତ୍ର ହେବାକୁ ଚାହୁଁଛନ୍ତି ସ୍ୱତନ୍ତ୍ର ହୁଅନ୍ତୁ । ପ୍ରତ୍ୟେକ ଅଂଶ ନିଜନିଜର ଉନ୍ନତି ପାଇଁ ଲାଗିପଡ଼ିବେ ।'' ରାଜାଜୀଙ୍କର ଏହି କଥାରେ କିଛିଟା ସତ୍ୟ ନିହିତ ଥାଇପାରେ ମାତ୍ର ଏହାଦ୍ୱାରା ପାକିସ୍ଥାନ ସପକ୍ଷବାଦୀ ମୁସଲମାନମାନେ ଢେର୍ ଆଶାନ୍ୱିତ

ହୋଇପଡ଼ିଲେ । ଶେଷରେ ବ୍ରିଟିଶ କୂଟନୀତି ଠିକ୍ କାମକଲା । ଦେଶ ବିଭାଜନ ହୋଇଗଲା ସତ ମାତ୍ର ସମସ୍ୟାର ସମାଧାନ ହୋଇପାରିଲା ନାହିଁ । ବିଦେଶୀ ଧନୀ ରାଷ୍ଟ୍ରମାନେ ତାକୁ ଆଶ୍ରାକରି ଭାରତ ବିରୁଦ୍ଧରେ ଉସୁକାଉଛନ୍ତି । ଚିରକାଳ ଶତ୍ରୁତା ଲାଗିରହିଲା । ଏବେ ମଧ ଆମ୍ଭେମାନେ ଏହା ଭୋଗ କରୁଛୁ । ରାଜଗୋପାଳାଚାରୀ ବଡ଼ କୂଟନୀତିଜ୍ଞ ହୋଇପାରନ୍ତି ମାତ୍ର ଭାରତର ଅନ୍ୟାନ୍ୟ ବିଶିଷ୍ଟ ନେତାମାନଙ୍କ ସହ ସେ ମଧ ବ୍ରିଟିଶ କୂଟନୀତିର ଶିକାର ହେଲେ । ବିଭାଜିତ ଦେଶ ଅକଥନୀୟ ଦୁଃଖଦୁର୍ଦ୍ଦଶା ଭୋଗକରୁଛି । ସର୍ଦ୍ଦାର ପଟେଲଙ୍କ କଥାରେ ଚାଲିଥିଲେ ସବୁକାମ ଏକା ମାଡ଼କେ ତୁଟିଥାନ୍ତା । ତାହା ତ ହେଲା ନାହିଁ । ଭାରତରେ ରହିଥିବା ଅଧିକାଂଶ ମୁସଲମାନ ଏବେ ମଧ ସମସ୍ୟା ସୃଷ୍ଟି କରୁଅଛନ୍ତି । ଭାରତକୁ ଜନ୍ମଭୂମି ବୋଲି ସମ୍ମାନ ଦେଉନାହାଁନ୍ତି । ଭାରତରେ ରହି ତା'ର ପାଣି, ପବନ, ଖାଦ୍ୟ ଭୋଗକରି ଭାରତ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛନ୍ତି । ଏହା କେବଳ ଧର୍ମନିରପେକ୍ଷ ରାଷ୍ଟ୍ର ଭାରତରେ ସମ୍ଭବ ହୋଇପାରୁଛି । ଜଣାଯାଏ ଭାରତ ଅଭିଶପ୍ତ ଦେଶ । ହିନ୍ଦୁମାନଙ୍କୁ ଖଣ୍ଡାଧାରରେ ବାଟ ଚାଲିବାକୁ ପଡୁଛି । ହିନ୍ଦୁଙ୍କ ପାଇଁ ଗୋଟିଏ ଆଇନ ପୁଣି ମୁସଲମାନମାନଙ୍କ ପାଇଁ ଆଉ ଏକ ଆଇନ, ଉଚିତ କି ? ମୁସଲମାନ ଜନସଂଖ୍ୟା ବୃଦ୍ଧି ହେବାରେ ଲାଗିଛି, ଦିନେ ଏହା ସମସ୍ୟା ସୃଷ୍ଟି କରିବ । ପାକିସ୍ଥାନଠାରୁ ଭାରତରେ ମୁସଲମାନ ସଂଖ୍ୟା ବେଶି । ରାଜନୀତିଆ ଲୋକ ଭୋଟ ଲାଭ କରିବା ପାଇଁ ସବୁ କାମ କରିବାପାଇଁ ତିଆରି । ହାଁଜୀ ହାଁଜୀ କଲେ କାମ ସାଧିତ ହୁଏ ନାହିଁ ।

## କାଳୀବାବୁଙ୍କ ଥିଏଟର

କଟକ ସହର ଜୀବନ ବିଷୟରେ ଗୋଟିଏ କଥା କହିବାକୁ ଭୁଲିଯାଇଛି । କଲେଜରେ ପଢ଼ିବାବେଳେ ୧୯୪୨ ମସିହାରେ କାଳିବାବୁଙ୍କ ଥିଏଟର "ଓଡ଼ିଶା ଥିଏଟର୍ସ" ଦେଖିବାକୁ ବନ୍ଧୁମାନଙ୍କ ସହିତ କେତେଥର ଯାଇଥିଲି । କଳାକାରମାନଙ୍କ ପ୍ରଦର୍ଶନ ଖୁବ୍ ଚମତ୍କାର ହୋଇଥିଲା । ଗୋଟିଏ ନୂତନ ଅଧ୍ୟାୟ ଏବେଠାରୁ ଓଡ଼ିଶା ନାଟ୍ୟ ଜଗତରେ ଆରମ୍ଭ ହେଲା । ଏହା ହେଲା ଥିଏଟରରେ ନାରୀ ଭୂମିକାରେ ନାରୀମାନେ ହିଁ ଅଂଶଗ୍ରହଣ କରିବା । କାଳିବାବୁଙ୍କ ପ୍ରଚେଷ୍ଟାରେ ନାଟକ ପରିବେଷଣରେ ନୂତନ ଯୁଗର ସୂତ୍ରପାତ ହେଲା ।

୧୯୪୪ ମସିହା ମେ, ଜୁନ ମାସ– ଦ୍ୱିତୀୟ ମହାସମରର ପରିସମାପ୍ତି ଘଟିନାହିଁ, ଭାରତୀୟ ଜାତୀୟ କଂଗ୍ରେସର ବଛାବଛା କର୍ମୀମାନେ ସମସ୍ତେ ଜେଲ

ଭିତରେ । ବାହାରେ ରହିଥିବା କଂଗ୍ରେସ ବ୍ୟକ୍ତିମାନେ ସ୍ଥାନେସ୍ଥାନେ ସଭାସମିତି କରି ଦେଶ ପାଇଁ କାମ କରିବା ପାଇଁ ଦେଶବାସୀଙ୍କୁ ଆହ୍ୱାନ ଦେଉଥାନ୍ତି । ଜେଲ ଭିତରେ ମହାଦେବ ଦେଶାଇ ଓ କସ୍ତୁରବାଙ୍କର ପ୍ରୟାଣ ଘଟିଥିବାରୁ ମହାତ୍ମା ଗାନ୍ଧୀଙ୍କ ସହ ଭାରତୀୟମାନେ ଦୁଃଖ ସାଗରରେ ବୁଡ଼ି ରହିଥାନ୍ତି । ସେତେବେଳେ ସାର ହଥର୍ଣ୍ଣ ଲୁଇ ଓଡ଼ିଶାର ଗଭର୍ଣ୍ଣର ଥାନ୍ତି । ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲାଣି । ମୋ ପାଖକୁ ଚିଠି ଆସୁଥାଏ, ଯୁଦ୍ଧରେ ଯୋଗଦେବାପାଇଁ । ମାତ୍ର ଉପରକୁ ପଢ଼ିବାକୁ ଇଚ୍ଛାଥିବାରୁ ମୁଁ ତେଣେ ନଯାଇ ଚାକିରି ଅନ୍ୱେଷଣରେ ରହିଲି । ଘରର ଆର୍ଥିକ ଅବସ୍ଥା ତ ଅସମ୍ଭାଳ । ଅନ୍ନ ସଂସ୍ଥାନ ପ୍ରଥମ କର୍ତ୍ତବ୍ୟ । ତେବେ ବି.ଏ. ଟା ପଢ଼ିଦେଇଥିଲେ ଭଲ ହୋଇଥାନ୍ତା । ରାଧୁ ଅବଧାନ ବା ବାଗଲପୁର ବାବାଜୀଙ୍କ ଭବିଷ୍ୟତବାଣୀ ତ ସଫଳ ହେଲା ନାହିଁ । ମୋ ବଡ଼ମାଆ କହିନ୍ତି–''ନାହାକ ପଣ୍ଡିତ ନକହନ୍ତି ସତ, ଦ୍ୱାରଦ୍ୱାର ହୋଇ ମାଗନ୍ତି ଭିକ ।''

ସେତେବେଳେ ଖୋର୍ଦ୍ଧା ସବଡିଭିଜନରେ ଓଳସିଂହ ଓ ବାଣପୁର ହାଇସ୍କୁଲ ଥାଏ । ଟାଙ୍ଗୀରେ ହାଇସ୍କୁଲ ଆରମ୍ଭ ହୋଇଥାଏ । ବେଗୁନିଆ ଓ ବୋଲଗଡ଼ ହାଇସ୍କୁଲ ପାଇଁ ଯୋଗାଡ଼ ଚାଲିଥାଏ । ପୁରୁଣା ଭୁବନେଶ୍ୱର ହାଇସ୍କୁଲରେ ୧୯୩୭ ମସିହାରୁ ଅଷ୍ଟମ ଆରମ୍ଭ ହୋଇଥାଏ ।

### ଖୋର୍ଦ୍ଧା ହାଇସ୍କୁଲ :

ଖୋର୍ଦ୍ଧା ଏକ ପୁରାତନ ହାଇସ୍କୁଲ । ସେ ସମୟରେ ତା'ର ହେଡ଼ମାଷ୍ଟର ଥାନ୍ତି ରାୟସାହେବ ବାଙ୍କନିଧି ପଟ୍ଟନାୟକ । ବ୍ରିଟିଶ ସରକାରର ସେ ପ୍ରଧାନ ସମର୍ଥକ ଥିଲେ । ତେଣୁ ସରକାର ତାଙ୍କୁ ରାୟସାହେବ ଉପାଧିରେ ଭୂଷିତ କରିଥିଲେ । ସେ ଜ୍ଞାନୀ ଓ ଗୁଣୀଥିଲେ । ତାଙ୍କର ସାରସ୍ୱତ ସାଧନା ଥିଲା । ସେତେବେଳେ ଦୁଇଜଣ ହେଡମାଷ୍ଟର ପ୍ରସିଦ୍ଧ ଥିଲେ । ଜଣେ ଶ୍ରୀ ବାଙ୍କନିଧି ପଟ୍ଟନାୟକ, ଅପର ଜଣକ କଟକ ପ୍ୟାରୀମୋହନ ଏକାଡ଼େମୀର ହେଡମାଷ୍ଟରେ ବାବୁ ବସନ୍ତ କୁମାର ଦାସ । ବାଙ୍କନିଧିବାବୁ ଧୂପଛାୟା, ସାବିତ୍ରୀ, ତୈଲଙ୍ଗ ସ୍ୱାମୀ, ସାଧୁଚରିତମାଳା ପ୍ରଭୃତି କେତେଖଣ୍ଡ ଓଡ଼ିଆ ପୁସ୍ତକ ରଚନା କରିଥିଲେ । ଖୋର୍ଦ୍ଧା ହାଇସ୍କୁଲ ଘରୋଇ ସ୍କୁଲ ଥିଲା । ସରବରାକାରଙ୍କ ଦାନରେ ସ୍କୁଲଟି ପ୍ରତିଷ୍ଠା ହୋଇଥିବାରୁ ଏହା ସରବରାକାର ସ୍କୁଲ ନାମରେ ନାମିତ ହେଲା । ଏପରିକି ମୁଁ ସେ ସ୍କୁଲରେ ଯୋଗଦେବା ପର୍ଯ୍ୟନ୍ତ ଗୋଟିଏ ପ୍ରକୋଷ୍ଠ ସରବରାକାରୀ ଟ୍ରେନିଂ ପାଇଁ ଉଦ୍ଦିଷ୍ଟ ଥିଲା । ଘରୋଇ ସ୍କୁଲ ଥିବାରୁ ହେଡମାଷ୍ଟର

ସର୍ବେସର୍ବା ଥିଲେ । ସେ ଯାହା ଚାହୁଁଥିଲେ ତାହା କରିପାରୁଥିଲେ । ସେ ବାଛି ବାଛି ଉତ୍ତମ ଶିକ୍ଷକ ରଖୁଥିଲେ । ମୁଁ ଭଲ ପଢୁଥିଲି । ଆମ ଗାଁ ପାଖ ଛତାବଟର ଶ୍ରୀଜଗଦାନନ୍ଦ ମହାନ୍ତି ସେଠାରେ ଶିକ୍ଷକତା କରୁଥିଲେ । ସେ ମୋତେ ପୂର୍ବରୁ ଜାଣିଥିଲେ । ତାଙ୍କ ଆଗେ ମୋ ନାମ ସୁପାରିଶ କରିଥିଲେ । ତେଣୁ ଗୁଣୀ ହେଡମାଷ୍ଟର ତାଙ୍କ ସ୍କୁଲରେ ମୋତେ ସ୍ଥାନ ଦେବାପାଇଁ ଇଚ୍ଛା ପ୍ରକାଶ କଲେ । ତାଙ୍କ ସହ ସାକ୍ଷାତ କଲି । ସେ ମୋତେ ମାସିକ ତିରିଶ ଟଙ୍କା ଦରମା ଦେବାପାଇଁ କହିଲେ । ସେ ସମୟରେ ମାଇନର ସ୍କୁଲ ହେଡମାଷ୍ଟ୍ରମାନେ ମାସିକ ବେତନ ପଚାଶ ଟଙ୍କା ପାଉଥାନ୍ତି । ମୁଁ ତିରିଶ ଟଙ୍କା ବେତନରେ ରହିବି ନାହିଁ ବୋଲି ସଫା ମନାକରିଦେଲି । ତାଙ୍କର ମୁହଁ ଆଗରେ କୌଣସି ଶିକ୍ଷକ ରୋକଠୋକ କଥା କହନ୍ତି ନାହିଁ ବୋଲି ଶୁଣିଲି । ମୁଁ କଂଗ୍ରେସୀ ମନୋଭାବାପନ୍ନ ଥିବାରୁ ଏପରି କହିଲି । ବାଙ୍କନିଧିବାବୁ କଠୋର କର୍ତ୍ତବ୍ୟପରାୟଣ ଏବଂ ସମୟାନୁବର୍ତ୍ତୀ ଥିଲେ । ଶୁଣିଲି ସେ ଶିକ୍ଷକମାନଙ୍କୁ ଏକାଟିପକେ ରଖୁଥିଲେ । ଶିକ୍ଷକମାନେ ତାଙ୍କ ସମ୍ମୁଖକୁ ଯିବାକୁ ଭୟ କରୁଥିଲେ । ସେ ସିନା ଶିକ୍ଷକପ୍ରିୟ ନଥିଲେ କିନ୍ତୁ ଛାତ୍ରମାନଙ୍କ ପଢ଼ାପଢ଼ି ପ୍ରତି ତୀକ୍ଷ୍ଣ ନଜର ଦେଉଥିଲେ । ସେ ବି.ଏ., ବି.ଏଲ. ଥିଲେ ମାତ୍ର ପାଠ ପଢ଼ାଇବାର ଶୈଳୀ ତାଙ୍କୁ ଜଣାଥିଲା । ସେ ଇଂରାଜୀ କବିତା ପଢ଼େଇବାରେ ଧୁରୀଣ ଥିଲେ ।

## ଅନ୍ୟତ୍ର ଚାକିରି ଅନ୍ୱେଷଣ :

ସେଦିନ ଖୋର୍ଦ୍ଧାରୁ ଫେରିଆସି ସ୍ୱଗୃହରେ ବସିରହିଲି । ଭୁବନେଶ୍ୱର ନୂଆ ରାଜଧାନୀ ଗଢ଼ା ହୋଇନଥାଏ । ସରକାରଙ୍କ ତରଫରୁ କୌଣସି ବସ୍ ଚଳାଚଳ ହୋଇନଥାଏ । କେହି କେହି ଧନୀ ବ୍ୟକ୍ତି ଖଣ୍ଡେ ଦିଖଣ୍ଡ ବସ୍ ପକାଇଥାନ୍ତି । ରାସ୍ତାଘାଟର ବି କିଛି ସୁବିଧା ନଥିଲା । ନଈନାଳ ଉପରେ ପୋଲ ହୋଇ ନଥିଲା । ଭୁବନେଶ୍ୱର ରେଲଷ୍ଟେସନ ପାଖ ଅଞ୍ଚଳ ବିରାଟ ଜଙ୍ଗଲ ପରିବେଷ୍ଟିତ ଥାଏ । କେବଳ ଜଟଣୀରୁ ନୟାଗଡ଼ ଓ ଖୋର୍ଦ୍ଧାରୁ ବାଣପୁର ଖଣ୍ଡେ ଦିଖଣ୍ଡ ଧଡରା ବସ୍ ଚାଲୁଥାଏ । ଲୋକେ ବି ବସ୍ ଉପରେ ଏତେ ନିର୍ଭର କରୁନଥିଲେ । ମୁଁ ସାଇକେଲ ଚଢ଼ା ଶିଖିନଥିଲି । ମୋର ବି ସାଇକେଲ ନଥିଲା । ଭାଇମାନେ ଚାକିରି କର, ଚାକିରି କର ବୋଲି ଡାକ ପକାଉଥାନ୍ତି । ମୁଁ କି ଚାକିରି କରିବି ? ଏହି ସମୟରେ ପୁରୀରେ ଜଣେ ଓକିଲ ବାବୁ ଶ୍ରୀ ମାଧବ ଚୌଧୁରୀ ଆମ ଗାଁକୁ କାର୍ଯ୍ୟୋପଲକ୍ଷେ ଆସିଥିଲେ । ଆମ ଗାଁ ମହାଜନଙ୍କ ପୁଅ ବଂଶୀଧର ମହାପାତ୍ରଙ୍କର ସେ ସହପାଠୀ, ପୁଣି ପିତୁକୁଳିର ମୁଖ୍ୟଲୋକ କାହ୍ନୁ ପଟ୍ଟନାୟକଙ୍କର ପ୍ରୀତିବନ୍ଧୁ । ସେ ଜଣେ ହେଡମାଷ୍ଟର ଖୋଜୁଥାଆନ୍ତି । ସେତେବେଳେ

ପାଠୁଆ ଲୋକର ଘୋର ଅଭାବ ଥିଲା । ମାଧବବାବୁ କାହ୍ନୁବାବୁଙ୍କୁ ମୋ ନାମ ସୁପାରିଶ କଲେ । ଏଣେ ଅସ୍ତରଙ୍ଗ ପାଖ ପାଟଳଦାରୁ ସେହି ହେଡ଼ମାଷ୍ଟର ପଦପାଇଁ ଚିଠିଟିଏ ଆସିଥାଏ । ତାହା କିନ୍ତୁ ଦୂର ଜାଗା, ପାଣି କାଦୁଅ ରାସ୍ତା ନଈନାଳ ଅନେକ, ସାତ ସମୁଦ୍ର ତେର ନଈ ପାର ହୋଇ ଯିବା କଷ୍ଟକର । ତେଣୁ ସେ ଚାକିରିଟି ପ୍ରତ୍ୟାଖ୍ୟାନ କଲି । ମୋର ପିତୃତୁଲ୍ୟ ହିତାକାଂକ୍ଷୀ ଯାଁଙ୍କାର ସରବରାକାର ଶ୍ରୀ ଯୁଗଳ ଚରଣ ପଟ୍ଟନାୟକ ତାଙ୍କ ଦ୍ୱାରା (ତତ୍କାଳୀନ ଡି.ଡି.ପି.ଆଇ. ଶ୍ରୀଯୁକ୍ତ ହରିବନ୍ଧୁ ମହାନ୍ତି)ଙ୍କୁ ମୌଖିକ କହି ମୋ ପାଇଁ ନୂତନ ପ୍ରତିଷ୍ଠିତ ବାଲେଶ୍ୱର କଲେଜରେ ଲାଇବ୍ରେରିଆନ୍ ଚାକିରିଟିଏ ଯୋଗାଡ଼ କଲେ । ଖାଲି କୁହାକୁହି କରି ଚାକିରିଟା ହୋଇଯାଇଥିଲା । କିନ୍ତୁ ବାଲେଶ୍ୱର ମେଲେରିଆ ପ୍ରପୀଡ଼ିତ ଅଞ୍ଚଳ ବୋଲି ଜଣାଶୁଣା । ଭୟରେ ସେଠାରେ ଯୋଗଦେଲି ନାହିଁ । ପିଚୁକୁଳି ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ପଦରେ ରହିବାକୁ ପସନ୍ଦ କଲି ।

ଶ୍ରୀଯୁକ୍ତ ଯୁଗଳ ଚରଣ ପଟ୍ଟନାୟକ ମୋତେ ପୁତ୍ର ପରି ଦେଖୁଥିଲେ । ମୋତେ ଦୁଇ ଏକର ସରକାରୀ ଜାଗା ଲିଜ ଦେଇ ମୋ ମାନକୁ ବଢ଼ାଇ ଦେଲେ । ମୁଁ ଅଧମ ସେ ଜାଗା ରକ୍ଷାକରି ପାରିଲି ନାହିଁ, ଏବେ ହାତରୁ ଖସିଗଲା । ଦରମା ଯାହା ପାଉଥିଲି ତାହା ଅତି କମ୍ । ଲିଜ୍ ନେଇଥିବା ପଡ଼ିଆ ଜାଗାକୁ ମୋର ଦୂରଦୃଷ୍ଟିର ଅଭାବ ଯୋଗୁଁ ସ୍ୱଳ୍ପ ମୂଲ୍ୟରେ ବିକ୍ରି କରିଦେଲି । ଯାହା ବି ଅବଶିଷ୍ଟ ଥିଲା ତା'ର ସୁରକ୍ଷା କରିନପାରିବାରୁ ମୋ ନିଜ ଲୋକେ ମାଡ଼ି ବସିଲେ । ମୁଁ ସେମାନଙ୍କଠାରୁ ଉଦ୍ଧାର କରିପାରିଲି ନାହିଁ । ଶ୍ରୀ ଯୁଗଳ ପଟ୍ଟନାୟକଙ୍କ ପାଖେ ମୁଁ ଚିରଋଣୀ ହୋଇ ରହିଗଲି । ତାଙ୍କ ପୁଅ ବିମଳ ମୋ ଛାତ୍ର, ତାକୁ ପାଠ ପଢ଼େଇ କିଛିଟା ଆଶ୍ୱସ୍ତି ବୋଧକଲି । ବିମଳ ପରେ ଅଫିସର ପାହିଆକୁ ଉଠିଥିଲା ।

**ଚାକିରି ଜୀବନ ଆରମ୍ଭ :**

ଆମ ଗାଁ ଗୋବିନ୍ଦପୁରଠାରୁ ପିଚୁକୁଳି ୩୩ କି.ମି ରାସ୍ତା । ରାସ୍ତାଟି ପୂରାପୂରି ନାଲିଧୂଳିରେ ପୂର୍ଣ୍ଣ । ସେ ସମୟରେ ବସ୍‌ର ଏତେ ପ୍ରଚଳନ ନଥିଲା । ଖୋରଧାର ମାରୁଆଡ଼ି ବ୍ୟବସାୟୀ ବସିରାମଙ୍କର ଦୁଇଖଣ୍ଡି ପୁରୁଣା ଦଦରା ଗାଡ଼ି ଛଟଣାରୁ ନୟାଗଡ଼ ଚାଲିଥାଏ । ଏତେ ଭିଡ଼ ହୁଏ ଯେ ଲୋକେ ଓହଳିକରି ଯାଆନ୍ତି । ଆମ ଗାଁରୁ ଛଟଣୀ ଯାଇ ଏହି ବସ୍‌ରେ ସେଠାକୁ ଯାଇଥିଲେ ଭଲ ହୋଇଥାନ୍ତା ମାତ୍ର ମୁଁ ଚାଲାକ ଚତୁର ନୁହେଁ । ଏଠୁ ଛଟଣୀ ଯିବା ଓ ପିଚୁକୁଳି ଡାକବଙ୍ଗଳାଠାରୁ ପୁଣି ଏକ କି.ମି.ଗାଁ ଭିତରକୁ ପ୍ରବେଶ କରିବା କଷ୍ଟଦାୟକ ମନେକରି ଗାଁଠାରୁ ଛପରା ଗାଡ଼ିରେ ଯିବା ପାଇଁ ବ୍ୟବସ୍ଥା

କଲି । ସେ ସମୟରେ ପଦସ୍ଥ ଲୋକେ ବା ଶିକ୍ଷିତ ଲୋକେ ଛପରା ବଳଦଗାଡ଼ିରେ ଯାତାୟାତ କରିବାକୁ ସମ୍ମାନଜନକ ମନେ କରୁଥିଲେ । ମୋର ବା ଗାଡ଼ି କୁଆଡ଼େ ଆସିବ ? ମହାଜନ କୃଷ୍ଣଚନ୍ଦ୍ର ମହାପାତ୍ର ନାରାୟଣ ବନ୍ଧୁ ମହାରଣାଙ୍କ ସାନଭାଇ । ସେତେବେଳକୁ ନାରଣବନ୍ଧୁ ସ୍ୱର୍ଗବାସ କଲେଣି । ମହାଜନ କୃଷ୍ଣଚନ୍ଦ୍ର ମୋ ପ୍ରତି ସହାନୁଭୂତିଶୀଳ ହେଲେ । ତାଙ୍କର କାଠ ନିର୍ମିତ ଛପରା ଗାଡ଼ିର ତିନିପାଖ ପୂରା ନିବୁଜ । ସାମନାପଟ ଖୋଲା ଓ ପଛପାଖେ ଝରକାଟିଏ ଥାଏ । ଗାଡ଼ିଟି ସବୁଜରଙ୍ଗ ବିଶିଷ୍ଟ ସୁନ୍ଦର ଦେଖାଯାଉଥିଲା । ଏ ଛପରା ଗାଡ଼ିଟିକୁ ସେ କାହାକୁ ଦିଅନ୍ତି ନାହିଁ । ମୋ ମାନ ଗାଁରେ ଟିକିଏ ବଢ଼ିଯାଇଥିବାରୁ  ମୋତେ ଗାଡ଼ିଟି ଦେଲେ । ମୋ ବଡ଼ଭାଇ ଦିଗମ୍ବର ଶଗଡ଼ ଚାଳକ ହେଲେ । ବଳଦଙ୍କ ବେକରେ ଦୁଇମାଳ ଘଣ୍ଟିଘାଗୁଡ଼ି ମାଗି ଆଣି ଗଳେଇଦେଲେ । ସେ ଦୁହିଁଙ୍କ ମୁଣ୍ଡରେ ରଙ୍ଗିନ କଉଡ଼ି ପେନ୍ଥା ସଜାହୋଇ ବନ୍ଧାଗଲା । ଗାଡ଼ି ଭୋରୁ ଭୋରୁ ଗାଁ ଛାଡ଼ିଲା । ଶଗଡ଼ିଆ ଭାଇ ମନଫୁଲାଣିଆ ଗୀତଗାଇ ବଳଦ କୋଳରେ ଗୋଡ଼ମାରି ଦେବାରୁ ବଳଦ ହଳକ ଦୌଡ଼ିବାରେ ଲାଗିଲେ । ଶଗଡ଼ ଘିଡ଼ିଘିଡ଼ି ଶବ୍ଦ କରି ଗଡ଼ିଚାଲିଲା ।

ସେତେବେଳେ ଟ୍ରକ, ବସ୍‌ର ଏତେ ପ୍ରଚଳନ ନଥିଲା । ନୟାଗଡ଼ରୁ ଜଟଣୀକୁ ପଣ୍ଡା ବା ବଳଦଗାଡ଼ିରେ ବେପାର ବଣିଜ ଚାଲୁଥିଲା । ଲୋକେ କାହୁଁଅ ରାସ୍ତାରେ ଅବାଟରେ ଶଗଡ଼ିଆକୁ ସାଥୀ କରିଥାଆନ୍ତି । ଆବହମାନକାଳରୁ ଶଗଡ଼ ଥିଲା ଆମ ଦେଶ ଲୋକଙ୍କର ପ୍ରଧାନ ଅବଲମ୍ବନ । ସାଧାରଣ ଲୋକେ ଶଗଡ଼ ଗାଡ଼ି ସାହାଯ୍ୟରେ ରେଳଷ୍ଟେସନରୁ ମଧ୍ୟ ଯାତ୍ରୀ ନବା-ଆଣିବା କରୁଥିଲେ । ଟ୍ରକ୍, ବସ୍ ପ୍ରଭୃତି ଗାଡ଼ି ଆସିବାରୁ ଶଗଡ଼ ପରିବହନ ବନ୍ଦ ହୋଇଯାଇଛି । ପରିବର୍ତ୍ତନଶୀଳ ଦୁନିଆ । ''ବେଗହିଁ ଉନ୍ନତିର ଲକ୍ଷଣ'' । ସମସ୍ତେ ଚାହାଁନ୍ତି ଆଗ ଯିବା ଶୀଘ୍ର ପହଞ୍ଚିବା । ପାଦେ ଚାଲିବାକୁ କୁଣ୍ଠିତ । ମାଇଲିଏ କି ଦୁଇମାଇଲ ବାଟ ଯିବାପାଇଁ ଲୋକେ ବସ୍ ଅଟକାଉଛନ୍ତି ।

ମୋ ଗାଡ଼ିଟା ସିନା ଶଗଡ଼ କିନ୍ତୁ ଏପରି ଗାଡ଼ିରେ ଯାତ୍ରାକରିବା ଏକ ବୁନିଆଦି । ବାଟରେ ସାରୁଅଠାରେ ବଧା ମାରିଥିଲୁ । ସେଠାରେ ଘଣ୍ଟାଏ କି ଦି' ଘଣ୍ଟା ଅଟକି ଯାଇଥିଲୁ । ଯାହାହେଉ ଦିନ ରତରତ ବେଳକୁ ଗାଡ଼ି ପିଟୁକୁଲିରେ ପହଞ୍ଚିଗଲା । ୧୯୪୪ ମସିହା ଜୁଲାଇ ଏକ ତାରିଖ । ଖୋର୍ଦ୍ଧା ନୟାଗଡ଼ ରାସ୍ତାରୁ ପ୍ରାୟ ଏକ କି.ମି. ରାସ୍ତା ଉତ୍ତରକୁ ଯିବାରେ ସେକ୍ରେଟାରୀ କାହ୍ନୁବାବୁଙ୍କ ଘର ପଡ଼ିଲା । ସୁଦୃଶ୍ୟ ଛପରା ଗାଡ଼ିରୁ ଓହ୍ଲାଇବାବେଳେ ଗାଁର ଆବାଳବୃଦ୍ଧବନିତା ରୁଣ୍ଡ ହୋଇଗଲେ । ଆଦର

ସ୍ନେହରେ ବାନ୍ଧି ପକାଇଲେ । କାହ୍ନୁ ବାବୁ ଭାରି ଖୁସି । ସମସ୍ତଙ୍କ ଆଗରେ ସେ ଦେଖେଇ ଦେବେ ତାଙ୍କ ପ୍ରତିଷ୍ଠିତ ସ୍କୁଲଟି ଏବେ ଦ୍ରୁତଗତିରେ ଆଗେଇଯିବ । ସୂର୍ଯ୍ୟଦେବତା ମା କୋଳକୁ ଚାଲିଗଲେଣି । ସନ୍ଧ୍ୟାର ଆଗମନରେ ପକ୍ଷୀମାନେ କୋଳାହଳ ରବ କରି ଯେଝା ବସାକୁ ଫେରିଯାଉଛନ୍ତି । ଗୋଠରୁ ଗୋରୁ ଫେରିଲେଣି । ଗୋଧୂଳି ସମୟ ଅତିକ୍ରାନ୍ତ ହେଲାଣି । ହେଡ୍‌ମାଷ୍ଟରଙ୍କ ପାଇଁ ନିର୍ଦ୍ଦିଷ୍ଟ କୋଠରିରେ ହେଡମାଷ୍ଟରବାବୁ ପାଦ ପକେଇଲେ । ଜନସମାଗମ ପତଳା ହେଲାଣି । ମାଟି ଘରଟି ନଅ ଫୁଟରେ ନଅ ଫୁଟ । ଆବଡ଼ାଖାବଡ଼ା ମାଟି କାନ୍ଥ । ଚଟାଣଟି ଗୋବରରେ ଲିପା ହୋଇଛି । ଚାଳଛପର ଗୃହ । କେତେ ଜାଗାରେ ଚାଳ କଣା । ଖଣ୍ଡେ ପୁରୁଣା ଖଟ ଓ ବହୁଦିନର ମସିଆଲଗା ଚୌକିଟିଏ ଘର ମଣ୍ଡନ କରୁଛି । ମାଠିଆରେ ମାଠିଆଟିଏ ପାଣି ଘର କଣରେ ମୁଚୁଳା ଉପରେ ରଖାଯାଇଛି । ଲଣ୍ଠନଟି ମିଞ୍ଜିମିଞ୍ଜି ହୋଇ ଜଳୁଛି, ଲଣ୍ଠନ କାଚର ଉପର ଅଧିକ କଳା ପଡ଼ିଗଲାଣି । ଗୋଟିଏ ଦୀର୍ଘ ନିଶ୍ୱାସ ପକେଇ ସେହି ସଂକୀର୍ଣ୍ଣ କୋଠରିଟିରେ ଆସ୍ଥାନ ଜମେଇଲି । ଗାଁ ଦାଣ୍ଡ ମଝିରେ ଏ ଘରଟି । ଭୟର କାରଣ କିଛି ନଥିଲା । ରହିବାପାଇଁ ତ ଜାଗାଟିଏ ମିଳିଲା,ଏଣିକି କର୍ମକ୍ଷେତ୍ରରେ ଅଗ୍ରସର ହେବି । ଯାହା ଆବଶ୍ୟକ ଜିନିଷ ନେଇଥିଲି ସେ ଘରେ ରହିଗଲା । ଗୁରୁଜୀ ପୁରୁଷୋତ୍ତମ କର ଦି'ଖଣ୍ଡ ପୁରୁଣା ବାସନ ମନକୁମନ ଦେଇଥିଲେ ।

ଶଗଡ଼ ଚାଳକ ମୋ ନିଜ ଭାଇ, ତାକୁ ଉପଯୁକ୍ତ ସମ୍ମାନରେ ରଖାଇଲି । ସେ ମୋ ନିଜ ସହୋଦର ଭାଇବୋଲି ସେକ୍ରେଟାରୀଙ୍କ ଆଗେ ପ୍ରକାଶ କଲି । ମୋ ପାଖରେ ରାତ୍ରିରେ ସେ ନିଦ୍ରାଗଲେ । ପ୍ରତ୍ୟୁଷରୁ ସେ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ଏଣିକି ନୂତନ ଜାଗାରେ ଚଳିବାକୁ ଆରମ୍ଭ କଲି । ଆମ ଗାଁ ପରି ମଫସଲ ଗାଁ । ଏକପ୍ରକାର ଚଳଣି, ଲୋକଙ୍କ ପ୍ରକୃତି ସବୁଠାରେ ସମାନ । ପାଇଖାନାର ନାମଗନ୍ଧ ନଥିଲା । ଟାଙ୍ଗି ଜାଗା, ବଣବୁଦା ପଡ଼ିଆ ଟାଙ୍ଗର ଅନେକ । ବାହାରକୁ ଝାଡ଼ା ଫେରିଯିବାକୁ ହେବ । ଆମ ଦେଶର ସବୁ ଗାଁରେ ଏଇ ପ୍ରକୃତି । ଶତକଡ଼ା ନବେ ଲୋକ ନିରକ୍ଷର । ସ୍ୱାସ୍ଥ୍ୟ ସେବା ବିଷୟରେ ଜ୍ଞାନ ହୋଇନାହିଁ । ପୁଣି ଗାଁରେ କୂପ ନାହିଁ । ଲୋକେ ବନ୍ଧପାଣି ରୋଷେଇରେ, ଗାଧୋଇବାରେ ଓ ପାନୀୟ ଜଳରୂପେ ବ୍ୟବହାର କରୁଥିଲେ । ସକାଳେ ସନ୍ଧ୍ୟାବେଳେ ଦଳଦଳ ହୋଇ ମରଦ, ମାଇପେ ମୋ ବସାବାଟେ ନିଜନିଜର ନିତ୍ୟକର୍ମ ଶେଷକରିବାକୁ ଯାଆନ୍ତି । ଝାଡ଼ାଫେରି ବନ୍ଧପାଣିରେ ଶୌଚହୋଇ ଗାଧୁଆପାଧୁଆ କରି ଫେରନ୍ତି । ବନ୍ଧରେ ଗୋମହିଷାଦି ପଶୁ ଗାଧୁଆନ୍ତି । ମଇଳାପାଣି ଧୋଇହୋଇ ବନ୍ଧରେ ପଶେ । ଲୋକଙ୍କର ସ୍ୱାସ୍ଥ୍ୟ ସଂପର୍କୀୟ ଜ୍ଞାନ ନଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ

ଗାଁରେ କିନ୍ତୁ ପ୍ରତି ଘରେ ବା ତିନି ଚାରିଗୋଟି ପରିବାରରେ ଗୋଟିଏ କୂଅ । ମତେ ତ ବଡ଼ ଅଡୁଆ ଅଡୁଆ ଲାଗିଲା । ପୋଖରୀ ପାଣି ପିଇବା ଜୀବନରେ କେବେ ଘଟିନଥିଲା । ଯଦି କେତେବେଳେ ମୁଁ ଗାଁରେ ବୁଢ଼ାବୁଢ଼ୀ ଲୋକଙ୍କୁ ଦୂଷିତ ଜଳର ଅପକାରିତା ବିଷୟରେ କହୁଥିଲି ସେମାନଙ୍କର ଉତ୍ତର ଅଦ୍ଭୁତ ଥିଲା । ସେମାନେ ଉତ୍ତର ଦିଅନ୍ତି ''ଜଳ ନିନ୍ଦନ୍ତି ରୋଗିଣା'' ସେମାନଙ୍କ ଅଜ୍ଞତାକୁ ନିନ୍ଦା କରିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନଥିଲା । ମୁଁ ଆଜନ୍ମ ପେଟ ରୋଗୀ ତେଣୁ ବନ୍ଧପାଣି ପାନୀୟରୂପେ ଏବଂ ରୋଷେଇ କରିବା ପାଇଁ ଘୃଣା କଲି । କୁହାକୁହି କରିବାରୁ ମୋ ପାଇଁ ଏକ କି.ମି. ଦୂର ଡାକବଙ୍ଗଳାରୁ ପାଣି ଅଣାଗଲା । ମାତ୍ର ରୋଷେଇ ପାଇଁ ଅନ୍ୟ କିଛି ଉପାୟ ନଥିଲା ।

ଘରେ ନପଶୁଣୁ ଚାଳ ବାଜିଲା । ଇଂରାଜୀରେ ଗୋଟିଏ କଥାଅଛି–'First impression lasts long.'' ପ୍ରାରମ୍ଭରୁ ଜାଗାପ୍ରତି ବିତୃଷ୍ଣାଭାବ ଆସିଲା । ମନଟା ସର୍ବଦା ଗୋଳେଇଘାଣ୍ଟି ହେଉଥାଏ । ଖାଇବା ଜିନିଷ ହଜମ ହେଉନଥାଏ । ସ୍ଥାୟୀଭାବେ ଅବସ୍ଥାନ କଲେ କ'ଣ ଗୋଟିଏ ବ୍ୟବସ୍ଥା କରିବାକୁ ହେବ । ଆଖ ପାଖ ଗାଁର ଚାଳିଶ କି ପଚାଶ ପିଲା ଛାତ୍ରାବାସରେ ରହୁଥିଲେ । କଳାପଥର ବା ବେଗୁନିଆ ହାଟ ଉପରେ ନିର୍ଭର କରିବାକୁ ପଡୁଥିଲା । ଏ ସ୍ଥାନରେ କୌଣସି ପନିପରିବା ଉତ୍ପନ୍ନ ହେଉନଥିଲା । ମୋର ମନଟା ଦୋଦୁଲ୍ୟମାନ ଅବସ୍ଥାରେ ଥାଏ । ତଥାପି କର୍ତ୍ତବ୍ୟରେ ଅବହେଳା କଲିନାହିଁ । ପଢ଼ାପଢ଼ି ଜୋରସୋରରେ ଆରମ୍ଭ କରିଦେଲି । ରଣପୁର ଗଡ଼ଜାତର ଶ୍ରୀ ଦିଗମ୍ବର ମହାପାତ୍ର ଦ୍ୱିତୀୟ ଶିକ୍ଷକ ଥିଲେ ଏବଂ ବେଗୁନିଆ ପାଖ ବରପଦା ଗ୍ରାମର ଔଡ୍ର କ୍ଷତ୍ରିୟ ପ୍ରଭା ପୁସ୍ତକର ଲେଖକ ଶ୍ରୀ ଦାମୋଦର ରାଉତରାୟ ହେଡ୍‌ପଣ୍ଡିତ ଥିଲେ । ଚତୁର୍ଥ ଶିକ୍ଷକଙ୍କ ନାମ ମୋର ମନେ ନାହିଁ ।

ଯୁଗଟା ଏତେ ମହଙ୍ଗା ନଥିଲା । ତେବେ ମହଙ୍ଗା ହୋଇ ହୋଇ ଆସୁଥିଲା । ଟଙ୍କାରେ ଚାଉଳ ତିନିସେରରୁ ଖସିଲାଣି । ମୂଲିଆ ମଜୁରି ଦଶଅଣା । ମେସ୍ ଖର୍ଚ୍ଚ ମାସକୁ ପାଞ୍ଚ-ଛଅ ଟଙ୍କା ପଡୁଥିଲା । ଏ ଅଞ୍ଚଳରେ କୃଷକ ଧାନ ଓ ମୁଗଫସଲ କରି ବସିରହନ୍ତି– ସାରୁ ବ୍ୟତୀତ ଅନ୍ୟ ପରିବା ଫସଲ ଫଳାନ୍ତି ନାହିଁ । ମୁଗୁନି ପଥର ପାହାଡ଼ ଶିଳା ସବୁଆଡ଼େ । ଆମ୍ବ ପଣସ ତୋଟା ଏକର ଏକର ଜମି ମାଡ଼ି ବସିଥାଏ । ପଡ଼ିଆ ପଦର ଅନେକ ।

ଏ ଅଞ୍ଚଳରେ ସ୍ୱାଧୀନତା ସଂଗ୍ରାମୀଙ୍କ ସଂଖ୍ୟା ଅନେକ । ନିକଟବର୍ତ୍ତୀ ସାନପଦର ଗାଁର ଗଙ୍ଗାଧରବାବୁ ଜଣେ କମ୍ୟୁନିଷ୍ଟ ମତବାଦୀ ଲୋକ ଥିଲେ ଏବଂ

ମାଇଲିଏ ବାଟ ଦୂରରେ ଚମ୍ପେଇଲୋ ଗ୍ରାମ କେତେ ସ୍ୱାଧୀନତା ସଂଗ୍ରାମୀଙ୍କର ଜନ୍ମସ୍ଥାନ । ଏହି ଗ୍ରାମର ବିଶ୍ୱନାଥ ସାମନ୍ତ ଜଣେ ବିଶିଷ୍ଟ କଂଗ୍ରେସ କର୍ମୀ ଥିଲେ । କିନ୍ତୁ ଗଙ୍ଗାଧର ପାଇକରାୟ ଓ ଗୋକୁଳ ମୋହନ ରାୟ ଚୂଡାମଣି ମୋତେ କମ୍ୟୁନିଷ୍ଟ ଦଳରେ ସଭ୍ୟହେବାପାଇଁ ପ୍ରବର୍ତ୍ତାଉଥାଆନ୍ତି । ମାତ୍ର ମୁଁ ମୋର ମତ ବଦଳାଇ ନାହିଁ । ସେହି କଂଗ୍ରେସପ୍ରେମୀ ରହିଲି ।

ଏଠାରେ ଯେତିକି ଦିନ ରହିଲି କର୍ତ୍ତବ୍ୟ ସମ୍ପାଦନରେ ହେଳା କରିନାହିଁ । ମାତ୍ର ବନ୍ଧପାଣି ରୋଷେଇରେ ବ୍ୟବହୃତ ହେବାରୁ ନାକ ଟେକିବାକୁ ପଡୁଥିଲା । ଏକମାସ ପୂର୍ଣ୍ଣ ହୋଇଯିବାରୁ କାହ୍ନୁବାବୁ ମୋର ବେତନ ବାବଦକୁ ତିରିଶ ଟଙ୍କା ଦେଲେ ଏବଂ ପଚାଶ ଟଙ୍କା ଲେଖେଇ ନେଲେ । ଏତିକିବେଳେ ମୋ ମୁଣ୍ଡରେ ଚେତା ପଶିଲା । ବାଙ୍କନିଧି ପଟ୍ଟନାୟକଙ୍କ କଥା ମନେପକାଇଲି । ମହରଗରୁ ଆସି କାନ୍ତାରରେ ପଡ଼ିଲି ବୋଲି ଧରିନେଲି । ଏ ସ୍ଥାନ ଛାଡ଼ିବାପାଇଁ ଛାଟିପିଟି ହେଲି । ପର ମାସରେ ସେହି ତିରିଶ ଟଙ୍କା ଦେଲେ । ମନରେ ଗ୍ଲାନି ପ୍ରବେଶ କଲା । ଭଙ୍ଗା ଚୌକିରେ ବସି ଚିନ୍ତା କରୁଥିବାବେଳେ ସେପ୍ଟେମ୍ବର ପ୍ରଥମ ସପ୍ତାହରେ ଖୋର୍ଦ୍ଧା ହାଇସ୍କୁଲର ଚତୁର ଦପ୍ତାରି ବାବୁ କୁଳମଣି ଦାସ ଖୋର୍ଦ୍ଧା ହାଇସ୍କୁଲରେ ମୋର ନିଯୁକ୍ତି ପତ୍ରଧରି ଦୁଆର ମୁହଁରେ ହାଜର । ଏ ସୁସମ୍ବାଦରେ ମୁଁ ମନେ ମନେ ଆନନ୍ଦିତ ହେଲି । କୁଳମଣିକୁ କ'ଣ ଖାଇବାକୁ ଦେଲି ମୋର ମନେପଡୁନାହିଁ । ତେବେ ଖୋର୍ଦ୍ଧା ହାଇସ୍କୁଲରେ ଯୋଗ ଦେବାପାଇଁ ତାକୁ ନିର୍ଭର ପ୍ରତିଶ୍ରୁତି ଦେଇ ବିଦାୟ ଦେଲି ।

ତିନିଗୋଟି କାରଣ ଯୋଗୁଁ ମୁଁ ପିଚୁକୁଳି ମାଇନର ସ୍କୁଲ ତ୍ୟାଗ କରିବି ବୋଲି ସ୍ଥିର କଲି । କାହ୍ନୁବାବୁ ମୋତେ ମାସିକ ପଚାଶ ଟଙ୍କା ଦେବେ ବୋଲି ସ୍ୱୀକୃତି ପ୍ରଦାନ କରେଇ ମାସିକ ତିରିଶ ଟଙ୍କା ଦେଇ ପଚାଶ ଟଙ୍କା ଲେଖେଇ ନେଲେ । ଏଥିପାଇଁ ମୁଁ ବିଶେଷ ଦୁଃଖିତ ଥିଲି । ଏହା ଗୋଟିଏ ଚାଲବାଜି କଥା । ଏପରି ବ୍ୟବହାର ମୁଁ ପୂର୍ବରୁ ଶିଖିନଥିଲି । ଦୁର୍ନୀତିରେ ଏହା ଏକ ପ୍ରତ୍ୟକ୍ଷରୂପ ଥିଲା । ଦ୍ୱିତୀୟତଃ ପାନୀୟ ତଥା ପାଚନ ଜଳର ଅସୁବିଧା ମନରେ ସର୍ବଦା ଆଘାତ ପ୍ରଦାନ କରୁଥିଲା । ତୃତୀୟରେ ଖୋର୍ଦ୍ଧା ହାଇସ୍କୁଲ ନିଯୁକ୍ତି ପତ୍ରରେ ମାସିକ ବେତନ ପଇଁତିରିଶ ଟଙ୍କା ଉଲ୍ଲେଖ ଥିଲା । ଖୋର୍ଦ୍ଧା ହାଇସ୍କୁଲ ଏକ ଐତିହ୍ୟ ବିମଣ୍ଡିତ ପ୍ରଖ୍ୟାତ ହାଇସ୍କୁଲ । ସେ ନିଯୁକ୍ତିପତ୍ରରେ ମିଥ୍ୟାର ଆଶ୍ରୟ ନିଆଯାଇଥିବ ବୋଲି ମନେ କଲି ନାହିଁ । ସେ ସ୍କୁଲକୁ ଗଲେ ମୋ ଭବିଷ୍ୟତ କଳ୍ପନା କାର୍ଯ୍ୟକାରୀ ହୋଇପାରେ । ମାଇନର ସ୍କୁଲ ପରିସର

କ୍ଷୁଦ୍ର । ପୁସ୍ତକାଗାର ଅତି ଦରିଦ୍ର । ଖୋର୍ଦ୍ଧା ହାଇସ୍କୁଲ ବହୁଦିନର, ଉନ୍ନତ ଲାଇବ୍ରେରୀ । ଆତ୍ମୋନ୍ନତି ପାଇଁ ବିସ୍ତୀର୍ଣ୍ଣ କ୍ଷେତ୍ର ମିଳିବ । ସବଡିଭିଜନ ହେଡ୍‌କ୍ୱାର୍ଟରେ । ଜ୍ଞାନର ପରିସୀମା ବୃଦ୍ଧି କରାଯାଇ ପାରିବ । ତେବେ ଯେଉଁ ଅନୁଷ୍ଠାନ ଚାହିଁବା ମାତ୍ରେ ମୋର ଅନ୍ନସଂସ୍ଥାନ ଯୋଗେଇ ଦେଇଛି ତାପ୍ରତି କ'ଣ ମୋର କର୍ତ୍ତବ୍ୟ ନାହିଁ ? ପୁଣି ଖୋର୍ଦ୍ଧା ଯିବା ସୁବିଧା ହରାଇଲେ ଭବିଷ୍ୟତରେ ଆଉ ଆସିନପାରେ । ଦ୍ୱନ୍ଦ୍ୱରେ ପଡ଼ିଗଲି । ହେଲେହେଁ ଆତ୍ମୋନ୍ନତି କଳ୍ପନା ବିଜୟ ଲାଭ କଲା । ଏ ସମ୍ବାଦ ପାଇ କାହ୍ନୁବାବୁ ଭୀଷଣ ପ୍ରତିରୋଧ କଲେ । ସେତେବେଳେ ଜଣେ ଆ.ଏ. ବା ବି.ଏ. ପଢୁଆ ବ୍ୟକ୍ତି ପାଇବା ସହଜ ନଥିଲା । ପୁନଃ ମାଇନର ସ୍କୁଲ ଚଳାଇବା ପାଇଁ ବେଗୁନିଆ ସ୍କୁଲ ହେଡ଼ମାଷ୍ଟର ମୋ ଗୁରୁ ବାବୁ ଜଗନ୍ନାଥ ମିଶ୍ର ଓ ବୋଲଗଡ଼ ମାଇନର ସ୍କୁଲ ହେଡ଼ମାଷ୍ଟର ବାବୁ ବିଦ୍ୟାଧର ଚୌଧୁରୀଙ୍କ ଠାରୁ ହିସାବପତ୍ର ବିଷୟରେ କିଛି ଜ୍ଞାନ ହାସଲ କରିଥିଲି । ସେ ସମୟକୁ ବୋଲଗଡ଼ରେ ହାଇସ୍କୁଲ ପ୍ରତିଷ୍ଠା ନିମନ୍ତେ ଯୋଗାଡ଼ ଚାଲିଥାଏ । ପିଚୁକୁଳି ଗ୍ରାମବାସୀ ମୋ ବ୍ୟବହାର, ଚାଲିଚଳଣରେ ଖୁବ୍ ସନ୍ତୁଷ୍ଟ ଥାଆନ୍ତି । ସେମାନଙ୍କ ମୋହବତ ମୁଁ ଭାଙ୍ଗିପାରୁନଥାଏ । କ'ଣ କରିବି, କ'ଣ କରିବି ? ଶେଷରେ ପରିଚାଳନା ସମିତିର ଜଣେ ପ୍ରଭାବଶାଳୀ ବଳିଷ୍ଠ ସଭ୍ୟ ଶ୍ରୀ କୃଷ୍ଣ ରଥଙ୍କୁ ଜଣାଇଲି । ମୂଳରୁ ଗୁରୁସ୍ଥାନୀୟ ବ୍ରାହ୍ମଣଙ୍କ ପ୍ରତି ମୋର ଅଶେଷ ଭକ୍ତି ଥାଏ । କୃଷ୍ଣ ରଥ ମୋର ପିତା ସଦୃଶ । ସେ ମୋତେ ଖୁବ୍ ସ୍ନେହ କରୁଥିଲେ । ମୋ ପାଇଁ ସେ କାହ୍ନୁବାବୁଙ୍କ ପାଖରେ ଓକିଲାତି କଲେ ମୁଁ ମୁକୁଳିଲି । ୧୩.୯.୧୯୪୪ ତାରିଖ ଅପରାହ୍ଣରେ ଗଣ୍ଠିଲିପତ୍ର ଧରି ପିତୃକଳ୍ପ କୃଷ୍ଣ ରଥଙ୍କ ଗହଣରେ ସହାସ୍ୟ ବଦନରେ ପଦବ୍ରଜରେ ଐତିହାସିକ ଖୋର୍ଦ୍ଧା ସହରକୁ ଯାତ୍ରା କଲି । ପଦଯାତ୍ରା ବ୍ୟତୀତ ଅନ୍ୟ କିଛି ଉପାୟ ନଥିଲା । ବାଘମାରି ଗାଁଠାରୁ ମୁହଁସଞ୍ଜ ହୋଇଗଲା, ଆଉ ଆଗକୁ ଯିବା ସମ୍ଭବ ହେଲାନାହିଁ ।

ବାଘମାରି ପଣ୍ଡା ସଂଜ୍ଞାଧାରୀ ବ୍ରାହ୍ମଣଙ୍କ ସ୍ଥାନ । ଏଠାକାର ପଣ୍ଡାମାନଙ୍କୁ ଆଠଗଡ଼ିଆ ବ୍ରାହ୍ମଣ ଆଖ୍ୟା ଦିଆଯାଉଥାଏ । ଏମାନେ ଗୌରବର୍ଣ୍ଣ, ବଳିଷ୍ଠ, ସ୍ୱାସ୍ଥ୍ୟବାନ, ଏମାନେ ମୁଖ୍ୟତଃ କୃଷିକାର୍ଯ୍ୟରେ ସିଦ୍ଧହସ୍ତ । ବଡ଼ବଡ଼ ପଣ୍ଡା, ମଇଁଷିକୁ ନେଇ କୃଷିକାର୍ଯ୍ୟ ସଂପାଦନ କରୁଥାନ୍ତି । ଅଧିକାଂଶ ଧନୀ ଏବଂ ମହାଜନ । ଏମାନେ ଅଧିକାଂଶ ସମୟ ପଣ୍ଡା ଶଗଡ଼, ପଣ୍ଡା ହଳ ସହିତ କାରବାର କରନ୍ତି । ଏମାନେ ଭଦ୍ର ଓ ଅତିଥି ପରାୟଣ । ମହାଲକ୍ଷ୍ମୀ ସେମାନଙ୍କ କାନ୍ଧରେ ସର୍ବଦା ବିରାଜମାନ କରିଥାନ୍ତି । ତେଣୁ ସେମାନେ ଲକ୍ଷ୍ମୀଙ୍କର ବରପୁତ୍ର । ଏହିପରି ଏକ ଅତିଥିପରାୟଣ ବନ୍ଧୁବତ୍ସଳ ପଣ୍ଡାଙ୍କ

ଗୃହରେ ରାତ୍ରିଯାପନ କଲୁ । ସେ ମହାଶୟଙ୍କ ନାମ ଏବେ ସ୍ମରଣକୁ ଆସୁନାହିଁ । ତାଙ୍କର ଆତିଥ୍ୟ ଆମ ଦୁହିଁଙ୍କୁ ମୋହିତ କଲା । ତପର ଦିନ ପ୍ରତ୍ୟୁଷରେ ଶଯ୍ୟା ତ୍ୟାଗକରି ଅତିଥି ସେବକଙ୍କଠାରୁ ବିଦାୟ ନେଇ ପୁନଃ ଗନ୍ତବ୍ୟ ପଥରେ ଯାତ୍ରା କଲୁ । ମହାନଦୀର ଉପନଦୀ ରଣନଦୀ କୂଳରେ ସକାଳର ନିତ୍ୟକର୍ମ ସମାପନ କରି ଖୋର୍ଦ୍ଧା ସହର ଉପକଣ୍ଠରେ ପୂର୍ବାହ୍ନ ଦଶଟା ବେଳେ ଉପସ୍ଥିତ ହେଲୁ । କୃଷ୍ଣରଥ ମହାଶୟ କାହିଁକି ଯେ ମୋ ସହିତ ଆସିଲେ ମୁଁ ଅନୁଭବ କରିପାରିଲି ନାହିଁ । ବୋଧହୁଏ ଅତିଶୟ ବାତ୍ସଲ୍ୟ ମମତା ହେତୁ ସେ ମୋ ସହଯାତ୍ରୀ ହୋଇଥିଲେ । ମୋତେ ହାଇସ୍କୁଲ ହତା ନିକଟରେ ଛାଡ଼ିଦେଇ ସେ ଅନ୍ୟକାମରେ ସହର ଭିତରକୁ ଯାତ୍ରା କଲେ । ସେପ୍ଟେମ୍ବର ୧୪ ତାରିଖ ଦଶଟା ତିରିଶ ମିନିଟରେ ମୁଁ ସୁଯୋଗ୍ୟ ପ୍ରଧାନଶିକ୍ଷକ ରାୟ ସାହେବଙ୍କୁ ସାକ୍ଷାତକରି ବିଦ୍ୟାଳୟ କାର୍ଯ୍ୟରେ ଯୋଗଦେଲି । କିନ୍ତୁ ରଥ ମହାଶୟଙ୍କର ସ୍ନେହ ସହାନୁଭୂତି ମୁଁ ଜୀବନତମାମ ଭୁଲିପାରିଲି ନାହିଁ । ଏବେ ମଧ ମୋର ଅଶୀତିତମ ବୟସରେ ରଥ ମହାଶୟଙ୍କର ବାତ୍ସଲ୍ୟ ମମତା ସ୍ମରଣ କରି ଆନନ୍ଦ ଅନୁଭବ କରୁଛି ।

### ଖୋର୍ଦ୍ଧା ହାଇସ୍କୁଲରେ ଯୋଗଦାନ :

ଏ ହାଇସ୍କୁଲରେ ଯୋଗଦେଇ ମୁଁ ଅତ୍ୟନ୍ତ ପ୍ରୀତ ହେଲି । ଖୋର୍ଦ୍ଧା ଏକ ଇତିହାସ ପ୍ରସିଦ୍ଧ ସ୍ଥାନ । ସମଗ୍ର ଦେଶରେ ଏହାର ନାଁ ଅଛି । ଏହି ସ୍ଥାନରେ ବୀର ପାଇକ ପୁଏ ଦୀର୍ଘ ଦୁଇ ଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟ ଖୋର୍ଦ୍ଧା ଗଜପତି ମହାରାଜାଙ୍କର ପ୍ରଧାନ ସହାୟକ ଥିଲେ । ୧୮୦୩ ମସିହାରେ ବ୍ରିଟିଶ ଶାସକମାନେ ଖୋର୍ଦ୍ଧା ଅଧିକାର କଲେ । ଅନ୍ୟ ଅଞ୍ଚଳର ଲୋକେ ଖୋରଧାକୁ ଓଡ଼ିଶା ନାମରେ ସମ୍ବୋଧନ କରୁଥିଲେ । ତେବେ ବ୍ରିଟିଶ୍ ସରକାର ସହିତ ୧୮୦୪ ମସିହାରେ ଯୁଦ୍ଧରେ ଗଜପତିଙ୍କର ପ୍ରଧାନମନ୍ତ୍ରୀ ଜୟୀରାଜଗୁରୁଙ୍କ ସହିତ ବ୍ରିଟିଶ୍ ବାହିନୀର ଯୁଦ୍ଧ ହୋଇଥିଲା । ମାତ୍ର ରାଜଗୁରୁ ବ୍ରିଟିଶ୍ ସେନାଦ୍ୱାରା ପରାସ୍ତ ହେଲେ ମଧ ଅଧୀନତା ସ୍ୱୀକାର କଲେନାହିଁ । ଫିରିଙ୍ଗୀ ସରକାର ତାଙ୍କୁ ବୀଭତ୍ସ ଭାବରେ ପ୍ରାଣଦଣ୍ଡ ଦେଲା । ବ୍ରିଟିଶ୍ କର୍ମଚାରୀମାନଙ୍କର ଅତ୍ୟାଚାର ଅସହ୍ୟ ହେଲା । ଦୁର୍ଦ୍ଧର୍ଷ ଯୋଦ୍ଧା ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ରଣଦୁନ୍ଦୁଭି ବାଜି ଉଠିଲା ୧୮୧୭ ମସିହା ମାର୍ଚ୍ଚ ମାସରେ । ସମଗ୍ର ଭାରତରେ ଏହା ବ୍ରିଟିଶ ବିରୁଦ୍ଧରେ ପ୍ରଥମ ଗଣ ବିଦ୍ରୋହ । ଦୀର୍ଘ ଆଠ ବର୍ଷକାଳ ବକ୍ସି ଓ ତାଙ୍କର ସର୍ଦ୍ଦାରମାନେ ଗରିଲା ଯୁଦ୍ଧକରି ବ୍ରିଟିଶ ସରକାରକୁ ନୟାନ୍ତ କରିପକାଇଲେ । ବ୍ରିଟିଶରାଜ ଆଉ ବଳପ୍ରୟୋଗ ନକରି ବକ୍ସିଙ୍କ ସମ୍ମାନ ରକ୍ଷାକରି ସାଲିସ ପନ୍ଥା ଧରିଲେ । ୧୮୩୫ ମସିହା ପର୍ଯ୍ୟନ୍ତ

ପାଇକ ବାହିନୀ ବ୍ରିଟିଶ ବିରୁଦ୍ଧରେ ଖଡ୍ଗ ଧାରଣ କରିଥିଲେ । ତପ୍ରରେ ଖୋର୍ଦ୍ଧାରେ ଶାନ୍ତି ସ୍ଥାପିତ ହୋଇଥିଲା । ଗଜପତି ମହାରାଜାଙ୍କୁ ଖୋର୍ଦ୍ଧାରୁ ପୁରୀ ସ୍ଥାନାନ୍ତରିତ କରାଗଲା । ଶାସକଗୋଷ୍ଠୀ ଶାନ୍ତିରେ ନିଃଶ୍ୱାସ ମାରିଲେ । ଖୋରଧାର ଶାସକ ହୋଇ ସର୍ବଦା ଗୋରା ଅଫିସର (ଆଇ.ସି.ଏସ୍.)ମାନେ ଆସିଲେ । ପାଇକମାନଙ୍କୁ ଜବତ କରିବା ପାଇଁ ନାନା ଉପାୟ ପାଞ୍ଚିଲେ । ସେମାନଙ୍କୁ ନିୟନ୍ତ୍ରଣ କରି ସେମାନେ ତାଙ୍କ ମେରୁହାଡ଼ ଭାଙ୍ଗିଦେଲେ । ମାତ୍ର ପାଇକ ବିଦ୍ରୋହରୁ ମହାଶିକ୍ଷା ଲାଭକଲେ । ଖୋର୍ଦ୍ଧା ଅଧିବାସୀମାନଙ୍କୁ ଆପଣାର କରିବା ପାଇଁ ଚେଷ୍ଟା କଲେ । ଖୋର୍ଦ୍ଧା ଅଧିବାସୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ କିଛି କାମ ହାତକୁ ନେଲେ ।

ଶିକ୍ଷାର ବିକାଶ ନିମନ୍ତେ ୧୮୪୪ ମସିହାରେ ଖୋର୍ଦ୍ଧାରେ ହାଡ଼ିଞ୍ଜ ସ୍କୁଲ ପ୍ରତିଷ୍ଠା କରାଗଲା । ୧୮୫୩ ମସିହାରେ ଚାଲର୍ସ ଉଡ଼ ଡେସପାଚ ପରେ ୧୮୫୯-୬୦ରେ ଖୋର୍ଦ୍ଧାରେ ମାଇନର ସ୍କୁଲ ପ୍ରତିଷ୍ଠା କଲେ । ୧୮୯୫ ମସିହାରେ ଯୁବକ ଏଚ୍. ମାକ୍‌ଫରସନ ଆଇ.ସି.ଏସ୍ ଖୋରଧାର ସବଡିଭିଜନ ଅଫିସର ହେଲେ । ସେ ବଡ଼ ବିଦ୍ୟାନୁରାଗୀ ଥିଲେ । ଦିନେ ଅମଲାମାନଙ୍କର ସଭାରେ ତତ୍କାଳୀନ ବନ୍ଦୋବସ୍ତ ଅଫିସର ଟେଲର ସାହେବଙ୍କୁ ଲକ୍ଷ୍ୟ କରି କହିଲେ, ''ମି.ଟେଲର ! ଏଠାରେ ବହୁଦିନ ବନ୍ଦୋବସ୍ତ ଅଫିସର ହୋଇ ରହିଲେ ମଧ୍ୟ ମାଇନର ସ୍କୁଲଟିକୁ ହାଇସ୍କୁଲରେ ପରିଣତ କରିପାରିଲେ ନାହିଁ । ଏହା ଅତୀବ ଦୁଃଖର ବିଷୟ । ମୁଁ ଚାହେଁ ଏଠାରେ ଏକ ହାଇସ୍କୁଲ ପ୍ରତିଷ୍ଠା ହେଉ ।'' ଜଣେ ମୁଖ୍ୟ ଅମଲା ବାବୁ ଦିଗମ୍ବର ଶ୍ରୀଚନ୍ଦନ ସାହେବଙ୍କ ନିକଟକୁ ଯାଇ କହିଲେ, ହଜୁର, ଆପଣ ଚାହିଁଲେ ସ୍କୁଲ ହୋଇଯିବ । ସାହେବ ପଚାରିଲେ କିପରି ? ''ହଜୁର, ଆମର ଏକ ହଜାର ସରବରାକାର ଅଛନ୍ତି । ପ୍ରତ୍ୟେକ ପଚାଶ ଟଙ୍କା ଦେଲେ ପାଞ୍ଚହଜାର ଟଙ୍କା ହେବ ଏବଂ ଧନୀ, ଜମିଦାର ବ୍ୟବସାୟୀ ଅଛନ୍ତି ।'' ସାହେବ ଖୁସିହେଲେ ଏବଂ କାମ ହେଉ ବୋଲି ଅନୁମତି ଦେଲେ । ଦିଗମ୍ବରବାବୁ ତାଙ୍କ ସ୍ତ୍ରୀଙ୍କ ଠାରୁ ପ୍ରଥମେ କୁରୁଜାତକ ମାଳରୁ ଗୋଟିଏ ପଦକ ଦେଇ ଚାନ୍ଦା ଆଦାୟର ଅୟମାରମ୍ଭ କଲେ । ଶୁଣାଯାଏ ଜଣେ ବିଧବା ବୁଢ଼ୀ ପାହୁଲଟିଏ ଚାନ୍ଦା ଦେଲେ, କବିବର ରାଧାନାଥ ସେତେବେଳେ ଓଡ଼ିଶା ଡିଭିଜନର ଇନ୍‌ସପେକ୍ଟର ଥିଲେ । ସେ ସ୍ୱୀକୃତି ପ୍ରଦାନ କଲେ । ୧୮୯୬ ମସିହାରେ ବିଦ୍ୟାଳୟ ଉଦ୍‌ଘାଟିତ ହେଲା । ବର୍ତ୍ତମାନର ଥାନ ଯେଉଁ ସ୍ଥାନରେ ଅଛି ସେଠାରେ ଚାଳଛପର ଗୃହରେ ସ୍କୁଲ ଚାଲିଲା । ମାକଫରସନ ସାହେବଙ୍କର ଖୋର୍ଦ୍ଧା ପ୍ରତି ସ୍ୱତନ୍ତ୍ର ଦରଦ ଥିଲା । ବିଦ୍ୟାଳୟ ପ୍ରତିଷ୍ଠା ହେବାପରେ ସେ ସଭାରେ କହିଲେ, ''ଖୋରଧାର ଯେଉଁମାନଙ୍କ ପାଇଁ ବିଦ୍ୟାଳୟ ସ୍ଥାପିତ ହେଲା

ସେମାନଙ୍କର ନିଦ ଭାଙ୍ଗୁ ନାହିଁ ।'' ପାଇକମାନଙ୍କ ବଂଶଧରମାନଙ୍କୁ ଲକ୍ଷ୍ୟ କରି ସେ ଏପରି ମନ୍ତବ୍ୟ ଦେଇଥିବାର ମନେହେଉଛି ।

ଖୋର୍ଦ୍ଧା ହାଇସ୍କୁଲର ପ୍ରଥମ ହେଡମାଷ୍ଟର ଥିଲେ ଗାରିଡ଼ିପାଞ୍ଚଣର ଶ୍ରୀ ମାଧବ ଚନ୍ଦ୍ର ମିଶ୍ର, ବି.ଏ. । ବାରଜଣ ପ୍ରଧାନ ଶିକ୍ଷକଙ୍କ ପରେ ଶ୍ରୀ ବାଙ୍କନିଧି ପଟ୍ଟନାୟକ ୧୯୨୦ ମସିହା ଜୁନ୍ ମାସ ଅଣତିରିଶ ତାରିଖ ଦିନ ଏ ବିଦ୍ୟାଳୟରେ ଯୋଗ ଦେଇଥିଲେ । ଏହି ବାରଜଣ ହେଡମାଷ୍ଟରଙ୍କ ମଧ୍ୟରୁ ଛଅଜଣ ଓଡ଼ିଆ ଓ ଛଅଜଣ ବଙ୍ଗାଳୀ । ବଙ୍ଗଳୀ ଶିକ୍ଷକମାନେ ଅଠର ବର୍ଷ ପ୍ରଧାନ ଶିକ୍ଷକତା କରିଥିବାବେଳେ ଓଡ଼ିଆ ଶିକ୍ଷକମାନେ ୬ ବର୍ଷ ଶିକ୍ଷକତା କରିଥିଲେ । ଉକ୍ତ ବାରଜଣ ପ୍ରଧାନ ଶିକ୍ଷକ ହେଲେ – ସର୍ବଶ୍ରୀ ମାଧବ ଚନ୍ଦ୍ର ମିଶ୍ର, ସୁରେଶ ଚନ୍ଦ୍ର ଘୋଷ, ଅନୁକୂଳ ଚନ୍ଦ୍ର ଘୋଷ, ହରମୋହନ ପଟ୍ଟନାୟକ, ଦୈତାରୀ ନନ୍ଦ, ପୁଲିନ ଚନ୍ଦ୍ର ପାଇନ, ମହେନ୍ଦ୍ରନାଥ ମଜୁମ୍‌ଦାର, ଅବିନାଶ ଚନ୍ଦ୍ର ଲାହିରି, ମହେନ୍ଦ୍ରନାଥ ମଜୁମ୍‌ଦାର, ପରଶୁରାମ ବର୍ମା, ଗୋକୁଳାନନ୍ଦ ନାୟକ, ଗୋପାଳ ଚନ୍ଦ୍ର ସିଂହ । ଏମାନଙ୍କ ମଧ୍ୟରୁ ଶ୍ରୀ ମହେନ୍ଦ୍ରନାଥ ମଜୁମ୍‌ଦାର ଦୁଇଥର ବାରବର୍ଷକାଳ ପ୍ରଧାନ ଶିକ୍ଷକ ପଦ ଅଳଙ୍କୃତ କରିଥିଲେ । ଏଥିରୁ ଅନୁମାନ କରାହୁଏ ଯେ ଶିକ୍ଷିତ ଓଡ଼ିଆଙ୍କ ସଂଖ୍ୟା ସେତେବେଳେ ନଗଣ୍ୟ ଥିଲା । ପାଠୁଆ ଓଡ଼ିଆ ନ ମିଳୁଥିବାରୁ ସୁଦୂର ବଙ୍ଗଦେଶରୁ ବଙ୍ଗାଳୀ ଶିକ୍ଷକମାନେ ଯୋଗ ଦେଉଥିଲେ । ଏହା ଯେ କେବଳ ଖୋରଧା ହାଇସ୍କୁଲ ବ୍ୟାପାର ତାହା ନୁହେଁ, ଓଡ଼ିଶା ମୋଗଲବନ୍ଦି ଓ ଗଡ଼ଜାତ ହାଇସ୍କୁଲମାନଙ୍କରେ ବଙ୍ଗଳାରୁ ସହକାରୀ ଶିକ୍ଷକ ଓ ପ୍ରଧାନ ଶିକ୍ଷକ ନିଯୁକ୍ତି ପାଉଥିଲେ । ବାଙ୍କନିଧିବାବୁ ୧୯୨୦ ମସିହାରୁ ୧୯୪୯ ମସିହା ପର୍ଯ୍ୟନ୍ତ ମଝିରେ ଗୋଟିଏ ବର୍ଷ (୧୯୩୫-୩୬) ବାବୁ ଫଜରୁଲ ରହମାନଙ୍କ ବ୍ୟତୀତ ନିରଙ୍କୁଶ ଭାବେ ଉକ୍ତ ହାଇସ୍କୁଲର ପ୍ରଧାନ ଶିକ୍ଷକ ପଦ ଅଳଙ୍କୃତ କରିଥିଲେ । ୧୯୧୯ ମସିହାରେ ଓଡ଼ିଶାର ତତ୍କାଳୀନ କମିଶନର ସି.ଏଫ. ଗ୍ରୁନିଙ୍ଗ୍ ସାହେବ ହାଇସ୍କୁଲର ଭିତ୍ତିପ୍ରସ୍ତର ସ୍ଥାପନ କଲେ । ଖୋରଧା ସହରର ଦକ୍ଷିଣ-ପଶ୍ଚିମ ଦିଗରେ ଝିଙ୍କାଟାଙ୍ଗିର ଲୋହିତ ପ୍ରସ୍ତରରେ ନିର୍ମିତ ବିଶାଳ ସୁରମ୍ୟ ପ୍ରାସାଦଟି ସହରର ପଶ୍ଚିମ ଦିଗ ଆଡ଼କୁ ଦଣ୍ଡାୟମାନ ରହିଛ । ତାର ନିର୍ମାଣ ୧୯୧୯ରେ ଆରମ୍ଭ ହୋଇ ୧୯୨୪ରେ ପୂର୍ଣ୍ଣାଙ୍ଗ ପ୍ରାପ୍ତି ହେଲା । ରେକର୍ଡ ପତ୍ରରୁ ଜଣାଯାଏ ସେହି ମାକଫରସନ ସାହେବ ବିହାର-ଓଡ଼ିଶାର ଆକ୍ଟିଙ୍ଗ ଗଭର୍ଣ୍ଣର ଥିବାବେଳେ ନୂତନ ବିଦ୍ୟାଳୟ ଗୃହ ୧୯୨୫ରେ ଉଦ୍ଘାଟନ କରିଥିଲେ । ଏବେ ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଦାଦାରବକ୍ସ ଓ ଦିଗମ୍ବର ଶ୍ରୀଚନ୍ଦନଙ୍କର

ଦୁଇଟି ସ୍ୱତନ୍ତ୍ର ଫଟୋ ପ୍ରଧାନ୍ ଶିକ୍ଷକଙ୍କର ଅଫିସ ଗୃହରେ ଝୁଲୁଅଛି । ଶିକ୍ଷାନୁରାଗୀ ମାକଫରନ ସାହେବଙ୍କ ଫାଟୋ ଅଣାଯାଇ ପାରିନାହିଁ ।

ମୋ ଘର ଖୋର୍ଦ୍ଧା ନିକଟରେ ଅବସ୍ଥିତ ଥିଲେହେଁ ଦାରିଦ୍ର୍ୟର କଷାଘାତ ଯୋଗୁଁ ଖୋର୍ଦ୍ଧା ଭଳିଆ ହାଇସ୍କୁଲରେ ପଢ଼ିବାର ସୁଯୋଗ ମୁଁ ପାଇପାରିନଥିଲି ମାତ୍ର ବିଧିର ବିଧାନ ବିଚିତ୍ର । ସେହି ପରମ୍ପରା ବିଜଡ଼ିତ ହାଇସ୍କୁଲରେ ମୁଁ ଜଣେ ଶିକ୍ଷକ ହେବାର ସୁଯୋଗ ଲାଭ କରିଥିବାରୁ ମୁଁ ବିଶେଷ ଆନନ୍ଦିତ ଓ ଗର୍ବିତ । ଖୋରଧା ନାମଟି ସ୍ମରଣ କଲେ ରୋମ ଟାଙ୍କୁରି ଉଠେ । ଖୋରଧା ନାମ ଶୁଣିଲେ ଅନ୍ୟମାନେ ଟିକିଏ ଦର୍ବିଯାନ୍ତି । ସେହି ମହାନ୍ ଖୋରଧାର ପୂର୍ବ ଗୌରବ ସ୍ମରଣକରି ପଦ୍ମପାଖୁଡ଼ାର ସ୍ୱନାମ-ଧନ୍ୟ କବି ପାଞ୍ଚଗାଁ ନିବାସୀ ବାବୁ ପଦ୍ମଚରଣ ପଟ୍ଟନାୟକଙ୍କର କେତୋଟି ପଂକ୍ତି ମନରେ ଶିହରଣ ସୃଷ୍ଟିକରେ–

"କି କଲି କି କଲି କେଡ଼େ ଅପରାଧ,
କି ଭୂମିରେ ଆଜି ଦେଲି ମୋର ପାଦ ।।
ସେ ଯେ ଭୂମି ନୁହେଁ ଏହି କ୍ଷୁଦ୍ର ସ୍ଥାନ
କେତେଦିନର ଏ ଗୌରବ ଶ୍ମଶାନ ।।
ଯହୁଁ ଟେକିଦେଲେ ଟେକା ଖଣ୍ଡେ ଏଥି
ମିଳିଯାଏ ବୀର ଅସ୍ଥିମଜ୍ଜା ଗ୍ରନ୍ଥି ।।
ପ୍ରତିରେଣୁ ସଙ୍ଗେ ବୀରର ଶୋଣିତ
କାଳେ କାଳେ ଏଥି ରହିଛି ପ୍ରୋଥିତ ।।
ପ୍ରତି ଟାଙ୍ଗି ତୋଟା ପୁରାଣ ଦ୍ରୁମରେ
ଲକ୍ଷ୍ୟଭେଦ ଚିହ୍ନ ରାଜଇ ଭାସ୍ୱରେ ।।
ଶାଳପ୍ରାଂଶୁ ବୀର ପାଇକ ପ୍ରଦାନ ।
ଏବେ ଏଥିକରେ ପୂର୍ବ କୀର୍ତ୍ତି ଗାନ ।।"

ସେହି ଗୌରବମୟ ଖୋରଧାର ଶିକ୍ଷାନୁଷ୍ଠାନରେ ମୁଁ ଜଣେ ଶିକ୍ଷକ ହେବି ପୁଣି ଶିକ୍ଷକ ପରି ଶିକ୍ଷକ ହେବି । ଏହାର ବୀରତ୍ୱର ଗାଥା ମହାନ୍ । ସମଗ୍ର ଭାରତ

ବର୍ଷର ପ୍ରଖ୍ୟାତ ପ୍ରତିଭାଧାରୀ କବି ଶିକ୍ଷାବିତ୍ ଡକ୍ଟର ମାୟାଧର ମାନସିଂହ ଏହି ଅନୁଷ୍ଠାନର ଛାତ୍ରଥିଲେ । ଓଡ଼ିଶୀ ସଂଗୀତକୁ ଭାରତର ସଂଗୀତ କ୍ଷେତ୍ରରେ ପ୍ରତିଷ୍ଠିତ କରେଇଥିବା ସ୍ୱନାମଧନ୍ୟ ନାଟ୍ୟକାର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଏହି ବିଦ୍ୟାଳୟର ଛାତ୍ର ଥିଲେ । ବିଶିଷ୍ଟ ଐତିହାସିକ ଓ ଗବେଷକ ଭାରତ ଓ ଭାରତ ବାହାରେ ସୁନାମ ଅର୍ଜନ କରିଥିବା ଶ୍ରୀ କେଦାର ନାଥ ମହାପାତ୍ର ଓ ଦେଶପ୍ରେମୀ ଡା. ନୃସିଂହ ଚରଣ ସାମନ୍ତସିଂହାର, ବିଶିଷ୍ଟ ଐତିହାସିକ ଡକ୍ଟର ଭବାନୀ ଚରଣ ରାୟ, ବିପ୍ଳବୀ କବି ସଚ୍ଚି ରାଉତରାୟ ଏହି ଅନୁଷ୍ଠାନର ସୁଯୋଗ୍ୟ ଛାତ୍ରଥିଲେ । ଏମାନଙ୍କୁ ନେଇ ଏହି ଅନୁଷ୍ଠାନ ମହାନ, ତେଣୁ ଏହି ମହାନ୍ ସ୍କୁଲର ମୁଁ ଜଣେ କୃତୀ ଶିକ୍ଷକ ହେବି ଏହି ଆଶାନେଇ ୧୯୪୪ ମସିହା ପୂଜାଛୁଟିର ତିନିଦିନ ପୂର୍ବରୁ ଖୋରଧା ହାଇସ୍କୁଲରେ ଯୋଗଦେଲି । ବାଙ୍କନିଧି ବାବୁ ବହୁ ସମୟରେ ମତ ପ୍ରକାଶ କରିବାର ଶୁଣିଛି, ‘‘ଉତ୍ତମ ଶିକ୍ଷକ ହେବାକୁ ହେଲେ ଜ୍ଞାନ ସହିତ ନିଷ୍ଠା, କର୍ତ୍ତବ୍ୟପରାୟଣତା ନିହାତି ଆବଶ୍ୟକ ।’’ ମୋର ବି ସେହି ଗୁଣ ଗୁଡ଼ିକ ଅଛି । ମୁଁ ବିଦ୍ୟାଳୟରେ ଯୋଗଦେବା ସଙ୍ଗେସଙ୍ଗେ କର୍ମତତ୍ପର ହୋଉଠିଲି ।

ସେତେବେଳେ ମୋ ବୟସର ପିଲାମାନେ ଏକାଦଶ ଶ୍ରେଣୀରେ ଅଧ୍ୟୟନ କରୁଥିଲେ । ମୁଁ କ’ଣ ପଢ଼େଇବି ସେ କଥା ପ୍ରଧାନ ଶିକ୍ଷକ ମୋତେ ପଚାରିଲେ ନାହିଁ । ତେବେ କିଛିଦିନ ପୂର୍ବେ ଜଣେ ବି.ଇଡି. ଶିକ୍ଷକ ବିଦ୍ୟାଳୟ ଛାଡ଼ି ଚାଲିଯାଇଥିବାରୁ ତାଙ୍କର ପିରିୟଡ଼ତକ ମୋତେ ପଢ଼େଇବାକୁ କହିଲେ । ନବମ ଶ୍ରେଣୀରେ ଗଣିତର ତିନିଗୋଟି ବିଭାଗ- ଇଂରାଜୀ ଦ୍ୱିତୀୟ ପତ୍ର, ଦଶମରେ ଅତିରିକ୍ତ ଓଡ଼ିଆ ସାହିତ୍ୟ, ସପ୍ତମରେ ଓଡ଼ିଆ ସାହିତ୍ୟ ଓ ଇତିହାସ ପ୍ରଭୃତି । ଉପର ଶ୍ରେଣୀରେ ପଢ଼େଇବା ପାଇଁ ମୁଁ ବେଳେ ବେଳେ ଶଙ୍କି ଯାଉଥାଏ । ତଥାପି ପ୍ରସ୍ତୁତ ହୋଇ ଯାଇ ଅଧ୍ୟାପନା କରେ । ମୁଁ ଖୁବ୍ ନିଷ୍ଠାବାନ, ତେଣୁ ସହଜରେ ସମସ୍ତ ବାଧାକୁ ଅତିକ୍ରମ କରେ । ମୁଁ ସର୍ବଦା ଚେଷ୍ଟାକରେ ଜଣେ ସଫଳ ଶିକ୍ଷକ ହେବାପାଇଁ । ହୋମ ଟାସ୍କ ନ କରିଥିଲେ ମୁଁ ପିଲାଙ୍କୁ ସ୍କୁଲ ସମୟ ପରେ ଅଧଘଣ୍ଟା ଡିଟେନ୍ କରେ । ମୋର କଡ଼ା ମନୋଭାବ ପିଲାମାନଙ୍କୁ ସୁପଥରେ ଟାଣିନିଏ । ମୋ ପ୍ରତି ଭକ୍ତି ଥାଏ, ଭୟ ବି ଥାଏ । ଏବେବି ସୁରକ୍ଷିତ ଅଛି ।

ମୋର ପ୍ରଥମ କର୍ତ୍ତବ୍ୟ ହେଲା ବିଦ୍ୟାଳୟ ଓ ଶିକ୍ଷକମାନଙ୍କ ସହିତ ପରିଚିତ ହେବା । ପୂଜାଛୁଟି ପୂର୍ବ ସମୟ । ମୁଁ ସର୍ବପ୍ରଥମେ ଇ.ଟି. ସ୍କୁଲରେ ଅଧ୍ୟୟନ କରୁଥିବା

ମୋର ବାଲ୍ୟବନ୍ଧୁ ବାବୁ ଲକ୍ଷ୍ମୀଧର ମହାରଥୀଙ୍କ ପାଖେ ଦୁଇ ତିନିଦିନ ଅତିଥି ହିସାବରେ କଟେଇ ଛୁଟିରେ ଗୃହକୁ ପ୍ରସ୍ଥାନ କଲି । ଛୁଟିପରେ ଟୋଲ ବୋର୍ଡିଂ ପାଖ ହାଇସ୍କୁଲର ସଂସ୍କୃତ ପଣ୍ଡିତ ଶ୍ରୀ ଭଗବାନ ହୋତାଙ୍କ ଭଡ଼ାଗୃହରେ ଦିନକୁ ସୁଉକିଟିଏ ଦେଇ ଅର୍ଥାତ୍ ମାସକୁ ସାତ ଟଙ୍କା ଆଠଅଣା ଭଡ଼ାରେ ଅବସ୍ଥାନ କଲି । ଢାମୁଝରୀର ବ୍ରଜ, ଗୋଲକ, ସୁର ଆସି ମୋ ବସାରେ ରହିଲେ ।

ବିଦ୍ୟାଳୟର ପ୍ରତ୍ୟେକ ଶିକ୍ଷକ ମୋର ଗୁରୁଜନ । ସେତେବେଳେ ମୁଣ୍ଡମୁହାଣର ଶ୍ରୀ ବାଳମୁକୁନ୍ଦ ସାମନ୍ତରାୟ, ନିମାପଡ଼ାର ଶ୍ରୀ ନେତ୍ରାନନ୍ଦ ମିଶ୍ର, ବୀରନରସିଂହପୁରର ପଣ୍ଡିତ ଭୁବନେଶ୍ୱର ମିଶ୍ର ଓ ରଘୁନାଥ ମିଶ୍ର, କେନ୍ଦ୍ରାପଡ଼ାର ଶ୍ରୀ କେଶବଚନ୍ଦ୍ର ପତି ଓ ଭଗବାନ ହୋତା, ଛତାବରର ଶ୍ରୀ ଜଗଦାନନ୍ଦ ମହାନ୍ତି, ଖୋରଧା ହାଇସ୍କୁଲ ନିକଟରେ ଅବସ୍ଥାନ କରୁଥିବା ଶ୍ରୀ ଆଶୁତୋଷ ବାଗ୍‌ଚୀ, କେନ୍ଦ୍ରାପଡ଼ାରୁ ଆସିଥିବା ମୌଲବୀ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ଦୁଇତିନିବର୍ଷ ଭିତରେ ବାଜପୁରର ସ୍ୱାଧୀନତା ସଂଗ୍ରାମୀ ବାବୁ ଚିନ୍ତାମଣି ମିଶ୍ରଙ୍କ କନିଷ୍ଠ ଭ୍ରାତା ଶ୍ରୀ ନୀଳମଣି ମିଶ୍ର, ସର୍ବଶ୍ରୀ ଶୈଳେନ୍ଦ୍ର କୁମାର ଦାସ, ଗୋପୀନାଥ ରାଉତରାୟ, ଅଶ୍ୱିନୀ କୁମାର ମହାନ୍ତି ପ୍ରଭୃତି ଯୋଗଦେଇଥିଲେ ।

ମୁଁ ଯେଉଁ ବସାଘରେ ଅବସ୍ଥାନ କଲି ତାହା ସହରର ପଶ୍ଚିମ ଦିଗରେ । ସେ ପାଖଟା ପୂରା ମେଲା । ଖାଁ ଖାଁ ଲାଗେ । କୌଣସି ଲୋକ ଏ ପାଖକୁ ଆସନ୍ତି ନାହିଁ । ଖ୍ରୀଷ୍ଟିଆନ କବର, ମୁସଲମାନ କବରଖାନା ଓ ହିନ୍ଦୁ ଶ୍ମଶାନ ଏହି ପାର୍ଶ୍ୱରେ । ଆହୁରି ପଶ୍ଚିମକୁ ଆମେରିକାନ୍ ମିଶନ୍ ଗୃହ । ମୋ ବସାପାଖରେ କେବଳ ଇ.ଟି. ସ୍କୁଲ ଓ ସଂସ୍କୃତ ଟୋଲ ବୋର୍ଡିଂ । ବହୁ ଦକ୍ଷିଣକୁ ଘାସିସାହି ଓ ପୋଷ୍ଟମର୍ଟମ ହାଉସ୍ । ବିଦ୍ୟାଳୟର ଦକ୍ଷିଣ ଦିଗରେ ଦୂରରେ ସେକ୍ରେଟାରୀ ଓ.ଏ.ଡଡ୍‌ସଓ୍ୟାର୍ଥଙ୍କ ଷୋଳ ଏକର ବିଶିଷ୍ଟ ଏକ ମନୋରମ ଉଦ୍ୟାନ । ତା ମଧ୍ୟରେ ଏକ ସୁରମ୍ୟ ଦ୍ୱିତଳ ପ୍ରାସାଦ । ବିଦ୍ୟାଳୟର ଉତ୍ତର ଦିଗରେ ବିରାଟ ଖେଳପଡ଼ିଆ ପରେ ଏକ ରାଜକୀୟ ଛାତ୍ରାବାସ ବିଲଡିଂଗ ଓ ଖୋର୍ଦ୍ଧା-ନୟାଗଡ଼ ରାସ୍ତାର ଉତ୍ତର ପାର୍ଶ୍ୱରେ ପଲଟଣ ପଡ଼ିଆ ଓ ପଲଟଣ ପୋଖରୀ ଏବଂ ରାୟସାହେବଙ୍କ ବାସଗୃହ । ପୂର୍ବ ପାଖରେ ସହରର କେତେକ ସରକାରୀ ଅଫିସ ଓ ଖୋର୍ଦ୍ଧା ହସପିଟାଲ । ସେତେବେଳେ ଗଡ଼ଖୋରଧା, ଭାଲିଆବାଡ଼ି, ଜଜାରସିଂହ, ଗୁରୁଜଙ୍ଗ ମୁକୁନ୍ଦପ୍ରସାଦ, ଜେମାଦେଇ, ସାଆନ୍ତରାପୁରକୁ ନେଇ ଖୋର୍ଦ୍ଧା ଇୟୁନିଅନ ବୋର୍ଡ ତରଫରୁ ଗୋଟିଏ ଗୋଟିଏ ଖମ୍ବ ରାସ୍ତାକଡ଼ରେ

ପୋତାଯାଇ ଏକ କାଚ ଆବେଷ୍ଟନୀ ମଧ୍ୟରେ ଡିବିପରି ମିଞ୍ଜିମିଞ୍ଜି ଆଲୁଅ ଜଳୁଥିଲା । ସନ୍ଧ୍ୟା ଆଗମନ ପରେ ଖୋରଧା ହାଇସ୍କୁଲ ଛାତ୍ରାବାସଠାରୁ ବସ୍‌ଷ୍ଟାଣ୍ଡ୍ ବା ଡାକ୍ତରଖାନକୁ ଯିବାକୁ ମନରେ ଶଙ୍କା ଜନ୍ମୁଥିଲା । ବିଦ୍ୟାଳୟ ପାଖଟା ନିଛାଟିଆ ନିଛାଟିଆ ଲାଗୁଥିଲା । ଖୋରଧା ସହର ଅର୍ଥ ଉପରସାହି, ବରୁଣେଇ ସାହି, ଖ୍ରୀଷ୍ଟିଆନ ସାହି, ମାରୁଆଡ଼ି ପଟି, ଡାକ୍ତର ସାହି, ତଳସାହି ଓ ସୁନ୍ଦରା ସାହି ମାତ୍ର । ସେତେବେଳେ ଖୋରଧା ଇୟୁନିଅନର ଲୋକସଂଖ୍ୟା ସାତ ଆଠହଜାର ଥାଇପାରେ । ଖୋରଧା ଗଡ଼ ଓ ବାଉରି ସଅର ସାହି ବହୁଦୂରରେ । ନବୀନାବାଗ, ପରବର୍ତ୍ତୀକାଳର ଇନ୍ଦିରାଗାନ୍ଧୀ ପଡ଼ିଆ, ବୁଢ଼ୀବଗିଚା, କୋଣାର୍କ ନଗର, ନୂଆ ବସ୍‌ଷ୍ଟାଣ୍ଡ ଥିଲା ଜନମାନବ ଶୂନ୍ୟ । ଖୋରଧା ନାମର କେବଳ ସୁନାମ ଥିଲା ଏବଂ ଖୋର୍ଦ୍ଧା ହାଇସ୍କୁଲ ତତ୍କାଳରେ ସମଗ୍ର ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଥିଲା ।

### ମୋର ପାଠପଢ଼ା ତୃଷ୍ଣା :

ମୋର ଉପରକୁ ପାଠପଢ଼ିବା ବ୍ୟତୀତ ଅନ୍ୟ କୌଣସି ଉଚ୍ଚଆଶା ନଥିଲା । ଏତିକି ପାଠରେ ମୁଁ ବା କୁଆଡ଼େ ଯିବି ? ତେଣୁ ଜଣେ ଦକ୍ଷ ଶିକ୍ଷକ ହେବାପାଇଁ ପ୍ରାଣପଣେ ଲାଗିଲି । ତେଣେ ଦେଶଟାଯାକ ରାଜନୀତିକ ଆବହାଉଆ । ୧୯୪୨ ମସିହା ଅଗଷ୍ଟ ବିପ୍ଳବ ଭାରତ ମୁକ୍ତି ପାଇଁ ପଥ ଉନ୍ମୁକ୍ତ କରିଥିଲା । ଭାରତ ସ୍ୱାଧୀନତା ପାଇବା ପର୍ଯ୍ୟନ୍ତ ଦେଶରେ ଏକ ପ୍ରକାର ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହୋଇଥିଲା । ଦୀନବନ୍ଧୁ ସି.ଏଫ୍. ଆଣ୍ଡ୍ରୁଜ ତାଙ୍କ ମୃତ୍ୟୁଶଯ୍ୟା ନିକଟରେ ଉପବେଶନ କରିଥିବା ମହାତ୍ମାଗାନ୍ଧୀଙ୍କୁ କହିଲେ ''ମୋହନ ! ସ୍ୱାଧୀନତା ଆସୁଛି, ଆଉ ଡେରି ନାହିଁ ।'' ପରେ ପରେ ନେତାଜୀଙ୍କ ଦ୍ୱାରା ପ୍ରତିଷ୍ଠିତ ଆଜାଦ ହିନ୍ଦ ଫୌଜ ୧୯୪୪ ମାର୍ଚ୍ଚ ୧୮ ତାରିଖରେ 'ଦିଲ୍ଲୀ ଚଲୋ' ଧ୍ୱନିଦେଇ ଭାରତ ଭୂମିରେ ପଦାର୍ପଣ କଲେ । ୧୯୪୫ ମସିହା ବେଳକୁ ଭାରତର ସେନାପତି ପଦରେ ଅଧିଷ୍ଠିତ ଥିବା ଲର୍ଡ଼ ୱ୍ୟାଭେଲ ଭାରତର ବଡ଼ଲାଟ ହୋଇ ଆସିଲେଣି । ତାଙ୍କଠାରେ ମୁସଲମାନ ପ୍ରୀତି ଅଧିକଥିବାର ଜଣାପଡୁଥିଲା । ଜାପାନର ହିରୋସିମା ସହର ଉପରେ ୧୯୪୫ ମସିହା ଅଗଷ୍ଟ ୬ ତାରିଖରେ ଓ ତିନି ଦିନପରେ ନାଗାସାକି ସହର ଉପରେ ଆମେରିକା ପରମାଣୁ ବୋମା ନିକ୍ଷେପ କରିବାରୁ ଦୁଇ ସହରର ଲକ୍ଷ ଲକ୍ଷ ଜନତା ମୃତ୍ୟୁମୁଖରେ ପଡ଼ିଲେ । ଲକ୍ଷ ଲକ୍ଷ ଅର୍ଦ୍ଧଦଗ୍ଧ ଅବସ୍ଥାରେ ତଳହବିକଳ ହେଲେ । ଦୁଇଟି ସହର ନିମିଷକେ ପାଉଁଶରେ ପରିଣତ ହେଲା । ଜାପାନର ଟୋଜ ସରକାର ବାଧ୍ୟହୋଇ ଆତ୍ମସମର୍ପଣ କଲା । ତେଣେ ଇଟାଲୀ, ଜର୍ମାନୀ ପରାସ୍ତ ହେଲେ । ଶାନ୍ତିକାମୀ ଜଗତ ନିଶ୍ୱାସ ମାରିଲା ।

୧୯୪୫ ମସିହା ଅକ୍ଟୋବର ୨୪ ତାରିଖରେ ଆମେରିକାର ନ୍ୟୁୟର୍କ ସହରରେ ୪୭ଟି ସ୍ୱାଧୀନ ରାଷ୍ଟ୍ରକୁ ନେଇ ରୁଜଭେଲଟ, ଚର୍ଚ୍ଚିଲ ଓ ଷ୍ଟାଲିନଙ୍କ ନେତୃତ୍ୱରେ ମିଳିତ ଜାତିସଂଘ(United Nation) ପ୍ରତିଷ୍ଠାଲାଭ କଲା । ଏହା ପୂର୍ବରୁ ପ୍ରଥମ ମହାସମର (୧୯୧୪-୧୯୧୮) ଶେଷହେବା ପରେ ୧୯୧୯ରେ (League of Nation) ଜାତିସଂଘ ଗଢ଼ାହୋଇଥିଲା । ମାତ୍ର ତାହା ଅକାମୀ ହୋଇଯାଇଥିବାରୁ ବର୍ତ୍ତମାନ ମିଳିତ ଜାତିସଂଘ ନୂତନ ପ୍ରେରଣାରେ ଆବିର୍ଭୂତ ହେଲା । ପୃଥିବୀରୁ ଯୁଦ୍ଧର ତାଣ୍ଡବଲୀଳା କମି କମି ଆସିଲା । ବ୍ରିଟଶ ସରକାର ଭାରତ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସଦସ୍ୟମାନଙ୍କୁ ମୁକୁଳାଇ ଦେଲେ । ସିମଳାରେ ଏକ ସମ୍ମିଳନୀ ବସିଲା । ମହମଦ ଅଲ୍ଲୀ ଜିନ୍ନା ଇଂରେଜ ସରକାରର ହାତବାରିସି ହୋଇଯାଇଥିଲେ । ଭାରତ ଶାସନ ପରିଷଦରେ ଅର୍ଦ୍ଧେକ ସଭ୍ୟ ମୁସଲିମ ଲିଗରୁ ରହିବେ ବୋଲି ସେ ଜିଦ୍ ଧରିଲେ । ତେଣୁ ସେ ସମ୍ମିଳନୀ ବିଫଳ ହେଲା । ଏହି ସମୟରେ ଇଂଲଣ୍ଡରେ ସାନି ନିର୍ବାଚନ ହେଲା । ରକ୍ଷଣଶୀଳ ଦଳ ହାରିଗଲେ । ଚର୍ଚ୍ଚିଲ ମନ୍ତ୍ରିମଣ୍ଡଳର ପତନ ହେଲା । କ୍ଲିମେଣ୍ଟ ଅଟଲିଙ୍କ ନେତୃତ୍ୱରେ ଶ୍ରମିକଦଳ କ୍ଷମତାକୁ ଆସିଲେ । ଯୁଦ୍ଧପରେ ଇଂଲଣ୍ଡର ଆର୍ଥିକ ସ୍ଥିତି ଦୋହଲି ଗଲା । ଇଂଲଣ୍ଡ ଏକ ଦ୍ୱିତୀୟ ଶ୍ରେଣୀ ରାଷ୍ଟ୍ରକୁ ଖସି ଆସିଲା । ଏହିପରି ସମୟରେ ଭାରତରେ ଇଂଲଣ୍ଡର ସ୍ଥିତି ଖୁବ୍ ସଙ୍ଗୀନ ହୋଇଗଲା । ନୌବାହିନୀ, ବିମାନ ବାହିନୀରେ ବିଦ୍ରୋହ ଦେଖାଗଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ 'ଦିଲ୍ଲୀ ଚଲୋ' ଧ୍ୱନି ଦେଶରେ ନୂତନ ଜାଗରଣ ସୃଷ୍ଟିକଲା । ଏହି ସମୟରେ ମଧ୍ୟପ୍ରଦେଶ ଜବଲପୁର ସିଗ୍ନାଲ ବାହିନୀରେ ଧର୍ମଘଟ ଦେଖାଦେବାରୁ ଭାରତ ଅବସ୍ଥା ଅସମ୍ଭାଳ ହେଲା । ବିଦେଶୀ ସରକାର ଆତଙ୍କ ମଣିଲେ । ତେଣୁ ଭାରତକୁ ଆଉ ଅଧିକ ସମୟ ନିଜ କବଳରେ ରଖିହେବ ନାହିଁ ବୋଲି ବ୍ରିଟିଶ ଶାସକମାନେ ଭାବିନେଲେ ।

## ଖୋରଧା ଖାଦ୍ୟ କମିଟିରେ ଜଣେ ସକ୍ରିୟ ସଭ୍ୟ :

ଯେତେଦୂର ସ୍ମରଣକୁ ଆସୁଛି ୧୯୪୫ ମସିହା ଶେଷ ବେଳକୁ ଚିନି, ଗହମ, ଗହମଜାତ ଦ୍ରବ୍ୟ ଓ କିରାସିନିର ଉତ୍କଟ ଅଭାବ ପଡ଼ିଲା । ତତ୍କାଳୀନ ସରକାର ପ୍ରତ୍ୟେକ ସହରରେ ଖାଦ୍ୟ କମିଟିମାନ ଗଠନ କଲେ । ସେତେବେଳେ ଶ୍ରୀଯୁକ୍ତ ଶିବରମଣ ଆଇ.ସି.ଏସ୍. ଓଡ଼ିଶାର ଖାଦ୍ୟ ସଚିବ ଥିଲେ, ରାୟବାହାଦୁର ଗୋପୀନାଥ ବେହେରା ସବଡ଼ିଭିଜନାଲ ଅଫିସର ହୋଇ ଆସିଲେ । ବରିଷ୍ଠ ଓ.ଏ.ଏସ୍. ଅଫିସରମାନେ ଖୋର୍ଦ୍ଧାକୁ ଏସ୍.ଡି.ଓ. ହୋଇ ଆସୁଥିଲେ । ଗୋପୀନାଥ ବେହେରା ଖୋରଧା ସହର ପାଇଁ ଏକ

ଖାଦ୍ୟ କମିଟି ଗଠନ କଲେ । ସେଥିରେ ଏସ୍.ଡି.ଓ. ଓ ଓ.ସି.ଏସ୍.ଓ.ଙ୍କ ବ୍ୟତୀତ ଆଉ ଏଗାରଜଣ ସଭ୍ୟ ରହିଲେ । ବେସରକାରୀ ସଭ୍ୟମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକଙ୍କ ପରାମର୍ଶରେ ମୋତେ ଜଣେ ସଭ୍ୟ ହେବାକୁ ପଡ଼ିଥିଲା । ଏହି ସଭାରେ ସମାଜର ସବୁ ଶ୍ରେଣୀର ଲୋକେ ସଭ୍ୟ ରହିଲେ, ଏପରିକି ରଜକ ସାହିର ଶ୍ରୀଜଗନ୍ନାଥ ସେଠିଙ୍କୁ ସଭ୍ୟଭାବରେ ନିଆଗଲା । ସେତେବେଳକୁ ଶ୍ରୀ ବନମାଳୀ ପଟ୍ଟନାୟକ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଂପାଦକ ପଦବୀରେ ନିଯୁକ୍ତ ହେଲେ । ପୂର୍ବାପେକ୍ଷା କଂଗ୍ରେସର ବଳ ବଢ଼ିଯାଇଥିଲା । ୧୯୪୬ ନିର୍ବାଚନରେ କଂଗ୍ରେସ ପୁନଃ ସରକାର ଗଠନ କଲା । ବନମାଳୀବାବୁ ଖୋରଧା ନିର୍ବାଚନ ମଣ୍ଡଳୀର ବିଧାୟକ ଭାବେ ନିର୍ବାଚିତ ହେଲେ । ଶ୍ରୀଯୁକ୍ତ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ରୂପେ ବରିତ ହୋଇଥିଲେ । ବନମାଳୀବାବୁଙ୍କ ପରାମର୍ଶରେ ଖୋରଧାରେ ଖାଦ୍ୟ କମିଟି ଗଢ଼ାହେଲା ଓ ସଭ୍ୟମାନଙ୍କୁ ନିଆଗଲା । ପୂର୍ଣ୍ଣାଙ୍ଗ ଅଧିବେଶନ ସର୍ବଦା ବସିପାରିବ ନାହିଁ, ତେଣୁ ତିନିଜଣ ସଭ୍ୟ ବିଶିଷ୍ଟ ଏକ ସବ୍‌କମିଟି ଗଠନ କରାଗଲା ।

ଖୋରଧା ବାର୍‌ର ବରିଷ୍ଠ ଆଡ଼ଭୋକେଟ ଶ୍ରୀ ମୁରଲୀମୋହନ ଚାଟାର୍ଜୀ, କଂଗ୍ରେସ କର୍ମୀ ବୃଦ୍ଧ ଉଦୟନାଥ ମହାନ୍ତି ଓ ମୁଁ ନିଜେ ଏହି କମିଟିରେ ରହିଲୁ । ଏହି କମିଟି ପ୍ରତି ସପ୍ତାହରେ ତିନିଦିନ ଚାରିଟା ପରେ ଏସ୍.ଡି.ଓ ଙ୍କ ଅଫିସ ପରିସରରେ ବସି ଚନି, ଗହମ, ସୁଜି, ମଇଦା ଓ କିରାସିନିର ସୁଷମ ବଣ୍ଟନ କରୁଥିଲା । ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ଏହିପରି କାର୍ଯ୍ୟକ୍ରମ ଚାଲିଲା । ୧୯୪୭ ମସିହା ବେଳକୁ ବନ୍ଦ ହୋଇଗଲା । ଶ୍ରୀ ଶିବରମଣ ସଭ୍ୟମାନଙ୍କୁ ପ୍ରଶଂସାପତ୍ର ଦେଲେ ଏବଂ ଶ୍ରୀ ଗୋପୀନାଥ ବେହେରା ମୋତେ ୧୫-୨-୧୯୪୭ ରେ ଏକ ପ୍ରଶଂସାପତ୍ର ପ୍ରଦାନ କଲେ । ଏହି କମିଟିରୁ ମୋତେ ଆର୍ଥିକ ସହାୟତା କିଛି ମିଳିନଥିଲା ମାତ୍ର ସହରରେ ମୁଁ ପରିଚିତ ହୋଇଗଲି ।

ଭାରତର ସ୍ୱାଧୀନତା ଏପର୍ଯ୍ୟନ୍ତ ଆସିନଥାଏ । କିନ୍ତୁ ବ୍ରିଟିଶ ସରକାରର ବିଷଦାନ୍ତ ଭାଙ୍ଗିଯାଇଥାଏ । ୧୯୪୬ ମସିହାରେ ଓଡ଼ିଶାର ଗଭର୍ଣ୍ଣର ଥାନ୍ତି ଶ୍ରୀ ଚାନ୍ଦୁଲାଲ ତ୍ରିବେଦୀ । କଂଗ୍ରେସର ବଳ ବଢ଼ିଯାଇଥାଏ । ବାବୁ ଚାନ୍ଦୁଲାଲ ଓଡ଼ିଶାକୁ ଆସିବାବେଳେ ମହାତ୍ମା ଗାନ୍ଧୀଙ୍କୁ ସାକ୍ଷାତ କରି ଆସିଥିଲେ । କିପରି ଓଡ଼ିଶାର ସେବା କରିବେ ସେଥିପାଇଁ ମନ୍ତ୍ର ନେଇ ଆସିଲେ । କ୍ଲିମେଣ୍ଟ ଅଟଲି ଶ୍ରମିକ ଦଳର ନେତା ତଥା ପ୍ରଧାନମନ୍ତ୍ରୀ ଭାବେ ନିର୍ବାଚିତ ହୋଇଥିଲେ । ଏପର୍ଯ୍ୟନ୍ତ ଚର୍ଚ୍ଚିଲ୍ ଜିନ୍ନାଙ୍କୁ ଧରି ଖେଳ ଖେଳୁଥିଲେ । ଦେଶପ୍ରେମୀ

ହିସାବରେ ଜିନ୍ନା ମହାଶୟ ଦିନେ ହେଲେ ଜେଲ୍ ଯାଇନାହାଁନ୍ତି । ବ୍ରିଟିଶ ସରକାର ସାହାଯ୍ୟରେ ଶୁଖିଲାରେ ବାଲିଆ ପିଟିଲେ । ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ଏପରିକି ଚୀନ୍‌ର ସାମ୍ରାଜ୍ୟବାଦୀ ଶାସକଗୋଷ୍ଠୀ ଅବିଭକ୍ତ ଭାରତକୁ ସ୍ୱାଧୀନତା ଦେବା ସପକ୍ଷରେ ନଥିଲେ । ସେମାନେ ମନେ କରୁଥିଲେ ଅବିଭକ୍ତ ଭାରତବର୍ଷକୁ ସ୍ୱାଧୀନତା ଦେଲେ ତାହା ଏକ ବିରାଟ ଶକ୍ତିଶାଳୀ ରାଷ୍ଟ୍ରରେ ପରିଣତ ହୋଇଯିବ । ସମଗ୍ର ପୃଥିବୀ ତାକୁ ଭୟ କରିବ । ତେଣୁ ଭିତରେ ଭିତରେ ବହୁ ଇଂରେଜ କୂଟନୀତିଜ୍ଞ ଜିନ୍ନାଙ୍କୁ ଓ ମୁସଲିମ ଲିଗକୁ ସାହାଯ୍ୟ କରୁଥିଲେ ।

ସେତେବେଳେ ଜିନ୍ନା ସାହେବ କ୍ୟାନସର ରୋଗରେ ପୀଡ଼ିତ ଥିଲେ । ଏକଥା ଭାରତୀୟ ନେତାମାନେ ଜାଣିଲେ ପାକିସ୍ତାନ ପାଇବାରେ ଅସୁବିଧା ହେବ । ତେଣୁ ସେ ବେଶି ବାହାରକୁ ବାହାରୁନଥିଲେ । ଶୀଘ୍ର ପାକିସ୍ତାନ ମିଳିବ ଏହି ଚେଷ୍ଟାରେ ସେ ଥିଲେ । ୧୯୪୬ ମସିହାରେ ସେ ଡାଇରେକ୍ଟ ଆକ୍‌ସନ ନାମରେ ବଙ୍ଗଳା ଓ ପଞ୍ଜାବରେ ହିନ୍ଦୁ ହତ୍ୟାର ତାଣ୍ଡବଲୀଳା ସୃଷ୍ଟିକଲେ । ଶୀଘ୍ର କିପରି ପାକିସ୍ତାନ ହାସଲ ହେବ ଏହି ଚିନ୍ତାରେ ସେ ଥାଆନ୍ତି । ଭାରତ ଯେ ଦୁଇଭାଗରେ ବିଭକ୍ତ ହେବ ଏହା ଜଳଜଳ ଦିଶୁଥିଲା । ଶ୍ରମିକ ସରକାର ଅମଳରେ ଭାରତ ସ୍ୱାଧୀନତା ହାସଲ କରିନପାରିଲେ ସ୍ୱାଧୀନତାପ୍ରାପ୍ତି ବିଳମ୍ବ ହୋଇଯିବ ବୋଲି କଂଗ୍ରେସ ନେତାମାନେ ଭାବିଲେ । ଏଣେ ଭାରତବର୍ଷରେ ଆଉ ଇଂରେଜ ଶାସନ ଚଳିପାରିବ ନାହିଁ ବୋଲି ବାରମ୍ବାର ବିଦ୍ରୋହ ଓ ଧର୍ମଘଟମାନଙ୍କରୁ ଆଭାସ ମିଳୁଥିଲା । ଅଟଲି ସରକାର ଇଂଲଣ୍ଡ ପାର୍ଲିଆମେଣ୍ଟରେ ଭାରତ ସ୍ୱାଧୀନତା ବିଲ୍ ଆଗତ କଲାବେଳେ ଜାଠଦଳପକ୍ଷରୁ ଭୀଷଣ ପ୍ରତିରୋଧ କରାଗଲା ଏପରିକି ବିରୋଧୀ ଦଳର ନେତା ଉଇନ୍‌ସନ ଚର୍ଚ୍ଚିଲ ଭାରତୀୟ ନେତାମାନଙ୍କ ବିରୋଧରେ ବିଷ ଉଦ୍‌ଗିରଣ କଲେ । ସେ କହିଥିଲେ – "Powers will go to the hands of the rascals, rogues and freebooters. Not a bottle of water or a loaf of bread will escape taxation. Only the air will be free. These are men of straw of whom no trace will be found after a few years. They will fight among themselves and India will be lost in political squables." ମହାଶୟ ଚର୍ଚ୍ଚିଲ ସେତେବେଳେ ଯେଉଁ ମତ ପ୍ରକାଶ କରିଥିଲେ ତାହା ବର୍ତ୍ତମାନ ଭାରତୀୟ ନେତୃବୃନ୍ଦଙ୍କ ଠାରେ କେତେକାଂଶରେ ଘଟୁଛି । କିନ୍ତୁ ଉଇନସନ ଚର୍ଚ୍ଚିଲଙ୍କ ଯୁକ୍ତିକୁ ଅଟଲି ବିବେଚନାକୁ ନେଇନଥିଲେ । ଅଟଲି ପାର୍ଲାମେଣ୍ଟରେ ଘୋଷଣା କରିଦେଲେ ଯେ ୧୯୪୮ ମସିହା ଜୁନ ମାସ ପୂର୍ବରୁ ଭାରତକୁ

ସ୍ୱାଧୀନତା ପ୍ରଦାନ କରାଯିବ । ତେଣୁ ଶ୍ରମିକ ସରକାର ଭାଇସରାୟ ଲର୍ଡ଼ ଓ୍ୟାଭେଲଙ୍କ ପରିବର୍ତ୍ତେ ରାଜପରିବାରର ଉଦାର ରାଷ୍ଟ୍ରନୀତିଜ୍ଞ ଲର୍ଡ଼ ମାଉଣ୍ଟବାଟେନଙ୍କୁ ଭାରତର ବଡ଼ଲାଟ କରି ପଠାଇଲେ । ସେ ଭାରତର ସ୍ୱାଧୀନତା ପ୍ରାପ୍ତିକୁ ତ୍ୱରାନ୍ୱିତ କରିବେ । ଜିନ୍ନାଙ୍କର ଜିଦ୍‌ଖୋରପଣିଆ ହେତୁ ଭାରତର ଐକ୍ୟ ସମ୍ଭବହେଲା ନାହିଁ । ସେ ଦୁଇଜାତି ତତ୍ତ୍ୱଉପରେ ଜୋର୍ ଦେଲେ । ମାଉଣ୍ଟବାଟେନ ମଧ ନିଜ ଚତୁରନୀତି ଫଳରେ ଭାରତର ମହାନ୍ ମହାନ୍ ନେତାମାନଙ୍କୁ ନିଜ ଆଡ଼କୁ ଟାଣିନେଲେ । ତେଣୁ ମହାତ୍ମା ଗାନ୍ଧୀଙ୍କ ବ୍ୟତୀତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ ପ୍ରଭୃତି ଦେଶ ବିଭାଜନ ପାଇଁ ରାଜି ହୋଇଗଲେ । କେତେବେଳେ କ'ଣ ଅଘଟଣ ଘଟିପାରେ ବୋଲି ମନେକଲେ ।

ଇଂରେଜ କର୍ତ୍ତୃପକ୍ଷ ଭାରତବର୍ଷକୁ ସ୍ୱାଧୀନତା ଘୋଷଣା କରିବାର ଅବ୍ୟବହିତ ପରେ ଦେଶୀୟ ରାଜ୍ୟମାନଙ୍କୁ ଏହି ସ୍ୱାଧୀନତା ଦେଲେ–ସେମାନେ ଯେକୌଣସି ରାଜ୍ୟରେ ମିଶିପାରବେ । ଉପପ୍ରଧାନମନ୍ତ୍ରୀ ତଥା ଘରୋଇମନ୍ତ୍ରୀ ସର୍ଦ୍ଦାର ପଟେଲ ୫୬୩ଟି ଦେଶୀୟ ରାଜ୍ୟ ମୂଳ ଭାରତ ସହ ମିଶାଇ ଦେଲେ କିନ୍ତୁ ଦୁଇଟି ରାଜ୍ୟ ଟାଳଟୁଳ ନୀତି ଧରିଲେ । ହାଇଦ୍ରାବାଦ ନିଜାମ ରାଜକରମାନଙ୍କ ଦମ୍ଭ ହେତୁ କିଛିଦିନ ବିଳମ୍ବ ଘଟେଇଲେ ମଧ ସର୍ଦ୍ଦାରଙ୍କ ଦୃଢ଼ତା ହେତୁ ଅବଶେଷରେ ଭାରତ ସହ ମିଶିଲେ କିନ୍ତୁ ସୀମାନ୍ତ ରାଜ୍ୟ କାଶ୍ମୀର ମୁସଲମାନବହୁଳ ଅଞ୍ଚଳ ଥିଲା, ମାତ୍ର ଶାସକ ଥିଲେ ହିନ୍ଦୁ ହରି ସିଂହ । ସେ କେଉଁ ରାଜ୍ୟ ସଙ୍ଗେ ମିଶିବେ ସ୍ଥିର କରିପାରିଲେ ନାହିଁ । ଯେତେବେଳେ ପାକିସ୍ତାନ ସୈନ୍ୟସାମନ୍ତ ଧରି କାଶ୍ମୀରର ଉତ୍ତର ପଶ୍ଚିମାଞ୍ଚଳ ଆକ୍ରମଣ କଲା ସେତେବେଳେ (୧୯୪୮ ମସିହା ଅକ୍ଟୋବର ୨୩ ତାରିଖ) ରାଜା ହରି ସିଂହ ଭାରତ ସହିତ ବିଧିବଦ୍ଧଭାବେ ମିଶିଗଲା ବୋଲି ଘୋଷଣା କଲେ । ସେତେବେଳକୁ ପାକିସ୍ତାନ କାଶ୍ମୀରର ପ୍ରାୟ ଏକ ଷଷ୍ଠାଂଶ ଅଞ୍ଚଳ ନିଜ ଅକ୍ତିଆରରେ ରଖି ସାରିଥିଲା । ଭାରତର ସର୍ବୋଚ୍ଚ ସେନାପତି ଜେନେରାଲ୍ କାରିଆପ୍ପା ସମଗ୍ର କାଶ୍ମୀରକୁ ନିଜ ଅକ୍ତିଆରକୁ ନେଇ ଆସିବାପାଇଁ ଦୃଢ଼ ଇଚ୍ଛା ପୋଷଣ କରିଥିଲେ । ମାତ୍ର ପ୍ରଧାନମନ୍ତ୍ରୀ ଜବାହରଲାଲ ମାନବବାଦୀ ହେତୁ ଲୋକକ୍ଷୟ କରିବାକୁ ଅନୁମତି ଦେଲେ ନାହିଁ । କାଶ୍ମୀରର ଅବସ୍ଥା ସେହିପରି ରହିଗଲା । ପ୍ରଧାନମନ୍ତ୍ରୀ ଆଶାପୋଷଣ କରିଥିଲେ ପୃଥିବୀ ପଞ୍ଚାୟତ କାଶ୍ମୀର ବିଷୟ ନଷ୍ପତ୍ତି କରିଦେବ । ମାତ୍ର ତାହା ଏପର୍ଯ୍ୟନ୍ତ କଳିମଞ୍ଜି ହୋଇରହିଛି । କାଶ୍ମୀରରେ ଗଣତନ୍ତ୍ର ଶାସନ ପ୍ରତିଷ୍ଠା ହେଲେ ବି ଭାରତ-ପାକିସ୍ତାନ ମଧରେ କଳି ଲାଗିରହୁଛି । ଉଭୟ ଦେଶର ବହୁଧନ ଅସ୍ତ୍ର ପଜେଇବାରେ ଖର୍ଚ୍ଚ ହେଉଛି । ଭାରତ ପାକିସ୍ତାନ ଆଡ଼କୁ ଯେତେ

ହସ୍ତ ପ୍ରସାରଣ କଲେ ମଧ୍ୟ ପାକିସ୍ତାନ ଆମେରିକା ଓ ଚୀନ ସାହାଯ୍ୟରେ ପ୍ରଭାବିତ ହେଉଛି ଏବଂ ଶାନ୍ତି ପ୍ରତିଷ୍ଠା ପାଇଁ ଆଗଭର ହେଉନାହିଁ ।

ଇଂରେଜମାନେ ଭାରତକୁ ଛାଡ଼ିଗଲା ପରେ ମଧ୍ୟ କେତେକ ଟାପୁ ଅଞ୍ଚଳ ଫ୍ରାନ୍ସ ଓ ପର୍ତ୍ତୁଗାଲ ଅଧୀନରେ ରହିଗଲା । କିନ୍ତୁ ୧୯୪୯ ମସିହାରେ ଫ୍ରାନ୍ସ ଉପନିବେଶ ଚନ୍ଦନ୍‌ନଗର ଭାରତସହ ମଶିଗଲା ଏବଂ ୧୯୫୪ ମସିହା ସୁଦ୍ଧା ଫ୍ରାନ୍ସ ନିଜର ଉପନିବେଶଗୁଡ଼ିକ ପଣ୍ଡିଚେରୀ, ମାହୀ, କାରିକଲ, ଏନାମ୍ ସ୍ୱେଚ୍ଛାକୃତ ଭାବେ ପ୍ରଦାନକରି ବନ୍ଧୁତାର ହାତ ବଢ଼ାଇଥିଲା କିନ୍ତୁ ପର୍ତ୍ତୁଗାଲ ଅନିଚ୍ଛାସତ୍ତ୍ୱେ ବାଧ୍ୟ ହୋଇ ୧୯୬୧ ମସିହାରେ ତାର ଉପନିବେଶ ଗୋଆ, ଡାମନ, ଡିଉ, ନଗରହାବେଳୀରୁ ସୈନ୍ୟ ପ୍ରୟୋଗ ହେତୁ ତ୍ୟାଗକରି ଚାଲିଗଲା । ଅତଏବ ସମଗ୍ର ଭାରତୀୟ ଅଞ୍ଚଳ ୧୯୬୧ ମସିହାରେ ବିଦେଶୀ ଶାସନରୁ ପୂର୍ଣ୍ଣ ମୁକୁଳିଲା ବୋଲି କହିଲେ ଭୁଲ୍ ହେବ ନାହିଁ ।

## ଲୋକମାନ୍ୟ ତିଳକଙ୍କୁ ଅଟଲିଙ୍କ ଉତ୍ତର :

ଏଠାରେ ଗୋଟିଏ କଥା ସ୍ମରଣ କରିବାକୁ ହେବ ଯେ ୧୯୪୭ ମସିହାରେ ଭାରତର ସ୍ୱାଧୀନତା ପାଇବା ବିଧିନିର୍ଦ୍ଦେଶ ଥିବାପରି ଜଣାଯାଏ । ୧୯୨୦ ମସିହାରେ ଏକ ଘଟଣାରୁ ଏହା ପ୍ରାଞ୍ଜଳଭାବେ ହୃଦୟଙ୍ଗମ କରିହୁଏ । ଘଟଣାଟି ଏହିପରି –ଭାରତ ସ୍ୱାଧୀନତା ସଂଗ୍ରାମରେ ଅପ୍ରତିଦ୍ୱନ୍ଦ୍ୱୀ ନେତା ବାଳଗଙ୍ଗାଧର ତିଳକ ୧୯୧୯ ମସିହାରେ ଇଂଲଣ୍ଡର କକଷ୍ଟନ ହଲରେ ଏକ ଜ୍ୱାଳାମୟୀ ବକ୍ତୃତା ପ୍ରଦାନକରି ଭାରତ ସ୍ୱାଧୀନତା ଆନ୍ଦୋଳନ ପାଇଁ ଚାନ୍ଦାସଂଗ୍ରହ କରୁଥିଲେ । ତତ୍ରତ୍ୟ ଭାରତୀୟ ଲୋକେ ତ ଚାନ୍ଦାଦେଲେ, ଜଣେ ଇଂରେଜ ମେଜର ମିଲିଟାରୀ ପୋଷାକରେ ସଜ୍ଜିତ ହୋଇ ତିଳକ ମହାରାଜଙ୍କ ନିକଟକୁ ଆଗେଇ ଆସିଲେ ଏବଂ ଭାରତ ସଂଗ୍ରାମୀ ପାଣ୍ଠିକୁ ଏକ ପାଉଣ୍ଡ ପ୍ରଦାନ କଲେ । ଏକ ଇଂରେଜ ମିଲିଟାରୀ ଅଫିସର ଏକକାଳୀନ ଏକ ପାଉଣ୍ଡ ଦେବାରେ ତିଳକ ମହାରାଜ ତାଙ୍କ ମୁହଁକୁ ବିସ୍ତାରିତ ନେତ୍ରରେ ଚାହିଁ ରହିଲେ । କିଛି ସମୟପରେ ବିସ୍ମୟରେ ପଚାରିଲେ "ଆପଣ କ'ଣ ଭାରତ ସ୍ୱାଧୀନତା ପାଉ ବୋଲି ଚାହାଁନ୍ତି ?" ଉତ୍ତରରେ ଯୋଦ୍ଧୃ ପୋଷାକଧାରୀ ମେଜର ମହାଶୟ କହିଲେ, "ହଁ ମହାଶୟ, ଭାରତୀୟମାନେ ସ୍ୱାଧୀନତା ପାଆନ୍ତୁ, ଏହା ମୋର ଇଚ୍ଛା । କିନ୍ତୁ ଏବେ ବେଳ ଆସିନାହିଁ । ମୁଁ ସରକାର ଗଢ଼ିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ ।" ଏହି ଗୋରା ମେଜର ଜଣକ ହେଉଛନ୍ତି ଉଦାରମନା କ୍ଲିମେଣ୍ଟ ଅଟ୍‌ଲି । ଅବଶ୍ୟ ୧୯୪୭ ମସିହା ବେଳକୁ ତାଙ୍କର ମନେଥିଲା କି ନାହିଁ କିଏ କହିବ ? କିନ୍ତୁ ତତ୍କାଳର ପରିସ୍ଥିତି ଦେଖି ସେ ଅନୁଭବ

କଲେ ଭାରତକୁ ଆଉ ପରାଧୀନକରି ରଖିହେବ ନାହିଁ । ସେ ନିଜେ ମଧ୍ୟ ଉଦାରନୀତି ସଂପନ୍ନ ରାଜନୀତିଜ୍ଞ ଥିଲେ । ସେ ପ୍ରଧାନମନ୍ତ୍ରୀ ହୋଇନଥିଲେ ଭାରତର ସ୍ୱାଧୀନତା ଲାଭ ଯେ ଆଉ କିଛିକାଳ ବିଳମ୍ବିତ ହୋଇଥାଆନ୍ତା ଏଥିରେ ସନ୍ଦେହ ନାହିଁ । ଇଂଲଣ୍ଡ ରାଜବଂଶ ଭାରତର ସ୍ୱାଧୀନତା ଲାଭ ସପକ୍ଷରେ ନଥିଲେ । ବିରୋଧୀଦଳ ଭୀଷଣ ପ୍ରତିରୋଧ କଲେ ମଧ୍ୟ ଉଦାରମନା ଅଟଲି ବ୍ରିଟିଶ ପାର୍ଲିଆମେଣ୍ଟରେ ଭାରତ ସ୍ୱାଧୀନତା ଆଇନ ପାସ୍ କରେଇନେଲେ । ଭାରତ ସ୍ୱାଧୀନତା ଲାଭକଲା ଏବଂ ଇଂଲଣ୍ଡର ଏକ ବଳିଷ୍ଠ ସହଯୋଗୀ ବନ୍ଧୁରାଷ୍ଟ୍ରଭାବେ ରାଜ୍ୟଗୋଷ୍ଠୀରେ ସ୍ଥାନପାଇଲା । କ୍ଲିମେଣ୍ଟ ଅଟଲି ମାଉଣ୍ଟବାଟେନଙ୍କ ସହାୟତାରେ ଭାରତକୁ ସ୍ୱାଧୀନତା ପ୍ରଦାନକରି ନିଜଦେଶର ବନ୍ଧୁଭାବେ ପ୍ରତିଷ୍ଠିତକରି ଯେଉଁ ଦୂରଦର୍ଶିତାର ପରିଚୟ ଦେଲେ ଇଂଲଣ୍ଡବାସୀ ସେଥିପାଇଁ ଗର୍ବିତ ।

ଲର୍ଡ ମାଉଣ୍ଟବାଟେନଙ୍କ କାର୍ଯ୍ୟକଳାପରେ ସନ୍ତୋଷ ପ୍ରକାଶକରି ଭାରତର ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ କହିଥିଲେ–

Has not Lord Mountbatten done greater service to Britain than Hastings and Clive ? For this is the greatest service of all, in times to come it will not the empires that count but good will that counts. Therefore, I say that he has done more for Britain than anyone else."

## ଇଂରେଜ କୂଟନୀତି :

କିନ୍ତୁ ଇଂରେଜ କୂଟନୀତିର ଶିକାର ହୋଇ ଭାରତ ଦୁଇଭାଗରେ ବିଭକ୍ତ ହେଲା–ଭାରତ ଓ ପାକିସ୍ତାନ । ନାଥୁରାମ ଗଡସେ ନାମକ ଜଣେ ମହାରାଷ୍ଟ୍ର ହିନ୍ଦୁ ଜାତିର ପିତା ମହାତ୍ମା ଗାନ୍ଧୀ ବିରଳାଭବନରେ ତାଙ୍କ ସନ୍ଧ୍ୟାକାଳୀନ ଉପାସନା ସଭାରେ ଯୋଗଦେବାକୁ ଯାତ୍ରା କରୁଥିବା ବେଳେ ତାଙ୍କୁ ହତ୍ୟାକଲେ । ସେଦିନ ଶୁକ୍ରବାର–୧୯୪୮ ମସିହା ଜାନୁଆରୀ ୩୦ ତାରିଖ । ଜବାହରଲାଲ କହିଲେ, ଆଲୁଅ ଲିଭିଗଲା । କେତେଦିନପରେ କ୍ୟାନସର ରୋଗରେ ଜିନ୍ନାଙ୍କର ମୃତ୍ୟୁ ହେଲା । ପୂର୍ବ ଓ ପଶ୍ଚିମ ପାକିସ୍ତାନର ଅଗଣିତ ହିନ୍ଦୁ ଜନତା ହଣାକଟାର ଶିକାର ହୋଇ ଅର୍ଦ୍ଧମୃତ ଅବସ୍ଥାରେ ଭାରତକୁ ଫେରିଲେ । ପୃଥିବୀ ଇତିହାସରେ ଏପରି ନାରକୀୟ ଘଟଣା କେବେ ଦେଖାନଥିଲା । ଦେଶ ବିଭାଜନର ସଦ୍ୟଫଳ ପଶ୍ଚିମ ବଙ୍ଗଳା ଓ ପୂର୍ବ ପଞ୍ଜାବରେ ବେଶି ଅନୁଭୂତ ହେଲା । ଏଣେ ସମଗ୍ର ଭାରତବାସୀ ସ୍ୱାଧୀନତା ପ୍ରାପ୍ତି ହେବାରୁ ଆନନ୍ଦରେ ମାତି ଉଠିଲେ । ୧୯୪୮ ମସିହା ଜାନୁଆରୀ ମାସରେ ଭାରତର

ଘରୋଇମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଦେଶର ୫୬୩ ଗୋଟି କରଦ ରାଜ୍ୟକୁ ମୂଳଭାରତ ସଙ୍ଗେ ମିଶାଇଦେଇ ଅପୂର୍ବ ରାଜନୈତିକ କୂଟନୀତିର ପରିଚୟ ଦେଲେ । ତେଣୁ ସର୍ଦ୍ଦାର ପଟେଲଙ୍କୁ ଭାରତର ବିସମାର୍କ ଆଖ୍ୟା ପ୍ରଦାନ କରାଯାଏ । ଓଡ଼ିଶାର କରଦରାଜ୍ୟ.ମୂଳ ଭୂଖଣ୍ଡରେ ମିଶିଯିବାରୁ ବୃହତ୍ତର ଉତ୍କଳପ୍ରଦେଶ ଗଠିତ ହେଲା । କେବଳ ଏକବର୍ଷ ପର୍ଯ୍ୟନ୍ତ ମୟୂରଭଞ୍ଜ ସ୍ୱତନ୍ତ୍ର ରହିଯାଇଥିଲା । ତେଣୁ ସେହି ସମୟରେ ଷଢ଼େଇକଳା ଖରସୁଆଁ ଏ ଦୁଇଟି ଗଡ଼ଜାତ ବରିଷ୍ଠ ବିହାରୀଙ୍କ ପ୍ରଭାବରୁ ବିହାରରେ ମିଶିଗଲା, ଆଉ ଓଡ଼ିଶାକୁ ଫେରିଲା ନାହିଁ ।

ଦେଶ ସ୍ୱାଧୀନତା ଲାଭ କରିବାବେଳକୁ ଓଡ଼ିଶାରେ ସାକ୍ଷର ସଂଖ୍ୟା ଥିଲା ମାତ୍ର ଶତକଡ଼ା ଦଶ କି ବାର । ତେବେ ପ୍ରଭାତ ପୂର୍ବରୁ ସିନ୍ଦୂରା ଫାଟିଲାପରି ଲୋକମାନଙ୍କ ମଧ୍ୟରେ ନବଚେତନାର ଉଦ୍ରେକ ହୁଏ । ନୂତନ ସ୍କୁଲମାନ ଖୋଲିବାରେ ଜୋର ଚେଷ୍ଟା ଚାଲିଥାଏ । ନୂତନ ମାଇନର ସ୍କୁଲ ଓ ହାଇସ୍କୁଲମାନଙ୍କର ଶୁଭ ଦିଆଯାଉଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପରେ ଜିଲ୍ଲା ସଦର ମହକୁମା ତରଫରୁ କଲେଜମାନ ପ୍ରତିଷ୍ଠା ହୋଇ ସାରିଥିଲା । ଓଡ଼ିଶା ସାହିତ୍ୟ କ୍ଷେତ୍ରରେ ଆଦର୍ଶବାଦୀର ଛାପ ବେଶି ପଡୁଥାଏ । ଲେଖକ ଓ କବିମାନଙ୍କ ମଧ୍ୟରେ ସର୍ବଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି, ଗୋପୀନାଥ ମହାନ୍ତି, କମଳାକାନ୍ତ ଦାଶ, ରାମଚନ୍ଦ୍ର ଆଚାର୍ଯ୍ୟ, କୁନ୍ତଳା କୁମାରୀ ସାବତ, ଅପର୍ଣ୍ଣାଦେବୀ ପ୍ରମୁଖ ପ୍ରସିଦ୍ଧି ଲାଭ କରିଥିଲେ । ଦେଶ ସ୍ୱାଧୀନତା ପାଇଲାପରେ ନୂତନ ଉନ୍ମାଦନା ଜାଗରିତ ହେଲା । ପ୍ରଧାନମନ୍ତ୍ରୀ କୁହାଯାଉଥିବା ରାଜ୍ୟର ମୁଖ୍ୟ ନୂତନ ସମ୍ବିଧାନ ଅନୁଯାୟୀ ହେଲେ ମୁଖ୍ୟମନ୍ତ୍ରୀ । ଓଡ଼ିଶାର ରଜ୍ୟପାଳ ହେଲେ କୈଳାସ ନାଥ କାଟ୍‌ଜୁ । ପରେ ପରେ ଆସଫ ଅଲ୍ଲୀ । ଦେଶରେ ଏହିପରି ପରିବର୍ତ୍ତନ କାଳରେ ମୋ ଜୀବନର ଗତିପଥ ନୂଆମୋଡ଼ ନେଲା ।

ପ୍ରଥମେ ବସାପରିବର୍ତ୍ତନ କରି ରାଧାବଲ୍ଲଭ ଗଳିରେ ଅବସ୍ଥିତ କୃଷ୍ଣଚନ୍ଦ୍ର ଲାଲଙ୍କ ଭଡ଼ାଗୃହରେ ମାସିକ ବାର ଟଙ୍କା ଭଡ଼ାରେ ଅବସ୍ଥାନ କଲି । ସେତେବେଳେ ଖୋର୍ଦ୍ଧା ସହରର ପରୀସିମା କ୍ଷୁଦ୍ରଥିଲା । ଚାରି ପାଞ୍ଚଗୋଟି ତେଲଲୁଣ ଦୋକାନ, ଦୁଇଚାରିଗୋଟି ପରିବା ଦୋକାନ ଓ ତିନିଚାରିଜଣ ମାରୁଆଡ଼ି ଲୁଗାଦୋକାନ ଦେଇଥିଲେ । ଅନ୍ୟାନ୍ୟ ଜିନିଷପାଇଁ ଲୋକେ ଜଟଣୀ ଉପରେ ନିର୍ଭର କରୁଥିଲେ । ପୁସ୍ତକ ଦୋକାନ ବା ଲୌହ ସାମଗ୍ରୀ ଦୋକାନ ନଥିଲା କି ମନୋହରି ଦୋକନ ନଥିଲା । ଅଧିକାଂଶ ଘର ଚାଳଛପର ଘରଥିଲା । ରାସ୍ତାକଡ଼ରେ ଦୋକାନ ଆଦୌ ନଥିଲା । ସରକାରୀ ଚାକିରି ହିସାବରେ

ଏସ.ଡି.ଓ.ଙ୍କ ବ୍ୟତୀତ ଜଣେ ସେକେଣ୍ଡ ଅଫିସର ଓ ଜଣେ ଥାର୍ଡ ଅଫିସର, ତହସିଲଦାର, ଗୃହ ନିର୍ମାଣ ବିଭାଗରେ ଜଣେ ଓଭରସିଅର ଓ ଜଣେ ଏସ୍.ଡି.ଓ. ଥିଲେ । ଖୋରଧା ସବଡିଭିଜନରେ ଶିକ୍ଷା ଅଫିସର ଭାବେ ଜଣେ ଡେପୁଟି ଇନ୍‌ସପେକ୍ଟର, ଖୋର୍ଦ୍ଧା ଡାକ୍ତରଖାନାରେ ଜଣେ ଦୁଇଜଣ ଏଲ୍.ଏମ୍.ପି. ଡାକ୍ତର ଥିଲେ । ସ୍ଥାୟୀ ସିନେମା ଘର ନଥିଲା । ଭ୍ରମଣଶୀଳ ସିନେମା ମଝିରେ ମଝିରେ ଆସୁଥିଲା । ବସ୍‌ଷ୍ଟାଣ୍ଡରେ ଗୋଟିଏ ପୁରୁଣା ଚଟିଘର ବହୁଦିନ ପର୍ଯ୍ୟନ୍ତ ଥିଲା । ସେଥିରେ ବୁଲାଗୋରୁ ଓ ରୋଗୀମଣିଷ ଆଶ୍ରୟ ନେଉଥିଲେ । ଏହି ଚଟିଘରଟି ବ୍ରିଟିଶ ଶାସନ ପୂର୍ବରୁ ଥିଲା ବୋଲି ୧୮୧୭ ପୁସ୍ତକରୁ ଜଣାପଡ଼େ । ଏନ.ଏ.ସି. ମାର୍କେଟ ବଣଜଙ୍ଗଲରେ ପୂର୍ଣ୍ଣଥିଲା । ଜ୍ଞାନବାବୁଙ୍କର ଚା ଦୋକାନଟିଏ ମାତ୍ର ଥିଲା । ବସିରାମଙ୍କ ଦଦରା ଗାଡ଼ି ଖଣ୍ଡିଏ ନୟାଗଡ଼ ପର୍ଯ୍ୟନ୍ତ ଯାଉଥିଲା । ଖୋର୍ଦ୍ଧା ତହସିଲ ଅଫିସଠାରୁ ପଲା ପର୍ଯ୍ୟନ୍ତ ଜାଗାଗୁଡ଼ାକ ଫାଙ୍କା ଥିଲା । କେବଳ ତୋଟାମାଳ । ବରୁଣେଇ ଜଙ୍ଗଲରେ ବାଘ ବି ରହୁଥିଲେ । ସହରରେ ପ୍ରଥମ ଶ୍ରେଣୀ ଚାକିରି କିଛି ନଥିଲା । ହାଇସ୍କୁଲରେ ହେଡମାଷ୍ଟର ଓ ଚାରିଜଣ ଗ୍ରାଜୁଏଟ୍ ଥିଲେ ।

୧୯୪୪ ମସିହା ସେପ୍ଟେମ୍ବର ୧୫ ତାରିଖରୁ ୧୯୪୯ ମସିହା ଜୁଲାଇ ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ରାୟସାହେବ ବାଙ୍କନିଧି ପଟ୍ଟନାୟକଙ୍କ ସମୟରେ ମୁଁ ଶିକ୍ଷକତା ଅବଲମ୍ବନ କରିଥିଲି । ବାଙ୍କନିଧିବାବୁ ପସନ୍ଦିଆ ମଣିଷ, ଦୀର୍ଘକାୟ ଗୌରବର୍ଣ୍ଣ, ବିଶାଳ ବପୁ, ତୀକ୍ଷ୍ଣ ନାକ, ଉନ୍ନତ ଶିର ଓ ବୁଦ୍ଧିମାନ ବ୍ୟକ୍ତି ଥିଲେ । ମୋ କର୍ତ୍ତବ୍ୟପରାୟଣତାରେ ସେ ସନ୍ତୁଷ୍ଟ ଥିବା ପରି ଜଣାପଡୁଥିଲା । ମାତ୍ର ତାହା କେତେଦୂର ଆନ୍ତରିକାତାପୂର୍ଣ୍ଣ ସନ୍ଦେହଜନକ ଥିଲା । ମୁଁ ମଝିରେ ମଝିରେ ଆମ ଗାଁକୁ ପଦବ୍ରଜରେ ଯାତ୍ରା କରୁଥିଲି । ସାଇକଲଟିଏ କ୍ରୟ କରିବା ମୋ ପକ୍ଷେ ସହଜ ନଥିଲା । ମୁଁ ଖୋର୍ଦ୍ଧା ହାଇସ୍କୁଲରେ ସ୍ଥାୟୀ ହେବା ପରେ ମୋର ନିଷ୍ଠା ଓ କର୍ମଦକ୍ଷତା ଦେଖାଇବା ପାଇଁ ଅଧିକ ଚେଷ୍ଟିତ ହେଲି । ପୁସ୍ତକ ଅଧ୍ୟୟନ ମୋର ସ୍ୱତନ୍ତ୍ର ଆକର୍ଷଣ ଥିଲା । ବାଲ୍ୟକାଳରୁ ଜାତୀୟତାଭାବ ପ୍ରବାହିତ ହେଉଥାଏ । ତେଣୁ ଜାତୀୟ ବୀରମାନଙ୍କ ଜୀବନୀ ସଂବଳିତ ଛୋଟ ଛୋଟ ଇଂରାଜୀ ପୁସ୍ତକଗୁଡ଼ିଏ ମାନ୍ଦ୍ରାଜରୁ ଡାକଯୋଗେ ମଗାଇଲି । ଚେମ୍ବର୍ସ ଡିକ୍ସିନାରିଟିଏ ଏଗାର କି ବାର ଟଙ୍କାରେ (ଡାକଖର୍ଚ୍ଚ ସହ) କଲିକତାରୁ ଡାକରେ ମଗାଇଲି । ଏହା ସହିତ ବି.ଏ. ଡିଗ୍ରୀ କିପରି ଲାଭ କରିବି ତାର ସମସ୍ତ ବନ୍ଦୋବସ୍ତ କରି ଆବଶ୍ୟକୀୟ ପୁସ୍ତକ କ୍ରୟକଲି । ଏଣେ ବିବାହ ବୟସ ଗଡ଼ିଗଡ଼ି ଯାଉଥାଏ । ସେତେବେଳେ ପୁଅମାନେ ୧୯-୨୦ ବର୍ଷ ବୟସରେ ବିବାହ କରୁଥିଲେ । ମୋତେ

୧୯୪୭ ମସିହାବେଳକୁ ୨୮ ବର୍ଷ ବୟସ ହେଲାଣି । ଗାଁ ଲୋକେ ମୋତେ ବୁଢ଼ା ବୋଲି ଆଖ୍ୟା ଦେଲେଣି । ବୁଢ଼ାବରକୁ ଝିଅ ଦେବ କିଏ ? ଗାଁ ମାଇପେ ଚୁପଚାପ ହୁଅନ୍ତି । ତେବେ ମେଳା, ମହୋତ୍ସବ, ମନ୍ଦିର, ଯାତ୍ରାରେ କନ୍ୟାଦେଖା ଚାଲିଲା । କାହାଘରକୁ ଯାଇ କନ୍ୟା ଦେଖିବା ବିଧି ନଥିଲା । ଯେତେ ଜାଗାରେ କନ୍ୟା ଦେଖିଲି କେଉଁଠି ମନମାନିଲା ନାହିଁ । ବିରକ୍ତି ଭାବ ଆସିବାରୁ ଶେଷରେ କନ୍ୟା ନଦେଖି ବିବାହ ହେଲା । ମୋର ସିନା ବୟସ ଜଣାପଡୁନଥିଲା ହେଲେ କମ୍ ବୟସର ଝିଅ ଏପରିକି ତେର ବର୍ଷ ଛଅ ମାସର ଝିଅ ବନବାସିନୀ ଦେବୀଙ୍କ ସହିତ ଶେଷରେ ମୋର ବାହାଘର ହେଲା ।

**ମୋର ବିବାହ ଉତ୍ସବ :**

୧୯୪୭ ମସିହା ମେ ମାସ ବେଳକୁ ବିଭାଘରର ସମସ୍ତ ଆୟୋଜନ ସରିଲା । ସେତେବେଳକୁ ତିନି ବର୍ଷରୁ ଉର୍ଦ୍ଧ୍ୱସମୟ ଚାକିରି କରିଲିଣି । ଗାଁରେ ମୋର ସମ୍ମାନ ବଢ଼ିଲାଣି । ମହାଜନ କୃଷ୍ଣଚନ୍ଦ୍ର ମହାପାତ୍ର ମୋ ବିବାହ ପାଇଁ ଆଗ୍ରହରେ ତାଙ୍କର ମଗରମୁହାଁ ପାଲିଙ୍କିକୁ ବାହାର କରିଦେଲେ ଏବଂ ପାଲିଙ୍କି ସଜାଇବାପାଇଁ ବାରିକକୁ ନିର୍ଦ୍ଦେଶ ଦେଲେ । ବରବେଶ ବେଳକୁ ଗୋଟିଏ ସୁନାଚେନ ଆଣି ମୋ ବେକରେ ଗଳାଇଦେଲେ । ତାଙ୍କର ମୋ ପ୍ରତି ସ୍ନେହଭାବ ଥିଲା । ସେତେବେଳେ ମଟରକାର ଅପେକ୍ଷା ପାଲିଙ୍କି ବାହାଘର ସମ୍ମାନଜନକ ଥିଲା । କାର୍ ବାହଘରର ସେତେ ପ୍ରଚଳନ ନଥିଲା । ଗୋପାଳମାନେ ସବାରି ଓ ପାଲିଙ୍କି କାନ୍ଧରେ ବହନକରି ବରକନ୍ୟାଙ୍କୁ ନେଇଯାଉଥିଲେ । ଏବେ ଗୋପାଳମାନେ ସବାରି କାନ୍ଧେଇବାକୁ ପସନ୍ଦ କରୁନାହାଁନ୍ତି । ସମସ୍ତେ ପାଠଶାଠ ପଢ଼ିଲେଣି । ବାରିକ ସାଆନ୍ତଙ୍କର ଗୋଡ଼ ଧୋଉନାହାଁନ୍ତି କି ବାଳକାଟିବା ବେଳେ ନଖ କାଟୁନାହାଁନ୍ତି । ସମସ୍ତଙ୍କ ଅଭିମାନ ବଢ଼ିଲାଣି । ବିଭାଘରରେ ଶୀଘ୍ର ଶୀଘ୍ର କାମ ହେଉବୋଲି ଲୋକେ ଇଚ୍ଛାକରି ଗାଡ଼ିମଟରର ସାହାଯ୍ୟ ନେଉଛନ୍ତି । ମୁଁ ପାଲିଙ୍କିରେ ଜଟଣୀ ଷ୍ଟେସନକୁ ଯାଇ ଟ୍ରେନରେ ଡେଲାଙ୍ଗ ଷ୍ଟେସନରେ ପହଁଞ୍ଚି ସେଠାରୁ ପୁଣି ପାଲିଙ୍କିରେ ଗୁଆଟୌକା ଗାଁକୁ ଗଲି । ରାତ୍ରି ଗୋଟାଏରେ ଗାଁ ମୁଣ୍ଡରେ ପହଞ୍ଚିଗଲୁ । ମୋ ଆଗରୁ ବରଯାତ୍ରୀମାନେ ଛପରା ବଳଦଗାଡ଼ିରେ ଯାଇ ଗାଁମୁଣ୍ଡ ବରଗଛମୂଳରେ ବଧା ମାରିଥିଲେ । ନିଶା ଗରୁଜୁଛି, ଚାରିଆଡ଼େ ଶୂନ୍‌ଶାନ୍ । ଲୋକେ ନିଘୋଡ଼ ନିଦରେ ଘୁଙ୍ଘୁଂଡ଼ି ମାରୁଥାନ୍ତି । କେବଳ ଶ୍ୱଶୁର ଗୃହର ବନ୍ଧୁ ପରିଜନମାନଙ୍କର ଅସ୍ପଷ୍ଟ ସ୍ୱର ଶବ୍ଦ ଭାସି ଆସି କେତେକାଂଶରେ ନିର୍ଜ୍ଜନତା ଭଙ୍ଗ କରୁଥାଏ । ଯେତେବେଳେ

ଆମ ବାଣୁଆ ଗୋଟିଏ ଦୁଇଟା ଗଡ଼ମ୍ବା ବାଣ ବରଗଛ ଡାଳରେ ବାନ୍ଧି ଫୁଟାଇଦେଲା ତା'ର ପ୍ରଚଣ୍ଡ ଶବ୍ଦରେ ସାହିଲୋକେ ଧଡ଼୍‌ଧାଡ଼୍ ହୋଇ ଉଠିପଡିଲେ । ଜଣେ କିଏ ନିଦବାଉଳାରେ କହିପକାଇଲା ''ଆରେ ଫକୀର ଚୋକଟାର କ'ଣ ଆସୁ ଆସୁ ଗର୍ଜନ'' । ଆଉ କାଳବିଳମ୍ବ ନକରି ଚାଲିଲା ପଟୁଆର, ଛବିଳ ଶୋଭାଯାତ୍ରା । ନାତିଦୀର୍ଘ ଦାଣ୍ଡ ଡ୍ରମ, ବିଟର ବାଜାରେ ମୁଖରିତ ହେଲା । ରୋଶଣି ବାଣ, ଡେ ଲାଇଟ୍‌ର ଉଜ୍ଜ୍ୱଳ ଆଲୋକରେ ଗାଁ ଦାଣ୍ଡ ସୁଶ୍ରୀ ଦେଖାଗଲା । ବରକୁ ଦେଖିବାପାଇଁ ଝିଅ ବୋହୂମାନେ କବାଟ ଓ ଜଳାକବାଟି ପାଖରେ ଠିଆ ହୋଇଗଲେ । ବର ଶ୍ୱଶୁରଙ୍କ ଦୁଆର ପାଖରେ ପହଞ୍ଚିବା ପୂର୍ବରୁ ୫୦ ଗଜ ଦୂରରେ ଥିବା ବେଳେ ଶ୍ୱଶୁର ପୁରୋହିତଙ୍କ ସହିତ ଫୁଲଚନ୍ଦନ ଆଣି ବର ନିମନ୍ତ୍ରଣ କଲେ । ପାଲିଙ୍କିର ଗତି ମନ୍ଥର ହୋଇଗଲା । କନ୍ୟା ଘରଭିତରୁ କ୍ରନ୍ଦନର ଧ୍ୱନି ଭାସିଆସିଲା, ଛାଞ୍ଚୁଣୀମୁଠାଟାକୁ ନିଆଁ ଧରି ପକାଇବାରୁ ମହାଅଶୁଭ ମନେକରି ଶାଶୁ କଇଁକଇଁ ହୋଇ କାନ୍ଦି ଉଠିଲେ ।

**ଲକ୍ଷ୍ମଣ ଶାସ୍ତ୍ରୀଙ୍କ ଭବିଷ୍ୟତ ବାଣୀ :**

ଲକ୍ଷ୍ମଣ ଶାସ୍ତ୍ରୀ କାନେ କାନେ କହିଛି, କନ୍ୟାର ଜନ୍ମଦିନ ପ୍ରଘଟ ନକରିବାକୁ । ଉଆଁସୀ କନ୍ୟା ପ୍ରଘଟ ହେଲେ ଜୁଆଁଇ ସାଆନ୍ତେ ବେଦିରୁ ଉଠି ପଳାଇବେ । ବାହାଘର ସରିଗଲେ ଦେଖାଅଛି । ''ଜୁଆଁଇ ସାଆନ୍ତଙ୍କୁ ଭଲ ଦଶା ନାହିଁ, ବେଦିମୂଳରେ ଚେନାଏ ସୁନା ଦାନ କରିବାକୁ ହେବ ।''ତେଣୁ ଗୋସେଇଁ ଶାଶୁ ଶୋଇବା ବିଛଣାରୁ ଏତେ ଜୋରରେ ଡାକ ପକାଉଛନ୍ତି, ''ମାଠିଆ ପଛେ ଭାଙ୍ଗିଯାଉ କଣା ନହେଉ ।'' ଏ କଥା ଶୁଣି ଶାଶୁଙ୍କର ତ କୋହ ଉପରେ କୋହ ଉଠିଲା । ଇନ୍ଦ ବୋଉ ମା' ଶାଶୁଙ୍କୁ ବୋଧବାଧ କରିବାରୁ ଶାଶୁ ତୁନି ପଡ଼ିଲେ । ତେବେ ଏ ଗୁପ୍ତ ଘଟଣାଟି ବାହାଘରିଆ ବା ବରଯାତ୍ରୀଗଣ ଜ୍ଞାତ ହେବେ କିପରି ?

ଜ୍ୱାଇଁସାଆନ୍ତ ପାଲିଙ୍କିରୁ ଅବତରଣ କରି ଆସ୍ଥାନ ଜମେଇଲାବେଳକୁ ରାତି ପାହି ପାହି ଆସୁଥିଲା । ତେଣୁ କାଳବିଳମ୍ବ ନକରି ବିଭାଘର କାମ ଆରମ୍ଭ ହୋଇଗଲା । ବିଭାଘର ସମ୍ପନ୍ନ ହେବାପରେ ଆଳିପଣା ଓ ତାର କିଛି ସମୟପରେ ଠା ପିଢ଼ାର ବ୍ୟବସ୍ଥା ହୋଇଗଲା । ସୁରୁଚିପୂର୍ଣ୍ଣ ଖାଦ୍ୟପେୟରେ ବରଯାତ୍ରୀ ଦଳ ସନ୍ତୋଷ ପ୍ରକାଶ କରି ଗାଁମୁହାଁ ହେଲେ । ବାପା ମା ଧନ ଦଉଲତ ଦେଖନ୍ତି ମାତ୍ର ଇତର ଲୋକେ ଖାଦ୍ୟପେୟରେ ସନ୍ତୁଷ୍ଟ ହୋଇଥାନ୍ତି । ତେଣୁ କବି ଗାଇଛନ୍ତି –

କନ୍ୟା ବରୟତେ ରୂପଂ, ପିତା ଶ୍ରୁତଂ, ମାତା ବିତ୍ତଂ,

ବାନ୍ଧବାଃ କୁଳଂ ଇଚ୍ଛନ୍ତି, ମିଷ୍ଟାନ୍ନଂ ଇତର ଜନାଃ ।

ଶ୍ୱଶୁର ଶ୍ରୀ ବାଞ୍ଛାନିଧି ସାମନ୍ତରାୟ ଜାମସେଦ୍‌ପୁର ଟାଟା କମ୍ପାନୀରେ ଉଚ୍ଚ ଚାକିରି କରନ୍ତି । ପସନ୍ଦିଆ ମଣିଷ କିନ୍ତୁ ଗେଡ଼ା । ପୃଥୁଳକାୟ ଗୌରବର୍ଣ୍ଣ । ଘରର ଖାନଦାନି ଅଛି । ପୁରୁଣା ତହସିଲଦାର ଘର । ସାନଭାଇ ଡକ୍ଟର ନଟବର ସାମନ୍ତରାୟ ସରକାରୀ କଲେଜରେ ଅଧ୍ୟାପକ ଏବଂ ଅନ୍ୟଭାଇ ସୁଧାନିଧି ସାମନ୍ତରାୟ ସେଣ୍ଟ୍ରାଲ୍ କଲେକ୍ଟର । କେବଳ ଆଡ଼ାଟା ଅଛି କିନ୍ତୁ ମୁଗୁର ଗଣ୍ଠି ତ ।

ବରଯାତ୍ରୀମାନଙ୍କ ପ୍ରସ୍ଥାନପରେ ଲୋକସମାଗମ ପତଳା ହୋଇଗଲା । ରଜ ସମୟ । ପରଦିନ ରାତିପାହାନ୍ତାରେ ଝିଅ, ଜ୍ୱାଇଁ ବିଦା ହୋଇଗଲେ ପୁରୀ ତାଳଚେର ଗାଡ଼ିକୁ । ଡେଲାଙ୍ଗ ଷ୍ଟେସନରେ ଗାଡ଼ି ଦୁଇ ମିନିଟ୍ ରହିଲା । ସେହି ସ୍ୱଳ୍ପ ସମୟ ମଧ୍ୟରେ ବର କନ୍ୟାସହ ବାହାଘରିଆ ଗାଡ଼ି ଭିତକୁ ଖପ୍‌ଖାପ୍ ପଶିଗଲେ । ଗାଡ଼ି ଫୁସ୍‌ଫୁସ୍ ଧୂଆଁବାହାରକରି ଆଗେଇ ଚାଲିଲା । ଜଟଣୀ ଷ୍ଟେସନରେ ପହଞ୍ଚିଲାବେଳକୁ ସିନ୍ଦୂରା ଫାଟିଲାଣି । କାଉଙ୍କର କୋଳାହଳ ଧ୍ୱନି କାନ ଅତଡ଼ା ପକାଉଛି । ଯେତେବେଳେ ନବବଧୂ ଓ ଅନ୍ୟମାନେ ଡବାରୁ ଓହ୍ଲାଇପଡ଼ିଲେ ଛଞ୍ଚାଣଦଳ ତ ମାଡ଼ିଆସିଲେ । ତାହା ହେଉଛି ପ୍ରଥମ ଶ୍ରେଣୀ ଡବା, ବାଉଳାରେ ଚଢ଼ିଯାଇଥିଲୁ । ସେମାନେ ଚାରିଗୁଣ ଭଡ଼ା ଚାର୍ଜ କରିଦେଲେ । ପୁଣି ବାହାଘରିଆ । ନବବଧୂକୁ ଧରି ଲଜ୍ଜିତ ନହେବାପାଇଁ ସଙ୍ଗେ ସଙ୍ଗେ ପଇସାଟା ଗଣିଦେଇ ତରବରରେ ପାଲିଙ୍କି ନିକଟକୁ ଚାଲିଆସିଲି । ନବବଧୂକୁ ତ ପୂର୍ବରୁ ଦେଖି ନଥିଲି । ତା'ର ଦେହମୁଣ୍ଡ ଗୋଡ଼ ହାତକୁ ନିରୀକ୍ଷଣ କରି ପଛେ ପଛେ ଆସିଲି । ସବାରି ଓ ପାଲିଙ୍କି ବାହକମାନେ କାଳବିଳମ୍ବ ନକରି ଲମ୍ବା ଲମ୍ବା ପାହୁଲ ପକେଇ ଷଣ୍ଢପୁର ଗାଁ ମୁଣ୍ଡେ ହାଜର ହୋଇଗଲେ । ସେଠାରୁ ଗାଁ ଯୋର ରଙ୍ଗିଆ ଭଙ୍ଗିଆ ନାଳ ମୋଟେ ଏକ କି.ମି. । ସେଠାରୁ ଗାଁ ମଧ ଏକ କି.ମି. । ପାଲିଙ୍କି ଓ ସବାରି ବାହକଙ୍କର ହମ୍ ଭାଇ-ହମ୍ ଭାଇ ନାଦ ଶୁଣି ଗାଁ ମାଇପେ, ଭୁଆସୁଣୀ ଝିଅ ଓ ଅପ୍ରାପ୍ତ ବୟସ୍କା କନ୍ୟାମାନେ ଧାଡ଼ି ବାନ୍ଧିଲେ । ବୋହୂ ତ ପିଲା । ତା ଗାଁରେ ତାର ମା, ବୋଉ, ଭାଉଜ ଖୁଡ଼ୀ ପ୍ରଭୃତି ଯାହା ଶିଖେଇଥିଲେ ସେତିକି ସେ ଜାଣେ । ଏତେ କମ୍ ବୟସରେ କେହି ଝିଅକୁ ପରଘରକୁ ଠେଲିଦେବା କଥା ନୁହେଁ । ସେତେବେଳେ ଝିଅମାନଙ୍କ ପାଇଁ ଚଳଣି ସେଇଆ ଥିଲା । ବୋହୂ ହାତେ ଓଢ଼ଣୀ କାଢ଼ି ସବାରିରେ ବସିଛି । ଆମ ଗାଁ ମାଇପେ ସବାରି ଦୁଆର ପୂରାପୂରି ଖୋଲି ଓଢ଼ଣୀ ଟେକି କୁନି

ବୋହୂଟିର ମୁହଁ ବାରମ୍ବାର ଦେଖି ପକାଉଥାନ୍ତି । ଗାଁମୁଣ୍ଡ ଆସିଲା । ପାଇକରାୟଙ୍କ ଦୁଆରୁ ବର ପଇସା, କଉଡ଼ି, ଚାଉଳ ବିଞ୍ଚିବିଞ୍ଚି ନିଜ ଗୃହ ପର୍ଯ୍ୟନ୍ତ ଗଲା । ଲଙ୍ଗଳାଗାଣ୍ଡିଆ, ଅର୍ଦ୍ଧାବୃତ ପିଲାଗୁଡ଼ାକ ପଇସା ଗୋଟେଇବାକୁ ତତ୍ପର । ଦୁଆରମୁହଁ ହୋଇଗଲା । ଶୁଭଶଙ୍ଖ, ହାଡ଼ିବାଜା ବାଜିଉଠିଲା । ଗୃହ ଭିତରକୁ ପ୍ରବେଶ କରିବାପରେ ବୋହୂ ଦେଖିବାକୁ ଗାଁ ଝିଅବୋହୂଙ୍କର ସୁଅ ଛୁଟିଲା ଷୋଳ ମଙ୍ଗଳା ପର୍ଯ୍ୟନ୍ତ ।

'ବାହାଘର ପରେ ବେଦିମୁହଁ ପୋଡ଼ା' । କିଏ ବା କାହାକୁ ପଚାରୁଛି ? ନବବଧୂକୁ ପର୍ଣ୍ଣକୁଟୀରରେ ଛାଡ଼ିଦେଇ ମୁଁ ଅଳ୍ପ କେତେଦିନ ପରେ ସ୍କୁଲରେ ଯୋଗଦେଲି । ଗାଁ ଲୋକଙ୍କ ମଧ୍ୟରୁ ଧନୀ ଲୋକମାନଙ୍କ ଭାଗ୍ୟରେ ପାଲିଙ୍କି ବାହାଘର ଜୁଟେ । ଅନ୍ୟମାନେ ତୋଳାକନ୍ୟାକରି ବାହାଘର ବଢ଼େଇ ଦିଅନ୍ତି । ମାତ୍ର ମୁଁ ଦରିଦ୍ର ହୋଇଥିଲେ ହେଁ ସାମାନ୍ୟ ବିଦ୍ୟା ହାସଲ କରିଥିବାରୁ ମୋର ସମ୍ମାନଜନକ ପାଲିଙ୍କି ବାହାଘର ହେଲା । ସେତେବେଳେ ଯୌତୁକ ପ୍ରଥାଟା ସମାଜରେ ଏତେଟା ନଥିଲା । ପୁନଃ ମୋ ଭାଇମାନେ ତୋଳାକନ୍ୟା ବାହାହେଲାବେଳକୁ କନ୍ୟାଘରକୁ ଟଙ୍କା ଦେଇଥିବାର ପ୍ରମାଣ ରହିଛି । ମୋର ଶ୍ୱଶୁରଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା, ମୁଁ ମନେ କରିଥିଲି ମୋତେ ସେ ହାତୀ, ଘୋଡ଼ା ଦେବେ । ମାତ୍ର କନ୍ୟାରତ୍ନ ବ୍ୟତୀତ ଆଉ କିଛି ଦେଲେ ନାହିଁ । ମୋର ତ ବାଡ଼ିଗୋବରେ ଗୋବେ ଭୂମି ନଥିଲା । ସ୍ୱାମୀର ଚାରିବାହା ସ୍ତ୍ରୀର ଏକମାତ୍ର ଅବଲମ୍ବନ । ତେବେ ମୋ ଭଙ୍ଗାକୁଡିଆକୁ ଏପରି କନ୍ୟାରତ୍ନ ଦେଲା କିଏ ? କେତେବେଳେ କ'ଣ ଅଘଟଣ ଘଟିବ, ଶାଶୁ ଶ୍ୱଶୁର ତ ଚିନ୍ତା କଲେ ନାହିଁ ? କେଉଁ ଭରସାରେ ତାଙ୍କର ଅଲିଅଳୀ ସୁନାନାକୀ ଝିଅକୁ ମୋ ପରି ଦରିଦ୍ର ଅକ୍ଷମ ଭିକାରି ହାତରେ ଟେକିଦେଲେ ? ଗାଁରେ ଥିଲାବାଲାଙ୍କ ଘରେ ଏପରି ବୋହୂଟିଏ ନଥିଲା । ଯେତେ ଥିଲାବାଲା ମାଇପେ ବୋହୂ ଦେଖିବାକୁ ଆସିଲେ ସମସ୍ତେ ହାତେ ଲେଖାଁ ଜିଭ କାଢ଼ି ପକାଇଲେ । ଏପରି ଝିଅକୁ ଏ ମୂଲିଆଘରେ ଦେଲା କିଏ ? ସେମାନେ ଅଲକ୍ଷ୍ୟରେ ବାପା ମା' ବନ୍ଧୁବାନ୍ଧବ ସମସ୍ତଙ୍କୁ ଗାଳିଦେଲେ । କିନ୍ତୁ ହେବ କଅଣ ?

''କପଳା ଲିଖନ କେ କରିବ ଆନ ।''

ବିଧିର ବିଧାନ ବିଚିତ୍ର ପୁଣି ତାଙ୍କ ବୟସ ଏତେ କମ୍ ଥିଲା ଯେ ମୋତେ ଲେଖିବାକୁ ଲାଜମାଡୁଛି । ଏବକାର ଅଷ୍ଟମ କି ନବମ ଶ୍ରେଣୀର ପିଲା । ଏତେ ବୁଦ୍ଧି ସେ ଏମିତି କମ୍ ବୟସରେ ପାଇଲା କେଉଁଠୁ ? ମୋର କିଛି କୂଳକିନାରା

ନଥିଲା । ଆଡ଼ିବାଡ଼ି ନଥିଲା । ସେ ମୋ ସହିତ ରହିବାକୁ ରାଜି ହେଲା କିପରି ? ଆଜି-କାଲିକା ଝିଅ ହୋଇଥିଲେ ପଳେଇ ଯାଇଥାନ୍ତା ନିଶ୍ଚୟ । ଯାହାହେଉ ଷୋଳମଙ୍ଗଳା ବାସି କୁଲାଇ ଦୁଇ ତାରିଖରେ ଗାଁ ମାଇପିଙ୍କ ବାରଣସତ୍ତ୍ୱେ ନବବଧୂକୁ ସାଙ୍ଗରେ ଧରି ଖୋର୍ଦ୍ଧା କର୍ମସ୍ଥଳକୁ ଚାଲିଆସିଲି ।

ରାଧୁ ବଇଦ କହିଥିଲେ–"ତୁ ଶଳା ବେ ପାଶ୍ କରିବୁ" । ତାହା ଏପର୍ଯ୍ୟନ୍ତ ସମ୍ଭବ ହେଲାନାହିଁ । ତତ୍କାଳୀନ ଶିକ୍ଷାବିଭାଗର ନିୟମ ଅନୁଯାୟୀ ଜଣେ ବ୍ୟକ୍ତି ତିନି ବର୍ଷ ଶିକ୍ଷକତା କଲାପରେ ବି.ଏ. ପରୀକ୍ଷା ଦେବାପାଇଁ ଉପଯୁକ୍ତ ହେବ । ବି.ଏ. ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ବନବାସିନୀ ପାଖରେ ରହିଲେ ପଢ଼ାପଢ଼ିରେ ନିଶ୍ଚୟ ବ୍ୟାଘାତ ଘଟିବ । ତିନି ମାସ ହସକୌତୁକରେ କଟିଗଲା । ଏଣିକି ଭବିଷ୍ୟତ ଚିନ୍ତା କରିବାକୁ ପଡ଼ିବ । ଅକ୍ଟୋବର ପ୍ରାରମ୍ଭରେ ବନବାସିନୀ ଦେବୀଙ୍କୁ କୁହାକୁହିକରି ପିତ୍ରାଳୟକୁ ପ୍ରେରଣ କଲି । ରୋଷେଇ କରି ଖାଇବାକୁ ଦେବାକୁ କେବଳ ବୋଉ ପାଖରେ ରହିଲା । ମାସକୁ ଦରମା ବୟାଳିଶ ଟଙ୍କା । ସେତିକି ଟଙ୍କାରେ ଘରଭଡ଼ା ଦେଇ ଚଳିବା କଷ୍ଟକର ହେଲା । ତେବେ ଦୁଇଓଳି ପାଠପଢ଼ାରେ ମନଦେଲି । ପୁଣି ଦେଖିଲି ଗୋଟିଏ ଓଳି ଟିଉସନ ନକଲେ ଚଳିହେବ ନାହିଁ । ତେଣୁ ଏ.ସି.ଏସ୍.ଓ. ମହାଶୟଙ୍କ ଝିଅ ଓ ପୁଅକୁ ଗୋଟିଏ ଓଳି ପଢ଼େଇ ସାମାନ୍ୟ କିଛି ପଇସା ଅର୍ଜନ କଲି । ବି.ଏ. ପରୀକ୍ଷାରେ ବସିବା ପାଇଁ ଅନୁମତି ପତ୍ର ପାଇବାରେ ମୋର ପୂଜାସ୍ପଦ ଉତ୍କଳ ବିଶ୍ୱବିଦ୍ୟାଳୟର ମ୍ୟାନେଜର ଶ୍ରୀ ଜଗନ୍ନାଥ ମିଶ୍ରଙ୍କ ପାଖେ ଋଣୀ ହୋଇ ରହିଛି ।

୧୯୪୮ ମସିହା ଜାନୁଆରୀ ତିରିଶ ତାରିଖ ଶୁକ୍ରବାର ଅପରାହ୍ଣ ପାଞ୍ଚଟା ତିରିଶ ସମୟରେ ଜାତିରପିତା ଗାନ୍ଧିଜୀ ଆତତାୟୀର ଗୁଳିଚୋଟରେ ନିହତ ହେଲେ । ସମଗ୍ର ପୃଥିବୀରେ ବିଷାଦର ଛାୟା ଖେଳିଗଲା । ରୋରୁଦ୍ୟମାନ ଜଗତବାସୀଙ୍କ ଦୁଃଖ ଦୂରକରିବ କିଏ ? ତାଙ୍କ ବିୟୋଗରେ ପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନ ମତପ୍ରକାଶ କଲେ, 'ପରାତ୍ପର ପରମେଶ୍ୱର ନରଦେହ ଧାରଣକରି ଏ ପୃଥିବୀ ପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ । ତାଙ୍କର ତିରୋଧାନରେ ଜଗତରୁ ଅହିଂସା ଅବତାରର ବିଲୋପ ଘଟିଲା ।' ସେତେବେଳେ ଖୋର୍ଦ୍ଧାରେ କଂଗ୍ରେସ କର୍ମୀଙ୍କର ମରୁଡ଼ି ପଡ଼ିଥିଲା । ସନ୍ଧ୍ୟା ଛଅ ଘଟିକା ସମୟେ ଗାନ୍ଧିଜୀଙ୍କର ମୃତ୍ୟୁ-ଖବର ବିଦ୍ୟୁତ୍ ବେଗରେ ସହର ସାରା ଖେଳିଗଲା । ମୁଁ କୌଣସି କାର୍ଯ୍ୟୋପଲକ୍ଷେ ବଜାରକୁ ଯାଇଥିଲି । ଏପରି ମର୍ମନ୍ତୁଦ ଘଟଣା ଶୁଣି ସ୍ତମ୍ଭୀଭୂତ ହୋଇଗଲି । ସେତେବେଳେ ଜୟହିନ୍ଦ୍ ଏକାଡ଼େମୀର ମାଷ୍ଟର

ବାବୁ ତ୍ରିନାଥ ସୁବୁଦ୍ଧି କଚେରି ଟ୍ରାଫିକ ଛକରେ ପହଞ୍ଚିଲେ । ମୋ ସହିତ ଅନ୍ୟ କେତେଜଣ ଲୋକଙ୍କୁ ଧରି ସେହି ଛକରେ ଏକ ଶୋକସଭାର ଆୟୋଜନ କଲେ । ଏ ଶୋକସଭା ମାତ୍ର ଅଧଘଣ୍ଟାଏ ହୋଇଥିଲା । ଖୋର୍ଦ୍ଧାର ଜନସାଧାରଣ କହିଲେ କେତେଜଣ ମାରୁଆଡ଼ି, ଭୋଜପୁରୀ ବ୍ୟବସାୟୀ ଓ ମୂଳ ଅଧିବାସୀ । ଖୋର୍ଦ୍ଧାର ନାମ ମହାନ୍ ମାତ୍ର ଏବେ ଖୋର୍ଦ୍ଧାବାସୀ ସଦା ଉଦାସୀନ । ଗାନ୍ଧୀଙ୍କ ଶୋକସଭାରେ ମୃଷ୍ଟିମେୟ ଲୋକଥିଲେ । ଗାନ୍ଧୀଜିଙ୍କ ମୃତ୍ୟୁରେ ଯୁଗଜ୍ୟୋତି ଜବାହରଲାଲ କହିଲେ, ''ପୃଥିବୀରୁ ଆଲୋକ ଲିଭିଗଲା ।'' ଫ୍ରାନ୍ସର ପୂର୍ବତନ ପ୍ରଧାନମନ୍ତ୍ରୀ ଲିଓବ୍ଲଂରୁ କହିଲେ, ''ମୁଁ ଗାନ୍ଧୀଙ୍କୁ ଦେଖିନାହିଁ ତାଙ୍କ ଭାଷା ଜାଣି ନାହିଁ, ତାଙ୍କ ଦେଶରେ ପଦାର୍ପଣ କରି ନାହିଁ କିନ୍ତୁ ତାଙ୍କ ମୃତ୍ୟୁରେ ମୋ ନିଜ ପରିବାରରୁ କିଏ ଜଣେ ମରିଗଲା ପରି ଲାଗୁଛି ।'' ସମଗ୍ର ପୃଥିବୀବାସୀ ଦୁଃଖ ସାଗରରେ ବୁଡ଼ିଗଲେ ।

ମୋ ମୁଣ୍ଡଉପରେ ପରୀକ୍ଷା । ପୂରାଦମ୍‌ରେ ପଢ଼ିବା ପାଇଁ ଚିନ୍ତାକରି ଦୁଇ ମାସ ସବେତନ ଛୁଟିପାଇଁ ପ୍ରଧାନ ଶିକ୍ଷକ ମହୋଦୟଙ୍କୁ ଆବେଦନ କଲି । ପ୍ରଧାନ ଶିକ୍ଷକ ହେଲେ ସର୍ବେସର୍ବା । କିନ୍ତୁ ସେ ସବେତନ ଛୁଟି ମଞ୍ଜୁର କଲେନାହିଁ । ମୋ ଆଶାରେ ପ୍ରଚଣ୍ଡ ଧକ୍କା ଲାଗିଲା । ମୁଁ ଥକା ହୋଇ ବସିପଡ଼ିଲି । ମୋ ଭବିଷ୍ୟତ ଚୂରମାର୍ ହୋଇଯିବ ବୋଲି ମନେହେଲା । ତେବେ କ'ଣ ଆଉ ପରୀକ୍ଷାରେ ବସିବି ନାହିଁ ? ପରମୁହୂର୍ତ୍ତରେ ଦୃଢ଼ ଇଚ୍ଛାପୋଷଣ କଲି । ମନରେ ଦମ୍ଭ ଓ ସାହସ ଭରିଗଲା । ''ବାଲିବନ୍ଧ କ'ଣ ସମୁଦ୍ର ଜୁଆରକୁ ଅଟକେଇପାରିବ ?'' ବାଙ୍କନିଧିବାବୁ ମୋତେ ସବେତନ ଛୁଟି ମଞ୍ଜୁର କରିଥିଲେ ମୋର ମହୋପକାର ସାଧନ କରିଥାଆନ୍ତେ । ମୋର ଭାଗ୍ୟ ଛୋଟ । ଦୁଇଓଳି ଘରୋଇ ଟିଉସନ କଲେ ପଢ଼ିବାକୁ ତ ବେଳ ମିଳିବ ନାହିଁ । ଗୋଟିଏ ଓଳି ଟିଉସନ କଲେ ଅତି କଷ୍ଟରେ ଚଳିବାକୁ ପଡ଼ିବ । ଏବେ ଘରଭଡ଼ା ଦେଇପାରିବି ନାହିଁ । କଲେଜରେ ବାରଦୁଆର ଶୁଣ୍ଢିପିଣ୍ଡା ହେଲାପରି ଏବେ କ'ଣ ଏଠାରେ ସେହିପରି ଘଟିବ ? ପ୍ରଧାନ ଶିକ୍ଷକ ତ ଉତ୍ତୁଙ୍ଗ ହିମାଳୟ । ସେ ମୋର ଦୁଃଖ ବୁଝିଲେ ନାହିଁ । ହେଉ, ସବୁ ସହିଲି । ହତୋତ୍ସାହ ହେଲି ନାହିଁ । ବାଙ୍କବାବୁଙ୍କର ବଙ୍କା ବ୍ୟବହାରରେ ମୋର ଦୃଢ଼ତା ଶତଗୁଣ ବୃଦ୍ଧି ପାଇଲା । ମୁଁ ହେଉଛି ଔଡ୍ର କ୍ଷତ୍ରିୟ । ଭୟ କରିବି କାହିଁକି ? ଚାଇଁପଖାଳ ସାଙ୍ଗକୁ ଆଳୁଭରତା ଖାଇ ପଢ଼ାରେ ମନଦେଲି, ବୋଉ ତ ଗାଁଉଲି ନିରକ୍ଷର ସ୍ତ୍ରୀ, ସେ ସରଳତାର ଅବତାର । ତା ପେଟରୁ ମୋ ପରି ଅଧମ ସନ୍ତାନର ଜନ୍ମ । ସେ କହୁଛି ''ପୁଅ ପଢୁଛି କଷ୍ଟ ସହିବ ନାହିଁ ତ ହେବ କିପରି ?'' ଭଗବାନଙ୍କ ଉପରେ ଦମ୍ଭ ଓ ସାହସ ରଖି ମାଡ଼ିଚାଲିଲି । ଦୁଇମାସ ପଢ଼ାରେ ବି.ଏ. ପାସ୍ ନକଲେ କଠିନ

ସମାଲୋଚନାର ଶରବ୍ୟ ହେବି । ମୋ ଶ୍ୱଶୁରଙ୍କର ଭଲ ଚାକିରିଟିଏ ଥିଲା । ସେ ଏ ଅସମୟରେ ପଇସାଟିଏ ଯାଚିକରି ଦେଇନାହାଁନ୍ତି । ମୋ ପକ୍ଷେ ଉପାସଭୋକରେ ରହିବା ନୂଆ କଥା ନୁହେଁ । ପେଟରେ ଓଦାକନା ପକାଇ କେତେଦିନ ଏପରି କଟିଛି । ଚାକିରି କରି କାହାକୁ ହାତପତାଇବା ଉଚିତନୁହେଁ । ଏହି ଟିଉସନ ପଇସାରୁ କିଛି ସଞ୍ଚୟ କଲେ କଟକରେ ପରୀକ୍ଷା ସମୟରେ ଚଳିବାକୁ ହେବ । ଏକଥା ବି ମନକୁ ଆସିଲା ।

## ମୋର ବି.ଏ ପରୀକ୍ଷା :

ମାର୍ଚ୍ଚ ମାସରେ ରେଭେନ୍ସା କଲେଜ କେନ୍ଦ୍ରକୁ ପରୀକ୍ଷା ଦେବାକୁ ଯାତ୍ରା କଲି । ମୋ ବୋଉକୁ ଗାଁରେ ଛାଡ଼ିଦେଇ ଆସିଲି । ଭଡ଼ା ଘରଟିକୁ ସ୍ୱଇଚ୍ଛାରେ ମାଲିକଙ୍କୁ ପ୍ରତ୍ୟର୍ପଣ କଲି । ଯାଁଳା ମାଇନର ସ୍କୁଲ୍‌ରେ ମୋ ତଳ ଶ୍ରେଣୀରେ ଅଧ୍ୟୟନ କରୁଥିବା ବାବୁ ପ୍ରାଣବନ୍ଧୁ ପଟ୍ଟନାୟକ କଟକସ୍ଥ ରଘୁ କର୍ଷଣଙ୍କ କରତ କଳରେ ଚାକିରି କରୁଥିଲେ । ପ୍ରାଣ ମୋର ଅନ୍ତରଙ୍ଗ ବନ୍ଧୁ । ପରୀକ୍ଷା ସମୟତକ ତା ପାଖରେ ରହିଲି । ହୋଟେଲର ଖାଦ୍ୟ ମୋ ଦେହରେ ଚଳିଲା ନାହିଁ । ତେଣୁ ଝାଡ଼ାରୋଗ ଲାଗିରହିଲା । ଥରେ ଇଂରାଜୀ ପରୀକ୍ଷା ଦିନ କଲେଜରେ ଉପର ମହଲାରେ ପରୀକ୍ଷାରେ ବସିଥିବା ବେଳେ ହଠାତ୍ ଝାଡ଼ା ଦେଖାଇବାରୁ ନିରୀକ୍ଷକଙ୍କ ଅନୁମତି ନେଇ ସଙ୍ଗେସଙ୍ଗେ ପଶ୍ଚିମ ଛାତ୍ରାବାସ ମେସ ପାଇଖାନାକୁ ଦୌଡ଼ିଲି । ଭାଗ୍ୟକୁ ଜଣେ ପୂଜାରୀ ଭାଇନା ପାଣି ଢାଳ ପୂର୍ଣ୍ଣ କରି ପାନ ଖାଉଛନ୍ତି । ତାଙ୍କ ଅନୁମତି ନେବାକୁ ବେଳ କାହିଁ ? ଝଟକିନା ପାଣି ଢାଳକୁ ନେଇ ପାଇଖାନାରେ ବସିଲି । ଦଶ ମିନିଟ ପରେ ପାଇଖାନାରୁ ଆସି ପୂଜାରୀ ଭାଇନାକୁ କ୍ଷମାମାଗି ଉପର ମହଲାକୁ ଦୌଡ଼ିଲି । ଲେଖିବାରେ ପୁଣି ମନୋନିବେଶ କଲି । ନିରୀକ୍ଷକଙ୍କ ମନ ପବିତ୍ର । ପରୀକ୍ଷାର୍ଥୀର ମନ ନିର୍ମଳ । ଝାଡ଼ା ଫେରିବାକୁ କେହି ବାଧା ଦେଲେନାହିଁ । ତେଣୁ ଆସି ଲେଖିବାରେ କେହି ବାରଣ କଲେ ନାହିଁ । ଉଭୟ ଗୁରୁ ଶିଷ୍ୟଙ୍କର କି ସୁନ୍ଦର ଚିନ୍ତାଧାରା । ପଞ୍ଚାବନ ବର୍ଷପରେ ଆଜି ସେ ପ୍ରକାର ଭାବନା ଉଭେଇ ଗଲାଣି । ଗରିମାମୟ ରେଭେନ୍ସା କଲେଜର ସେଇ ସୁରମ୍ୟ ପ୍ରାସାଦ ଅବିକଳ ଦଣ୍ଡାୟମାନ । କିନ୍ତୁ ଲୋକଚରିତ୍ର ଦ୍ରୁତ ଗତିରେ ଅବକ୍ଷୟ ହେବାରେ ଲାଗିଛି । ଉଚ୍ଚତମ ଲୋକପ୍ରତିନିଧି ଓ ପଦପଦବୀ ଅଧିକାର କରିଥିବା ନାମଧାରୀ ମହାମହିମ ଅଫିସର ବୃନ୍ଦଙ୍କଠାରୁ ଆରମ୍ଭ କରି ସର୍ବନିମ୍ନ ଚାକିରିଆମାନେ ସମସ୍ତେ ଖାଲି ପଇସା, ପଇସା, ପଇସା । ସତେକି ଜଗତଟାଯାକ କେବଳ ଅର୍ଥପାଗଳ । ତେଣୁ ଏ ବିରାଟ ଉପମହାଦେଶର ଛାତ୍ର ସମାଜ କେଉଁମାନଙ୍କୁ ଅନୁସରଣ କରିବ ? ପରୀକ୍ଷା

ଶେଷ ହେଲା । ପକେଟରେ ଫଟା ପାହୁଲାଟିଏ ନଥିଲା । ହାଇସ୍କୁଲର ଛାତ୍ରାବାସରେ ଆଶ୍ରୟ ନେଲି ।

## ଭୁବନେଶ୍ୱର ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ :

୧୯୪୮ ମସିହା ଏପ୍ରିଲ୍ ମାସ ୧୩ ତାରିଖ ପଣାସଂକ୍ରାନ୍ତି– ପ୍ରସିଦ୍ଧ ହନୁମାନ ଜୟନ୍ତୀରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହୁରୁ ନୂଆ ରାଜଧାନୀର ଶୁଭ ଦେବାପାଇଁ ଭୁବନେଶ୍ୱର ଆଗମନ କଲେ । ସେତେବେଳକୁ ମୋ ମୁଣ୍ଡ ହାଲୁକା ହୋଇଯାଇଥାଏ । ଉକ୍ତ ଉତ୍ସବ ଉପଭୋଗ କରିବା ପାଇଁ କେତେଜଣ ଅନ୍ତେବାସୀଙ୍କୁ ସଙ୍ଗରେ ଧରି ନର୍ଦ୍ଦିଷ୍ଟ ସ୍ଥଳକୁ ଯାତ୍ରାକଲି । ପଣ୍ଡିତ ନେହୁରୁ ବର୍ତ୍ତମାନ ବିଧାନସଭା ସୌଧଠାରେ ଶୁଭଦେବେ । ମାତ୍ର ସେ ନର୍ଦ୍ଦିଷ୍ଟ ସ୍ଥାନଟି ଆମ୍ଭମାନଙ୍କୁ ଅଗୋଚର ଥିବାରୁ ଆମ୍ଭେମାନେ ଖୋର୍ଦ୍ଧାଆଡୁ ଆସି ଉହାଳାହାଳ ପଡ଼ିଆ ନିକଟ ମଧୁବନ ତୋଟାଠାରେ ବସ୍‌ରୁ ଅବତରଣ କଲୁ । କିନ୍ତୁ କେଉଁଠି, କେଉଁଠି ? ସେଠାରୁ ଉତ୍ତର ଦିଗକୁ ଦୌଡ଼ିଲୁ, ଖାଲି, ଢିପ, ବଣ ବୁଦା, ବିରାଟ ରାମପୁର-ଭରତପୁର ଜଙ୍ଗଲର ଅଧାକଟା ଖୁଣ୍ଟଗଛ, ବିଲ, ନାଳ ଅତିକ୍ରମକରି ଧଇଁସଇଁ ହୋଇ ତିନିମାଇଲ୍ ପଥ ଅତିକ୍ରମ କରି ଭୁବନେଶ୍ୱରର ଷ୍ଟେସନ ନିକଟବର୍ତ୍ତୀ ଅଂଚଳରେ ପଦାର୍ପଣ କଲୁ । ସେଠାରେ ସେଦିନ ବହୁ ଲୋକଙ୍କର ସମାଗମ ହୋଇଥିଲା । ଲୋକ ଥାଟପଟୁଆର ଭାଙ୍ଗୁଥାଆନ୍ତି । ଠେଲାଠେଲି ପେଲାପେଲିରେ ମୁଁ ପଛକୁ ପଡ଼ିଯାଉଥାଏ ।

## ରାଜଧାନୀ ପାଇଁ ଭୁବନେଶ୍ୱର ଉପଯୁକ୍ତ ସ୍ଥାନ :

ସେଦିନର ସେହି ରାମପୁର-ଭରତପୁର ସଂରକ୍ଷିତ ଶାଳ ଜଙ୍ଗଲ ଆଜି ସୌନ୍ଦର୍ଯ୍ୟବିମଣ୍ଡିତ ପୁଷ୍ପଭରା ନୂଆ ରାଜଧାନୀ । ଯେ ସେଠାରେ ଜାଗା ଖଣ୍ଡିଏ ପାଇ ପାରିଛି ସେ ନିଜକୁ ଭାଗ୍ୟବାନ ମନେକରିଛି । ସହରର ପରିବେଶ ଅତି ଚମତ୍କାର । ପ୍ରାକୃତିକ ସୌନ୍ଦର୍ଯ୍ୟଠାରୁ କୃତ୍ରିମ ସୌନ୍ଦର୍ଯ୍ୟ ବଢ଼ିଯାଇଛି । ସେଇ କ୍ଷୁଦ୍ରସ୍ଥାନ ଏବେ ବଢ଼ିବଢ଼ି ଉତ୍ତରରେ ମଞ୍ଚେଶ୍ୱରଠାରୁ ଦକ୍ଷିଣରେ ସୁନ୍ଦରପଦା, ପୂର୍ବରେ ହଂସପାଳ-ଟଙ୍କପାଣି ନଦୀଠାରୁ ପଶ୍ଚିମରେ ଯାଁଳା ପର୍ଯ୍ୟନ୍ତ ୧୦୦ ବର୍ଗ କି.ମି. ସ୍ଥାନ ବିସ୍ତାରଲାଭ କଲାଣି । ଭୁବନେଶ୍ୱରକୁ ରାଜଧାନୀ ଭାବେ ନିର୍ବାଚନ କରିବା ଏକ ସୁଚିନ୍ତିତ ଯୋଜନା । କେଉଁ ଦୃଷ୍ଟିରୁ ଏହାର ଗୁରୁତ୍ୱ ନାହିଁକି ? ଏଠାରେ ଭାବିବାର କଥା କଟକ ବହୁକାଳ ପର୍ଯ୍ୟନ୍ତ ଏପରିକି ୯୩୭ ଖ୍ରୀ.ଅ. ଠାରୁ ୧୫୬୮ ଖ୍ରୀ.ଅ. ପର୍ଯ୍ୟନ୍ତ ଓ (ତପ୍ରେ ଖୋରଧାର ଭୋଇବଂଶୀୟ ନରପତିମାନେ ରାଜତ୍ୱ କରୁଥିଲେ ମଧ) ୧୫୬୮ ଖ୍ରୀ.ଅ.ଠାରୁ

୧୯୪୭ ମସିହା ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ହେଲେ ମଧ୍ୟ ଏବଂ ସହରକୁ ଶତ୍ରୁ କବଳରୁ ରକ୍ଷା କରିବାପାଇଁ ମହାନଦୀ, କାଠଯୋଡ଼ି ଭଳି ପ୍ରାକୃତିକ ପରିଖା ଓ ସାରଙ୍ଗଗଡ଼, ଚୌଦ୍ୱାର ଗଡ଼ ତାର ରକ୍ଷାକବଚ ଥିଲେ ମଧ୍ୟ କଟକ ଏକ ନାଳନର୍ଦ୍ଦମା ସହରରେ ପରିଣତ ହୋଇଛି । ସହରର ବିସ୍ତାର ପାଇଁ ସ୍ଥାନାଭାବ ମୁଖ୍ୟ ସମସ୍ୟା । ପୁନଶ୍ଚ ସହରଟି ନିମ୍ନଭାଗରେ ଅବସ୍ଥିତ ଥିବାରୁ କାଠଯୋଡ଼ି ବନ୍ଧଭାଙ୍ଗିଗଲେ ସହରର ଅବସ୍ଥା ଶୋଚନୀୟ ହୋଇପଡ଼ିବ । ମଶା, ଡାଆଁଶ, ମାଛିର ପ୍ରାଦୁର୍ଭାବ ଅଧିକ । ସହରର ଅଭ୍ୟନ୍ତରରୁ ଜଳ ନିଷ୍କାସନ ହୋଇପାରୁନାହିଁ । ଏପରି ସ୍ଥଳେ କଟକ ଓଡ଼ିଶାର ରାଜଧାନୀ ହେବାଟାକୁ ଓଡ଼ିଶାର ଜନସାଧାରଣ ତଥା ନେତୃବୃନ୍ଦ ଇଚ୍ଛାପ୍ରକାଶ କଲେ ନାହିଁ । ଭୁବନେଶ୍ୱରକୁ ରାଜଧାନୀ ଭାବେ ନିର୍ବାଚନ କରିବା ଅଧିକ ସମୀଚୀନ । ଏହା ଏକ ଇତିହାସପ୍ରସିଦ୍ଧ ସ୍ଥାନ । ସହରର ଅଭିବୃଦ୍ଧି ପାଇଁ ଭୁବନେଶ୍ୱର ଉପକଣ୍ଠ ଅଂଚଳରେ ଖୋଲା ପ୍ରାନ୍ତର ଅନେକ ଏବଂ ଛୋଟ ଜଙ୍ଗଲ କଟାଯାଇ କଲିକତା ସହରଠାରୁ ବୃହଦ୍ କରାଯାଇପାରେ । ଏକଦା ଅତି ପ୍ରାଚୀନ କାଳରେ ଭୁବନେଶ୍ୱର ଏକାମ୍ର କାନନରୂପେ ପ୍ରସିଦ୍ଧିଲାଭ କରିଥିଲା । ଏହା ଦ୍ୱିତୀୟ କାଶୀନଗର ନାମରେ ଲୋକମୁଖରେ ପ୍ରଚଳିତ । ଏହା ଦେବଦେବ ମହାଦେବ ଶ୍ରୀ ଶ୍ରୀ ଲିଙ୍ଗରାଜ ଦେବଙ୍କ ବିଜେସ୍ଥଳୀ ରୂପେ ବିଖ୍ୟାତ । ଏହା ମନ୍ଦିରମାଳିନୀ ନଗରୀ ରୂପେ ବିଦିତ । ସହରର ଚତୁଃପାର୍ଶ୍ୱବର୍ତ୍ତୀ ଅଂଚଳ ଗରିମାମୟ । ଖ୍ରୀ.ଅ. ଦ୍ୱିତୀୟ ଶତକରେ କଳିଙ୍ଗ ସମ୍ରାଟ ଖାରବେଳଙ୍କ ରାଜଧାନୀ ଖଣ୍ଡଗିରି ଓ ଧଉଳିଗିରି ମଧ୍ୟରେ ପ୍ରସିଦ୍ଧ କଳିଙ୍ଗଯୁଦ୍ଧ ଖ୍ରୀ.ପୂ. ୨୬୧ରେ ସଂଘଟିତ ହୋଇଥଲା । ଅଶୋକଙ୍କ ପ୍ରତିନିଧି ଧଉଳିଠାରେ ଅବସ୍ଥାନ କରୁଥିଲେ । ତୃତୀୟତଃ ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ କଳିଙ୍ଗର ବିଖ୍ୟାତ ଦୁର୍ଗ ଶିଶୁପାଳଗଡ଼ ଏହି ସ୍ଥାନରେ ଅବସ୍ଥିତ ଥିଲା । କେଶରୀ ବଂଶୀୟ ରାଜାମାନଙ୍କର ଭୁବନେଶ୍ୱର ଦୀର୍ଘ ୪୦୦ ବର୍ଷ ପର୍ଯ୍ୟନ୍ତ ରାଜଧାନୀ ଥିଲା । (କୃପାସିନ୍ଧୁ ମିଶ୍ର– ଉତ୍କଳ ଇତିହାସ)

ଅତଏବ ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ରାଜଧାନୀ ହେବାପାଇଁ ଭୁବନେଶ୍ୱର ଅପ୍ରତିଦ୍ୱନ୍ଦ୍ୱୀ ଭାବେ ପ୍ରଥମ ସ୍ଥାନରେ ସ୍ଥାନ ପାଇବ । ପୁନଶ୍ଚ ଭୌଗୋଳିକ ଦୃଷ୍ଟିକୋଣରୁ ବିଚାର କଲେ ଏଠାରେ ରାଜଧାନୀ ସ୍ଥାପନ ହେବାର ଯଥେଷ୍ଟ ଯୁକ୍ତି ରହିଛି । ଏଠାରେ ବନ୍ୟାର ପ୍ରକୋପ ନାହିଁ । ଜଳବାୟୁ ସ୍ୱାସ୍ଥ୍ୟପ୍ରଦ, ଉଚ୍ଚ ଶୁଷ୍କ ଗଡ଼ାଣିଆ ସ୍ଥାନ ହୋଇଥିବାରୁ ଜଳନିଷ୍କାସନ ସୁବିଧାଜନକ । କୁଆଖାଇ ନଦୀ ପାର୍ଶ୍ୱରେ ଅବସ୍ଥିତ ଥିବାରୁ ସହରର ପାନୀୟଜଳ ସମସ୍ୟା ସହଜରେ ଦୂରୀଭୂତ ହେବ । ସହରକୁ ଜାତି ଜାତିକା ଫଳ, ଫୁଲ, ବୃକ୍ଷମାନଙ୍କ ଦ୍ୱାରା ସୁଶୋଭିତ କରିବାପାଇଁ ମାଟି ଅତ୍ୟନ୍ତ

ଉପଯୋଗୀ, ଆଧୁନିକ କଳକାରଖାନା ପ୍ରତିଷ୍ଠା କରିବା ପାଇଁ ଉପକଣ୍ଠ ଗ୍ରାମମାନଙ୍କରେ ଖୋଲା ଟାଙ୍ଗି ଅଞ୍ଚଳ ବିଦ୍ୟମାନ । ଏହି ସହର ସଡ଼କପଥ, ରେଳପଥ ଓ ଆକାଶପଥ ଦ୍ୱାରା ସମଗ୍ର ଦେଶ ସହ ଯୁକ୍ତ । ଭୁବନେଶ୍ୱର ଚତୁଃପାର୍ଶ୍ୱରେ ଖାଲୁଆ ଅଞ୍ଚଳ କୃଷି ପାଇଁ ଏକାନ୍ତ ଉପଯୋଗୀ । ତେଣୁ ଯେଉଁ ନେତୃବୃନ୍ଦ ଭୁବନେଶ୍ୱରକୁ ରାଜଧାନୀରୂପେ ବାଛିଲେ ସେମାନଙ୍କୁ ମୁଁ ଅଭିନନ୍ଦନ ଜଣାଉଛି । ପୁଣି ଆଜି କରିତ୍‌କର୍ମା, ଜ୍ଞାନୀ, ଗୁଣୀ, ଦେଶପ୍ରେମୀ ପଣ୍ଡିତ ଜବାହରଲାଲ ନୂତନ ରାଜଧାନୀର ଭିତ୍ତିପ୍ରସ୍ତର ସ୍ଥାପନ କରୁଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ । ଏହି ସହର ଭବିଷ୍ୟତରେ ଏକ ଉନ୍ନତ ଋଦ୍ଧିମନ୍ତ ସହରରେ ପରିଣତ ହେଉ ଏହାହିଁ ପରମେଶ୍ୱରଙ୍କ ଠାରେ ମୋର ଏକାନ୍ତ କାମନା ।

ଭୁବନେଶ୍ୱର ୧୫୬୮ ଠାରୁ ୧୮୦୩ ପର୍ଯ୍ୟନ୍ତ ଖୋର୍ଦ୍ଧାରାଜ୍ୟର ଅଂଶ ବିଶେଷ ଥିଲା । ରାଜଧାନୀର ଶୁଭଦେଇ ପଣ୍ଡିତ ନେହୁରୁ ପୃଥିବୀ ବିଖ୍ୟାତ କୋଣାର୍କ ସୂର୍ଯ୍ୟମନ୍ଦିର ପରିଦର୍ଶନରେ ଗଲେ । ସେପର୍ଯ୍ୟନ୍ତ କୋଣାର୍କ ଅବହେଳିତ ଅବସ୍ଥାରେ ପଡ଼ିରହଥିଲା । ବ୍ରିଟିଶ ଶାସନକାଳରେ ଖୋରଧା ସବ୍‌ଡିଭିଜନର ଭୁବନେଶ୍ୱର ଏକ ଥାନା ମାତ୍ର ଥିଲା ।

## ଆମ୍ଭମାନଙ୍କର କୋଣାର୍କ ଯାତ୍ରା :

କୋଣାର୍କକୁ ଏବେ ସାମୟିକ ଯାତାୟାତ ପଥର ସୁବିଧା କରାଗଲା । କେବଳ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହୁରୁଙ୍କ ଗସ୍ତ ସକାଶେ । ଏହାକୁ ଏକ ସୁବର୍ଣ୍ଣ ସୁଯୋଗ ମନେକରି ଛାତ୍ରାବାସର କୁଞ୍ଜ, ଆଶୁତୋଷ ପ୍ରଭୃତି ପାଞ୍ଚଜଣ ଅନ୍ତେବାସୀଙ୍କୁ ସାଙ୍ଗରେ ଧରି ସାଇକେଲ ଚାଳନାକରି କୋଣାର୍କ ପରିଦର୍ଶନ କରିବାକୁ ଉଦ୍ୟତ ହେଲି । ଉକ୍ତଦିନ ସଂଧ୍ୟା ପୂର୍ବରୁ କୋଣାର୍କ ମନ୍ଦିର ପରିସର ଭିତରେ ପ୍ରବେଶ କଲୁ । ସେଦିନର ଓଡ଼ିଆ ଶିଳ୍ପୀର ନିହାଣ ମୁନରେ ରୂପାୟିତ ଅର୍ଦ୍ଧଭଗ୍ନ କୋଣାର୍କ ମନ୍ଦିରର ଅନିନ୍ଦ୍ୟ ସୁନ୍ଦର କାରୁକାର୍ଯ୍ୟ ଦର୍ଶନ କରି ମୋହିତ ହେଲୁ । ଏହି ଅବସରରେ ମନ୍ଦିରର ପୂର୍ବଗୌରବ ମନରେ ଉଙ୍କିମାରିଲା । ଏହି ମନ୍ଦିରର ନିର୍ମାଣ ଉତ୍କଳର ଗଙ୍ଗବଂଶୀୟ ମହାରାଜା ଲାଙ୍ଗୁଡ଼ା ନରସିଂହଦେବଙ୍କ ଦ୍ୱାରା ୧୨୩୮ ଖ୍ରୀ.ଅ.ରେ ଆରମ୍ଭ ହୋଇ ୧୨୫୪ ଖ୍ରୀ.ଅ.ରେ ଶେଷ ହୋଇଥିଲା ଏବଂ ଏହି ନିର୍ମାଣ କାର୍ଯ୍ୟରେ ରାଜାଙ୍କର ଷୋଳ ବର୍ଷର ରାଜସ୍ୱ ବ୍ୟୟ ହୋଇଥିବାର ପ୍ରବାଦ ଅଛି । ମନ୍ଦିରର କାରୁକାର୍ଯ୍ୟ ମନୋମୁଗ୍ଧକର । ମୂର୍ତ୍ତିଗୁଡ଼ିକ ଜୀବନ୍ତ ପ୍ରତୀୟମାନ ହେଉଥିଲା । ମନ୍ଦିରର ଚାରୁକଳା ବର୍ଣ୍ଣନାତୀତ । ଇଂରେଜ ଶାସନକାଳରେ ଏହା ଅବହେଳିତ ଅବସ୍ଥାରେ ରହିଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ

ପୃଥିବୀର ବିଭିନ୍ନ ପ୍ରାନ୍ତରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ସୌନ୍ଦର୍ଯ୍ୟପିପାସୁ ଜନତା ଏଠାକୁ ଆସି ଏହାର ଅନୁପମ ସୌନ୍ଦର୍ଯ୍ୟ ଉପଭୋଗ କରିବାରେ ଲାଗିଛନ୍ତି ।

ବର୍ତ୍ତମାନ ଓଡ଼ିଆ ଶିଳ୍ପୀମାନଙ୍କର ଦୁରବସ୍ଥା ସଂଦର୍ଶନ କରି ବିଦେଶୀ ପର୍ଯ୍ୟଟକମାନେ ବିସ୍ମିତ ହୋଇପଡ଼ିଛନ୍ତି । ସେମାନେ ଭାବନ୍ତି କୋଣାର୍କର ଅନୁପମ କାରୁକାର୍ଯ୍ୟ ଅର୍ଦ୍ଧଭୁକ୍ତ ଓ ଅର୍ଦ୍ଧବସନ ପରିହିତ ଓଡ଼ିଆ ଶିଳ୍ପୀର କାର୍ଯ୍ୟ କି ? ୧୯୪୮ ମସିହା ସୁଦ୍ଧା କୋଣାର୍କ ଅଞ୍ଚଳ ଏକ ଅନୁନ୍ନତ ଅଞ୍ଚଳ ଥିଲା, ଆମ୍ଭେମାନେ କେବଳ ତାର ନାଁ ଓ କାରୁକାର୍ଯ୍ୟ ପୁସ୍ତକରୁ ପାଠ କରୁଥିଲୁ । ସେ ଅଞ୍ଚଳକୁ ରାସ୍ତାଘାଟର କିଛି ସୁବିଧା ନଥିଲା । ଯାହାବା ଥିଲା ତାହା ବିଖଣ୍ଡିତ । ଆମ୍ଭେମାନେ ସେଠାରେ କୌଣସି ଖାଦ୍ୟଦ୍ରବ୍ୟ ପାଇନଥିଲୁ । ସେଠାରେ ସହର ବଜାର ଗଢ଼ିଉଠିନଥିଲା । ସେଠାରୁ ଏକ ମାଇଲ ଦୂରରେ ଉତ୍ତର ଦିଗକୁ ଏକ ସ୍ଥାନରେ ଖାଦ୍ୟଦ୍ରବ୍ୟର କିଛି ବ୍ୟବସ୍ଥା ଥିଲା । ନେହରୁଙ୍କ ଆଗମନ ପରେ ଏହାର ପ୍ରାଧାନ୍ୟ ବୃଦ୍ଧି ପାଇଲା । ଏବେ କୋଣାର୍କ ଏକ ନଗରରେ ପରିଣତ ହୋଇଛି । ପୌରାଞ୍ଚଳରେ ପରିଣତ ହୋଇଛି । ଦିନକୁଦିନ ଏହାର ମହତ୍ତ୍ୱ ବୃଦ୍ଧି ପାଉଛି । ଆଜକୁ ସାତ ଶହ ବର୍ଷ ତଳେ ଏପରି ଭୁବନବିଖ୍ୟାତ ନିପୁଣ ପଥର ଶିଳ୍ପୀ ରାଜାନୁଗ୍ରହ ଲାଭ କରି ଯେଉଁ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି ତାହା ଜଗତବାସୀଙ୍କୁ ସ୍ତମ୍ଭୀଭୂତ କରିଦେଇଛି । ଯେଉଁ ଓଡ଼ିଆ ଦିନେ ଦରିଆପାରି ବାଣିଜ୍ୟ ବ୍ୟବସାୟକରି ଅଜସ୍ର ଧନରତ୍ନ ବୋହିଆଣି ଦେଶ ଓ ଜାତିକୁ ସମୃଦ୍ଧ କରିଥିଲେ, ପୁରୀ, କୋଣାର୍କ, ଭୁବନେଶ୍ୱରର ବିଶାଳ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ନିର୍ମାଣ କରିଥିଲେ ତା'ର ଆଧୁନିକ ଦାୟାଦମାନଙ୍କୁ ଦେଖିଲେ କିଏ ବିଶ୍ୱାସ କରିବ ଯେ ଏ ଜାତି ଦିନେ ଗଙ୍ଗାଠାରୁ ଗୋଦାବରୀ ବା କାବେରୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ ଏବଂ ଦରିଆପାରିରେ ରାଜ୍ୟଗଠନ କରିଥିଲେ ?

ଆମ୍ଭେମାନେ କୋଣାର୍କର ଶିଳ୍ପ ବିଭବ ସ୍ମରଣକରି ସେଦିନ ରାତ୍ରିକାଳ ନିମାପଡ଼ା ହାଇସ୍କୁଲ ଛାତ୍ରାବାସରେ ଅନ୍ତେବାସୀଙ୍କ ଆତିଥ୍ୟ ଗ୍ରହଣ କରି ପରଦିନ ପ୍ରତ୍ୟୁଷରେ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲୁ ।

୧୯୪୭ ମସିହା ମାଟ୍ରିକ ପରୀକ୍ଷାରେ ଖୋର୍ଦ୍ଧା ହାଇସ୍କୁଲର ସୁଯୋଗ୍ୟଛାତ୍ର ଦ୍ୱୟ ଶ୍ରୀ ପ୍ରଭାକର ମହାପାତ୍ର ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଓ ଶ୍ରୀ ସଚ୍ଚିଦାନନ୍ଦ ସିଂହ ଅଷ୍ଟମ ସ୍ଥାନ ଅଧିକାର କରି ସମଗ୍ର ଉତ୍କଳରେ ଆମ ହାଇସ୍କୁଲର ଯଥେଷ୍ଟ ସୁନାମ ଅର୍ଜନ କରାଇପାରିଥିଲେ । ମୁଁ ସେହି ଉଚ୍ଚବିଦ୍ୟାଳୟର ଜଣେ ଶିକ୍ଷକ

ହୋଇଥିବାରୁ ମୋର ଛାତି କୁଣ୍ଢେମୋଟ ହୋଇଗଲା । ସେ ବର୍ଷ ସ୍ୱାଧୀନତା ସଂଗ୍ରାମୀ ତଥା ପ୍ରଚାର ବିଭାଗର ସେକ୍ରେଟାରୀ ବାବୁ ଚିନ୍ତାମଣି ମିଶ୍ରଙ୍କ କନିଷ୍ଠଭ୍ରାତା ନୀଳମଣି ମିଶ୍ର ବିଦ୍ୟାଳୟରେ ଯୋଗଦେଲେ ଏବଂ ଚିନ୍ତାମଣି ମିଶ୍ରଙ୍କ ଭ୍ରାତା ହେତୁ ପ୍ରଭାବଶାଳୀ ହୋଇପଡ଼ିଲେ ।

ସେତେବେଳକୁ ବାଙ୍କନିଧିବାବୁଙ୍କର ୨୭ ବର୍ଷ ଚାକିରି ଓ ୫୮ ବର୍ଷ ବୟସ ହେଲାଣି । ଶିକ୍ଷକମାନଙ୍କଠାରୁ ଅବଗତ ହୋଇଥିଲି ବାଙ୍କନିଧିବାବୁଙ୍କର ପୂର୍ବଦୀପ୍ତି କମିକମି ଆସିଲାଣି । ସେ କେବେ ଭାବିନଥିଲେ ତାଙ୍କ ଚାକିରି କାଳ ମଧ୍ୟରେ ଭାରତ ସ୍ୱାଧୀନତା ଲାଭ କରିବ । ଶିକ୍ଷକମାନଙ୍କଠାରୁ ଶୁଣିଛି ତାଙ୍କୁ ତଥ୍ୟ ଯୋଗାଇବାପାଇଁ ସେ କେତେକ ପିଲାଙ୍କୁ ନିଯୁକ୍ତ କରିଥିଲେ । ଅସହଯୋଗ ସମୟଠାଯାକ ସେ ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟନିର୍ବାହ କରିଥିଲେ । ଖୋର୍ଦ୍ଧାକୁ ଯେଉଁ ଗୋରା ବା କଳା ଏସ୍.ଡି.ଓ. ହୋଇ ଆସୁଥିଲେ ସମସ୍ତଙ୍କର ସେ ପ୍ରିୟଥିଲେ । ଗୋରାଙ୍କ ଅପେକ୍ଷା କଳା ଅଫିସରମାନେ କଂଗ୍ରେସ ଆନ୍ଦୋଳନ ପ୍ରତି କଡ଼ା ମନୋଭାବ ପ୍ରଦର୍ଶନ କରୁଥିଲେ । ଏପରି ଜଣେ ଏସ୍.ଡି.ଓ. ଥିଲେ ବାବୁ ରାଧାଚରଣ ଦାସ ୧୯୩୦ ରୁ ୩୨ ମଧ୍ୟରେ । ସଂଗ୍ରାମୀ ପରଶୁରାମ ପଦାତିକରାୟ କହନ୍ତି, ''ରାଧାଚରଣ ଦାସ ନିର୍ମମ ଭାବରେ ସ୍ୱାଧୀନତା ଆନ୍ଦୋଳନକୁ ଦବାଇ ଦେଉଥିଲେ । ଏପରିକି ପ୍ରତ୍ୟେକ ଆନ୍ଦୋଳନକାରୀଙ୍କୁ ଶହେ ଟଙ୍କା ଲେଖାଏଁ ଜୋରିମାନା କରୁଥିଲେ । ଏଥିରେ ସ୍ୱାଧୀନତା ସଂଗ୍ରାମୀ ଆଉ ଉଠିପାରିବ କି ? କୌଣସି କଂଗ୍ରେସୀ ନେତା ସଭାରେ ଭାଷଣ ଦେଲାବେଳେ ସେ ହାଡ଼ିମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ ଜୋରରେ ବାଜା ବଜାଇବାକୁ ଯେପରି ଜନତା ଶୁଣିପାରିବେ ନାହିଁ ।'' ବାଙ୍କନିଧିବାବୁ ବିଦେଶୀମାନଙ୍କୁ ବେଶି ସମର୍ଥନ କରୁଥିଲେ । ବାଣପୁରର ସ୍ୱାଧୀନତା ସଂଗ୍ରାମୀ ବାବୁ ନୃସିଂହ ଚରଣ ସାମନ୍ତସିଂହାର, ଟାଙ୍ଗିର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବ୍ରଜବନ୍ଧୁ ଦାସ ଓ ଗୁରୁଜଙ୍ଗର ସ୍ୱାଧୀନତା ସଂଗ୍ରାମୀ ବାବୁ ସଚ୍ଚିଦାନନ୍ଦ ରାଉତରାୟ ସେତେବେଳେ ଛାତ୍ରଥିଲେ । ସେମାନେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇଥିଲେ ବୋଲି ସେମାନଙ୍କୁ ଓ ଆହୁରି କେତେକ ଛାତ୍ରଙ୍କୁ ସ୍କୁଲରୁ ବଳପୂର୍ବକ ବାହାର କରି ଦିଆଯାଇଥିଲା । କବିଙ୍କ ଭାଷାରେ ବାଙ୍କନିଧିବାବୁ ଜଣେ ଜବରଦସ୍ତ ହେଡମାଷ୍ଟର ଥିଲେ । ବାଙ୍କନିଧିବାବୁଙ୍କର ବ୍ରିଟିଶ ଶାସନପ୍ରତି ଗଭୀର ମୋହଥିଲା । ତେବେ ବାଙ୍କନିଧିବାବୁ ଯେପରି ଗୁଣୀ, ଜ୍ଞାନୀ ଥିଲେ ସେହିପରି କଠୋର ଶାସକଥିଲେ । ବାଙ୍କବାବୁ ପଠନପ୍ରିୟ ଥିଲେ । ସାରସ୍ୱତ ସାଧକ ଥିଲେ । ତାଙ୍କ ପାଖେ ମୋ ଚାକିରି କାଳ ପାଞ୍ଚ ବର୍ଷ ଭିତରେ । ସଭା ସମିତିରେ ସେ କେବେହେଲେ ଦେଶକଥା,

ଜାତିକଥା କହିନାହାଁନ୍ତି । ବଙ୍ଗଳା ଉପନ୍ୟାସ ଓ ଇଂରାଜୀ ପୁସ୍ତକ ସେ ପଢ଼ିବାରେ ସମୟ କଟାଉଥିଲେ । ମାତ୍ର କଂଗ୍ରେସ ବିରୁଦ୍ଧରେ ଯିବାରୁ କଂଗ୍ରେସ ଲୋକମାନେ ତାଙ୍କ ଉପରେ ବିରକ୍ତି ପ୍ରକାଶ କରୁଥିଲେ । ବାଙ୍କନିଧିବାବୁଙ୍କ ଅଫିସ ଗୃହରେ ଶିକ୍ଷକମାନେ ପ୍ରବେଶ କରିବାକୁ ଡରୁଥିଲେ । ଖୋରଧାର ଜନସାଧାରଣ ଓ ଶିକ୍ଷକ ମହଲରେ ସେ ପ୍ରିୟ ନଥିଲେ । ୧୯୬୧ ମସିହାରେ ତାଙ୍କର ମୃତ୍ୟୁକାଳେ ବେଶି ଲୋକ ଉପସ୍ଥିତ ନଥିଲେ । ବ୍ୟକ୍ତିଗତଭାବେ ସେ ମୋର କିଛି ଉପକାର କରିନଥିଲେ ମଧ୍ୟ ମୁଁ କହିବି ସେ ଜଣେ ଦକ୍ଷ ପ୍ରଶାସକ ଓ ଜ୍ଞାନଦୀପ୍ତ ପ୍ରଧାନ ଶିକ୍ଷକ ଥିଲେ । ମୋର ନିର୍ଭୀକତା ହେତୁ ସେ ମୋତେ ହଇରାଣ କରିବାପାଇଁ ଚେଷ୍ଟାକରିଥିଲେ ମଧ୍ୟ କରିପାରି ନଥିଲେ । ମୋ ଭାଗ୍ୟବଳ ହେତୁ ମୁଁ ମୁକୁଳି ଯାଉଥିଲି । ତଥାପି ମୁଁ ତାଙ୍କପ୍ରତି ଅସୂୟାଭାବ ପ୍ରଦର୍ଶନ କରିନଥିଲି । ମୋର ନିଷ୍ଠା ଓ ଦକ୍ଷତା ପାଇଁ ସେ ମୋତେ ମଧ୍ୟ ଖଣ୍ଡିଏ ପ୍ରଶଂସାପତ୍ର ପ୍ରଦାନ କରିଥିଲେ ।

ବାଙ୍କନିଧିବାବୁ ଏତେ ସମୟ-ସଚେତନ ଥିଲେ ଯେ ବିଦ୍ୟାଳୟକୁ ଅସମୟରେ ଛୁଟିକରନ୍ତି ନାହିଁ । ଥରେ ପଣ୍ଡିତ ନେହରୁ ୧୯୩୬ ମସିହା ନିର୍ବାଚନ ପୂର୍ବରୁ ଖୋର୍ଦ୍ଧା ପଲଟଣ ପଡ଼ିଆରେ ସଭାକଲେ । କେତେଜଣ ସ୍କୁଲପିଲା ଝରକା ଡେଇଁ ନେହରୁଙ୍କ ସଭାକୁ ଦୌଡ଼ିଲେ । ବାଙ୍କନିଧିବାବୁ ଏ କଥା ଜାଣିପାରିଥିଲେ କି ନାହିଁ ତାହା ସ୍ୱତନ୍ତ୍ର କଥା, ମାତ୍ର ତାଙ୍କର ନେହରୁଙ୍କୁ ଦେଖିବାକୁ ଇଚ୍ଛା, କିନ୍ତୁ ଛୁଟି ଘଣ୍ଟା ନବାଜିଲେ ସେ ଯାଇ ପାରିବେ ନାହିଁ । ବିଦେଶୀ ଶାସନ । ସେ ଅପେକ୍ଷା କଲେ । ଚାରିଟା ବାଜିଲା ପରେ ସେ ଛୁଟିଘଣ୍ଟା ବଜାଇବାକୁ ନିର୍ଦ୍ଦେଶ ଦେଲେ ଏବଂ ତତ୍ପରେ ନିଜେ ଯାଇ ସଭାସ୍ଥଳୀରେ ପହଞ୍ଚିଲେ । ସେ ବ୍ରିଟିଶ ଶାସନର ପକ୍ଷପାତୀ ଥିଲେ ହେଁ ନିଜେ ନୀତି ନିୟମରୁ ବିଚ୍ୟୁତ ହେଉନଥିଲେ । ବାଙ୍କନିଧିବାବୁ ସଭାସ୍ଥଳରେ ପହଞ୍ଚିବାରୁ ପିଲାମାନେ ଏଣେ ତେଣେ ଦୌଡ଼ିବାକୁ ଆରମ୍ଭ କଲେ । ସଭାରେ ହଇଚଇ ସୃଷ୍ଟିହେଲା । ନେହରୁ ପଚାରିଦେଲେ, ''କ୍ୟା ହୁଆ'' ''କିଆ ହୁଆ'' । ଜଣେ ଉତ୍ତର ଦେଲେ ''ହେଡମାଷ୍ଟରଜୀ ଆନେସେ ବଚେ ଭାଗଗଏ । ତେଣୁ ପିଲାମାନେ ଏପରି ହେଉଛନ୍ତି ।'' ନେହେରୁ ହଠାତ୍ କହିଦେଲେ ''ହେଡମାଷ୍ଟରଜୀ କ୍ୟା ଶେର୍ ହେ ? ବଚେ ଡରକରେ ଭଗ ଗଏ ?'' ସଭାରେ ପ୍ରବଳ ହାସ୍ୟରୋଳ ସୃଷ୍ଟିହେଲା । ଉପରୋକ୍ତ ଘଟଣାରୁ ତାଙ୍କର ବ୍ରିଟିଶ ଶାସନ ପ୍ରତି ଯେପରି ମୋହ ଜଣାପଡ଼େ କଠୋର ଶୃଙ୍ଖଳା ଜ୍ଞାନ ସେହିପରି ଜଣାଯାଏ । ଯାହା ହେଲେ ବି ସେ ଜଣେ ପ୍ରବୀଣ ହେଡ୍‌ମାଷ୍ଟର ।

**ପରୀକ୍ଷା ଫଳ :**

ମୁଁ ଘରୋଇଭାବରେ ବି.ଏ. ପରୀକ୍ଷା ଦେଇଥିଲି । ଚାରି ଛଅ ମାସ ପରିଶ୍ରମ, ତା ଭିତରେ ନାନା ଝଞ୍ଜାଳ, ପରୀକ୍ଷାରେ କ'ଣ ହେବ କ'ଣ ନାହିଁ । ତିନି ମାସ ଅତିକ୍ରାନ୍ତ ହୋଇଯିବାପରେ ମନରେ ଅହେତୁକ ଭୟର ସଞ୍ଚାର ହେଲା । ମୁଁ ସ୍ୱଭାବତଃ ସ୍ୱାଭିମାନୀ । ଶିକ୍ଷକ ଆସନରେ ବସିଛି, ଏଥିରେ କିଛି କ୍ଷମତା ନାହିଁ, କେବଳ ମାନ ସମ୍ମାନ ଅଛି । ପଇସା ବି ନାହିଁ, ନୀତିମୟ ଜୀବନଯାପନ ହେଲା ବଡ଼ କଥା । ପରୀକ୍ଷାରେ ଅକୃତକାର୍ଯ୍ୟ ହୋଇଗଲେ ଛାତ୍ରଛାତ୍ରୀ ବନ୍ଧୁପରିଜନ ସର୍ବୋପରି ଶିକ୍ଷକମାନଙ୍କ ସମ୍ମୁଖରେ ମୋର ମାନସମ୍ମାନ ଭୂଲୁଣ୍ଠିତ ହୋଇଯିବ । ତେଣୁ ବହୁ ସମୟ ଚିନ୍ତାମଗ୍ନ ରହୁଥିଲି । ପରୀକ୍ଷାଫଳ ଘୋଷଣା ଯେତେ ନିକଟତର ହେଉଥାଏ ମନରେ ଉଦ୍‌ବେଗ ସେତିକି ସେତିକି ବୃଦ୍ଧି ପାଉଥାଏ । ସେତେବେଳେ ଘରୋଇଭାବେ କମ୍‌ସଂଖ୍ୟକ ପରୀକ୍ଷାର୍ଥୀ ଉତ୍ତୀର୍ଣ୍ଣ ହେଉଥିଲେ । ମୋ ସହିତ ଏହି ସହରର ଦୁଇଜଣ ଓ ବାହାରର ଜଣେ ଶିକ୍ଷକ ପରୀକ୍ଷା ଦେଇଥିଲେ । ଗ୍ରୀଷ୍ମାବକାଶ ପରେ ଫଳ ଘୋଷିତ ହେଲା । ମାତ୍ର ମୋ ବ୍ୟତୀତ ଅନ୍ୟ ତିନିଜଣ ପ୍ରଥମ ଥର ଅକୃତକାର୍ଯ୍ୟ ହେଲେ । ଯେତେବେଳେ ମୋ ନାମଟା କଳାକାଳି ଓ ଧଳା କାଗଜରେ ବାହାରିପଡ଼ିଲା ସେତେବେଳେ ଯେଉଁ ପ୍ରଧାନ ଶିକ୍ଷକ ମୋତେ ସବେତନ ଛୁଟି ମଞ୍ଜୁର କରିନଥିଲେ ପ୍ରଥମେ ଅଭିବାଦନ ଜଣାଇଲେ । ସମସ୍ତଙ୍କ ଆଗରେ ମୁଁ ଦମ୍ଭରେ ବାଟ ଚାଲିଲି । ମୋ ସମ୍ମାନ ବଢ଼ିଲା । ଗୋଟିଏ ଗଡ଼ ତ ଜିଣିଲି । ମୋ ମାସିକ ଦରମା ୪୨ଟଙ୍କାରୁ ୬୦ଟଙ୍କାକୁ ବୃଦ୍ଧି ପାଇଲା । ଶିକ୍ଷକ ହିସାବରେ ମୁଁ କ୍ଷୁଦ୍ର ଆସନଟିଏ ଲାଭ କଲି ।

୧୯୪୬ ମସିହା ନିର୍ବାଚନରେ ଶ୍ରୀଯୁକ୍ତ ବନମାଳୀ ପଟ୍ଟନାୟକ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରୁ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ । ନିୟମ ଅନୁଯାୟୀ ବିଧାୟକ ଖୋର୍ଦ୍ଧା ହାଇସ୍କୁଲର ପରିଚାଳନା ସମିତିର ଜଣେ ସଭ୍ୟପଦରେ ରହିଲେ । ଲୋକପ୍ରତିନିଧି ଶାସନ ଚାଲିଥିଲା । ଭାରତ ସ୍ୱାଧୀନତା ପାଇଲା ପରେ ଲୋକପ୍ରତିନିଧିଙ୍କର କ୍ଷମତାବୃଦ୍ଧି ପାଇଲା । ବାଙ୍କନିଧିବାବୁ କଂଗ୍ରେସ ଆନ୍ଦୋଳନକୁ ସମର୍ଥନ କରୁନଥିଲେ । ତାଙ୍କ ବିରୁଦ୍ଧରେ କେତେକ ଈର୍ଷାପରାୟଣ ଲୋକ ଗୁରୁତର ଅଭିଯୋଗ ବାଢ଼ିଲେ । ବାଙ୍କନିଧିବାବୁ ବହୁ ବର୍ଷ ଏଠାରେ ଅବସ୍ଥାନ କଲେଣି । ଯିଏ ସର୍ବୋଚ୍ଚ ଆସନରେ ରହିବେ ସେ ଯେ ସମସ୍ତଙ୍କର ପ୍ରିୟ ହୋଇପାରିବେ ତାହା ବି ନୁହେଁ । ଲୋକେ ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସ୍ୱାଭାବିକ କଥା । ପ୍ରଧାନ ଶିକ୍ଷକଙ୍କ ବିରୁଦ୍ଧରେ ବହୁଦିନରୁ ପୁଞ୍ଜୀଭୂତ

ହୋଇ ରହିଯାଇଥିବା ଅଭିଯୋଗଗୁଡ଼ିକ ଶୁଣି ବନମାଳୀବାବୁ ତା'ର ପ୍ରତିକାର ନିଶ୍ଚୟ କରିବେ ବୋଲି ଆଶ୍ୱାସନା ଦେଲେ । ତେବେ ପଦକ୍ଷେପଟା କଠୋର ହୋଇଗଲା ପରି ମନେହେଲା । ତାଙ୍କୁ ଷାଠିଏ ବର୍ଷପରେ ଆଉ ଚାକିରିରେ ରଖିବେ ନାହିଁ ବୋଲି ସ୍ଥିର ହୋଇଗଲା । ଏ ତ ଘରୋଇ ଚାକିରି ପୁଣି ବେତନ ସ୍ୱଳ୍ପ । ତାଙ୍କର ଏତେ ଦିନର ସେବାକୁ ପରିଚାଳନା ସମିତି ବିବେଚନା କଲାନାହିଁ । ଏହାହିଁ ମୋତେ ଭୀଷଣ ଆଘାତ ଦେଲା । ଯାହାହେଲେ ବି "ଭାଗ୍ୟ ଫଳତି ସର୍ବତ୍ର, ନ ବିଦ୍ୟା ନ ଚ ପୌରୁଷଃ" । ପ୍ରବଳ ପ୍ରତାପୀ ବାଙ୍କନିଧିବାବୁଙ୍କ ସମୟ ଶେଷହୋଇ ଆସୁଥିଲା । ଇଂରାଜୀ କବି ଟେନିସନଙ୍କର ଗୋଟିଏ ପଦ ମନେ ପଡ଼ିଗଲା –" The old order changeth yielding place to new lest one good custom should corrupt the world."

ମୁଁ ବି.ଏ ପାସ୍ କରିବା ପରେ ବାଙ୍କନିଧିବାବୁ ମୋତେ ସପ୍ତମ ଶ୍ରେଣୀରେ ଇଂରାଜୀ ସାହିତ୍ୟ ଅଧ୍ୟାପନା କରିବାକୁ ଦେଲେ । ସେତେବେଳ ପର୍ଯ୍ୟନ୍ତ ବୋଧହୁଏ ଇଂରାଜୀ ସାହିତ୍ୟରେ ତାଙ୍କର ମୋ ଉପରେ ଭରସା ଆସି ନଥିଲା, ତଥାପି ମୁଁ ତାଙ୍କୁ କିଛି କହିଲି ନାହିଁ କିନ୍ତୁ କର୍ତ୍ତବ୍ୟ ପଥରେ ଅଗ୍ରସର ହେଲି । ମୁଁ ବି.ଏ. ପାସ୍ କରିବାରୁ ମୋ ଗାଁରେ ମୋର ବି ସମ୍ମାନ ବଢ଼ିଲା । ଛଅ ବର୍ଷତଳେ ରାଜକିଶୋର ମହାପାତ୍ର ଆମ ଗାଁର ପ୍ରଥମ ଗ୍ରାଜୁଏଟ୍ ହୋଇଥିଲେ । ମୁଁ ହେଲି ଦ୍ୱିତୀୟ ଗ୍ରାଜୁଏଟ୍ । ମନ ଆନନ୍ଦରେ ଭରିଗଲା । ବନ୍ଧୁପରିଜନ ବି ବାହାବା କଲେ ।

### ଛାତ୍ରାବାସର ଦାୟିତ୍ୱ ଗ୍ରହଣ :

ଏହି ସମୟରେ ଛାତ୍ରାବାସର ଅନ୍ତେବାସୀମାନେ ତତ୍କାଳୀନ ସୁପରିଟେଣ୍ଡେଣ୍ଟଙ୍କ ବିରୁଦ୍ଧରେ କେତେଗୁଡ଼ିଏ ଅଭିଯୋଗ କରିବା ସଙ୍ଗେ ସଙ୍ଗେ ହଙ୍ଗର ଷ୍ଟ୍ରାଇକ (ଅନଶନ ଧର୍ମଘଟ) କଲେ । ଏଥିରେ କର୍ତ୍ତୃପକ୍ଷ ବିଚଳିତ ହେବା ସ୍ୱାଭାବିକ କଥା । ଖୋର୍ଦ୍ଧା ହାଇସ୍କୁଲ ଛାତ୍ରାବାସ ଏକ ବିରାଟ ମନୋରମ ସୌଧ । ଏହା ଲାଲ ମାଙ୍କଡ଼ା ପଥରରେ ନିର୍ମିତ । ଏପରି ଛାତ୍ରାବାସ ଓଡ଼ିଶାର ଅନ୍ୟ କୌଣସି ହାଇସ୍କୁଲରେ ଦୃଷ୍ଟିଗୋଚର ହୁଏନାହିଁ । ଏଠାରେ ହିନ୍ଦୁ ମୁସଲମାନ ମିଶି ପ୍ରାୟ ଏକଶତ ଛାତ୍ର ଅବସ୍ଥାନ କରନ୍ତି । ତିନିଗୋଟି ମେସ ଚାଲୁଥିଲା । ଚାକର ପୂଜାରୀ ମିଶି ପାଞ୍ଚଜଣ ଥିଲେ । ସ୍ଥାନୀୟ ସବ୍‌ଡ଼ଭିଜନାଲ ବଡ଼ ଡାକ୍ତର ଅନ୍ତେବାସୀଙ୍କର ସ୍ୱାସ୍ଥ୍ୟର ଯତ୍ନ ନେଉଥିଲେ । ଅନ୍ତେବାସୀଙ୍କର ଅଭିଯୋଗର ସତ୍ୟତା ପ୍ରମାଣିତ ହେବାରୁ ପ୍ରଧାନ ଶିକ୍ଷକ ପରିଚାଳକଙ୍କୁ

ଅନ୍ତର କଲେ । ଜଣେ ଦକ୍ଷ ବ୍ୟକ୍ତିଙ୍କୁ ଅନ୍ୱେଷଣ କରାଗଲା । କୌଣସି ଶିକ୍ଷକ ଛାତ୍ରାବାସ ଝମେଲାରେ ସଂଶ୍ଳିଷ୍ଟ ହେବାକୁ ଚାହୁଁନଥିଲେ । ସେ ଜଣେ ଦକ୍ଷ ଶିକ୍ଷକ ହୋଇଥିବେ ଏବଂ ଛାତ୍ରାବାସ ଚଳାଇବାକୁ ତାଙ୍କର ଦୃଢ଼ ଶୃଙ୍ଖଳାଜ୍ଞାନ ଥିବ । ବାଙ୍କନିଧିବାବୁ ମୋ କାର୍ଯ୍ୟକଳାପ ନିରୀକ୍ଷଣ କରିଥିଲେ କିନ୍ତୁ ମୁଁ ତାଙ୍କର ସମସ୍ତ କାର୍ଯ୍ୟକୁ ପୂରାପୂରି ସମର୍ଥନ କରୁନଥିବାରୁ ସେ ମୋ ନାମ ଉଠାଇ ନଥିଲେ । ବନମାଳୀବାବୁଙ୍କର ଦୃଷ୍ଟି ମୋ ଉପରେ ଥିଲା । ତେଣୁ ସେ ଚାପ ପକାଇଲେ । ଶେଷରେ ୧୯୪୮ ମସିହା ଜୁଲାଇମାସରେ ପ୍ରଧାନ ଶିକ୍ଷକଙ୍କ ଅନିଚ୍ଛା ସତ୍ତ୍ୱେ ପରିଚାଳନା କମିଟିର ନିଷ୍ପତ୍ତିକୁ ସମ୍ମାନ ଦେଖାଇ ବିରାଟ ଛାତ୍ରାବାସର ଦାୟିତ୍ୱ ବହନ କଲି । ଏହା ଏକ ଗୁରୁଦାୟିତ୍ୱ, କିନ୍ତୁ ହଟିଯିବାର ପାତ୍ର ମୁଁ ନଥିଲି ।

ସ୍କୁଲ ପ୍ରତିଷ୍ଠା ସମୟପରେ ଗୁପ୍ତା ସାହେବ ଖୋର୍ଦ୍ଧାର ଏସ୍.ଡି.ଓ. ହୋଇ ଆସିଥିଲେ । ତାଙ୍କର ନାମାନୁସାରେ ଛାତ୍ରାବାସର ନାମ ଗୁପ୍ତା ବୋଡ଼ିଂ ରଖାଯାଇଥିଲା । ୧୯୩୫ ମସିହାରେ ପଞ୍ଚମ ଜର୍ଜଙ୍କ ଜୁବୁଲି ବର୍ଷ ଯେଉଁ ନୂତନ ଛାତ୍ରାବାସ ନିର୍ମାଣ କରାଗଲା ତା'ର ନାମ ଜୁବୁଲି ହଷ୍ଟେଲ ରଖାଗଲା । ଛାତ୍ରାବାସରେ ସବୁ ଶ୍ରେଣୀର ପିଲା ଅବସ୍ଥାନ କରିପାରୁନଥିଲେ । ହିନ୍ଦୁମାନଙ୍କ ଭିତରେ ଜାତିଭେଦ ପ୍ରଥା କଠୋର ଥିଲା । ଛାତ୍ରାବାସରେ ମୁସଲମାନ ଖ୍ରୀଷ୍ଟିଆନ୍ ପିଲା ରହୁଥିଲେ ମଧ ହାଡ଼ି, ବାଉରି, କଣ୍ଡରା ପ୍ରଭୃତି ନୀଚ ହିନ୍ଦୁମାନେ ରହିପାରୁ ନଥିଲେ । ଉଚ୍ଚ ହିନ୍ଦୁ ପିଲା ସେ ପିଲାକୁ ଛୁଉଁ ନଥିଲେ । ମୁଁ ସ୍ୱଭାବତଃ କଂଗ୍ରେସ ନୀତି ଦ୍ୱାରା ଉଦ୍‌ବୁଦ୍ଧ ଥିଲି । ଅନ୍ତେବାସୀମାନଙ୍କ ମଧରେ ଭ୍ରାତୃତ୍ୱ ସୃଷ୍ଟି କରିବା ପାଇଁ ବଦ୍ଧପରିକର ହେଲି । ଦେଶପ୍ରୀତି ଜାଗ୍ରତ କରାଇଲି । ଏତେବେଳକୁ ଦେଶ ସ୍ୱାଧୀନତା ପାଇଲାଣି । ଦେଶରେ ନୂଆ ଉନ୍ମାଦନା ସୃଷ୍ଟି ହୋଇଥାଏ । ସ୍ୱାଧୀନତାର ସ୍ୱାଦ ଆଚାଣ୍ଡାଳ ବ୍ରାହ୍ମଣ ଆସ୍ୱାଦନ କରିବା ପାଇଁ କଂଗ୍ରେସ ସରକାର କେତେଗୁଡ଼ିଏ କାମ ହାତକୁ ନେଇଥିଲେ । ମୁଁ ଥିଲି କଂଗ୍ରେସର ଜଣେ ସଚ୍ଚା ସୈନିକ । ସେତେବେଳେ ଜଟଣୀ କୁସୁମାଟିରେ ଦୁଇଟି କଣ୍ଡରା ପିଲା ଖୋର୍ଦ୍ଧା ହାଇସ୍କୁଲରେ ଅଧ୍ୟୟନ କରୁଥଲେ । ସେ ଦୁଇଜଣ ନିକଟରେ ଏକ ଭଡ଼ାଗୃହରେ ରହୁଥିଲେ, ହାତରେ ରୋଷେଇ କରି ଖାଉଥିଲେ, ହଇରାଣ ବି ହେଉଥିଲେ । ସେମାନଙ୍କ ମନୋଭାବକୁ ଠଉରେଇ ସେଠାରୁ ଆଣି ଛାତ୍ରାବାସରେ ରଖାଇଲି । ସେମାନଙ୍କ ଆନନ୍ଦ କହିଲେ ନସରେ । ଭାଇନାଙ୍କ ଆଡୁ ସାମାନ୍ୟ ପ୍ରତିବାଦ ହେଲା । ମାତ୍ର ଅନ୍ୟ ପିଲାମାନେ ଭ୍ରାତୃଦ୍ୱୟଙ୍କୁ ସାଦରେ ଗ୍ରହଣକଲେ । ଅନ୍ତେବାସୀଙ୍କ ପ୍ରତି ମୋର ଅନ୍ତର ଭିତରେ

ସ୍ନେହଭାବ ରହିଥିଲେ ମଧ ବାହାରେ କଠୋର ଶାସନ କରୁଥିଲି । ତେଣୁ ନୀତିନିଷ୍ଠ ଭାବେ ଚଳିବାକୁ ପଡ଼ିଲା ।

**ହାଇକୋର୍ଟ ପ୍ରତିଷ୍ଠା :**

୧୯୪୮ ମସିହା ଜୁଲାଇ ୨୬ତାରିଖରେ କଟକରେ ହାଇକୋର୍ଟ ସ୍ଥାପିତ ହେଲା । ପ୍ରଥମ ମୁଖ୍ୟ ବିଚାରପତି ହେଲେ ମାନ୍ୟବର ବୀରକିଶୋର ରାୟ । ସେତେବେଳେ ଓଡ଼ିଶାର ଗଭର୍ଣ୍ଣର ଥିଲେ ଆସଫ ଅଲ୍ଲୀ । ପ୍ରଧାନମନ୍ତ୍ରୀ/ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀ ହରେକୃଷ୍ଣ ମହତାବ । ଗୋଟିଏ କଥା ଅଛି– କଅଁଳ ଲୁହାକୁ ବିରାଡ଼ି କାମୁଡ଼େ । ମୁଁ ଯଦି ଆଦ୍ୟରୁ ନରମ ମନୋଭାବ ପ୍ରଦର୍ଶନ କରିଥାନ୍ତି ତେବେ ଏତେଦିନ ଛାତ୍ରାବାସରେ ଗାଦିମାଡ଼ି ବସିପାରି ନଥାନ୍ତି ।

**ତାଳଚେର କୋଇଲା ଖଣି ପରିଦର୍ଶନ :**

୧୯୪୮ ଅକ୍ଟୋବର ମାସ ପୂଜାଛୁଟିରେ ବରିଷ୍ଠ ଶିକ୍ଷକ ବାବୁ ଜଗଦାନନ୍ଦ ମହାନ୍ତିଙ୍କ ସହିତ ପ୍ରାୟ ତିରିଶ ଜଣ ଛାତ୍ରଙ୍କୁ ନେଇ ତାଳଚେର କୋଇଲା ଖଣି ପରିଦର୍ଶନ ନିମନ୍ତେ ଯାତ୍ରାକଲୁ । ତାଳଚେର ସହରଭିତରକୁ ପ୍ରବେଶ ପଥଟିଏ ଥିଲା । ସେହି ଗେଟ୍ ଦେଇ ସହର ଭିତରକୁ ଯାତ୍ରାକଲୁ । ପ୍ରତ୍ୟେକ ଗୃହର ସମସ୍ତ ଦାଣ୍ଡଦୁଆରେ ବାଉଁଶରେ ବୁଣା ହୋଇଥିବା ଗୋଟିଏ ଗୋଟିଏ ପରଦା ଝୁଲା ହୋଇଥିବାର ଦେଖାଗଲା । ପଚାରି ବୁଝିଲି ରାଜା ଏବାଟେ ବିଜେ କଲାବେଳେ କୌଣସି ବ୍ୟକ୍ତି ଦାଣ୍ଡଦୁଆରେ ଉପବେଶନ କରି ଆଳାପ ଆଲୋଚନା କରିପାରିବେ ନାହିଁ କିମ୍ବା ପିଣ୍ଡାତଳକୁ ଗୋଡ଼ଲମ୍ବାଇ ବସିପାରିବେ ନାହିଁ । ଏପରି ଆଇନ ଗଡ଼ଜାତରେ ସମ୍ଭବ ହୋଇପାରେ ।

ସେ ସମୟକୁ ରାଜାମାନଙ୍କ ହାତରୁ ସମସ୍ତ କ୍ଷମତା ଗଲାଣି । ସେଦିନ ରାତ୍ରିରେ ଆମ୍ଭେମାନେ ତାଳଚେର ହାଇସ୍କୁଲରେ ବିଶ୍ରାମ ନେଇ ପରଦିନ ପ୍ରତ୍ୟୁଷରେ ନିତ୍ୟକର୍ମ ସମାପନ କରି ରାଜାଙ୍କୁ ସାକ୍ଷାତ କରିବା ପାଇଁ ରାଜଭବନକୁ ଯାତ୍ରାକଲୁ । ରାଜା ଉଦାରଭାବାପନ୍ନ ବ୍ୟକ୍ତି । ସେ ଆମ୍ଭମାନଙ୍କୁ ତାଙ୍କ ଗହଣରେ ପାଇ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ତାଙ୍କ ହାତରୁ ସମସ୍ତ କ୍ଷମତା ଗଲାଣି ବୋଲି କ୍ଷୋଭକଲେ । ଆମ୍ଭେମାନେ ଖୋର୍ଦ୍ଧା ହାଇସ୍କୁଲରୁ ଯାଇଛୁ ବୋଲି ଶୁଣି ସମ୍ବର୍ଦ୍ଧନା ନକରିପାରି ଦୁଃଖପ୍ରକାଶ କଲେ । ତଥାପି ତାଙ୍କ ଗାଡ଼ିରେ ଶିକ୍ଷକ ଦ୍ୱୟଙ୍କୁ ବସାଇ ପ୍ରସିଦ୍ଧ ରାଣୀ ପାର୍କ ବୁଲାଇଲେ, ପିଲାମାନଙ୍କ ପାଇଁ ଅନ୍ୟ ବ୍ୟବସ୍ଥା ବି କଲେ । ତାଙ୍କର ମାନବୋଚିତ ବ୍ୟବହାର ଆମ୍ଭମାନଙ୍କ ହୃଦୟକୁ ସ୍ପର୍ଶ କଲା । ସେ ସ୍ଥାନରୁ ପ୍ରତ୍ୟାବର୍ତ୍ତନ କରି ଆମ୍ଭେମାନେ କୋଇଲା ଖଣିକୁ ଗଲୁ । ରାସ୍ତାର

ଉଭୟ ପାର୍ଶ୍ୱରେ ପଡ଼ିରହିଥିବା ସୁନ୍ଦର ସୁନ୍ଦର ପଥର ଖଣ୍ଡଗୁଡ଼ିକୁ ବିଜ୍ଞାନ ଭବନ ପାଇଁ ସଂଗ୍ରହ କଲୁ । ତତ୍ପରେ କୋଇଲା ଖଣିର ପରିଚାଳକଙ୍କ ଅନୁମତି ନେଇ ପ୍ରବେଶ କଲୁ । ବାର ବର୍ଷରୁ କମ୍ ପିଲାମାନେ ଭିତରକୁ ପ୍ରବେଶ ଅଧିକାର ପାଇଲେ ନାହିଁ । ଯାହାହେଉ ଖଣିଜ ସଂବନ୍ଧରେ କିଛି ଜ୍ଞାନ ହାସଲ କରି ଦୁଇ ତିନି ଦିନ ପରେ ଖୋର୍ଦ୍ଧାକୁ ପ୍ରତ୍ୟାଗମନ କଲୁ । ପୂଜା ଅବକାଶ ପରେ ପୁନଃ ନିତ୍ୟନୈମିତ୍ତିକ ଜୀବନରେ ମନୋନିବେଶ କଲି । ଜୀବନ ତ ସଂଘର୍ଷପୂର୍ଣ୍ଣ । ସଂଘର୍ଷପୂର୍ଣ୍ଣ ଜୀବନ ହେଉଛି ପ୍ରକୃତ ଜୀବନ । ଯେଉଁଠାରେ ସଂଘର୍ଷ ନାହିଁ ସେଠାରେ ଜୀବନର ମାଦକତା ନାହିଁ । ସାରା ଜୀବନ କଟିଗଲା ସଂଘର୍ଷରେ, କର୍ତ୍ତବ୍ୟ କରି କରି ।

ପୁନଃ ବିଦ୍ୟାଳୟ କାର୍ଯ୍ୟ ଓ ଛାତ୍ରାବାସ ପରିଚାଳନାରେ ନିଜକୁ ନିୟୋଜିତ କଲି । ବିଦ୍ୟାଳୟ ପ୍ରେସିଡେଣ୍ଟ ଥିଲେ ଖୋରଧା ଏସ୍.ଡି.ଓ. ବର୍ଣ୍ଣି ସାହେବ । ପରବର୍ତ୍ତୀକାଳରେ ସେ ହରିଆନାର ରାଜ୍ୟପାଳ ହୋଇଥିଲେ । ଶରଧାପୁରର ଅସରଫ ଅଲ୍ଲୀ ଜଣେ ସଭ୍ୟ । ବନମାଳୀବାବୁ ଯେହେତୁ କଂଗ୍ରେସ କର୍ମୀ ତାଙ୍କର ପ୍ରଭାବ ବେଶିଥିଲା । ଅନ୍ୟ ସଭ୍ୟମାନେ ତାଙ୍କ ମତକୁ ଖାତିର କରନ୍ତି । ସଭାରେ ସ୍ଥିରହେଲା ବାଙ୍କନିଧିବାବୁ ଠିକ୍ ବୟସରେ ୬୦ ବର୍ଷରେ ବିଦାୟ ନେବେ । କିନ୍ତୁ ଏହି ସମୟରେ ଗୋଟିଏ ଘଟଣା ବାଙ୍କନିଧିବାବୁଙ୍କ ଅବସରକୁ ତ୍ୱରାନ୍ୱିତ କଲା । ଏକାଦଶ ଟେଷ୍ଟ ପରୀକ୍ଷାରେ କିଛି ବିଭ୍ରାଟ ଘଟିଲା । ନୀଳମଣିବାବୁ ପ୍ରଧାନ ଶିକ୍ଷକ ପଦ ପାଇବା ପାଇଁ ବ୍ୟାକୁଳ ହେଲେ । ଉଭୟଙ୍କ ମଧ୍ୟରେ ଟେଷ୍ଟ ପରୀକ୍ଷା ହେତୁ ଯେଉଁ ଝଗଡ଼ା ହେଲା ତାହା ଉଭୟଙ୍କର ମୃତ୍ୟୁ ଘଣ୍ଟି ବଜାଇଲା ।

**ଛାତ୍ରାବାସରେ ଏକ ଅଘଟଣ :**

୧୯୪୯ ମସିହା, ତାଲିମପ୍ରାପ୍ତ ଶିକ୍ଷକ ହେବାକୁ ଇଚ୍ଛା ପ୍ରକାଶ କଲି । ମୁଁ ଟ୍ରେନିଂ କଲେଜରେ ଜୁଲାଇ ମାସରେ ଯୋଗଦେବି ବୋଲି ସ୍ଥିର କଲି । ମୁଁ ଛାତ୍ରାବାସ ଦାୟିତ୍ୱରେ ଥିଲି । ୧୯୪୯ ଗ୍ରୀଷ୍ମ ଛୁଟିରେ ଏକ ଅଘଟଣ ଘଟିଲା । ଛାତ୍ରାବାସର ଅଫିସଗୃହରେ ହଣ୍ଡା, ହାଣ୍ଡି, ବାଲ୍ଟି, ବାସନକୁସନ, ଚାଉଳବସ୍ତା ଇତ୍ୟାଦି ରଖାଯାଇଥିଲା । ମାତ୍ର ଏସବୁ ସେହିପରି ଅତୁଟ ଥିବା ସତ୍ତ୍ୱେ ତାଲା ଫିଟାଯାଇ କେତେକ ପୋଷ୍ଟାଲ ପାସବୁକ ଚୋରି ହୋଇଗଲା । ଏ ତ ବଡ଼ ବିଚିତ୍ର ଚୋରି । ମୁଁ ଛୁଟି ମଧ୍ୟରେ ସମୟେ ସମୟେ ଆସି ଛାତ୍ରାବାସ ବୁଲିଯାଏ । ମାତ୍ର ଗଢ ଚାରିଦିନ ଆସିପାରିଲି ନାହିଁ । ଗଢ ପରଦିନ ଏ ସବୁ ଜାଣି ମନକୁମନ ପ୍ରଶ୍ନ କଲି–''ଚୋର ମୂଲ୍ୟବାନ ଜିନିଷ

ଛାଡ଼ି ପାସ୍‌ବୁକ୍‌ଗୁଡ଼ିକ କାହିଁକି ଚୋରିକଲା ?'' ମନରେ ନାନା ଚିନ୍ତା ଚେଇଁ ଉଠିଲା । ଛାତ୍ରାବାସରେ ମୋ ନିଯୁକ୍ତିରେ ବାଙ୍କନିଧିବାବୁ ସନ୍ତୁଷ୍ଟ ନଥିଲେ । ମୁଁ ଏ ବର୍ଷ ଟ୍ରେନିଂ କଲେଜକୁ ଯିବି ଜାଣି ସେ କ'ଣ ମୋତେ ହଇରାଣରେ ପକେଇବାକୁ ଚେଷ୍ଟାକଲେ ? ମୁଁ କେସ୍‌ରେ ପଡ଼ିଗଲେ ଟ୍ରେନିଂ ପାଇଁ ଆଉ ଯାଇପାରିବି ନାହିଁ । ବିବ୍ରତ ହୋଇ ପଡ଼ିଲି । ବନମାଳୀବାବୁଙ୍କ କାନରେ ଏ କଥା ପକାଇଲି । ସେ ଉପଦେଶ ଦେଲେ 'ପୋଲିସକୁ ଜଣାଅ' । ଏସବୁ ବଡ଼ ଅଡୁଆ କଥା । ପୋଲିସ ଦାଉରେ ଘାଣ୍ଟି ହେବାକୁ ପଡ଼ିବ । ତେବେ ବୋଧହୁଏ ଟ୍ରେନିଂ ପାଇବାକୁ ଯିବା ଅସମ୍ଭବ । ମୁଁ ନିଜେ ଅନୁସନ୍ଧାନ କରୁଥାଏ । ଦେଖିଲି ଅଫସିଗୃହର ତାଲା ନାହିଁ । ଏହା ଯାଇ ବିଦ୍ୟାଳୟର ଏକ କୋଠରିରେ ପଡ଼ିଛି । ଏହା କିପରି ସମ୍ଭବ ହେଲା ? ମୋର ମନେହେଲା ଏଥିରେ ଜଣେ କେହି ଶିକ୍ଷକ ସଂଶ୍ଳିଷ୍ଟ ଥାଇପାଇନ୍ତି । ତେବେ ପ୍ରଧାନଶିକ୍ଷକଙ୍କୁ ଯେତେବେଳେ ଏସବୁ କଥା ଲେଖିକରି ଜଣାଇଲି, ସେ ତାଙ୍କ ଓକିଲାତି ବୁଦ୍ଧି ବାହାର କରି କହିଲେ, ''ନାଗସାପଟାଏ ହତା ଭିତରକୁ ପଶିଯାଇଥିଲା । ସାପକୁ ମାରିବା ପାଇଁ ପିଲାମାନେ ପଶିଥିଲେ ।'' ତାଙ୍କ ଛୋଟା ପୁଅ ମଣ୍ଟୁ ଏଥିରେ ସଂପୃକ୍ତ ଥିଲା । ସ୍କୁଲ ତାଲା ଏଠାରେ ଏଠା ତାଲା ସ୍କୁଲରେ ପଡ଼ିଛି ବୋଲି ଅବଶ୍ୟ ମାନିଲେ, କିନ୍ତୁ ଏହାର ସମାଧାନ ବିଷୟ ଚିନ୍ତା କଲେ ନାହିଁ ।

ପ୍ରଧାନ ଶିକ୍ଷକଙ୍କ ଆଗେ ମୁଁ ସାମାନ୍ୟ ବାଳକ, ସେ ମୋତେ ମୁରଲୀ ବୋଲି ସମ୍ବୋଧନ କରନ୍ତି । ମୁଁ ସେଥିରେ ଆନନ୍ଦ ପାଏ । କିନ୍ତୁ ତାଙ୍କ ପେଟ ଭିତରେ ଏତେ ମଇଳା ଥିଲା ବୋଲି ମୁଁ କ'ଣ ଜାଣିଥିଲି ? ଏସବୁ ବିଷୟ ବର୍ଣ୍ଣନା କଲେ ଗୋଟିଏ ବିରାଟ ପୋଥି ହେବ । ତେବେ ''ବିନାଶ କାଳେ ବିପରୀତ ବୁଦ୍ଧି'' ।

ତେବେ ମୁଁ ତ ପୁଣି ତାଲିମ ପାଇବାକୁ ଯିବି ? ଖୋର୍ଦ୍ଧା ଥାନାରେ ସବ୍‌ଇନସପେକ୍ଟର ବାବୁ ତ୍ରିଲୋଚନ ଦଳବେହେରା ଥାଆନ୍ତି । ତାଙ୍କୁ ଜଣାଇଲି । ସେ ତନ୍ନତନ୍ନ କରି ଅନୁସନ୍ଧାନ କଲେ । ଶୀଘ୍ର ରିପୋର୍ଟ ପ୍ରଦାନ କଲେ । ଲେଖିଲେ ''ପ୍ରଧାନ ଶିକ୍ଷକଙ୍କ ଜ୍ଞାତସାରରେ ଏହି ଘଟିଛି ।'' ତାଙ୍କ ରିପୋର୍ଟଟା ମୁଁ କ'ଣ ଏକା ଜାଣିଲି ? ଏକଥା ସମସ୍ତେ ଜାଣିଲେ । ମୁଁ ଗୋଟିଏ ବିପଦରୁ ରକ୍ଷା ପାଇଗଲି । ପଢ଼ିବାକୁ ଯିବାର ପଥ ସୁଗମ ହୋଇଗଲା । ଉତ୍କଳର ଜାତୀୟତାର ପିତା ମଧୁବାବୁ ସର୍ବଦା ଉଚ୍ଚାରଣ କରନ୍ତ–''ଆଲୋ ସଖୀ ଅପଣା ମହତ ଆପେ ରଖି ।'' ମୋତେ ମାରିଦେବା ଗୋଟିଏ ମାଛି ମାରିବା ସଙ୍ଗେ ସମାନ । ପ୍ରଧାନ ଶିକ୍ଷକ ତାଙ୍କ ଜୀବନର ସାୟାହ୍ନରେ ଏପରି

ଆଚରଣ କଲେ କାହିଁକି ? ତାଙ୍କର କ'ଣ ମତିଭ୍ରମ ଘଟିଲା ? କେସ୍‌ରେ ପଡ଼ି ଲଟର ପଟର ହେଲେ ମୁଁ ବି.ଇଡି. ପଢ଼ିବାକୁ ଯାଇ ପାରିବି ନାହିଁ ବୋଲି ସେ କ'ଣ ଭାବିଥିଲେ ? ''ନରମାୟା ନାରାୟଣଙ୍କୁ ଅଗୋଚର'', ''କେ ଅବା ଅଛି କେଉଁ ମତେ ତାହା ମୁଁ ଜାଣିବି କେମନ୍ତେ ।'' ମୁଁ ବେଶି ବୟସରେ ପାଠ ପଢ଼ିଥିଲି, ସେହି ଅନୁଯାୟୀ ଡେରିରେ ମୋର ବୁଦ୍ଧିହେଲା । ବୁଦ୍ଧିରେ ଚତୁରତା ନଥିଲା । ସରଳ ସ୍ୱଭାବ ବହୁ ସମୟରେ ବିପଦ-ଗ୍ରସ୍ତ କରାଏ । ତେବେ–

''ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ।''

ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ୧୯୪୬ ମସିହାରୁ (୧୯୩୫ ଖସଡ଼ା ଅନୁଯାୟୀ) ଓଡ଼ିଶାର ପ୍ରଧାନମନ୍ତ୍ରୀ ଆସନ ଅଳଂକୃତ କଲେ । ଶିକ୍ଷାବିଭାଗର ମନ୍ତ୍ରୀ ଥାନ୍ତି ପଣ୍ଡିତ ଲିଙ୍ଗରାଜ ମିଶ୍ର । ଏତିକିବେଳେ ସରକାରୀ ଶିକ୍ଷକମାନଙ୍କର ମାସିକ ବେତନ ସ୍ଥିରକଲେ । ବି.ଏ.ଡି.ଇଡି. ସରକାରୀ ଶିକ୍ଷକ ଦରମା ସ୍ଥିର ହେଲା ଶହେ କୋଡ଼ିଏ ଟଙ୍କାରୁ ଦୁଇ ଶହ ପଚାଶ ଟଙ୍କା ଓ ବେସରକାରୀ ଶିକ୍ଷକର ଶହେରୁ ଦୁଇଶହ ଦଶ ଟଙ୍କା । ଏହି ନିୟମ ଅନୁଯାୟୀ ଅନ୍ୟ କର୍ମଚାରୀମାନଙ୍କ ବେତନ ସ୍ଥିରହେଲା । ପୂର୍ବରୁ କୌଣସି ବେତନ ହାର ନଥିଲା । ତେଣୁ ଶିକ୍ଷକ ମହଲରେ ଆନନ୍ଦର ଜୁଆର ଖେଳିଗଲା । ଏ ବର୍ଷ ଟ୍ରେନିଂ କଲେଜରେ ମାସିକ ଷ୍ଟାଇପେଣ୍ଡ ପଚିଶରୁ ଚାଳିଶ ଟଙ୍କାକୁ ବୃଦ୍ଧି ପାଇଲା । ତେଣୁ ଟ୍ରେନିଂ ପାଇବାକୁ ଯିବାକୁ ମୁଁ ତତ୍ପର ହୋଇ ଉଠିଲି ।

**ଶିକ୍ଷା ତାଲିମ କାଳ :**

ସେ ବର୍ଷ ସମସ୍ତ ଜଞ୍ଜାଳରୁ ମୁକ୍ତହୋଇ ଓଡ଼ିଶାର ଏକମାତ୍ର ଟ୍ରେନିଂ କଲେଜ ରାଧାନାଥ ଟ୍ରେନିଂ କଲେଜରେ ଜୁଲାଇ ବାର ତାରିଖରେ ଯୋଗଦେଲି । ବି.ଏ. ପାସ୍ ହୋଇଗଲେ କେବଳ ହୁଏ ନାହିଁ । ଉପଯୁକ୍ତ ତାଲିମ ନ ପାଇଲେ ତୁମେ ଶିକ୍ଷାବିଭାଗ ପ୍ରତି ଉପଯୁକ୍ତ ଯୋଗ୍ୟତାସଂପନ୍ନ ଶିକ୍ଷକ ହୋଇପାରିବ ନାହିଁ । ଯଦି ଶିକ୍ଷକ ହେବାର ଇଚ୍ଛା ତେବେ ତାଲିମପାଇବାକୁ ପଡ଼ିବ । ଖୋର୍ଦ୍ଧା ହାଇସ୍କୁଲରୁ ଦଶ ମାସ ଅବୈତନିକ ଛୁଟିନେଇ ଚାଲିଲି କଟକ । ନବବଧୂକୁ ଗାଁରେ ଛାଡ଼ିଦେଇଗଲି । ଗୃହରେ ଭାଇ-ଭାଉଜ, ମା' ଥାଆନ୍ତି । କହିଦେଇ ଯାଇଥାଏ । ଏଣୁ ଚିଠି ଖଣ୍ଡିଏ ପାଇଲେ ଅଧକ୍ଷ ବୈଦ୍ୟନାଥ ବାବୁଙ୍କୁ ଦେଖାଇ ଛୁଟିନେଇ ଆସିପାରିବି । ନବବଧୂର ମନ ଖୁସି କରିବା ପାଇଁ ଏହା ଏକ ପନ୍ଥା ।

## ଟ୍ରେନିଂ କଲେଜର ଜୀବନବୃତ୍ତାନ୍ତ :

ସେତେବେଳେ ସ୍କୁଲରୁ ଛୁଟି ତ ମିଳିଲା ନାହିଁ, ତେବେ ଯେକୌଣସି ପ୍ରକାରେ ଯୋଗ୍ୟତା ହାସଲ କରିବାକୁ ହେବ । ଏହି ଅବସରରେ ଓଡ଼ିଶାରେ ତାଲିମ ପ୍ରତିଷ୍ଠାନର ଇତିହାସ ଟିକିଏ ଲେଖୁଛି । କ୍ଷୁଦ୍ର ବୀଜରୁ ବିରାଟ ବଟବୃକ୍ଷର ଉଦ୍ଭବ ହେଲା ଭଳି କଟକର ଏକ ଭର୍ଣ୍ଣାକୁଲାର ଟ୍ରେନିଂ ଅନୁଷ୍ଠାନରୁ ରାଧାନାଥ ଟ୍ରେନିଂ କଲେଜ ଜନ୍ମଲାଭ କଲା । ୧୮୬୯ ମସିହାରେ କଟକରେ ଏହି ଟ୍ରେନିଂ ଅନୁଷ୍ଠାନ ଗଢ଼ାଯାଇଥିଲା । ୧୮୫୩-୫୪ ମସିହାର ଚାର୍ଲସଉଡ୍ ଡେସପ୍ୟାଚର ସୁପାରିଶ ଅନୁଯାୟୀ ଭର୍ଣ୍ଣାକୁଲାର ସ୍କୁଲର ପଣ୍ଡିତମାନଙ୍କୁ ତାଲିମ ଦେବାପାଇଁ ଯେଉଁ ଅନୁଷ୍ଠାନଟି ଗଠନ କରାଗଲା ତା'ର ନାମ ଥିଲା ନର୍ମାଲ କ୍ଲାସ । ୧୮୬୯ ମସିହାରେ ମି.ଷ୍ଟାନଲେ ଡେସପ୍ୟାଚ ଅନୁଯାୟୀ ସେହି ନର୍ମାଲ କ୍ଲାସ ନର୍ମାଲ ସ୍କୁଲରେ ପରିଣତ ହେଲା । ସେତେବେଳେ ଏହି ପ୍ରଶିକ୍ଷଣ କେନ୍ଦ୍ର ଦୁଇ ପର୍ଯ୍ୟାୟରେ ବିଭକ୍ତ ଥିଲା । ଗୁରୁଛାତ୍ରଙ୍କର ପ୍ରଶିକ୍ଷଣ ସମୟ ଏକ ବର୍ଷ ଓ ପଣ୍ଡିତ ତାଲିମର ସମୟ ଥିଲା ତିନି ବର୍ଷ । ପୁନଃ ସାର୍ ଜର୍ଜ କ୍ୟାମ୍ବେଲଙ୍କ ଯୋଜନା ଅନୁଯାୟୀ ୧୮୭୫ ମସିହାରେ ଏହି କଟକ ନର୍ମାଲ ସ୍କୁଲ କଟକ ଟ୍ରେନିଂ ସ୍କୁଲରେ ରୂପାନ୍ତରିତ ହେଲା । ସେତେବେଳେ ମୁଖ୍ୟତଃ ଓଡ଼ିଶା ଭର୍ଣ୍ଣାକୁଲାର ସ୍କୁଲପାଇଁ ପଣ୍ଡିତ ବା ଶିକ୍ଷକମାନଙ୍କୁ ତାଲିମ ଦେଉଥିଲେ । ପାଠପଢ଼ା ଯେତିକି କଠିନ ଥିଲା ସେଥିରୁ ଉତ୍ତୀର୍ଣ୍ଣ ତାଲିମପ୍ରାପ୍ତ ଶିକ୍ଷକମାନେ ସେତିକି କଡ଼ା ଶୃଙ୍ଖଳାରକ୍ଷକ ଥିଲେ ।

୧୯୧୩ ମସିହା ବିହାର-ଓଡ଼ିଶା ସରକାରଙ୍କ ସୁପାରିଶ ଅନୁଯାୟୀ ୧୯୨୩ ମସିହାରେ କଟକରେ ଟ୍ରେନିଂ କଲେଜ ସ୍ଥାପିତ ହେଲା ଏବଂ ଏମ୍.ଭି. ଟ୍ରେନିଂ କେନ୍ଦ୍ର କଟକ ସେକେଣ୍ଡାରୀ ଟ୍ରେନିଂ ସ୍କୁଲରେ ପରିଣତ ହେଲା । ଟ୍ରେନିଂ କଲେଜ ଲାଇସେନସିଏଟ କୋଚିଙ୍ଗ ଦେବାର ଅଧିକାର ପାଇଲା । ତେଣୁ ବି.ଏ. ପିଲା ଏଲ.ଟି.ଟ୍ରେନିଂ ପାଇ ହାଇସ୍କୁଲମାନଙ୍କରେ ଶିକ୍ଷକ ହେଲେ । ପ୍ରଥମେ ୨୮ଟି ଷ୍ଟାଇପେଣ୍ଡାରି ସିଟ୍ ସହ କଲେଜ ଖୋଲିଲା ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ । କଲିଜିଏଟ ସ୍କୁଲ ଏହାର ପ୍ରାକ୍ଟିସିଙ୍ଗ ସ୍କୁଲ ହେଲା । ୧୯୨୬ ମସିହାରେ ଏହି ଏଲ.ଟି. କୋର୍ସ ଡି.ଇଡି.ରେ ପରିଣତ ହେଲା । ୧୯୩୧ ମସିହାରେ କାଠଯୋଡ଼ି କୂଳେ କଲେଜ ହଷ୍ଟେଲ ପାଇଁ ଏକ ବିରାଟ ସୌଧ ନିର୍ମାଣ କରାଗଲା ଏବଂ ୧୯୪୮ ମସିହାରେ ସ୍ୱାଧୀନତାପରେ ଓଡ଼ିଶାର ଜାତୀୟ କବି ରାଧାନାଥ ରାୟଙ୍କ ନାମାନୁସାରେ ଏହା ନାମିତ ହେଲା । ପୂର୍ବରୁ ରେଭେନ୍ସା କଲେଜିଏଟ ସ୍କୁଲ ହତା ମଧ୍ୟରେ କଲେଜ ଚାଲିଥିଲା । ୧୯୪୮ରେ ଓଡ଼ିଶା ହାଇକୋର୍ଟ

କଟକରେ ସ୍ଥାପିତ ହେବାରୁ ଟ୍ରେନିଂ କଲେଜ ସିଟି ସ୍କୁଲ ପରିସରକୁ ଗଲା । ଟ୍ରେନିଂ କଲେଜର ପ୍ରଥମ ଅଧ୍ୟକ୍ଷ ଏଫ.ବି.ହ୍ୱିଟମୁର, ପରେ ମି. ହ୍ୟାଣ୍ଡରସନ, ଦତ୍ତଗୁପ୍ତ, ସରକାର, ବି. ମୁଖାର୍ଜୀ ୧୯୩୬ ପର୍ଯ୍ୟନ୍ତ ରହିଲେ । ମି. ମହେଶ ଚନ୍ଦ୍ର ପ୍ରଧାନ ଦୀର୍ଘ ବାର ବର୍ଷ ରହିଲେ । ଶ୍ରୀ ରାମଚନ୍ଦ୍ର ମହାପାତ୍ରଙ୍କ ପରେ ଶ୍ରୀ ବୈଦ୍ୟନାଥ ରଥ ଲଣ୍ଡନରୁ ଫେରି ଅଧ୍ୟକ୍ଷ ରୂପେ ଯୋଗଦେଲେ (୧୯୪୯-୫୦) । ୧୯୪୮ ମସିହା ଜାନୁଆରୀ ୨୮ ତାରିଖରେ କଟକ ଆକାଶବାଣୀ କେନ୍ଦ୍ର ସ୍ଥାପିତ ହୋଇଥିଲା । କଲିକତା କେନ୍ଦ୍ରରୁ ଓଡ଼ିଆ ଶିଳ୍ପୀମାନେ ଆସି ଏଥିରେ ଯୋଗଦେଲେ ।

କଲେଜ ହତା ମଧ୍ୟରେ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପ୍ରକୋଷ୍ଠ ପାଇ ଆମ୍ଭେମାନେ କର୍ମରେ ନିଯୁକ୍ତ ହେଲୁ । ପ୍ରଥମେ ପ୍ରଥମେ ଡେମନଷ୍ଟ୍ରେସନ କ୍ଲାସ ଚାଲିଲା । ଖୋର୍ଦ୍ଧା ସ୍କୁଲରେ ଡେମନଷ୍ଟ୍ରେସନ କ୍ଲାସର ଆୟୋଜନ କରାଯାଏ । ବାଙ୍କନିଧିବାବୁ ପ୍ରତିମାସରେ ପ୍ରତି ଶ୍ରେଣୀରେ ଏପରି କ୍ଲାସ ଆୟୋଜନ କରିଥାଆନ୍ତି । ତାଲିମ ପ୍ରାପ୍ତ ଶିକ୍ଷକମାନେ ଶିକ୍ଷାପ୍ରଦାନ କରନ୍ତି । ଅନ୍ୟମାନେ ଓ ହେଡ୍‌ମାଷ୍ଟର ପଛରେ ବସି ଅନୁଧ୍ୟାନ କରନ୍ତି । ସେ ପିରିଅଡ଼ ଶେଷହେଲେ ଭଲମନ୍ଦ ବିଚାର କରାଯାଏ । ତେଣୁ ପୂର୍ବରୁ ପାଠ ପଢ଼େଇବାରେ ମୋର କିଛି ଅଭିଜ୍ଞତା ଥିଲା । ପୁନଃ ଆଗ୍ରହୀ ବ୍ୟକ୍ତି ଏ କର୍ମରେ ଶୀଘ୍ର ଶୀଘ୍ର ଜ୍ଞାନ ହାସଲ କରେ । ମୁଁ ଶିକ୍ଷାଦାନରେ ପଛୁଆ ହେଲି ନାହିଁ । ଚାଲିଲା ଗାଡ଼ି, ଚାଲିଲା କାମ । ପ୍ରଥମେ କେତେଦିନ ମାନ୍ଦା ଲାଗିଲା । ତପରେ ଫୁର୍ତ୍ତି ଆସିଲା । ବୈଦ୍ୟନାଥବାବୁଙ୍କ ବ୍ୟତୀତ ସର୍ବଶ୍ରୀ ଶତ୍ରୁଘ୍ନ ନାଥ, ରାମସ୍ୱାମୀ ସେନାପତି, ଜଗନ୍ନାଥ ହରିଚନ୍ଦନ ଓ ଦୁର୍ଯ୍ୟୋଧନ ରାଉତ ଅଧ୍ୟାପକ ଥିଲେ । ପୂଜାଛୁଟି ପର୍ଯ୍ୟନ୍ତ ପଢ଼ାପଢ଼ି ଧୀରେ ସୁସ୍ଥେ ଚାଲିଲା । ଷ୍ଟାଇପେଣ୍ଡ ବୃଦ୍ଧି ହୋଇଥିବାରୁ ସେ ବର୍ଷ ପଚାଶ ଜଣ ଛାତ୍ର ଯୋଗଦେଇଥିଲେ । ସରକାର ଆଉ ତିରିଶଟି ସିଟ୍ ମଞ୍ଜୁର କରିଥିଲେ । ମାତ୍ର ବର୍ଷ ଶେଷକୁ ଦଶ କି ବାର ଜଣ ଓହରି ଯାଇଥିଲେ କାରଣ ସମଭିତ୍ତିକ ଚାକିରିରେ ଦରମା ବେଶି ଥିଲା । ଶିକ୍ଷକମାନେ ମୁଖ୍ୟତଃ ଛାତ୍ରବତ୍ସଳ ଥିଲେ । ସେତେବେଳେ ପାଠୁଆଙ୍କ ସଂଖ୍ୟା ଏତେ ନଥିଲା । ତଥାପି ଏକମାତ୍ର ଟ୍ରେନିଂ କଲେଜରେ ଆବଶ୍ୟକ ଛାତ୍ର ଯୋଗ ଦେଉନଥିଲେ ।

### ଉତ୍ତର ଭାରତ ଭ୍ରମଣ :

ସେ ବର୍ଷ ବହୁ ଛାତ୍ର ଉତ୍ତର ଭାରତ ପରିଭ୍ରମଣରେ ଯିବାପାଇଁ ନାମ ଅଧ୍ୟକ୍ଷଙ୍କ ପାଖେ ଦାଖଲ କରିଥିଲେ । ମାତ୍ର ଅତ୍ୟଧିକ ବୃଷ୍ଟିପାତ ହେତୁ ପୂଜାଛୁଟିର ନିର୍ଦ୍ଦିଷ୍ଟ ଦିନରେ

ମୋଟେ ଚାରିଜଣ ଛାତ୍ର ଆସି ପହଞ୍ଚିଲେ । ପାଣ୍ଠିରୁ ଆମ୍ଭମାନଙ୍କ ଭାଗ ବେଶି ପଡ଼ିଲା । ଆମ୍ଭେମାନେ ନିଜନିଜ ପକେଟରୁ ଯେତିକି ଟଙ୍କା ପ୍ରଦାନ କଲୁ । ଛାତ୍ରପ୍ରିୟ ଅଧ୍ୟାପକ ଶ୍ରୀରାମସ୍ୱାମୀ ସେନାପତିଙ୍କ ନେତୃତ୍ୱରେ ଆମେ ଚାରିଜଣ ଯାଜପୁରର ଶ୍ରୀ କଳ୍ପତରୁ ମିଶ୍ର, ଗଞ୍ଜାମର ଶ୍ରୀ ଗୌରହରି ପାତ୍ର, ଗୋପର ଶ୍ରୀ ବିଶ୍ୱନାଥ ମିଶ୍ର ଓ ଖୋର୍ଦ୍ଧାରୁ ମୁଁ ନିଜେ ମୁରଲୀଧର ପ୍ରଧାନ ୧୯୪୯ ମସିହା ପୂଜା ଅବକାଶରେ ସମଗ୍ର ଉତ୍ତର ଭାରତ ପରିଭ୍ରମଣରେ ଯାତ୍ରାକଲୁ । ପରିଭ୍ରମଣ ଶିକ୍ଷାର ଏକ ବିଶିଷ୍ଟ ଅଂଗ ୱ ଗୃହରେ ଅବସ୍ଥାନ କରି ପୁସ୍ତକ ଅଧ୍ୟୟନ କରିବା ଦ୍ୱାରା ଯେତିକି ଜ୍ଞାନ ହାସଲ କରାଯାଏ ଦେଶ ବିଦେଶ ପରିଭ୍ରମଣ କରିବା ଦ୍ୱାରା ତାହାଠାରୁ ଅଧିକ ଜ୍ଞାନ ଆହରଣ କରାଯାଏ । ଆମ୍ଭେମାନେ କଲିକତା ସମେତ ଗୟା, ବୋଧଗୟା, ସାରନାଥ, କାଶୀ (ବାରଣାସୀ), ଆଲାହାବାଦ, ତ୍ରିବେଣୀ ସଂଗମ, ଆଗ୍ରା, ମଥୁରା, ବୃନ୍ଦାବନ, ଦିଲ୍ଲୀର ବିଭିନ୍ନ ବଭିନ୍ନ ସ୍ଥାନ, ଯଥା – ବିରଳା ଭବନ, ପାର୍ଲିଆମେଣ୍ଟ ଭବନ, ବିରଳା ମନ୍ଦିର, ଲାଲକିଲ୍ଲା, କୁତବମିନାର ପ୍ରଭୃତି ପରିଦର୍ଶନ କରି ବହୁ ତଥ୍ୟ ସଂଗ୍ରହ କରିବାରେ ସମର୍ଥ ହୋଇଥିଲୁ । ସେତେବେଳେ ଶିକ୍ଷକ ଜୀବନ ଦରିଦ୍ର ଜୀବନ ଥିଲା । ଜୀବନରେ ଆଉ ସେସବୁ ସ୍ଥାନ ଦର୍ଶନ କରିବାର ସୁଯୋଗ ମିଳିନଥିଲା । ତେବେ ଆମ ସହିତରେ ଯାତ୍ରା କରିଥିବା ବାବୁ ଗୌରହରି ପାତ୍ର ପ୍ରତ୍ୟେକ ସ୍ଥଳରେ ଭୌଗୋଳିକ ତଥା ଐତିହାସିକ ଅଟ୍ଟାଳିକାଗୁଡ଼ିକର ଏବଂ ପ୍ରାକୃତିକ ଦୃଶ୍ୟରାଜିର ଫଟୋଚିତ୍ର ଉତ୍ତୋଳନ କରି ପରିଭ୍ରମଣକୁ ସୁଖପ୍ରଦ କରିପାରିଥିଲେ । ମୋର ବହୁଦିନର ପୋଷିତ ମନୋବାଞ୍ଛା ପୂରଣ ହୋଇପାରିଥିଲା । ଐତିହାସିକ ତଥା ପୌରାଣିକ ମନ୍ଦିର ତଥା ଅଟ୍ଟାଳିକା ପରିଦର୍ଶନ କରି ଦେଶର ପୂର୍ବ କୀର୍ତ୍ତିମାନ ସ୍ମରଣ କରିଥିଲୁ । ପୁନଃ ବଡ଼ଦିନ ଛୁଟିରେ ଆମ୍ଭମାନଙ୍କ ମଧ୍ୟରୁ କୋଡ଼ିଏଜଣ ଛାତ୍ର ଓ ଛାତ୍ରୀ, ଅଧ୍ୟାପକ ଜଗନ୍ନାଥ ହରିଚନ୍ଦନ ଓ ଅଧ୍ୟାପକ ଦୁର୍ଯ୍ୟୋଧନ ରାଉତଙ୍କ ଗହଣରେ କଟକ ଜିଲ୍ଲାର ଚଣ୍ଡିଖୋଲ, ମହାବିନାୟକ ଓ ପୁରୀ ଜିଲ୍ଲାର ଅପାସୋରା ଲାସ୍ୟମୟୀ ଚିଲିକା ହ୍ରଦର ଦୃଶ୍ୟ ଅବଲୋକନ କରି ଜ୍ଞାନଭଣ୍ଡାରକୁ ସମୃଦ୍ଧ କରିଥିଲୁ ।

**ତତ୍କାଳ କଟକ ଜୀବନ :**

ସେତେବେଳେ କଟକରେ ମାସିକ ମେସ୍ ଖର୍ଚ୍ଚ ବାଇଶି ଟଙ୍କା ପଚାଶ ପଇସା ପଡୁଥିଲା । ଅବଶିଷ୍ଟ ପଇସାରେ କଷାକଷି ହୋଇ ଚଳିବାକୁ ପଡୁଥିଲା । ମହଙ୍ଗା ସମୟ କ୍ରମେ କ୍ରମେ ପ୍ରବେଶ କରୁଥିଲା । ଆମ୍ଭେମାନେ ସେତେବେଳେ ଯେଉଁ ଛାତ୍ରାବାସରେ ଅବସ୍ଥାନ କରୁଥିଲୁ ତାହା ବର୍ତ୍ତମାନ ରାଜକୀୟ ସୌଧରେ ପରିଣତ ହୋଇଛି ଓ କଲେଜରେ

ତ୍ରିତଳ ଅଟ୍ଟାଳିକା ସମୂହ ଛାତ୍ରଛାତ୍ରୀ ଓ ଅଧ୍ୟାପକମାନଙ୍କୁ ସମସ୍ତ ପ୍ରକାର ସୁବିଧା ପ୍ରଦାନ କରିଅଛି । ପ୍ରାକ୍‌ଟିସ ଶିକ୍ଷାଦାନ ଦେବାପାଇଁ ସହରର ଆଭ୍ୟନ୍ତରରେ ପି.ଏମ୍. ଏକାଡ଼େମୀ, ଭକ୍ତମଧୁ ବିଦ୍ୟାପୀଠକୁ ଯିବାକୁ ପଡୁଥିଲା । ପୂଜାଛୁଟି ପରେ ପରେ ଅଧ୍ୟୟନ ଓ ଅଧ୍ୟାପନା ଜୋରସୋରରେ ଚାଲିଲା । କିନ୍ତୁ ହାଇସ୍କୁଲ ଜୀବନପରି ଏହା ପ୍ରୀତିପୂର୍ଣ୍ଣ ନଥିଲା । ଯାହାହେଉ ଦୁଃଖରେ ହେଉ ବା ସୁଖରେ ହେଉ ଦଶ ମାସ ତାଲିମ କଲେଜରେ କଟାଇ ୧୯୫୦ ମସିହା ଏପ୍ରିଲ, ମେ ମାସରେ ପରୀକ୍ଷାଦେଇ ପୁନଃ ଆସି ଖୋର୍ଦ୍ଧା ସ୍କୁଲରେ ଯୋଗଦାନ କଲି । ସେତେବେଳକୁ ବାଙ୍କନିଧିବାବୁ ଅବସର ନେଲେଣି । ସମ୍ବଲପୁରର ବାବୁ କ୍ଷୀରେଶ୍ୱର ମିଶ୍ର, ଏମ୍.ଏ., ପ୍ରଧାନ ଶିକ୍ଷକ ପଦରେ ଅବସ୍ଥାପିତ ହେଲେଣି । ଖୋର୍ଦ୍ଧା ହାଇସ୍କୁଲର ନାମ ବକ୍ସି ଜଗବନ୍ଧୁ ବିଦ୍ୟାଧର ହାଇସ୍କୁଲ ନାମରେ ରୂପାନ୍ତରିତ ହେଲାଣି । ଜଣେ ସାଧାରଣ ଶିକ୍ଷକ ହୋଇଗଲେ ଯେ ମୁଁ ଉପଯୁକ୍ତ ଶିକ୍ଷକ ହୋଇଗଲି ତା ନୁହେଁ । ଜଣେ ସଫଳ କୃତୀ ଶିକ୍ଷକ ହେବାପାଇଁ ଜ୍ଞାନର ପରିସର ଯେପରି ବୃଦ୍ଧି କରାଯିବ ଉତ୍ତମ ଶିକ୍ଷକର ସଦ୍‌ଗୁଣଗୁଡ଼ିକ ସେପରି ଆହରଣ କରିବାକୁ ପଡ଼ିବ । ମୁଁ କଠୋର ଶୃଙ୍ଖଳାରକ୍ଷକ ଥିଲି । ଶ୍ରେଣୀରେ ଗୋଳମାଳ ସହ୍ୟ କରିପାରୁନଥିଲି । ଶିକ୍ଷକଙ୍କୁ ପାଠ ଜଣାଥିଲେ ଓ ସେ ପୂର୍ବରୁ ପ୍ରସ୍ତୁତ ହୋଇ ଶ୍ରେଣୀ କକ୍ଷରେ ପ୍ରବେଶ କଲେ ଶ୍ରେଣୀରେ ସହଜରେ ଶୃଙ୍ଖଳା ରକ୍ଷାକରିହେବ ଏବଂ ପଢ଼ାଇ ପାରିବ ।

### ଶିକ୍ଷକର କର୍ତ୍ତବ୍ୟ :

କାୟିକ ଦଣ୍ଡ ଶୃଙ୍ଖଳାରକ୍ଷା କରିବାର ପ୍ରକୃତ ଔଷଧ ନୁହେଁ । ଶିକ୍ଷକଙ୍କଠାରେ ମସଲା ଥିଲେ ପିଲାମାନଙ୍କର ତାଙ୍କ ପ୍ରତି ସ୍ୱତଃ ଭକ୍ତିଭାବ ଜାଗ୍ରତ ହେବ । ଅଭିଭାବକଙ୍କ ସହିତ ସଂପର୍କ ରକ୍ଷା କରିବାରେ ମୁଁ ହେଲି ପ୍ରଥମ ବ୍ୟକ୍ତି । ଛାତ୍ରମାନେ ଶିକ୍ଷକଙ୍କର ପ୍ରଧାନ ବିଚାରକ, ଗୁଣୀଛାତ୍ର ଶିକ୍ଷକମାନଙ୍କୁ ଉତ୍ତମ ବିବେଚନା କରେ । ମୋ ପାଠପଢ଼ାରେ ଶିକ୍ଷକବନ୍ଧୁ, ପ୍ରଧାନ ଶିକ୍ଷକ, ଅଭିଭାବକ ସର୍ବୋପରି ଛାତ୍ରସମାଜ ସନ୍ତୋଷ ପ୍ରକାଶ କରୁଥିଲେ । ଛାତ୍ରଛାତ୍ରୀମାନଙ୍କର ମୋ ପ୍ରତି ଢେର୍ ଖାତିର୍ ଥିଲା । ରେଭେନ୍ସା କଲେଜରେ ଅଧ୍ୟୟନ କଲାବେଳେ ଅଧ୍ୟକ୍ଷ ଡକ୍ଟର ପରିଜା କେମ୍ବ୍ରିଜ ଢାଞ୍ଚାରେ ଅଭିଭାବକ ଓ ପିଲାମାନଙ୍କ ସହିତ ସଂପର୍କ ରକ୍ଷାକରିବା ପାଇଁ ଅଧ୍ୟାପକମାନଙ୍କୁ ପରାମର୍ଶ ଦେଉଥିଲେ । ଏପରିକି ରେଭେନ୍ସା କଲେଜ କ୍ୟାଲେଣ୍ଡରରେ କିଏ କେଉଁ ଓ୍ୱାର୍ଡ଼ରେ କଲେଜ ପିଲାଙ୍କ ପ୍ରତି ନଜର ଦେବେ ତାହା ପୂର୍ବରୁ ସ୍ଥିରୀକୃତ ହୋଇଥିଲା । ଏହି ପ୍ରଥା

ଅନୁସରଣକରି ଖୋରଧାରେ ଅଭିଭାବକମାନଙ୍କ ସହ ସଂପର୍କ ରକ୍ଷାକଲି ଏବଂ ପ୍ରତ୍ୟେକ ଗୃହକୁ ଯାଇ ପିଲାମାନଙ୍କ ଚଳଣି, ପାଠପଢ଼ା ତନଖି କଲି । ଏହାଦ୍ୱାରା ବିଦ୍ୟାର୍ଥୀମାନଙ୍କର ତଥା ବିଦ୍ୟାଳୟର ଅଶେଷ କଲ୍ୟାଣ ସାଧିତ ହେଲା । ମାତ୍ର ସେକାଳର କେତେକ ଅଭିଭାବକ ସେମାନଙ୍କର ଅଜ୍ଞତା ହେତୁ ହେଉ ବା ବଡ଼ଲୋକପଣିଆ ହେତୁ ହେଉ ମୋତେ ଶିକ୍ଷକର ସମ୍ମାନ ଦେଲେ ନାହିଁ । ତେଣୁ କିଛି ଦିନ ଚାଲିବାପରେ ଏ ଅଭ୍ୟାସ ବନ୍ଦକଲି । ରାସ୍ତାଘାଟରେ, ଦୋକାନ ସମ୍ମୁଖରେ ପିଲାଙ୍କ ପାଠପଢ଼ାକଥା ପଚାରି ବୁଝିଲି । ଲୋକେ ଯଦି ଶିକ୍ଷକମାନଙ୍କୁ ଗୁଣୀଲୋକ ହିସାବରେ ସମ୍ମାନ ନଦିଅନ୍ତି ତେବେ ସମାଜର ଅବସ୍ଥା କ'ଣ ହେବ ? ମାତ୍ର ମୋ କଥା ସ୍ୱତନ୍ତ୍ର ଥିଲା ।

## ଗାଁ ଗୃହ ନିର୍ମାଣ :

ଆମ ଗାଁରେ ମୋର ଘରଦ୍ୱାର ନଥିଲା, ତେଣୁ ତଳକ୍ଷେତା ଛକ ରାସ୍ତାକଡ଼ରେ ଉତ୍ତରକୁ ରାଧାଚରଣପୁରର ପୂର୍ବକୁ ପାଞ୍ଚବଖରା ମାଟିଘର ନିର୍ମାଣ କଲି । ଏହା ୧୯୫୧-୫୨ ମସିହା କଥା । ମୂଲିଆ ମଜୁରି ସେତେବେଳକୁ ଏକ ଟଙ୍କା ହୋଇଗଲାଣି । ଧାନ ଟଙ୍କାରେ ତିନି ସେରିଆରେ ଦୁଇ ଗୌଣୀ । କାହିଁକିନା ପଡ଼ିଶାଘରୁ ନବେ ଟଙ୍କାରେ ଛଅ ବସ୍ତା ଧାନ କିଣିଲି । ଟାଙ୍ଗି ଉପରେ ସିନା ଘରଟିଏ କରିଦେଲି କିନ୍ତୁ ନିଛାଟିଆ ଜାଗା । ଟ୍ରେନିଂରୁ ଫେରି ମୁଁ ଖୋର୍ଦ୍ଧା ରାଧାବଲ୍ଲଭ ସାହି ବାବୁ ଫକୀର ଦେଙ୍କ ଘରେ ମାସିକ କୋଡ଼ିଏ ଟଙ୍କା ଭଡ଼ାରେ ସପରିବାର ଅବସ୍ଥାନ କରୁଥିଲି । ଜୁନମାସ ଶେଷରେ ପରୀକ୍ଷା ଫଳ ଘୋଷିତ ହେଲା । ଚାରିଜଣ ଫେଲହେଲେ । ମୁଁ କୃତିତ୍ୱର ସହ ପାସ୍ କରିଥିବାରୁ ସରକାରଙ୍କ ନୂତନ ଶିକ୍ଷାନୀତି ଅନୁଯାୟୀ ମୋର ବେତନ ମାସିକ ଶହେ ଟଙ୍କାକୁ ବୃଦ୍ଧି ପାଇଲା । ତା ସହିତ ମହଙ୍ଗା ଭତ୍ତା କୋଡ଼ିଏ ଟଙ୍କା ବୃଦ୍ଧି ପାଇଲା । ନବଜାତ ପୁତ୍ର ସନ୍ତାନ ସହିତ ବନବାସିନୀ ଦେବୀ ଓ ମୋ ମା' ସହିତ ରାଧାଚରଣପୁରଠାରେ ନିର୍ମିତ ନୂତନ ଗୃହରେ ଅବସ୍ଥାନ କଲି । ଖୋରଧାରେ ଭଡ଼ାଘର ତ୍ୟାଗକରି ଛାତ୍ରାବାସରେ ଆଶ୍ରୟ ନେଲି । ସେତେବେଳକୁ କ୍ଷୀରେଶ୍ୱର ମିଶ୍ର ହାଇସ୍କୁଲ ତ୍ୟାଗ କଲେଣି । ପୁରାତନ ଶିକ୍ଷକ ଶ୍ରୀ ଆଶୁତୋଷ ବାଗ୍‌ଚୀ ପ୍ରଧାନ ଶିକ୍ଷକ ଦାୟିତ୍ୱରେ ଥାଆନ୍ତି ।

## ଦେଶର ନୂତନ ସମ୍ବିଧାନ :

୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ନୂତନ ସମ୍ବିଧାନ ଅନୁସାରେ ଭାରତ ଏକ ସାର୍ବଭୌମ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହେଲା । ମାଉଣ୍ଟବାଟେନଙ୍କ ପରେ ରାଜଗୋପାଳାଚାରୀ ଭାଇସରାୟ ସ୍ଥାନ ଅଧିକାର କରିଥିଲେ । ନୂତନ ସମ୍ବିଧାନ

ଅନୁଯାୟୀ ବାବୁ ରାଜେନ୍ଦ୍ରପ୍ରସାଦ ରାଷ୍ଟ୍ରପତିପଦରେ ଭୂଷିତ ହେଲେ । ରାଜଗୋପାଳାଚାରୀ ଟିକିଏ କଡ଼ା ମିଜାସର ଲୋକ ଥିଲେ । ତାଙ୍କୁ ରାଷ୍ଟ୍ରପତି କରିବାପାଇଁ ନେହୁରୁଙ୍କର ଇଚ୍ଛା ଥିଲେ ମଧ କଂଗ୍ରେସ ସଭ୍ୟମାନଙ୍କ ଚାପରେ ନେହୁରୁ ଖାଦ୍ୟମନ୍ତ୍ରୀ ଥିବା ବାବୁ ରାଜେନ୍ଦ୍ର ପ୍ରସାଦଙ୍କୁ ସେ ପଦ ପ୍ରଦାନ କଲେ । ସେତେବେଳେ ଓଡ଼ିଶାର ପ୍ରଧାନମନ୍ତ୍ରୀ ପଦ ଲାଭକରିଥିବା ଶ୍ରୀ ହରେକୃଷ୍ଣ ମହତାବ ସର୍ଦ୍ଦାର ପଟେଲଙ୍କ ପରାମର୍ଶରେ ଶିଳ୍ପମନ୍ତ୍ରୀ ହେଲେ । ୧୯୫୦ ଅଗଷ୍ଟ ମାସରେ ସର୍ଦ୍ଦାର ପଟେଲଙ୍କ ପ୍ରୟାଣ ହେଲା । ୧୯୫୨ ମସିହା ସାଧାରଣ ନିର୍ବାଚନରେ ଶ୍ରମିକନେତା ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନରେ ରହିଲେ ଏବଂ ମହତାବବାବୁ ଶିଳ୍ପମନ୍ତ୍ରୀରୁ ଯାଇ କଂଗ୍ରେସ ପାର୍ଟିର ସେକ୍ରେଟାରୀ ଜେନେରାଲ ହେଲେ, ତପ୍ରରେ ସେଥିରୁ ଯାଇ ବମ୍ବେର ଗଭର୍ଣ୍ଣର ହେଲେ ।

ନୂତନ ଭାରତ ନୂତନ ଉନ୍ମାଦନାରେ ଆଗେଇ ଚାଲିଲା । ମନ୍ତ୍ରିମଣ୍ଡଳରେ ବଛାବଛା ଦେଶପ୍ରେମୀ ସଚ୍ଚୋଟ ବ୍ୟକ୍ତି ସ୍ଥାନପାଇଲେ । ଜବାହରଲାଲ ଖୁବ୍ ଲୋକପ୍ରିୟ ଥିଲେ, ଯେଉଁ ଦେଶକୁ ଯାଉଥିଲେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଲାଭ କରୁଥିଲେ । ଦେଶରେ ନିର୍ମଳ ଶାସନ ଚାଲିଲା । ନେତାମାନେ ଯେପରି ଦେଶ କାମରେ ଲାଗିଗଲେ ଆମ୍ଭେମାନେ ସେହିପରି ବିଦ୍ୟାଳୟ କାର୍ଯ୍ୟରେ ଗଭୀର ମନୋନିବେଶ କଲୁ ।

## ଆଶୁତୋଷ ବାଗ୍‌ଚୀ ମହୋଦୟ :

ବାବୁ ଆଶୁତୋଷ ବାଗ୍‌ଚୀ କ୍ଷୀରେଶ୍ୱର ମିଶ୍ରଙ୍କ ପରେ ଦୁଇତିନି ମାସ ହେଡ୍‌ମାଷ୍ଟର ଦାୟିତ୍ୱରେ ଥିଲେ । ସେ ଛୋଟା ଥିଲେ ମଧ ସମୟାନୁବର୍ତ୍ତୀ ଓ କର୍ତ୍ତବ୍ୟ ପରାୟଣ ଥିଲେ । ସେ ୧୯୦୫ ମସିହାରେ ବଙ୍ଗଭଙ୍ଗ ଆନ୍ଦୋଳନରେ ଯୋଗଦେଇ ବଙ୍ଗଳାରୁ ନିର୍ବାସିତ ହୋଇଥିଲେ । ୧୯୦୭ ମସିହାରେ ସେ ଖୋର୍ଦ୍ଧା ହାଇସ୍କୁଲରେ ଯୋଗ ଦେଇଥିଲେ । ସେ ଏଫ.ଏ.ଏଲ.ଟି. । ପ୍ରଧାନ ଶିକ୍ଷକ ହେବା ଯୋଗ୍ୟତା ତାଙ୍କର ନଥିଲେ ମଧ ପରିଚାଳନା ବୋର୍ଡ଼ ତାଙ୍କୁ ଦାୟିତ୍ୱରେ ରଖିଥିଲେ । ସେ ଭଲ ଭୂଗୋଳ ଶିକ୍ଷକ ଥିଲେ ଏବଂ ୧୯୩୬-୩୭ ମସିହାରେ ହାଇସ୍କୁଲର ପୁରାତନ ହଲ ସମ୍ମୁଖରେ ବାଳିବାବୁଙ୍କ ସହାୟତାରେ ଭାରତର ଏକ ରିଲିଫି ମ୍ୟାପ୍ ଗଠନ କରିଥିଲେ । ଏହା ୧୯୬୦-୬୧ ଖ୍ରୀ.ଅ.ରୁ ଏକ ପ୍ରସ୍ତର ପ୍ରାଚୀର ଦ୍ୱାରା ସୁରକ୍ଷିତ ହୋଇ ରହିଛି । ୧୯୫୧ ମସିହା ଜୁଲାଇ ୫ ତାରିଖରେ ଦିବ୍ୟସିଂହବାବୁ ଖୋର୍ଦ୍ଧା ହାଇସ୍କୁଲର ଲଗାମ ଧରିଲେ ।

ଖୋରଧାର ପୁରାତନ ଅଭିଜ୍ଞ ଡାକ୍ତର ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି (ବଂଶୀବାବୁ) ମୋର ଓ ମୋ ପରିବାରର ପରମ ସହାୟକ ଥିଲେ । ମୋର ପରମ

ବନ୍ଧୁ ଖୋର୍ଦ୍ଧା ହାଇସ୍କୁଲର ଶିକ୍ଷକ ଶ୍ରୀ ଶୈଳେନ୍ଦ୍ର କୁମାର ଦାସ ଜଣେ କଠୋର ଶୃଙ୍ଖଳାରକ୍ଷକ ଥିଲେ । ଏଥି ମଧ୍ୟରେ ନୀତିପରାୟଣ ତଥା କର୍ତ୍ତବ୍ୟନିଷ୍ଠ ପଣ୍ଡିତ ହରିକୃଷ୍ଣ ପ୍ରଧାନ ଖୋରଧା ହାଇସ୍କୁଲରେ ଯୋଗଦେଲେଣି । ମୋର ଲୋକପ୍ରିୟତା ବଢ଼ିଲାଣି । ଡି.ଇଡି. ପାସ୍‌କରି ମୁଁ ଶିକ୍ଷାବିଭାଗ ପାଇଁ ଯୋଗ୍ୟ ବିବେଚିତ ହେଲି । ବି.ଏ. ପାସ୍ ପରେ ଅନ୍ୟ ବିଭାଗକୁ ଚାକିରି ଅର୍ଥେ ଯାଇଥିଲି । ମାତ୍ର ଗଲାବେଳେ ନାନା ଅଶୁଭ ଘଟେ । ତେଣୁ ଯିବାର ହୁଏ ନାହିଁ । ସତେକି ଶିକ୍ଷାବିଭାଗ ପାଇଁ ମୁଁ ଉଦ୍ଦିଷ୍ଟ ।

ଶିକ୍ଷକ ଜୀବନ ଏକ ପବିତ୍ର ଜୀବନ । ଖୋରଧା ହାଇସ୍କୁଲ ଘରୋଇ ସ୍କୁଲ ହେଲେ ମଧ୍ୟ ସମଗ୍ର ରାଜ୍ୟରେ ଏହାର ମାନସମ୍ମାନ ଅଧିକ । ସରକାରୀ ହାଇସ୍କୁଲ ଏହାର ପାସଙ୍ଗରେ ପଡ଼ନ୍ତି ନାହିଁ, ଦରମା ନିୟମିତ ମିଳୁଥିଲା । ଅଧ୍ୟାପନା ଶିକ୍ଷକର ମୁଖ୍ୟ ଏବଂ ଅନ୍ୟକାମ ଗୌଣ । ଶିକ୍ଷକମାନେ ଛାତ୍ରଛାତ୍ରୀମାନଙ୍କୁ ଗଢ଼ିବେ । ସେତେବେଳେ ଏହା ପୁଅ ଓ ଝିଅ ସ୍କୁଲ ଥିଲା । ଘରୋଇ ସ୍କୁଲ ହୋଇଥିବା ହେତୁ ଶିକ୍ଷକମାନଙ୍କ ଉପରେ ଗୁରୁଦାୟିତ୍ୱ ପଡ଼େ । ଶିକ୍ଷକ ଜୀବନ ସାଧୁ ଓ ସଚ୍ଚୋଟ । ଛାଏଁ ଛାଏଁ ଆଧ୍ୟାତ୍ମିକ ଜୀବନ ପାଲଟିଯାଏ । ସେ ସରଳ ହୋଇଯାଏ । ମୋ ମତରେ ଶିକ୍ଷକ ଜୀବନ ଅମିର ଜୀବନ । Plain living and high thinking ତାର ମଟୋ । ଉତ୍ତମ ଓ ନିଷ୍ଠାବାନ ଶିକ୍ଷକ ଦେଶ ଓ ଜାତିର ସଂପଦ । ଉତ୍ତମ ଶିକ୍ଷକ ସମାଜ ଜୀବନର ମେରୁଦଣ୍ଡ । ମାତ୍ର କେତେକ ଶିକ୍ଷକଙ୍କ କାର୍ଯ୍ୟକଳାପ ଶିକ୍ଷକମାନଙ୍କୁ ନ୍ୟୂନ କରିଦିଏ । କେହି ମୋତେ ସମ୍ମାନ ଦେଉ ନଦେଉ ମୋର ଅଗଣିତ ଛାତ୍ର ମୋତେ ସମ୍ମାନ ଦେଖାଇବେ ଏହା ନିଶ୍ଚିତ । ପକ୍କା ମାଷ୍ଟ୍ର ହୋଇଗଲା ପରେ ଏକ୍ଷଣି ବିଶ୍ରାମ ନେବି ଆଉ ଉପରକୁ ପଢ଼ିବି ନାହିଁ । ତେବେ ବିଶ୍ୱବିଦ୍ୟାଳୟରେ ସର୍ବୋଚ୍ଚ ଡିଗ୍ରୀ ହାସଲ ନକରିବା ପର୍ଯ୍ୟନ୍ତ କ'ଣ ବିଶ୍ରାମ ଅଛି ? ଏହି ଚିନ୍ତା ପୁଣି ମନକୁ ଘାରିଲା ।

## ନୂତନ ହେଡ୍‌ମାଷ୍ଟର ଦିବ୍ୟସିଂହବାବୁ :

ଶ୍ରୀଯୁକ୍ତ ଦିବ୍ୟସିଂହ ପଟ୍ଟନାୟକ ଖୋର୍ଦ୍ଧା ହାଇସ୍କୁଲକୁ ୧୯୫୧ ମସିହା ଜୁଲାଇ ୫ ତାରିଖରେ ପ୍ରଧାନ ଶିକ୍ଷକ ହୋଇ ଆସିଲେ । ତତ୍‌କାଳୀନ ବିଧାୟକ ବନମାଳୀ ପଟ୍ଟନାୟକ ତାଙ୍କର ଜ୍ୱାଇଁ ଲେଖା ହେବେ । ବନମାଳୀବାବୁଙ୍କ ଇଚ୍ଛା ଜଣେ ଭଲ ପ୍ରଧାନଶିକ୍ଷକ ଆସନ୍ତୁ । ତେଣୁ ତାଙ୍କୁ ଗଞ୍ଜାମରୁ ଆଣିବା ପାଇଁ ସ୍ଥିର କଲେ । ସେତେବେଳର ପରିଚାଳନା ସମିତି ତାଙ୍କୁ ମାସିକ ଦୁଇ ଶହ ପଚାଶ ଟଙ୍କା ବେତନରେ ଏ ସ୍କୁଲରେ ନିଯୁକ୍ତି ପ୍ରଦାନ କରିଥିଲେ । ମୋର ସ୍ପଷ୍ଟ ମନେ ଅଛି

ବିଦ୍ୟାଳୟରେ ଜଣେ ବରେଣ୍ୟ ଶିକ୍ଷକ ବାଞ୍ଛା ଶ୍ରୀକେଶବଚନ୍ଦ୍ର ପତି ଏପରି ନିଯୁକ୍ତିରେ କ୍ଷୋଭ ପ୍ରକାଶ କରି କହିଥିଲେ, ''କାହିଁକି ଏତେ ବୁଢ଼ାଏ ଟଙ୍କା ଦେଇ ଗୋଟିଏ ଧଳାହାତୀକୁ ଅଣାଯାଉଛି।'' ସେ ସମୟରେ ଦୁଇଶହ ପଚାଶ ଟଙ୍କା ଖୁବ୍ ବେଶି। ଶ୍ରୀଯୁକ୍ତ ବାଞ୍ଛାନିଧି ପଟ୍ଟନାୟକ ମାସକୁ ଶହେ ପଚାଶ ଟଙ୍କା ବେତନ ପାଉଥିଲେ। ସେତେବେଳକୁ ଦିବ୍ୟସିଂହବାବୁ ପଞ୍ଚାବନ ବର୍ଷରେ ଗଞ୍ଜାମ ଜିଲ୍ଲା ବୋର୍ଡ଼ରୁ ଅବସର ନେଇଥିଲେ। କିନ୍ତୁ ଏତେ ବୟସରେ ମଧ୍ୟ ସେ ଖୁବ୍ କର୍ମଠ ଥିଲେ। ତାଙ୍କଠାରେ ଅଫୁରନ୍ତ ଶକ୍ତିଥିବାର ଜଣାପଡୁଥିଲା। ପ୍ରକୃତରେ ହେଡ୍‌ମାଷ୍ଟରଙ୍କଠାରେ ବଳ ନଥିଲେ ସେ କୌଣସି କଠିନ କାର୍ଯ୍ୟ ସମ୍ପାଦନରେ ଆଗଭର ହୋଇ ପାରିବେ ନାହିଁ। ଦିବ୍ୟସିଂହବାବୁଙ୍କ ଘର ନିକଟବର୍ତ୍ତୀ ଦଧିମାଛଗାଡ଼ିଆରେ। ସେ ଏ ସ୍କୁଲର ପୁରାତନ ଛାତ୍ର ଥିଲେ। ସ୍କୁଲର ହାଲଚାଲ ସେ ପୂର୍ବରୁ ବୁଝିନେଇଥିଲେ। ବିଦ୍ୟାଳୟ ପ୍ରତି ତାଙ୍କର ପ୍ରୀତିଭାବ ଥିଲା। ବିଦ୍ୟାଳୟର ପୂର୍ବ ଗୌରବ, ପୂର୍ବ ସୁନାମ କିପରି ଫେରାଇ ଅଣାଯାଇ ପାରିବ ସେଥିପ୍ରତି ଯେକୌଣସି ଅଫିସକୁ ସେ ନିର୍ଭୟରେ ପ୍ରବେଶ କରିପାରୁଥିଲେ। ତାଙ୍କର ଚେହେରା, ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ ତାଙ୍କୁ ସାହାଯ୍ୟ କରୁଥିଲା। ଶିକ୍ଷକମାନଙ୍କ ପ୍ରତି ତାଙ୍କର ବ୍ୟବହାର କିପରି ହେବ ଆମେ ପ୍ରଥମେ ଜାଣିପାରି ନଥିଲୁ। ତେବେ ମୁଁ ତ ଜଣେ କର୍ତ୍ତବ୍ୟପରାୟଣ ଶିକ୍ଷକ, କାହିଁକି ଭୟ କରିବି ? ସେତେବେଳେ ଛୁଆପିଲାଙ୍କୁ ଗାଁରେ ରଖି ମୁଁ ଯିବାଆସିବା କରୁଥିଲି। ମୋ ଘର ରାଧାଚରଣପୁର, ଗାଁର ଶେଷମୁଣ୍ଡରେ ଟାଙ୍ଗୀ ଉପରେ ଅବସ୍ଥିତ ଥିବାରୁ ମୋର ବାଳୁତ ଧର୍ମପତ୍ନୀ ଭୟକରିବା ସ୍ୱାଭାବିକ। ତେଣୁ ଜନ୍ମସ୍ଥାନ ଗୋବିନ୍ଦପୁରରୁ ମୋର ଜ୍ୟେଷ୍ଠଭ୍ରାତା ବାବୁ ବାନାମ୍ବର ଆସି ରାତ୍ର କାଳରେ ସେମାନଙ୍କୁ ସୁରକ୍ଷା ଦେଉଥିଲେ। ମୁଁ କିନ୍ତୁ ଠିକ୍ ସମୟରେ ଆସି ସ୍କୁଲରେ ଯୋଗଦେଉଥିଲି। କେହି କେହି କହନ୍ତି ଶିକ୍ଷକମାନେ ଛାତ୍ରଛାତ୍ରୀମାନଙ୍କ ପିତା। ସେ ସେମାନଙ୍କୁ ସତ୍‌ପଥରେ ନେଇଯାʼନ୍ତି। ମୁଁ ପିଲାମାନଙ୍କ ପ୍ରତି କଠୋରତା ଅବଲମ୍ବନ କରେ। କିନ୍ତୁ ସେମାନଙ୍କୁ ସ୍ନେହ ଆଦର ବି କରି ଥାଏ। ''ଲାଳୟେତ୍ ପଞ୍ଚବର୍ଷାଣି, ଦଶବର୍ଷାଣି ତାଡ଼ୟେତ୍'' ନୀତିକୁ ମୁଁ ପଦେ ପଦେ ଅନୁସରଣ କରୁଥିଲି।

ଦିବ୍ୟସିଂହବାବୁ ମୋର ପିତୃ ସମାନ। ମୁଁ ତାଙ୍କୁ ଯଥୋଚିତ ସମ୍ମାନ ପ୍ରଦର୍ଶନ କରେ। ସେ ସବୁ ଶିକ୍ଷକମାନଙ୍କ ଅପେକ୍ଷା ବୟସ୍କ। ତେଣୁ ଶିକ୍ଷକମାନେ ବି ତାଙ୍କୁ ଭକ୍ତି କରନ୍ତି। ଦିବ୍ୟସିଂହବାବୁ ବିଦ୍ୟାଳୟରେ ଯୋଗଦେବାର ପନ୍ଦର କି କୋଡ଼ିଏ ଦିନ ପରେ ସମଗ୍ର ଓଡ଼ିଶାରେ କଲେଜ ଓ ହାଇସ୍କୁଲ ପିଲାମାନେ ସରକାରଙ୍କ ବିରୁଦ୍ଧରେ ଆନ୍ଦୋଳନ ଧର୍ମଘଟ ଚଳାଇଲେ। ଆମ ସ୍କୁଲକୁ ବି ଏହି ଧର୍ମଘଟ ମାଡ଼ି ଆସିଲା। ସେତେବେଳେ

ପୁରୀ ଜିଲ୍ଲାର ଏକମାତ୍ର କଲେଜ ପୁରୀ କଲେଜରୁ ପିଲାମାନେ ଆସି ଖୋରଧା ହାଇସ୍କୁଲ ପିଲାମାନଙ୍କୁ ପ୍ରଭାବିତ କଲେ । ଏକାଦଶ ଶ୍ରେଣୀର ମୋ ସେକ୍‌ସନ୍‌ର ପିଲାମାନେ ଯେତେବେଳେ ଶ୍ରେଣୀରୁ ବାହାରିଯିବାକୁ ପ୍ରସ୍ତୁତ ହେଲେ, ସେତେବେଳେ ମୋର ପ୍ରଚଣ୍ଡ ଧମକରେ ସେମାନେ ଏତେଦୂର ଭୟଭୀତ ହୋଇଗଲେ ଯେ ଶ୍ରେଣୀରେ ଯେଝା ସିଟ୍‌ରେ ବସିପଡ଼ିଲେ ଏବଂ ଧର୍ମଘଟରେ ଯୋଗଦେଇ ପାରିଲେ ନାହିଁ । ସେହିଦିନଠାରୁ ନୂତନ ହେଡମାଷ୍ଟର ମୋର ଦୃଢ଼ତା ଓ ଶୃଙ୍ଖଳାରକ୍ଷାରେ ପ୍ରଶଂସା କରିବାରେ ଲାଗିଲେ । ମୁଁ ବି ଜଣେ ଦୃଢ଼ ଶୃଙ୍ଖଳାରକ୍ଷକ ଥିଲି । ପିଲାମାନଙ୍କଠାରୁ ପଢ଼ାଟି ଉତ୍ତମ ଭାବେ ଆଦାୟ କରୁଥିଲି । ଆବଶ୍ୟକ ପଡ଼ିଲେ ପିଲାମାନଙ୍କୁ ଡିଟେନସନ୍ କ୍ଲାସରେ ରଖି ପଢ଼ା ଆଦାୟକରି ଚାରିଟା ତିରିଶ ମିନିଟ୍‌ରେ ଛାଡୁଥିଲି । ଏହାଦ୍ୱାରା ଭଲ ଫଳ ମିଳୁଥିଲା । ଏଣୁ ଦିବ୍ୟସିଂହବାବୁଙ୍କର ମୋ ପ୍ରତି ବିଶ୍ୱାସ ଓ ଶ୍ରଦ୍ଧା ବଢ଼ିଲା ।

ଗଞ୍ଜାମ ଜିଲ୍ଲାରେ ସେ ଶିକ୍ଷକ ଓ ପ୍ରଧାନ ଶିକ୍ଷକ ରୂପେ ଚାକିରି କରି ବହୁ ଝଡ଼ଝଞ୍ଜା ସହ୍ୟ କରିଛନ୍ତି, ଏପରିକି ଓଡ଼ିଶା ପ୍ରଦେଶ ଗଠନରେ ସେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ ବୋଲି କହନ୍ତି । ଗଞ୍ଜାମ ଜିଲ୍ଲାରେ ତାଙ୍କର ଢେର୍ ସୁନାମ ଥିଲା । ଓଡ଼ିଶା ସମବାୟ ବିଭାଗର ଅବୈତନିକ ଉଚ୍ଚ କର୍ମଚାରୀ ପଦରେ ବରିତ ହୋଇଥିଲେ । କାମ ନ କରେଇ ଛାଡୁ ନଥିଲେ ।

**ଛାତ୍ରାବାସର ପରିଚାଳକ :**

ସେ ନିଜେ ଜାଣନ୍ତି ଛାତ୍ରାବାସ ଶିକ୍ଷାନୁଷ୍ଠାନର ଦର୍ପଣ । ତାହାହିଁ ବିଦ୍ୟାଳୟର ଅନୁରୂପ । ଛାତ୍ରାବାସକୁ ସଜାଡ଼ି ଦେଲେ ବିଦ୍ୟାଳୟ ଆପେ ଆପେ ସଜାଡ଼ି ହୋଇଯିବ । ମୁଁ ୧୯୪୯ ମସିହା ଜୁଲାଇ ମାସରେ ଯେତେବେଳେ ଛାତ୍ରାବାସରୁ ବିଦାୟ ନେଇ ଟ୍ରେନିଂ ପାଇଁ ଛୁଟି ନେଇ ଯାଉଥିଲି ସେତେବେଳେ ଛାତ୍ରାବାସ ପିଲାଙ୍କ ମଧ୍ୟରେ ଶୃଙ୍ଖଳାରେ ଘୋର ବ୍ୟାହତ ହୋଇଥିଲା । କୌଣସି କାରଣରୁ ଦିବ୍ୟସିଂହବାବୁ ଆସିବା ସମୟରେ ଛାତ୍ରାବାସର ଅନ୍ତେବାସୀମାନେ ପରିଚାଳକଙ୍କ ବିରୁଦ୍ଧରେ ବାରମ୍ବାର ସ୍ୱର ଉତ୍ତୋଳନ କରୁଥାନ୍ତି । ଛାତ୍ରାବାସର ଦାୟିତ୍ୱ କିଏ ନେବ ସେ ଚିନ୍ତିତ ଥିଲେ । ମୁଁ ଗ୍ରାମରୁ ଯିବାଆସିବା କରୁଥିଲି । ସେ ଗୋଟିଏ ଶିକ୍ଷକ ସଭା ଡକାଇଲେ । ମାତ୍ର ତାଙ୍କର ମତ ଶିକ୍ଷକମାନଙ୍କୁ ନ ଜଣାଇ ନିଜ ମନଭିତରେ ରଖିଥାନ୍ତି । ସେ ପ୍ରତ୍ୟେକ ଶିକ୍ଷକଙ୍କୁ ପଚାରିଲେ, ମାତ୍ର କେହି ଦାୟିତ୍ୱ ନେବାକୁ ରାଜି ହେଲେ ନାହିଁ । ସେମାନଙ୍କ ଉକ୍ତି, କିଏ ଏତେ ଝମେଲାରେ ପଶୁଛି ହେ ? ଏ ତା ମୁହଁକୁ ସେ ଯା ମୁହଁକୁ ଅନାଇବାରେ

ଲାଗିଲେ । ପ୍ରଧାନ ଶିକ୍ଷକ ବାରମ୍ବାର ପଚାରୁଥାନ୍ତି । ଶେଷରେ ସମସ୍ତେ ସର୍ବାନ୍ତଃକରଣରେ ମୋ ନାଁକୁ ସୁପାରିଶ କଲେ । ମୁଁ ସମସ୍ତଙ୍କ ମତକୁ ସମ୍ମାନ ଜଣାଇଲି । ପ୍ରଧାନ ଶିକ୍ଷକ ମୋତେ ସୁପରିଟେଣ୍ଡେଣ୍ଟ ପଦରେ ନିଯୁକ୍ତି ଦେଲେ । ମୋ ପାଇଁ କୌଣସି କ୍ୱାଟର ନଥିଲା । ତେଣୁ ମୁଁ ଶନିବାର ଅପରାହ୍ନରେ ଗୃହକୁ ଗମନ କରି ସୋମବାର ପୂର୍ବାହ୍ନରେ ବିଦ୍ୟାଳୟରେ ଯୋଗ ଦେଉଥିଲି । ଏହାଦ୍ୱାରା ଛାତ୍ରାବାସର ପିଲାମାନଙ୍କର ବହୁ ଅସୁବିଧା ହେଲା । ଦିବ୍ୟସିଂହବାବୁ ପଶ୍ଚିମ ତରଫରେ ଅବସ୍ଥିତ ମୁସଲମାନ ରୋଷେଇ ଶାଳା ଓ ଭୋଜନଗୃହକୁ ଆବଦ୍ଧ କରି ଏକ କ୍ୱାଟର ଭଳି ଗୃହ କରିଦେଲେ । ମୋତେ ପରାମର୍ଶ ଦେଲେ ସେଠାରେ ପିଲାମାନଙ୍କୁ ଧରି ବାସ କରିବାକୁ । ମୁଁ ୧୯୫୩ ମସିହାଠାରୁ ଆସି ସେଠାରେ ଅବସ୍ଥାନ କଲି । ସେତେବେଳେ ଛାତ୍ରାବାସରେ ମୋଟେ ପଚାଶ ଜଣ ଛାତ୍ର ଥିଲେ ।

ମୁଁ ଛାତ୍ରାବାସରେ ବର୍ଷେ ଦୁଇବର୍ଷ ରହିବା ଭିତରେ ଗୋଟିଏ ଦୁଃସମ୍ବାଦ ଶୁଣିବାକୁ ମିଳିଲା । ସେତେବେଳେ ପୁରୀ ଜିଲ୍ଲା ପାଇଁ ପୁରୀରେ ଏକମାତ୍ର କଲେଜ ଥିଲା । ଆମ ଛାତ୍ରାବାସର ମାଟ୍ରିକ୍ ପାସ୍ କରି ଯେଉଁ ପିଲା ପୁରୀ କଲେଜରେ ଅଧ୍ୟୟନ କରୁଥିଲେ ସେମାନେ ପୁରୀ କଲେଜ ଛାତ୍ରାବାସର ପରିଚାଳକଙ୍କ ସଙ୍ଗେ କଳିଗୋଳ କରି ନାନା ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରୁଥିଲେ । ଖାଲି କଳିଗୋଳ କଲେ ନାହିଁ ତାଠାରୁ ଆହୁରି କଦର୍ଯ୍ୟ କାମ ବି କଲେ । ଏକଥା କାହା କାନରେ ପଡୁ ନପଡୁ ସ୍କୁଲ ହେଡମାଷ୍ଟର ଓ ସୁପରିଟେଣ୍ଡେଣ୍ଟଙ୍କ କାନରେ ପଡ଼ିଲା । ଏହା ବଡ଼ ପରିତାପର ବିଷୟ । ବନ୍ଧି ଜଗବନ୍ଧୁ ବିଦ୍ୟାଧର ହାଇସ୍କୁଲ ନାମରେ କଳଙ୍କ ଲାଗିଯିବ । ଯେ ତ ଗଲେ ଗଲେ, ଏଣିକି ଅନ୍ତେବାସୀମାନଙ୍କ ବ୍ୟବହାରରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ହେଡ୍‌ମାଷ୍ଟର ବାରମ୍ବାର ଛାତ୍ରାବାସକୁ ଆସିଲେ । ପ୍ରତିଥର ଅନ୍ତେବାସୀମାନଙ୍କୁ ସୁପରିଟେଣ୍ଡେଣ୍ଟଙ୍କ ସମ୍ମୁଖରେ ଉପଦେଶ ଦେଲେ । ସୁପରିଟେଣ୍ଡେଣ୍ଟଙ୍କ ତାଙ୍କ ପାରୁପର୍ଯ୍ୟନ୍ତ ପ୍ରତ୍ୟେକ ଦିନ ସାନ୍ଧ୍ୟକାଳୀନ ସଭାରେ ପିଲାମାନଙ୍କ ଚରିତ୍ର ସଂଶୋଧନ ନିମନ୍ତେ ଆନ୍ତରିକ ଚେଷ୍ଟା କଲେ । ଏହିପରି କିଛିଦିନ ଚାଲିବାରୁ ଅନ୍ତେବାସୀମାନଙ୍କର ଚାଲିଚଳନ, ବ୍ୟବହାରରେ ଅସମ୍ଭବ ପ୍ରକାର ପରିବର୍ତ୍ତନ ଆସିଲା । ଦୁଇ ବର୍ଷ ପରେ ପୁନଃ ପୁରୀ କଲେଜ ଅଧ୍ୟାପକମାନଙ୍କଠାରୁ ସୁସମ୍ବାଦ ଆସି ପହଞ୍ଚିଲା । ମୁଁ ଦୀର୍ଘଶ୍ୱାସ ପକାଇଲି ।

**ସେତେବେଳର ଆମ ରାଜ୍ୟର ଚିତ୍ରପଟ :**

୧୯୪୯ ମସିହା ପର୍ଯ୍ୟନ୍ତ ମୟୂରଭଞ୍ଜ ଗଡ଼ଜାତ ଓଡ଼ିଶା ସହିତ ନ ମିଶିବାରୁ ଆମ ହାତରୁ ଷଢ଼େଇକଳା, ଖରସୁଆଁ ଖସିଗଲା । ଏହି ଦୁଇଟି ଓଡ଼ିଆ ରାଜ୍ୟ ବିହାରକୁ ଚାଲିଯିବାରେ ରାଜେନ୍ଦ୍ର ପ୍ରସାଦଙ୍କ ହାତ ରହିଲା ବୋଲି କେହାଏ କହିଲେ । ୧୯୫୦ ମସିହା ଜାନୁଆରୀ ଛବିଶ ତାରିଖରେ ଭାରତ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ର ହେଲା । ୧୯୫୨ ମସିହାରେ ଭାରତ ବର୍ଷରେ ପ୍ରଥମ ସାବାଳକ ଭୋଟରେ ପ୍ରଥମ ସାଧାରଣ ନିର୍ବାଚନ ଆରମ୍ଭ ହେଲା । ନିର୍ବାଚନରେ ଶ୍ରୀ ମାଧବଚନ୍ଦ୍ର ରାଉତରାୟ ଖୋର୍ଦ୍ଧାର ବିଧାୟକ ହୋଇ ଆସିଲେ । ସେ ସରଳ, ନିରୀହ, ନିଷ୍କପଟ, ସାଧୁ ସଙ୍କୋଚ ବ୍ୟକ୍ତି ଥିଲେ । ଏପରି ବ୍ୟକ୍ତି ରାଜନୀତି କ୍ଷେତ୍ରରେ ସଫଳତା ହାସଲ କରିପାରନ୍ତି ନାହିଁ । ସେହି ଚରିତ୍ରର ହେଉଛନ୍ତି ନବକୃଷ୍ଣ ଚଉଧୁରୀ, ମୋହନ ଦାସ, ପବିତ୍ର ମୋହନ ପ୍ରଧାନ, ପ୍ରସନ୍ନ କୁମାର ଦାସ ଓ ଆଉ କେତେଜଣ ।

**ମୋର ଆଦର୍ଶ :**

ଏଣେ ମୋ ପରିଚାଳନାରେ ଅନ୍ତେବାସୀଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ଆଇନ ଶୃଙ୍ଖଳା ଠିକ୍ ଚାଲିଲା । ମୁଁ ସଦ୍ୟ ଟ୍ରେନିଂ କଲେଜରୁ ଫେରିଥାଏ । ନୂଆ ଭାବନା, ନୂଆ ଉନ୍ମାଦନାରେ ଅଧ୍ୟାପନା କାର୍ଯ୍ୟ ଚାଲିଥାଏ ।

ମୁଁ ଜଣେ ଅଧାତ୍ମବାଦୀ ମଣିଷ, ମାତ୍ର ମନ୍ଦିରକୁ ଯାଇ ସେଠାରେ ବହୁ ସମୟ କଟାଏ ନାହିଁ । ମୋର କର୍ତ୍ତବ୍ୟ ସମ୍ପାଦନକୁ ମୁଁ ଭଗବାନ ବୋଲି ମନେକରେ । ମୁଁ ନାସ୍ତିକ ନୁହେଁ । ଗୃହ ଚାଳଇବାକୁ ଯଦି ଜଣେ ଚାଳକ ଥାଏ ତେବେ ଏ ବିରାଟ ବିଶ୍ୱରୂପକ ଗୃହକୁ ଚଲେଇବାକୁ ଜଣେ କେହି ଅଛନ୍ତି । ମୁଁ ଭଗବାନଙ୍କର ସତ୍ତା ପ୍ରତ୍ୟେକ ବସ୍ତୁରେ ଅନୁଭବ କରେ । ସତ୍‌କର୍ମ କରିବା, ସତ୍‌ସଙ୍ଗ କରିବା, ହୃଦୟ ନିର୍ମଳ ରଖିବା, ପରଶ୍ରୀକାତର ନହେବା ଇତ୍ୟାଦି ମନୁଷ୍ୟର ଧର୍ମ । ଏ ବିରାଟ ବିଶ୍ୱରେ କେହି ଛୋଟ, କେହି ବଡ଼ ନୁହଁନ୍ତି । କର୍ମଦ୍ୱାରା ମନୁଷ୍ୟ ଛୋଟ ବଡ଼ ହୁଏ । ପ୍ରତ୍ୟେକ ମନୁଷ୍ୟ ମାନବ ହେବା ବାଞ୍ଛନୀୟ । ମୁଁ ପୂଜାବିଧି ବ୍ରତ କିଛି ପାଳନ କରେ ନାହିଁ । ସେ ସବୁ ଗୋଟିଏ ପ୍ରହସନ ବୋଲି ମୋର ମତ । କିନ୍ତୁ ଦିବ୍ୟସିଂହବାବୁ ବହୁ ସମୟରେ ବାବାଜୀ ସନ୍ୟାସୀମାନଙ୍କୁ ଘରେ ଆଶ୍ରୟ ଦିଅନ୍ତି, ତାଙ୍କ ପାଇଁ ବି ଖର୍ଚ୍ଚ କରନ୍ତି । ମୋର ଚଳିବାକୁ ଦରମା ଅଣ୍ଟେନାହିଁ, ବାବାଜୀଙ୍କୁ ପାଳିବି କେତେବେଳେ ?

ଯାହାହେଉ ପଞ୍ଚାବନ ବର୍ଷ ବୟସରେ ଦିବ୍ୟସିଂହବାବୁ ଆସିଲେ ମଧ୍ୟ ଅଧାପନା କାର୍ଯ୍ୟରେ ଖୁବ୍ ମନ ଦେଲେ । ପିଲାମାନଙ୍କୁ ଖେଳରେ ତାଲିମ୍

କରାଇଲେ । ସେ ପୃଥୁଳାକାୟ ଶରୀର ଧାରଣ କରିଥିଲେ ମଧ୍ୟ ଆଳସ୍ୟପରାୟଣ ନଥିଲେ । ନିଜ ବାଡ଼ିବଗିଚାରେ ଦୈହିକ ପରିଶ୍ରମ କରି ଋତୁକାଳୀନ ପନିପରିବା ଉତ୍ପାଦନ କରୁଥିଲେ । ମୁଁ ବି ତାଙ୍କର ନୀତି ଅନୁସରଣ କଲି ।

**ପୁନଃ କୋଣାର୍କ ଭ୍ରମଣ :**

୧୯୫୨ ମସିହା ଫେବୃଆରୀ ମାସରେ କେତେଜଣ ସ୍କୁଲପିଲାଙ୍କୁ ସାଙ୍ଗରେ ଧରି ସ୍କୁଲ ତରଫରୁ କାରୁକାର୍ଯ୍ୟମୟ କୋଣାର୍କ ମନ୍ଦିର ପରିଦର୍ଶନରେ ଯାତ୍ରାକଲି । ଦିବ୍ୟସିଂହବାବୁ ମୋ ସହିତ ଯାତ୍ରା କରିଥିଲେ ଏହି ଭ୍ରମଣ ଅତ୍ୟନ୍ତ ଆନନ୍ଦଦାୟକ ହୋଇଥାନ୍ତା । ତାଙ୍କ ବଡ଼ପଅ ସୁରସିଂହ ବାବୁ ଆମ୍ଭମାନଙ୍କର ସାଥି ହେଲେ । ଆମ୍ଭେମାନେ ପ୍ରତ୍ୟୁଷରେ ଗୃହ ତ୍ୟାଗକରି ରେଳ ଯୋଗେ ପୁରୀ, ସେଠାରୁ ନୂଆନଈ ପର୍ଯ୍ୟନ୍ତ ମଟର କାରରେ ଏବଂ ସେଠାରୁ ବାର କି ତେର ମାଇଲ ପଦବ୍ରଜରେ ଘଞ୍ଚ ଝାଉଁ ଜଙ୍ଗଲ ଦେଇ ଲିଆଖିଆଠାରେ ପ୍ରବେଶ କଲୁ । ଚାଲିବା ମୋ ପକ୍ଷେ କଷ୍ଟକର ହେଲେ ମଧ୍ୟ ପିଲାମାନଙ୍କ ସହିତ ତାଳଦେଇ ଯିବାକୁ ପଡ଼ିଲା । ନିକଟବର୍ତ୍ତୀ କୁଶଭଦ୍ରା ନଦୀରେ କୌତୂହଳବଶତଃ ଛାତ୍ରମାନେ ନୌକାବିହାରରେ ମାତିଥିଲା ବେଳେ ଏଣେ ରନ୍ଧାରନ୍ଧି କାମ ଶେଷ ହେଲା । ରନ୍ଧାରନ୍ଧି କାମ ନଟ୍ (ପିଥନ) ବାୟିତ୍ୱରେ ସମାହିତ ହେଲା । ପାନଭୋଜନ ପରେ ଅପରାହ୍ଣ ତିନିଟା ବେଳକୁ କୋଣାର୍କ ଅଭିମୁଖେ ଯାତ୍ରାକଲୁ । ପଥପ୍ରାନ୍ତରେ ବହିଖିଆ ଗ୍ରାମଠାରେ ସମସ୍ତେ ମନମୁତାବକ ଦହି ପିଇ ମରୁପ୍ରାନ୍ତର ଦେଇ ଅଗ୍ରସର ହେଲୁ । ବେଳ ରତରତ ବେଳକୁ ସମସ୍ତେ ଜବାହରଲାଲ୍ ଡାକବଙ୍ଗଳାରେ ପ୍ରବେଶ କରି ରାତ୍ରିଯାପନ କଲୁ । ବାଳକମାନେ ସାଙ୍ଗରେ ଚୁଡ଼ା ନେଇଥିଲେ, ମାତ୍ର ଗୁଡ଼ର ଆବଶ୍ୟକତା ପଡ଼ିଲା । ଗୁଡ଼ ଆଣିବା ପାଇଁ ଦୁଇ ମାଇଲ ଦୂରବର୍ତ୍ତୀ ଗ୍ରାମକୁ ପିଲାମାନେ ଗଲେ । ସେଠାରେ ଗୁଡ଼ ତ ମିଳିଲା ନାହିଁ, ନିଅଟା ବେଳକୁ ସେମାନେ ଖାଲି ହାତରେ ଫେରି କହିଲେ, ''ସାର୍ ଆମ୍ଭମାନଙ୍କୁ ଭୂଆଁ ବୁଲେଇଲା'' । ସେଦିନ ରାତ୍ରିରେ କେବଳ ଚୁଡ଼ା ଖାଇ କ୍ଷୁଧାନିବାରଣ କଲୁ । ତହିଁ ପରଦିନ ପ୍ରତ୍ୟୁଷରେ ବେଳାଭୂମିରେ ବହୁ ପ୍ରତୀକ୍ଷିତ ସୂର୍ଯ୍ୟୋଦୟ ଅବଲୋକନ କରି ଦିନ ବାରଟା ପର୍ଯ୍ୟନ୍ତ କୋଣାର୍କର ଦିବ୍ୟରୂପ ସନ୍ଦର୍ଶନ କରି ସର୍ଭିସ ବସ୍ ଯୋଗେ ଅପରାହ୍ଣ ତିନିଟାରେ ନୂତନ ନଗରୀ ଭୁବନେଶ୍ୱର ଅଭିମୁଖେ ଯାତ୍ରାକଲୁ । ଭଞ୍ଜମଧୁ ବିଦ୍ୟାପୀଠର ବରିଷ୍ଠ ଶିକ୍ଷକ ମୋର ବାଲ୍ୟଗୁରୁ, ପିତୃବନ୍ଧୁ, ଜୀବନର ସହାୟକ ବାବୁ ଶ୍ରୀ ଅଦ୍ୱୈତାନନ୍ଦ ଚମ୍ପତିରାୟ ରାତ୍ରିଭୋଜନରେ ଆମ ସମସ୍ତଙ୍କୁ ଆପ୍ୟାୟିତ

କଲେ । ସେଦିନ ଜାଗର ଉତ୍ସବ ଥିଲା । ଲିଙ୍ଗରାଜ ମନ୍ଦିର ଏକ ପ୍ରସିଦ୍ଧ ଶୈବପୀଠ । ଆମ୍ଭେମାନେ ମନ୍ଦିର ପରିସରରେ ରାତ୍ରି କଟେଇ ଶେଷ ଯାମରେ ରେଳଷ୍ଟେସନରେ ଉପସ୍ଥିତ ହେଲୁ । ସହଯାତ୍ରୀମାନଙ୍କୁ ଉତ୍ତମ ମାର୍ଗରେ ପରିଚାଳନା କରିଥିବାରୁ ମନରେ ଆନନ୍ଦ ଜାତ ହେଲା । ତହିଁ ପରଦିନ ଠିକ୍ ଦଶଟା ତିରିଶ ମିନିଟ୍‌ରେ ପୁନଃ ସ୍କୁଲରେ ଯୋଗଦେଲୁ ।

## ଦେଶର ପ୍ରଥମ ସାଧାରଣ ନିର୍ବାଚନ :

୧୯୫୨ ମସିହା ସାବାଳକ ଭୋଟ ପ୍ରଥା ଅନୁଯାୟୀ ପ୍ରଥମ ସାଧାରଣ ନିର୍ବାଚନ ଆୟୋଜିତ ହେଲା । ବ୍ରିଟିଶ ସରକାର ଅମଳରେ ସମସ୍ତେ ଭୋଟଦେବାର ବିଧି ନଥିଲା । ଯେଉଁମାନେ ମାଟ୍ରିକ ପାସ୍ କରିଥିବେ ଓ ଯେଉଁମାନଙ୍କର ନିର୍ଦ୍ଦିଷ୍ଟ ପରିମାଣର ଜମିବାଡ଼ି ଥିବ ସେମାନେ କେବଳ ଭୋଟ ଦେଇପାରୁଥିଲେ । ଏଣିକି ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଏକୋଇଶ ବର୍ଷ ବୟସ୍କ ଓ ବୟସ୍କା ପୁରୁଷ ଓ ସ୍ତ୍ରୀ ସମସ୍ତେ ଭୋଟ ଦେଲେ । କେତେକ ରାଜନୀତିକ ଦଳର ଲୋକେ ପଣ୍ଡିତ ନେହୃରୁଙ୍କୁ ସମାଲୋଚନା କଲେ । ସେମାନେ ଯୁକ୍ତି କଲେ ପଣ୍ଡିତ ନେହୃରୁ ଅଗଣିତ ନିରକ୍ଷର ଲୋକଙ୍କୁ ତାଙ୍କ ଦଳକୁ ଭୋଟ ଦେବାକୁ ଟାଣିନେବେ । କିନ୍ତୁ ସାବାଳକ ଭୋଟ ଧନୀ ନିର୍ଦ୍ଧନ, ପାଠୁଆ ଅପାଠୁଆ, ଜ୍ଞାନୀ ଅଜ୍ଞାନ ପ୍ରତ୍ୟେକଙ୍କୁ ଭୋଟ ଅଧିକାର କ୍ଷମତା ପ୍ରଦାନ କରେ । ଏବେ ପନ୍ଦର ବର୍ଷ ତଳେ ରାଜୀବ ଗାନ୍ଧୀଙ୍କ ପ୍ରଧାନମନ୍ତ୍ରିତ୍ୱ ସମୟରେ ଭୋଟ ଦେବା ଅଧିକାର ଅଠର ବର୍ଷକୁ ଖସି ଆସିଛି । ଅଠରବର୍ଷ ଯୁବକର ମସ୍ତିଷ ପରିପକ୍ୱ ହୋଇନଥାଏ । ତେଣୁ ଏହା ଏକ ଭୁଲ ପନ୍ଥା ବୋଲି ମୋର ଦୃଢ଼ ମତ ।

ମାଧବବାବୁ ଖୋରଧାର ବିଧାୟକ ଥିଲାବେଳେ ଓଡ଼ିଶା ସରକାର ଓଡ଼ିଶା ହିଷ୍ଟୋରିକାଲ ଜର୍ଣ୍ଣାଲ ଛପାଉଥିଲେ । ଉକ୍ତ ଜର୍ଣ୍ଣାଲରେ ବହୁ ଐତିହାସିକ ଉପାଦେୟ ପ୍ରବନ୍ଧ ଇଂରାଜୀରେ ପ୍ରକାଶିତ ହେଉଥିଲା । ଏହା ଗୋଟିଏ ଉତ୍ତମ ପତ୍ରିକା । ଏହାର ଉପାଦେୟତା ଅନୁଭବ କରି ମାଧବବାବୁ ତାଙ୍କ କପିଟି ଖୋର୍ଦ୍ଧା ହାଇସ୍କୁଲକୁ ପଠାଇ ଦେଉଥିଲେ । ମାଧବବାବୁ ପରି ସଚ୍ଚୋଟ ବିଧାୟକ କମ୍ ଦେଖାଯାଆନ୍ତି । ବର୍ତ୍ତମାନର ବିଧାୟକ ବା ସାଂସଦମାନଙ୍କ କାର୍ଯ୍ୟକଳାପ ପ୍ରତି ଦୃଷ୍ଟି ନିକ୍ଷେପ କଲେ ହତାଶ ହେବାକୁ ପଡ଼େ ।

ମହତାବବାବୁ କେନ୍ଦ୍ରରେ ମନ୍ତ୍ରୀ ହୋଇଯିବା ପରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଜଣେ ଦେଶସେବକ

ଥିଲେ । ସେ କର୍ତ୍ତବ୍ୟପରାୟଣ, ସାଧୁ ଓ ସଚ୍ଚୋଟ ବ୍ୟକ୍ତି ଥିଲେ । ଯେତେଦୂର ମନେପଡୁଛି ୧୯୫୪ ମସିହା ଏପ୍ରିଲ ୨୩ ତାରିଖରେ ସରକାରୀ ସ୍ତରରେ ଓଡ଼ିଆ ଭାଷାକୁ ପ୍ରଚଳନ କରାଯିବାକୁ ସେ ନିୟମ କଲେ ଏବଂ ଆଦେଶ ପତ୍ର ପଠାଇଲେ । ସେହିଦିନଠାରୁ ଆମ୍ଭେମାନେ ଆମ ବିଦ୍ୟାଳୟରେ ଓଡ଼ିଆ ଭାଷାକୁ ପ୍ରାଧାନ୍ୟ ଦେଲୁ । ପିଲାମାନେ ଓଡ଼ିଆରେ ଦରଖାସ୍ତମାନ ଦେଲେ । ଦିବ୍ୟସିଂହବାବୁ ପିଲାଙ୍କ ନୋଟିସ୍ ଓଡ଼ିଆରେ ଲେଖିଲେ ଏହାଫଳରେ ଇଂରାଜୀରେ ପିଲାମାନଙ୍କର ଜ୍ଞାନ ସାମାନ୍ୟ କମିଗଲା ।

**ରନ୍ତଲେଇର ନେପାଳୀବାବା :**

ଏହି ସମୟରେ ଅନୁଗୁଳର ରନ୍ତଲେଇଠାରେ ନେପାଳୀବାବା ନାମକ ଏକ କିଶୋର ବାବାଙ୍କର ଆବିର୍ଭାବ ହେଲା । ନେପାଳୀବାବା ଝୁଲାମୁଣିରେ ହାତ ପୂରାଇ ଲୋକଙ୍କୁ ଯେଉଁ ବିଭୂତି ପ୍ରଦାନ କରୁଥିଲେ ସେଥିରେ ସର୍ବ ରୋଗ ଆରୋଗ୍ୟ ହେଉଥିଲା ବୋଲି ପ୍ରଚାର ହେଲା । ପ୍ରଚାରକର ଅଭାବ ନଥାଏ । 'ତୁଣ୍ଡ ବାଇଦ ସହସ୍ରକୋଶ ।' ଅପପ୍ରଚାର ଏପରି ଜୋରସୋରରେ ଚାଲିଲା ଯେ ଭାରତର ଅର୍ଦ୍ଧେକ ଅଞ୍ଚଳରେ ତାହା ନିନାଦିତ ହେଲା । ରାଜ୍ୟ ଓ ରାଜ୍ୟ ବାହାରୁ ଦୂରଦୂରାନ୍ତରରୁ ହଜାର ହଜାର ବିଭିନ୍ନ ରୋଗୀ ସେଠାକୁ ଛୁଟିଲେ । ଲୋକେ ଯେତେ ପାଠୁଆ ହେଲେ କ'ଣ ହେବ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୁଅନ୍ତି । ଏବେ ଏକବିଂଶ ଶତାବ୍ଦୀରେ ମଧ୍ୟ ରୋଗ ନିରାକରଣ ପାଇଁ ପଶୁବଳି ଦିଆଯାଉଛି । ଏ ପ୍ରଚାରରେ ପାଠୁଆ ଅପାଠୁଆ ସମସ୍ତେ ମାତିଗଲେ । ଶଗଡ଼, ମଟର, ଟ୍ରକ୍ ଓ ରେଳପଥରେ ହଜାର ହଜାର ରୋଗୀ, ବନ୍ଧୁ ପରିଜନସହ ଆସି କ୍ଷୁଦ୍ର ଗ୍ରାମ ରନ୍ତଲେଇରେ ରୁଣ୍ଡହେଲେ । ଅଗଣିତ ଲୋକଙ୍କର ସମାବେଶ ହେଲା । ଏତେ ଲୋକ ରହିବେ କେଉଁଠି, ଖାଇବେ କ'ଣ ? ରୋଗ ଭଲକରିବାକୁ ଆସି ନୂତନ ରୋଗ ଭୋଗକଲେ । ସରକାରଙ୍କ ନିଦ ଏପର୍ଯ୍ୟନ୍ତ ଭାଙ୍ଗିନଥିଲା । ଯେତେବେଳେ 'ନେଡ଼ିଗୁଡ଼ କହୁଣିକୁ ବୋହିଗଲା' ସେତେବେଳକୁ ରାଜ୍ୟ ସରକାରଙ୍କର ଚେତା ପଶିଲା । ଖାଦ୍ୟପେୟ ଦୂଷିତ ହେବାରୁ ଧରିଲା ମହାମାରୀ । ରୋଗୀ ନୀରୋଗ ହଜାର ହଜାର ଟଳି ପଡ଼ିଲେ । ଚାରିଆଡ଼େ ହାହାକର ପଡ଼ିଗଲା । ବିଳମ୍ବରେ ହେଲେ ମଧ୍ୟ ସରକାରୀ କଳ ତତ୍ପର ହେଲା । ନେପାଳୀବାବାଙ୍କୁ ଗିରଫ କରାଗଲା । ହଇଚ୍ଚାକୁ ଦମନ କରାଗଲା, ଅନ୍ଧବିଶ୍ୱାସର ବିଲୋପ ଘଟିଲା । ଓଡ଼ିଶା ଏକ ପ୍ରଳୟରୁ ରକ୍ଷା ପାଇଗଲା ।

**ଜଣେ ବନ୍ଧୁଙ୍କ ଦୁର୍ଦ୍ଦଶା :**

ଦଧିମାଛଗାଡ଼ିଆର ମୋର ଜଣେ ବନ୍ଧୁ ମାଇନର ସ୍କୁଲ ହେଡମାଷ୍ଟର ବାବୁ ପ୍ରଫୁଲ୍ଲ କୁମାର ପଟ୍ଟନାୟକ ନିଜର କଲିକ୍ ରୋଗ ଭଲ କରିବା ପାଇଁ ରନ୍ତଲେଇ ଯାତ୍ରା

କରିଥିଲେ । ସେ ଶିକ୍ଷିତ ଲୋକ ହୋଇ ଏଥିରେ ଭଳିଗଲେ କିପରି ? ତେବେ ବହୁ ଶିକ୍ଷିତ ତ ଯାଇଥିଲେ ସେ ବା କାହିଁକି ନଯିବେ ? ଯେଉଁଦିନ ଫେରିଲେ ମୁଁ ତାଙ୍କୁ ପଚାରିଲି, 'ପେଟ କିପରି ଅଛି ?' ସେ କହିଲେ ମୁରଲୀବାବୁ, 'ଓଃ ଅଦ୍ଭୁତ ଭାବରେ ଭଲ ହୋଇଯାଇଛି ।' ମୁଁ ତାଙ୍କୁ ମୁହୂର୍ତ୍ତେ ଚାହିଁରହିଲି । କିଛି ଦିନ ଗଲା । ବୋଧହୁଏ ମାସେ ବା ଦୁଇମାସ ପରେ ତାଙ୍କୁ ପୁଣି ପଚାରିଲି, 'ପ୍ରଫୁଲ୍ଲବାବୁ ! ପେଟ କିପରି ଅଛି ?' ସେ ମୁହଁକୁ ଆମିଳାଇ ଦେଇ କହିଲେ 'ନାହିଁ ହୋ ସାରେ, ଯେପରି ପେଟ ମାରୁଥିଲା ସେହିପରି ମାରୁଛି ।' ଏଥିରୁ ଜଣାପଡ଼ିଲା ରୋଗୀମାନେ ମାନସାତ୍ତ୍ୱିକ ଦୃଷ୍ଟିକୋଣରୁ ଭଲ ହୋଇଯାଉଥିଲେ । ପ୍ରଫୁଲ୍ଲବାବୁଙ୍କ ପରି ବହୁଲୋକ ଥିବେ । ମନୁଷ୍ୟ ଯେତେବେଳେ ସବୁଆଡ଼ୁ ନିରାଶ ହୁଏ ସେ ଏପରି ବିଶ୍ୱାସର ବଶୀଭୂତ ହୁଏ ।

**ଦିବ୍ୟସିଂହବାବୁଙ୍କ ମୋ କାର୍ଯ୍ୟକଳାପ ପ୍ରତି ଅନୁଧ୍ୟାନ ଏବଂ ପିଲାଙ୍କ ପାଇଁ ସୁବିଧା ପ୍ରଦାନ :**

ଦିବ୍ୟସିଂହବାବୁ ମଝିରେ ମଝିରେ ଛାତ୍ରାବାସକୁ ଆସନ୍ତି ମୋର କାର୍ଯ୍ୟକଳାପକୁ ଅନୁଧ୍ୟାନ କରିବା ପାଇଁ । ଏଥିମଧ୍ୟରେ ଛାତ୍ରାବାସର ଅନ୍ତେବାସୀଙ୍କ ସଂଖ୍ୟା ବୃଦ୍ଧି ହେଲାଣି । ମୋର କଠୋର ପଦକ୍ଷେପରେ ପାଠପଢ଼ା ବାୟୁମଣ୍ଡଳ ସୃଷ୍ଟି ହେଲାଣି । ଛାତ୍ରାବାସର ସୁନାମ ବୃଦ୍ଧି ହେବାରେ ଲାଗିଛି । ଏପରି ଗୋଟିଏ ବୃହତ୍ ଛାତ୍ରାବାସ ପାଇଁ କମନ ରୁମ୍, ପୁସ୍ତକାଗାର, ସିକ୍‌ରୁମ୍, ପରିଚାଳିକଙ୍କ ପାଇଁ ଅଫିସ ରୁମ୍ ଥିଲା । ଏତଦ୍‌ବ୍ୟତୀତ ପ୍ରତ୍ୟେକ ଛାତ୍ରକୁ ଗୋଟିଏ ଖଟ, ଗୋଟିଏ କାଠ ଟେବୁଲ୍, ପୁସ୍ତକ ରଖିବାପାଇଁ ଗୋଟିଏ କାଠ ସେଲଫ୍ ଏବଂ ବସିବାପାଇଁ ଗୋଟିଏ ଷ୍ଟୁଲ ଯୋଗାଇ ଦିଆଯାଉଥିଲା । ମଶାରି ବାନ୍ଧିବା ପାଇଁ ଉପଯୁକ୍ତ ବ୍ୟବସ୍ଥା କରାଯାଇଥିଲା । ସିକ୍‌ରୁମ୍ ପାଇଁ ୟୁରିନ କ୍ୟାନ୍, ବେଡ୍‌ପ୍ୟାନ ପ୍ରଭୃତି ବହୁ ଦ୍ରବ୍ୟ ଥିଲା । ଖୋର୍ଦ୍ଧା ହସପିଟାଲର ବଡ଼ଡାକ୍ତର ସପ୍ତାହକେ ଥରେ ଛାତ୍ରାବାସ ପରିଦର୍ଶନ କରୁଥିଲେ ଏବଂ ପରିବେଶ ନିର୍ମଳ ରକ୍ଷା କରିବା ପାଇଁ ଆବଶ୍ୟକ ଉପଦେଶ ପ୍ରଦାନ କରୁଥିଲେ ।

ଛାତ୍ରାବାସର ପୁସ୍ତକାଗାର ଡାକ୍ତର ନିଧିବାବୁଙ୍କ ସମୟରୁ ନାନା କିସମର ପୁସ୍ତକଦ୍ୱାରା ସମୃଦ୍ଧ ହୋଇଥିଲା । ମୁଁ ପରିଚାଳକ ହେବାପରେ ନାନା ମଣିଷଗଢ଼ିବା ବହି ମଗାଇଲି । ମହାପୁରୁଷମାନଙ୍କ ଜୀବନୀପାଠ ସେମାନଙ୍କୁ ଠିକ୍ ପଥରେ ପରିଚାଳିତ କରାଇବ, ସେମାନଙ୍କ ମନରେ ଜାତୀୟ ଚେତନା ଜାଗ୍ରତ କରିବ । ମହାପୁରୁଷମାନେ ଶାନ୍ତିର ଅଗ୍ରଦୂତ । ସଦ୍‌ଗ୍ରନ୍ଥ ପାଠଦ୍ୱାରା ନୂତନ ଦିଗ୍‌ଦର୍ଶନ ମିଳିଥାଏ । ତେଣୁ ଯଥୋଚିତ

କେତେକ ଜୀବନୀ ପୁସ୍ତକ ଓ ବିଜ୍ଞାନ ପୁସ୍ତକ ମଗାଇଲି । ଛାତ୍ରମାନେ କିପରି ସୁମଣିଷ ହୋଇ ଦେଶର, ଜାତିର ଉପକାର କରିବେ ଏହାହିଁ ମୋର କଳ୍ପନା ଥିଲା । କିନ୍ତୁ ୧୯୯୫ ମସିହାରେ ଖୋର୍ଦ୍ଧା ହାଇସ୍କୁଲ ଛାତ୍ରାବାସ ଜିଲ୍ଲାପାଳ ଅଫିସ ହେବାରୁ ଏସବୁ ମୂଲ୍ୟବାନ ଜିନିଷର ଅବସ୍ଥା କ'ଣ ହେଲା ? ସେଗୁଡ଼ିକ କୁଆଡ଼େ ଗଲା ସେ ବିଷୟରେ କାହାର ନଜର ଅଛି କି ?

ଶିକ୍ଷା ବିକାଶ ତଳଶ୍ରେଣୀ ଲୋକମାନଙ୍କ ନିକଟକୁ କିପରି ଯିବ ସେଥିପାଇଁ ପ୍ରଧାନ ଶିକ୍ଷକ ଓ ମୋ ଚିନ୍ତାଧାରା ସମାନ ଥିଲା । ସେ ମୋତେ ସାଙ୍ଗରେ ନେଇ ନିକଟସ୍ଥ ଘାସି (ବାଉରି) ସାହି ଭିତରକୁ କେତେଥର ଯାଇଛନ୍ତି । ସେମାନଙ୍କ ପିଲାମାନଙ୍କୁ ଆମ୍ଭେ ପାଠ ପଢ଼ାଇବା ପାଇଁ ଅଭିଭାବକମାନଙ୍କୁ ପ୍ରଭାବିତ କରିଛୁ । ବହୁ ଚେଷ୍ଟାରେ ନିତ୍ୟାନନ୍ଦ ବେହେରା ନାମକ ଗୋଟିଏ ପିଲାକୁ ବିଦ୍ୟାଳୟକୁ ଆଣି ପାରିଥିଲୁ । ସେ ମାଟ୍ରିକ ପର୍ଯ୍ୟନ୍ତ ଯାଇପାରିଲା ନାହିଁ ସତ ମାତ୍ର ପରେ ପ୍ରାଣନାଥ କଲେଜରେ କ୍ଷୀରୋଦ ବାବୁଙ୍କ ଦୟାରୁ ଚାକିରି ଖଣ୍ଡିଏ ପାଇଲା । ଏବେ ସେ ତା ପୁଅକୁ ସାହିର ପ୍ରଥମ ଗ୍ରାଜୁଏଟ୍ କରିଛି । ତାଙ୍କ ଘର ସାହିର ପ୍ରଥମ ପଢ଼ୁଆ ଘର । ଦିବ୍ୟସିଂହବାବୁ ନାହାଁନ୍ତି । ସେ ଥିଲେ ବହୁତ ଖୁସି ହୋଇଥାନ୍ତେ ।

ସେତେବେଳେ ଶିକ୍ଷାନୁଷ୍ଠାନର ରଜତ ଜୁବୁଲି, ସୁବର୍ଣ୍ଣ କି ହୀରକ ଜୁବୁଲି ପାଳନ ହେବାର ବିଧି ନଥିଲା କି ଲୋକମାନଙ୍କ ମନକୁ ଏ ଚିନ୍ତାଧାରା ଆସିନଥିଲା । ୧୯୪୬ ମସିହାରେ ଖୋର୍ଦ୍ଧା ହାଇସ୍କୁଲର ସୁବର୍ଣ୍ଣ ଜୟନ୍ତୀ କି ୧୯୫୬ ମସିହାରେ ହୀରକ ଜୟନ୍ତୀ ପାଳିତ ହୋଇ ନଥିଲା । ଏପରିକି ଜାତୀୟ ଗୌରବ ମଧୁସୂଦନଙ୍କ ଜନ୍ମ ଶତବାର୍ଷିକୀ ପାଳିତ ହେଉ ନଥିଲା । ପୁରୀ ଜିଲ୍ଲା ସ୍କୁଲର ଶତବାର୍ଷିକୀ ଠିକ୍ ସମୟରେ ପାଳିତ ନହୋଇ ୨୦ ବର୍ଷ ପରେ ୧୯୭୭ ମସିହାରେ ପାଳିତ ହୋଇଥିଲା । କଟକ କଲେଜିଏଟ୍ ବା ପି.ଏମ୍. ଏକାଡ଼େମୀ ଅବସ୍ଥା ସେହିପରି । ବାଙ୍କନିଧି ବାବୁ ତ ପ୍ରବୀଣ ହେଡ୍‌ମାଷ୍ଟର ଥିଲେ ଏବଂ ଏକାଡ଼େମୀର ହେଡ୍‌ମାଷ୍ଟର ବସନ୍ତବାବୁ ମଧ୍ୟ ସେହିପରି ଯୋଗ୍ୟ । ସେ କିନ୍ତୁ ଏସବୁ ପାଳନ କରିନଥିଲେ କାହିଁକି ?

**ବୃକ୍ଷରୋପଣ :**

ଯେତେଦୂର ମନେପଡୁଛି ୧୯୫୩ ମସିହାରେ ବିଦ୍ୟାଳୟର ବିସ୍ତୀର୍ଣ୍ଣ ପ୍ରାନ୍ତରର ଚତୁଃପାର୍ଶ୍ୱ ବାଡ଼ କଡ଼େ କଡ଼େ ପ୍ରାୟ ଏକଶତ ଶାଗୁଆନ ବୃକ୍ଷ ଛାତ୍ରମାନଙ୍କ ସାହାଯ୍ୟରେ ରୋପଣ କଲୁ । କାଳକ୍ରମେ ସେଥିରୁ କେତେକ ବୃକ୍ଷ କାଟି ନିଆ ଗଲାଣି, କେତେକ

ବାତ୍ୟାରେ ମୂଳୋତ୍ପାଟିତ ହୋଇଛି । ସେହି ମୂଲ୍ୟବାନ ବୃକ୍ଷଗୁଡ଼ିକ କିଏ ନେଲା ସେ କଥା କିଏ କହିବ ।

**ହାଇସ୍କୁଲ ଓ ଛାତ୍ରାବାସର ନୂତନ ନାମ :**

ଖୋର୍ଦ୍ଧା ହାଇସ୍କୁଲ ବକ୍ସି ଜଗବନ୍ଧୁଙ୍କ ନାମରେ ନାମିତ ହେବାରୁ ମୁଁ ଛାତ୍ରାବାସର ପରିଚାଳକ ଥିବାବେଳେ ଛାତ୍ରାବାସର ନାମ ଜୁବୁଲି ଛାତ୍ରାବାସରୁ ବଦଳାଇ ଜୟୀରାଜଗୁରୁ ଛାତ୍ରାବାସ ନାମରେ ନାମିତ କଲି । ବକ୍ସି ଜଗବନ୍ଧୁ ଗଜପତି ମହାରାଜାଙ୍କର ମୁଖ୍ୟ ସେନାପତି ଥିଲେ । ସେ ବ୍ରିଟିଶ ବିରୁଦ୍ଧରେ ଖଣ୍ଡା ତରବାରି, ନଳୀ ବନ୍ଧୁକ ସାହାଯ୍ୟରେ ବିକ୍ଷିପ୍ତ ପାଇକ ସୈନିକମାନଙ୍କୁ ସାଙ୍ଗରେ ନେଇ ଦୀର୍ଘ ୮ ବର୍ଷକାଳ ଯେଉଁ ଭୟଙ୍କର ଯୁଦ୍ଧ ପରିଚାଳନା କରିଥିଲେ ଭାରତ ଇତିହାସରେ ତାର ପଟାନ୍ତର ନାହିଁ । ଅବସ୍ଥା ଏପରି ହେଲା ଯେ ଦୁର୍ଦ୍ଧାନ୍ତ ବ୍ରିଟିଶ ସରକାର ତାଙ୍କ ସହିତ ସାଲିଶ କରିବାକୁ ବାଧ ହୋଇଥିଲା । ସେହିପରି ଖୋର୍ଦ୍ଧା ଗଜପତିଙ୍କର ସୁଦକ୍ଷ, ସ୍ୱାଧୀନଚେତା, ବିଚକ୍ଷଣ ପ୍ରଧାନମନ୍ତ୍ରୀ ଶ୍ରୀ ଜୟକୃଷ୍ଣ ରାଜଗୁରୁ ମାହାପାତ୍ର ବିଦେଶୀ ସରକାର ପାଖେ ଯୁଦ୍ଧରେ ହାର ନମାନି ବଜ୍ରଗମ୍ଭୀର ସ୍ୱରରେ ଦୃପ୍ତକଣ୍ଠରେ ଯେଉଁ ଅନମନୀୟ ଇଚ୍ଛାଶକ୍ତି ପ୍ରକାଶ କଲେ ଗୋରା ବେପାରୀଗଣ ସମ୍ଭାଳି ପାରିଲେ ନାହିଁ । ତେଣୁ ଦୁଇଡ଼ାଳରେ ତାଙ୍କ ଗୋଡ଼ ଦୁଇଟିକୁ ବାନ୍ଧିଦେଇ ଯେପରି ଅମାନୁଷିକ ଭାବରେ ଜୀବନ ନେଲେ ଏହାଠାରୁ ବଳି କଳଙ୍କମୟ ଅଧ୍ୟାୟ ବ୍ରିଟିଶରାଜରେ ଆଉ କ'ଣ ହୋଇପାରେ ? ଏହା ୧୮୦୫ ମସିହା ଘଟଣା । ତେଣୁ ଏହି ମହାନ୍ ଦେଶପ୍ରେମୀଙ୍କ ନାମରେ ଛାତ୍ରାବାସ ନାମିତ କଲି । ସେହି ମହାତ୍ମାଙ୍କ ଦେଶପ୍ରେମରେ ଉଦ୍‌ବୁଦ୍ଧ ହେବାପାଇଁ ଅନ୍ତେବାସୀମାନଙ୍କୁ ପ୍ରଭାବିତ କଲି । ଏଠାରେ ଅନ୍ୟ ଗୋଟିଏ କଥା ଅନ୍ୟ ବନ୍ଧୁ ବା ପାଠକମାନଙ୍କୁ ଜଣାଇବି, ତାହା ହେଉଛି ଛାତ୍ରାବାସର ସୁରମ୍ୟ ଲାଲ ସୌଧ ନିର୍ମାଣ କରିବାରେ ଖୋରଧାର ତତ୍କାଳୀନ ସେକେଣ୍ଡ ଅଫିସର ବାବୁ ତ୍ରୈଲୋକ୍ୟନାଥ ମିତ୍ର ପ୍ରଗାଢ଼ ଉଦ୍ୟମ କରିଥିଲେ । ତାଙ୍କ ପାଖରେ ପହଞ୍ଚୁଥିବା ମକଦ୍ଦମାଗୁଡ଼ିକ ଆପୋଷ ମିଳାମିଶା କରି ଉଭୟ ଦଳରୁ କିଛି କିଛି ଧନ ଆଣି ସୌଧ ନିର୍ମାଣରେ ବ୍ୟୟ କଲେ । ଯେଉଁ ଓକିଲ, ମୋହରିର ବା ଅମଲାମାନଙ୍କ ସ୍ୱାର୍ଥରେ ବାଧା ସୃଷ୍ଟି ହେଲା ସେମାନେ ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ଶୁଣାଯାଏ ତାଙ୍କର ପ୍ରମୋଶନ ବନ୍ଦ ହୋଇଥିଲା । କିନ୍ତୁ ସେହି ଶିକ୍ଷାପ୍ରେମୀ, ପରୋପକାରୀ, ଛାତ୍ରବତ୍ସଳ ବାବୁ ତ୍ରୈଲୋକ୍ୟନାଥ ମିତ୍ରଙ୍କୁ ସ୍ମରଣ କରିବା ଆମର ପରମ କର୍ତ୍ତବ୍ୟ ।

## ଦେଶ କଥା କିଛି ତଥ୍ୟ :

ଯେତେଦୂର ମନେହୁଏ ମୁନ୍ଧ୍ରା କାରବାରର ଦୁର୍ନୀତି ଜବାହରଲାଲଙ୍କ ଜ୍ବାଇଁ ଫିରୋଜ ଗାନ୍ଧୀଙ୍କ ଦ୍ୱାରା ଧରାପଡ଼ିଲା । ସେତେବେଳେ ପାର୍ଲିଆମେଣ୍ଟରେ ଖୁବ୍ ହଇଚଇ ସୃଷ୍ଟି ହୋଇଥିଲା । କଂଗ୍ରେସ ଖୁବ୍ ବଳଶାଳୀ ଥିଲା ଏବଂ ଅପ୍ରତିଦ୍ୱନ୍ଦ୍ୱୀ ଦଳଭାବରେ ପ୍ରତିଷ୍ଠା ଲାଭ କରିଥିଲା । ୧୯୫୨ ମସିହାରେ ନୂତନ ସମ୍ବିଧାନ ଅନୁଯାୟୀ ଶ୍ରୀ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ହେଲେ ଓ ପ୍ରଖ୍ୟାତ ଦାର୍ଶନିକ ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ରୁଷିଆରୁ ରାଷ୍ଟ୍ରଦୂତ ପଦବୀରୁ ଆସି ଉପରାଷ୍ଟ୍ରପତି ପଦ ଗ୍ରହଣ କଲେ ।

## ଖୋର୍ଦ୍ଧାରେ ବିଦ୍ୟୁତ୍ ଆଲୋକ :

ଏଥିମଧ୍ୟରେ ହୀରାକୁଦ ବନ୍ଧ ନିର୍ମାଣ ଶେଷ ହେବା ପରେ ୧୯୫୬ ମସିହାରେ ଖୋର୍ଦ୍ଧା ସହର ବିଦ୍ୟୁତ୍ ଆଲୋକରେ ଝଲସି ଉଠିଲା । ରାସ୍ତାଘାଟ ଗଳିକନ୍ଦିରେ ବିଜୁଳି ଆଲୋକର ପ୍ରବେଶ ଦ୍ୱାରା ସହରର ସୌନ୍ଦର୍ଯ୍ୟ ବହୁଗୁଣ ବୃଦ୍ଧି ପାଇଲା । ସେତେବେଳେ ୟୁନିୟନ ବୋର୍ଡ ଆମ ଖୋର୍ଦ୍ଧାରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଆଲୋକ ବ୍ୟବସ୍ଥାର ଭାର ନେଇଥିଲା । ପ୍ରଧାନ ଶିକ୍ଷକ ମହୋଦୟ ହାଇସ୍କୁଲ ଓ ଛାତ୍ରାବାସରେ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା କଲେ । ବିଦ୍ୟାଳୟ ପୂରାଦମ୍‌ରେ ଚାଲିଥାଏ । ପ୍ରବୀଣ ଶିକ୍ଷକମାନେ ଛାତ୍ରଛାତ୍ରୀମାନଙ୍କ ପାଠପଢ଼ାରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । ପିଲାଙ୍କୁ ଟିୟୁସନ ଉପରେ ଏତେଟା ନିର୍ଭର କରିବାକୁ ପଡ଼େ ନାହିଁ । ଛାତ୍ରଛାତ୍ରୀମାନେ ସୃଜନଶୀଳ ଶକ୍ତିର ପରିଚୟ ଦେଉଥିଲେ । ଶିକ୍ଷକମାନଙ୍କୁ ଶ୍ରେଣୀରେ ପାଠ ବିଷୟରେ ବହୁ ପ୍ରଶ୍ନ ପଚାରୁଥିଲେ । ମୁଁ ଛାତ୍ରାବାସରେ ପଢ଼ା ବାୟୁମଣ୍ଡଳ ସୃଷ୍ଟି କରିଥାଏ । ଶାନ୍ତିଶୃଙ୍ଖଳା ବିରାଜମାନ ରହିଲେ ଦେଶ ଆଗେଇବ । ଛାତ୍ରାବାସରୁ ବିଦ୍ୟାଳୟର ଶିକ୍ଷାର ପ୍ରଗତି ଜଣାପଡ଼େ । ଏହି ୧୯୫୬ ମସିହା ସେପ୍ଟେମ୍ବର ମାସରେ ଛାତ୍ରାବାସ କ୍ୱାଟରରେ ମୋର ଦ୍ୱିତୀୟ ସନ୍ତାନ ଭୂମିଷ୍ଠ ହେଲା । ପିତୃକଳ୍ପ ଡାକ୍ତର ଲକ୍ଷ୍ମୀନାରାୟଣ ମହାନ୍ତି, ଏଲ୍.ଏମ୍.ପି. ମୋ ପରିବାରର ସ୍ୱାସ୍ଥ୍ୟରକ୍ଷା ଦିଗରେ ପରମ ସହାୟକ ଥିଲେ ।

## ବନ୍ୟାବିପତ୍ତି :

୧୯୫୫ ମସିହାରେ ଦଳେଇଘାଇ ବନ୍ଧ ଭାଙ୍ଗିଲା । ବୋଧହୁଏ ହୀରାକୁଦ ବନ୍ଧ ନିର୍ମାଣ ପୂରା ହୋଇନଥିଲା । ସେ ବର୍ଷ ମହାନଦୀ ଓ ତାର ଶାଖାନଦୀରେ ବନ୍ୟା ଭୀଷଣ ଆକାର ଧାରଣ କଲା । ମହାନଦୀର ଶାଖାନଦୀ କାଠଯୋଡ଼ି । କଟକ ସହରର ତିନିପାର୍ଶ୍ୱରେ ନଦୀମାନ ପ୍ରବାହିତ । କାଠଯୋଡ଼ି ପୋଲତଳକୁ ନଦୀ ଦୁଇ ଭାଗରେ

ବିଭକ୍ତ ହୋଇ ବାମପାଖ ଧାର ସେବୁଆ ଓ ଦକ୍ଷିଣ ପାଖ ଧାର ଦେବୀନଦୀ ନାମରେ କିଛିବାଟ ପ୍ରବାହିତ ହେବାପରେ ଦୁଇଧାର ପୁନଃ ଦଳେଇଘାଇଠାରେ ଏକତ୍ରିତ ହୋଇ ଦେବୀନଦୀ ନାମ ଧାରଣ କରି ବଙ୍ଗୋପସାଗରରେ ପଡ଼ିଅଛି । ସେବୁଆର ଶେଷମୁଣ୍ଡ ଦଳେଇଘାଇ ନାମରେ ପୂର୍ବରୁ ବିଦିତ । ସେ ବର୍ଷ କ୍ରମାଗତ ବର୍ଷା ହେବାଫଳରେ ବନ୍ଧଭାଙ୍ଗି ସମଗ୍ର ଜଗତସିଂହପୁର ଅଞ୍ଚଳ ଜଳମଗ୍ନ ହେଲା । କି ଭୟଙ୍କର ସେ ଦୃଶ୍ୟ । ଅଚ୍ୟୁତାନନ୍ଦଙ୍କ ମାଳିକା କଥା ସତ ହେଲା ବୋଲି ଲୋକେ କହିଲେ । ଆମ୍ଭେମାନେ ପାଞ୍ଚ ସାତ ଦିନପରେ ସେଠାକୁ ଯାଇ ମଧ୍ୟ ବଢ଼ିର ଭୟାବହତା ଉପଲବ୍ଧି କଲୁ । ଚାରିଆଡୁ ସାହାଯ୍ୟର ସ୍ରୋତ ଛୁଟିଲା । ସେଥିରୁ ଖୋର୍ଦ୍ଧା ବାଦ୍ ପଡ଼ିଯିବ କାହିଁକି ? ଖୋର୍ଦ୍ଧା ହାଇସ୍କୁଲର ପ୍ରଧାନଶିକ୍ଷକ ସମେତ ବହୁ ଶିକ୍ଷକ, ଛାତ୍ର, ଜନସେବୀ ଶ୍ରୀ ଭ୍ରମରବର ସାମନ୍ତରାୟ, ଓକିଲ ଶ୍ରୀ ରବିବର୍ମା ଚୁଡ଼ା, ଚାଉଳ, ଲୁଗାପଟା ଓ ଅନ୍ୟ ଆବଶ୍ୟକ ପଦାର୍ଥ ଟ୍ରକରେ ବହନକରି ବନ୍ୟାକ୍ଳିଷ୍ଟ ଲୋକମାନଙ୍କୁ ବଣ୍ଟାବଣ୍ଟି କଲେ । କେତେକ କୋଠାଗୃହର ଏକ ମହଲା ଅଧା ପର୍ଯ୍ୟନ୍ତ ପାଣି ଉଠି ଆସିଥିଲା । ଆମେ ତ ବନ୍ୟାର ପ୍ରକୋପ ଦେଖି ନଥିଲୁ । ଆଶ୍ଚର୍ଯ୍ୟ ହୋଇଗଲୁ । ସଚ୍ଚୋଟ ମୁଖ୍ୟମନ୍ତ୍ରୀଙ୍କୁ ପରୀକ୍ଷା କରିବା ପାଇଁ ବୋଧହୁଏ ଭଗବାନ ଏପରି ଦୁର୍ଗତି ପ୍ରେରଣ କରିଥିଲେ । ନବବାବୁ ଏସବୁର ମୁକାବିଲା କରିଥିଲେ, ତେବେ କଥାରେ ଅଛି "ଜଳ ବିହୁନେ ସୃଷ୍ଟିନାଶ, ଜଳ ଗହଳେ ସୃଷ୍ଟିନାଶ ।" ଏହାହିଁ ଏଠାରେ ଘଟିଲା । ଓଡ଼ିଶାକୁ ବନ୍ୟାଦାଉରୁ ରକ୍ଷାକରିବା ପାଇଁ ହୀରାକୁଦ ବନ୍ଧର ସୃଷ୍ଟି । ସମ୍ବଲପୁର ଅଞ୍ଚଳର ବହୁ ଭୂ-ଭାଗକୁ ଶସ୍ୟଶ୍ୟାମଳା କରିବା ସଙ୍ଗେସଙ୍ଗେ ଏଣେ ବନ୍ୟାଜଳ ନିୟନ୍ତ୍ରଣ କରାଯିବ । ଓଡ଼ିଶା ସୁଖସମୃଦ୍ଧିରେ ଭରି ଉଠିବ ବୋଲି ପ୍ରତ୍ୟେକର ଦୃଢ଼ ଧାରଣା ।

**ନବବାବୁଙ୍କ ଦୃଢ଼ତା :**

ନବବାବୁଙ୍କ ସମୟରେ କାଳିଆବୋଦା ଭଣ୍ଡବାବାଜୀଙ୍କୁ ଦମନ କରିବା ପାଇଁ ମାଡ଼ ଭରଣକ କଡ଼ାଏ ହେଲା ଓ ପୁରୀ ରଥଯାତ୍ରାବେଳେ ନାଗା ସନ୍ୟାସୀମାନଙ୍କ ଉତ୍ପାତ ସହ୍ୟ କରି ହେଲାନାହିଁ । ତେଣୁ ପୁଲିସବାଲା ସେମାନଙ୍କୁ ନିର୍ଭୁକ ମାଡ଼ ଚଢ଼ାଇଲେ । କେତେକ ନବବାବୁଙ୍କ କଠୋର ସମାଲୋଚନା କଲେ, ମାତ୍ର ମୁଖ୍ୟମନ୍ତ୍ରୀ ଅନ୍ଧବିଶ୍ୱାସର ଖୁବ୍ ଉର୍ଦ୍ଧ୍ୱରେ ଥିଲେ । ତେଣୁ ନାଗା ବାବାଜୀମାନଙ୍କୁ ଓ ନାଗା ସନ୍ୟାସୀମାନଙ୍କୁ ଦମନ କରିବାରେ ସେ ଦୃଢ଼ ପଦକ୍ଷେପ ନେଲେ । ଅନ୍ଧବିଶ୍ୱାସକୁ ଶାସନରେ ଭରିକଲେ ଶାସନରେ ନାନା ବ୍ୟାଘାତ ସୃଷ୍ଟି ହୁଏ ।

## ବାନ୍ଦୁଂ ସମ୍ମିଳନୀ :

ସେହି ୧୯୫୫ ମସିହାରେ ଭାରତର ପ୍ରଧାନମନ୍ତ୍ରୀ ମାନବବାଦୀ ପଣ୍ଡିତ ଜବାହରଲାଲ ନେହୁରୁ ଇଣ୍ଡୋନେସିଆର ବାନ୍ଦୁଂ ସହରରେ ଚୀନ୍, ମିଶର, ଇଣ୍ଡୋନେସିଆ ପ୍ରଭୃତି ବିକାଶଶୀଳ ଦେଶର ପ୍ରତିନିଧିମାନଙ୍କ ସମ୍ମୁଖରେ ପଞ୍ଚଶୀଳ ନୀତି ନାମକ ଏକ ନୂତନ ନୀତି ଯୋଜନା କଲେ । ସହଯୋଗ ମାଧ୍ୟମରେ ସମଗ୍ର ପୃଥିବୀରେ କିପରି ଶାନ୍ତି ପ୍ରତିଷ୍ଠା କରାଯାଇପାରିବ ତାହା ସେ ବିଶଦ ଭାବରେ ବ୍ୟାଖ୍ୟା କଲେ । କେତେଦିନ ବିଶ୍ୱରେ ଶାନ୍ତି ପ୍ରତିଷ୍ଠା ହେଲା । ମାତ୍ର ୧୯୬୨ ମସିହାରେ ଏହି ନିୟମ ଭଙ୍ଗ କରି ଚୀନ କମ୍ୟୁନିଷ୍ଟ ସରକାର ଯେତେବେଳେ ଭାରତ ଆକ୍ରମଣ କଲା, ସେତେବେଳେ ନେହୁରୁ ତଥା ଭାରତବାସୀ ବିଚଳିତ ହୋଇପଡ଼ିଲେ । ତାହା ଭିତରେ ଏଇଆ ହୋଇପାରେ ତିବ୍ବତର ଧର୍ମଗୁରୁ ଦଲାଇଲାମାଙ୍କୁ ଭାରତରେ ଆଶ୍ରୟ ଦେବାରୁ ଏହି ଯୁଦ୍ଧ ଘଟିଲା । ଯୁଦ୍ଧରେ ଭାରତ ଭୀଷଣ କ୍ଷତିଗ୍ରସ୍ତ ହେଲା । ବୈଦେଶିକ ମନ୍ତ୍ରୀ କୃଷ୍ଣମେନନ୍ ଇସ୍ତଫା ଦେଲେ । ସେହିଦିନଠାରୁ ଚୀନର ସବଗିଳା ନୀତି ଯୋଗୁଁ ସମଗ୍ର ଭାରତବାସୀ ତାକୁ ଅବିଶ୍ୱାସ କରୁଅଛନ୍ତି ଓ 'ହିନ୍ଦ୍-ଚୀନ ଭାଇଭାଇ' ସ୍ଲୋଗାନ ଲୋପ ପାଇଛି । ଚୀନ୍ ପାକିସ୍ତାନ ସହ ହାତ ମିଳାଇ ଭାରତର କ୍ଷତି ସାଧନ କରିବାକୁ ତତ୍ପର ।

## ରାଜ୍ୟ ପୁନଃଗଠନ କମିଟି :

୧୯୫୫ ମସିହାରେ ଆନ୍ଧ୍ରର ନେତା ରାମୁଲ ଆନ୍ଧ୍ରକୁ ସ୍ୱତନ୍ତ୍ର ରାଜ୍ୟ କରିବା ଉଦ୍ଦେଶ୍ୟରେ ଆଜୀବନ ଅନଶନ ବ୍ରତ ଆରମ୍ଭ କଲେ ଏବଂ ଶେଷରେ ଜୀବନଦାନ ବି କଲେ । ଏହି ପରିପ୍ରେକ୍ଷୀରେ ସମଗ୍ର ଭାରତବର୍ଷ ପାଇଁ ପ୍ରଦେଶ ପୁନର୍ଗଠନ କମିଟି ଗଢ଼ାଗଲା । ଦେଶର ତିନିଜଣ ପ୍ରଖ୍ୟାତ ବ୍ୟକ୍ତି ପଣ୍ଡିତ ହୃଦୟନାଥ କୁଞ୍ଜୁରୁ, ସର୍ଦ୍ଦାର କେ.ଏମ୍. ପାନିକର ଓ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଶ୍ରୀ ଫଜଲ ଅଲ୍ଲୀ ଏହି କମିଟିର ସଦସ୍ୟ ରହିଲେ । ଅବଶ୍ୟ ଏମାନଙ୍କ ନିରପେକ୍ଷତାକୁ ସନ୍ଦେହ କରାଯାଇନପାରେ, କିନ୍ତୁ ଓଡ଼ିଶାର ଦୁର୍ଭାଗ୍ୟକୁ ଓଡ଼ିଶା କଥା ପଡ଼ିବା ବେଳକୁ ଓଡ଼ିଶାର ରାଜ୍ୟପାଳ ପଡ଼ୋଶୀ ବିହାରର ଅଧିବାସୀ ଶ୍ରୀ ଫଜଲ ଅଲ୍ଲୀ ଅଧିବେଶନରେ ଯୋଗ ଦେଲେନାହିଁ । ଏଥିରୁ ସୂଚିତ ହେଲା ଯେ ସେ ବିହାର ସପକ୍ଷରେ ମତ ଦେଉଛନ୍ତି । ସେହିଦିନଠାରୁ ଶ୍ରୀ ଅଲ୍ଲୀ ଓଡ଼ିଶାବାସୀଙ୍କର ମିତ୍ର ହୋଇ ରହିପାରିଲେ ନାହିଁ । ଷଢ଼େଇକଳା, ଖରସୁଆଁ ବିହାରରେ ସବୁଦିନ ପାଇଁ ମିଶିଗଲା । ସିଂହଭୂମି ଓଡ଼ିଶା ଅଞ୍ଚଳ କଥା ଛାଡ଼ । ସେ ତ ବିହାରରେ ପୂର୍ବରୁ ଥିଲା । ଷଢ଼େଇକଳା ଖରସୁଆଁ ଓଡ଼ିଶା

ଅଞ୍ଚଳରୁ ବିଚ୍ୟୁତ ହୋଇ ରହିଲା । ଆହୁରି ମଧ ଦକ୍ଷିଣର ମଞ୍ଜୁସା, ତରଳା, ଟିକାଲି, ବୋଡ଼ାରସିଂହ, ଇଛାପୁର ପ୍ରଭୃତି ଓଡ଼ିଶା ଅଞ୍ଚଳ ଏବଂ ସମ୍ବଲପୁରର ଏକ ଟାପୁ ଅଞ୍ଚଳ ଓଡ଼ିଶା ପାଇବ ବୋଲି ଓଡ଼ିଶାବାସୀ କମିଶନ ଆଗରେ ପ୍ରବଳ ଯୁକ୍ତି ବାଢ଼ିଲେ । ଓଡ଼ିଶାର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ପଛରୁ ଛୁରା ମାରିଲେ ବୋଲି ଲୋକେ କହିଲେ । ଓଡ଼ିଶାର ନେତୃତ୍ୱ ସଦା ଦୁର୍ବଳ । ମହତାବବାବୁ ବମ୍ବେର ରାଜ୍ୟପାଳ ଥିଲେ ମାତ୍ର କେନ୍ଦ୍ର ମନ୍ତ୍ରିମଣ୍ଡଳ ଆଗରେ ସେ ନିଜକୁ ନିଷ୍ପ୍ରଭ ମନେକଲେ । କମିଶନ ଓଡ଼ିଶା କଥା ଆଦୌ ବିଚାରକୁ ନେଲେ ନାହିଁ । ଏପରିକି ପୁରୀରେ ବେଙ୍ଗପାଣିଆ, କଟକରେ ସୁନୀଲ ଦେ ପୁଲିସ ଗୁଳିଚୋଟରେ ପ୍ରାଣ ହରାଇଥିଲେ ମଧ 'ଓଡ଼ିଶାକୁ କିଛି ମିଳିଲା ନାହିଁ । ଦେଶପ୍ରାଣ ପ୍ରତିଭାଧର ନମସ୍ୟ ମଧୁସୂଦନ  ବିଦେଶୀ ସରକାର ସଙ୍ଗେ ଦୀର୍ଘ ବର୍ଷ ବାକ୍ୟୁଦ୍ଧ, ଆନ୍ଦୋଳନ କରି, ସମଗ୍ର ଓଡ଼ିଆଭାଷୀ ଅଞ୍ଚଳରେ ଜାତୀୟତାଭାବ ସୃଷ୍ଟି କରି ପାରଳାର ଗଜପତି  ମହାରାଜାଙ୍କ ସହାୟତାରେ ଯେଉଁ ବିଖଣ୍ଡିତ ଉତ୍କଳ ଆଣି ଭାରତ ମାନଚିତ୍ରରେ ଓଡ଼ିଶାକୁ ସ୍ଥାନ ଦେଇପାରିଥିଲେ ଏବର କଂଗ୍ରେସ ସରକାର ସବଳ ପଡ଼ୋଶୀ ରାଜ୍ୟ ନେତାଙ୍କ ଦ୍ୱାରା ନିର୍ଯ୍ୟାତିତ ହୋଇ ଆଉ ଇଞ୍ଚେ ଜାଗା ଓଡ଼ିଶାକୁ ଆଣିପାରିଲେ ନାହିଁ । ଗଡ଼ଜାତ ମିଶ୍ରଣବେଳେ ଚବିଶଟି ଗଡ଼ଜାତ ଯାହା ଓଡ଼ିଶା ସଙ୍ଗେ ମିଶିଥିଲେ ସେତିକି । ଶ୍ରୀ ନବକୃଷ୍ଣ ଚୌଧୁରୀ ସଚ୍ଚୋଟ ମୁଖ୍ୟମନ୍ତ୍ରୀ ହେଲେ ମଧ ସେ ନିଜ ଆସନକୁ ଡରିଲେ କାହିଁକି ? ପଣ୍ଡିତ ନେହୁରୁଙ୍କୁ ଡରିଲେ କାହିଁକି ? ସେ କଂଗ୍ରେସ ତ୍ୟାଗକରି ସନ୍ନ୍ୟାସ ବ୍ରତ ଧରିଲେ, ସେ ଯଦି ଏହି ଇସୁ୍ୟରେ ମୁଖ୍ୟମନ୍ତ୍ରିତ୍ୱରୁ ଇସ୍ତଫା ଦେଇଥାନ୍ତେ ତେବେ ତାଙ୍କର ଟାଣପଣ ସର୍ବମତେ ଜଣାପଡ଼ିଥାନ୍ତା । ସି.ଡି. ଦେଶମୁଖ ଗୁଜୁରାଟ ପ୍ରଦେଶ ଗଠନ କରିବା ପାଇଁ ନିଜ ଜିଦ୍‌ରେ ଅଟଳ ରହି କେନ୍ଦ୍ର ଅର୍ଥମନ୍ତ୍ରିତ୍ୱରୁ ଇସ୍ତଫା ଦେଇଥିଲେ । ଓଡ଼ିଶାର କିଛି ନହେଲେ ନାଁଟା ସମଗ୍ର ଭାରତବର୍ଷରେ ବିଖ୍ୟାତ ହୋଇଥାନ୍ତା । ଏବେ ମଧ ମୁଁ ମନେ କରୁଛି ଯଦି ବିଦେଶୀ ସରକାର ଅମଳରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହୋଇପାରିନଥାନ୍ତା  ଏବର କଂଗ୍ରେସ ସରକାର ଅମଳରେ ଆମ ପ୍ରଦେଶର ସୀମା ସରହଦ ବର୍ତ୍ତମାନଠାରୁ ଆହୁରି ସଙ୍କୁଚିତ ହୋଇଯାଇଥାନ୍ତା । ଏହାହିଁ ହେଲା ସମଗ୍ର ଭାରତବର୍ଷରେ ଓଡ଼ିଆଙ୍କ ସ୍ଥାନ । ଓଡ଼ିଆମାନଙ୍କ ଦୃଢ଼ତାର ଘୋର ଅଭାବ ତଥା ନିରୀହତା ତଥା ଉଦାସୀନତା, ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କର ଗୋଡ଼ଟଣା ପ୍ରକୃତି ଓଡ଼ିଆ ଦୁର୍ଗତିର ମୂଳ କାରଣ ।  ଏବେ ମଧ ଓଡ଼ିଶା ବିଧାନସଭାର ସର୍ବସମ୍ମତ ମତକୁ କେନ୍ଦ୍ର ସରକାର ସମ୍ମାନ ଦିଅନ୍ତି ନାହିଁ ।  ଏବେ ମଧ ରଜ୍ୟର ମନ୍ତ୍ରୀଗଣ ଓ ସାଂସଦମାନେ କେନ୍ଦ୍ରର ଅଧୀନସ୍ଥ ପ୍ରଜାବୋଲି ନିଜନିଜକୁ ମନେ କରନ୍ତି । ସାମୂହିକ

କାର୍ଯ୍ୟସାଧନରେ ସ୍ୱାର୍ଥ ପ୍ରତିବନ୍ଧକ ସୃଷ୍ଟି କରୁଛି । ଏବେ ମଧ୍ୟ ଓଡ଼ିଆ ଦାଦନ ଶ୍ରମିକ ଜାତିଭାବେ ସମଗ୍ର ଭାରତବର୍ଷରେ ପରିଚିତ । ଏବେ ମଧ୍ୟ ଓଡ଼ିଆ କୃଷକମାନଙ୍କର ଅବସ୍ଥା ଅତ୍ୟଧିକ ଶୋଚନୀୟ । ଅର୍ଦ୍ଧେକ କୃଷକ ଦାରିଦ୍ର୍ୟ ସୀମାରେଖା ତଳେ । କେବେ ଓଡ଼ିଆଙ୍କର ଚେତା ଫେରିବ, ଭାଗ୍ୟ ଖୋଲିବ କିଏ କହିବ ? ପ୍ରଭୁ ଏ ଜାତିକୁ ସଦବୁଦ୍ଧି ଦିଅନ୍ତୁ, ଏ ଜାତିର ଦୁଃଖ ଦୂର ହେଉ ।

## ମାଟ୍ରିକ ପରୀକ୍ଷାରେ ପ୍ରଥମ :

୧୯୫୮ ମସିହାରେ ମାଟ୍ରିକ ପରୀକ୍ଷା ବିଶ୍ୱବିଦ୍ୟାଳୟ କବଳରୁ ଆସି ସେକେଣ୍ଡାରୀ ବୋର୍ଡ଼ ଅଧୀନରେ ରହିଲା । ବକ୍ସିବାଟି ଅଞ୍ଚଳରେ ବୋର୍ଡ଼ ଅଫିସ ନିର୍ମାଣ କରାଗଲା । ସେ ବର୍ଷ ବୋର୍ଡ଼ ପରୀକ୍ଷାରେ ଆମ ସ୍କୁଲର ଛାତ୍ର ବାବୁ ବଙ୍କିମ ଚନ୍ଦ୍ର ମହାନ୍ତି ସମଗ୍ର ଓଡ଼ିଶାରେ ପ୍ରଥମ ସ୍ଥାନ ଅଧିକାର କଲେ । ଏହି କୃତିତ୍ୱରେ ଶିକ୍ଷକ ଓ ଅଭିଭାବକମାନଙ୍କ ସହିତ ସମଗ୍ର ଖୋର୍ଦ୍ଧାବାସୀ ଆନନ୍ଦମୁଖର ହୋଇ ଉଠିଲା । ପ୍ରଧାନ ଶିକ୍ଷକଙ୍କ ସମେତ ଆମେ ଶିକ୍ଷକମାନେ ବିଦ୍ୟାଳୟର ସାମୂହିକ ଉନ୍ନତି ପାଇଁ ଖୁବ୍ ଲାଗିପଡ଼ିଥିଲୁ । ଏହା ଘରୋଇ ସ୍କୁଲ ଥିବାରୁ ଶିକ୍ଷକମାନେ ବିଦ୍ୟାଳୟ କାର୍ଯ୍ୟରେ ମନପ୍ରାଣ ଢାଳିଦେଇଥିଲେ । ଖୋର୍ଦ୍ଧା ହାଇସ୍କୁଲ ପରିଚାଳନା କମିଟିର ସଭ୍ୟ ଡାକ୍ତର ପ୍ରାଣକୃଷ୍ଣ ବିଦ୍ୟାଳୟର ଏପରି କୃତିତ୍ୱରେ ଉଲ୍ଲସିତ ହୋଇ ପରିଚାଳନା କମିଟିର ସଦସ୍ୟମାନଙ୍କୁ ପ୍ରଭାବିତ କରି ଶିକ୍ଷକ ଓ ଅଣଶିକ୍ଷକମାନଙ୍କୁ ଏକମାସର ଅଧିକ ବେତନ ପୁରସ୍କାର ସ୍ୱରୂପ ପ୍ରଦାନ କଲେ । ଏହାଦ୍ୱାରା ଶିକ୍ଷକମାନେ ନିଜ ନିଜ କାମରେ ଗଭୀର ମନୋନିବେଶ କଲେ । ପରେ ପରେ ୧୯୬୦ ମସିହାରେ ଦିବ୍ୟସିଂହବାବୁ ରାଷ୍ଟ୍ରପତି ପୁରସ୍କାର ଲାଭ କଲେ ।

## ମୋର ସ୍ୱତନ୍ତ୍ର ସାଧନା :

ମୁଁ ତ ଛାତ୍ରାବାସର ସର୍ବେସର୍ବା ଥିଲି, ଯଦିଓ ପ୍ରଧାନ ଶିକ୍ଷକ ଅଛନ୍ତି ମୋର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଛାତ୍ରାବାସ ସୁଚାରୁରୂପେ ଚାଲିଥାଏ । ଛାତ୍ରାବାସ ପିଲାମାନଙ୍କ ହାନିଲାଭ ମୋ ଉପରେ ନିର୍ଭର କରିଥାଏ । ପାଠପଢ଼ାର ଉଚିତ ଯତ୍ନ ନେଉଥାଏ । ମୁଁ ବହୁ ସମୟରେ ଭାବେ ଏତେ ଦୁଃଖ ଏତେ ପରିଶ୍ରମର ମୂଲ୍ୟ କ'ଣ ଯଦି ଜଣେ କେହି ପ୍ରଥମ ଦଶଜଣଙ୍କ ଭିତରେ ନ ରହିଲା । ଅବଶ୍ୟ ବେଷ୍ଟ ଟେନ୍‌ଥ୍ ସହିତ ଭଲ ମଣିଷ, ସଚ୍ଚୋଟ ମଣିଷର ସଂପର୍କ ଯଥେଷ୍ଟ ଅଛି । ସବୁପ୍ରକାର ସ୍ୱର୍ଗୀୟ ଗୁଣଗୁଡ଼ିକ ଅନ୍ତେବାସୀ ଆହରଣ କରିବା ବାଞ୍ଛନୀୟ । ମୋର ଛାତ୍ରାବାସରୁ ଜଣେ କେହି କୃତିତ୍ୱ ଅର୍ଜନ କଲେ

ତାହା ମୋର କୃତିତ୍ୱ ବୋଲି ଧରାଯିବ । ମୋର ମାନ ବଢିଯିବ । ଯେତେଦୂର ମନେ ହେଉଛି ତାର ଦୁଇ ବର୍ଷ ପରେ ଛାତ୍ରାବାସର ଛାତ୍ର ମେଣ୍ଢାଶାଳ' ଗ୍ରାମର ଶ୍ରୀମାନ ଯତୀନ ଦାସ ବୋର୍ଡ ପରୀକ୍ଷାରେ ତୃତୀୟ ସ୍ଥାନ ଅଧିକାର କରିବାରୁ ଛାତ୍ରାବାସ ତଥା ବିଦ୍ୟାଳୟ ସୁନାମ ଅର୍ଜନ କରିଥିଲା । ପୁନଃ 'ଆଉ 'ଦୁଇ ବର୍ଷ ପରେ ଅନ୍ୟଏକ" ଛାତ୍ର ଗୁଡୁମ ନିବାସୀ ବାବୁ ପ୍ରଫୁଲ୍ଲ କୁମାର ମିଶ୍ର ବୋର୍ଡ ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ବିଦ୍ୟାଳୟ ତଥା ଛାତ୍ରାବାସର ମାନମହତକୁ ପ୍ରତିପାଦନ କଲେ । ଆମ ହାଇସ୍କୁଲ ସମଗ୍ର ରାଜ୍ୟରେ ପୁନଃ ତାର କୃତିତ୍ୱ ପ୍ରତିଷ୍ଠା କଲା । ସେମାନଙ୍କର ବୁଦ୍ଧି ଥିଲା, ଭାଗ୍ୟ ବି ଭଲ ଥିଲା । ପରିଶ୍ରମ ବି କରୁଥିଲେ । କିଏ ବେଳେବେଳେ ମୋତେ କ'ଣ ଟିକିଏ ପଚାରି ଦେଲେ ମୁଁ ସେମାନଙ୍କର ସନ୍ଦେହମୋଚନ କରିଦେଉଥିଲି । ଏହା ବୋଲି କ'ଣ ମୁଁ ତାଙ୍କୁ ସମ୍ମାନ ଦେଇ ଦେଲିକି ? ମୋର ଯେତିକି କର୍ତ୍ତବ୍ୟ ମୁଁ ସେତିକି କରିଥିଲି । ତେବେ ହେଡ୍‌ମାଷ୍ଟରଙ୍କ ତରଫରୁ ହେଉ ବା ବିଦ୍ୟାଳୟ ତରଫରୁ ହେଉ ବା ସରକାରଙ୍କ ତରଫରୁ ହେଉ ମୋତେ କେହି ସାମାନ୍ୟ ବଧେଇ ଜଣାଇ ନଥିଲେ । ସାରାଜୀବନଟା ପରିଶ୍ରମ କରିକରି କଟିଯାଇଥିଲା । ମୋର କାର୍ଯ୍ୟ ପାଇଁ କେବେ କେହି ମୋତେ ପ୍ରଶଂସା କରିନାହାଁନ୍ତି । ଯାହା ହେଉ ସମଗ୍ର ରାଜ୍ୟରେ ଖୋର୍ଦ୍ଧା ହାଇସ୍କୁଲର ପ୍ରସିଦ୍ଧି ଖୁବ୍ ଉଚ୍ଚରେ ଗଲା । ବହୁ ସରକାରୀ ସ୍କୁଲକୁ ଏହା ଟପି ଯାଇଥିଲା । ଶିକ୍ଷକମାନଙ୍କ କାର୍ଯ୍ୟର ସମୀକ୍ଷା କରି ସରକାର ବା ପରିଚାଳନା ସମିତି ଯଦି ଶିକ୍ଷକମାନଙ୍କ କୃତିତ୍ୱ ଉପରେ ପୁରସ୍କାର ପ୍ରଦାନ କରନ୍ତେ ତେବେ ଶିକ୍ଷାର ଗୁଣାତ୍ମକ ମାନ ଯଥେଷ୍ଟ ବୃଦ୍ଧି ପାଆନ୍ତା । ଜଣକୁ କୃତୀ ଶିକ୍ଷକ ସମ୍ମାନ ଦେଇ ଯେଉଁ ପୁରସ୍କାର ପ୍ରଦାନ କରାଯାଇଛି ତାହା ସମଗ୍ର ରାଜ୍ୟରେ ସମୁଦ୍ରକୁ ଶଙ୍ଖେ ପାଣି ପରି ପୁଣି ନାନା ଦଳୀୟ ରାଜନୀତି ଓ ପ୍ରିୟାପ୍ରୀତି ତୋଷଣ ଉପରେ ଏହା ପର୍ଯ୍ୟବସିତ ହେଉଛି । ବିଦ୍ୟାଳୟରେ କୃତୀ ଛାତ୍ର ବାହାର କରିବାରେ ଶିକ୍ଷକମାନଙ୍କର ସମ୍ମିଳିତ ପ୍ରଚେଷ୍ଟା ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ସବୁ ଶିକ୍ଷକ ଯେ ବିଦ୍ୟାଳୟର ସ୍ୱାର୍ଥ ଦେଖିବେ ତାହା ନୁହେଁ, ତଥାପି ବହୁ ଉତ୍ତମ ଚରିତ୍ରବାନ୍, ଗୁଣୀ, ଜ୍ଞାନଗର୍ଭା ଶିକ୍ଷକ ଯେ ଅଛନ୍ତି ଏଥିରେ ସନ୍ଦେହ ନାହିଁ । କେବଳ ଜଣକୁ ପୁରସ୍କାର ଦେଲେ ଉଚିତ ନ୍ୟାୟ ବିଚାର କରାଯାଏ ନାହିଁ ।

### ଭୁବନେଶ୍ୱର ସବ୍‌ଡିଭିଜନ ସୃଷ୍ଟି :

୧୯୫୭ ମସିହାରେ ଦ୍ୱିତୀୟ ସାଧାରଣ ନିର୍ବାଚନରେ ବାବୁ ବନମାଳୀ ପଟ୍ଟନାୟକ ଖୋର୍ଦ୍ଧାର ବିଧାୟକ ହୋଇ ଆସିପାରିଲେ ନାହିଁ । ପ୍ରାଣବାବୁ

ଆସିଲେ । ବିଧାୟକ ପ୍ରାଣନାଥ ପଟ୍ଟନାୟକ ଏବଂ ଆମ୍ଭେମାନେ ଖୋର୍ଦ୍ଧାରେ ଏକ କଲେଜ ପ୍ରତିଷ୍ଠା କରିବା ପାଇଁ ଲାଗିପଡ଼ିଲୁ । ଡାକ୍ତର ପ୍ରାଣକୃଷ୍ଣ ମହାପାତ୍ର ସାହାଯ୍ୟ କଲେ । ଭୁବନେଶ୍ୱର ରାଜଧାନୀ ହେବାରୁ ସରକାରୀ ପ୍ରଶାସନର ଆବଶ୍ୟକତା ପଡ଼ିଲା । ଏପର୍ଯ୍ୟନ୍ତ ଭୁବନେଶ୍ୱର ଖୋର୍ଦ୍ଧା ସବ୍‌ଡିଭିଜନ ଅଧୀନରେ ରହିଥିଲା । ଭୁବନେଶ୍ୱରରେ ବିଧାନସଭା ଅଧିବେଶନ ବସିଲା ବେଳେ ଖୋର୍ଦ୍ଧା ଏସ୍.ଡି.ଓ.ଙ୍କର ଦାୟିତ୍ୱ ବଢ଼ିଯାଉଥିଲା । ଖୋର୍ଦ୍ଧା ଭୁବନେଶ୍ୱରରୁ ୨୬ କି ୨୭ କି.ମି. ଦୂରରେ ଅବସ୍ଥିତ ଥିବାରୁ ପ୍ରଶାସନରେ ନାନା ଅସୁବିଧା ସୃଷ୍ଟି ହେଲା, ତେଣୁ କର୍ତ୍ତୃପକ୍ଷ ଖୋର୍ଦ୍ଧା ସବ୍‌ଡିଭିଜନରୁ ଜଟଣୀ ଚନ୍ଦକା ଭୁବନେଶ୍ୱର ଓ ପୁରୀ ସବ୍‌ଡିଭିଜନରୁ ବାଲିଅନ୍ତା ଓ ବାଲିପାଟଣା ଥାନା ନେଇ ଭୁବନେଶ୍ୱର ସବ୍‌ଡିଭିଜନ ଗଠନ କଲେ । କିନ୍ତୁ ଜଟଣୀ ଓ ଚନ୍ଦକା ଖୋର୍ଦ୍ଧା ଥାନାର ଅତି ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକ ନେଇଯିବା ଦ୍ୱାରା ସେହି ଗ୍ରାମର ଅଧିବାସୀମାନେ ଖୋର୍ଦ୍ଧା ସହର ଦେଇ ଭୁବନେଶ୍ୱରକୁ ଯାତାୟାତ କରିବାରେ ଲାଗିଲେ । ସେମାନଙ୍କର ଅସୁବିଧାକୁ କେହି ନଜର ଦେଲେ ନାହିଁ । ଖୋର୍ଦ୍ଧାର ସଚେତନ ନାଗରିକ (ଓକିଲମାନେ) ମଧ ତୁନି ହୋଇ ବସିରହିଲେ । ଆନ୍ଦୋଳନ କରିଥିଲେ ଅନ୍ତତଃ ପକ୍ଷେ ଉଭୟ ଥାନାର କୋଡ଼ିଏ ଖଣ୍ଡ ମୌଜାର ଅଧିବାସୀ ଦୁଃଖଦୁର୍ଦ୍ଦଶାରୁ ରକ୍ଷା ପାଇଥାନ୍ତେ । ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଖୋର୍ଦ୍ଧା ଉପରେ ରାଗରଖି ଖୋରଧାର ଗୁରୁତ୍ୱ କମେଇ ଦେବାକୁ ଏପରି କୂଟକପଟ କଲେ ବୋଲି ଜନରବ ହେଲା । ଯେଉଁ ଭୁବନେଶ୍ୱର ଖୋର୍ଦ୍ଧା ବା ଓଡ଼ିଶା ରାଜ୍ୟର ଅଂଶବିଶେଷ ଥିଲା ଏବଂ ଇଂରେଜ ଶାସନକାଳେ ୧୮୦୩ରୁ ୧୯୪୭ ପର୍ଯ୍ୟନ୍ତ ଖୋରଧାର ଏକ ଥାନା ରୂପେ ପରିଗଣିତ ହେଉଥିଲା ୧୯୫୮ରେ ନୂତନ ସବ୍‌ଡିଭିଜନରେ ପରିଣତ ହେଲା ଏବଂ ସମଗ୍ର ରାଜ୍ୟର ରାଜଧାନୀ ହେଲା । ଏହା ଭାଗ୍ୟର ବିଡ଼ମ୍ବନା ନୁହେଁ ତ ଆଉ କ'ଣ ? ତେବେ ଭୌଗୋଳିକ ଦୃଷ୍ଟିକୋଣରୁ ବିଚାର କଲେ ଖୋରଧାର ଅବସ୍ଥିତି ଏପରି ଯେ ଏହାର ଗୁରୁତ୍ୱ କେବେହେଲେ ହ୍ରାସ କରାଯାଇପାରିବ ନାହିଁ । ଏହା ପଶ୍ଚିମ ଓ ଦକ୍ଷିଣାଞ୍ଚଳର ଦ୍ୱାରଦେଶ ସଦୃଶ ରାଜଧାନୀର ବେକ ସଦୃଶ । ଭୁବନେଶ୍ୱର ତ ଏକ ନୂତନ ସବ୍‌ଡିଭିଜନ ହେଲା । ତା ସଙ୍ଗେ ସଙ୍ଗେ ସମଗ୍ର ରାଜ୍ୟର ଏହା ରାଜଧାନୀ ହେଲା । ଏହାର ଗୁରୁତ୍ୱ ବୃଦ୍ଧି ପାଇଲା । କଟକ ଜିଲା ଆଡ଼କୁ ଅର୍ଥାତ୍ ପଟିଆ କିଲା ଆଡ଼କୁ ଏହାର ବୃଦ୍ଧି ହେଲା । ୧୯୮୬ ମସିହା ବେଳକୁ ପଟିଆ କିଲାରୁ ୨୮ଟି ଗ୍ରାମ ଅଣାଯାଇ କ୍ୟାପିଟାଲ୍ ସଙ୍ଗେ ଅର୍ଥାତ୍ ଭୁବନେଶ୍ୱର ସବ୍‌ଡିଭିଜନ ସହ ଯୋଗ କରାଗଲା । ତତ୍‌କାଳୀନ ପୁରୀ ଜିଲ୍ଲାର ଆୟତନ ବୃଦ୍ଧି ପାଇଲା ।

**ଛାତ୍ରାବାସ ପାଇଁ ସମ୍ବିଧାନ :**

ଏଥିମଧ୍ୟରେ ଛାତ୍ରାବାସରେ ଏକଶହରୁ ଊର୍ଦ୍ଧ୍ୱ ଅନ୍ତେବାସୀ ସ୍ଥାନ ପାଇଲେଣି । ଛାତ୍ରାବାସର ସୁନାମ ଚାରିଆଡ଼େ ବିସ୍ତାରିତ ହେଲାଣି । ଛାତ୍ରାବାସରେ ଶାନ୍ତିଶୃଙ୍ଖଳା ଫେରାଇ ଅଣାଯାଇ ପାରିଛି । ପଢ଼ା ବାୟୁମଣ୍ଡଳ ସୃଷ୍ଟି ନିମନ୍ତେ ଉଦ୍ୟମ ଅବ୍ୟାହତ ରଖିଛି । ମୁଁ ମଝିରେ ମଝିରେ ବାଧାବିଘ୍ନର ସମ୍ମୁଖୀନ ହେଉଥାଏ । କଡ଼ାଶାସନରେ ଅନ୍ତେବାସୀମାନେ ଏପଟ ସେପଟ ହୋଇପାରନ୍ତି ନାହିଁ । ଅଧ୍ୟୟନ ସମୟ, କ୍ରୀଡ଼ା ସମୟ ବ୍ୟତୀତ ଯାମିତ ମନୋରଞ୍ଜନ ପାଇଁ ସମୟ ଦିଏ । ଏକାବେଳକେ ହୁଗୁଳା କରିଦିଏ ନାହିଁ । ଏବେ ମୁଁ ନିଜେ ଅନୁଭବ କଲି ଛାତ୍ରାବାସ ପାଇଁ ସମ୍ବିଧାନ ଗଢ଼ିବି । ତେଣୁ ପ୍ରତ୍ୟେକ ଶ୍ରେଣୀର ବଡ଼ଚାଟ ଓ ଛାତ୍ରାବାସର ବଡ଼ଚାଟ (ପ୍ରିଫେକ୍ଟ)କୁ ନେଇ ନୀତିନିୟମ କମିଟି ଗଢ଼ିଲି, ନୂତନ ଆଇନ ପ୍ରଣୟନ କଲି । ତାହା ଛାତ୍ରମାନଙ୍କ ସମ୍ମୁଖରେ ପଢ଼ାଗଲା । ପ୍ରାୟତଃ ପିଲାମାନେ ସମ୍ବିଧାନକୁ ପସନ୍ଦ କଲେ । ପିଲାମାନଙ୍କୁ ଠିକ୍ ବାଟରେ ପରିଚାଳିତ କରିବା ପାଇଁ ପ୍ରତିବର୍ଷ ସ୍କୁଲବର୍ଷ ଆରମ୍ଭବେଳେ ଏହା ସର୍ବସମ୍ମୁଖରେ ପାଠ କରାଯାଉଥିଲା । ମୋ ଯିବାପରେ କିଏ ସେ ସମ୍ବିଧାନ ଖାତାଟା ରଖିଲା ମୁଁ ଜାଣେ ନାହିଁ । ସବୁ ପିଲାମାନଙ୍କୁ ତ ମୁଁ ପଣ୍ଡିତ କରେଇ ଦେବି ନାହିଁ ତଥାପି ମୋ ଚେଷ୍ଟାରେ ମୁଁ ଲାଗିଥାଏ ।

**ଛାତ୍ରାବାସରେ ଶୃଙ୍ଖଳା :**

ଉଚ୍ଚଶ୍ରେଣୀ ପିଲାଙ୍କ ସହିତ ନିମ୍ନଶ୍ରେଣୀ ପିଲାଙ୍କୁ ଏକ ପ୍ରକୋଷ୍ଠରେ ସ୍ଥାନ ଦେବା ବହୁଦୃଷ୍ଟିରୁ ଅହିତକର । ସେଥିପ୍ରତି ସତର୍କ ଦୃଷ୍ଟି ରଖିଥାଏ । ତଥାପି ବେଳେବେଳେ ସମସ୍ୟା ସୃଷ୍ଟିହୁଏ । ନିମ୍ନଶ୍ରେଣୀର ପିଲାମାନେ ଉଚ୍ଚଶ୍ରେଣୀ ପିଲାମାନଙ୍କୁ ସମ୍ମାନ ଦେଖାନ୍ତି । ପାଠ ନ ଆସିଲେ ପଚାରି ବୁଝନ୍ତି । ମାତ୍ର ଏତେଗୁଡ଼ାଏ ପିଲା ଏକତ୍ର ରହିଲେ ସମସ୍ୟା ଉପୁଜିବ । ତେବେ ଅଧିକାଂଶ ସମୟରେ ଯଥେଷ୍ଟ ଧ୍ୟାନ ଦେଉଥିଲି । ମୋଟରେ ଦୁଇଟି ମେସ୍ ରଖିଲି । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ପଂକ୍ତିଭୋଜନରେ ବସନ୍ତି । ମୁଁ ବହୁଥର ସେମାନଙ୍କ ସଙ୍ଗେ ବସିଲି । ଗୋଟିଏ ବାପର ଚାରି ପାଞ୍ଚଜଣ ପିଲା ଯଦି ଏକାମନର ହେଉନାହାନ୍ତି, ଭିନ୍ନ ଭିନ୍ନ ବାପର ଏକଶତ ପିଲା ଏକାଠି ରହିବେ କିପରି ? ତେବେ ସେମାନଙ୍କୁ ଏକତା ସୂତ୍ରରେ ଆବଦ୍ଧ କରିବାକୁ ପଡ଼ିବ । ମୋତେ ହାତେ ମାପି ଚାଖଣ୍ଡେ ଚାଲିବାକୁ ପଡୁଥିଲା । ସଦା ସତର୍କ ଦୃଷ୍ଟି ରଖିଥାଏ । ଅପରାଧୀକୁ ଆର୍ଥିକ ତଥା ଶାରୀରିକ ଦଣ୍ଡ ଦେଉଥିଲି । କେତେକ ଛାତ୍ର

ମୋତେ ଭୁଲ୍ ବୁଝି ବିଦ୍ରୋହ ମନୋଭାବ ଦେଖାଉଥିଲେ । କିନ୍ତୁ ମୋର ବ୍ୟକ୍ତିଗତ କୌଣସି ସ୍ୱାର୍ଥ ବା ଲାଭ ଆଶାରେ ମୁଁ ସେମାନଙ୍କୁ ଦଣ୍ଡ ଦେଉନଥିଲି । ଏବେ ପରିଣତ ବୟସରେ ବେଳେବେଳେ ଭାବେ ମୁଁ ସେତେବେଳେ କାହିଁକି ଏତେ କଠୋର ହେଉଥିଲି, ଯେ ନପଢୁଥିଲା ତାକୁ କାହିଁକି ତାଚ୍ଛଲ୍ୟ ମନୋଭାବ ଦେଖାଉଥିଲି, ଏଇଟା ମୋର ଭ୍ରମ ଥିଲା କି ? ଭଲ ପାଠ ପଢୁନଥିବା ପିଲା ମଧ୍ୟ ଜୀବନ ସଂଗ୍ରାମରେ ଉଠିପାରିବ ଏହା ବୋଧହୁଏ ମୋର ଧାରଣା ନଥିଲା । କିନ୍ତୁ ମୋର ବ୍ୟକ୍ତିଗତ ମତ, ''ସେମାନେ କଡ଼ାଶାସନରେ ରହିଲେ ସୁନାଗରିକ ହେବେ । ସେମାନଙ୍କର ଚରିତ୍ର, ଆଚରଣ ଶୁଦ୍ଧ ହେବ । ସେମାନେ ନିଜଗୋଡ଼ରେ ନିଜେ ଠିଆହେବେ । ଦେଶ ତଥା ଜାତିର ଜଣେ ଜଣେ ସଚ୍ଚା ସୈନିକ ହେବେ । ସେମାନେ କ'ଣ ହେଲେ ସେ କଥା ସେମାନେ କହିପାରିବେ କିନ୍ତୁ ମୋ କର୍ତ୍ତବ୍ୟରେ ମୁଁ ହେଳା କରି ନାହିଁ ।'' ରହୁ ରହୁ ସେଠାରେ ୧୬ ବର୍ଷ ରହିଗଲି । ଛାତ୍ରାବାସର ପିଲାମାନଙ୍କୁ ତାଗିଦ୍ କରି କରି ଦିକ୍‌ଦାର ହୋଇଯାଏ କିମ୍ବା କୌଣସି କାରଣରୁ ଅସୁବିଧା ସୃଷ୍ଟି ହେଲେ ଛାତ୍ରାବାସରୁ ଚାଲିଯିବାପାଇଁ ଇଚ୍ଛାକରେ । ନାରୀମାନଙ୍କର ଘରକରଣା ବୁଦ୍ଧି ଅଧିକ । ଫ୍ରି କ୍ୱାଟରଟିଏ ମିଳିଥାଏ ପୁଣି ମାସିକ ଭତ୍ତାବାବଦକୁ କୋଡ଼ିଏଟି ଟଙ୍କା ମିଳୁଥାଏ, ଅଫିସ ଘରଟିଏ ମିଳିଥାଏ । ତେଣୁ ଛାଡ଼ିଗଲେ ଏତିକି ସୁବିଧାରୁ ବଞ୍ଚିତ ହେବାକୁ ପଡ଼ିବ । ସ୍ତ୍ରୀ ମନାକରେ । ପ୍ରଧାନଶିକ୍ଷକ ମଧ୍ୟ ମୋତେ ଛାତ୍ରାବାସ କାର୍ଯ୍ୟରୁ ଅନ୍ତର କରିବାକୁ ଇଚ୍ଛା କରନ୍ତି ନାହିଁ । ସେତେବେଳେ କୌଣସି ଶିକ୍ଷକ ଛାତ୍ରାବାସର ଦାୟିତ୍ୱ ନେବାକୁ ଇଚ୍ଛା କରନ୍ତି ନାହିଁ । ତେଣୁ ମୁଁ ରହିଯାଏ । ରହୁ ରହୁ ପ୍ରଧାନଶିକ୍ଷକ ଆସନରେ ବସିବା ପର୍ଯ୍ୟନ୍ତ ଛାତ୍ରାବାସରେ ରହିଲି । ତପ୍ରେ ହେଡମାଷ୍ଟର କ୍ୱାଟରକୁ ଗଲି । କିନ୍ତୁ ଯେକୌଣସି ଅନୁଷ୍ଠାନ ପ୍ରତି ସମର୍ପିତ ମନୋଭାବ ନରହିଲେ ଅନୁଷ୍ଠାନର ପ୍ରଗତିରେ ବାଧା ସୃଷ୍ଟି ହେବ । ମୁଁ କେବଳ ଛାତ୍ରାବାସ କଥା ଯେ ଚିନ୍ତାକରୁଥିଲି ତାହା ନୁହେଁ, ସ୍କୁଲକୁ ନିଜ ସ୍କୁଲପରି ମନେକରି ତାର ଉନ୍ନତିପାଇଁ ମନପ୍ରାଣ ଢାଳି ଦେଇଥିଲି ।

**ଛାତ୍ରାବାସର ନିୟମପାଳନ :**

ଛାତ୍ରାବାସରେ ପ୍ରତିଦିନ ଭୋର ୫ଟାରେ ସତର୍କ ଘଣ୍ଟି ବାଜେ । ଅନ୍ତେବାସୀ ମୁହଁ ହାତଧୋଇ ଅଫିସରୁମ ସାମନା ବାରଣ୍ଡାରେ ବସି ସକାଳ ପ୍ରାର୍ଥନାରେ ଯୋଗଦିଅନ୍ତି । ମୁଁ ତା ଆଗରୁ ଶଯ୍ୟା ତ୍ୟାଗ କରିଥାଏ । ପ୍ରତି ପ୍ରକୋଷ୍ଠ ଓ ଡରମିଟାରୀ ବୁଲି ଆସେ । ହାତରେ ଖଣ୍ଡେ ଛାଟ ଥାଏ । ଘର ଘର ବୁଲିଆସେ । କିଏ ଉଠିଥାଏ,

କିଏ ନଉଠିଥାଏ । ଶଯ୍ୟାତ୍ୟାଗ କରିନଥିବା ପିଲାଙ୍କୁ ପାହାର ନଦେଇ ଖଟ ଉପରେ ମାଡ଼ କରେ । ବେଳେବେଳେ କୌଣସି ପିଲାକୁ ଛାଟେ ଦିଏ । 'ବିରି ମାଡ଼ ଦେଖି କୋଳଥ ଚେପା' । ଅନ୍ୟସବୁ ଧଡ଼୍-ଧାଡ଼୍ ଉଠିଯାଆନ୍ତି । ମହାତ୍ମାଗାନ୍ଧୀଙ୍କ ପ୍ରିୟଭଜନ ରାମଧୂନ ଜଣେ ବୋଲେ, ଅନ୍ୟମାନେ ପାଳି ଧରନ୍ତି । ସକାଳ ପ୍ରାର୍ଥନା ସେତିକି । ତପ୍ରେ ଛାତ୍ରମାନେ ସକାଳର ନିତ୍ୟକର୍ମ ଶେଷ କରିବାକୁ ପଲଟଣ ପୋଖରୀ ବା ବଡ଼ଯୋର ଆଡ଼େ ଯାଆନ୍ତି । ପଲଟଣ ଶବ୍ଦଟି ପ୍ଲାଟୁନ୍ ଶବ୍ଦର ଅପଭ୍ରଂଶ । ୧୮୧୭ ଖୋର୍ଦ୍ଧା ପାଇକବିଦ୍ରୋହ ସମୟରେ ବିଦେଶୀ ସରକାର ଏଠାରେ ଦେଶୀ ବିଦେଶୀ ସୈନ୍ୟମାନଙ୍କୁ ଠୁଳ କରିଥିଲେ । ତେଣୁ ପଡ଼ିଆର ନାମକରଣ ଏପରି । ସେତେବେଳେ ହାଇସ୍କୁଲ ପଡ଼ିଆଟା ରଣଭୂମି ଥିଲା ବୋଲି ଜଣାଯାଏ । ଏହି ପଡ଼ିଆର ପଶ୍ଚିମଦିଗରେ ଖ୍ରୀଷ୍ଟିଆନ କବରଖାନାରେ ଯେଉଁ ଉଚ୍ଚ କବର ସ୍ତମ୍ଭ ଓ ଗୁରୁଜଙ୍ଗ ଧବଳେଶ୍ୱର ମନ୍ଦିର ନିକଟରେ ଥିବା ଉଚ୍ଚସ୍ତମ୍ଭ ଦୁଇଜଣ ଇଂରେଜ ସେନାପତିଙ୍କ କବର ବୋଲି ଲୋକେ କହନ୍ତି । ପଲଟଣ ପଡ଼ିଆରେ ସ୍ଥାପିତ ସରସ୍ୱତୀ ମନ୍ଦିର ସ୍ୱାଧୀନତା ସଂଗ୍ରାମୀମାନଙ୍କର ରାତ୍ରି ଆଶ୍ରୟସ୍ଥଳ ଥିଲା ।

**ଛାତ୍ରାବାସର ପଢ଼ାସମୟ :**

ଛାତ୍ରାବାସର ପୂର୍ବାହ୍ନ ପଢ଼ାସମୟ ସକାଳ ଘ ୭ ରୁ ୯ ଘଣ୍ଟା ଓ ଅପରାହ୍ନ ପଢ଼ାସମୟ ସନ୍ଧ୍ୟା ଘ୬.୩୦ ରୁ ୯ ଘଣ୍ଟା । ପ୍ରତ୍ୟହ ଅନ୍ତେବାସୀମାନେ ଘ ୧୦-୧୫ ମିନିଟ୍‌ରେ ବିଦ୍ୟାଳୟ ପ୍ରାର୍ଥନା ସଭାରେ ଯୋଗଦିଅନ୍ତି । ପ୍ରଥମେ ଛୋଟ ହଲରେ ଓ ପରେ ବଡ଼ହଲରେ ପ୍ରାର୍ଥନା ସଭା ଅନୁଷ୍ଠିତ ହେଉଥିଲା । ପ୍ରାର୍ଥନା ସଭାରେ ମୁଁ ପ୍ରଥମେ ଯୋଗଦିଏ । ଆଉ କେତେକ ଯୋଗଦିଅନ୍ତି । ପ୍ରଧାନଶିକ୍ଷକ ଆସି ଠିକ୍ ସମୟରେ ପହଞ୍ଚନ୍ତି । ଉପନିଷଦୀୟ ଗୋଟିଏ ମହାନ୍ ଶ୍ଳୋକ ପ୍ରଧାନ ଶିକ୍ଷକ ଆବୃତ୍ତି କରନ୍ତି ଏବଂ ଛାତ୍ର ଓ ଉପସ୍ଥିତ ଶିକ୍ଷକମାନେ ସେହି ଶ୍ଳୋକ ପୁନରାବୃତ୍ତି କରନ୍ତି । ଶ୍ଳୋକଟି ୫ ପଦର । ସେଥିରେ ମହତ ଗୁଣ ନିହିତ ଅଛି । ତାହା ଆବୃତ୍ତି କଲେ ଏକ ଶୁଦ୍ଧ, ଶାନ୍ତ, ବାତାବରଣ ସୃଷ୍ଟି ହୁଏ । ଶ୍ଳୋକଟିରୁ ସ୍ତବ ଆରମ୍ଭ ହୁଏ–

୧

ନମସ୍ତେ ସତତେ ଜଗତ୍ କାରଣାୟ,<br>
ନମସ୍ତେ ଚିତ୍ତେ ସର୍ବେ ଲୋକାଶ୍ରୟାୟ ।

ନମୋଦ୍ୱୈତ ତତ୍ତ୍ୱାୟ ମୁକ୍ତି ପ୍ରଦାୟ,

ନମୋ ବ୍ରହ୍ମଣେ ବ୍ୟାପିନେ ଶାଶ୍ୱତାୟ ।।

୨

ତ୍ୱମେକଂ ଶରଣ୍ୟଂ ତ୍ୱମେକଂ ବରେଣ୍ୟଂ,

ତ୍ୱମେକଂ ଜଗତକାରଣଂ ସ୍ୱ ପ୍ରକାଶଂ ।

ତ୍ୱମେକଂ ଜଗଦ୍ ପାତୃ କର୍ତ୍ତୃ ପ୍ରହର୍ତ୍ତୃ,

ତ୍ୱମେକଂ ପରଂ ନିଶ୍ଚଳଂ ନିର୍ବିକଳ୍ପଂ ।।

୩

ଭୟାନାଂ ଭୟଂ ଭୀଷଣଂ ଭୀଷଣାନାଂ,

ଗତିଃ ପ୍ରାଣୀନାଂ ପାବନଂ ପାବନାନଂ ।

ମହୋଚ୍ଚୈ ପ୍ରଦାନଂ ନିୟନ୍ତୃ ତ୍ୱମେକଂ,

ପରେଶାଂ ପରଂ ରକ୍ଷଣଂ ରକ୍ଷଣାନାଂ ।।

୪

ପରେଶ ପ୍ରଭୋ ସର୍ବରୂପା ବିନାଶିନ୍,

ଅନିର୍ଦ୍ଦେଶ୍ୟ ସର୍ବେନ୍ଦ୍ରିୟାଗମ୍ୟ ସତ୍ୟଂ ।

ଅଚିନ୍ତ୍ୟାକ୍ଷର ବ୍ୟାପକାବ୍ୟକ୍ତ ତତ୍ତ୍ୱ,

ଜଗଦ୍ ଭାଷକାଧୀଶ ପାୟାଦ୍ ପାୟାତ ।।

୫

ବୟଂତ୍ୱାଂ ସ୍ମରାମଃ, ବୟଂତ୍ୱାଂ ଭଜାମଃ,

ବୟତ୍ୱାଂ ଜଗଦ୍ ସାକ୍ଷୀରୂପଂ ନମାମଃ ।

ସଦେକ ନିଧାନଂ ନିରାଲମ୍ବମୀଶଂ,

ଭବାମ୍ଭୋଧିପୋତଂ ଶରଣ୍ୟଂ ବ୍ରଜାମଃ ।।

ପ୍ରଧାନ ଶିକ୍ଷକ ମହୋଦୟ ବେଳେ ବେଳେ ଗୋଟିଏ ଗୋଟିଏ ପଦର ସରଳାର୍ଥ ବୁଝାଇଥାନ୍ତି । ପ୍ରାର୍ଥନା ପରେ ବିଦ୍ୟାଳୟର ପଢ଼ାକାର୍ଯ୍ୟ ଆରମ୍ଭ ହୁଏ । କଠୋର ଶୃଙ୍ଖଳା ମଧ୍ୟରେ ପଢ଼ାକାର୍ଯ୍ୟ ଚାଲେ । ଶିକ୍ଷକମାନେ ପିଲାମାନଙ୍କୁ ଯେତେ ସତ୍ ଉପଦେଶ ଦେଲେ ମଧ, ଯେତେ ସଜାଡ଼ିଲେ ମଧ ସେମାନେ ସମାଜ ଭିତରକୁ ଗଲେ ଏସବୁ ଭୁଲିଯାନ୍ତି । ଦୁର୍ନୀତିର ହାଉଆ ମାଡ଼ିମାଡ଼ି ଆସୁଥିଲା । ଜାତୀୟ ଚରିତ୍ରରେ ଅବନତି ଘଟୁଥିଲା । ପିଲାମାନେ ପରୀକ୍ଷାରେ କପି କରିବାକୁ ପଛାଉ ନଥିଲେ । ପ୍ରଧାନଶିକ୍ଷକ, ଶିକ୍ଷକମାନଙ୍କ ସହାୟତାରେ ବିଶେଷତଃ ମୋ ପରାମର୍ଶରେ ନେହୁରୁଙ୍କ ପରି ଏକ ବିଦ୍ୟାଳୟ ପଞ୍ଚଶୀଳ ନୀତି ପ୍ରଣୟନ କରିଥିଲେ । ବହୁକାଳ ମୁଁ ତାଙ୍କର ପ୍ରଥମ ସହକାରୀ ବା ସହକାରୀ ପ୍ରଧାନ ଶିକ୍ଷକ ରୂପେ ଥିଲି । ତାଙ୍କ ସଙ୍ଗେ ମିଶି ସ୍କୁଲର ହିତ ନିମନ୍ତେ ବହୁ ଅନୁଷ୍ଠାନ ସଭାରେ ଯୋଗ ଦେଇଛି । ଗୋଟିଏ ନୂତନ କଥା ପ୍ରଚଳନ ପୂର୍ବରୁ ମୋର ପରାମର୍ଶ ସେ ଗ୍ରହଣ କରିଥାନ୍ତି ।

**ପିଲାମାନଙ୍କୁ କପିରୁ ନିବୃତ୍ତ କରିବା ପାଇଁ ଉପାୟ :**

ଏହି ପଞ୍ଚଶୀଳ ନୀତିର ମର୍ମ– ଶିକ୍ଷା, ସ୍ୱାସ୍ଥ୍ୟ, ଶ୍ରମ, ସେବା, ସାଧନା । ଏହି ଶପଥ ପ୍ରତିଦିନ ପିଲାମାନେ ପ୍ରାର୍ଥନା ସଭାରେ ଆବୃତ୍ତି କରନ୍ତି –

୧. ମୁଁ ଅଧ୍ୟୟନ, ଅଧ୍ୟବସାୟ ଓ କଠିନ ପରିଶ୍ରମ ଦ୍ୱାରା ମୋ ଜ୍ଞାନର ପରିସୀମା ବୃଦ୍ଧି କରିବି ।

୨. ମୋର ଶାରୀରିକ ବଳ ଓ କର୍ମକୁଶଳତାକୁ ବୃଦ୍ଧି କରି ଦେଶରକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରିବି ।

୩. ଦେଶପାଇଁ କୃଷି, ଶିଳ୍ପଜାତ ସାମଗ୍ରୀର ଉତ୍ପାଦନ ବୃଦ୍ଧିରେ ମାନସିକ ଶକ୍ତି ଓ ଶ୍ରମ ବିନିଯୋଗ କରିବି ।

୪. ମୁଁ ନିଷ୍ଠା, କର୍ତ୍ତବ୍ୟପରାୟଣତା ଓ ଦେଶପ୍ରେମ ଦ୍ୱାରା ଦେଶର ତଥା ଜାତିର ସେବାରେ ନିଜକୁ ନିୟୋଜିତ କରିବି ।

୫. ମୁଁ ପରୀକ୍ଷାରେ ତଥା ଜୀବନର ଦୈନନ୍ଦିନ ପ୍ରତ୍ୟେକ କ୍ଷେତ୍ରରେ ସାଧୁତା ଅବଲମ୍ବନ କରିବି ।

ସର୍ବଶେଷରେ ପିଲାମାନେ ଜୟ ଯବାନ, ଜୟ କିଷାନ ଧ୍ୱନିଦେଇ ପ୍ରାର୍ଥନା ଗୃହ ତ୍ୟାଗ କରୁଥିଲେ ।

ଏହାଦ୍ୱାରା ପିଲାମାନଙ୍କର ଚରିତ୍ର ସଂଶୋଧନ ହେଉଥିଲା କି ନାହିଁ ଆମ୍ଭେମାନେ ପରୀକ୍ଷା କରିଥିଲୁ । ତେବେ ଗୋଟିଏ ପୁଷ୍କରିଣୀରେ ଦଳଭର୍ତ୍ତି ହୋଇଛି । ସ୍ନାନାର୍ଥେ ଯାଉଥିବା ବ୍ୟକ୍ତି ଦଳ ଆଡ଼େଇ ଦେଇ ସ୍ନାନ କରନ୍ତି । ସେ ଚାଲି ଆସିଲାପରେ ଦଳ ପୁଣି ମାଡ଼ିଆସେ । ଅନ୍ୟଜଣେ ଗଲେ ବି ସେହିପରି ଦଳ ଆଡ଼େଇ ଥାଏ । ଜଣେ ଦିଜଣ ଚେଷ୍ଟା କଲେ ପୁଷ୍କରିଣୀରୁ ଦଳ ସଫା ହୋଇପାରେ ନାହିଁ, ସେଥିପାଇଁ ସମୂହ ଚେଷ୍ଟା ଲୋଡ଼ା । ତେବେ ସତ୍ ଉପଦେଶର ପ୍ରଭାବ ସମସ୍ତଙ୍କ ଉପରେ ନପଡ଼ିଲେ ମଧ୍ୟ କେତେକଙ୍କ ଉପରେ ପଡୁଥିଲା । କେତେକ ଉଚ୍ଚଦରର ପିଲା ବାହାରୁଥିଲେ । କିଏ ଭଲ ନହେଲେ ବି ଆମକୁ ତ ସତ୍ ଶିକ୍ଷା ଦେବାକୁ ପଡ଼ିବ ? ଜାତୀୟ ଚରିତ୍ର ସଂଶୋଧନ କରିବା ପାଇଁ ବିଦ୍ୟାଳୟ ହେଉଛି ଉତ୍ତମ ମାଧ୍ୟମ । ପିଲା ଉଚ୍ଚଚାକିରି ନ ପାଇଲେ ମଧ୍ୟ ଦେଶର ଗୋଟିଏ ଗୋଟିଏ କୀର୍ତ୍ତିସ୍ତମ୍ଭ ହୋଇ ବାହାରିବେ ଏବଂ ଭଲ ମଣିଷ ହେବେ । ଏବେ ବିଦ୍ୟାଳୟରୁ ଧର୍ମ ଶିକ୍ଷା ପିରିଅଡ଼ ଲୋପ ପାଇଗଲାଣି, ପୁସ୍ତକମାନଙ୍କରେ ମଧ୍ୟ ସେପରି ବିଷୟ ଦିଆଯାଉନାହିଁ । ଦୁର୍ନୀତି ଦୂର ହେବ କେଉଁବାଟେ ?

**ସ୍ୱତନ୍ତ୍ର ବାଳିକା ହାଇସ୍କୁଲ :**

୧୯୬୨ ମସିହା ପର୍ଯ୍ୟନ୍ତ ଏ ବିଦ୍ୟାଳୟରେ ପୁଅଝିଅ ଉଭୟ ମିଶି ପାଠ ପଢୁଥିଲେ । ୧୯୫୯ ମସିହାରେ ବାଳିକା ହାଇସ୍କୁଲ ଖୋଲାଗଲା । ସେହି ବର୍ଷ ମଧ୍ୟ ପ୍ରାଣନାଥ ମହାବିଦ୍ୟାଳୟ ଖୋର୍ଦ୍ଧା କଲେଜର ଶୁଭ ଦିଆଗଲା । ଆମ ସ୍କୁଲରେ ପୁଅ ଓ ଝିଅମାନଙ୍କର ସ୍କୁଲ ପୋଷାକ ନର୍ଦ୍ଦିଷ୍ଟ କରାଯାଇଥିଲା । ବାଳିକା ପିଲାମାନେ ପ୍ରଥମେ ପ୍ରଥମେ ନୂଆ ସ୍କୁଲକୁ ଯିବାକୁ ମଙ୍ଗୁ ନଥିଲେ । ଆମେ କେତେଜଣ ସେ ସ୍କୁଲକୁ ପାଠ ପଢ଼ିବାକୁ ଛାଡ଼ିବା ପାଇଁ ଅଭିଭାବକମାନଙ୍କୁ ବୁଝାଇଲୁ । ଏଣେ ଝିଅପିଲାମାନଙ୍କୁ ବାଳକ ସ୍କୁଲରେ ଗ୍ରହଣ କରାଯାଉ ନଥିଲା । ସେତେବେଳେ ବାର ତେର ଜଣ ଝିଅପିଲାଙ୍କୁ ନେଇ ଯେଉଁ ସ୍କୁଲ ଗଢ଼ିଉଠିଥିଲା ବର୍ତ୍ତମାନ ସେଠାରେ ଏକ ହଜାର ଛାତ୍ରୀ । ତେବେ ଆଜିକାଲି ବଢ଼ିଲା ଝିଅ ଖାଲି ସାର୍ଟ ଖଣ୍ଡିଏ ଗଳେଇ ଦେଇ ପୁଅମାନଙ୍କ ମେଳରେ ବସୁଛନ୍ତି । ସେତେବେଳେ ସେପରି ନଥିଲା । ପୁଣି ମଧ୍ୟ ଆଜିକାଲି ପାଠ ପଢୁଆ ଝିଅମାନେ ଅସଂଯତ ଭାବେ କଲେଜକୁ ଯାଉଛନ୍ତି । ଏହା ଭାରତୀୟ ସଂସ୍କୃତିବିରୁଦ୍ଧ ଏବଂ ଯୌନ ଉଦ୍ଦୀପକ । ଆମ ରାଜ୍ୟର ସଂସ୍କୃତି ମହାନ୍ ।

ପାଶ୍ଚାତ୍ୟ ଦେଶର ଭଲଗୁଣକୁ ଆମେ ଅନୁକରଣ କରିବା, ମାତ୍ର ଲଙ୍ଗୁଳି ସଂସ୍କୃତିକୁ ଅନୁକରଣ କରିବା ଉଚିତ କି ? ଏବେ ଟିଭି, ଚଳଚ୍ଚିତ୍ରର ଗଭୀର ପ୍ରଭାବ

ନବୀନ ଯୁବକ ଓ ଯୁବତୀଙ୍କୁ ବିଭ୍ରାନ୍ତ କରୁଛି । ତେଣୁ ଆଜି ଦେଶରେ ବେଶି ଯୌନ ହତ୍ୟାକାଣ୍ଡ ଘଟୁଛି ।

**ମଧ୍ୟାହ୍ନ ଜଳଖିଆ :**

ଆମ ଦେଶ କଥା ଛାଡ଼, ଆମ ପ୍ରାଚୁର୍ଯ୍ୟପୂର୍ଣ୍ଣ ରାଜ୍ୟରେ ଦାରିଦ୍ର୍ୟର ସୀମାରେଖା ତଳେ ୫୦ ପ୍ରତିଶତ ଲୋକ । ସେମାନଙ୍କ ଘରୁ ବହୁ ପିଲା ପାଠ ପଢ଼ିବାକୁ ଆସନ୍ତି । ସ୍କୁଲକୁ ଆସିବ ବୋଲି ୯ଟା ବା ସାଢ଼େ ୯ଟାରେ କ'ଣ ଗଣ୍ଡାଏ ଖାଇଥାଏ । ଦିନ ୧ ଘଣ୍ଟା ବେଳକୁ ପେଟରେ କିଛି ନଥାଏ । ଭୋକ ଲାଗିବା ସ୍ୱାଭାବିକ । କିନ୍ତୁ ସେ ଖାଇବା କ'ଣ ? ତା ଘର ବିଦ୍ୟାଳୟଠାରୁ ୧ କି.ମି. କି ୨କି.ମି. ଦୂରରେ । ସେପରି ପିଲାର ପାଠପଢ଼ାରେ ବ୍ୟତିକ୍ରମ ଘଟେ । ଶିକ୍ଷକ ତାକୁ ଦଣ୍ଡ ଦିଅନ୍ତି । ତାର ମାନସିକ ବା ଆର୍ଥିକ ଅବସ୍ଥା ବୁଝିବାକୁ ତାଙ୍କର ସମୟ ନଥାଏ । ତେଣୁ ଏପରି ଆବଶ୍ୟକ ସମୟରେ ବିଦ୍ୟାଳୟରେ ମଧ୍ୟାହ୍ନ ଜଳଖିଆର ବ୍ୟବସ୍ଥା କରାଗଲା । ପ୍ରଧାନ ଶିକ୍ଷକ ହେଲେ ସ୍କୁଲର ମେଢ଼ି, ସେ ନୂଆ କଥା ପ୍ରଚଳନ କରିବେ । ଆମ୍ଭେମାନେ ତାକୁ ସମର୍ଥନ କରିବୁ । ବିଦ୍ୟାଳୟର ପଶ୍ଚିମ ତରଫ ଆମ୍ବଗଛ ମୂଳେ ଚାଳଛପର ଗୃହରେ ମୁକୁନ୍ଦପ୍ରସାଦରୁ ସ୍ୱତନ୍ତ୍ର ଗୁଡ଼ିଆ ଆସି ଜଳଖିଆ ପ୍ରସ୍ତୁତ କଲେ । ଏହି ବ୍ୟବସ୍ଥା ବହୁଦିନ ପର୍ଯ୍ୟନ୍ତ ଚାଲୁ ରହିଲା । ଏହି ବ୍ୟବସ୍ଥା ମାଟ୍ରିକ, ମାଇନର, ଅପର ପ୍ରାଇମେରୀ, ସପ୍ଲିମେଣ୍ଟାରୀ, ବିଦ୍ୟାଳୟର ବାର୍ଷିକ ଓ ଷାଣ୍ମାସିକ ପରୀକ୍ଷା ସମୟରେ ଆମ ସ୍କୁଲ ପିଲା ଓ ଅନ୍ୟାନ୍ୟ ସ୍କୁଲ ପିଲାଙ୍କ ପାଇଁ ସୁବିଧା ସୁଯୋଗ ପ୍ରଦାନ କଲା । ବିଦ୍ୟାଳୟର କ୍ରୀଡ଼ା ଶିକ୍ଷକ ବହୁ ବର୍ଷ ପର୍ଯ୍ୟନ୍ତ ଏହାର ଦାୟିତ୍ୱରେ ରହିଲେ । ଜଳଖିଆର ସର୍ବନିମ୍ନ ମୂଲ୍ୟ ଥିଲା ଏକ ଅଣା ବା ଛଅ ନୂଆ ପଇସା ।

**ସାମାଜିକ ଶିକ୍ଷା ପ୍ରଚଳନ ଓ ଆମ ସ୍କୁଲ ତଥା ଛାତ୍ରାବାସର ସୁଯୋଗ୍ୟ ଛାତ୍ର ମୋଜାମିଲ ଖାନ୍ :**

ପଞ୍ଚ ଦଶକର ମଧ୍ୟଭାଗରେ ପ୍ରତ୍ୟେକ ବିଦ୍ୟାଳୟରେ ଇତିହାସ-ଭୂଗୋଳ ପରିବର୍ତ୍ତେ ସାମାଜିକ ଶିକ୍ଷା ପ୍ରଚଳନ କରାଗଲା । ନୂଆ ବିଷୟଟିରେ ଶିକ୍ଷକମାନେ ଅଜ୍ଞ । ପିଲାମାନେ ବା କଅଣ ଜାଣିବେ । ନୂତନ ପୁସ୍ତକ ଆସି ପହଞ୍ଚିଲା । ବୋର୍ଡ଼ ପରୀକ୍ଷାରେ କିପରି ପ୍ରଶ୍ନ ପଡ଼ିବ ମୁଁ ଅପେକ୍ଷା କରିଥାଏ । ତାହାହିଁ ଦୀର୍ଘ ୩ ବର୍ଷ ଅପେକ୍ଷା । ଆମର ଗୋଟିଏ ଉନ୍ନତ ଧରଣର ପିଲା ଥାଏ । ସେ ଛାତ୍ରାବାସର ପିଲା । ତା ନାଁ ମୋଜାମିଲ୍ । ସେ ସେବର୍ଷ ବୋର୍ଡ଼ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବ

ବୋଲି ସମସ୍ତେ ଦୃଢ଼ ମତପୋଷଣ କରିଥିଲେ । ମାତ୍ର ସେ ବର୍ଷ ମୋଜାମିଲ୍ ସାମାଜିକ ଶିକ୍ଷାରେ ଶହେରୁ ଚାଳିଶ ନମ୍ବର ରଖି ଏକାଦଶ ସ୍ଥାନରେ ରହିଲା । ମୁଁ ତ ସାମାଜିକ ଶିକ୍ଷା ପଢ଼ାଉଥିଲି ବିଶେଷ ଦୁଃଖିତ ହେଲି । ସେ ପିଲା ଅବଶ୍ୟ ବେଷ୍ଟ ଗ୍ରାଜୁଏଟ୍ ହେଲା । ମାତ୍ର ମାଟ୍ରିକ୍ ପରୀକ୍ଷାରେ ସେ ପ୍ରଥମ ଦଶଜଣଙ୍କ ଭିତରେ ନରହିବାରୁ ମୋ ମନରେ ବିଶେଷ ଆଘାତ ଆସିଲା । ପରେ ବୋଧହୁଏ ୬ମାସ ପରେ ଶୁଣିଲି ତା' ନମ୍ବରରେ ଜଣେ ଉଚ୍ଚ ଶିକ୍ଷାଧିକାରୀଙ୍କ ଦ୍ୱାରା କାରସାଦି କରାଯାଇଥିଲା । ଉକ୍ତ ଅଫିସର ମହୋଦୟ ନିଜ ପୁତ୍ରକୁ ଉପରକୁ ଉଠେଇବାପାଇଁ ଏପରି ଆଚରଣ କରି ମୋର ଘୃଣାର ପାତ୍ର ହେଲେ । ହେଲେହେଁ ମୋ ପିଲାଟା ତ ଦଣ୍ଡିତ ହେଲା, ମୁଁ ସେବର୍ଷ ସାମାଜିକ ଶିକ୍ଷାରେ ନବମ, ଦଶମ, ଏକାଦଶ ଏପରି ୩ ଶ୍ରେଣୀ ପାଇଁ ୩ ଖଣ୍ଡି ପୁସ୍ତକ ରଚନା କରି ଛାତ୍ର ସମାଜର ଅଶେଷ କଲ୍ୟାଣ ସାଧନ କଲି । ସେପର୍ଯ୍ୟନ୍ତ ଏହି ନୂତନ ବିଷୟରେ ଓଡ଼ିଶାର ଛାତ୍ର ସମାଜ ଥଳକୂଳ ପାଉନଥିଲେ । ମୋ ପୁସ୍ତକ ଅଧ୍ୟୟନ କରି କଟକ ପୁରୀ ଜିଲ୍ଲାର ବହୁ ଛାତ୍ର ଆଶାତୀତ ନମ୍ବର ରଖିଲେ । ମୁଁ ବି ସେତେବେଳେ ଏହି ପୁସ୍ତକ ବିକ୍ରୟ କରି ଦୁଇ ହଜାର ଟଙ୍କା ପାଇଥିଲି । ଦୁଃଖର ବିଷୟ, ସ୍ମୃତି ସ୍ୱରୂପ ସେ ବହିଗୁଡ଼ିକରୁ ଖଣ୍ଡିଏ ହେଲେ କପି ମୋ ପାଖରେ ନାହିଁ । ପୁନଶ୍ଚ ସେ ବର୍ଷ ଷଷ୍ଠ, ସପ୍ତମ ଓ ଅଷ୍ଟମ ଶ୍ରେଣୀର ମଡ଼େଲ୍ ଟ୍ରାନ୍ସଲେସନ ପୁସ୍ତକ ଖଣ୍ଡିଏ ଲେଖି କିଛି ପଇସା ଉପାର୍ଜନ କରିଥିଲି । ମଝିରେ ମଝିରେ ଖବରକାଗଜରେ ପ୍ରବନ୍ଧମାନ ପ୍ରକାଶ କରୁଥିଲି । ଧାରାବାହିକ ଭାବରେ ଲେଖିବାକୁ ସମୟର ଅଭାବ ଥିଲା । ବହୁ ସମୟ ଛାତ୍ରାବାସର କଥା ବୁଝିବାକୁ ପଡୁଥିଲା ।

ଛାତ୍ରାବାସର ପିଲାମାନେ ବିଦ୍ୟାଳୟରୁ ଅପରାହ୍ଣ ୪ଟା ବେଳେ ଫେରି ନିତ୍ୟକର୍ମ ଶେଷ କରିବାକୁ ଦୂରକୁ ଯାଆନ୍ତି ଏବଂ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ବଜାରରୁ କ୍ରୟ କରନ୍ତି । କେତେକ ସମ୍ମୁଖସ୍ଥ ବିରାଟ ପ୍ରାନ୍ତରରେ ଫୁଟବଲ୍ ଅଭ୍ୟାସ କରନ୍ତି । ବହୁ ସମୟରେ ସ୍କୁଲ ମ୍ୟାଚରେ ଯୋଗ ଦିଅନ୍ତି । ସନ୍ଧ୍ୟାର ଆଗମନ କର୍ତ୍ତବ୍ୟ ପାଳନ ପାଇଁ ଆହ୍ୱାନ ଦେଇଥାଏ । ମୁଁ ତ ପରିଚାଳକ, ମୁଁ କୁଆଡ଼େ ଯିବି ? ପିଲାମାନଙ୍କ ସାଙ୍ଗେ ମୋତେ ପିଲା ହେବାକୁ ପଡ଼େ । ପ୍ରତ୍ୟେକ ନିୟମକାନୁନ୍ ମାନିବାକୁ ପଡ଼େ । ମୋ ଜୀବନଟାଯାକ ଆଇନଶୃଙ୍ଖଳା ମାନି ମାନି ଗଲା । ଶୃଙ୍ଖଳା କେତେ ମାନିବି ? କର୍ମ ବି କେତେ କରିବି ? ବିଦ୍ୟାଳୟରେ ୭ ଗୋଟି ପିରିୟଡ଼ ପଢ଼ାଇ ନାକେଦମ୍ ହୋଇଥାଏ, ପୁଣି ଛାତ୍ରାବାସରେ ରାତ୍ରି ୯ ପର୍ଯ୍ୟନ୍ତ ଜାଗ୍ରତ ପ୍ରହରୀ ରୂପେ ରହିବା ଦ୍ୱାରା କ୍ଳାନ୍ତି ଅନୁଭବ କରୁଥିଲି । ତଥାପି ଛାତ୍ରାବାସ ଛାଡୁ ନଥିଲି । ପୂର୍ବରୁ ପାଠ କରିଥିଲି, Life is duty, duty is God. ନିରଳସ ଜୀବନଯାପନ ମୋର ଥିଲା ମଟୋ ।

**ସାନ୍ଧ୍ୟ ପ୍ରାର୍ଥନା ସଭା :**

ସନ୍ଧ୍ୟାକାଳୀନ ପ୍ରାର୍ଥନା ସଭା ଏକ ବହୁମଖୀ ଅନୁଷ୍ଠାନ । ବଜାରରେ ବୁଲିବା ବା କାହା ସଙ୍ଗେ ହସଖୁସିରେ ସମୟ କଟାଇବା ମୋ ଭାଗ୍ୟରେ ସମ୍ଭବ ହେଲା ନାହିଁ । ପ୍ରାର୍ଥନା ସଭାରେ ନିଶ୍ଚୟ ଉପସ୍ଥିତ ରହିବାକୁ ପଡ଼ିବ । ଅବଶ୍ୟ ଜରୁରୀ କାମରେ ରହିପାରେ ନାହିଁ । ଦିନକର ଘଟଣାବଳୀ ପ୍ରିଫେକ୍ଟଠାରୁ ବା ପିଲାମାନଙ୍କଠାରୁ ବୁଝିବାକୁ ହେବ । ପ୍ରତିଦିନ କିଛି ନା କିଛି ଅଭିଯୋଗ ଥାଏ । ଅଭିଯୋଗ ଗୁରୁତର ହେଲେ ପ୍ରଧାନ ଶିକ୍ଷକଙ୍କୁ ଡାକେ । ସେ ସହଯୋଗ କରନ୍ତି । ଏତେ ଦିନ ଛାତ୍ରାବାସରେ ଅବସ୍ଥାନ କରିବାରୁ କେତେକ ଶିକ୍ଷକ ଈର୍ଷାପରାୟଣ ହୁଅନ୍ତି, ମାତ୍ର ଦିବ୍ୟସିଂହବାବୁ ସେସବୁକୁ ଶୁଣନ୍ତି ନାହିଁ । ଦିବ୍ୟସିଂହବାବୁ ମୋ କାର୍ଯ୍ୟକଳାପ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି ଏବଂ ଭିତରେ ଭିତରେ ମୋ ବିରୁଦ୍ଧରେ ଅଭିଯୋଗର ଅନୁସନ୍ଧାନ କରନ୍ତି ।

ଥରେ ଜଣେ ବିପଥଗାମୀ ମଦ୍ୟପ କାଉନସିଲର (ଏନ୍.ଏ.ସି.) ମୋତେ ଅପମାନ ଦିଆଇବାରୁ ଓ ମୋର ମର୍ଯ୍ୟାଦାକୁ କ୍ଷୁଣ୍ଣ କରିବା ପାଇଁ ମୋ ଚରିତ୍ର ଉପରେ ଦୋଷାରୋପ କଲା । ସେ ଖୋର୍ଦ୍ଧା ଥାନାର ଦାରୋଗାକୁ ଜଣାଇଲା । ସେ ଯେତେବେଳେ ଖୋର୍ଦ୍ଧା ଏନ୍.ଏ.ସି. ର ଜଣେ ସଭ୍ୟ ତା କଥା ପୁଲିସ ମନେରଖିଲା । ଏକଥା ପୁଲିସ ଦିବ୍ୟସିଂହବାବୁଙ୍କୁ ଜଣାଇଲା । ପ୍ରଧାନଶିକ୍ଷକ ମୋ ଅଲକ୍ଷ୍ୟରେ ବହୁ ଅନୁଧାନ କଲେ, କିନ୍ତୁ କୌଣସି ଦୁଷ୍କର୍ମର ସନ୍ଧାନ ପାଇଲେ ନାହିଁ । ଶେଷରେ ସେକଥା ମୋ ଆଗରେ ପ୍ରକାଶ କଲେ । ମୁଁ ହଠାତ୍ ଗର୍ଜି ଉଠିଲି । କିଛି ସମୟ ପରେ ମୋତେ ହସ ମାଡ଼ିଲା । ଏ କି ଉଦ୍ଭଟ କଥା । ପ୍ରତ୍ୟେକ ଛାତ୍ର ମୋର ପୁତ୍ର । ସେମାନଙ୍କୁ ତାଗିଦ୍ କରିବା ସଙ୍ଗେସଙ୍ଗେ ସ୍ନେହ କରିବା ମୋର କର୍ତ୍ତବ୍ୟ । ଛାତ୍ରାବାସରେ କେବଳ କ'ଣ କାଳିଆ କୋତରା ପିଲା ରହୁଥିଲେ ? ମୁଁ କେତେକ ପିଲାଙ୍କୁ ସଙ୍ଗରେ ଧରି ଛାତ୍ରାବାସ କାର୍ଯ୍ୟରେ ବେଳେବେଳେ ବଜାରକୁ ଯାଏ, ଏହାର ଅର୍ଥ ନୁହେଁ ମୁଁ ସେମାନଙ୍କୁ ପ୍ରେମାଲିଙ୍ଗନ କରୁଛି ? ଥରେ ଦିବ୍ୟସିଂହବାବୁ ଛାତ୍ରାବାସକୁ ଆସି ଦେଖିଲେ ମୋ ନଅ ବର୍ଷର ପୁଅ ମୋ ଗୋଡ଼ ଉପରେ ଠିଆ ହୋଇଛି । ମୁଁ ଶାରୀରିକ ଦୁର୍ବଳ ତେଣୁ ବେଳେବେଳେ ଗୋଡ଼ ମୋଡ଼ିବା ଆବଶ୍ୟକ ପଡ଼େ । ମୁଁ କୌଣସି ପିଲାକୁ ଡାକେ ନାହିଁ । ସଦା ସତର୍କ । ଜୀବନସାରା ହୁସିଆର, ସତର୍କ ରହିଥାଏ । ସମାଜରେ କେତେକ ବଦାଚରଣର ଲୋକ ଥାଆନ୍ତି । ''ସଜ ମାଛରେ ପୋକ ପକାନ୍ତି'' । ସେଦିନ ଦିବ୍ୟସିଂହବାବୁଙ୍କ ସମ୍ମୁଖରେ ଦମ୍ଭୋକ୍ତି ସହ କଠୋର ଭାଷା ପ୍ରୟୋଗ କଲି । କହିଲି ମୋ ଚରିତ୍ର ସମ୍ବନ୍ଧରେ ଯେଉଁ

ବ୍ୟକ୍ତି ଏପରି କୁସାରଟନା କରୁଛି ତାକୁ ମୋ ସମ୍ମୁଖକୁ ଆଣିଲେ ମୁଁ ତାକୁ ଟିକିଟିକି କରି ଚିରିଦେବି । ଦିବ୍ୟସିଂହବାବୁଙ୍କ ଠାରୁ କୌଣସି ଉତ୍ତର ମୁଁ ଶୁଣିବାକୁ ଚାହିଁଲି ନାହିଁ । ତାଙ୍କ କଥା ସେ ସେଇଠି ରଖିଲେ । ସବୁଦିନ ପାଇଁ କୁସାରଟନା ବନ୍ଦ ହେଲା । ମୋର ମାନସିକ ବଳ ଅତି ଦୃଢ଼, ଦୁର୍ଦ୍ଦାନ୍ତ ଶତ୍ରୁ ମଧ ମୋ ଆଗେ ପଶିବାକୁ ସାହସ କରେ ନାହିଁ ।

ସନ୍ଧ୍ୟାବେଳର ସଭା ୩୦ ମିନିଟ ପର୍ଯ୍ୟନ୍ତ ଚାଲେ । ସେ ସଭାରେ ଦୈନିକ ସମ୍ବାଦପତ୍ରର ମୁଖ୍ୟ ସମ୍ବାଦ ପାଠ କରାଯାଏ । ମାନଚିତ୍ର ସାହାଯ୍ୟରେ ବୁଝାଇ ଦିଆଯାଏ । କେତେକ ପିଲା ବିଦ୍ୟାଳୟରେ ମାଡ଼ଗାଳି ଭୟରେ ବିଦ୍ୟାଳୟ ଚାଲିଥିବାବେଳେ ଛାତ୍ରାବାସର ପ୍ରକୋଷ୍ଠରେ ଲୁଚିରହି ବନ୍ଧୁ ଦ୍ୱାରା ବାହାର ଶିକୁଳି ଲଗେଇ ଦେଇ ବିଦ୍ୟାଳୟକୁ ଯାଆନ୍ତି ନାହିଁ । ମୁଁ ତ ସଦା ଜାଗ୍ରତ ପ୍ରହରୀ, ସବୁପିଲା ଗଲେ କି ନାହିଁ, ଜାଣିବାପାଇଁ ବିଦ୍ୟାଳୟକୁ ଯିବାପୂର୍ବରୁ ଘେରାଟାଏ ବୁଲିଆସେ । ଶିକୁଳି ଲାଗିଛି ତାଲା ପଡ଼ିଛି ମୁଁ ବା ଜାଣିବି କିପରି ? ବେଳେବେଳେ ସେ ପିଲାକୁ ଖୋଜିଲେ ସେ ସ୍କୁଲରେ ମିଳେ ନାହିଁ । ଅନ୍ୟ ଶିକ୍ଷକ ମୋତେ ଜଣେଇ ଦିଅନ୍ତି । ସେ ଧରାପଡ଼େ । ସନ୍ଧ୍ୟା ପ୍ରାର୍ଥନାରେ ତାକୁ ସର୍ବସମକ୍ଷରେ ଦଣ୍ଡ ଦିଆଯାଏ । ଏହିପରି ବହୁ ପିଲା ବାଟକୁ ଆସନ୍ତି । ମୋ ଅଲକ୍ଷ୍ୟରେ କେତେଜଣ ରାତ୍ରିରେ ଲୁଚି ଜଟଣୀ ସିନେମା ଦେଖିବାକୁ ପଳାଇଥାନ୍ତି । ଧରା ନପଡ଼ିବା ପାଇଁ ଜଣେ ମଣିଷ ଶୋଇବା ପରି ଶେଯକୁ ସଜାଡ଼ି କରି ରଖିଦିଅନ୍ତି । ପିଲାମାନେ ରାତ୍ରିରେ ଶୋଇବା ପାଇଁ ଘଣ୍ଟା ବାଜେ । ତାପରେ ମୁଁ ଘରଘର ବୁଲି ଅନୁସନ୍ଧାନ କରେ । ସେତେବେଳେ ଧରାପଡ଼ନ୍ତି । ଏପରି ପିଲାମାନଙ୍କୁ ପ୍ରାର୍ଥନା ସଭାରେ ଦଣ୍ଡ ଦିଆଯାଏ । କୁକୁର ଲାଙ୍ଗୁଳ ବଙ୍କା ହେଲାପରି ସେହି ପିଲାମାନଙ୍କ ସ୍ୱଭାବ ସେପରି । ସବୁବେଳେ ସେମାନଙ୍କ ପିଛା ଲାଗିଥାଏ, ମାତ୍ର ଯାହା ସେଇଆ । ଏକଥା ସତ ଯେ କୁକୁର ଲାଙ୍ଗୁଳ ଆଦୌ ସିଧା ହୁଏନାହିଁ ମାତ୍ର ମୋର ଅହରହ ଚେଷ୍ଟାରେ ପିଲାମାନଙ୍କ ପ୍ରକୃତି ବହୁ ପରିମାଣରେ ମାର୍ଜିତ ତଥା ଶୃଙ୍ଖଳିତ ହୁଏ । ରାତ୍ରିରେ ବାହାରକୁ ପଳାଇଥିବା ପିଲାମାନେ ବେଳେବେଳେ ମୋ ସ୍ତ୍ରୀଙ୍କ ପାଖେ ଶରଣ ପଶନ୍ତି । ନାରୀମାନେ ସାଧାରଣତଃ ଦୟାଶୀଳା । ତାଙ୍କ ଅନୁରୋଧରେ ସେ ପିଲାମାନଙ୍କୁ କୋହଳ ଦଣ୍ଡ ଦିଏ । ସ୍ତ୍ରୀଙ୍କ ସକାଶେ ମୁଁ ବେଳେବେଳେ ଅସୁବିଧାର ସମ୍ମୁଖୀନ ହୁଏ ।

**ଏକ ମହାନ୍ ଦୃଷ୍ଟାନ୍ତ :**

ଏବେ ୨୦୦୦ ମସିହାରେ ମୁଁ ଖଣ୍ଡେ ବାଡ଼ିଧରି ନୟାଗଡ଼ ରୋଡ୍‌ରେ ଯାତ୍ରା କରୁଥିବା ସମୟରେ ଗୋଟିଏ ପିଲା (ବର୍ତ୍ତମାନ ବୟସ ୪୭ କି ୪୮ ହୋଇପାରେ) ମୋ

ପାଦଧୂଳି ନେବାକୁ ନଇଁ ପଡ଼ିଲା । ମୁଁ ହାଁ ହାଁ କରୁଛି ସେ ସମ୍ଭାଳି ହେଲାନାହିଁ । ମୁଁ ତାକୁ ଚିହ୍ନି ପାରିଲି ନାହିଁ । ୩୫ କି ୪୦ ବର୍ଷ ତଳର କଥା । ତା ନାଁ କହିଲା, ସନ୍ତୋଷ ନନ୍ଦ, ମୁଁ ମନେ ପକାଇ ପାରିଲି ନାହିଁ । ତାରି ସମୟରେ ଜଣେ ଦୁଇଜଣ ଭଲ ପଢୁଥିବା ପିଲାଙ୍କ ନାମ କହିବାରୁ ମନେପକାଇଲି । ଭଲମନ୍ଦ ପଚାରିଲି । ସେ ଗୋଟିଏ ଘଟଣା କହିଲା ଯେଉଁଥିପାଇଁ ମୁଁ ବିସ୍ମିତ ହେଲି । ସେ କହିଲା, ''ସାର୍, ମୋତେ ଆପଣ ପାଞ୍ଚଟଙ୍କା ଜୋରିମାନା କରିଥିଲେ ।'' ମୁଁ ତା ମୁହଁକୁ ଚାହିଁ ରହିଲି । ''ଆରେ ପାଞ୍ଚଟଙ୍କା ତ ସେତେବେଳେ ଖୁବ୍ ବେଶି । ତୁ କ'ଣ ଗୁରୁତର ଅପରାଧ କରିଥିଲୁ ?'' ହଁ ସାରେ, ''ମୁଁ ବାରମ୍ବାର ନୋଟିସ୍ ସତ୍ତ୍ୱେ ଜଟଣୀ ସିନେମା ଦେଖିବାକୁ ପଳାଏ । ଯେତେବେଳେ ଆପଣ କହି କହି ଥକିଲେ ଶେଷରେ ରାଗରେ ମୋତେ ଏତେ ଜୋରିମାନା କରିଦେଲେ ।'' ଏବେ ମୋ ରକ୍ତ ଶିଥିଳ ହୋଇଗଲାଣି, ତେଣୁ ପୂର୍ବ ସ୍ମୃତି ମନେପକାଇ ଅନୁତପ୍ତ ହେଲି । ''ହଉ ହଉ ସେ ସମୟ ଅନୁଯାୟୀ ଯାହା ଉଚିତ ମନେକଲି ତାହା କରିଥିଲି'', ତୁନି ହୋଇ ରହିଗଲାବେଳକୁ ସେ ପିଲା ପୁଣି କହିଲା–''ସାର୍, ଆପଣଙ୍କ ସକାଶେ ମୁଁ ମଣିଷ ହୋଇଯାଇଛି । ମୁଁ ଯେ ଏକା ମଣିଷ ହୋଇଛି ତା ନୁହେଁ, ଛାତ୍ରାବାସର ପିଲାମାନେ ସେତେବେଳେ ଆପଣଙ୍କୁ ଖରାପ ମଣୁଥିଲେ । ମାତ୍ର ଯେତେ ବନ୍ଧୁମାନଙ୍କୁ ସାକ୍ଷାତ କରିଛି ସମସ୍ତେ ଆପଣଙ୍କଗୁଣଗାନ କରୁଛନ୍ତି । ସାର୍, ଆଁପଣ କ'ଣ ଆପଣଙ୍କ ଲାଗି ଆମ୍ଭମାନଙ୍କୁ ଦଣ୍ଡ ଦେଉଥିଲେ ? ଆମ୍ଭେମାନେ କ'ଣ ଆପଣଙ୍କୁ ଭବିଷ୍ୟତରେ ପୋଷିବୁ ? ସାର୍, ଆପଣ ଥିଲେ ନୀତିନିଷ୍ଠ, କର୍ତ୍ତବ୍ୟପରାୟଣ, ଛାତ୍ରପ୍ରେମୀ । ଯେଉଁ ସମୟରେ ଆପଣ ଆମ୍ଭମାନଙ୍କୁ ଶାସନ କରିଛନ୍ତି ଆମେ ଉପଯୁକ୍ତ ମଣିଷ ହୋଇପାରିଛୁ । ସାର୍, ମୋ ବାପା କହୁଥିଲେ ଉପଯୁକ୍ତ ଶିକ୍ଷକଙ୍କଠାରୁ ଦଣ୍ଡ ପାଇଲେ ପାଠ ଆସେ । ସେ ଜୀବନରେ ପ୍ରତିଷ୍ଠ ଲାଭ କରେ ।''

ହଉ ହଉ, ଛାଡ଼ ସେକଥା । ତମେ କେଉଁଠି ଅଛ ? ''ସାର୍, ମୁଁ କୋଣାର୍କ ନେହୁରୁ ଡାକବଙ୍ଗଳା ଦାୟିତ୍ୱରେ ଅଛି । ଆପଣ ଚାଲୁନାହାଁନ୍ତି ?'' ମୁଁ କହିଲି ଏ ବୟସରେ ତ ଚାଲିବାକୁ ଅକ୍ଷମ, ତଥାପି ଦେଖିବି । ଏହାପରେ ସେ ପିଲାଟି (ବାପ ଆଖିରେ ପୁଅ ସବୁବେଳେ ପିଲା ।) ମୋଠାରୁ ବିଦାୟ ନେଲା । ଏ ଅବଶ୍ୟ ଗୋଟିଏ ଉଦାହରଣ । ଏହିପରି ବହୁ ପିଲାଙ୍କଠାରୁ ଶୁଣିଛି ।

ମୋର ନିଷ୍ଠା ଓ ନିଃସ୍ୱାର୍ଥପର ସେବାପାଇଁ ମୋତେ ସରକାରଙ୍କ ତରଫରୁ କେବେ କିଛି ହେଲେ ମିଳିନାହିଁ । କେତେଥର ମୋତେ ଡାକି ପ୍ରହସନ କରିଥିଲେ ମାତ୍ର

ତତ୍‌ପୂରୀର ଅଭାବ । ଛାଡ଼ ସେକଥା, ପିଲାମାନଙ୍କ କୃତିତ୍ୱ ଶୁଣିଲେ ମନରେ ଆନନ୍ଦ ଜାତ ହୁଏ । କୋଟିନିଧି ପାଇଲାପରି ମନେହୁଏ । ତାହାହିଁ ମୋର ପୁରସ୍କାର ।

ପାଠପଢ଼ା ସମୟରେ କୌଣସି ପିଲା ବଜାରରେ ବୁଲିଲେ ତାକୁ କଠିନ ଦଣ୍ଡ ଦିଏ । ପଢ଼ା ସମୟରେ ପିଲାମାନେ ନିଜ ଆସନରେ ନଥିଲେ ବି ଦଣ୍ଡଦିଏ । କିଏ ପଢ଼ା ବୁଝି ନପାରିଲେ ବୁଝାଇଦିଏ । ସକାଳେ ଓ ରାତ୍ରିରେ ଦୁଇ ଦୁଇ ଥର ସବୁଆଡ଼େ ତନଖି କରେ । ଏପରି ତୀକ୍ଷ୍ଣ ନଜର ଯୋଗୁଁ ଛାତ୍ରାବାସର ପିଲାମାନେ ପରୀକ୍ଷାରେ ଭଲଫଳ ଦେଖାନ୍ତି । ଏହାବୋଲି କ'ଣ ପିଲାମାନଙ୍କ ଭିତରୁ ଫେଲ ହୁଅନ୍ତି ନାହିଁ ? ହୁଅନ୍ତି, ତାହା ନଗଣ୍ୟ । ଛାତ୍ରାବାସର ସୁନାମ ଜିଲ୍ଲାସାରା ବ୍ୟାପିଯାଇଥାଏ । ନୟାଗଡ଼, ବାଙ୍କି, ହଳଦିଆ, ଭୂଷଣ୍ଡପୁର, ବାଣପୁର, ପାରିକୁଦ, ପୁରୀ, ଭୁବନେଶ୍ୱର, ଜଟଣୀ ଏପରିକି କଟକରୁ ସହରୀ ପିଲାମାନେ ମଧ ଛାତ୍ରାବାସରେ ଅବସ୍ଥାନ କରୁଥିଲେ । ଏକଶତରୁ ଅଧିକ ପିଲା ରହୁଥିବାରୁ ଛାତ୍ରାବାସ ଜୀବନ୍ତ ପରି ଜଣାପଡୁଥିଲା । ଖୋର୍ଦ୍ଧା ସହରରୁ ମଧ ଜନସେବୀ ଭ୍ରମରବର ସାମନ୍ତରାୟଙ୍କ ପୁଅ ଓ ଲୋକପ୍ରିୟ କବିରାଜ ନନ୍ଦକିଶୋର ମିଶ୍ରଙ୍କ ପୁଅ ସୂର୍ଯ୍ୟମଣି ଛାତ୍ରାବାସରେ ରହିଲେ । ପୁଣି ଅତି ଗରିବ ପିଲା ଓ ପଢ଼ିବାକୁ ଆଗ୍ରହୀ ଛାତ୍ରମାନଙ୍କୁ ମଧ ହାତରେ ରୋଷେଇ କରି ଖାଇବାକୁ ଅନୁମତି ଦେଲି । ସବୁବେଳେ ଛାତ୍ରାବାସ ଛାତ୍ରାବାସ । ଛାତ୍ରାବାସର ଉନ୍ନତି ମନ ମୁକୁରରେ ସ୍ଥାନ ପାଇଲା ।

## ଗରିବ ମେଧାବୀ ଛାତ୍ରଙ୍କ ପାଇଁ :

କେତେକ ଦରିଦ୍ର ମେଧାବୀ ଛାତ୍ରମାନଙ୍କୁ ଛାତ୍ରାବାସରେ ମାଗଣାରେ ଖାଇବାକୁ ଦେବାପାଇଁ ଏକ ଉପାୟ ଉଦ୍ଭାବନ କଲି । ଛାତ୍ରାବାସରେ ୧୦୦ ପିଲା ରହୁଥିଲେ । ସେହି ପିଲାମାନଙ୍କ ମଧ୍ୟରୁ ଅତିକମ୍‌ରେ ଦୁଇଜଣ ମାଗଣାରେ ଛାତ୍ରାବାସରେ ଖାଇପାରିବେ । ମୁଁ ଯେ ଜୋରଜବରଦସ୍ତ ଏ କଥା କରିଦେଲି ତା ନୁହେଁ, ସବୁପିଲାମାନଙ୍କୁ ବସେଇ ବିଚାରବିମର୍ଶ ପରେ ସମସ୍ତେ ରାଜିହେଲେ । ଦରିଦ୍ର ଓ ମେଧାବୀ ଛାତ୍ରମାନଙ୍କୁ ମାଗଣାରେ ଖାଇବାକୁ ଦେବାପାଇଁ ମାନବିକତା ଦୃଷ୍ଟିକୋଣରୁ ବିଚାର କରାଗଲା ।

ଛାତ୍ରାବାସର ଶୁଦ୍ଧ ବାୟୁମଣ୍ଡଳ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଦୁଇତିନିଜଣ ପିଲାଙ୍କୁ ସେମାନଙ୍କ ଚରିତ୍ରଗତ ଦୋଷରୁ ପ୍ରଧାନ ଶିକ୍ଷକଙ୍କ ଅନୁମତି ନେଇ ଛାତ୍ରାବାସରୁ ବହିଷ୍କାର କରିଦେଲି । ଏହାଦ୍ୱାରା ଅନ୍ୟ ପିଲାମାନଙ୍କର ସିନା ମଙ୍ଗଳ ହେଲା ମାତ୍ର ବହିଷ୍କୃତ ପିଲା ଓ ତା'ର ଅବିଭାବକଙ୍କର ମୋ ପ୍ରତି ବୈରଭାବ ରହିଲା । କର୍ତ୍ତବ୍ୟର ତାଡ଼ନାରେ

ମୁଁ ଏପରି କଠିନ ପଦକ୍ଷେପ ନେଇଥିଲି । ମୋର ବ୍ୟକ୍ତିଗତ କୌଣସି ଲାଭ ମୁଁ କେବେ ଚିନ୍ତା କରିନାହିଁ । ପିଲାମାନଙ୍କ ସକଳ ଉନ୍ନତି ମୋର ଲକ୍ଷ୍ୟ ଥାଏ । କଠୋର ନହେଲେ ଏତେଗୁଡ଼ିଏ ପିଲାଙ୍କୁ ଏକତ୍ର ଶାନ୍ତି ଶୃଙ୍ଖଳାରେ ରଖି ହେବନାହିଁ ବୋଲି ମୋର ମତ । ବହୁ ପିଲାଙ୍କର ଏକତ୍ର ଅବସ୍ଥାନ ହେତୁ ଝାଡ଼ାବାନ୍ତିର ଭୟ ଥାଏ । ପାନୀୟ ଜଳ, ଖାଦ୍ୟପେୟ ପ୍ରତି ସତର୍କ ଦୃଷ୍ଟି ରଖିଥାଏ । ମେସ୍ କମିଟିଟିଏ ଗଢ଼ା ହେଲା । ପିଲାମାନଙ୍କ ମଧ୍ୟରୁ କେତେକ ସେଥିରେ ରହି ଖାଦ୍ୟଦ୍ରବ୍ୟ ପରୀକ୍ଷା କଲେ । ଛାତ୍ରାବାସରେ ଗୋଟିଏ ରବିବାର ୱେଟ୍ ଡେ ଓ ତା'ପର ରବିବାର ଡ୍ରାଏ ଡେ ପାଳନ କରାଗଲା ।

**ୱେଟ ଡେ ଓ ଡ୍ରାଇ ଡେ :**

ୱେଟ ଡେ ଅର୍ଥ ସେଦିନ ପିଲାମାନେ ପରିଚାଳକଙ୍କ ସଙ୍ଗେ ମିଶି ଛାତ୍ରାବାସର ସମସ୍ତ ଗୃହ, ରୋଷେଇଗୃହ, ବାରଣ୍ଡା, ନଳା ପରିଷ୍କାର କରିବେ । ଏଥିରେ ଫିନାଇଲ ବ୍ୟବହାର କରାଯାଏ । ଏହାପରେ ଅନ୍ତେବାସୀମାନେ ନିଜ ନିଜର ପ୍ୟାଣ୍ଟ, କୁର୍ତ୍ତା ସଫା କରିବାକୁ ଯାଆନ୍ତି । ଡ୍ରାଏ ଡେ ର ଅର୍ଥ ସେଦିନ ପିଲାମାନେ ପରିଚାଳକଙ୍କ ସହ ମିଶି ଛାତ୍ରାବାସର ପ୍ରତ୍ୟେକ ପ୍ରକୋଷ୍ଠ, ବାରଣ୍ଡା ଛାଞ୍ଚୁଣୀରେ ଓଳେଇ ସଫା କରିବେ ଏବଂ ଛାତ୍ରାବାସ ବିଲଡ଼ିଙ୍ଗର ଚତୁଃପାର୍ଶ୍ୱ କୋଠାଘରକୁ ଲାଗି ୨୦ ଫୁଟ ଓସାର ସ୍ଥାନ ବଣ, ବୁଦା ସଫାକରି ପରିଷ୍କାର ପରିଚ୍ଛନ୍ନ କରିବେ । ଏହାଦ୍ୱାରା ମଶାମାଛିର ପ୍ରାଦୁର୍ଭାବ କମିବ । ପୁନଃ ଛାତ୍ରାବାସ ସମ୍ମୁଖଭାଗ ପରିଷ୍କାର ପରିଚ୍ଛନ୍ନ ରଖାଯାଏ । ଏହା କେବେ ବଣପରି ରହେନାହିଁ କି ପିଲାମାନେ ତା' ଭିତରେ ଝାଡ଼ା ଫେରନ୍ତି ନାହିଁ । ଥରେ ଦିଥର ଛାତ୍ରାବାସ ଭିତରେ ସାପ ପ୍ରବେଶ କରିବାରୁ ସେଥିରୁ ରକ୍ଷାପାଇବା ପାଇଁ ଛାତ୍ରାବାସର ପ୍ରକୋଷ୍ଠ, ଡରମିଟୋରୀ ସମ୍ମୁଖରେ ଦେଢ଼ଫୁଟ ଓସାରର ଗୋହିଖୋଳି ସଂଗଠିତ ଭାବରେ ଶହ ଶହ ତୁଳସୀ ବୃକ୍ଷ ରୋପଣ କରାଇଲି । ବର୍ଷାଦିନଟା ହଇଜା ଋତୁ । ତେଣୁ ବର୍ଷାଦିନେ ପିଇବା ପାଣି ପ୍ରତି ଓ ରୋଷେଇ ଖାଦ୍ୟପ୍ରତି କଡ଼ାକଡ଼ି ନିୟମ ପାଳନ କଲି । ମୋତେ ତ ବେଶିକାମ ପଡ଼ିଯାଏ । ଶନିବାର ରାତ୍ରିରେ ବକ୍ତୃତା ପ୍ରତିଯୋଗିତା ଚାଲେ । ପରିଚାଳକ ବେଳେ ବେଳେ ସଭାପତି ଆସନ ଅଳଙ୍କୃତ କରନ୍ତି । ସବୁବେଳେ ସଭାପତି ଆସନ ଅଳଙ୍କୃତ କରିବା ସମ୍ଭବ ହୁଏନାହିଁ ।

**ଅଗଷ୍ଟ ପନ୍ଦର ନାଟକ ପରିବେଷଣ :**

ପ୍ରତିବର୍ଷ ଅଗଷ୍ଟ ପନ୍ଦରକୁ ଅନ୍ତେବାସୀମାନେ ଏକ ଦେଶାତ୍ମବୋଧ ନାଟକ ମଞ୍ଚସ୍ଥ କରିବାରେ ସମର୍ଥ ହେଉଥିଲେ । ବିଦ୍ୟାଳୟର ଦୁଇଜଣ ପ୍ରବୀଣ ଶିକ୍ଷକ

ପରିଚାଳକଙ୍କ ଅନୁରୋଧକ୍ରମେ ଏହି ନାଟକ ମଞ୍ଚସ୍ଥ କରିବାରେ ପିଲାମାନଙ୍କୁ ସାହାଯ୍ୟ କରୁଥିଲେ । ସେ ଦୁଇଜଣ ଶିକ୍ଷକ ହେଲେ ବାବୁ ଶୈଳେନ୍ଦ୍ର କୁମାର ଦାସ ଓ ପଣ୍ଡିତ ହରିକୃଷ୍ଣ ପ୍ରଧାନ । ପରିଚାଳକ ପିଲାମାନଙ୍କ ସଙ୍ଗେ ସଙ୍ଗେ ରହୁଥିଲେ । କ୍ରୀଡ଼ା ଶିକ୍ଷକ ଉଦୟନାଥ ପଟ୍ଟନାୟକ ଓ ଖୋରଧା ସହରର ତବଲା ବାଦକ ଶ୍ରୀ ରଘୁନାଥ ବାରିକ ମଧ ସାହାଯ୍ୟ କରୁଥିଲେ । ହାଇସ୍କୁଲର ଛୋଟ ହଲରେ (ବଡ଼ ହଲ ନିର୍ମିତ ହୋଇନଥିଲା) ନାଟକ ଅଭିନୀତ ହେଉଥିଲା । ଉତ୍ତମ କଳାକାର ପୁରସ୍କୃତ ହେଉଥିଲେ । ପିଲାମାନଙ୍କ ମଧରେ କି ସୁଗୁଣ ଥିଲା ଏଥିରୁ ଜଣାପଡୁଥିଲା । କେତେ ବର୍ଷପରେ ଅଭିନୟ ବନ୍ଦ ହୋଇଯାଇଥିଲା ।

ନୂତନ ନୂତନ ପୁସ୍ତକ ଓ ଭିନ୍ନଭିନ୍ନ ରୁଚିର ପୁସ୍ତକ ଅଧ୍ୟୟନ କରିବା ମୋର ରୁଚି ଥିଲା । ତେଣୁ ପୂଜା, ଗ୍ରୀଷ୍ମ ଓ ବଡ଼ଦିନ ଛୁଟିପରେ ମୋ ପଠିତ ନୂତନ ପୁସ୍ତକ ସମ୍ବନ୍ଧରେ ଶ୍ରେଣୀରେ ସମ୍ୟକ୍ ଦିଗ୍‌ଦର୍ଶନ ଦିଏ ।

ଖୋର୍ଦ୍ଧା ହାଇସ୍କୁଲ ମାଗାଜିନ୍‌କୁ ମୁଁ ନିୟମିତ ଗଳ୍ପ, ପ୍ରବନ୍ଧ ଲେଖୁଥିଲି । ଭାରତ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ବିଦେଶରେ ରହି ଦେଶପାଇଁ କାମ କରୁଥିବା ମହାନ୍ ଦେଶପ୍ରେମୀ ଡକ୍ଟର ଚମ୍ପକରମଣ ପିଲାଇଙ୍କ ଜୀବନୀ ମଧ୍ୟ ଅବକାଶରେ ପ୍ରକାଶ କରିଥିଲି । ଛାତ୍ରାବାସରେ ବାଙ୍କାନିଧିବାବୁଙ୍କ ସମୟରୁ ଏକ ପୁସ୍ତକାଗାର ଥାଏ । ବାଙ୍କନିଧିବାବୁ ଭାରି ପଠନପ୍ରିୟ । ତେଣୁ ପିଲାମାନଙ୍କ ପଠନ ପିପାସା ବୃଦ୍ଧି କରିବା ପାଇଁ ସେ ଏପରି ସଂସ୍ଥାଟିଏ ଯୋଡ଼ିଥିଲେ । ମୁଁ ମଧ ମଣିଷ ଗଢ଼ିବା କେତେଗୁଡ଼ିଏ ପୁସ୍ତକ ମଗାଇଲି । ମହାପୁରୁଷମାନଙ୍କ ଜୀବନୀ ଉତ୍କୃଷ୍ଟ ଜୀବନ ଗଢ଼ିବାରେ ସାହାଯ୍ୟ କରେ । ତେଣୁ ଜୀବନୀଗ୍ରନ୍ଥ ମଗାଇଲି । ଇଂରାଜୀ କବି ଲଙ୍ଗ ଫେଲୋଙ୍କର ଉକ୍ତି ମନେ ରଖିଥାଏ —

"Lives of greatmen all remind us
We can make our lives sublime,
And departing leave behind us
Foot prints on the sands of time."

ମୁଁ ନିଜେ କେବଳ ପାଠୁଆ ହୋଇଗଲେ ବା ନିର୍ମଳ ଚରିତ୍ରର ହୋଇଗଲେ ଯେ ସବୁ ହେଲା ତାହା ନୁହେଁ । ଅଗଣିତ ଛାତ୍ରସମାଜ କିପରି ନିଜେ ପାଠ ପଢ଼ିବେ, ଦେଶକଥା ଚିନ୍ତା କରିବେ, ଭାଷାକଥା ଚିନ୍ତା କରିବେ ଏବଂ ଗୋଟିଏ ଗୋଟିଏ ଚରିତ୍ରବାନ୍ ବ୍ୟକ୍ତି ହୋଇ ଉଠିବେ– ଏହାହିଁ ମୋର କାମନା ଥିଲା । ତେଣୁ ଛାତ୍ରାବାସର ପୁସ୍ତକାଗାରକୁ

ଋଦ୍ଧିମନ୍ତ କରିବା ପାଇଁ ଉପଯୁକ୍ତ ପୁସ୍ତକରେ ସଜ୍ଜିତ କଲି । ପିଲାମାନଙ୍କୁ ପ୍ରତି ଶନିବାର ପୁସ୍ତକ ଦିଏ । କହେ ଯାହା ପଢ଼ିଲ ଖଣ୍ଡିଏ ନୋଟବୁକ୍‌ରେ ଲେଖିବ । ବିଦ୍ୟାଳୟରେ ଶ୍ରେଣୀ ଲାଇବ୍ରେରୀ ଥିଲା । ମୁଁ ବି ମୋ ଶ୍ରେଣୀ ଦାୟିତ୍ୱରେ ରହିଥିଲି । କିନ୍ତୁ ସମସ୍ତଙ୍କ ଖାତା ମୁଁ ଦେଖିପାରୁନଥିଲି । ପିଲାମାନେ ମାସିକ ଯେଉଁ ଛାତ୍ରାବାସ ଫି ଦେଉଥିଲେ କିଛି ଅଂଶ ଗୃହ ମରାମତି କରୁଥିଲି ଓ କିଛି ବହିକିଣାରେ ଖର୍ଚ୍ଚ ହେଉଥିଲା । ଛାତ୍ରାବାସ ପାଖ ରାସ୍ତା ଓ କଲଭର୍ଟ ତିଆରି ହେଉଥିଲା । ଛାତ୍ରାବାସର ସୁପ୍ରଭାବ ପିଲାମାନଙ୍କ ଉପରେ ପଡୁଥିଲା ।

**ଓଡ଼ିଶା ରାଜନୀତିରେ ପରିବର୍ତ୍ତନ :**

୧୯୬୧ ମସିହାରେ ଓଡ଼ିଶା ରାଜନୀତିରେ ଏକ ବିରାଟ ପରିବର୍ତ୍ତନ ହେଲା । ଶ୍ରୀ ମହତାବବାବୁ ବମ୍ବେ ଗଭର୍ଣ୍ଣର ପଦ ଛାଡ଼ି ଗଣତନ୍ତ୍ର ପରିଷଦର ସାହାଯ୍ୟ ନେଇ ମିଳିତ ମନ୍ତ୍ରିମଣ୍ଡଳ ଗଢ଼ି ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାହା ସର୍ବଦା ଅସ୍ଥିର ରହୁଥିଲା । ବିଜୁବାବୁ ସେତେବେଳେ କଂଗ୍ରେସର ତୁଙ୍ଗନେତା ଥିଲେ । ସେ ବଡ଼ ଉତ୍ସାହୀ ଓ ରାଜନ୍ୟମଣ୍ଡଳୀ ବିରୁଦ୍ଧରେ ଥିଲେ । ସେ ଗଣତନ୍ତ୍ର ଦଳର ପ୍ରଭାବ ସହି ନପାରି ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହୁରୁଙ୍କଠାରୁ ଆଶୀର୍ବାଦ ପାଇ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ କରାଇଲେ । ଆଜିକାଲି ପରି ସେତେବେଳେ ଦିନକେ ନିର୍ବାଚନ ଶେଷ ହେଉନଥିଲା । ୩ଦିନ ଲାଗୁଥିଲା । ଏହି ପରିପ୍ରେକ୍ଷୀରେ ମୁଁ ବୋଲଗଡ଼ର ଅରଖ ପଲ୍ଲୀ, ଓଡ଼ଗାଁର ଶରଧାପୁର ଓ ଖୋରଧାର ଗୁଡୁମଠାରେ ପ୍ରିଜାଇଡିଙ୍ଗ ଅଫିସର ଭାବେ ନିଯୁକ୍ତି ପାଇଥିଲି । କଂଗ୍ରେସ ଦଳ ଅର୍ଦ୍ଧାଧିକ ଭୋଟ ପାଇ ଶାସନ ଗଢ଼ିଲା । ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ । ନେହୁରୁଙ୍କଠାରୁ ବାହବା ପାଇଲେ । ବିଜୁବାବୁଙ୍କର ରାଜନୀତିକ ନେତା ହିସାବରେ ସେତେ ପ୍ରସିଦ୍ଧି ଆସିନଥିଲା । କେତେକ ବିରୋଧୀ ଲୋକେ ତାଙ୍କର ବ୍ୟବସାୟିକ ବୁଦ୍ଧି ବେଶିଥିଲା ବୋଲି କହନ୍ତି । କିନ୍ତୁ ସେ ଭାରି ଦୃଢ଼ମନା, ଦୁଃସାହସିକ ଏବଂ ପ୍ରଚଣ୍ଡ ଦେଶପ୍ରେମୀ ଥିଲେ । ସେ ମୁଖ୍ୟମନ୍ତ୍ରୀ ହିସାବରେ ୫ବର୍ଷ କଟେଇ ପାରି ନଥିଲେ । କାମରାଜ ନାଦର ଯୋଜନା ଆଳରେ ନେହୁରୁ ତାଙ୍କୁ ମୁଖ୍ୟମନ୍ତ୍ରିତ୍ୱରୁ ଅବ୍ୟାହତି ଦେଇ ଅନ୍ୟକର୍ମରେ ନିୟୋଜିତ କଲେ । ସେ ୨ବର୍ଷ ରହିଥିଲେ, କିନ୍ତୁ ସେହି ସ୍ୱଳ୍ପ ସମୟ ମଧ୍ୟରେ ପୃଥିବୀ ବିଖ୍ୟାତ ପାରାଦୀପ ବନ୍ଦର, ରାଉରକେଲା ଇଞ୍ଜିନିୟରିଙ୍ଗ କଲେଜ, ଭୁବନେଶ୍ୱରରେ ରିଜିଓନାଲ କଲେଜ, କୋରାପୁଟ ସୁନାବେଡ଼ାରେ ମିଗ୍‌କାରଖାନା ନିର୍ମାଣ କରାଇ ପାରିଥିଲେ । ୧୯୬୪ ମସିହାରେ ଭୁବନେଶ୍ୱରରେ କଂଗ୍ରେସ ଅଧିବେଶନ ବସାଇଲେ । ଭୁବନେଶ୍ୱର ଓ ପୁରୀ ରେଳଷ୍ଟେସନଦ୍ୱୟ ଆଧୁନିକ ଧରଣରେ ନିର୍ମାଣ

କରାଇଲେ । ସେ ଜାତୀୟ ଗୌରବ ମଧୁସୂଦନ ଦାସଙ୍କ କାତର ଓଡ଼ିଆ ଥିଲେ । କଂଗ୍ରେସ ଅଧିବେଶନ ସମୟରେ କଂଗ୍ରେସ ସଭାପତି କାମରାଜ ନାଦରଙ୍କୁ ବଡ଼ ଜାକଜମକରେ ଗୋପବନ୍ଧୁ ନଗରସ୍ଥିତ ସଭାମଣ୍ଡପକୁ ଅଣାଇଥିଲେ । ୧୯୬୪ ମସିହା ଜାନୁଆରୀ ମାସ ୧୦ତାରିଖ ଦିନ ଅଧିବେଶନର ଆୟୋଜନ ହୋଇଥିଲା । ମାତ୍ର ପ୍ରଧାନମନ୍ତ୍ରୀଙ୍କ ହୃଦଘାତ ହେତୁ ପ୍ରଥମ ଦିନ ବ୍ୟତୀତ କୌଣସି ଦିନ ସେ ଅଧିବେଶନରେ ଯୋଗ ଦେଇପାରିଲେ ନାହିଁ । ବିଜୁବାବୁ ଓଡ଼ିଶାର ପ୍ରଗତି ପାଇଁ ସଦା ଚିନ୍ତିତ ଥିଲେ । ସେ ମହାନଦୀର ଟିକରପଡ଼ା ବନ୍ଧ କେଉଁଠାରେ ପଡ଼ିବ ତାହା ଦେଖାଇବା ପାଇଁ ଢେଙ୍କାନାଳର ଏକ ପାହାଡ଼ ଉପରକୁ ନେହୁରୁଙ୍କୁ ନେଇଥିଲେ । ନେହୁରୁଙ୍କୁ ସେତେବେଳେ ୭୫ବର୍ଷ ବୟସ ହୋଇଥିଲେ ମଧ ତାଙ୍କର ମନ ଖୁବ୍ ଦୃଢ଼ ଥିଲା । ସେ ସେତେ ଉପରକୁ ଉଠିଯିବା ଦ୍ୱାରା ତାଙ୍କର ହୃଦରୋଗ ଆରମ୍ଭ ହୋଇଗଲା । ତାହା ତାଙ୍କର ପ୍ରଥମ ମୃତ୍ୟୁ ଘଣ୍ଟି । ଏଠାରୁ ସେ ଦିଲ୍ଲୀ ଫେରିଯାଇ ମେ ମାସ ୨୭ ତାରିଖରେ ଶେଷନିଶ୍ୱାସ ତ୍ୟାଗ କଲେ । ତାଙ୍କ ବିୟୋଗ ଦେଶକୁ ଏକ ପ୍ରଚଣ୍ଡ ଧକ୍କା ଦେଲା । ବିଜୁବାବୁ ସଂଖ୍ୟାଗରିଷ୍ଠତା ଆଣିଥିବାରୁ ନେହୁରୁଙ୍କ ପ୍ରିୟପାତ୍ର ହୋଇପାରିଥିଲେ ଏବଂ ଯେତେବେଳେ ୧୯୬୨ ମସିହା ସେପ୍ଟେମ୍ବର ମାସରେ ଚୀନ ଭାରତ ଆକ୍ରମଣ କଲା ସେତେବେଳେ ବିଜୁବାବୁ ଗହନ ପାର୍ବତୀୟ ପଥ ଅତିକ୍ରମ କରି ନିଜର ଡାକୋଟା ବିମାନରେ ଭାରତୀୟ ସୈନ୍ୟମାନଙ୍କ ପାଇଁ ଖାଦ୍ୟପୁଡ଼ିଆ ଉପରୁ ନିକ୍ଷେପ କରିଥିଲେ । ତେଣୁ ବିଜୁବାବୁ ନେହୁରୁଙ୍କ ଯୁଦ୍ଧ ପରାମର୍ଶଦାତା ରୂପେ ରହିଲେ । ତାଙ୍କର ଦୁଃସାହସିକତା ପୃଥିବୀବାସୀ ଜାଣନ୍ତି । ସେ ବି ପୃଥିବୀ ବିଖ୍ୟାତ ପାଇଲଟ ଥିଲେ । ପୂର୍ବରୁ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା ।

### ଏଠାରେ ଗୋଟିଏ କଥା ଉଲ୍ଲେଖ ନକଲେ ମୁଁ ଅପରାଧୀ ହେବି :

ପ୍ରଥମ ଦିନ ଅଧିବେଶନ ଆରମ୍ଭ ସମୟରେ ଓଡ଼ିଶାର କବି କବିବର ରାଧାନାଥ ରାୟଙ୍କ ରଚିତ 'ଭାରତ ବନ୍ଦନା ଗୀତଟି' ଦେଶପ୍ରେମୀ କବି ବାଞ୍ଛାନିଧି ଦାସ ସର୍ବ ସମକ୍ଷରେ ନେହୁରୁଙ୍କ ଉପସ୍ଥିତିରେ ତାଲିମପ୍ରାପ୍ତ ପିଲାମାନଙ୍କ ଦ୍ୱାରା ପରିବେଷଣ କଲେ । ଭାରତୀୟ ବନ୍ଦନା ଗୀତଟି ଏପରି ଜଣାଗଲା ଯେ ତାହା ପ୍ରଧାନମନ୍ତ୍ରୀ ନେହୁରୁଙ୍କୁ ଅଭିଭୂତ କରିଦେଲା । ତେଣୁ ସେ 'ଆଉ ଥରେ ଗାନ କର, ଆଉ ଥରେ ଗାନ କର' ବୋଲି ଆଦେଶ ଦେଲେ । ବନ୍ଦନାଟି ଶୁଣିସାରି ଏତେଦୂର ବିହ୍ୱଳିତ ହୋଇପଡ଼ିଲେ ଯେ କହି ପକାଇଲେ ''ଆହା ଏପରି ବନ୍ଦନା ଥିଲା, ଅଥଚ ୧୯୧୧ ମସିହାରେ ରବୀନ୍ଦ୍ରନାଥଙ୍କ

ଦ୍ୱାରା ରଚିତ ହୋଇଥିବା (ପଞ୍ଚମ ଜର୍ଜଙ୍କ ସମ୍ମାନାର୍ଥେ) ଗୀତକୁ ଜାତୀୟ ସଙ୍ଗୀତ ରୂପେ ମର୍ଯ୍ୟାଦା ଦିଆଗଲା ? ଏପରି ଦେଶ ବନ୍ଦନା ଓଡ଼ିଆରେ ରଚିତ ହୋଇଥିଲା, ଓଡ଼ିଆମାନେ ଦେଲେ ନାହିଁ କିପରି ? ମନେ ପକାଇଲେ ନାହିଁ କାହିଁକି ? ଓଡ଼ିଆମାନେ ସର୍ବଦା ନିଜକୁ ହୀନ ମନେକରନ୍ତି । ତେଣୁ ସେମାନଙ୍କର ଏପରି ଅବସ୍ଥା ।'' (ବନ୍ଦନାଟି ହେଲା– ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଳ୍ପଲତେୟମ୍...)

ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରୁ ବିଜୁବାବୁ ଯିବାପରେ ଶ୍ରୀ ବୀରେନ ମିତ୍ର ୨ବର୍ଷ ରହିବା ପରେ କୋରାପୁଟର ଜଣେ ଶିକ୍ଷକ, ବିଧାୟକ ଓ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସଦାଶିବ ତ୍ରିପାଠୀ ଓଡ଼ିଶା ସରକାରର ମୁଖ୍ୟ ହୋଇ ରହିଲେ । ୧୯୬୭ ମସିହା ନିର୍ବାଚନରେ ପୁନଃ ମିଳିତ ମନ୍ତ୍ରିମଣ୍ଡଳ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ଗଢ଼ାହେଲା । ଶିକ୍ଷାମନ୍ତ୍ରୀ ଆସନ ଅଳଙ୍କୃତ କଲେ ଶ୍ରୀ ବନମାଳୀ ପଟ୍ଟନାୟକ ।

ବନମାଳୀବାବୁ ରାଜ୍ୟର ଶିକ୍ଷାମନ୍ତ୍ରୀ ହେବାପରେ ଗୋଟିଏ ବିରାଟ ଭୁଲ କରି ବସିଲେ, ଯାହାକି ଆଜି ପର୍ଯ୍ୟନ୍ତ ଶିକ୍ଷାର ଅଧୋଗତି ଘଟାଉଛି । ସେ ଯାଇ ମାଇନର୍ ସ୍କୁଲ ପରୀକ୍ଷାକୁ ଏକ ପ୍ରକାର ଉଠାଇଦେଲେ ଅର୍ଥାତ୍ ୫୫୦ ନମ୍ବରରୁ ୮୨ ନମ୍ବର ରଖିଲେ ପାସ୍ ହେବବୋଲି ନିୟମ କଲେ । ଏହାଦ୍ୱାରା ପିଲା ଆଉ ପଢ଼ିବେ କାହିଁକି ? ଡ୍ରଇଂରେ ୪୫ ନମ୍ବର ରଖି ଅନ୍ୟ ୫ଟି ବିଷୟ ଗଣିତ, ସାହିତ୍ୟ, ଇଂରାଜୀ, ଇତିହାସ-ଭୂଗୋଳ ଓ ବିଜ୍ଞାନରେ ମୋଟ ୪୦ ନମ୍ବର ରଖିଲେ ଉପର କ୍ଲାସକୁ ଉଠିଲା । ଏଥିରେ କି ପାଠ ହେବ ? ୨୬ ଟା ଇଂରାଜୀ ଅକ୍ଷର ନଶିଖି ବା ଗଣିତର ୪ ସୂତ୍ର ନଶିଖି, ସାହିତ୍ୟରେ ଅକ୍ଷର ଲେଖି ଆସୁନଥିବା ପିଲା ୮ମ ଶ୍ରେଣୀକୁ ଗଲା । ସେ ବର୍ଷ ମାଟ୍ରିକ୍ ଫଳ ସେହି ଅନୁଯାୟୀ ହେଲା । ଶିକ୍ଷାରେ ମାନ ବୃଦ୍ଧି କରିବା ପାଇଁ ଶିକ୍ଷକମାନଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତା' ସହିତ ପରୀକ୍ଷାପଦ୍ଧତି ମଧ୍ୟ ପ୍ରଣିଧାନଯୋଗ୍ୟ ।

## ଦିବ୍ୟସିଂହବାବୁଙ୍କୁ ରାଷ୍ଟ୍ରପତି ସମ୍ମାନ :

୧୯୬୦ ମସିହାରେ ଦିବ୍ୟସିଂହବାବୁ ରାଷ୍ଟ୍ରପତି ପୁରସ୍କାର ଲାଭ କଲେ । ଏହି ପୁରସ୍କାର ଗତବର୍ଷଠାରୁ ଦେଶରେ ପ୍ରଚଳନ କରାଯାଇଥିଲା । ଗତବର୍ଷ ପି.ଏମ. ଏକାଡେମୀ ପ୍ରଧାନଶିକ୍ଷକ ଶ୍ରୀ ବସନ୍ତ କୁମାର ଦାସ ଏହି ପୁରସ୍କାର ଗ୍ରହଣ କରିଥିଲେ । ଖୋରଧା କେତେବେଳେ ବ୍ରିଟିଶ୍ ବିରୁଦ୍ଧରେ ପ୍ରଥମେ ଖଣ୍ଡା ଉତ୍ତୋଳନକରି ନାଁ କରିଥିଲା କିନ୍ତୁ ଏବେ ଖୋର୍ଦ୍ଧାବାସୀ ପଛୁଆ ହେଉଛନ୍ତି । ଦିବ୍ୟସିଂହବାବୁଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ କେହି ଆଗେଇ ଆସିଲେ ନାହିଁ । ନିଜ ବାଜା ନିଜେ ବଜାଇବାକୁ ପଡ଼ିଲା । ତେଣୁ

ଆମେ ଶିକ୍ଷକମାନେ ଦିବ୍ୟସିଂହବାବୁଙ୍କୁ ଖୋଲା ଜିପ୍‌ରେ ବସେଇ ଫୁଲମାଳଦ୍ୱାରା ଶୋଭିତ କରି ସାରା ସହର ପରିକ୍ରମା କଲୁ । ଏହା କେବଳ ତାଙ୍କର ଗୌରବ ନଥିଲା ଏହା ଶିକ୍ଷକ ଗୋଷ୍ଠୀର ଗୌରବ । ସେତେବେଳେ ନିରପେକ୍ଷ ବିଚାର ହେଉଥିଲା । କିନ୍ତୁ ପରେ ପରେ ଖୁସାମତି, ପ୍ରିୟାପ୍ରୀତିତୋଷଣ ଧରାଧରି ଚାଲିଲା । ପରିଣତି ଯାହା ହେବାର କଥା ତାହା ଏବେ ହେଉଛି । ଉତ୍ତମ ନିଷ୍ଠାବାନ୍ ଯୋଗ୍ୟ ଶିକ୍ଷକ ପଛରେ ପଡ଼ିଯାଉଛନ୍ତି ।

ସେ ସମୟରେ ଆମ ସ୍କୁଲରେ ୨୭ ଜଣ ଶିକ୍ଷକ ଥିଲେ । ଧୂଆମୂଳା ଅଧୂଆମୂଳା ସବୁ ସମାନ ଥିଲା । ଏଣୁ ପ୍ରାଣପଣେ କାମ କରିବାକୁ ବେଳେବେଳେ ବିଷାଦଭାବ ଆସୁଥିଲା । ମୋ କାମକୁ ଚାହିଁଲେ ମଜୁରି ଖୁବ୍ କମ୍ ଜଣାପଡ଼େ ମାତ୍ର ମୁଁ ତୁନି ହୋଇ ବସିପାରେ ନାହିଁ । ସମସ୍ତଙ୍କଠାରୁ କର୍ମଠ ଥିଲି । ମୋ ସହିତ ପଣ୍ଡିତ ହରିକୃଷ୍ଣ ଓ ଜଗଦାନନ୍ଦ ମହାନ୍ତି ତାଳଦେଇ ଚାଲୁଥିଲେ । ପଣ୍ଡିତ ହରିକୃଷ୍ଣ ଜ୍ଞାନୀ, ଗୁଣୀ ଓ ସାରସ୍ୱତ ସାଧକ । ପରୋପକାରୀ ଏବଂ ସ୍ୱାଭିମାନୀ ଥିଲେ । ଜଗଦାନନ୍ଦବାବୁ ଗଣିତରେ ଖୁବ୍ ଧୁରନ୍ଧର ଥିଲେ । ଗୋପୀବାବୁ ୧୯୬୨ ମସିହା ପର୍ଯ୍ୟନ୍ତ ଏ ସ୍କୁଲରେ ଅବସ୍ଥାନ କରିଥିଲେ, ହେଡମାଷ୍ଟର ହୋଇ ଦାଶରଥି ହାଇସ୍କୁଲକୁ ଗମନ କଲେ ।

ଗୋପୀବାବୁ ଚତୁର, ବୁଦ୍ଧିମାନ ଓ ବନ୍ଧୁପ୍ରିୟ ଥିଲେ । ସେ ସେଠାରେ ହାକିମି ପରମ୍ପରାକୁ ଧ୍ୱଂସ କଲେ । ମୁଁ ସହକାରୀ ପ୍ରଧାନଶିକ୍ଷକ ପଦକୁ ଆସିଲି । ମୋ ଉପରେ ଅଧିକ ଦାୟିତ୍ୱ ପଡ଼ିଲା । ମୁଁ ୬ଷ୍ଠ, ୭ମ, ୮ମ ଶ୍ରେଣୀ ପରିଦର୍ଶନକରି ଶିକ୍ଷକମାନଙ୍କୁ ଉପଯୁକ୍ତ ପରାମର୍ଶ ଦେଲି । ମୋତେ ପିରିଅଡ଼ କୋହଳ କରାଗଲା । ହେଡ଼ମାଷ୍ଟରଙ୍କ ଅଫିସରୁମରେ ମୋତେ ସ୍ୱତନ୍ତ୍ର ଆସନ ଦିଆଗଲା । ଇଂରାଜୀରେ ପ୍ରବନ୍ଧ ଲେଖି ଦିବ୍ୟସିଂହବାବୁଙ୍କ ସହିତ ରିଜିଓନାଲ କଲେଜରେ ସେମିନାରରେ ବହୁବାର ଯୋଗ ଦେଲି । ମୁଁ ବହୁ ସେମିନାରରେ ବହୁବାର ଯୋଗ ଦେଇଛି ଏବଂ କୃତିତ୍ୱ ହାସଲ କରିଛି ।

## ଛାତ୍ରାବାସ ପିଲାଙ୍କପାଇଁ କାମ :

ପ୍ରତିବର୍ଷ ଛାତ୍ରାବାସରେ କୃଷ୍ଣଜନ୍ମ, ଦୀପାବଳୀ ଉତ୍ସବ ଓ ବଡ଼ଓଷା ପର୍ବ ସମାରୋହରେ ପାଳିତ ହୁଏ । ପରିଚାଳକ ଏହି ଉତ୍ସବରେ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ମୁଁ ପ୍ରଧାନଶିକ୍ଷକ ନଥିଲେ ମଧ୍ୟ ପ୍ରଧାନଶିକ୍ଷକଙ୍କ ସବୁ ସୁବିଧା ଉପଭୋଗ କରୁଥିଲି । ହେଡମାଷ୍ଟର ହୋଇ ଦୂରକୁ ଯିବାପାଇଁ ସର୍କଲ ଇନସ୍‌ପେକ୍ଟର ମୋତେ ବହୁବାର ପଚାରିଛନ୍ତି ମାତ୍ର ସାମାନ୍ୟ କେତେଟା ଟଙ୍କାରେ କାହିଁକି ଏତେ ଦାୟିତ୍ୱ ମୁଣ୍ଡାଇବି କହି ମନା କରିଦିଏ । ଅନ୍ୟକେତେ ଜାଗାରୁ ବି ଡାକରା ଆସିଲା, ମାତ୍ର ଗଲି ନାହିଁ । ଏମ୍.ଏ.

(ଇତିହାସ) ପାସ୍ କରିବା ପରେ ସେତେବେଳେ ପ୍ରାଣନାଥ କଲେଜ ଡାକିଲେ ମଧ୍ୟ ଅନିଶ୍ଚିତ ଚାକିରି ମନେ କରିଥିଲି, ଯିବି କାହିଁକି ? ଏଇଆ କୁହାଯାଇପାରେ ମୋର ଛାତ୍ରାବାସ ରହଣି ଛାତ୍ରାବାସର ସୁବର୍ଣ୍ଣଯୁଗ ଓ ମୋ ଜୀବନର ସୁବର୍ଣ୍ଣଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ ।

**ଟିଉସନର ଅବସ୍ଥା :**

ମୁଁ ଦୁଇଓଳି ଘରୋଇ ଟିଉସନ୍ କରୁନଥିଲି । ସକାଳଓଳି ୪/୫ ଜଣ ପିଲାଙ୍କୁ ସକାଳ ସାତ ଘଣ୍ଟାଠାରୁ ନଅଟା ପର୍ଯ୍ୟନ୍ତ ପଢ଼ାଇବାରେ ମନଦିଏ । କିଛି ପଇସା ମିଳିଲେ କୁଟୁମ୍ବ ପ୍ରତିପୋଷଣରେ ସହାୟକ ହୁଏ । ଦୁଇ ଓଳି ଟିଉସନ୍ ଧରିଲେ ଆତ୍ମ-ଉନ୍ନତି କରିବି କେତେବେଳେ ? ଆହୁରି ମଧ୍ୟ ଟିଉସନ କରିବା ଖୁବ୍ କଷ୍ଟ କାମ । ବହୁତ ବକ ବକ ହେବାକୁ ପଡ଼େ । ଦେହରୁ ଅନ୍ତ ଦୁହିଁ ହୋଇଯାଏ । ମୁଁ ପତଳା ମଣିଷ । ଏଣେ ଝାଡ଼ାରୋଗ ପ୍ରବଳ । ବେଶି ପିଲାଙ୍କୁ ପଢ଼େଇଲେ ଠକିଲା ପରି ହୁଏ । ଏବେ ଦେଖୁଛି ଜଣେ ଜଣେ ଶିକ୍ଷକ ଦି`ଓଳି ପିଲାଙ୍କୁ ଟିଉସନ କରି ପ୍ରଚୁର ଅର୍ଥ ଉପାର୍ଜନ କରୁଛନ୍ତି । କିନ୍ତୁ ଅଳ୍ପାୟୁ ହେଉଛନ୍ତି । ଟିଉସନ୍‌ରେ ବ୍ୟସ୍ତ ରହିଲେ ସାଙ୍ଗସାଥୀ ବନ୍ଧୁବାନ୍ଧବଙ୍କ ସଙ୍ଗେ ଆଳାପ ଆଲୋଚନା କରିପାରିବି ନାହିଁ । ଜୀବନ ଦୁର୍ବିସହ ହୋଇପଡ଼ିବ । କିନ୍ତୁ ସ୍ତ୍ରୀ ତ ଧନଲୋଭୀ । ସେ ବହୁସମୟରେ ବାଧ୍ୟ କରନ୍ତି । ତାଙ୍କର ମୋର କଳି ଝଗଡ଼ା ବି ହୁଏ । ସେତେବେଳେ ଟିଉସନ ବ୍ୟବସାୟ ନଥିଲା । ଆମ ସ୍କୁଲର ବାବୁ ପଦ୍ମଚରଣ ପଟ୍ଟନାୟକ ପ୍ରାୟ ପଚିଶ ଜଣ ପିଲାଙ୍କୁ ଟିଉସନ କରୁଥିବାରୁ ବିଦ୍ୟାଳୟ କାର୍ଯ୍ୟରୁ ଇସ୍ତଫା ଦେବାକୁ ବାଧ ହୋଇଥିଲେ । ସେତେବେଳେ ଟିଉସନ ଫି ମାସକୁ ଦଶ ଟଙ୍କା ମାତ୍ର ଥିଲା । ଟ୍ରେଣ୍ଡ ଗ୍ରାଜୁଏଟ ଶିକ୍ଷକ ମାସକୁ ଦରମା ପାଉଥିଲେ(ଟ.୧୦୦-୫-୨୧୦) ତେଣୁ ପରିବାର ଚଳାଇବାକୁ କଷ୍ଟ ହେଉଥିଲା । ସେତେବେଳେ ଏତେ ଲୋକ ପାଠୁଆ ନଥିଲେ । ବାର୍ଷିକ ପରୀକ୍ଷା ଦୁଇ ତିନିମାସ ପୂର୍ବରୁ କେତେକ ପିଲା ପଢ଼ିବାକୁ ଆସୁଥିଲେ । କିଏ ଫି ଦେଲା ତ କିଏ ନଦେଲା । ବର୍ତ୍ତମାନ କଲେଜ ଶିକ୍ଷକ ମାସିକ ପନ୍ଦରରୁ କୋଡ଼ିଏ ହଜାର ଟଙ୍କା ଟିଉସନରୁ ରୋଜଗାର କରୁଛନ୍ତି, ଶିକ୍ଷକମାନେ ମଧ୍ୟ ପନ୍ଦର ହଜାରରୁ କମ୍ ପାଉନାହାଁନ୍ତି । ଟିଉସନ ଏତେ ପ୍ରବଳ ହେବାରୁ ସ୍କୁଲରେ ବା କଲେଜରେ ପଢ଼ାପଢ଼ି ଠିକ୍ ଭାବରେ ହେଉନାହିଁ । ଶିକ୍ଷାର ମାନ ବି କମିକମି ଆସୁଛି । ଏବେ ମଧ୍ୟ କଲେଜ ଶିକ୍ଷକମାନେ ପଦମର୍ଯ୍ୟାଦାକୁ ପଛରେ ପକାଇ ଟିଉସନ କାମରେ ଲାଗିଛନ୍ତି । ତେଣୁ କଲେଜରେ କୋର୍ସ ଶେଷ ହେଉନାହିଁ । ଅଧକ୍ଷ ସେମାନଙ୍କର କିଛି କରିପାରୁ ନାହାଁନ୍ତି ।

**ଇଂରାଜୀ ଜ୍ଞାନ :**

ଏବେ ବିଂଶ ଶତାବ୍ଦୀର ଶେଷ ଦଶକରେ ଓଡ଼ିଶାରେ ହୁରି ପଡ଼ିଛି ଓଡ଼ିଶାରୁ ଆଗେ ଯେତେ ଆଇ.ଏ.ଏସ୍. ପାସ୍ କରୁଥିଲେ, ଏବେ ତା ତୁଳନାରେ ଯଥେଷ୍ଟ କମ୍ । ଏହାର କାରଣ ଇଂରାଜୀରେ ପ୍ରଶ୍ନ ଓ ଇଂରାଜୀରେ ଉତ୍ତର । ଓଡ଼ିଆ ପିଲା ପୂର୍ବେ ଏହି ହାଇସ୍କୁଲମାନଙ୍କରୁ ଯାଇ ଏତେ ସଫଳତା ଦେଖାଉଥିଲେ । ଏବେ କାହିଁ ? ଗତ ୧୯୮୧ ମସିହାରୁ ଓଡ଼ିଶାରେ ହାଇସ୍କୁଲ ପାଠ୍ୟକ୍ରମରେ ଇଂରାଜୀ ୨୦୦ ନମ୍ବର ପରିବର୍ତ୍ତେ ୧୦୦ ରହିଲା । ତା' ଦ୍ୱାରା ଛାତ୍ରର ଇଂରାଜୀ ଜ୍ଞାନ ହେବ କିପରି ? ଆଗେ ହାଇସ୍କୁଲରେ ଯେଉଁ ଛାତ୍ରଛାତ୍ରୀମାନେ ଇଂରାଜୀରେ ପାଣ୍ଡିତ୍ୟ ଅର୍ଜନ କରୁଥିଲେ ସେମାନେ କଲେଜରେ ଖୁବ୍ ଭଲ କରୁଥିଲେ ଏବଂ ବିଭିନ୍ନ ଦିଗରେ କୃତକାର୍ଯ୍ୟତା ହାସଲ କରୁଥିଲେ । ଏବେ ହାଇସ୍କୁଲରେ ପ୍ରଥମ ପିଲା ବା ବୋର୍ଡ଼ରେ ପ୍ରଥମ ପିଲା ଆ.ଏ.ଏସ୍. ପରୀକ୍ଷା ଦେବାକୁ ଡରୁଛି । ଏହାର ଅର୍ଥ କ'ଣ ? ମୋ ମତରେ ହାଇସ୍କୁଲରେ ପୂର୍ବ ପରି ୨୦୦ ନମ୍ବର ଇଂରାଜୀ ରହୁ ଏବଂ ଇଂରାଜୀ ଶିକ୍ଷା ପ୍ରତି ତୀକ୍ଷ୍ଣ ନଜର ଦିଆଯାଉ । ଇଂରାଜୀ ଆନ୍ତର୍ଜାତିକ ଭାଷା । ଆମ ଦେଶରେ ଇଂରାଜୀ ପଣ୍ଡିତ ମଧ ବାହାରିବା ଆବଶ୍ୟକ । ଏହାର ଅର୍ଥ ନୁହେଁ ଯେ ମାତୃଭାଷାକୁ ହତାଦର କରାଯିବ । ଆଜିକାଲି ବହୁ ଜାଗାରେ ଇଂରାଜୀ ମିଡ଼ିୟମ୍ ସ୍କୁଲ ଅନେକ । କିନ୍ତୁ ତା'ର ଷ୍ଟାଣ୍ଡାର୍ଡ଼ ଖୁବ୍ ନିମ୍ନତର । ଆମ ଦେଶରେ ଯେଉଁମାନେ ବଡ଼ ହୋଇଛନ୍ତି–ସୁଭାଷ ବୋଷ, ବିବେକାନନ୍ଦ, ଅରବିନ୍ଦ, ମହାତ୍ମାଗାନ୍ଧୀ, ମଧୁସୂଦନ ଦାସ, ସୁରେନ୍ଦ୍ର ନାଥ ବାନାର୍ଜୀ— ସମସ୍ତେ ଏହି ମାକଲେ ହାଇସ୍କୁଲର ଛାତ୍ର । ଓଡ଼ିଆ ସଂସ୍କୃତିକୁ ତ୍ୟାଗ କରି ଇଂରାଜୀ ମିଡ଼ିୟମ ସ୍କୁଲ ପ୍ରତିଷ୍ଠା କଲେ ଆମେ ଇଂରାଜୀରେ ଭଲ ଜ୍ଞାନ ଅର୍ଜନ କରୁନାହୁଁ କି ମାତୃଭାଷାରେ ଦକ୍ଷ ହେଉନାହୁଁ । ୧୯୮୧ ମସିହା ପୂର୍ବରୁ ଯେଉଁ ପିଲା ମାଟ୍ରିକ୍ ଏ ସ୍କୁଲରୁ ପାସ୍ କରୁଥିଲେ ବିଶେଷତଃ ପ୍ରଥମ ଶ୍ରେଣୀ ପିଲା ବା ଦ୍ୱିତୀୟ ଶ୍ରେଣୀ ପିଲାମାନଙ୍କର ଇଂରାଜୀରେ ଗଭୀରତା ଥିଲା । ସେ କୌଣସି ପ୍ରତିଦ୍ୱନ୍ଦ୍ୱିତାକୁ ଡରୁ ନଥିଲା ।

**ଖୋର୍ଦ୍ଧା କଲେଜ ପ୍ରତିଷ୍ଠା :**

୧୯୫୯ ମସିହାରେ ଖୋର୍ଦ୍ଧାରେ ଗୋଟିଏ କଳା କଲେଜ ସ୍ଥାପିତ ହେଲା । ୧୯୫୭ ମସିହା ସାଧାରଣ ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟିର ବାବୁ ପ୍ରାଣନାଥ ପଟ୍ଟନାୟକ ଖୋର୍ଦ୍ଧାର ବିଧାୟକ ହୋଇ ଆସିଲେ । ୧୯୫୮ ମସିହାରେ ଖୋର୍ଦ୍ଧା ହାଇସ୍କୁଲରେ କଲେଜ ଚାଲିବ ବୋଲି ହାଇସ୍କୁଲ ପରିଚାଳନା ସମିତି ସ୍ଥିର କରିଥିଲେ

ମାତ୍ର କଂଗ୍ରେସ ପ୍ରାର୍ଥୀ ହାରିଯାଇଥିବାରୁ କଂଗ୍ରେସ ସରକାର ହାଇସ୍କୁଲକୁ ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ନେଇଗଲେ । ମାତ୍ର ସରକାରୀ ନକରି ତାକୁ ଗୋଟିଏ ଅସ୍ପୃଶ୍ୟ ଶ୍ରେଣୀରେ ରଖିବା ପରି ରଖିଲେ । ସେଠାରେ କଲେଜ ଖୋଲିବା ପାଇଁ ଅନୁମତି ଦେଲେ ନାହିଁ । ତେଣୁ ସେ ବର୍ଷ କଲେଜ ହେବା ବନ୍ଦ ହୋଇଗଲା । ବିଧାୟକ ପ୍ରାଣବାବୁ ଏବଂ ଡାକ୍ତର ପ୍ରାଣବାବୁ ଉଭୟ କଲେଜ ପାଇଁ ଖୁବ୍ ମନପ୍ରାଣ ଦେଇଥାନ୍ତି । ଦିବ୍ୟସିଂହ ବାବୁ ଲାଗିଥାନ୍ତି, ଅନ୍ୟ ଶିକ୍ଷକମାନେ ସହଯୋଗ କରୁଥାନ୍ତି । ଅନ୍ୟ କାହାକଥା କହିପାରୁନାହିଁ । ମୁଁ ବ୍ୟକ୍ତିଗତ ଚାନ୍ଦା ଦେଲି । କିନ୍ତୁ କଲେଜ ସ୍ୱୀକୃତି ମିଳିବା ପାଇଁ ୬ ହଜାର ନିଅଣ୍ଟ ପଡ଼ିଲା । ଟଙ୍କା ଯୋଗାଡ଼ କରିବା ପାଇଁ ପ୍ରାଣନାଥବାବୁ ଦିବ୍ୟସିଂହବାବୁଙ୍କୁ ଅନୁରୋଧ କଲେ ଏବଂ ଦୁଇମାସ ଭିତରେ ସେ ଟଙ୍କା ଫେରସ୍ତ କରିଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେ ସମୟରେ ଟଙ୍କାଟା ମହଙ୍ଗା ଥିଲା । ଦିବ୍ୟସିଂହବାବୁ ଏତେ ଟଙ୍କା ପାଇବେ କେଉଁଠୁ ? ତାଙ୍କର ଗୋଟିଏ କଥା ମନେପଡ଼ିଗଲା । ହାଇସ୍କୁଲ ଶିକ୍ଷକ ସହାୟକ ଫଣ୍ଡରେ ୬ ହଜାର ଟଙ୍କା ଗଚ୍ଛିତ ଥିଲା । ସେ ଫଣ୍ଡରୁ ଶିକ୍ଷକମାନେ ଅଳ୍ପ ସୁଧରେ ଟଙ୍କା ଋଣ ନିଅନ୍ତି । ଥରେ ଶିକ୍ଷକମାନଙ୍କର ସଭାଟିଏ କରି ସେ ଫଣ୍ଡରୁ ୬ ହଜାର ଉଠାଇ ନେଲେ । ଖୋର୍ଦ୍ଧାରେ ଉଚ୍ଚ ଶିକ୍ଷାନୁଷ୍ଠାନ ହେବ, ଏଥିପାଇଁ ସମସ୍ତେ ଏକ ସ୍ୱରରେ ସ୍ୱୀକୃତି ପ୍ରଦାନ କଲେ । ପ୍ରାଣବାବୁ ଟଙ୍କା ନେଇ ବିଶ୍ୱବିଦ୍ୟାଳୟ ପାଖରେ ଦାଖଲ କଲେ । କଲେଜର ସ୍ୱୀକୃତି ମିଳିଲା ।

କିଛି ଦିନ ଅତିକ୍ରାନ୍ତ ହେଲା । ପ୍ରାଣବାବୁ ଟଙ୍କା ଫେରେଇବା ନାଁ ଧରିଲେ ନାହିଁ । ଦିବ୍ୟସିଂହବାବୁ କ'ଣ କରିବେ ? ନିଜେ ତ ଜଣେ କର୍ମକର୍ତ୍ତା, ତେଣୁ ପ୍ରତ୍ୟହ ବସ୍‌ଷ୍ଟାଣ୍ଡକୁ ଯାଇ ଟଙ୍କା ମାଗିଲେ । ଯାହାଙ୍କୁ ଯେଉଁଠି ପାଇଲେ ଟଙ୍କା ଆଦାୟ କଲେ । ୬ ମାସ ପରେ ଶିକ୍ଷକ ସହାୟକ ପାଣ୍ଠି ଧାର ନେଇଥିବା ଟଙ୍କା ଜମା କରିଦେଲେ ।

## ମୋର ଏମ୍.ଏ. ଅଧ୍ୟୟନ ଓ ସଫଳତା :

ମୋର ଏମ୍.ଏ.ପଢ଼ିବା ପାଇଁ ପ୍ରବଳ ବାସନା ଥିଲା । ବନବାସିନୀ ଦେବୀଙ୍କୁ ଏକଥା କହିଲି । ସେ ସଙ୍ଗେ ସଙ୍ଗେ ମୋତେ ଦୁଇଶହ ଟଙ୍କା ବହି କିଣିବାକୁ ଦେଲେ । ୧୯୫୮ ମସିହା କଥା । ଦୁଇଶହ ଟଙ୍କାରେ ଇତିହାସ ବହି କିଣିଲି ମାତ୍ର ନାନା ଜଞ୍ଜାଳ ଭିତରେ ଅଗ୍ରଗତି କରିପାରିଲି ନାହିଁ । ତେଣୁ ବହିତକ ହାଇସ୍କୁଲ ଲାଇବ୍ରେରୀକୁ ବିକ୍ରି କରିଦେଲି । କିଛି ବର୍ଷଗଲା । ଜଞ୍ଜାଳ ଉପରେ ଜଞ୍ଜାଳ । ବିପଦ ଉପରେ ବିପଦ । ମୋ

ବଡ଼ଭାଇଙ୍କର କାଳ ହୋଇଗଲା । ତା' ପରେ ପରେ ମୋ ଗୃହଲକ୍ଷ୍ମୀ ଗାଈଟିକୁ କୁକୁର କାମୁଡ଼ି ଦେଲା । ୩ ବର୍ଷର ଝିଅଟିକୁ କୁକୁର କାମୁଡ଼ି ଦେଲା । ଝିଅଟିକୁ ଇଞ୍ଜେକ୍‌ସନ ଦେଇ ବଞ୍ଚାଇଦେଲି । ମାତ୍ର ଲକ୍ଷ୍ମୀ ଗାଈଟି ହମ୍ୱାରଡ଼ି ଦେଇ ଦେଇ ମାସକ ପରେ ପ୍ରାଣ ଛାଡ଼ିଲା । ବିପଦ ସାଙ୍ଗସାଥୀ ନେଇ ଆସେ । ପୁଣି ସ୍ଥିର କଲି ଓଡ଼ିଆରେ ଏମ୍.ଏ. କରିବି । ସିଲାବସ୍ ମଗାଇଲି । ସେଥିରେ ମଧ ପ୍ରତିବନ୍ଧକ ସୃଷ୍ଟି ହେଲା । ଓଡ଼ିଆ ପଢ଼ିପାରିଲି ନାହିଁ । ପଢ଼ିବା ପାଇଁ ସେତେବେଳେ ଭାଗ୍ୟ ପ୍ରତିକୂଳ ହେଲା । କିଛି ଦିନ ଗତ ହେଲା । ଏହିପରି ସମୟରେ ବଜାରରେ ପରିବା କିଣିବାବେଳେ ପ୍ରାଣନାଥ କଲେଜର ଜଣେ ଯୁବକ ଅଧାପକ ମୋତେ ଟିକିଏ ତାଚ୍ଛଲ୍ୟ କରି କହିଲେ, ଏମ୍.ଏ. ପୁଣି ଇତିହାସରେ ! ପାସ୍ କରିବା ସହଜ ନୁହେଁ । ତାଙ୍କ ଟାପରାକୁ ସମ୍ଭାଳି ପାରିଲି ନାହିଁ । ୪୫ ବର୍ଷରେ ଇତିହାସରେ ଏମ୍.ଏ. ପଢ଼ିଲି । ମୋ ଛାତ୍ର ନାରାୟଣ ରାଓ ବାଣୀବିହାରରେ ଇତିହାସରେ ଏମ୍.ଏ. କରୁଥିଲା । ସେ ମୋତେ କେତେ ଖଣ୍ଡି ଜାପାନ ଓ ଚୀନ ଦେଶର ଇତିହାସ ପୁସ୍ତକ ଦେଲା । ଯାହାହେଉ ୧୯୬୫ ମସିହାରେ ଏମ୍.ଏ. ପରୀକ୍ଷା ଦେଲି ଏବଂ ୫୮% ନମ୍ବର ରଖି ଇତିହାସରେ ଏମ.ଏ. ପାସ୍ କଲି । ଜ୍ୟୋତିଷର କଥା ସତ ହେବାରୁ ତାଙ୍କୁ ପ୍ରତିଜ୍ଞା ଅନୁଯାୟୀ ଅର୍ଥ ପ୍ରଦାନ କଲି । ଏତେ ବୟସରେ ପୁଣି କର୍ମବ୍ୟସ୍ତ ଜୀବନ ଭିତରେ କ୍ଲାସ ରଖି ଏମ୍.ଏ. ପାସ୍ କରିଥିବାରୁ ମୋତେ ପ୍ରଥମେ ଖୋର୍ଦ୍ଧା ହାଇସ୍କୁଲର ପୁରାତନ ହେଡମାଷ୍ଟର ଗୁଣୀ, ଜ୍ଞାନୀ, ଋଷିପ୍ରାଣ ଅରବିନ୍ଦପ୍ରେମୀ ଶ୍ରୀ ପରଶୁରାମ ବର୍ମା ଅଭିନନ୍ଦନ ଜଣାଇ କୁଣ୍ଢାଇ ପକାଇଲେ । ତାଙ୍କଠାରୁ ସ୍ନେହ, ଆଶିଷ ଗ୍ରହଣ କରି ଆଗେଇ ଚାଲିଲି ।

ବି.ଏ. ପଢ଼ିବାଟା ମୋର ଆବଶ୍ୟକ ଥିଲା । ତା' ଉପରେ ମୋ ଭବିଷ୍ୟତ ନିର୍ଭର କରୁଥିଲା କିନ୍ତୁ ଏମ.ଏ. ପଢ଼ିବାଟା କିଛି ଆବଶ୍ୟକ ନଥିଲା ବା ପରିଣତ ବୟସରେ ପଢ଼ିଲେ କିଛି ଲାଭ ହେବବୋଲି ଆଶା କରିବା ବୃଥା । କିନ୍ତୁ ଏମ୍.ଏ. ରେ କୃତକାର୍ଯ୍ୟ ହେବା ମୋର ମାନସମ୍ମାନକୁ ବୃଦ୍ଧି କରିଥିଲା, ଏଥିରେ ସନ୍ଦେହ ନାହିଁ । ଆତ୍ମପ୍ରତ୍ୟୟ ନଆସିଲେ କୌଣସି କାମ ସଫଳ ହୁଏନାହିଁ । ବି.ଏ.ରେ ଯେପରି ଏମ୍.ଏ. ବେଳକୁ ସେହିପରି । ମୂଳରୁ ଏମ୍.ଏ. ବିଦ୍ୟା ହାସଲ କରିଥିଲେ ଗୋଟିଏ ଉଚ୍ଚତର କର୍ମରେ ନିଯୁକ୍ତି ପାଇଥାନ୍ତି । ମାତ୍ର ଦାରିଦ୍ର୍ୟର କଷାଘାତ ଯୋଗୁଁ ତାହା ସମ୍ଭବ ହୋଇପାରିଲା ନାହିଁ । ଅତଏବ ଶିକ୍ଷାହିଁ ମନୁଷ୍ୟର ସକଳ ପ୍ରଗତିର ମୂଳରେ ବିଦ୍ୟମାନ ଓ ଉନ୍ନତିର ଚାବିକାଠି ।

## ନିଜଗୃହ ନିର୍ମାଣ :

୧୯୫୬ ମସିହାରେ ହାଇସ୍କୁଲ ସୀମାର ପଶ୍ଚିମ ତରଫରେ ଅମଲା ରମେଶ ଚନ୍ଦ୍ର ଦତ୍ତଙ୍କର ଚାରିଶହ ଡିସିମିଲି ଭୂମି ଗୋଟିଏ ମାଟିଘର ସହ ତିନି ହଜାର ଟଙ୍କାରେ କ୍ରୟ କଲି । ପାଖରେ ପାଞ୍ଚଶହ ଟଙ୍କା ମାତ୍ର ଥିଲା । ଖୋରଧା ସହରର ମହାଜନ ଭିକାରୀ ରାମ ଦୁଇ ହଜାର ଟଙ୍କା କରଜ ଦେଲେ । ପଣ୍ଡିତ ହରିବାବୁ କେତେ ଟଙ୍କା ଦେଇଥିଲେ । ଘରଟି କିଣାଗଲା । ପ୍ରସ୍ତର ଗୃହ ନିର୍ମାଣ କରିବା ପାଇଁ ବଳବତୀ ଇଚ୍ଛା । ତେଣୁ ଆଗେଇଲି । ଜାଗାଟା ଜନମାନବଶୂନ୍ୟ ପୁଣି ଖ୍ରୀଷ୍ଟିଆନ କବରସ୍ଥାନ ନିକଟ । କେତେଲୋକ ମୋତେ ନିନ୍ଦା କଲେ । ସେମାନେ କହିଲେ– ଦାତା ଦଇବ କେହି ନାହାନ୍ତି, ଦିନ ଦି' ପ୍ରହରରେ ଭୂତ ମାଡ଼ି ବସିବ, ରାତି କଥା କିଏ ପଚାରେ । ଅବଶ୍ୟ ସେତେବେଳେ ତେଣିକି କିଏ ଯାଉନଥିଲେ କି କୌଣସି ଯାନବାହନର ଦେଖାନଥିଲା । ତେବେ "ହରି ମାରେ ରଖେ କିଏ, ହରି ରଖେ ମାରେ କିଏ" ? ଏହି ନୀତିରେ ଶକ୍ତି ସଞ୍ଚୟ କରି ଆଗେଇ ଗଲି । ସେ ସମୟର ଗୃହୋପକରଣ ଶସ୍ତା ଥିଲା । ରାଜମିସ୍ତ୍ରୀ ମଜୁରି ଦିନକୁ ଦୁଇ ଟଙ୍କା ପଚାଶ ପଇସା ଓ ବଢ଼େଇ ମଜୁରି ମଧ ସେହି ଦୁଇ ଟଙ୍କା ପଚାଶ ପଇସା ଥିଲା । ସାଦା ଶ୍ରମିକର ମଜୁରି ଏକ ଟଙ୍କା ଓ ସାଙ୍ଗିବାଲା ମଜୁରି ଏକ ଟଙ୍କା ପଚିଶ ପଇସା ସିମେଣ୍ଟ ବସ୍ତା ସାତ ଟଙ୍କା ଓ କେତେ ଦିନପରେ ବାର ଟଙ୍କା, ଛଡ଼ ହନ୍ଦର ପଇଁତିରିଶ ଟଙ୍କା ଥିଲା । ୧୯୫୬ ମସିହାରୁ କାମ ଆରମ୍ଭ ହେଲା ୧୯୬୧-୧୯୬୨ ମସିହାରେ ଏକ ପ୍ରକାର ଶେଷ ହେଲା । ବିଦ୍ୟାଳୟ ଶିକ୍ଷକ ସହାୟକ ପାଣ୍ଠିରୁ ଦୁଇଅଣା ସୁଧରେ ବହୁଟଙ୍କା ଆଣିବାକୁ ପଡ଼ିଲା ଏବଂ ଖୋରଧା ଗୃହ ନିର୍ମାଣ ବିଭାଗରୁ ଛଅ ହଜାର ପାଞ୍ଚଶ ଟଙ୍କା କୋଡ଼ିଏ ବର୍ଷ ପାଇ କରଜ ଆଣିଲି । ପୁନଃ ବାବୁ ଭିକାରୀ ରାମ ଟଙ୍କା ସାହାଯ୍ୟ କଲେ । ମୋଟରେ ଅଧାପନ୍ତରିଆ ଭାବରେ ୬ ବଖରା ଘର, କୂଅ ପ୍ରାଚୀର ନିର୍ମାଣରେ ଅଠର ହଜାର ଟଙ୍କା ଖର୍ଚ୍ଚ ହେଲା । ୧୯୬୨ ମସିହା ବେଳକୁ ଗୃହ ବାସଯୋଗ୍ୟ ହେଲା । ଏଇଠି ଗୋଟିଏ କଥା ଲେଖୁଛି । ଗୃହ ନିର୍ମାଣ ପାଇଁ ଯେଉଁ ଟଙ୍କା ଗୃହ ନିର୍ମାଣ ବିଭାଗରୁ କରଜ ଆଣିଥିଲି ପ୍ରତିବର୍ଷ ଶୁଝି ଶୁଝି ଚାକିରି ସରିଲାବେଳକୁ ୧୯୮୧ ମସିହା ବେଳକୁ ପୁଣି ଗୋଟିଏ କିସ୍ତି ରହିଗଲା । ତେଣୁ କର୍ମକର୍ତ୍ତା ମୋ ନାମରେ ନୋଟିସ ପଠାଇଲେ । ମୁଁ ତାଙ୍କୁ କହିଲି ପେନସନ୍ ପାଇଲେ ଦେବି । ସେମାନେ ଆଦୌ ସମ୍ଭାଳିଲେ ନାହିଁ, ଘର କୋରଖ କରିବାକୁ କହିଲେ । ମୁଁ ଏତେଦୂର ବ୍ୟଥିତ ହେଲି ଯେ ମହାଜନଙ୍କଠାରୁ ଏକ ହଜାର ଟଙ୍କା କରଜ କରିଆଣି ଶୁଝିଦେଲି । ମୁଁ ବଡ଼ ଅଭିମାନୀ, ସାମାନ୍ୟ ଅପମାନ ସହିପାରେ

ନାହିଁ । ଏବେ ସେ ଗୃହ ସହରର କେନ୍ଦ୍ରସ୍ଥଳରେ ରହିଗଲାଣି । ତଥାପି ଗୃହ କାମ ଏପର୍ଯ୍ୟନ୍ତ ଚାଲିଛି । ଚାକିରିରୁ ଅବସର ପରେ ତାକୁ ଦୋତାଲାରେ ପରିଣତ କରିଛି । ବାହାରକୁ ସୋ' ଟା ଭଲ ଦିଶୁଛି । ସେ ଗୃହଟିକୁ ଲକ୍ଷ୍ୟରଖି ଲୋକେ ମୋତେ ଧନୀ ଲୋକ ବୋଲି ବିଚାରୁଛନ୍ତି । ସେତେବେଳେ ମୋତେ ହସ ମାଡୁଛି । ଏଇଥା ଯେ ସେତେବେଳେ ଘରଖଣ୍ଡିଏ କରିଦେଇଥିଲି ବୋଲି ବାର ଦୁଆର ଶୁଙ୍ଘି ପିଣ୍ଡା ହେବାକୁ ପଡୁନାହିଁ । ମାନ୍ୟଟା ରହିଯାଇଛି । ହେଡମାଷ୍ଟରଙ୍କର ତ ବିଶାଳ ବପୁ ନାହିଁ, ଘର ଖଣ୍ଡିଏ ଥିଲେ କିଛିଟା ମାନ ରହିବ ।

## ସେମିନାରରେ ଯୋଗଦାନ :

ଯେତେ ଯୁଆଡ଼େ ସେମିନାର ହୁଏ, ଆଲୋଚନା ସଭାମାନ ହୁଏ ସେସବୁ ସ୍ଥାନକୁ ଶିକ୍ଷକମାନେ ଯିବାପାଇଁ କୁଣ୍ଠିତ ହୁଅନ୍ତି । ଜଣେ ତ କିଏ ଯୋଗଦେବ ? ଶେଷରେ ପ୍ରଧାନଶିକ୍ଷକ ମୋ ଆଡ଼କୁ ଦୃଷ୍ଟି ଫେରାନ୍ତି । ମୁଁ ରାଜି ହୋଇଯାଏ । ସାମାଜିକ ଶିକ୍ଷା ଉପରେ ୧୯୫୮ ମସିହାରେ ଆଠଗଡ଼, ଇଂରେଜୀ ସାହିତ୍ୟ ଉପରେ ୧୯୬୨ ମସିହାରେ ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ ଓ ଭାଲୁଏସନରେ ବ୍ରହ୍ମପୁର ସିଟି ସ୍କୁଲରେ ୧୯୬୫ ମସିହାରେ ଯୋଗ ଦେଇଥିଲି । ପୁନଃ ନିଖିଳ ଓଡ଼ିଶା ମାଧମିକ ଶିକ୍ଷକ ସଭାରେ ୧୯୬୦ ମସିହାରେ ଯାଜପୁର ବିରଜା ହାଇସ୍କୁଲରେ ଯୋଗଦେଇଛି । ପ୍ରତ୍ୟେକ ସ୍ଥାନର ସଭାରୁ କିଛି କିଛି ଶିଖିଛି ଏବଂ କାର୍ଯ୍ୟରେ ବିନିଯୋଗ କରିଛି । ମୋ କାର୍ଯ୍ୟକୁଶଳତା ଯୋଗୁଁ ଦିବ୍ୟସିଂହବାବୁଙ୍କର ମୋ ପ୍ରତି ଧାରଣା ବଦଳିଯାଏ । ଦେଶ ଫେରିଲେ ବୁଦ୍ଧି ବଢ଼େ ।

## ମୋ ଶିକ୍ଷକ ଜୀବନରେ ଏକ ତିକ୍ତ ଅନୁଭୂତି :

୧୯୬୨ ମସିହା ବେଳକୁ ମୁଁ ଖୋର୍ଦ୍ଧା ହାଇସ୍କୁଲର ଏକ ବରିଷ୍ଠ ଶିକ୍ଷକ । ମୋର ସ୍ୱାଭିମାନ ଥାଏ । ମଧୁବାବୁଙ୍କ ଉକ୍ତି ସର୍ବଦା ମନଭିତରେ ଜାଗରୂକ ଥାଏ । 'ଆଲୋ ସଖି ଆପଣା ମହତ ଆପେ ରଖି' । ମୁଁ ହାତେ ମାପି ଚା'ଖଣ୍ଡେ ଚାଲିବା ଲୋକ । ବରଂ ଆତ୍ମହତ୍ୟା ଶ୍ରେୟସ୍କର କିନ୍ତୁ ନିନ୍ଦା ଅପମାନ ସହ୍ୟକରିପାରେ ନାହିଁ । ମୋ ଗୃହ ନିର୍ମାଣ ଶେଷ ହୋଇନଥାଏ, ନିର୍ମାଣ ଶେଷ କରିବା ପାଇଁ କିଛି ସିମେଣ୍ଟ ଆବଶ୍ୟକତା ପଡ଼ିଲା । ସେତେବେଳେ ସିମେଣ୍ଟ ପରମିଟ୍ ସପ୍ଲାଇ ଅଫିସରଙ୍କଠାରୁ ଏସ୍.ଡି.ଓ.ଙ୍କ ହାତକୁ ଚାଲିଯାଇଥାଏ । ମୁଁ ବଡ଼ ଆଣ୍ଟରେ ଯାଇଥିଲି, କାରଣ ଏସ୍.ଡି.ଓ. ହେଉଛନ୍ତି ଆମ ସ୍କୁଲର ପ୍ରେସିଡେଣ୍ଟ । ସେ ମୋ କଥା ନିଶ୍ଚୟ ବୁଝିବେ । ଆଉ ଚିନ୍ତା କ'ଣ ?

ଏସ୍.ଡି.ଓ. ରାଜେନ୍ଦ୍ର ନାରାୟଣ ସାହୁଙ୍କ ଦ୍ୱାରସ୍ଥ ହେଲି । ପୂର୍ବରୁ ଖୋର୍ଦ୍ଧା ଏକ ବୃହତ୍ ସବ୍‌ଡିଭିଜନ ଥିବାରୁ ଓ ଗୋଳମାଳିଆ ଜାଗା ଥିବାରୁ ସେଠାକୁ ଆଇ.ସି.ଏସ୍. ଓ ପରେ ଆଇ.ଏ.ଏସ୍. ପାହିଆର ଅଫିସରମାନେ ଏସ୍.ଡି.ଓ. ହୋଇ ଆସୁଥିଲେ – ୧୯୫୮ ମସିହାଠାରୁ ଖୋର୍ଦ୍ଧା ଛୋଟ ସବଡିଭିଜନ ହୋଇଗଲା । ତେଣୁ ବହୁ ସମୟରେ ଓ.ଏ.ଏସ୍. ଅଫିସର ଏସ୍.ଡି.ଓ. ହୋଇ ଆସିଲେ । ରାଜେନ୍ଦ୍ରବାବୁ ଖୋରଧାର ସବ୍‌ଡିଭିଜନାଲ ଅଫିସର ବୋଲି ନିଜକୁ ଖୁବ୍ ବଡ଼ ବୋଲି ମନେ କରୁଥିଲେ ପୁଣି ସ୍ୱାଧୀନ ଭାରତରେ । ମୁଁ ତାଙ୍କୁ ତାଙ୍କର ସରକାରୀ ବାସଭବନରେ ସାକ୍ଷାତକରି ପର୍‌ମିଟ୍ ପାଇଁ ଆବେଦନ କଲି । ସେ ମୋତେ ଯାହା ପଚାରିଲେ, ମୁଁ ନିର୍ଭୀକ ଭାବରେ ଉତ୍ତର ଦେଇଥିଲି । ଅବଶ୍ୟ ମୋ ଉତ୍ତରରେ ଆନୁଗତ୍ୟ ଭାବ ନଥିଲା । କିନ୍ତୁ ମୁଁ ତାଙ୍କୁ ଅସମ୍ମାନ ଭାବ ଦେଖାଇ ନଥିଲି । ଉପଜିଲ୍ଲାପାଳ ମହୋଦୟ ମୋ ଉପରେ କାହିଁକି କ୍ଷୁଣ୍ଣ ହେଲେ ମୋତେ ଜଣାନାହିଁ ତେବେ କ'ଣ ମୋ ବ୍ୟବହାର ତାଙ୍କୁ ଯନ୍ତ୍ରଣା ଦେଲା ? ସେ ବୋଧହୁଏ ଭାବିଥିବେ ମାଷ୍ଟ୍ରଟାଏ ଏପରି କ'ଣ ନିର୍ଭୀକ ଉତ୍ତର ଦେଉଛି ? ମୁଁ ତ ମାଷ୍ଟ୍ର ପୁଣି ପ୍ରାଇଭେଟ୍ ସ୍କୁଲର ମାଷ୍ଟ୍ର, ଅଧା ସ୍ୱାଧୀନ । ସରକାରଙ୍କଠାରୁ କେବଳ ଗ୍ରାଣ୍ଟ-ଇନ୍-ଏଡ୍ ମିଳିଥାଏ । ଏପରି ସ୍କୁଲ ସରକାରଙ୍କ ପୂର୍ଣ୍ଣ କର୍ତ୍ତୃତ୍ୱାଧୀନ ନଥାଏ । ଆମ ପାଇଁ ସରକାରଙ୍କ ତରଫରୁ କୌଣସି କଡ଼ାକଡ଼ି ନିୟମ ନଥାଏ । ତେଣୁ ମୁଁ ନିର୍ଭୟରେ ଉତ୍ତର ଦେଇଥିଲି । ଏସ୍.ଡି.ଓ. ମହୋଦୟ ମୋ ଉତ୍ତରରେ ଆନୁଗତ୍ୟ ଭାବ ନଦେଖି ମୋତେ ସାଙ୍ଗେ ସାଙ୍ଗେ ଗିରଫ କରିବେ ବୋଲି ଏଡ଼େ ପାଟିରେ ଧମକାଇଲେ । ମୁଁ ତ ଅବାକ୍, ଛେଳିମୃତି ଆଣ୍ଡିଏ, କୁଆଡ଼େ ଯିବି ବାଟ ପାଇଲି ନାହିଁ । ତାଙ୍କ ହାତରେ ସବୁ କ୍ଷମତା । ଗିରଫ କଲେ ମୋର ମାନସମ୍ମାନ ଭୂଲୁଣ୍ଠିତ ହେବ । ତାଙ୍କ ନିକଟରେ ଖୋରଧାର କେତେକ ଉଚ୍ଚ ଓ ନିମ୍ନ କର୍ମଚାରୀ ଉପସ୍ଥିତ ଥିଲେ ଓ ମୋତେ ଚିହ୍ନିଥିବା ଜଣେ ଦି'ଜଣ ଥିବାର ଜଣାପଡ଼ିଲା । ସେମାନଙ୍କ ସମ୍ମୁଖରେ ମୁଁ ନିଜକୁ ଖୁବ୍ ନ୍ୟୂନ ମନେକଲି । ଲଜ୍ଜାରେ ମୁଣ୍ଡ ତଳକୁ ହୋଇଗଲା । ମୃତ୍ୟୁ ଯନ୍ତ୍ରଣା ଅନୁଭବ କଲି । ଚୋରପରି ଧୀରେ ଧୀରେ ପଦ ଚାଳନା କରି ତାଙ୍କ ବାସଭବନ ତ୍ୟାଗ କଲି । ମନରେ ଗଭୀର ଦୁଃଖ ଓ ଉଦ୍‌ବେଗ । ମୋ ଚାକିରିକୁ ଧିକ୍, ମୋ ଶିକ୍ଷକ ଜୀବନକୁ ଧିକ୍ । ମୁଁ ନିର୍ଭୀକ ଉତ୍ତର ଦେଲି ବୋଲି ଏସ୍.ଡି.ଓ. ମହୋଦୟ କ'ଣ ମୋ ଉପରେ ଖପ୍ପା ହେଲେ ? ମୁଁ ଆଉ ଏତେ ବଡ଼ ଛାତ୍ରାବାସରେ ଅନ୍ତେବାସୀମାନଙ୍କୁ ଶାସନ କରିବି କିପରି ? ବସାକୁ ଫେରିଲି । ମନ ଭଲ ଲାଗିଲା ନାହିଁ । ମନରେ କ୍ରୋଧ ଓ ବିତୃଷ୍ଣା ଭାବ ।

ସେତେବେଳେ ପୂର୍ଣ୍ଣଚନ୍ଦ୍ର ମିତ୍ର 'ଖୋରଧା ସମାଚାର' ନାମକ ଏକ ସାପ୍ତାହିକ ସମ୍ବାଦପତ୍ର ଖୋରଧାରୁ ପ୍ରକାଶ କରୁଥିଲେ । ଯାହା ଯାହା ଦୁଃଖଦ ଘଟଣା ଘଟିଲା ସମସ୍ତ ଲେଖି ସେ କାଗଜରେ ଛାପିବାକୁ ଦେଲି । ସେ ଅବିକଳ ଛପାଇଦେଲେ । କ୍ଷୁଦ୍ର ସହର ଖୋର୍ଦ୍ଧାରେ କିଛିଦିନ ତାହା ଚର୍ଚ୍ଚାର ବିଷୟ ହେଲା । କେତେକ ବ୍ୟକ୍ତି ମୋତେ ନାନା ପ୍ରଶ୍ନ କଲେ । କିଏ ଏସ୍.ଡି.ଓ.ଙ୍କ ପକ୍ଷ ନେଲେ ତ କିଏ ମୋ ସ୍ପଷ୍ଟବାଦିତାକୁ ପୂରା ସମର୍ଥନ କରି ତାଙ୍କ କାର୍ଯ୍ୟକୁ ନିନ୍ଦା କଲେ । ଏଥିରେ ମୋ ମନ ତୁଷ୍ଟ ହେଲା ନାହିଁ । କ୍ରୋଧର ସୀମା ବଢ଼ି ବଢ଼ି ଗଲା । ମୁଁ ଶାନ୍ତିରେ ବସିପାରିଲି ନାହିଁ କି ଶ୍ରେଣୀରେ ଅଧ୍ୟାପନା କରିପାରିଲି ନାହିଁ । ମନକୁମନ ଚୋରପରି ହେଲି । ଏସ୍.ଡି.ଓ. ମହାଶୟଙ୍କର ଏପରି ଆଚରଣ ପ୍ରତିବାଦକରି ପୁରୀ କଲେକ୍‌ଟରଙ୍କ ପାଖକୁ ଦରଖାସ୍ତ ଖଣ୍ଡିଏ ଦେଲି । ସେ ମଧ୍ୟ ତାଙ୍କୁ ତାଗିଦ୍ କରି ପତ୍ର ଖଣ୍ଡିଏ ଲେଖିଲେ । ଯାହାକି କିରାଣିମାନଙ୍କ ମଧ୍ୟରୁ ମୋତେ ଜଣେ କହିଲେ । ମାତ୍ର ସେଥିରେ ମଧ ମୋ ମନ ତୁଷ୍ଟ ହେଲା ନାହିଁ । ଏସ୍.ଡି.ଓ. ଖୋର୍ଦ୍ଧାର ସର୍ବୋଚ୍ଚ ଶାସକ, ପୁଣି ଖୋର୍ଦ୍ଧା ବକ୍ସିଜଗବନ୍ଧୁ ହାଇସ୍କୁଲର ପ୍ରେସିଡେଣ୍ଟ । ତାଙ୍କଠାରୁ ଏପରି ଆଚରଣ ଆଶା କରାଯାଏ ନାହିଁ କି ଶୋଭାପାଏ ନାହିଁ । ଏଠାରେ ମୋ ଲୋକପ୍ରିୟତା ତାଙ୍କଠାରୁ ଢେର୍ ବେଶୀ । ତାଙ୍କ ମୁହଁରୁ ଏପରି କଥା ବାହାରିବା ସମୀଚୀନ ନୁହେଁ । କାହାକୁ କହିବି ? ମାନ ଅପମାନ କଥା କାହାକୁ କୁହାଯାଏ ନାହିଁ । କହିଲେ "କୁଳ କୁଟୁମ୍ବକୁ ଲାଜ, ନକହିଲେ କୁଳ ଭାସିଯାଉଛି ।"

ମୋ ଲାଜ ମୋତେ ଖାଉଛି । ବନ୍ଧୁବାନ୍ଧବ, ହିତାକାଂକ୍ଷୀ ବ୍ୟକ୍ତିମାନଙ୍କୁ ମୁହଁ ଦେଖାଇବାକୁ ଲଜ୍ଜାବୋଧ ହେଉଛି । ତଥାପି ଭାରାକ୍ରାନ୍ତ ହୃଦୟକୁ ଲାଘବ କରିବା ନିମନ୍ତେ ଛାତ୍ରାବାସର ଉପର ଶ୍ରେଣୀର କେତେକ ପିଲାଙ୍କ ଆଗେ ପ୍ରକାଶ କଲି । ସେମାନେ ଶୁଣି ଆବାକାବା ହେଲେ, ଗଭୀର ବ୍ୟଥିତ ହେଲେ । କିଛି ଦିନପରେ ତତ୍କାଳୀନ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ୍‌ଙ୍କ ଜନ୍ମଦିବସ ପଡ଼ିଲା । ସେ ବର୍ଷ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମଦିବସକୁ ଗୁରୁଦିବସ ରୂପେ ପାଳନ କରାଯିବାର ସିଦ୍ଧାନ୍ତ ନିଆଯାଇଥିଲା । ଆରମ୍ଭରୁ ମାତ୍ର ଦୁଇ ବର୍ଷ ହେତୁ ସରକାରୀ କର୍ମଚାରୀମାନଙ୍କୁ ଏ ଦିବସ ପାଳନ କରାଇବାକୁ କଡ଼ା ନିର୍ଦ୍ଦେଶ ଦିଆଯାଇଥିଲା । ସରକାରଙ୍କ ଉଷ୍ମତାହୀନ ନିର୍ଦ୍ଦେଶରେ ଦିବ୍ୟସିଂହବାବୁ କୃତକୃତ୍ୟ ହେଲେ । ନିର୍ଦ୍ଦିଷ୍ଟ ଦିନ ଛୋଟ ହଲର ପୂର୍ବପାଖେ ଅବସ୍ଥିତ ଉଦ୍ୟାନକୁ ଲାଗି ଏକ ବଡ଼ଧରଣର ସଭା ଅନୁଷ୍ଠିତ ହେଲା । ସହରର ବହୁ ଗଣମାନ୍ୟ ବ୍ୟକ୍ତି ଓ ଅଭିଭାବକ ଉପସ୍ଥିତ ରହିଲେ । ବିଭିନ୍ନ ପୁଷ୍ପମାଲ୍ୟରେ ରାଧାକୃଷ୍ଣନଙ୍କ ଫଟୋଟି ମଣ୍ଡିତ ହୋଇଗଲା । ଉଲ୍ଲାସ ଉଦ୍ଦୀପନାରେ ସଭାକାର୍ଯ୍ୟ ଆରମ୍ଭ ହେଲା । ସମାଜ ଓ ଶାସନ

ଶିକ୍ଷକମାନଙ୍କୁ ପ୍ରଥମ କରି ସମ୍ବର୍ଦ୍ଧନା ଜ୍ଞାପନ କରୁଥିବାରୁ ସମବେତ ଜନତାଙ୍କ ମନରେ ଆନନ୍ଦର ଢେଉ ଖେଳୁଥିଲା । ସଭାକୁ କୃତକାର୍ଯ୍ୟ କରିବାପାଇଁ ଆମ ପ୍ରଧାନ ଶିକ୍ଷକ ଦିବ୍ୟସିଂହବାବୁ ସଭାର ଚୂତଃପାର୍ଶ୍ୱ ଭ୍ରମଣ କରୁଥାଆନ୍ତି ।

ସେଦିନ ଏସ୍.ଡି.ଓ. ସାହେବ ହେଲେ ସଭାପତି । ଦିବ୍ୟସିଂହବାବୁଙ୍କର ମନରେ ଗଭୀର ଆନନ୍ଦ । ଶିକ୍ଷକମାନଙ୍କୁ ଏତେଦିନ ପରେ ସମ୍ମାନ ମିଳିଲା । ମାତ୍ର ଶିକ୍ଷକର ସମ୍ମାନ କନେଷ୍ଟବଲ ସମ୍ମାନଠାରୁ ହୀନ ଥିଲା । ମୁଁ ବଡ଼ ବିମର୍ଷ ମନରେ ଯାତାୟାତ କରୁଥାଏ । ଭାବୁଥାଏ, ଏ କି ଦେଶ, ଏ କି ଶିକ୍ଷା, ଏ କି ଅଫିସର, ଏ କି ଶିକ୍ଷକ । ଏ ଦେଶରେ କ'ଣ ଶିକ୍ଷକର ମାନ ସମ୍ମାନ ଅଛି ? ଏହିପରି ଭାବନାରାଜି ମନରେ ଉଦୟ ହେଉଥାଏ ପୁଣି ଅପସାରିତ ହେଉଥାଏ । ସଭାକାର୍ଯ୍ୟ ଆରମ୍ଭ ହେଲା । କବିରାଜ ନନ୍ଦକିଶୋର ମିଶ୍ର କହିଲେ, ସଚ୍ଚିବାବୁ କହିଲେ, ଯଦୁ ମୁକ୍ତିଆର ପ୍ରଭୃତି ଅନେକେ କହିଲେ । ଗୁରୁମାନଙ୍କୁ କିପରି ସମ୍ମାନ ଦିଆଯିବ ବହୁ ବକ୍ତା ଏକଥା ବୁଝାଇଲେ । ସ୍ୱୟଂ ଦିବ୍ୟସିଂହ ବାବୁ ପ୍ରାଚୀନକାଳରୁ ଏ ପର୍ଯ୍ୟନ୍ତ ନାନା ଉଦାହରଣ ଛଳରେ ଗୁରୁ ବା ଶିକ୍ଷକମାନଙ୍କର ଭୂମିକା ବିଶ୍ଳେଷଣ କଲେ ଏବଂ ସଭାପତି ମହୋଦୟଙ୍କୁ ଖୁବ୍ ଟେକିଲେ । ମୋର କିନ୍ତୁ କାହାକଥାରେ ମନ ମାନୁନଥାଏ, ହୃଦୟର କ୍ଷତଟା ଏପର୍ଯ୍ୟନ୍ତ ଶୁଖିନଥାଏ । ମନଟା ବିଥେଇ ହେଉଥାଏ । ଗୋଳେଇଘାଣ୍ଟି ହେଉଥାଏ । ଶେଷରେ ଦିବ୍ୟସିଂହବାବୁ ହାଇସ୍କୁଲ ପିଲାମାନଙ୍କୁ ନିର୍ଦ୍ଦେଶଦେଲେ କିଛି କହିବା ପାଇଁ । ସେମାନଙ୍କ ପରେ ଛାତ୍ରାବାସର ପିଲାମାନଙ୍କୁ ବି ଆଦେଶ ଦେଲେ । ଏହି ସମୟରେ ଏକାଦଶ ଶ୍ରେଣୀର ଜଣେ କୃତୀଛାତ୍ର ଶ୍ରୀ ପ୍ରେମାନନ୍ଦ ସାହୁ କହିବାକୁ ଉଠିଲା । ଭାଷଣ ଦେବାବେଳେ ତା' ପାଟିରେ ବାଟୁଳି ବାଜେ ନାହିଁ । ସେ ପୂର୍ବରୁ ମୋ ମୁହଁରୁ ସମସ୍ତ ହାଲ ହଇକତ ଶୁଣିଥିଲା । ତା' ମନରେ ଗଭୀର ବେଦନା ଜାତ ହୋଇଥିଲା । ସେ ମୋ ନାମ ବା ଉପସ୍ଥିତ ଉପଜିଲ୍ଲାପାଳଙ୍କ ନାମ ଉଚ୍ଚାରଣ ନକରି ଉପରିସ୍ଥ କର୍ମଚାରୀମାନଙ୍କର ଶିକ୍ଷକମାନଙ୍କ ପ୍ରତି ଦୁର୍ବ୍ୟବହାର ସମ୍ବନ୍ଧରେ ସର୍ବସମକ୍ଷରେ ଗୋଟିଏ ତତଲା ଭାଷଣ ବଜ୍ରନିର୍ଘୋଷ ସ୍ୱରରେ ଯେତେବେଳେ ବାଢ଼ିଦେଲା ସେତେବେଳେ ଶ୍ରୋତୃମଣ୍ଡଳୀ ଅବାକ୍ । ଆମର ପୂଜାସ୍ପଦ ହେଡମାଷ୍ଟର ମଧ୍ୟ ଅବାକ୍ । ସେ ଟିକିଏ ଖୁସାମଦ ପ୍ରବୃତ୍ତିର ବ୍ୟକ୍ତି ଥିଲେ । ପ୍ରଧାନଶିକ୍ଷକଙ୍କ ବାରଣସତ୍ତ୍ୱେ ପ୍ରେମାନନ୍ଦ କହି ଚାଲିଥାଏ । ଏପରି କଡ଼ା ସମାଲୋଚନାରେ ମାନ୍ୟବର କଳାସାହେବ ମହୋଦୟ ସେ ସ୍ଥାନ ଛାଡ଼ି ଚାଲିଯିବା ପାଇଁ ବାଟ ପାଇଲେ ନାହିଁ । ମୁଁ ଛାତ୍ରାବାସର ପରିଚାଳକ ଥିବାରୁ ମୋତେ ଡାକି ଏପରି କ'ଣ ପିଲାଟା କହିଲା ପଚାରିଲେ ।

ସେତିକିବେଳେ ସେହି ସଭାସ୍ଥଳରେ ମୁଁ ତାଙ୍କ ମୁହେଁ ମୁହେଁ କହିଦେଲି, "ଆଜ୍ଞା, ଗୁରୁଦିବସ ପାଳନ କରିବା ଏକ ପ୍ରହସନ ନୁହେଁ । ଗୁରୁମାନଙ୍କୁ ଉଚିତ ସମ୍ମାନ ଦେଇ ନ ଜାଣିଲେ କେବଳ ଭାଷଣରେ ପେଟ ପୂରେ ନାହିଁ ।" ମୋର ଏପରି କଥାରେ ଦିବ୍ୟସିଂହବାବୁ ନୀରବ ରହିଲେ । ସଭାକାର୍ଯ୍ୟ ଅଧାରୁ ଶେଷ ହେଲା । ଲୋକଙ୍କ ମନରେ ଆଲୋଚନା ଜୋରସୋରରେ ଚାଲିଲା, କିଏ ସେହି ଶିକ୍ଷକ, କିଏ ସେହି ଅଫିସର୍ ?

## ମୁଣ୍ଡଭାରୀ ଉଶ୍ୱାସ :

ସେହିଦିନଠାରୁ ମୋର ମୁଣ୍ଡଭାରୀ କମିଲା । ମୋର ହୃତ ସମ୍ମାନ ମୋର୍‌ପ୍ରିୟ ଛାତ୍ର ମୋତେ ଫେରାଇ ଦେବା ପାଇଁ ସମର୍ଥ ହୋଇଥିବାରୁ ମୋର ବକ୍ଷ ସ୍ଫୀତ ହୋଇ ଉଠିଲା । ସେହିଦିନଠାରୁ ପିଲାମାନଙ୍କୁ ଶ୍ରେଣୀରେ ପଢ଼ାଇବାରେ ମନୋନିବେଶ କଲି । ବିଦ୍ୟାଳୟ କାର୍ଯ୍ୟ ଏଣିକି ଆଉ ବିସ୍ୱିତା ଲାଗିଲା ନାହିଁ ।

କାହିଁକି ରାଜେନ୍ଦ୍ରବାବୁ ମୋ ଉପରେ କ୍ରୋଧାନ୍ୱିତ ହେଲେ ଏବେ ବହୁ ଭାବି ଭାବି ପାଇଛି । ବ୍ରିଟିଶ ପିରିଅଡ଼ରେ ସବ୍‌ଡିଭିଜନ୍ ସାହେବଙ୍କ ସହିତ କଥାଭାଷା ବେଳେ ସମସ୍ତେ ହଜୁର ହଜୁର କହନ୍ତି । ବରିଷ୍ଠ ଓକିଲ ମୁରଲୀମୋହନ ଚାଟାର୍ଯୀ ମୋ ପାଇଁ ଖଣ୍ଡିଏ ସାର୍ଟିଫିକେଟ ଆଣିବାକୁ ଯାଇଥିବାବେଳେ ଏସ୍.ଡି.ଓ. ରାୟବାହାଦୁର ଗୋପୀନାଥ ବେହେରାଙ୍କୁ ବହୁଥର ଏପରିକି ଅଧଘଣ୍ଟାରେ କୋଡ଼ିଏ ଥର ଏହି ହଜୁର ଶବ୍ଦ ମୋ ସମ୍ମୁଖରେ ଉଚ୍ଚାରଣ କରିଥିଲେ । ସେହି ପ୍ରଥାକୁ ସମ୍ମାନ ନଦେଇ ମୁଁ ଯେତେବେଳେ କିଛି କହିଥିଲି ଏଥିପାଇଁ ସେ ମୋ ଉପରେ ଖପା ହୋଇଯାଇଥିବେ ବୋଲି ମନେହେଉଛି । ମୁଁ ଗଡ଼ଜାତର ପ୍ରଜା ନୁହେଁ ପୁଣି ସଂଗ୍ରାମୀ ହିସାବରେ ଭାରତଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲି । ହଜୁର, ମଣିମା ଶବ୍ଦ ଉଚ୍ଚାରଣ କରିବା ମୋର ନୀତିବିରୁଦ୍ଧ । ମୁଁ ବସ୍ତୁତଃ ସ୍ୱାଭିମାନୀ । ମୁଁ ବୀରଭୂମି ଖୋର୍ଦ୍ଧାର ଅଧିବାସୀ । କେବେ ତ କେଉଁ ମହାନ୍ ଲୋକଙ୍କୁ ହଜୁର୍ କହିନାହିଁ । ଖୋର୍ଦ୍ଧା ଏସ୍.ଡି.ଓ. କ'ଣ ସ୍ୱୟଂ ଭଗବାନ ହୋଇଗଲେ କି ?

## ମୋ ପାଇଁ ମୋ ଗାଈର ଜୀବନଦାନ :

୧୯୬୧ ମସିହା ବେଳକୁ ମୁଁ ବୟାଳିଶ ବର୍ଷ ବୟସରେ ପଦାର୍ପଣ କଲି । କେତେକ ଜ୍ୟୋତିଷ ମୁଁ ବୟାଳିଶ ବର୍ଷରେ ଚାଲିଯିବି ବୋଲି ଆମଘରର ଅନ୍ୟମାନଙ୍କ ଆଗରେ ପ୍ରକାଶ କରିଥିଲେ । ମୋ ବଡ଼ଭାଉଜ ଓ ମୋ ସ୍ତ୍ରୀଙ୍କର ଭଲ ପଡୁନଥିଲା । ତେଣୁ

ବଡ଼ଭାଉଜ ମୋର ଅନିଷ୍ଟ ଚିନ୍ତା କରୁଥିଲେ । ସେ ଭାବୁଥିଲେ ଏଥର ଏ ଖସିଯିବ । ନୂଆ କରି ପଥର ଘର କଲେ ଏପରି ବିପ୍ରାତ ପଡ଼େ ବୋଲି ଗାଁ ଲୋକେ ଭାବନ୍ତି । ତେଣୁ ମୋର ବୟସକୁ ଏଣେ ଗୃହନିର୍ମାଣ ଏକ କାଳରେ ଘଟିବାକୁ ବିଶ୍ୱାସ ଦୃଢ଼ ହେଲା । କିନ୍ତୁ ସେ ସମୟରେ ଗୋଟିଏ ଅଘଟଣ ଘଟିଲା । ମୋର ଲକ୍ଷ୍ମୀ ନାମକ ଦୁଧିଆଳୀ ଗାଈଟିକୁ ପୂଜାଛୁଟିରେ ପାଗଳାକୁକୁର ହଠାତ୍ ତା ଥୋମଣିକୁ ଧରିପକେଇ ତିନିଟା ଦାନ୍ତ ଗଳେଇ ଦେଲା ଏବଂ ତା ପରେ ପରେ ମୋର ତିନି ବର୍ଷର ଝିଅ ବରା ଖାଉଥିବାବେଳେ ସେଇ କୁକୁର ଖାଇବା ଲୋଭରେ ନଖ ମାରିଦେଲା । ଦୁଇ ଦିନ ପରେ କୁକୁରଟା ଆମ ବାରିଦୁଆରେ ମରି ପଡ଼ିଥିଲା । ସେପର୍ଯ୍ୟନ୍ତ କୁକୁରଟା ପାଗଳ ହୋଇଛି ବୋଲି ମୁଁ ଜାଣିନଥିଲି । ଝିଅକୁ ଇଞ୍ଜେକ୍ସନ୍ ଦେଲି ମାତ୍ର ଗାଈ ପାଇଁ କିଛି ଉପାୟ ନଥିଲା । ଆହୁରି ଏକ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ବଣିଆଟାଙ୍ଗି ମହାଦେବଙ୍କ ପାଖକୁ ନେଇଥିଲି ମାତ୍ର ଏକୋଇଶ ଦିନପରେ ସେ ଗାଈଟି ହମ୍ବା ରଡ଼ି କରି କରି ପ୍ରାଣ ଛାଡ଼ିଲା । କି ମର୍ମନ୍ତୁଦ ସେ ଦୃଶ୍ୟ । ମୁଁ ସିନା ମଲି ନାହିଁ କିନ୍ତୁ ମୋ ପାଇଁ ମୋର ପ୍ରିୟ ଗାଈଟି ଜୀବନ ଦାନ କଲା ।

**କାନପୁର ସହରରେ ଶିକ୍ଷକ ସମାବେଶ :**

୧୯୬୨ ମସିହା ବଡ଼ଦିନ ଛୁଟିରେ ଉତ୍ତରପ୍ରଦେଶ କାନପୁର ସହରରେ ଡି.ଏ.ଭି. କଲେଜରେ ସର୍ବଭାରତୀୟ ଶିକ୍ଷକ ସମାବେଶରେ ଯୋଗଦେବାପାଇଁ ବାବୁ ଗଙ୍ଗାଧର ବଣ୍ଡିଆ, ଡେଲାଙ୍ଗ ହେଡମାଷ୍ଟର ଶ୍ରୀ ସୁଦର୍ଶନ ମିଶ୍ର ଓ ସହକାରୀ ଶ୍ରୀଅକ୍ରୁରଙ୍କ ସହ ଯାତ୍ରାକଲି । ପ୍ରଧାନଶିକ୍ଷକ ନିଜେ ନଯାଇ ମୋତେ ପଠାଇଥିଲେ । ଏଇ ପରିପ୍ରେକ୍ଷୀରେ ଇତିହାସପ୍ରସିଦ୍ଧ କାନପୁର ଓ ଲକ୍ଷ୍ନୌ ସହର ଉତ୍ତମ ଭାବେ ପରିଦର୍ଶନ କଲି । ୧୮୫୭ ମସିହା ଉତ୍ତର ଭାରତରେ ପ୍ରଥମେ ଜନ ଆନ୍ଦୋଳନ ବେଳେ ଏଇ ଦୁଇଟି ସହର ବିଦ୍ରୋହରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲା । ଲକ୍ଷ୍ନୌ ଗୋମତୀ ନଦୀ କୂଳରେ ଅବସ୍ଥିତ ପୂର୍ବତନ ନବାବଙ୍କର ନିବାସ ସ୍ଥଳ । ସାନଇମାମ ବେରା ଓ ବଡ଼ଇମାମ ବେରା ଅଭ୍ୟନ୍ତରକୁ ପ୍ରବେଶ କରି ଦୁର୍ଗର ମହତ୍ତ୍ୱ ଓ ଗୌରବ ବୁଝିପାରିଲୁ । ଲକ୍ଷ୍ନୌ ଉତ୍ତର ପ୍ରଦେଶର ରାଜଧାନୀ । ଏହି ଲକ୍ଷ୍ନୌ ସହରର ପରିଦର୍ଶନ ବେଳେ ମୋ ସହିତ କଟକ ବି.ଇ.ଡ଼ି. କଲେଜର ଅଧ୍ୟାପକ ଭୋଳାନାଥବାବୁ ଏବଂ ତାଙ୍କର ସହକର୍ମୀ ଥିଲେ । ଏହି ସହରର ପରିମଳ ବ୍ୟବସ୍ଥା ଉଚ୍ଚଦରର ଥିଲା । ଲକ୍ଷ୍ନୌର ଗରିମାମୟ, ଧନବନ୍ତ ବଜାର ପରିଦର୍ଶନ କରି ସୁପ୍ରସିଦ୍ଧ ଚିଡ଼ିଆଖାନାରେ ପଦାର୍ପଣ କଲୁ । କଲିକତା

ଚିଡ଼ିଆଖାନା ବଡ଼ ହେଲେହେଁ ଲକ୍ଷ୍ନୌ ଚିଡ଼ିଆଖାନାରେ ଖୁବ୍ ନିକଟରୁ ବାଘ, ସିଂହ ପ୍ରଭୃତି ହିଂସ୍ରଜନ୍ତୁମାନଙ୍କୁ ଦର୍ଶନ କରିବାର ସୁବିଧା ମିଳିଲା । ଏହି ଚିଡ଼ିଆଖାନା ଅଧିକ ଜୀବନ୍ତ ଓ ମନୋରମ ଥିଲା । ତତ୍ପରେ କାନପୁର ସହରକୁ ଫେରିଗଲୁ, ଏହା ଗଙ୍ଗା କୂଳରେ ଅବସ୍ଥିତ । କାନପୁର ଚମଡ଼ା କାରଖାନା ପାଇଁ ପ୍ରସିଦ୍ଧ ଥିଲା । ଉକ୍ତ ଦୁଇ ସହରରେ ସ୍ୱାଧୀନତା ସଂଗ୍ରାମର ବହୁ ଚିହ୍ନ ଦେଖିପାରିଲୁ ।

ତହିଁ ପରଦିନ ଶିକ୍ଷକ ସଭାରେ ସଭାପତିତ୍ୱ କରିଥିଲେ ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଶ୍ରୀ ଚନ୍ଦ୍ରଭାନୁ ଗୁପ୍ତା । ସେଠାରେ ଦୁଇଟି ଦିନ ଅବସ୍ଥାନ କରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲୁ । କୌଣସି ଦୂର ଦେଶକୁ ଭ୍ରମଣ କରିବାକୁ ଗଲେ ମୋର ସେହି ପୂର୍ବ ଝାଡ଼ାରୋଗ ବାହାରେ । ତେଣୁ ଦୂରଯାତ୍ରା ସୁଖକର ହୁଏ ନାହିଁ । ଉତ୍ତର ପ୍ରଦେଶ ଭ୍ରମଣ କରିବା ମୋ ଜୀବନରେ ସେତିକି । ଆଉ ଭାରତର କେଉଁ ସ୍ଥାନକୁ ଯାତ୍ରା କରିବାର ସୁବିଧା ସୁଯୋଗ ମିଳି ନାହିଁ । ତେବେ ୧୯୬୫ ମସିହାରେ ନନ୍ଦନକାନନ, ପାରାଦୀପ ବନ୍ଦର, ତାଳଚେର କୋଇଲାଖଣି ଓ ହୀରାକୁଦ ବନ୍ଧ ଦର୍ଶନ ମୋର ଶେଷ ଭ୍ରମଣ । ରାଜ୍ୟ ବାହାରକୁ ଯିବା ବ୍ୟୟସାପେକ୍ଷ । କଥାରେ ଅଛି, "ଯେ ପକ୍ଷୀ ଉଡ଼େ ଯେତେଦୂର, ସେ ଜାଣେ ତାହାର ବେଭାର ।" ଆର୍ଥିକ ଦୁର୍ଗତି ଯୋଗୁଁ ମୁଁ ତ କୁଆଡ଼େ ଯାଇ ପାରିଲି ନାହିଁ, ଅଧିକ ଜ୍ଞାନ ଆହରଣ କରିବି କିପରି ? ତେଣୁ ପଣ୍ଡିତମାନଙ୍କ ମତରେ କୂପମଣ୍ଡୁକଟିଏ ହୋଇ ରହିଗଲି ।

## ଦିବ୍ୟସିଂହବାବୁଙ୍କର ସୁବ୍ୟବହାର :

ଦିବ୍ୟସିଂହବାବୁ ଶିକ୍ଷକମାନଙ୍କ ପ୍ରତି ଭଲ ବ୍ୟବହାର କରନ୍ତି । ସେତେବେଳକୁ ତାଙ୍କୁ ଛଅଷଠି ବର୍ଷ ବୟସ ହେଲାଣି । କାର୍ଯ୍ୟ ସଂପାଦନରେ ଶିଥିଳତା ଆସିଲାଣି । ଶିକ୍ଷକମାନଙ୍କ ମଧ୍ୟରୁ କେତେକ ତାଙ୍କୁ ସମାଲୋଚନା କରୁଛନ୍ତି, କିନ୍ତୁ ସେ ବିଚଳିତ ହୁଅନ୍ତି ନାହିଁ । ପିଲାମାନଙ୍କ ଲେଖା ବେଳେବେଳେ ତନଖି କରନ୍ତି । ବାର୍ଷିକ ପରୀକ୍ଷା ସମୟରେ ପିଲାମାନଙ୍କ ପରୀକ୍ଷା ଖାତାରେ ଗୁପ୍ତ ରୋଲ ନମ୍ବର ଦିଅନ୍ତି । ସେହି ଗୁପ୍ତ ରୋଲ ନମ୍ବର ସାହାଯ୍ୟରେ ମାର୍କ ସିଟ୍‌ରେ ନମ୍ବର ଦିଅନ୍ତି । ନମ୍ବରକୁ ବିଚାର କରି ଶ୍ରେଣୀ ପ୍ରମୋଶନ ଦିଆଯାଏ ।

ଶିକ୍ଷକମାନେ ସେମାନଙ୍କର ଟିଉସନ ପିଲାଙ୍କୁ ଅଧିକ ନମ୍ବର ଦେଇପାରନ୍ତି ନାହିଁ । ଶ୍ରେଣୀ ପ୍ରମୋଶନ ବା ବଛାବଛି ପରୀକ୍ଷାରେ ନମ୍ବରକୁ ବିଚାର କରି ଯେତିକି ପିଲା ପଠାଇବା କଥା ତାହା ଶିକ୍ଷକ ସଭାରେ ସ୍ଥିର ହୋଇଥାଏ । ପରେ ଆଉ କିଛି

ବିଚାରକୁ ନିଆଯାଏ ନାହିଁ । ଯେତେ ବଡ଼ଲୋକର ପିଲା ହେଲେ ବି ଯଦି ସେ ରହିଯାଇଥାଏ ତା କଥା ବିଚାରକୁ ନିଆଯାଏ ନାହିଁ । ଧନୀ, ଦରିଦ୍ର ପିଲାଙ୍କ ପାଇଁ ସମାନ ବିଚାର । ଦିବ୍ୟସିଂହବାବୁ ନିଜ ନୀତିରୁ ବିଚ୍ୟୁତ ହୁଅନ୍ତି ନାହିଁ । ଆଜିକାଲି କେତେକ ହାଇସ୍କୁଲରେ ଶ୍ରେଣୀ ପରୀକ୍ଷାରେ ପିଲା ଫେଲ୍ ହେଲେ ପ୍ରଧାନ ଶିକ୍ଷକ ଅଭିଭାବକଙ୍କ ଅନୁରୋଧରେ ଉପର ଶ୍ରେଣୀର ସାର୍ଟିଫିକେଟ୍ ଦେଇ ସ୍କୁଲ୍‌ରୁ ବିଦାୟ କରିଦିଅନ୍ତି । ପୁଣି ହେଡମାଷ୍ଟର ଇଚ୍ଛାକରି ଅନ୍ୟ ଜଣେ ସପକ୍ଷବାଦୀ ଶିକ୍ଷକଙ୍କଠାରୁ ଲେଖାଟିଏ ଆଣି ପ୍ରମୋଶନ ଦେଇ ଦିଅନ୍ତି ବା ବୋର୍ଡ଼ ପରୀକ୍ଷାକୁ ପଠାନ୍ତି । କିନ୍ତୁ ଏହା ଦୁର୍ନୀତିର ଗୋଟିଏ ରୂପ । ଦିବ୍ୟସିଂହବାବୁ ଏପରି କେବେ କରନ୍ତିନାହିଁ  କି ଏପରି କାର୍ଯ୍ୟପାଇଁ ଶିକ୍ଷକମାନେ ତାଙ୍କୁ ସୁଯୋଗ ଦିଅନ୍ତିନାହିଁ । ଦିବ୍ୟସିଂହବାବୁ ପରୀକ୍ଷା କେନ୍ଦ୍ରର ପରିଚାଳକ ଥିବାବେଳେ କପି କରୁଥିବା ପିଲାଙ୍କୁ ପରୀକ୍ଷାରୁ ବାହାର କରିଦିଅନ୍ତି । ସେ କଠୋର ନୀତିପରାୟଣ ଓ ସଚ୍ଚୋଟ ଥିଲେ । ୧୯୫୧ମସିହାଠାରୁ ୧୯୬୫-୬୬ ମସିହା ପର୍ଯ୍ୟନ୍ତ ପାଠପଢ଼ାଟା ଖୁବ୍ ତନାଘନାରେ ଚାଲିଥିଲା । ପ୍ରତ୍ୟେକ ଶିକ୍ଷକ ବା ବରିଷ୍ଠ ଶିକ୍ଷକମାନେ ଶୃଙ୍ଖଳାରକ୍ଷାରେ ତାଙ୍କୁ ବହୁ ସାହାଯ୍ୟ କରୁଥିଲେ । ହେଡ୍‌ମାଷ୍ଟର କି ଶିକ୍ଷକମାନେ ବେତ ବ୍ୟବହାର କରନ୍ତି ନାହିଁ । ପିଲାମାନଙ୍କୁ ଡରାଇବାପାଇଁ ଇନାତୁର ବେତ ରଖିଥିଲେ । ଖେଳ ଶିକ୍ଷକ ଖେଳାଳିମାନଙ୍କୁ ମାଡ଼ ଦିଅନ୍ତି । ତେଣୁ ବହୁବାର ଆପତ୍ତି ଆସେ । ମୁଁ, ଶୈଳେନ୍ଦ୍ର ବାବୁ, ପଣ୍ଡିତ ହରିକୃଷ୍ଣ ଅଭିଭାବକଙ୍କ ଆପତ୍ତି ବୁଝିଦେଇ ବିଦାୟ କରିଦେଉ । ଗୁରୁତର ହେଲେ କେସ୍ ହେଡମାଷ୍ଟରଙ୍କ ପାଖକୁ ଯାଏ । ଦିବ୍ୟସିଂହବାବୁ ପ୍ରଧାନ ଶିକ୍ଷକ ପାଇଁ ଉପଯୁକ୍ତ ଲୋକ । ତାଙ୍କର ଚରିତ୍ର କଳଙ୍କଶୂନ୍ୟ । ଚରିତ୍ରହୀନ ଶିକ୍ଷକ ଦେଶ ଓ ଜାତିର ଘୃଣ୍ୟ । ସେ ଇନ୍‌ସପେକ୍ଟର ଅଫିସକୁ ବହୁବାର ଯାଆନ୍ତି ନାହିଁ । ସେ ପୃଥୁଳକାୟ । ଗଣେଶଙ୍କ ପେଟ ତାଙ୍କର । ସେ ଭଲ କହନ୍ତି । ତାଙ୍କର ସମୟାନୁବର୍ତ୍ତିତା ଗୁଣ ଥିଲା । ମୁଁ ବି ଢେର୍ ସମୟାନୁବର୍ତ୍ତୀ ଥିଲି । ଏହା ମୋର ସହଜାତ ପ୍ରବୃତ୍ତି ଥିଲା । ଏବେ ବି ଅଛି । ମୁଁ ଖୁବ୍ ନୀତିନିଷ୍ଠ ଓ କାର୍ଯ୍ୟଦକ୍ଷ ।

**ମୋର ସମୟ ସଚେତନତା :**

ଥରେ ମୁଁ ଦଶଟାରେ ପ୍ରାତଃ ଭୋଜନ ସାରି ବିଦ୍ୟାଳୟକୁ ଯିବାକୁ ପ୍ରସ୍ତୁତ ହେଲି । ବସାରୁ ଆସି ଛାତ୍ରାବାସ ଅଫିସଗୃହରେ ଟିକିଏ ଗଡ଼ତ ପଡ଼ତ ହେଲି । ଏହିପରି ହେଉ ହେଉ ନିଦ ଲାଗିଗଲା । କିଛି ମୁହୂର୍ତ୍ତ ପରେ ନିଦ ଚାଉଁକିନା ଭାଙ୍ଗିଗଲା । ହଠାତ୍ ଉଠି ଚାରିଆଡ଼କୁ ଚାହିଁଲା ବେଳକୁ କୌଣସି ଗୋଟିଏ ହେଲେ ପିଲା ଯାଉଥିବାର

ଦେଖିଲି ନାହିଁ । ଆରେ କ'ଣ ଡେରି ହୋଇଗଲା କି ? କାନ୍ଥ ଘଣ୍ଟାକୁ ଚାହିଁଲା ବେଳକୁ ଦଶଟା । ଦଶ ମିନିଟ୍ ଡେରି ହୋଇଗଲାଣି । ବଡ଼ ସନ୍ତର୍ପଣରେ ବିଦ୍ୟାଳୟକୁ ଗଲି । ପ୍ରଧାନ ଶିକ୍ଷକଙ୍କୁ ସାକ୍ଷାତକରି କହିଲି, ଆଜ୍ଞା, ମୋର ପନ୍ଦର ମିନିଟ୍ ଡେରି ହୋଇଗଲା । ଛୁଟିପାଇଁ ଦରଖାସ୍ତ ଦେବି କି ? ଅନ୍ୟମାନଙ୍କ ପାଇଁ କାହିଁକି ଗୋଟିଏ ନଜିର ସୃଷ୍ଟି କରିବି ? ଦିବ୍ୟସିଂହବାବୁ ଟିକିଏ ଭାବି ଉତ୍ତର ଦେଲେ ହଉ ନେଇ ଯାଆନ୍ତୁ । ତାଙ୍କର ଏପରି କଥାରେ ମୁଁ କାହିଁକି ମୋ ମାନ ହରାଇବି ? ମୁଁ ସଙ୍ଗେସଙ୍ଗେ ମୋ ବଚନ ରକ୍ଷାକଲି । ବସାକୁ ଫେରିଆସିଲି । ମୁଁ ସଦା ସମୟ ସଚେତନ । ଯଦି ମୋ ଅଜାଣତରେ ଏପରି ଭୁଲଟାଏ ହୋଇଗଲା ତେବେ ତାକୁ ସୁଧାରି ନେବା ମୋର କର୍ତ୍ତବ୍ୟ । ବର୍ଷକରେ ପନ୍ଦର ଦିନ ଛୁଟି ମୁଁ ନିଏ ନାହିଁ । ଘରେ ବସିବାକୁ ଇଚ୍ଛା ନଥାଏ । ତେଣୁ ବିଦ୍ୟାଳୟରେ ହେଲେ କିଛି ପିଲାଙ୍କୁ ଶିକ୍ଷାଦେବି । ଏହାହିଁ ହେଲା ମୋ ଜୀବନର ବିଚାରଧାରା ।

**ଧର୍ମସଭାରେ ମୋର କାମ :**

ସମୟେ ସମୟେ ଜାତୀୟ ଓ ଆନ୍ତର୍ଜାତୀୟ ଧର୍ମାତ୍ମାମାନେ ସହରକୁ ଆସି ପ୍ରବଚନ ଦିଅନ୍ତି । କର୍ତ୍ତବ୍ୟର ଚାପରେ ମୁଁ ସେଠାକୁ ଯାଇ ଶୁଣିପାରେ ନାହିଁ । ଦିବ୍ୟସିଂହ ବାବୁ ଜଣେ ଧର୍ମାତ୍ମା । ତେଣୁ ସେ ସେମାନଙ୍କୁ ବିଦ୍ୟାଳୟକୁ ଆଣନ୍ତି, ଧର୍ମ କଥା ଶୁଣିବା ପାଇଁ କାହାର ବା କେତେ ମନଥାଏ । ପୁନଃ ଲୋକଙ୍କ ଧାରଣା, ''ମୁଣ୍ଡରେ ଚିତା, ତିଳକ ମାରି ମାଳା ଗଡ଼ାଇଲେ କେହି ଧର୍ମାତ୍ମା ହୋଇଯାଏ ନାହିଁ ।'' ମୁଁ ସେପରି ବାବାଜୀ, ସନ୍ୟାସୀମାନଙ୍କୁ ବିଶ୍ୱାସ କରେ ନାହିଁ । ବିଦ୍ୟାଳୟ ଧର୍ମ ସଭାକୁ ଯେ ଆସିଲେ ସେ ମୋ ପାଖକୁ ସମ୍ବାଦ ପଠାନ୍ତି । ମୁଁ ଅନ୍ତେବାସୀମାନଙ୍କୁ ନେଇ ସଭାସ୍ଥଳକୁ ଯାଏ । ସଭାକାର୍ଯ୍ୟ ଚାଲେ । ଭଲକଥା ଶୁଣିଲେ ମନରୁ ଅସତ୍ ଭାବନା ଦୂରୀଭୂତ ହୁଏ । ସମସ୍ତଙ୍କର ସ୍ୱାର୍ଥ ଅଛି ।

ଦିବ୍ୟସିଂହବାବୁ ସେହି ସ୍ୱାର୍ଥରୁ ମୁକ୍ତହେବେ କିପରି ? ତାଙ୍କର ଯେ ସ୍ୱାର୍ଥ ନଥିଲା ତାହା ମୁଁ କହୁନାହିଁ । ସମସ୍ତଙ୍କର ଅଛି । ତେବେ ସ୍ୱାର୍ଥ ଗୋଟିଏ ସୀମାଭିତରେ ରହିଲେ ବହୁ ମହତ୍ କାର୍ଯ୍ୟ ସାଧିତ ହୋଇଥାଏ । ଦରିଦ୍ର ପିଲାମାନଙ୍କୁ କେତେଥର ସ୍କୁଲ ଫଣ୍ଡରୁ ସ୍କୁଲ ୟୁନିଫର୍ମ ଦିଆଯାଇଛି । ଶିକ୍ଷକମାନଙ୍କୁ ଭିତରୁ ସେ ଜଣକୁ ଭଲ ପାଆନ୍ତି ବୋଲି ଦେଖାନ୍ତି ନାହିଁ । ଯେ କାର୍ଯ୍ୟକ୍ଷେତ୍ରରେ କର୍ମଠ ତାକୁ ସେ ସମସ୍ତଙ୍କ ସମ୍ମୁଖରେ ପ୍ରଶଂସା କରନ୍ତି ନାହିଁ । କାନକୁହାଙ୍କ କଥାକୁ ଶୁଣି ନବୁଝି ନସୁଝି ସେ କୌଣସି କାର୍ଯ୍ୟାନୁଷ୍ଠାନ କରନ୍ତି ନାହିଁ । ରୁଟିନ କଲାବେଳେ କେତେକ ଅସୁବିଧା ଦେଖାଦିଏ ।

କେତେକ ଶିକ୍ଷକ ଯେଉଁ ଶ୍ରେଣୀପିଲାଙ୍କୁ ଟିଉସନ କରନ୍ତି ସେହି ଶ୍ରେଣୀରେ ପଢ଼େଇବାକୁ ଚାହାଁନ୍ତି । ତେଣୁ ଟିକିଏ ଗୋଳମାଳ ହୁଏ ।

"ଯହିଁ ହୁଅଇ ବହୁମେଳି, ଅବଶ୍ୟ ଉପୁଜଇ କଳି ।"

ବେଳେବେଳେ ଶିକ୍ଷକମାନଙ୍କ ଭିତରେ ବିଷୟ ନିର୍ବାଚନରେ ମନୋମାଳିନ୍ୟ ଦେଖାଯାଏ । ସେପରି ସ୍ଥଳେ ମୋତେ ପଚାରନ୍ତି । ମୁଁ ରୋକଠୋକ୍ କଥାଟି ଛିଣ୍ଡାଇ ଦିଏ । ମୁଁ କହେ ଯେଉଁମାନେ ପାଟିତୁଣ୍ଡ କରୁଛନ୍ତି ସେମାନେ ନିଜର ପ୍ରିୟ ବିଷୟ ନେଇଯାଆନ୍ତୁ, ଯାହାକୁ କେହି ନେବେ ନାହିଁ ମୋତେ ଦେବେ । ଯେ ଯେମିତି ଘରୋଇ ଟିଉସନ କରନ୍ତି, ପିଲାଙ୍କୁ ତାଙ୍କ ଆଡ଼କୁ ଟାଣିବା ପାଇଁ ଏପରି ବିଷୟ ବାଛି ନିଅନ୍ତି । ମୋର ତ ସେପରି ଭାବନା ନଥାଏ । ଉପର ଶ୍ରେଣୀରେ ଦେଲେ ନିଏ । ତଳ ଶ୍ରେଣୀରେ ଦେଲେ ନିଏ । କଳି ତୁଟିଯାଏ । ତେବେ ଶିକ୍ଷକମାନଙ୍କ ମଧ୍ୟରେ ଅସନ୍ତୋଷ ଭାବ ରହିବ ହିଁ ରହିବ । ତାହା ଦୂର କରିବାକୁ ଚେଷ୍ଟା କରାଯାଏ । ମୁଁ ତା'ର ମାଧ୍ୟମ ପାଲଟିଯାଏ । ମୋତେ ନ ପଚାରି ସେ ବହୁକାମରେ ଆଗେଇ ପାରନ୍ତି ନାହିଁ ।

## ବିଦ୍ୟାଳୟରେ ଖେଳର ମାନ :

ସେତେବେଳେ ବିଦ୍ୟାଳୟରେ ଖେଳର ମାନ ଖୁବ୍ ଉଚ୍ଚରେ ଥିଲା । ଖେଳ ଶିକ୍ଷକ ଉଦ୍ୟନାଥବାବୁ ଖୁବ୍ କର୍ମଠ ଥିଲେ । ରାଜ୍ୟରେ ଖୋରଧା ହାଇସ୍କୁଲର ଖେଳରେ ନାଁ ଥିଲା । ଟାଙ୍ଗୀ, ନୟାଗଡ଼, ଭଲ ଖେଳୁଥିଲେ । ମାତ୍ର ବହୁ ବର୍ଷ ବିଜୟ ଟୀକା ଖୋର୍ଦ୍ଧା କପାଳରେ ମରା ହେଉଥିଲା । ଖୋର୍ଦ୍ଧା ଖେଳପଡ଼ିଆରେ ଖେଳ ହେଲେ ଶାନ୍ତିଶୃଙ୍ଖଳା ରକ୍ଷାକରିବା ପାଇଁ ହେଡ୍‌ମାଷ୍ଟରଙ୍କ ସହିତ ବରିଷ୍ଠ ଶିକ୍ଷକମାନେ ଦୃଷ୍ଟି ଦେଉଥିଲେ । ଆମ୍ଭେ ଶିକ୍ଷକଗଣ ଓ ପ୍ରଧାନ ଶିକ୍ଷକ ବହୁବାର ଖେଳାଳିମାନଙ୍କ ସହ ନୟାଗଡ଼, ଜଟଣୀ, ଓଳସିଂହ, ଯାଁଳା, ବେଗୁନିଆ ହାଇସ୍କୁଲ ଖେଳପଡ଼ିଆକୁ ଯାତ୍ରା କରିଛୁ । ଦିବ୍ୟସିଂହବାବୁ ବୃଦ୍ଧ ବୟସରେ ଆମ୍ଭମାନଙ୍କ ସାଙ୍ଗରେ ଯାଆନ୍ତି । ଉଦ୍ୟନାଥ ପଟ୍ଟନାୟକଙ୍କ ଉପରେ ଖେଳର ମାନ ନିର୍ଭର କରେ । ତଥାପି ଶିକ୍ଷକମାନେ ପୂର୍ଣ୍ଣ ସହଯୋଗ କରନ୍ତି ।

## ଶିକ୍ଷକମାନଙ୍କ ପାଠପଢ଼ା :

ଦିବ୍ୟସିଂହବାବୁ ଇଂରାଜୀ ଓ ଗଣିତରେ ପ୍ରବୀଣ । ବହୁ ସମୟରେ ସେ ଏକାଦଶ ପିଲାଙ୍କୁ ଗଣିତ ପଢ଼ାନ୍ତି ଏବଂ ବେଳେବେଳେ ଇଂରାଜୀ ନିଅନ୍ତି । ଜଗଦାନନ୍ଦ

ବାବୁ ଆଇ.ଏ. ପାସ୍ କରିଥିଲେ ମଧ୍ୟ ଉପର ଶ୍ରେଣୀର ଗଣିତ ପଢ଼ାନ୍ତି । ଗୋପୀବାବୁ, ଶୈଳେନ୍ଦ୍ରବାବୁ ଗଣିତ, ଇଂରାଜୀ ଓ ବିଜ୍ଞାନ ପଢ଼ାନ୍ତି । ମୁଁ ଇଂରାଜୀ ଓ ଇତିହାସରେ ପ୍ରବୀଣ ଥିଲି । ହାଇସ୍କୁଲ ତାରବାଡ଼ କଡ଼େ କଡ଼େ ଆମ୍ଭେମାନେ ପ୍ରାୟ ଚାଳିଶଟି ଶାଗୁଆନ ବୃକ୍ଷ ରୋପଣ କରିଥିଲୁ । ବିଦ୍ୟାଳୟର ପଶ୍ଚିମ ତରଫରେ ଅବସ୍ଥିତ ଆମ୍ବ ତୋଟାଟି ୧୯୬୨ ମସିହାରେ କ୍ରୟ ହୋଇଥିଲା । ବାଙ୍କନିଧିବାବୁ ପୂର୍ବ ତରଫରେ ଯେଉଁ ସୁରମ୍ୟ ଫଳ ଉଦ୍ୟାନଟି ସୃଷ୍ଟି କରିଥିଲେ ଦିବ୍ୟସିଂହବାବୁ ତା'ର ଫଳ ଭୋଗକଲେ । ହାଇସ୍କୁଲର କ୍ଷେତ୍ରଫଳ ପ୍ରାୟ ଚଉଦ ଏକର । ହାଇସ୍କୁଲ ଛାତ୍ରାବାସ, ଶିକ୍ଷକ କ୍ୱାଟର, ହେଡମାଷ୍ଟର କ୍ୱାଟର, ଦପ୍ତରି କ୍ୱାଟର ଓ ହାଇସ୍କୁଲ ବିଲ୍‌ଡିଂଗ ଏହି କ୍ଷେତ୍ରଫଳର ଅନ୍ତର୍ଭୁକ୍ତ । କେହି କେହି ଶିକ୍ଷକ ହେଡମାଷ୍ଟର କ'ଣ ନେଇଗଲେ, କ'ଣ ଖାଇଗଲେ ବୋଲି ସମାଲୋଚନା କରନ୍ତି । ମୋର ସେଥିରେ କିଛି ପ୍ରବେଶ ନଥିଲା । ମୁଁ ଭାବେ ସେଗୁଡ଼ିକ ସବୁ ନଗଣ୍ୟ କଥା । ମୁଁ ମୋ କର୍ତ୍ତବ୍ୟପଥରେ ଅଗ୍ରସର ହେଉଥିଲି ।

**ଛାତ୍ରାବାସ ସୀମା ସୁରକ୍ଷା :**

ଦିବ୍ୟସିଂହବାବୁଙ୍କ ସମୟଟାଯାକ ମୁଁ ଛାତ୍ରାବାସରେ ରହିଗଲି । ମୁଁ ଛାତ୍ରାବାସ ଛାଡ଼ି ଯିବା ପାଇଁ ଯେତେ ବାହେଇ ଛାଟି ହେଲେ ମଧ୍ୟ ଯାଇପାରୁନଥିଲି । ଛାତ୍ରାବାସର ଉତ୍ତର ବାଡ଼କୁ ଲାଗି ନାରାୟଣ ପଟ୍ଟନାୟକଙ୍କ ବାସଗୃହ । ପ୍ରତିବର୍ଷ ତାଙ୍କ ଚାକର ବାଢ଼ ବୁଢ଼ିଲା ବେଳକୁ ମାଡ଼ି ମାଡ଼ି ଆସେ । ଏପରି ପ୍ରବୃତ୍ତି ସବୁଠାରେ ଦେଖାଯାଏ । ତେଣୁ ଥରେ ହଷ୍ଟେଲ ପିଲାଙ୍କୁ ନେଇ ସେ ବାଡ଼ ଉପାଡ଼ି ଦେଲି । ଛାତ୍ରାବାସ ମୋ ନିଜର ନୁହେଁ । ତାକୁ ଜଗିବ କିଏ ? ନାରଣବାବୁଙ୍କ ପୁତ୍ର ବିଭୂତିବାବୁ ମହାପ୍ରତାପୀ । ସେ ଯୁଦ୍ଧକରିବାକୁ ତିଆର । ସେ ସଙ୍ଗେ ସଙ୍ଗେ ଏସ୍.ଡି.ଓ.ଙ୍କ ପାଖେ ଗୁହାରି କରିଦେଲେ । ଦିବ୍ୟସିଂହବାବୁ ଆସିଲେ, ଡେପୁଟି ଶ୍ରୀ ଗଣେଶ୍ୱର ପ୍ରହରାଜ ଆସିଲେ । ତିନି ମାସ ପରେ ନିଷ୍ପତ୍ତି ହେଲା । ଦିବ୍ୟସିଂହବାବୁ କହିଲେ–ଯାହାତ ଯାଇଛି ଯାଇଛି, ଯେଉଁଠି ସୀମା ଅଛି ସେଇଠି ସ୍ଥାୟୀ ପଥର ବାଡ଼ ଛାତ୍ରାବାସ ତରଫରୁ କରାଯାଉ । ମୋ ଦ୍ୱାରା ପଥର ବାଡ଼ ଦିଆଗଲା । ଉତ୍ତର ତରଫ ସୁରକ୍ଷା ହେଲା । ଛାତ୍ରାବାସ ରାସ୍ତା ପକ୍କା କରାଗଲା । ନାରାୟଣବାବୁଙ୍କ ପଶ୍ଚିମ ତରଫକୁ ଲାଗି ବିଦ୍ୟାଳୟ ଜାଗାରେ ଦୁଇଟି ବିରାଟ ପ୍ରସ୍ତର ସ୍ତମ୍ଭ ନିର୍ମାଣ କରାଗଲା । ମାତ୍ର ଏତେ କଷ୍ଟରେ ସୀମା ସୁରକ୍ଷା ହୋଇଥିଲେ ମଧ୍ୟ ୧୯୮୨ ମସିହାରେ ଭୟାଳୁ ହେଡ଼ମାଷ୍ଟର ପଟ୍ଟନାୟକ ବାବୁଙ୍କ ଅମଳରେ ସ୍ଥାନୀୟ କେତେକ ପିଲା ସେ ସ୍ଥାନ ଅଧିକାର କରି ସେଠାରେ ଏକ ଅବସର ବିନୋଦନ କେନ୍ଦ୍ର

ପ୍ରତିଷ୍ଠା କଲେ । ସ୍ଥାନରକ୍ଷା ପାଇଁ ତତ୍କାଳୀନ ପ୍ରଧାନ ଶିକ୍ଷକ ଓ ଶିକ୍ଷକ ମୁରଲୀବାବୁ ଯେଉଁ କଷ୍ଟ ସହ୍ୟ କରିଥିଲେ ତାହା ବୃଥା ହେଲା ।

''ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।''

ମୁଁ ଛାତ୍ରାବାସର ଜାଗ୍ରତ ପ୍ରହରୀ ଥିଲି । ମୋ ସମୟରେ ସେଠାରୁ କୁଟା ଖଣ୍ଡିଏ ଉଠାଇ ନେବାକୁ କେହି ସାହସ କରୁନଥିଲେ ।

## ପରିବେଶ ସୁରକ୍ଷା :

ବିଦ୍ୟାଳୟ ପଡ଼ିଆରେ ଏଣେ ତେଣେ ରଦି କାଗଜଖଣ୍ଡମାନ ପଡ଼ିଥିଲା । ଉକ୍ତ ଛିଣ୍ଡାକାଗଜ, ଅଳିଆ ପ୍ରଭୃତି ଉଚିତ ବିନିଯୋଗ କରିବା ପାଇଁ ଦିବ୍ୟସିଂହବାବୁଙ୍କ ନିର୍ଦ୍ଦେଶରେ ପଡ଼ିଲା ଏକ ବଡ଼ ପାଣି କୁଣ୍ଡରେ ଓ ପଚିଯିବା ପରେ ହାତତିଆରି କାଗଜ ପ୍ରସ୍ତୁତ ହେଉଥିଲା । ହତା ନିର୍ମଳ ହେଲା, ଏଣେ କାଗଜ ପ୍ରସ୍ତୁତ କରାଗଲା । ପୁନଃ ହତା ମଧ୍ୟରେ ଗୁଗୁଚିଆ ଗଛ ଓ ଅନାବନା ଘାସ ଉପାଡ଼ି ହତା ସଫା କରାଯାଉଥିଲା । ହେଡ଼ମାଷ୍ଟର ଓ ଶିକ୍ଷକମାନେ ପିଲାମାନଙ୍କୁ ଧରି ହତା ସଫା କରୁଥିଲେ । ହତା ସଫା ପ୍ରତିବର୍ଷ କରାଯାଉଥାଏ । ଏହାଦ୍ୱାରା ସାରାବର୍ଷ ହାଇସ୍କୁଲ ସମ୍ମୁଖ ପଡ଼ିଆଟି ପରିଷ୍କାର ପରିଚ୍ଛନ୍ନ ରହୁଥିଲା । ବିଦେଶୀ ପର୍ଯ୍ୟବେକ୍ଷକ ପରିବେଶ ସନ୍ଦର୍ଶନ କରି ସନ୍ତୋଷ ପ୍ରକାଶ କରୁଥିଲେ ।

## ନାନା ପରୀକ୍ଷା ନିରୀକ୍ଷା :

ଦିବ୍ୟସିଂହବାବୁଙ୍କ ସମୟରେ ବିଦ୍ୟାଳୟରେ ବହୁ ବିଷୟରେ ନୂଆ ନୂଆ ବିଷୟ ପରୀକ୍ଷା ନିରୀକ୍ଷା କରାଯାଉଥିଲା । ଇଂଲଣ୍ଡ ଢ଼ାଞ୍ଚାରେ ସେ ଗୋଟିଏ ମୁକ୍ତ ପାଠାଗାର ନମୁନା ହେଡମାଷ୍ଟରଙ୍କ ଅଫିସ ରୁମ୍‌ରେ ଖୋଲିଲେ । କେତେଗଡ଼ିଏ ପୁସ୍ତକ ସେ ଟେବୁଲ ଉପରେ ରଖିଲେ ଏବଂ ନିୟମ କଲେ ଯେ ପିଲାମାନେ ମନକୁମନ ପୁସ୍ତକ ନେବେ ଏବଂ ମନକୁମନ ପୁସ୍ତକ ଫେରାଇବେ । କୌଣସି ଶିକ୍ଷକ ଏ ଦାୟିତ୍ୱ ନେବେ ନାହିଁ । ଚାଳିଶ କି ପଚାଶ ଖଣ୍ଡ ପୁସ୍ତକ ରଖାଗଲା । ପିଲାମାନେ ବହି ନେଲେ, ବହି ଫେରାଇଲେ । ସେମାନଙ୍କ କାର୍ଯ୍ୟକୁ ଅନୁଧ୍ୟାନ କରାଯାଉଥାଏ । ସେମାନଙ୍କ ସାଧୁତା ପ୍ରତି ନଜର ଦିଆଯାଉଥାଏ । ପ୍ରାୟ ପନ୍ଦର କି କୋଡ଼ିଏ ଦିନ ଭଲରେ ଚାଲିଲା । କିନ୍ତୁ ଆସ୍ତେ ଆସ୍ତେ ଦେଖାଗଲା ଟେବୁଲ ଉପରୁ ବହି କମି କମି ଯାଉଛି । ଯେ ନେଉଛି ସେ ଆଉ ଫେରାଉ ନାହିଁ । ଏହିପରି ଦିନେ ଦେଖାଗଲା ଟେବୁଲ୍ ଉପରେ ଆଉ ପୁସ୍ତକ

ନାହିଁ । ଏହା କେବଳ କରାଯାଇଥିଲା ପିଲାମାନଙ୍କୁ ସଂଶୋଧନ କରିବା ପାଇଁ । ମାତ୍ର ଫଳ ଶୂନ ହେଲା । ସେମାନେ କେତେଦୂର ଏହାକୁ କାର୍ଯ୍ୟକାରୀ କରିଛନ୍ତି ? ମାତ୍ର ଯାହା ଦେଖାଗଲା ପିଲାମାନେ କିଛି ଶିକ୍ଷା କରିନାହାନ୍ତି । ଏହା ଏକ ପରୀକ୍ଷା ମାତ୍ର ଥିଲା ।

## ବିଦ୍ୟାଳୟର ନୂତନ ଗୃହ ଓ ହଲ୍ ନିର୍ମାଣ :

ଦିବ୍ୟସିଂହବାବୁ ଉଦ୍ୟାନପ୍ରେମୀ ଥିଲେ । ପ୍ରତ୍ୟହ ନିଜ ବାଡ଼ିରେ ପନିପରିବା ଲଗାଇଥିବା କିଆରିରେ କାର୍ଯ୍ୟକରନ୍ତି । ଅଫିସମାନଙ୍କରେ ଗଳିପଶି ବିଦ୍ୟାଳୟ ହିତାର୍ଥେ କେତେକ କାର୍ଯ୍ୟ ସଂପାଦନ କରିଥିଲେ । କେନ୍ଦ୍ର ସରକାରଙ୍କ ଦାନରେ ଗୋଟିଏ ବଡ଼ ହଲ, ଦୁଇପାର୍ଶ୍ୱରେ ଦୁଇଟି ଲେଖାଏଁ ଶ୍ରେଣୀ ଗୃହ, ଉପରେ ଗୋଟିଏ ବିଜ୍ଞାନ ଗୃହ । ନାଟକ ପରିବେଷଣ ନିମନ୍ତେ ଏକ ପେଣ୍ଡାଲ ସହ ବଉଳକୋଳି ବୃକ୍ଷର ଚତୁଃପାର୍ଶ୍ୱରେ ଏକ ଚାନ୍ଦିନୀ ନିର୍ମାଣ କରିପାରିଥିଲେ ଏବଂ ଭାରତ ରିଲିଫ ମ୍ୟାପ୍ ଚତୁଃପାର୍ଶ୍ୱରେ ଏକ ପ୍ରସ୍ତର ପାଚେରି ନିର୍ମାଣ କରିଥିଲେ । ବିଦ୍ୟାଳୟ ସରକାରୀ ନଥିଲା । ୧୯୫୮ ମସିହାରେ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ଗଲେ ମଧ୍ୟ ସରକାରୀ ହେଲା ନାହିଁ । ଆମ୍ଭେମାନେ କେବଳ ମାସିକ ଦରମା ସୁରୁଖୁରୁରେ ପାଉଥିଲୁ । ଅନ୍ୟ କିଛି ସୁବିଧା ନଥିଲା । ଶିକ୍ଷକମାନେ ଏକପରିବାର ସଦୃଶ ଚଳୁଥିଲେ । ବିଦ୍ୟାଳୟକୁ ନିଜର ବୋଲି ମନେକରି ବ୍ୟକ୍ତିଗତ ସ୍ୱାର୍ଥପ୍ରତି ଏତେ ନଜର ନଦେଇ ସ୍ୱଳ୍ପ ବେତନ ପାଇ କାର୍ଯ୍ୟକରି ଚାଲିଥିଲେ । ''ମୁଁ ପିଲାମାନଙ୍କୁ ଉପଯୁକ୍ତ ଶିକ୍ଷାଦେବି, ସେମାନେ ଭଲହେବେ,''ଏହା ପ୍ରତ୍ୟେକଙ୍କର ମତୋ ଥିଲା ।

## ମାତା ମାଆର ଅଭିଯୋଗ :

୧୯୬୩ ମସିହା କଥା । ମୁଁ ଛାତ୍ରାବାସର ଅଫିସଗୃହରେ ସକାଳଓଳି ବସି କ'ଣ ଲେଖୁଥାଏ । ବିଦ୍ୟାଳୟ ସମୟ ନିକଟେଇ ଆସୁଥାଏ, ମୁଁ ବି ତରତର ହେଉଥାଏ । ଏହି ସମୟରେ ପଲଟଣ ପୋଖରୀ କୂଳେ ଅବସ୍ଥିତ ହେଙ୍ଗୁଳାଈ ମନ୍ଦିରର ମାତା ମା' ମୋ ନିକଟରେ ଉଭାହୋଇ ଅନ୍ତେବାସୀମାନଙ୍କର ବିରୁଦ୍ଧରେ କେତେକ ଗୁରୁତର ଅଭିଯୋଗ ବାଢ଼ିଲା । ତାର ଅଭିଯୋଗ– ପଲଟଣ ପୋଖରୀ ଗାଧୁଆ ତୁଠରେ ବଡ଼ିଲା ଝିଅ, ବୋହୂ ଭୁଆସୁଣୀ ପ୍ରଭୃତି ମାଇପେ ଗାଧୋଉଥିଲା ବେଳେ ତମ ପିଲାଏ ଭୁଆସୁଣୀଙ୍କ ଉପରକୁ ପାଣି ଫିଙ୍ଗି କଳିଗୋଳ କରି ଲଙ୍କାକାଣ୍ଡ ଘଟାଉଛନ୍ତି । ''ହଇହେ ମୁରଲୀବାବୁ, ଏତେ ପିଲା ସାଇତିଛ କାହିଁକି ?'' ସେ ଖାଲି ଅନର୍ଗଳ ଗାଇ ଯାଉଥାଏ ।

''ଆହେ ଏତେ ପିଲା ଜନ୍ମ କରିଛ କାହିଁକି ?'' ହଁ, ଏଗୁଡ଼ାକ ମୋ ପିଲା ନୁହନ୍ତି ତ ଆଉ କ'ଣ ? ''ହଉ ହଉ ତମ କଥା ବୁଝିଦେବି, ତମେ ପାଟି ବନ୍ଦକର ।'' ମୁଁ ଖୋରଧାରେ ପଦାର୍ପଣ କରିବା ସମୟଠାରୁ ମାତା ମା' ହେଙ୍ଗୁଳାଇ ମନ୍ଦିରର ମାଲିକିଆଣୀ । କେତେ ବାବାଜୀ ଆସୁଥାନ୍ତି, ଯାଉଥାନ୍ତି ମାତ୍ର ମାତା ମା' ଇନ୍ଦ୍ରାଣୀ ସଦୃଶ ସେଠାରେ ଅବସ୍ଥାନ କରୁଛି । ସେ ଖଣ୍ଡମଣ୍ଡଳରେ ମାତା ମାଆର ଛାହିରି ବେଶି । ସେ ଯେଉଁ କେସ୍ ହାତକୁ ନେବ ନିଶ୍ଚୟ କୃତକାର୍ଯ୍ୟ ହେବ । ମାତା ମା' ପାଟିରେ ବାଡ଼ବତା ନଥିଲା । ସେ ଗୁଡ଼ାଏ କହିଗଲା । କିନ୍ତୁ ତା କଥାରେ କିଛିଟା ସତ୍ୟତା ଥିଲା । ଝୋଟକୁ ନିଆଁ ବାଇ । ପିଲାମାନଙ୍କର ପ୍ରାରମ୍ଭ ଯୌବନ । ଏପରି କରିଥିବା ଅସଂଭବ ନୁହେଁ । ତେବେ ସେମାନଙ୍କ ଉଦ୍ଦାମ ପ୍ରବୃତ୍ତିକୁ ପୋଷା ମନେଇବାକୁ ପଡ଼ିବ । ମାତା ମା'କୁ ବିଦାୟ ଦେଲାବେଳେ କହିଲି– ''ମାତା ମା' ତୁମେ ବ୍ୟସ୍ତ ହୁଅ ନାହିଁ । ସେମାନଙ୍କୁ ସାବାଡ଼ କରିଦେବି ।'' ସେଦିନ ସନ୍ଧ୍ୟା ପ୍ରାର୍ଥନା ସଭା ଶେଷହେଲା । ତପ୍ତରେ ପିଲାମାନଙ୍କର ଉପସ୍ଥାନ ନିଆଯାଇ ଛାତ୍ରାବାସ ଶୃଙ୍ଖଳା ବିଷୟ ଆଲୋଚିତ ହେଲା । ସେତିକିବେଳେ ମାତା ମା'ର ଅଭିଯୋଗ ଉପସ୍ଥାପନା କଲି । ମୋ ଧମକରେ ଅପରାଧୀ ପିଲାମାନେ ବରଡ଼ା ପତ୍ର ପରି ଥରିଲେ, ମାନିଗଲେ । ଆଉ ଦଣ୍ଡ ଦେବି କଅଣ ? ବହୁ ପିଲା ଉତ୍ତମ ସ୍ୱଭାବର ଥିଲେ । ଯେଉଁମାନେ ଏପରି ଗର୍ହିତ କାର୍ଯ୍ୟକରିଛନ୍ତି ସେମାନଙ୍କ ମନରେ ସଦ୍‌ବୁଦ୍ଧି ଜାଗ୍ରତ କରେଇବାକୁ ପଡ଼ିବ । ବୟସ ଷୋହଳ, ସତର । ଏପରି ଆଚରଣ ଦେଖାଇବା ସ୍ୱାଭାବିକ । ଦଣ୍ଡ ଦେଲେ କିଛି ଫଳ ମିଳିବ ନାହିଁ । ସବୁକଥା ଆମୂଳଚୂଳ ପଡ଼ିଗଲା । ପିଲାମାନେ ସେମାନଙ୍କର ସ୍ୱାଧୀନ ମତ ପ୍ରକାଶ କଲେ । ସେମାନଙ୍କୁ କେବଳ ତାଗିଦ କଲି ଏପରି ଅଭିଯୋଗ ଆଉ ଯେପରି ମୋ କାନକୁ ନ ଆସେ । ଛାତ୍ରାବାସର ପ୍ରିଫେକ୍ଟକୁ ମଧ୍ୟ ସତର୍କ କରାଇ ଦେଲି । ଏ ସବୁ କଥା ସିନା ଶେଷହେଲା । ତେବେ ଏହାର ଗୋଟାଏ ସ୍ଥାୟୀ ସମାଧାନ କରିବାକୁ ପଡ଼ିବ ବୋଲି ସ୍ଥିର କରିନେଲି ।

## ନୂତନ ସ୍ନାନ ଘାଟ ନିର୍ମାଣ

ଗୋଟାଏ ବାହାନା କରି ପ୍ରତ୍ୟେକ ପିଲାଙ୍କଠାରୁ ମାସକୁ ଚାରିଅଣା ପଇସା ଆଦାୟ କଲି । ସେତିକିରେ କି କାମ ହୋଇ ପାରିବ ? ବର୍ଷକ ଭିତରେ ପ୍ରଧାନ ଶିକ୍ଷକଙ୍କ ଅନୁମତି ନେଇ ଛାତ୍ରାବାସ ପାଣ୍ଠିରୁ କିଛି ଅର୍ଥ ଆଣିଲି । ତିନିଶହ ପଥର ଅଣେଇ ବାବୁ ନକୁଳ ସାହୁ ମିସ୍ତ୍ରୀଙ୍କ ଦ୍ୱାରା ମୂଳ ତୁଠରୁ କୋଡ଼ିଏ ଫୁଟ ଦୂରରେ ପଶ୍ଚିମକୁ ଅନ୍ୟଏକ ସୁରମ୍ୟ ଗାଧୁଆ ତୁଠ ନିର୍ମାଣ କରାଇଲି । ଅନ୍ତେବାସୀଙ୍କର ଏକ ବଡ଼ ଅଭାବ ଦୂରୀଭୂତ

ହେଲା । ଅନ୍ତେବାସୀମାନେ ଆନନ୍ଦରେ ନାଚି ଉଠିଲେ । ବର୍ତ୍ତମାନ ମୂଳ ଗାଧୁଆ ତୁଠଟି ଜୀର୍ଣ୍ଣଶୀର୍ଣ୍ଣ ହୋଇଗଲାଣି । ଏହି ଗାଧୁଆ ତୁଠ ସହରବାସୀ ବ୍ୟବହାର କରୁଅଛନ୍ତି । ମୁଁ ଛାତ୍ରାବାସରୁ ଯିବା ପରେ ପରେ ତିରିଶ ବର୍ଷ ହେଲାଣି । ତାପର ବର୍ଷଠାରୁ ଛାତ୍ର ସଂଖ୍ୟା କମି କମି ଆସିଲା । ଏବେ ଛାତ୍ରାବାସ ନାହିଁ କି ଶତାଧିକ ପିଲା ସେଠାରେ ଆଉ କୋଳାହଳ ସୃଷ୍ଟି କରୁନାହାନ୍ତି । ସାହି ଲୋକେ ଛାତ୍ରାବାସ ସ୍ନାନ ତୁଠର ଇତିହାସ ଭୁଲିଗଲେଣି । ମୁଁ ଏବେ ବଞ୍ଚିଛି । ଛାତ୍ରାବାସର ପୂର୍ବ ଗୌରବ ବିଭବ କଥା ଭାବିଲେ ମୋ ମନରେ କୋହ ଜାତ ହେଉଛି । ପୁନଃ ଆମ୍ରକୁଞ୍ଜମଣ୍ଡିତ ଉଦ୍ୟାନ ପୂର୍ବ ବିଭବର ମୂକସାକ୍ଷୀ ପଲଟଣ ପଡ଼ିଆ ଆଉ ନାହିଁ । ସେଠାରେ ଦଣ୍ଡାୟମାନ ହୋଇଛି ଦ୍ୱିତଳ, ତ୍ରିତଳ ପ୍ରାସାଦ । ମଣିଷ ଜୀବନରେ ବାର୍ଦ୍ଧକ୍ୟ ଆସିଲା ପରି ଏହି ପ୍ରଖ୍ୟାତ, ଗୌରବମଣ୍ଡିତ ଛାତ୍ରାବାସ ସୌଧଟି ଆଜି ହାସ୍ୟାସ୍ପଦ ଭାବେ ଦାନ୍ତ ନିକୁଟି ପଡ଼ିରହିଛି । ଏହି ଦଶବର୍ଷ ମଧ୍ୟରେ ତା'ର ଯେ କେତେ ପରିବର୍ତ୍ତନ ହେଲାଣି ତା'ର ଇୟତ୍ତା ନାହିଁ । ଏହା ତାର ଜନ୍ମଜାତକରେ ଥିଲା ।

**ଜନ୍ମାଷ୍ଟମୀ ଉତ୍ସବ ପାଳନ :**

ପ୍ରତିବର୍ଷ ଛାତ୍ରାବାସରେ କୃଷ୍ଣ ଜନ୍ମାଷ୍ଟମୀ ପର୍ବ ସମାରୋହରେ ପାଳିତ ହୁଏ । କୌଣସି କୌଣସି ଅନ୍ତେବାସୀ ସେଦିନ ଉପବାସ ବ୍ରତ ପାଳନ କରନ୍ତି । ପୂର୍ବତନ ସଂସ୍କୃତ ପଣ୍ଡିତ ଭଗବାନ ହୋତା ପ୍ରତିବର୍ଷ ପୂଜକ ରୂପେ ଯୋଗ ଦେଉଥିଲେ । ପାରିଶ୍ରମିକ ଅର୍ଥରୂପରେ ଗ୍ରହଣ କରନ୍ତି ଏବଂ ତାଙ୍କ ମନ ତୁଷ୍ଟ କରିବା ପାଇଁ ସମର୍ପିତ ନୈବେଦ୍ୟରୁ ଅର୍ଦ୍ଧେକ ତାଙ୍କୁ ପ୍ରଦାନ କରାଯାଏ । ଏତଦ୍ ବ୍ୟତୀତ ଗୋଟିଏ ମର୍ଯ୍ୟାଦାପୂର୍ଣ୍ଣ ଧୋତି ସେ ଗ୍ରହଣ କରନ୍ତି ।  ଛାତ୍ରାବାସ ପାଣ୍ଠିରୁ ଏ ସମସ୍ତ ବ୍ୟୟ ବହନ କରିବାର ବିଧି ପୂର୍ବରୁ ଅଛି ।

ଥରେ ଜନ୍ମାଷ୍ଟମୀ ପର୍ବ ପୂର୍ବରୁ ଦୁଇ ତିନିଜଣ ପିଲାଙ୍କୁ ଧୋତି କିଣିବା ପାଇଁ ବଜାରକୁ ପ୍ରେରଣ କଲି । ବାବୁ ଉଲ୍ଲାସ ଚନ୍ଦ୍ର ମହାନ୍ତି ମାରୁଆଡ଼ି, ଭୋଜପୁରୀ ବସ୍ତ୍ର ବ୍ୟବସାୟୀଙ୍କ ମଧରେ ଜଣେ ଓଡ଼ିଆ ବ୍ୟବସାୟୀ । କିନ୍ତୁ ମାରୁଆଡ଼ି, ଭୋଜପୁରୀ ବସ୍ତ୍ର ବ୍ୟବସାୟୀଙ୍କ ଚତୁରତାରେ ଓଡ଼ିଆ ବ୍ୟବସାୟୀ ପାରି ଉଠନ୍ତି ନାହିଁ । ରାଜ୍ୟର ପ୍ରଗତି ପାଇଁ ମୁଁ ଓଡ଼ିଆ ବ୍ୟବସାୟୀଙ୍କୁ ଉତ୍ସାହିତ କରେ ଏବଂ ତାଙ୍କ ଦୋକାନରୁ ଧୋତି ଖଣ୍ଡିଏ କ୍ରୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲି । ସେଦିନ ବିକ୍ରେତା ଖଣ୍ଡିଏ ଧୋତି ପରିବର୍ତ୍ତେ ହଳେ ଧୋତି ଭୁଲରେ ଦେଇଦେଇଥିଲେ । ମୋ ପାଖକୁ ଧୋତି ଯେତେବେଳେ

ଅଣାଗଲା ତାକୁ ଫିଟାଇ ଦେଖିଲା ବେଳକୁ ତାହା ଖଣ୍ଡେ ପରିବର୍ତ୍ତେ ଦୁଇଖଣ୍ଡ । ପିଲା ଗୁଡ଼ାଏ ଜମା ହେଲେ । ଖଣ୍ଡିଏ ଧୋତି ଫେରାଇ ଦେବା କଥା । ମାତ୍ର ପିଲାମାନେ ଭିନ୍ନଭିନ୍ନ କଥା କହିଲେ । କେତେଜଣ କହିଲେ–ଅନୁଗୋଳର ତ୍ରିପାଠୀ ନାମକ ଜଣେ ଦରିଦ୍ର ବ୍ରାହ୍ମଣ ଛାତ୍ର ଯେ କି ଛାତ୍ରାବାସରେ ମାଗଣା ଖାଉଛନ୍ତି ତାଙ୍କୁ ଦିଅନ୍ତୁ । କେତେକ ପିଲା ମୋତେ ସନ୍ତୁଷ୍ଟ କରିବା ପାଇଁ ଧୋତି ଖଣ୍ଡିକ ମୁଁ ନେବାକୁ କହିଲେ । କେତେକ କହିଲେ–ସାର୍, ପୂଜକଙ୍କୁ ଦେଇ ଦିଅନ୍ତୁ ସେ ସନ୍ତୁଷ୍ଟ ହେଲେ ଅଧିକ ପିଲା ଏ ବର୍ଷ ମାଟ୍ରିକ ପାସ୍ କରିବେ । କେହି କେହି କହିଲେ ଚାକର ଭ୍ରମର ବଡ଼ ହଇରାଣରେ ଚଳୁଛି, ତାକୁ ଦେଇ ଦିଅନ୍ତୁ । ଏହିପରି ଯାହା ମନକୁ ଯାହା ଆସିଲା ତାହା କହିଲେ ।

ମୋ ଉପରେ ଶେଷ ନିଷ୍ପତ୍ତି ପଡ଼ିଲା । ମୁଁ ଦେଖିଲି ଖଣ୍ଡିଏ ଧୋତି ସ୍ଥାନରେ ଦୁଇଖଣ୍ଡି ଆସିଛି, ଗୋଟିଏ ଭୁଲ୍ ପୁଣି ତାକୁ ରଖିଦେବା ଆଉ ଗୋଟିଏ ଭୁଲ୍ ହେବ । ତେଣୁ ଧୋତି ଖଣ୍ଡିକ ଫେରାଇଦେଲେ ପିଲାମାନଙ୍କ ଉପରେ ଉତ୍ତମ ପ୍ରଭାବ ପଡ଼ିବ । କ୍ରେତାମାନଙ୍କ ସହିତ ଆଉ ଦୁଇଜଣଙ୍କୁ ପଠାଇଲି । ଧୋତି ଦୁଇଖଣ୍ଡ ଦେଖାଇବ । ଖଣ୍ଡିଏ ନେଇ ଆସିବ । ତା'ଠାରୁ ରସିଦ୍ ଖଣ୍ଡିଏ ଆଣିବାକୁ କହିଥିଲି । ତାହାହିଁ କରାଗଲା ।

କେତେଟା ଟଙ୍କା ପାଇଁ ଛାତ୍ରାବାସର ଏକଶତ ପିଲାଙ୍କର ଚରିତ୍ର ନଷ୍ଟ କରିଦେଇଥାନ୍ତି । ପରେ ଅନୁଭବ କଲି ଏହି ଘଟଣାର ପ୍ରଭାବ ପିଲାମାନଙ୍କ ଉପରେ ଗଭୀର ଭାବେ ପଡ଼ିଛି । ପିଲାମାନଙ୍କୁ କେବଳ ଉପଦେଶ ଦେଲେ ଚଳିବ ନାହିଁ, ତାକୁ କାର୍ଯ୍ୟରେ କରି ଦେଖାଇବାକୁ ପଡ଼ିବ । "Example is better than precept."

**ନେହୁରୁଙ୍କ ଦେହାନ୍ତ :**

୧୯୬୪ ମସିହା ମେ ମାସ ୨୭ ତାରିଖ ଦିନ ଦଶଟା ବେଳେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଯୁଗଜ୍ୟୋତି ଜବାହରଲାଲାଙ୍କ ଦେହାନ୍ତ ହୋଇଗଲା । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସମୟରେ ତାଙ୍କର ହୃଦରୋଗ ଆରମ୍ଭ ହୋଇଯାଇଥିଲା । ଏବେ ତାଙ୍କର ଶେଷ ହୃଦଘାତ ହେଲା । ତାଙ୍କ ମୃତ୍ୟୁରେ ସମଗ୍ର ଭାରତରେ ଦୁଃଖର ଛାୟା ଖେଳିଗଲା । ସମଗ୍ର ପୃଥିବୀରୁ ଶୋକବାର୍ତ୍ତାମାନ ଆସି ପହଞ୍ଚିଲା । ଫ୍ରାନ୍ସର ଦୁଇଜଣ ଜର୍ଣ୍ଣାଲିଷ୍ଟ ଏକ ବିରାଟ ପୁସ୍ତକ"After Nehru who ?" ରଚନା କରିଥିଲେ । ସେଥିରେ ସେ କେତେଜଣ ନେତାଙ୍କ ସମ୍ଭାବ୍ୟ ନାମ ଦେଇଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଭାରତର ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ ।

ଜବାହରଲାଲଙ୍କ ମୃତ୍ୟୁପରେ ଲାଲବାହାଦୁର ଶାସ୍ତ୍ରୀ ସେହିଦିନ ଦେଶର (ପ୍ରଧାନମନ୍ତ୍ରୀ ଆସନ) ଲଗାମ ଧାରଣ କଲେ । ଜବାହରଲାଲ ପୂର୍ବରୁ ଲିପିବଦ୍ଧ କରିଥିବା ତାଙ୍କର ଇଚ୍ଛାମତେ ତାଙ୍କର ଚିତାଭସ୍ମ ଭାରତର ବିଲ, ବଣ, ନଦୀ, ପାହାଡ଼, ପ୍ରାନ୍ତର ସମୁଦ୍ରରେ ବିଞ୍ଚି ଦିଆଗଲା । ଗଙ୍ଗା, ଯମୁନା, ସରସ୍ୱତୀର ସଙ୍ଗମ ସ୍ଥଳରେ ଢାଳି ଦିଆଗଲା । ଜୀବନରେ ସେ ଯେପରି ଭାରତର ପ୍ରିୟବ୍ୟକ୍ତି ଥିଲେ ମୃତ୍ୟୁପରେ ଯେପରି ଭାରତର ପାଣି, ପବନ, ମାଟିରେ ମିଶିଯିବେ ଏହା ତାଙ୍କର ଅନ୍ତିମ ଇଚ୍ଛା ଥିଲା । ଏଥିରୁ ତାଙ୍କର ଦେଶପ୍ରେମର ଗଭୀରତା ଜଣାପଡ଼େ । ଧନ୍ୟ ଜବାହରଲାଲ, ଧନ୍ୟ ତୁମର ଦେଶବତ୍ସଳତା ।

ଜବାହରଲାଲଙ୍କ ମୃତ୍ୟୁ ଦିବସରେ ମୁଁ ରଣପୁର ଗୋପାଳପୁରରେ ଥିଲି । ମୃତ୍ୟୁ ସମ୍ବାଦ ବିଜୁଳି ବେଗରେ ଭାରତର ଅନ୍ଦିକନ୍ଦିରେ ଖେଦିଗଲା । ସେତିକିବେଳେ ଦିନ ବାରଟା ସମୟରେ ଆମ୍ଭେ କେତେଜଣ ସେ ମହାମାନବଙ୍କ ସ୍ମୃତିଚାରଣ କରିଥିଲୁ । ସେଠାରୁ ଫେରି ଖୋର୍ଦ୍ଧା ହାଇସ୍କୁଲ ପରିସରରେ ତାଙ୍କ ସ୍ମୃତିସଭାରେ ପୁନଃ ଯୋଗଦେଲି । ଜବାହରଲାଲଙ୍କ ଦେଶପ୍ରେମର ପଟାନ୍ତର ନଥିଲା । ଭାରତୀୟ ଜନତାଙ୍କର ସେ ପ୍ରିୟତମ ବ୍ୟକ୍ତି ଥିଲେ । ଲୋକେ ମନେକଲେ ତାଙ୍କ ନିଜ ଗୃହ ଭିତରୁ କିଏ ଜଣେ ମରିଗଲା ।

ଅବଶ୍ୟ ଓଡ଼ିଶାର ଉତ୍କଳମଣି ଗୋପବନ୍ଧୁ ଦାସ ଜଣେ ସେହିପରି ଦେଶ-ହିତୈଷୀ ଥିଲେ । ସେ ତାଙ୍କର କାରା କବିତା ପୁସ୍ତକରେ ଉଲ୍ଲେଖ କରିଛନ୍ତି–

ମିଶୁ ମୋର ଦେହ ଏ ଦେଶ ମାଟିରେ,

ଦେଶବାସୀ ଚାଲିଯାଆନ୍ତୁ ପିଠିରେ,

ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼,

ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ॥

ଏହି ଉଦ୍ଧୃତାଂଶରୁ ପ୍ରତୀୟମାନ ହୁଏ ଗୋପବନ୍ଧୁ ଜବାହରଲାଲଙ୍କ କାଟର ଦେଶପ୍ରେମୀ ଥିଲେ, ଏଥିରେ ସନ୍ଦେହ ନାହିଁ । ଯେହେତୁ ସେ ଉତ୍କଳୀୟ ସେହେତୁ ସେ ଅବହେଳିତ ଥିଲେ ।

ପୁନଶ୍ଚ ଏହି ଉପଲକ୍ଷେ ଆମ ଓଡ଼ିଶାର ଜଣେ ବିଶିଷ୍ଟ ଅନ୍ଧକବି ଭୀମ ଭୋଇଙ୍କ ଉକ୍ତି ଆମ ସ୍ମୃତିପଟରେ ଜାଗରୂକ ହୁଏ । ସେ ଲେଖିଥିଲେ–

"ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ

ଦେଖୁ ଦେଖୁ କେବା ସହୁ ।

ମୋ ଜୀବନ ପଛେ ନର୍କେ ପଡ଼ିଥାଉ

ଜଗତ ଉଦ୍ଧାର ହେଉ ।।"

ତେଣୁ ମହାନ୍ ଦେଶଭକ୍ତ ଜବାହରଲାଲ ଯେପରି ମାନବବାଦୀ ଥିଲେ, ଜନସେବୀ ଦରଦୀ ବନ୍ଧୁ ଗୋପବନ୍ଧୁ ଓ ସନ୍ଥକବି ଭୀମଭୋଇ ମଧ୍ୟ ସେହିପରି ମାନବବାଦୀ ଥିଲେ ।

ଜବାହରଲାଲଙ୍କ ବିୟୋଗପରେ ଭାରତର ଜନସାଧାରଣ ଅବଧାରଣ କରି ପାରିନଥିଲେ ଯେ ଏତେ ବଡ଼ ବିଶାଳ ଦେଶର ଦାୟିତ୍ୱ ତୁଲାଇବ କିଏ ? କଂଗ୍ରେସ ଅନୁଷ୍ଠାନର ବଡ଼ପଣ୍ଡାମାନେ ଜବାହରଲାଲଙ୍କ ଉତ୍ତରାଧିକାରୀ ପଦରେ ଅଧିଷ୍ଠିତ ହେବା ପାଇଁ ପ୍ରବଳ ପ୍ରୟାସ କରିଥିଲେ । ମାତ୍ର ଚତୁର ରାଷ୍ଟ୍ରନୀତିଜ୍ଞ କଂଗ୍ରେସ ସଭାପତି କାମରାଜ ଦେଶର ଉପଯୁକ୍ତ ଲୋକ ବାଛିବାରେ ସଫଳକାମ ହୋଇଥିଲେ । ସେ ବ୍ୟକ୍ତି ଜଣକ ହେଉଛନ୍ତି ଆଜନ୍ମ ସଂଗ୍ରାମୀ, ଗାନ୍ଧିବାଦୀ, ନୀତିନିଷ୍ଠ, ଦୃଢ଼ମନା ସନ୍ଥ ଶ୍ରୀଲାଲବାହାଦୁର ଶାସ୍ତ୍ରୀ । ଶାରୀରିକ ସୌଷ୍ଠବରେ ସେ ବାଙ୍ଗର ଥିଲେ ମଧ୍ୟ ଦୃଢ଼ ମନୋବଳର ନେତା ଥିଲେ । କିନ୍ତୁ ଯେତେବେଳେ ସେ ଭାରତର ପ୍ରଧାନମନ୍ତ୍ରୀ ହିସାବରେ ଲଣ୍ଡନ ବିମାନଘାଟିରେ ଅବତରଣ କରିଥିଲେ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବାପାଇଁ ନିଜେ ଆସିନଥିଲେ । ଏହାଦ୍ୱାରା କେବଳ ତାଙ୍କୁ ଅବମାନନା କରାଯାଇନଥିଲା, ସମଗ୍ର ଭାରତବର୍ଷକୁ ଅବମାନନା କରାଯାଇଥିଲା । କେବଳ ତାଙ୍କର ବାଙ୍ଗରତ୍ୱ ଏହାର କାରଣ ହୋଇଥିଲା । ସେ ଯାହା ହେଉ ଲାଲବାହାଦୁର ଶାସ୍ତ୍ରୀଙ୍କ ଗୁଣ ଅବର୍ଣ୍ଣନୀୟ । ଦେଶବାସୀଙ୍କ ହୃଦୟ କନ୍ଦରରେ ସେ ଚିରକାଳ ଜାଗ୍ରତ ହୋଇ ରହିବେ ।

ସେତେବେଳେ ପାକିସ୍ତାନରେ ସାମରିକ ଶାସନ ପ୍ରବର୍ତ୍ତିତ ହୋଇଥିଲା । ଏବେ ସୁଦ୍ଧା ପାକିସ୍ତାନୀମାନେ ଗଣତନ୍ତ୍ରର ମୂଲ୍ୟ ବୁଝିପାରିନାହାଁନ୍ତି । ଜେନେରାଲ ଆୟୁବ ଖାଁ ପାକିସ୍ତାନର ପ୍ରେସିଡ଼େଣ୍ଟ ଥିଲେ । ସେ ଦୀର୍ଘକାୟ ବପୁବନ୍ତ ଏକ ବିଶାଳ ପୁରୁଷ । ଆମେରିକା ଦୁର୍ବଳ ପାକିସ୍ଥାନକୁ ସବୁବେଳେ ସାହାଯ୍ୟ କରିଆସିଛି । ଆମେରିକଠାରୁ ବଳ ପାଇ ଲାଲବାହାଦୁରଙ୍କୁ ନ୍ୟୁନ ମନେକରି କୁଚକ୍ରୀ

ଚୀନର ସଲାସୂତରାରେ ୧୯୬୫ ମସିହାରେ ଆୟୁବ ଖାନ୍ ଭାରତକୁ ଆକ୍ରମଣ କଲା । ଉଦ୍ଦେଶ୍ୟ ବଙ୍ଗଳାର ଉତ୍ତର ସୀମା କୁଚବିହାର ନାମକ ଅଂଚଳକୁ ଅଧିକାର କରିଦେଲେ ଆସାମ ସମେତ ପୂର୍ବାଞ୍ଚଳ ରାଜ୍ୟଗୁଡ଼ିକ ଚୀନ ଓ ସେ ବାଣ୍ଟି ନେବେ । ଏହି ସମୟରେ ଭାରତର ଖାଦ୍ୟାଭାବ ପ୍ରବଳ ଥିଲା । ଆମେରିକା ଭାରତକୁ କୌଣସି ଖାଦ୍ୟ ସାହାଯ୍ୟ ଦେଇପାରିବ ନାହିଁ ବୋଲି କହିଦେଲା । ଏଥିରେ ଭାରତ ବିଚଳିତ ହୋଇ ପଡ଼ିବା ସ୍ୱାଭାବିକ କଥା ମାତ୍ର ଦୃଢ଼ମନା ଲାଲବାହାଦୁର ନିଜ ଜିଦ୍‌ରେ ଅଟଳ ରହିଲେ । ତାଙ୍କର 'ଜୟ ଯବାନ, ଜୟ କିଶାନ' ଧ୍ୱନି ସମଗ୍ର ଉପମହାଦେଶରେ ଶିହରଣ ସୃଷ୍ଟି କଲା । ସେ ଆମେରିକାରୁ କୌଣସି ସାହାଯ୍ୟ ନଆଣିବା ପାଇଁ ଦୃଢ଼ ସଂକଳ୍ପ ହେଲେ । ଭାରତର ଖାଦ୍ୟ ସମସ୍ୟା ଦୂରକରିବା ପାଇଁ ପରର ଦ୍ୱାରସ୍ଥ ନହୋଇ ପ୍ରତି ସପ୍ତାହରେ ଗୋଟିଏ ଓଳି ଉପବାସ ରହିବା ପାଇଁ ଦେଶବାସୀଙ୍କୁ ନିବେଦନ କଲେ । ତାଙ୍କର ନିଃସ୍ୱାର୍ଥପର ନିବେଦନ ଦେଶବାସୀଙ୍କ କର୍ଣ୍ଣଗହ୍ୱରରେ ପ୍ରବେଶ କଲା । ଦେଶବାସୀ ଏହି ଆହ୍ୱାନର ଉଚିତ ଜବାବ ଦେଲେ । ପୁନଃ ସେ ଅବଗତ ଥିଲେ– "Example is better than precept" ତେଣୁ ସ୍ୱଂୟ ଲାଲବାହାଦୁର ସପ୍ତାହକେ ଗୋଟିଏ ଦିନ ଉପବାସ ବ୍ରତ ପାଳନ କରି ଜନ୍‌ସାଧାରଣଙ୍କୁ ଗଭୀର ଭାବରେ ପ୍ରଭାବିତ କଲେ । ସମଗ୍ର ପୃଥିବୀବାସୀଙ୍କର ଧାରଣା ଯେ ଭାରତର ସୈନ୍ୟବାହିନୀ ଯୁଦ୍ଧ କରିବାରେ ସମଗ୍ର ପୃଥିବୀରେ ଶ୍ରେଷ୍ଠତ୍ୱ ଲାଭ କରିଛନ୍ତି । ଲାଲବାହାଦୁରଙ୍କ ଅସୀମ ତ୍ୟାଗ ଓ ଦୃଢ଼ ମନୋବଳ ଏବଂ ଗଭୀର ଆତ୍ମବିଶ୍ୱାସ ଯୋଗୁଁ ଭାରତ ଯୁଦ୍ଧରେ ବିଜୟ ଲାଭକଲା ଏବଂ ପଶ୍ଚିମ ପାକିସ୍ଥାନ ଭିତରକୁ ପ୍ରାୟ ଚାଳିଶ ମାଇଲ ପ୍ରବେଶ କରି ଅଧିକାର ସାବ୍ୟସ୍ତ କଲା । ଆମେରିକାର ଅପରିମିତ ସୈନ୍ୟବଳ ସହିତ ଚୀନର ଗୋପନ ଷଡ଼ଯନ୍ତ୍ର ପାକିସ୍ଥାନକୁ ରକ୍ଷା କରିପାରିଲା ନାହିଁ । ଭାରତର ଏହି ବିଜୟରେ ଦେଶବାସୀଙ୍କ ତରଫରୁ ଉଲ୍ଲସିତ ସମ୍ବର୍ଦ୍ଧନା, ଶୁଭେଚ୍ଛା ଅଜାଡ଼ି ହୋଇପଡ଼ିଲା । 'ହର ହର ବମ୍ ବମ୍' ଧ୍ୱନିରେ ଆକାଶ ପାତାଳ ପ୍ରକମ୍ପିତ ହେଲା । ଲାଲବାହାଦୁର ପାଞ୍ଚ ଫୁଟିଆ ମଣିଷଟିଏ ହେଲେ ମଧ ସ୍ୱଚ୍ଛ କାଳ ଅଠର ମାସ ଶାସନ ଭିତରେ ଭାରତର ମାନ ମହତକୁ ଏପରି ଉଚ୍ଚତର ସୋପାନକୁ ନେଇ ଯାଇଥିଲେ ଯେ ଇତିହାସରେ ତାର ପଟାନ୍ତର ନାହିଁ । ମାତ୍ର ବନ୍ଧୁରାଷ୍ଟ୍ର ରୁଷିଆ ଦ୍ୱାରା ପ୍ରଭାବିତ ହୋଇ ଶାନ୍ତିକାମୀ ଲାଲବାହାଦୁର ପାକିସ୍ଥାନ ସହିତ ସନ୍ଧି ଚୁକ୍ତି କରିବା ପାଇଁ ତାସକେଣ୍ଟ ଯାତ୍ରାକଲେ । କିନ୍ତୁ ଚୁକ୍ତି ସାରି ସେଠାରେ ସେ ଶେଷ ନିଶ୍ୱାସ ତ୍ୟାଗକଲେ । ତାଙ୍କର ହଠାତ୍ ମୃତ୍ୟୁ ତାଙ୍କର ପ୍ରିୟ ଭାରତବାସୀଙ୍କ

ମନରେ ଏପର୍ଯ୍ୟନ୍ତ ଅବୋଧ ରହିଗଲା । ଏହା ଥିଲା ୧୯୬୬ ମସିହା ଜାନୁଆରୀ ୧୧ ତାରିଖ ।

**ଇନ୍ଦିରାଗାନ୍ଧୀ ପ୍ରଧାନମନ୍ତ୍ରୀ :**

ତାଙ୍କ ପରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ବେତାର ମନ୍ତ୍ରୀ ପଦରୁ ଉନ୍ନୀତ ହୋଇ ପ୍ରଧାନମନ୍ତ୍ରୀ ପଦ ଗ୍ରହଣ କଲେ । ସର୍ବଶ୍ରୀ ମୋରାରଜୀ ଦେଶାଇ, ଯଶୋବନ୍ତ ଚୌହାନ୍ ପ୍ରଭୃତିଙ୍କୁ ବିଚାରକୁ ନନେଇ ରାଜନୀତିରେ ନବୀନା ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କୁ ବାଛି କାମରାଜ ବିଚକ୍ଷଣ ବୁଦ୍ଧିମତାର ପରିଚୟ ଦେଲେ । ଶ୍ରୀମତୀ ଗାନ୍ଧୀ ଅତି ବୁଦ୍ଧିମତୀ ଓ ଉପସ୍ଥିତ ବୁଦ୍ଧିସମ୍ପନ୍ନା ଥିଲେ । ତାଙ୍କଠାରେ ଜିଦ୍‌ଖୋର ପଣ ଯେପରି ଥିଲା, ଦୃଢ଼ ମନୋବଳ ସେହିପରି ଥିଲା । ଥରେ ୧୯୬୭ ମସିହାରେ ଓ ଆଉଥରେ ୧୯୬୯ ମସିହାରେ ଜାତୀୟ କଂଗ୍ରେସ ବିଭାଜନ ହୋଇଥିଲା । ସେତେବେଳେ ସେ ରକ୍ଷଣଶୀଳ ସିଣ୍ଡିକେଟ ଗୋଷ୍ଠୀ କବଳରୁ ମୁକ୍ତି ଲାଭକରି ପ୍ରଗତିଶୀଳ ଦଳମାନଙ୍କ ସହାୟତାରେ ସଂଖ୍ୟାଲଘୁ ସରକାର ଚଳାଇଲେ । ପୁଞ୍ଜିପତିଙ୍କ କବଳରୁ ଦେଶକୁ ମୁକ୍ତିଦେଇ ବଡ଼ବଡ଼ ବ୍ୟାଙ୍କଗୁଡ଼ିକ ଜାତୀୟକରଣ କଲେ । ରାଜା ମହାରାଜାଙ୍କ ହାତପାଣ୍ଠି ଉଚ୍ଛେଦ କଲେ । ପୁନଶ୍ଚ ୧୯୭୧ ମସିହାରେ ଭାରତ ପାକିସ୍ଥାନ ଯୁଦ୍ଧରେ ବିଜୟ ଲାଭ କରି ଏକତରଫା ଭାବେ ଯୁଦ୍ଧ ବିରତି ଘୋଷଣା କରି ବଙ୍ଗଳାଦେଶ ସୃଷ୍ଟିକରି ସମସ୍ତ ଜଗତକୁ ସ୍ତମ୍ଭୀଭୂତ କରିଦେଲେ । ବଙ୍ଗଳାଦେଶର ସୃଷ୍ଟି ଦ୍ୱାରା ଭାରତର ବିଶେଷ କିଛି ଲାଭ ହୋଇନାହିଁ । ସେ ସତର ବର୍ଷକାଳ ଭାରତର ପ୍ରଧାନମନ୍ତ୍ରୀ ଆସନରେ ଅଧିଷ୍ଠିତ ହୋଇଥିଲେ ଏବଂ ବିଶାଳ କୃତିତ୍ୱ ପ୍ରଦର୍ଶନ କରିଥିଲେ ।

କିନ୍ତୁ ତାଙ୍କ ସମୟରେ ଅମଲାତନ୍ତ୍ରର ନୈତିକ ମୂଲ୍ୟବୋଧ ହ୍ରାସ ପାଇଥିଲା । ଅବାଞ୍ଛିତ ଲୋକ କଂଗ୍ରେସ ଦଳରେ ଯୋଗଦେଇ ଶାସନକୁ କଳୁଷିତ କଲେ । ସେ ଏକଛତ୍ରବାଦ ଆଡ଼କୁ ଗତି କରିବାପରି ଜଣାଗଲା । କଂଗ୍ରେସ ଅନୁଷ୍ଠାନରେ ଗଣତାନ୍ତ୍ରିକ ବିଚାରଧାରା ଆସ୍ତେ ଆସ୍ତେ ଅପସରିଗଲା । ସେ ପ୍ରଚଣ୍ଡ ଦେଶପ୍ରେମୀ ଥିବାରୁ ନିଜର ସ୍ୱାର୍ଥାନ୍ଧ ଧର୍ମପାଗଳ ଶିଖ୍ ଦେହରକ୍ଷୀମାନଙ୍କ ଦ୍ୱାରା ଦିଲ୍ଲୀସ୍ଥିତ ନିଜ ବାସଭବନରେ ୧୯୮୪ ଅକ୍ଟୋବର ୩୧ ତାରଖ ପୂର୍ବାହ୍ଣ ନଅ ଘଟିକା ସମୟରେ ଅମାନୁଷିକ ଭାବରେ ନିହତ ହୋଇଥିଲେ । ତାଙ୍କ ମୃତ୍ୟୁ ପରେ ତତ୍କାଳୀନ ରାଷ୍ଟ୍ରପତି ଜୈଲ ସିଂହଙ୍କ ସ୍ୱୀକୃତିରେ ଓ କଂଗ୍ରେସ ମନ୍ତ୍ରିମଣ୍ଡଳର ନିର୍ବାଚନରେ ତାଙ୍କ ପୁତ୍ର ରାଜୀବ

ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲେ । ଲୋକେ କହିଲେ ପ୍ରଧାନମନ୍ତ୍ରୀ ପଦଟି ପାରିବାରିକ ହୋଇଗଲାଣି ।

୧୯୬୯ ମସିହା ବେଳକୁ ମୁଁ ଷୋଳ ବର୍ଷକାଳ ଜୟୀରାଜଗୁରୁ ଛାତ୍ରାବାସର ପରିଚାଳକ ପଦରେ ରହିଗଲିଣି । ମୋତେ ବି ଚିଟା ଲାଗିଲାଣି । ସର୍ବଦା ଏକପ୍ରକାର ଜୀବନ, ଏକପ୍ରକାର କାର୍ଯ୍ୟ । ମୋର ସାନ ପୁଅ ପଚାରୁଛି– ବାପା, ସମସ୍ତଙ୍କ ବଦଳି ହେଉଛି ଆମର କାହିଁକି ହେଉନି ? ଏ ତ ବେସରକାରୀ ଚାକିରି, ସେକଥା ସେମାନେ କ'ଣ ଜାଣୁଛନ୍ତି ? ଗାଁରେ ୧୯୫୦ ମସିହାରେ ଯେଉଁ ଚାଳଘର ଖଣ୍ଡିକ କରିଥିଲି ତାକୁ ବିକ୍ରିକରି ଦେଇଥିଲି । ଛାତ୍ରାବାସକୁ ନିଜର ଘରପରି ମଣୁଥିଲି । ଅନ୍ତେବାସୀଙ୍କର ସୁଖ ଦୁଃଖର ଭାଗୀ ହେଉଥିଲି । ପିଲାମାନଙ୍କ ଗହଣରେ ରହି ପିଲାଙ୍କ ପରି ଜୀବନଯାପନ କରୁଥିଲି । ତେଣୁ ମନରେ ବେଳେବେଳେ ବିରକ୍ତିଭାବ ଉଦ୍ରେକ ହେଉଥିଲା । ଛାତ୍ରାବାସରେ ମୁଁ କେବଳ ଆଳସ୍ୟରେ ଜୀବନ କାଟୁନଥିଲି, ପିଲାମାନଙ୍କୁ ଦାୟିତ୍ୱପୂର୍ଣ୍ଣ ନାଗରିକ ରୂପେ ଗଢ଼ିବା ପାଇଁ ଉଚିତ ଦିଗଦର୍ଶନ ଦେଉଥିଲି । ବିଦ୍ୟାଳୟର ବା ଛାତ୍ରାବାସର ପିଲା ହୁଅନ୍ତୁ ସେମାନେ ବହୁ ଉପରକୁ ଯାଇଛନ୍ତି । ସେମାନଙ୍କର ସୁନାମ ଶୁଣି ମୋର ଛାତି କୁଣ୍ଢେମୋଟ ହୋଇଛି । କିନ୍ତୁ ଛାତ୍ରାବାସରେ ବା ବିଦ୍ୟାଳୟରେ ମୋର ନୀତିମୟ କଠୋର ଶାସନ ହେତୁ କେତେକ ପିଲା ମୋତେ ଭୁଲ ବୁଝିଛନ୍ତି । ମାତ୍ର ଅଧିକାଂଶ ଏ ବିରାଟ ଦେଶର ଜଣେ ଜଣେ କୃତୀ ସନ୍ତାନ ହୋଇଛନ୍ତି । ''ମୋର ଦୁର୍ଗୁଣ ଭିତରେ ମୁଁ ଚିଡ଼ା ପ୍ରକୃତିର ଥିଲି । ଭଲ ପଢୁନଥିବା ପିଲାଙ୍କୁ ମାଙ୍କଡ଼ କୁକୁର ପରି ବ୍ୟବହାର କରୁଥିଲି । ଦଣ୍ଡ ବିଧାନ କରୁଥିଲି । ହଠାତ୍ ରାଗି ଯାଉଥିଲି । ପରମୁହୂର୍ତ୍ତରେ ଆତ୍ମ ସମୀକ୍ଷା କରୁଥିଲି, ନିଜର ଭୁଲ୍ ବୁଝିପାରୁଥିଲି । ମୁଁ ଭାବିପାରେ ନାହିଁ ଯେ ପିଲା ବେଶି ପାଠ ନପଢ଼ି ମଧ ଧନ ସଂପତ୍ତିର ଅଧିକାରୀ ହୋଇପାରିବ । ମୁଁ ଭାବେ ପାଠ ନ ପଢ଼ିଲେ ଜୀବନ ବୃଥା । ଏହି ଧାରଣାର ବଶବର୍ତ୍ତୀ ହୋଇ ମୁଁ ଛାତ୍ରମାନଙ୍କୁ ଶାସନକରେ । ଏଥିରେ ମୋର କିଛି ଲାଭ ନଥାଏ । ମୁଁ ତ କେବଳ ବେତନ ନେଇ ଘରକୁ ପଳେଇଲେ ହେବ ନାହିଁ ? କିଛି ମହତ୍ତର କାମ କରିବି । ମୁଁ ସେମାନଙ୍କୁ ଭଲ ପଢ଼ାଇଲେ ସେମାନେ ଭବିଷ୍ୟତରେ ଦେଶକଥା ଜାତିକଥା ବୁଝିବେ ।''

## ମୋର ଏକ ନୂତନ ଚାକିରି :

ଏହିପରି ଭାବେ ସୁଖଦୁଃଖଭରା ଜୀବନରେ ଖାଲ, ଢିପ ଅତିକ୍ରମକରି ୧୯୬୮ ମସିହାର ଡିସେମ୍ବରରେ ପଦାର୍ପଣ କଲି । ସେତେବେଳେ ସମଗ୍ର ରାଜ୍ୟରେ ଗୋଟିଏ

ସେକେଣ୍ଡାରୀ ବୋର୍ଡ଼ କଟକରେ ଅବସ୍ଥାପିତ ହୋଇଥାଏ । ସେ ବର୍ଷ ଇତିହାସ ବିଶେଷଜ୍ଞ ପଦପାଇଁ ପ୍ରାର୍ଥୀହେଲି । ମାଟ୍ରିକ ପରୀକ୍ଷାରୁ ସମାଜ ବିଜ୍ଞାନ ଉଠିଯାଇ ପୁନଃ ଇତିହାସ ପ୍ରଚଳିତ ହେଲାଣି । ମୁଁ ଇତିହାସରେ ଉଚ୍ଚ ନମ୍ବର ରଖି ଏମ୍.ଏ. ପାସ୍ କରିଥିଲି । ସିଲେକସନ ବୋର୍ଡ଼ରେ ଶ୍ରୀ ବୈଦ୍ୟନାଥ ରଥ, ଅଧକ୍ଷ, ଟ୍ରେନିଂକଲେଜ, ବିଶିଷ୍ଟ ଶିକ୍ଷାବିତ୍ ରାଜକିଶୋର ରାୟ, ସେକ୍ରେଟାରୀ ପରେଶନାଥ ରାୟ ପ୍ରଭୃତି ଚାରିଜଣ ବୋର୍ଡ଼ର ସଭ୍ୟ ଥିଲେ । ଖୋରଧା ପାଇକ ବିଦ୍ରୋହ ସମ୍ବନ୍ଧେ ଉପଯୁକ୍ତ ଉତ୍ତର ପାଇ ନଅଜଣଙ୍କ ମଧ୍ୟରୁ ମୋତେ ନିଯୁକ୍ତି ପ୍ରଦାନ କଲେ । ୧୯୬୮ ମସିହା ଡିସେମ୍ବର ମାସ ଶେଷରେ ଏ ନିଯୁକ୍ତିଟି ମିଳିଥିଲା । ମାତ୍ର ଏହା ଗୋଟିଏ ବଡ଼ କିରାଣି ପଦ, ଦ୍ୱିତୀୟ ଶ୍ରେଣୀ ଚାକିରି ହେଲେ ମଧ ଆର୍ଥିକ ଦୃଷ୍ଟିରୁ ମୋ ପ୍ରତି ଲାଭପ୍ରଦ ନଥିଲା । ସମଗ୍ର ଓଡ଼ିଶା ଭ୍ରମଣକରି ମାଧମିକ ବିଦ୍ୟାଳୟମାନଙ୍କରେ ଇତିହାସ ପଢ଼ାରେ ନୂତନ ଦିଗ୍‌ଦର୍ଶନ ଦେବାକୁ ପଡ଼ିବ । ମୂଳରୁ ମୋର ଝାଡ଼ାରୋଗ ଥିଲା । ସର୍ବୋପରି ନିର୍ଦ୍ଦିଷ୍ଟ ଦରମାରୁ ମୁଁ ଚାଳିଶ ଟଙ୍କା ଅଧିକ ପାଉଥିଲି । ମୋ ଦରମା କର୍ତ୍ତୃପକ୍ଷ ସୁରକ୍ଷିତ କଲେ ନାହିଁ । ବହୁବାର ବୋର୍ଡ଼ ପ୍ରେସିଡ଼େଣ୍ଟଙ୍କ ପାଖକୁ ଯାଇ ଦରମା ସୁରକ୍ଷା କରିବାକୁ ନିବେଦନ କଲି । ମାତ୍ର ସକଳ ଚେଷ୍ଟା ବିଫଳ ହେଲା । ତେଣୁ ପାଞ୍ଚ କି ଛଅ ମାସ ପରେ ନୂତନ ଚାକିରି ତ୍ୟାଗକଲି । କିନ୍ତୁ ଦ୍ୱିତୀୟଶ୍ରେଣୀ ଚାକିରି ଛାଡ଼ିବା ମୋର ମୂର୍ଖତାର ପରିଚୟ ଦିଏ । ଏକ ଉଚ୍ଚସ୍ଥାନକୁ ଯିବି, ବଡ଼ ସହରରେ ବାସକରିବି, ବଡ଼ ଲୋକମାନଙ୍କ ସହିତ ମିଶିବି ଏ ସୁଖ ମୋ ଭାଗ୍ୟରେ ନଥିଲା । ମୁଁ ତ ଏହି କ୍ଷୁଦ୍ର ସହରରେ କୂପମଣ୍ଡୁକ ହୋଇ ରହିଗଲି । ଏଠାରୁ ଅନ୍ୟ ଯୁଆଡ଼େ ଗଲି ଆହୁରି କ୍ଷୁଦ୍ର ହୋଇଗଲି ।

### ଆମ ସ୍କୁଲ ସରକାରୀ ସ୍କୁଲହେଲା :

ରାଜ୍ୟ ସରକାର ୧୯୬୯ ମସିହା ମାର୍ଚ୍ଚ ପହିଲାରେ ସମଗ୍ର ରାଜ୍ୟର ୧୪୨ଟି ବଛାବଛା ଘରୋଇ ସ୍କୁଲକୁ ସରକାରୀ ସ୍କୁଲରେ ପରିଣତ କରିଦେଲେ । ଆମ ସ୍କୁଲ ବି ପୂର୍ଣ୍ଣ ସରକାରୀ ସ୍କୁଲ ହେଲା । କିନ୍ତୁ ସରକାର ଆମ୍ଭମାନଙ୍କ ପାଇଁ କିଛି ଚାକିରି ସର୍ତ୍ତ ଠିକ୍ କଲେ ନାହିଁ । ପ୍ରାଇଭେଟ ବିଦ୍ୟାଳୟରେ ଖଟି ଖଟି ଜୀବନ ଯାଇଥିଲା । ରାଜ୍ୟରେ ଜନକଂଗ୍ରେସ ମନ୍ତ୍ରିମଣ୍ଡଳ । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ଓ ଶ୍ରୀ ବନମାଳୀ ପଟ୍ଟନାୟକ ଶିକ୍ଷାମନ୍ତ୍ରୀ । ସେ କିଛି ବର୍ଷ ଖୋର୍ଦ୍ଧା ହାଇସ୍କୁଲରେ ଅଧୟନ କରିଥିଲେ । ଆମ୍ଭେ ତାଙ୍କୁ ପୁରସ୍କାର ବିତରଣୀ ସଭାରେ ସମ୍ବର୍ଦ୍ଧିତ କରିଥିଲୁ ।

ବନମାଳୀବାବୁ ଦୃଢ଼ମନା ଥିଲେ । ଏତେଗୁଡ଼ାଏ ହାଇସ୍କୁଲକୁ ସରକାରୀ କରିବା ଏକ ସାହସିକ ପଦକ୍ଷେପ । ସେତେବେଳକୁ ଦିବ୍ୟସିଂହବାବୁଙ୍କୁ ତେଷଠି ବର୍ଷ ହେଲାଣି । ଦୁଇ ତିନି ବର୍ଷ ହେଲା ହାତ ଥରିଲାଣି । ସେ ଧର୍ମଭାବାପନ୍ନ ଲୋକଥିଲେ । ମାତ୍ର ଲୋଭ ତ ସମସ୍ତଙ୍କର ଅଛି । ତାଙ୍କର ବି ଥିଲା । ତେଣୁ ସରକାରୀ ହୋଇ ଚାରିମାସ ପର୍ଯ୍ୟନ୍ତ ସେ ପଦବୀରେ ରହିଲେ । ସରକାରରୁ ବାଧ୍ୟ ଆଦେଶ ଆସିବାରୁ ସେ ଗଲେ । ମୋ ଭାଗ୍ୟ ପଥର ତଳେ ଚାପି ହୋଇ ରହିଲା ।

**ଶିକ୍ଷକର ବ୍ୟକ୍ତିତ୍ୱ :**

୧୯-୫-୧୯୬୩ ମସିହାରେ 'ମାତୃଭୂମି' ଦୈନିକ ସମ୍ବାଦପତ୍ରରେ ଶିକ୍ଷା କ୍ଷେତ୍ରରୁ ଦୁର୍ନୀତି ନିବାରଣ ସମ୍ବନ୍ଧେ ଏକ ପ୍ରବନ୍ଧ ପ୍ରକାଶ କଲି । ଏହା ପରେ ପରେ ଦେବୀଦ୍ୱାରରୁ ଖଣ୍ଡିଏ ବେନାମୀ ଚିଠି ମୋ ଠିକଣାରେ ଆସି ପହଞ୍ଚିଲା । ସେ ଚିଠିରେ ମୋତେ ଧମକ ଚମକ ଗାଳିଗୁଲଜ କରା ଯାଇଥିଲା । ଆଉ ଭବିଷ୍ୟତରେ ଏପରି ପ୍ରବନ୍ଧ ପ୍ରକାଶ କଲେ ଜୀବନ ସଂକଟାପନ୍ନ ହେବ । ପୁଣି କେତେ ଦିନପରେ କପିରୁ ନିବୃତ୍ତ ରହିବା ପାଇଁ ଆଉ ଏକ ପ୍ରବନ୍ଧ ପ୍ରକାଶ କଲି । ପୁନଃ ଧର୍ମ ଶିକ୍ଷାର ଆବଶ୍ୟକତା ସମ୍ବନ୍ଧେ ଏକ ପ୍ରବନ୍ଧ 'କଳିଙ୍ଗ' ସମ୍ବାଦପତ୍ରରେ ପ୍ରକାଶ କଲି । ଦେଶରେ ସୁନାଗରିକ ଗଠନ କରିବା ମୋର ଏକାନ୍ତ ଲକ୍ଷ୍ୟ । ଉତ୍ତମ ମଣିଷ ହେବାରେ ଅବଶ୍ୟ ବହୁ ବିପଦ ଅଛି । ଏହା ବୋଲି କ'ଣ ଉତ୍ତମ ମଣିଷ ଗଢ଼ିବା ନାହିଁ ? ବିଶାଳ ଛାତ୍ରାବାସର ଅନ୍ତେବାସୀମାନଙ୍କ ଘରୋଇ ଜୀବନ ସଙ୍ଗେ ବହୁଦିନରୁ ପରିଚିତ ହୋଇଥିଲି । ଯେଉଁ ପିଲାମାନଙ୍କୁ ମାନବିକତା ଦୃଷ୍ଟିରୁ ଦୟାପରବଶ ହୋଇ ମେସ୍ ଖର୍ଚ୍ଚରୁ ବା ସ୍କୁଲ ଦରମାରୁ ଅବ୍ୟାହତି ଦେଇଥିଲି ଆଶ୍ଚର୍ଯ୍ୟର କଥା ସେହି ପିଲାମାନେ ମୋ ବିରୁଦ୍ଧରେ ବେଳେ ବେଳେ ସ୍ୱର ଉତ୍ତୋଳନ କଲେ । ଅଭିଭାବକମାନେ ଭିନ୍ନ ଧରଣର ଥିଲେ । ମୋ ପାଖରୁ ସେମାନଙ୍କ କାମ ସରିଗଲା ପରେ ସେମାନେ ପାଖ ପଶନ୍ତି ନାହିଁ । ଏହା ବୋଧହୁଏ ମଣିଷର ଲକ୍ଷଣ ।

ଶିକ୍ଷକମାନେ ସଦା ସରଳ ପ୍ରକୃତିର । ସମାଜ ସେମାନଙ୍କୁ ସ୍ଥାନ ଦିଏ ନାହିଁ । ପୁଲିସ କନେଷ୍ଟବଳକୁ ଲୋକେ ବେଶି ଖାତିର କରନ୍ତି । ଶିକ୍ଷକ ଜୀବନରେ ଦାନ କରିବାର ଦୃଷ୍ଟାନ୍ତ ଅନେକ, ମାତ୍ର ପାଇବାର କିଛି ନଥାଏ । ଅବଶ୍ୟ ବିଦ୍ୟା ଦାନକଲେ ତାହା ବୃଦ୍ଧିପ୍ରାପ୍ତ ହୁଏ । ଦେଖାଯାଏ ଉତ୍ତମ ଛାତ୍ର ଶିକ୍ଷକମାନଙ୍କ ପାଖେ ଋଣୀ ରହନ୍ତି, ପୁଣି କେତେକ ଛାତ୍ର ଶିକ୍ଷକଙ୍କୁ ଟୁଙ୍କା ନମସ୍କାରଟିଏ କରନ୍ତି ନାହିଁ, ପଚାରନ୍ତି ନାହିଁ । ତେବେ

କିଏ ପଚାରୁ ନପଚାରୁ ଶିକ୍ଷକ ସେ ସବୁକୁ ଖାତିରି କରେ ନାହିଁ । କାହାଠାରୁ କିଛି ପାଇବା ଆଶାରେ ସେ ପିଲାଙ୍କୁ ପଢ଼େଇ ନଥାଏ । ସେ ତାର କର୍ତ୍ତବ୍ୟ ସଂପାଦନ କରିଥାଏ । ସାଧାରଣ ଶିକ୍ଷକମାନଙ୍କ ପ୍ରତି ସମାଜ ଉଦାସୀନ, ମାତ୍ର ନିଷ୍ଠାପର, ଚରିତ୍ରବାନ, ଜ୍ଞାନୀ, ଗୁଣୀ ଶିକ୍ଷକମାନଙ୍କ ପ୍ରତି ସମାଜର ଶ୍ରଦ୍ଧା, ଭକ୍ତି ଅତୁଟ ରହେ । ମୁଁ ଜଣେ ଉତ୍ତମ ଶିକ୍ଷକ ହେବାକୁ ଚେଷ୍ଟା କରିଛି ।

**ତାଙ୍କର ଶେଷ ତିନିବର୍ଷ**

ଦିବ୍ୟସିଂହବାବୁଙ୍କର ଶେଷ ତିନିବର୍ଷ ଖୁବ୍ ଗୋଳମାଳିଆ ହୋଇଥିଲା । ସେ ବିଦ୍ୟାଳୟ କାର୍ଯ୍ୟରେ ନିଷ୍ଠା ଦେଖାଇ ପାରିଲେ ନାହିଁ । ସରକାରୀ ଚାକିରିରେ ଥିଲେ ଅଠର ବର୍ଷହେଲା ସେ ଅବସର ନେଇ ସାରନ୍ତେଣି । କିନ୍ତୁ ଏହା ଏକ ଘରୋଇ ସ୍କୁଲଥିଲା । ଏବେ ତିନିଚାରି ବର୍ଷ ହେଲା ପିଲାମାନେ ଟିକିଏ ବିଶୃଙ୍ଖଳ ହେଲେଣି । ଶିକ୍ଷକମାନଙ୍କ ଭିତରେ ନୂଆ ନୂଆ ଲୋକ ଆସି ଯୋଗ ଦେଉଥିବାରୁ ବିଦ୍ୟାଳୟରେ ଭାରସାମ୍ୟ ରହୁନଥିଲା । ମାଟ୍ରିକ ପରୀକ୍ଷାରେ ଦିବ୍ୟସିଂହବାବୁ ସୁପରିଟେଣ୍ଡେଣ୍ଟ ଥିଲେ । କିନ୍ତୁ ପରୀକ୍ଷା ପରିଚାଳନାରେ ଘୋର ବିଭ୍ରାଟ ଘଟିଲା । ଦଧିମାଛଗାଡ଼ିଆ, ଜଟଣୀ, ଓଳସିଂହ ପରୀକ୍ଷାର୍ଥୀମାନେ ବିଶେଷ ବିଶୃଙ୍ଖଳା ସୃଷ୍ଟିକରି ତାଙ୍କୁ ଗଭୀର ଅପମାନ ଦେଲେ । ସେ ଯେତେବେଳେ ଟାଣ ହେଲେ ନାହିଁ, ନିରୀକ୍ଷକମାନେ ନରମ ମନୋଭାବ ଧରିଲେ । ମାଟ୍ରିକ ପରୀକ୍ଷା ପରେ ଏପ୍ରିଲ ୨୨ ତାରିଖରେ ସ୍କୁଲର ଦାୟିତ୍ୱ ମୋତେ ପ୍ରଦାନ କରି ଦୁଇ ମାସ ଛୁଟିରେ ଗଲେ । ମୁଁ ହେଲି ହେଡମାଷ୍ଟର । ପୁରୀ ରାଜାଙ୍କର ରାଜ୍ୟ ନଥିଲା କିନ୍ତୁ ସେ ଥିଲେ ରାଜା ।

ଗତ ମାଟ୍ରିକ ପରୀକ୍ଷା ବିଶୃଙ୍ଖଳାର ସୁଦୂରପ୍ରସାରୀ ପ୍ରଭାବ ଆମ ସ୍କୁଲର ଛାତ୍ରମାନଙ୍କ ଉପରେ ପଡ଼ିଲା । ଶିକ୍ଷକମାନେ ରାସ୍ତାଘାଟରେ ବାଟ ଚାଲିପାରିଲେ ନାହିଁ । ଆମ୍ଭମାନଙ୍କ ସମ୍ମାନ ରସାତଳକୁ ଚାଲିଗଲା । ଏପରି ଅବସ୍ଥାରେ କ'ଣ କରାଯିବ । ମୁଁ ଭାବିଲି ଦିବ୍ୟସିଂହବାବୁ କହୁଛନ୍ତି, ''ଆଜିଯିବେ କାଲିଯିବେ'' । ତାଙ୍କ କଥାକୁ ମୁଁ ବିଶ୍ୱାସ କରୁଛି । ସେ ମୋର ଗୁରୁସ୍ଥାନୀୟ ଲୋକ । ଏଣେ ହଜାର ପିଲା, ତିରିଶଜଣ ଶିକ୍ଷକ, ମୁଁ ବଡ଼ ହଲାପଟାରେ ପଡ଼ିଲି । ମୋତେ ପୂର୍ଣ୍ଣ ଦାୟିତ୍ୱ ହସ୍ତାନ୍ତର କରିଦେଇଥିଲେ ତାଙ୍କର ମହତପଣିଆ ଜଣା ପଡ଼ିଥାନ୍ତା । ମୁଁ କର୍ତ୍ତବ୍ୟନିଷ୍ଠ । ତେଣୁ ଏହା ଚିନ୍ତା କରି ଗୁରୁଦାୟିତ୍ୱ ବହନ କଲି ।

ଏହା ପରେ ପରେ ବିଦ୍ୟାଳୟର ବାର୍ଷିକ ପରୀକ୍ଷା ହେବ । ସେକେଣ୍ଡାରୀ ବୋର୍ଡ଼ ଦ୍ୱାରା ପରିଚାଳିତ ମାଇନର ପରୀକ୍ଷା ହେବ । ଅପର ପ୍ରାଇମେରୀ ବୃତ୍ତି ପରୀକ୍ଷା ହେବ । ମାଟ୍ରିକ ବୋର୍ଡ଼ ପରୀକ୍ଷାରେ ପିଲାମାନେ ସାହସୀ ହୋଇ ଲଙ୍କାକାଣ୍ଡ ଘଟାଇଥିଲେ । ଏ ପରୀକ୍ଷାଗୁଡ଼ିକରେ କିପରି ସାଧୁତା ଅବଲମ୍ୱନ କରାଯିବ ? ପରୀକ୍ଷାର୍ଥୀମାନଙ୍କ ବିଶୃଙ୍ଖଳା ମତିଗତିକୁ କିପରି ଦମନ କରାଯିବ, ସେଥିପାଇଁ ମୁଁ ଘୋର ଚିନ୍ତିତ ହୋଇପଡ଼ିଲି । ଢେଙ୍ଗା ମୁଣ୍ଡରେ ଠେଙ୍ଗା, ଯେଉଁ ବ୍ୟକ୍ତି ପ୍ରଧାନ ଶିକ୍ଷକଙ୍କ ଦରମା ପାଇ ଆରାମରେ କାଳ କାଟିବେ ସେ ଛୁଟିରେ । ମୋର ମୁଣ୍ଡ ଭାରୀ, କଡ଼ାକର ଲାଭ ନାହିଁ ।

ଶିକ୍ଷକ ବନ୍ଧୁମାନଙ୍କର ଏକ ସଭା ଡକାଇଲି । ସର୍ବସମ୍ମତ ନିଷ୍ପତ୍ତି ନେଲି । ପୁଲିସ ସହାୟତାରେ ଶୃଙ୍ଖଳା ପୁନଃ ପ୍ରତିଷ୍ଠା କରିବା ସମସ୍ତଙ୍କର ଇଚ୍ଛା । ''ମୁଁ ମୁତଫରକା ହେଡମାଷ୍ଟର ହେଲେ ବି ଏଥିରୁ ଓହରିଯାଇ ପାରିବି ନାହିଁ । ଯେକୌଣସି ପରିସ୍ଥିତିର ସମ୍ମୁଖୀନ ହୋଇ ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଇବି ।''

ସେତେବେଳେ ଖୋରଧାର ଏସ୍.ଡି.ଓ ଥିଲେ ଶ୍ରୀଯୁକ୍ତ ସତ୍ୟରଞ୍ଜନ ପାଳ ମହୋଦୟ, ଆଇ.ଏ.ଏସ୍. । ସେ ସ୍କୁଲର ଏକ୍ସ ଅଫିସିଓ ପ୍ରେସିଡେଣ୍ଟ । ତେଣୁ ତାଙ୍କ ପାଖକୁ ପରୀକ୍ଷା ସମୟରେ କେତେଜଣ ପୁଲିସ ପ୍ରେରଣ କରିବା ପାଇଁ ଲେଖିଥିଲି । ସତ୍ୟରଞ୍ଜନବାବୁ ସ୍ୱଭାବତଃ ଥଣ୍ଡା ମିଜାଜର ଥିବାରୁ ପରୀକ୍ଷାର ଗୁରୁତ୍ୱ ଉପଲବ୍ଧି କରିପାରିଲେ ନାହିଁ । ତାଙ୍କଠାରୁ କୌଣସି ଉତ୍ତର ନପାଇ ପୁରୀର ତତ୍କାଳୀନ କଲେକ୍ଟର ବୋଧହୁଏ ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ତ୍ରିପାଠୀ, ଆଇ.ଏ.ଏସ୍.ଙ୍କୁ ଜରୁରୀ ଚିଠିରେ ଜଣାଇଲି । ସେ ମହାଶୟ ଖୁବ୍ ଟାଣୁଆ ଥିଲେ । ସେ ଉକ୍ତ ବିଶୃଙ୍ଖଳାର ଦୃଢ଼ ମୁକାବିଲା କରିବା ପାଇଁ ପାଳ ମହୋଦୟଙ୍କୁ ଆଦେଶ ଦେଲେ । ସାଙ୍ଗେ ସାଙ୍ଗେ ପୁଲିସ ମୁତୟନ ହୋଇଗଲା । ଗୋଟିକ ପରେ ଗୋଟିଏ ପରୀକ୍ଷା ଠିକ୍ ଭାବରେ ଚାଲିଲା । ଶିକ୍ଷକମାନଙ୍କ ମନରୁ ପରାଜୟ ଗ୍ଲାନି ଦୂରହୋଇ ଆତ୍ମପ୍ରତ୍ୟୟ ଜାଗି ଉଠିଲା । ବିଦ୍ୟାଳୟରେ ଶାନ୍ତ ବାତାବରଣ ଫେରିଆସିଲା । ନିର୍ଦ୍ଦିଷ୍ଟ ନୀତି ଅନୁସରଣ କରି ପୂର୍ବପରି ଶ୍ରେଣୀ ପ୍ରମୋଶନ ଦିଆଗଲା । ଅକୃତକାର୍ଯ୍ୟ ପିଲାମାନେ ନାନା ବିଶୃଙ୍ଖଳା ସୃଷ୍ଟିକଲେ ମଧ୍ୟ ନିର୍ଭୀକ ଭାବରେ ସେସବୁର ସମ୍ମୁଖୀନ ହେଲି । ଗ୍ରୀଷ୍ମାବକାଶ ନିମନ୍ତେ ବିଦ୍ୟାଳୟ ବନ୍ଦ ରହିଲା । ଛୁଟିପରେ ଯେତେବେଳେ ସମସ୍ତ କଳାବାଦଲ ଅପସରିଗଲା ଦିବ୍ୟସିଂହବାବୁ ପୁଣି ଆସି ଯୋଗଦେଲେ ।

ଏହିପରି ଦୁଇ ଦୁଇଥର ଅସଲ ସଙ୍ଗୀନ ସମୟରେ ବାଚନିକ ଦାୟିତ୍ୱ ଦେଇ ସେ ଚାଲିଯାଉଥିଲେ । ମୁଁ ସ୍ୱଭାବତଃ ସହିଷ୍ଣୁ, ସ୍ୱଳ୍ପଭାଷୀ, କର୍ତ୍ତବ୍ୟନିଷ୍ଠ ହୋଇଥିବାରୁ କିଛି ପ୍ରତିବାଦ କରୁନଥିଲି । ମୋତେ ପୂର୍ଣ୍ଣ ଦାୟିତ୍ୱ ହସ୍ତାନ୍ତର କରି ସେ ଚାଲିଯିବାର ମନୋଭାବ ପୋଷଣ କରୁନଥିଲେ । ମୁଁ ପ୍ରଧାନ ଶିକ୍ଷକ ପଦ ପାଇବି ବୋଲି ବଡ଼ ବଡ଼ ଚାକିରି ଛାଡ଼ିଥାଏ । ଦିବ୍ୟସିଂହବାବୁଙ୍କର ଉତୀର୍ଣ୍ଣ ବୟସ, ତଥାପି ସେ ପଦ ଛାଡ଼ିବାକୁ ମନ କରୁନଥିଲେ । ଦିବ୍ୟସିଂହବାବୁଙ୍କ ଉପରେ ବିଶ୍ୱାସ ରଖି ସମୟ ଗଲା । ଚାହୁଁଚାହୁଁ ରାଜ୍ୟ ସରକାର ସ୍କୁଲକୁ ହାତକୁ ନେଇଗଲେ । ଆମେ ସବୁ ସରକାରୀ ଶିକ୍ଷକ ହୋଇଗଲୁ । ମୁଁ କିନ୍ତୁ ସ୍ଥାୟୀ ହେଡମାଷ୍ଟର ହୋଇ ପାରିଲି ନାହିଁ । ଶିକ୍ଷାମନ୍ତ୍ରୀ କେବଳ ଦୃଢ଼ ପ୍ରତିଶ୍ରୁତି ଦେଲେ, ମୁଁ ନିଶ୍ଚୟ ସ୍ଥାୟୀ ପ୍ରଧାନ ଶିକ୍ଷକ ପଦ ପ୍ରାପ୍ତହେବି । ସହକାରୀ ରୂପେ ମୋତେ ବା ମୋ ପରି ଯେଉଁମାନେ ଥିବେ ସେମାନଙ୍କୁ ନିଶ୍ଚୟ ପଦୋନ୍ନତି ଦିଆଯିବ । ଯେତେବେଳେ ପାଇବା କଥା ସେତେବେଳେ ତ କର୍ମ ବାମ ହେତୁ ପାଇ ପାରିଲି ନାହିଁ ଆଉ ଏବେ ଏ ପ୍ରତିଶ୍ରୁତି ପାଣିରେ ଗାର ପରି ମନେହେଲା ।

ମନ୍ତ୍ରୀଙ୍କ ପ୍ରତିଶ୍ରୁତିର ମୂଲ୍ୟ କଅଣ ? ସେ ଆଜି ଅଛନ୍ତି, କାଲି କୁଆଡ଼େ ଯିବେ । ସରକାରୀ ଘରେ ଘଡ଼ିକେ ଘୋଡ଼ା ଛୁଟୁଛି । ତଥାପି ଆଶା ବୈତରଣୀ ନଦୀ । ଭାଗ୍ୟକୁ କେହି ବଦଳେଇ ଦେଇ ପାରିବେ ନାହିଁ ।

''ଶକ୍ତି ନାହିଁ ବସ କାହାର ଜଗତେ,
ନିୟତିକୁ ନେବ ନିଜ ଇଚ୍ଛାମତେ ।।''

ଯାହାତ ସହିଲି ସହିଲି । ଭବିଷ୍ୟତକୁ ଭାଗ୍ୟରେ କଅଣ ଅଛି ଦେଖିବାକୁ ହେବ ।

**ଗୀତାର ମହତ୍ତ୍ୱ :**

ଦିବ୍ୟସିଂହବାବୁ ଧର୍ମଚର୍ଚ୍ଚାରେ ବହୁ ସମୟ କଟାଉଥିଲେ । ଖୋର୍ଦ୍ଧାର ବାବୁ ଜୟକୃଷ୍ଣ ପରିଜାଙ୍କ ବାସଗୃହ ଗୀତାଚର୍ଚ୍ଚାର ପ୍ରଥମ ସ୍ଥଳ ଥିଲା । ଦିବ୍ୟସିଂହବାବୁ ସେଠାକୁ ଯାଇ ଗୀତା ଆଲୋଚନାରେ ଅଂଶଗ୍ରହଣ କରୁଥିଲେ । ଗୀତା କୌଣସି ଧର୍ମର କି ଜାତିର ଗ୍ରନ୍ଥ ନୁହେଁ । ମୋ ମତରେ ଏହା ସବୁଧର୍ମର ଗ୍ରନ୍ଥ । ଗୀତା ଗୋଟିଏ ଧର୍ମର ଗ୍ରନ୍ଥ ବୋଲି ଗୀତାରେ ଉଲ୍ଲେଖ ନାହିଁ । ଭଗବାନ ଶ୍ରୀକୃଷ୍ଣ ସ୍ୱୟଂ ମାନବତତ୍ତ୍ୱ ଭକ୍ତ ଅର୍ଜ୍ଜୁନଙ୍କୁ ବୁଝାଇଥିଲେ । ପୃଥିବୀରେ ସନାତନ ଧର୍ମ, ବୌଦ୍ଧ ଧର୍ମ, ଜୈନ ଧର୍ମ, ଜୋରାଷ୍ଟ୍ରିଆନ

ଧର୍ମ, ଖ୍ରୀଷ୍ଟିଆନ ଧର୍ମ ଓ ମୁସଲମାନ ଧର୍ମ ପ୍ରଭୃତି ନାନା ଧର୍ମର ଉଦ୍ଭବ ହୋଇଛି । ଗୀତାରେ କୌଣସି ଧର୍ମକୁ ନିନ୍ଦା କରାଯାଇନାହିଁ । ମନୁଷ୍ୟର ଆଚରଣ କିପରି ହେବ, ଜୀବନକାଳ ଭିତରେ ସେ କ'ଣ କ'ଣ ନୀତି ଅନୁସରଣ କରିବ, କିପରି ଜୀବନଯାପନ କରିବ–ଏସବୁ ନୀତିତତ୍ତ୍ୱ ଗୀତାରେ ସନ୍ନିବେଶିତ କରାଯାଇଛି । ଭାରତୀୟମାନେ ବିଦେଶୀ ସରକାର ଅମଳରେ ବାସ କରୁଥିବା ବେଳେ ନିର୍ଯ୍ୟାତିତ ଜୀବନ ଯାପନ କରୁଥିଲେ । ଏ କଥା ସତ୍ୟ ଯେ ଭାରତୀୟମାନେ ଶିକ୍ଷାଲୋକରୁ ବଞ୍ଚିତ ଥିଲେ । ସେମାନେ ରାଜଧର୍ମକୁ ଅନୁସରଣ କରି ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାକୁ ଶ୍ରେଷ୍ଠବୋଲି ବିବେଚନା କରୁଥିଲେ । 'ଭାରତ ସାପୁଆ କେଳାର ଦେଶ, ଗୁଣିଗାରିଡ଼ିର ଦେଶ, ଅନ୍ଧବିଶ୍ୱାସର ଦେଶ' ବୋଲି ସେମାନେ ପ୍ରଚାର କଲେ । ପ୍ରାଚୀନ ସମୃଦ୍ଧ ଦେଶ ଭାରତର ସଭ୍ୟତା, ସଂସ୍କୃତିକୁ ହୀନ ଦୃଷ୍ଟିରେ ଦେଖି ନିଜ ସଂସ୍କୃତିକୁ ବଡ଼ ବୋଲି ପ୍ରଚାର କଲେ । ଏହି ଫମ୍ପା ଧ୍ୱନିରେ ଆମ ଦେଶର ଇଂରେଜ ପଢୁଆଲୋକ ମାତିଗଲେ । କିନ୍ତୁ ଜର୍ମାନ ପଣ୍ଡିତ ମାକ୍ସମୁଲାର ୨୭ ଭାଷା ପ୍ରବୀଣ ସାର୍ ଉଇଲିୟମ ଜୋନସ୍, ବିଦୁଷୀ ଆନିବେଶାନ୍ତ ପ୍ରଭୃତି ପାଶ୍ଚାତ୍ୟ ପଣ୍ଡିତମାନେ ସଂସ୍କୃତ ଭାଷାରେ ଯେଉଁ ରତ୍ନ ଗଚ୍ଛିତ ଅଛି ତାହା ଜଗଦ୍ ସମ୍ମୁଖରେ ଉଦ୍‌ଘାଟନ କଲେ । ଆହୁରି ମଧ୍ୟ ଊନବିଂଶ ଶତାବ୍ଦୀର ଶେଷଭାଗରେ ଯୋଗୀ ଦୟାନନ୍ଦ ସରସ୍ୱତୀ, ସ୍ୱାମୀ ବିବେକାନନ୍ଦ, ରାମକୃଷ୍ଣ ପରମହଂସ, ରମଣ ମହର୍ଷି, ଭଗିନୀ ନିବେଦିତା ପ୍ରମୁଖ ମହାନ୍ ମହାନ୍ ମନୀଷୀମାନେ ଭାରତବାସୀଙ୍କ ହୀନମନ୍ୟତା ଦୂର କରିବା ଦ୍ୱାରା ଭାରତର ଗୌରବ ବିଂଶ ଶତାବ୍ଦୀରେ ପୁନଃ ଉଜ୍ଜୀବିତ ହେଲା । ଏହି ପରିପ୍ରେକ୍ଷୀରେ ସମଗ୍ର ଭାରତ ବର୍ଷରେ ଧର୍ମ ଚେତନାର ବନ୍ୟା ପ୍ରବାହିତ ହେଲା ଏବଂ ଶ୍ରୀମଦ୍ ଭଗବଦ୍ ଗୀତା ଯେ ପୃଥିବୀର ଶ୍ରେଷ୍ଠ ଆଧ୍ୟାତ୍ମିକ ଗ୍ରନ୍ଥ ଏହା ପ୍ରମାଣିତ ହେଲା ।

ପରେ ପରେ ପୃଥିବୀରେ ସବୁ ଭାଷାରେ ଏହି ମହାନ ଗ୍ରନ୍ଥ ଅନୂଦିତ ହେଲା । ଏହି ନିକଟରେ ଓଲନ୍ଦାଜ ଭାଷାରେ ଅନୂଦିତ ହୋଇଛି । ଏପରି ସଦ୍‌ଗ୍ରନ୍ଥ ଦୈନନ୍ଦିନ ପାଠକଲେ, ଆଲୋଚନା କଲେ ଏ ମର ଜଗତରୁ ମୋକ୍ଷ ମିଳେ ବୋଲି ମହାଜନମାନେ କହିଯାଇ ଅଛନ୍ତି । ଏଇ ପରିପ୍ରେକ୍ଷୀରେ ଜୟୀବାବୁ ଯେଉଁ ଗୀତା ଚର୍ଚ୍ଚା ଆରମ୍ଭ କଲେ ସେଥିରେ ସକ୍ରିୟ ଅଂଶଗ୍ରହଣ କଲେ ଦିବ୍ୟସିଂହବାବୁ ।

### ଖୋରଧା ଗୀତା ଭବନ ନିର୍ମାଣର ପୃଷ୍ଠଭୂମି :

୧୯୬୫ ମସିହା ବଡ଼ଦିନ ଛୁଟିରେ ବ୍ରହ୍ମପୁରରେ ଦକ୍ଷିଣ ଓଡ଼ିଶା ହେଡ଼ମାଷ୍ଟର କନଫରେନ୍ସର ମୂଲ୍ୟାୟନ ସେମିନାରରେ ମୁଁ ଯୋଗଦେଇଥିଲି । ସେଠାରେ ଆଠ

ଦଶଦିନ ଅବସ୍ଥାନ କରିବାକୁ ପଡିଥିଲା । ସେଠାରୁ ପ୍ରତ୍ୟାବର୍ତ୍ତନ ପରେ ଦିବ୍ୟସିଂହବାବୁ ମୋତେ କେତେକ ପ୍ରଶ୍ନ ପଚାରିଥିଲେ । ପାଠ ବିଷୟରେ ଯାହା ଆଲୋଚନା ହେଲା ତାହା ତ କହିଲି କିନ୍ତୁ ଗୋଟିଏ ଧର୍ମୀୟ ପ୍ରଭାବ ଉପରେ କହିଲି । ଆମ୍ଭେମାନେ କେ.ସି. ହାଇସ୍କୁଲରେ ଅବସ୍ଥାନ କରୁଥିଲୁ । ତାର ଅଳ୍ପଦୂରରେ ବ୍ରହ୍ମପୁରର ଗୀତା ଭବନ ଅବସ୍ଥିତ ଥିଲା । ପ୍ରତିଦିନ ରାତ୍ରି ଚାରିଟାରୁ ସେହି ଭବନରେ ଉଚ୍ଚସ୍ୱରରେ ଗୀତା ଆବୃତ୍ତି କରାଯାଉଥିଲା । ତେଣୁ ଆମ୍ଭମାନଙ୍କର ନିଦ ଭାଙ୍ଗି ଯାଉଥିଲା । ସେହି ଗୀତା ତତ୍ତ୍ୱଗୁଡ଼ିକ କର୍ଣ୍ଣ ଗହ୍ୱରରେ ପ୍ରବେଶ କରିବାରୁ ମନରେ ଆନନ୍ଦ ଭରି ଯାଉଥିଲା । ମନରେ ଆସିଲା ଖୋର୍ଦ୍ଧାରେ ତ ଏପରି ଅନୁଷ୍ଠାନ ନାହିଁ । ଏଠାରେ ଗୋଟିଏ ଗୀତା ମନ୍ଦିର ଗଢ଼ାଗଲେ କିପରି ହୁଅନ୍ତା ? ସେ ସମୟକୁ ଖୋର୍ଦ୍ଧା ଗୀତା ଭବନର ଶୁଭ ଦିଆଯାଇ ନଥିଲା । ଦିବ୍ୟସିଂହବାବୁଙ୍କ ଲକ୍ଷ୍ୟ କଣ ଥିଲା ମୋତେ ଜଣାନଥିଲା, କିନ୍ତୁ ମୋଠାରୁ ଏପରି କଥା ଶୁଣିବା ଦ୍ୱାରା ତାଙ୍କର ଉତ୍ସାହ ନିଶ୍ଚୟ ଦ୍ୱିଗୁଣ ବୃଦ୍ଧି ପାଇଥିବ ଏଥିରେ ସନ୍ଦେହ ନାହିଁ ।

କଥାରେ ଅଛି–''ଭାଗ୍ୟଂ ଫଳତି ସର୍ବତ୍ର, ନ ବିଦ୍ୟା ନ ଚ ପୌରୁଷଂ ।'' ସେ ପ୍ରତ୍ୟହ ଗୀତା ଚର୍ଚ୍ଚା କରନ୍ତି । ମୁଁ କର୍ମଜଞ୍ଜାଳରେ ବ୍ୟସ୍ତ ଥାଏ । ଧର୍ମଚର୍ଚ୍ଚା କରିବାକୁ ଅବସର ମିଳେ ନାହିଁ । ମୁଁ ଅତି ସରଳବିଶ୍ୱାସୀ ଯାହାକୁ ଇଂରାଜୀରେ କହନ୍ତି Wisdomfool, ମୁଁ ସମସ୍ତଙ୍କୁ ବିଶ୍ୱାସ କରେ । ଦିବ୍ୟସିଂହବାବୁ ଶିକ୍ଷକମାନଙ୍କୁ ବହୁ ସମୟରେ ଉପଦେଶ ବାଣୀ ଶୁଣାନ୍ତି, କହନ୍ତି– ''କର୍ମେଣ ବାଧିକାରସ୍ତେ ମା ଫଳେଷୁ କଦାଚନ'' । ଅର୍ଥାତ୍ ''କାମ କରିଯାଅ ଫଳପାଇଁ ଆଶା କରନାହିଁ'' । ମୋ ପରି ସରଳ ପ୍ରକୃତିର ଲୋକ ତାଙ୍କୁ ମାନି ପ୍ରତ୍ୟେକ କାର୍ଯ୍ୟ ସାଧନ କରେ । ମୁଁ ତାଙ୍କର ଅଠର ବର୍ଷକାଳ ବିଶ୍ୱସ୍ତ ସହକର୍ମୀ ଥିଲି । ଯେତେବେଳେ ଅନ୍ୟ ଶିକ୍ଷକ କୌଣସି କାର୍ଯ୍ୟ କରିବାକୁ କୁଣ୍ଠିତ ହୁଅନ୍ତି ମୁଁ ସେ କାର୍ଯ୍ୟ କରି ତାଙ୍କ ସମ୍ମାନ ରକ୍ଷାକରେ । ତାଙ୍କ ଆଦେଶ ଶିଷ୍ୟ ପରି ପାଳନ କରେ । ତେଣୁ ମୋର ପୁରସ୍କାର ସ୍ୱରୂପ ସେ ଯଦି ମୋତେ ସ୍ଥାୟୀ ପ୍ରଧାନ ଶିକ୍ଷକ ରୂପେ ଅବସ୍ଥାପିତ କରିଦେଇଯାଇଥାନ୍ତେ ତେବେ ତାଙ୍କର ମହନୀୟତାକୁ ମୁଁ ଚିରକାଳ ଘୋଷି ହୋଇଥାନ୍ତି । ତେବେ ସେଭଳି ମହନୀୟ ଗୁଣ ସାଧାରଣ ମଣିଷ ପାଖରେ ଦେଖାଯିବ କାହିଁକି ? ତାଙ୍କ ପାଖେ ସେ ଗୁଣ ଦେଖା ନଗଲା ବୋଲି ମୁଁ କାହିଁକି ତାଙ୍କୁ ଦୋଷ ଦେବି ? ଏହା ବି ହୋଇପାରେ ଏ ଅଧମର ଭାଗ୍ୟବଳ ଜୋର ନଥିଲା । ତେଣୁ ଏ ଦୁର୍ଗମ ପଥ ମୁଁ ଅତିକ୍ରମ କରିବାକୁ ଅକ୍ଷମ ହେଲି । ଯାହାର ଜୀବନଟାଯାକ ଖାଲ, ଢିପ, ଝଡ଼, ବତାସ ସେ ସହଜରେ ଗଡ଼ ଜିଣିବ କିପରି ?

ପୁନଃ ସ୍କୁଲ ସରକାରୀ ସ୍କୁଲରେ ପରିଣତ ହେଲେ ମଧ୍ୟ ସେ ହଠାତ୍ ସ୍କୁଲ ତ୍ୟାଗକଲେ ନାହିଁ । ଯେତେବେଳେ ଉପରୁ ଚିଠି ଆସିଲା ପଞ୍ଚାବନ ବର୍ଷରୁ ଊର୍ଦ୍ଧ୍ୱ ବୟସର ପ୍ରଧାନ ଶିକ୍ଷକମାନଙ୍କୁ ସରକାରୀ ଚିଠି ଦିଅନାହିଁ କି ସେ ତହବିଲ କାରବାର କରିପାରିବେ ନାହିଁ ସେତେବେଳେ ସେ ବାଧ ହୋଇ ମୋତେ ଜୁଲାଇ ପାଞ୍ଚ ତାରିଖରେ ଦାୟିତ୍ୱ ଦେଲେ ।

## ଘରେ ନପଶୁଣୁ ଚାଳ ବାଜିଲା :

ଜୁଲାଇ ପାଞ୍ଚ ତାରିଖରେ ଦିବ୍ୟସିଂହବାବୁ ହାଇସ୍କୁଲର ପୂର୍ଣ୍ଣଦାୟିତ୍ୱ ମୋତେ ହସ୍ତାନ୍ତର କରି ସ୍ୱଗୃହକୁ ପ୍ରସ୍ଥାନ କଲେ । ପରମ୍ପରା ଅନୁଯାୟୀ ତାଙ୍କୁ ବିଦାୟକାଳୀନ ସଭାରେ ସମ୍ବର୍ଦ୍ଧନା ଦେବା ବିଧି । ତେବେ ସେ କେଉଁଦିନ ଯିବେ ପୂର୍ବରୁ ଜାଣିଥିଲେ ସେହିଦିନ ତାଙ୍କର ବିଦାୟକାଳୀନ ସଭାଟି ଅନୁଷ୍ଠିତ କରେଇଥାନ୍ତି । ପରେ ଏକ ଶୁଭଦିନ ଦେଖି ବିଦାୟ ଦିଆଯିବ ବୋଲି ସ୍ଥିରକଲି । ମୁଖ୍ୟ ହିସାବରେ ଏଇଟି ମୋର କର୍ତ୍ତବ୍ୟ । ମାତ୍ର ଜଣେ ନିମ୍ନଶିକ୍ଷକ ଅଲକ୍ଷ୍ୟରେ ତାଙ୍କ ନାଆଁରେ ଅପପ୍ରଚାର ଚଳେଇଥିଲେ, ''ବିରାଟ ହଲ ଓ ପାଞ୍ଚଗୋଟି ପ୍ରଶସ୍ତ ଶ୍ରେଣୀ ପ୍ରକୋଷ୍ଠ ନିର୍ମାଣ କରେଇ ସେ ବହୁଟଙ୍କା ଖାଇଛନ୍ତି, ଆଉ ସମ୍ବର୍ଦ୍ଧନା (ଫେୟାର ଓୟେଲ୍) ଦିଆଯିବ କ'ଣ ?'' କେତେଜଣ ଶିକ୍ଷକଙ୍କୁ ସେ ପ୍ରଭାବିତ କଲେ । ମାତ୍ର ସେମାନେ ଅବଶ୍ୟ ତାଙ୍କୁ ପ୍ରକାଶ୍ୟ ସହଯୋଗ କଲେ ନାହିଁ, ଲୁଚି ଲୁଚି ରହିଲେ । ଏ ସମ୍ବାଦରେ ମୁଁ ମର୍ମାହତ ହେଲି । ଚିନ୍ତାକଲି ଟାଣପଣ ନ ଦେଖାଇଲେ ଏ ସମସ୍ୟାରୁ ବର୍ତ୍ତିପାରିବି ନାହିଁ । ପୁଣି ଭାବିଲି ଗୃହନିର୍ମାଣର ହିସାବପତ୍ର ସରକାରୀ କର୍ତ୍ତୃତାଧୀନ । ଏଥିରେ ଆମର ମୁଣ୍ଡ ଖେଳାଇବା କି ଆବଶ୍ୟକତା ଅଛି ?

ସଙ୍ଗେ ସଙ୍ଗେ ପିଲାମାନଙ୍କ ପାଇଁ ଗୋଟିଏ କଡ଼ା ନୋଟିସ୍ ସବୁ ଶ୍ରେଣୀରେ ବୁଲାଇ ଦେଲି, ''ଦିବ୍ୟସିଂହବାବୁଙ୍କ ବିଦାୟ ସମ୍ବର୍ଦ୍ଧନା ନିମନ୍ତେ ପ୍ରତ୍ୟେକ ଛାତ୍ର ଆପଣା ପଇସା ଆସନ୍ତା ବାର ତାରିଖ ସୁଦ୍ଧା ଶ୍ରେଣୀ ଶିକ୍ଷକଙ୍କ ପାଖେ ଦାଖଲ କରିବେ, ଯଦି ନ କରନ୍ତି ଆସନ୍ତା ପନ୍ଦର ତାରିଖଦିନ ସେମାନଙ୍କଠାରୁ ମାସିକ ଫି ଗ୍ରହଣ କରାଯିବ ନାହିଁ ।'' ପିଲାମାନଙ୍କ ମନକୁ ବିଭ୍ରାନ୍ତ କରିବାପାଇଁ ସେହି ଶିକ୍ଷକଙ୍କର ଏହି ଅପକୌଶଳ ଥିଲା । ମୋ ନିଷ୍ପତ୍ତିରେ ମୁଁ ଅଟଳ ରହିଲି । ଏପରି ଜବରଦସ୍ତି ନୋଟିସରେ କେହି କେହି ଅସନ୍ତୁଷ୍ଟ ହେଲେ । ମାତ୍ର ମୋର ଦୃଢ଼ତା ଯୋଗୁଁ ପଇସା ଆଦାୟ ହେଲା । ବିଦାୟ-କାଳୀନ ସଭାଟି ମୋ ସଭାପତିତ୍ୱରେ ସୁରୁଖୁରୁରେ ସମ୍ପନ୍ନ ହେଲା । ଦୀର୍ଘନିଶ୍ୱାସଟି ପକାଇଲି । ଝିମିଟି ଖେଳରୁ ମହାଭାରତ ସୃଷ୍ଟି । 'ଘରେ ନପଶୁଣୁ ଚାଳ ବାଜିଲା' । ମନେ ମନେ ଚିନ୍ତାକଲି ଜୀବନଟା କ'ଣ ଏହିପରି ଅବସ୍ଥା ଦେଇ ଗତି କରିବ କି ?

**ବିଦ୍ୟାଳୟରେ ପୁନଃଶୃଙ୍ଖଳା ରଖିବାକୁ ପ୍ରତିଜ୍ଞା :**

ଗତ ତିନି ବର୍ଷ ମଧ୍ୟରେ ବିଦ୍ୟାଳୟରେ ଯେଉଁ ଶୃଙ୍ଖଳାଗତ ଅଧଃପତନ ହୋଇଥିଲା ତାକୁ ସୁଧାରିବାପାଇଁ ପ୍ରାଣପଣେ ଚେଷ୍ଟାକଲି । ମୁଁ ଭୁଲିଗଲି ଯେ ମୁଁ ପ୍ରଧାନଶିକ୍ଷକ ପଦରେ ଅସ୍ଥାୟୀ, ସରକାରୀ ନିର୍ଦ୍ଦେଶମତେ ପ୍ରଧାନ ଶିକ୍ଷକ ଦାୟିତ୍ୱ ତୁଲାଉଛି । ବିଧିର ବିଧାନ ବିଚିତ୍ର । ମୋ ରହଣି ଏଠାରେ ସ୍ୱଳ୍ପ କାଳ ହେବ ବୋଲି ମୋତେ ଜଣା ନଥିଲା । ବିଦ୍ୟାଳୟକୁ ଏକ ଉଜ୍ଜ୍ୱଳ ଭବିଷ୍ୟତ ଦେବାପାଇଁ କାର୍ଯ୍ୟ ଆରମ୍ଭ କରିଦେଲି । ଏହି ସମୟରେ ଆମେରିକାର ବୈଜ୍ଞାନିକମାନେ ଚନ୍ଦ୍ର ଜଗତକୁ ଯାତ୍ରାକରି ୨୧-୭-୬୯ ତାରିଖରେ ଚନ୍ଦ୍ରରେ ପଦାର୍ପଣ କଲେ ଏବଂ ୨୪-୭-୬୯ ତାରିଖରେ ପୃଥିବୀକୁ ପ୍ରତ୍ୟାବର୍ତ୍ତନ କଲେ । ଏଠାରେ ଆମ୍ଭେମାନେ ଗୋଟିଏ କଥା ଅନୁଧ୍ୟାନ କରୁଅଛୁ । ୧୯୬୨ ମସିହାରେ ଦୃଢ଼ମନା ଜନ କେନେଡ଼ି ଆମେରିକାର ପ୍ରେସିଡ଼େଣ୍ଟ ହିସାବରେ ନିର୍ବାଚିତ ହେଲେ । ସେତେବେଳେ ସେ ତାଙ୍କ ଦେଶରେ ପ୍ରବୀଣ ବୈଜ୍ଞାନିକମାନଙ୍କ ସଭାରେ ସିଦ୍ଧାନ୍ତ କଲେ ଯେ ଆସନ୍ତା ଦଶ ବର୍ଷ ମଧ୍ୟରେ ସେମାନେ ଚନ୍ଦ୍ର ଜଗତରେ ନିଶ୍ଚୟ ପଦାର୍ପଣ କରିବେ । ସେତେବେଳେ ମୋ ସହିତ ସମଗ୍ର ପ୍ରାଚ୍ୟ ଭୂଖଣ୍ଡର ଅଧିବାସୀମାନେ ସେମାନଙ୍କ ଦମ୍ଭୋକ୍ତିର ପରିହାସ କରିଥିଲେ । କିନ୍ତୁ କାର୍ଯ୍ୟରେ ସେମାନଙ୍କ ଦୃଢ଼ତା ଏତେ ଗଭୀର ଥିଲା ଯେ ଦଶ ବର୍ଷ ନପୂରୁଣୁ ସାତ ବର୍ଷ ମଧ୍ୟରେ ସେମାନେ ଚନ୍ଦ୍ର ଜଗତରେ ଛିଡ଼ାହୋଇଗଲେ । ଏ ଯେପରି ଗୋଟିଏ ଭୀଷ୍ମ ପ୍ରତିଜ୍ଞା ସେହିପରି ଶିକ୍ଷକ ସଭାରେ ଉଦ୍‌ବୋଧନ ଦେଲି ଯେ ଆମ୍ଭେମାନେ ଏଠାରେ ଶପଥ ନେବା ଯେ ଆମ ଶିକ୍ଷାନୁଷ୍ଠାନକୁ ଆସନ୍ତା ପାଞ୍ଚ ବର୍ଷ ମଧ୍ୟରେ ଗୋଟିଏ ପ୍ରଥମ ଶ୍ରେଣୀ ଅନୁଷ୍ଠାନ ରୂପେ ଗଢ଼ି ତୋଳିବା । ଏଥିରେ ଆଳସ୍ୟପରାୟଣ କର୍ମକୁଣ୍ଠ ଶିକ୍ଷକମାନେ ନିଶ୍ଚୟ ପ୍ରମାଦ ଗଣିଥିବେ । କିନ୍ତୁ ମୋର ଟଳମଟଳ ସ୍ଥିତିକୁ ଏପରି ଦୃଢ଼ ସଂକଳ୍ପ ଶୋଭା ପାଇଲା ନାହିଁ । ତଥାପି ପାରୁପର୍ଯ୍ୟନ୍ତ ଚେଷ୍ଟାକରିବି ବୋଲି ମନସ୍ଥ କଲି ।

ପ୍ରଥମ ପଦକ୍ଷେପ ସ୍ୱରୂପ ବିଦ୍ୟାଳୟର ମୁଖପତ୍ର 'ଅବକାଶ' ଗାନ୍ଧୀ ଶତବାର୍ଷିକୀ ବିଶେଷାଙ୍କ ରୂପେ ପ୍ରକାଶ କଲି ଏବଂ ଶତବାର୍ଷିକୀ ପାଳନ ଉପଲକ୍ଷେ ଏକ ସାଂସ୍କୃତିକ ସମାରୋହ ୧୨-୧-୭୦ ଓ ୧୩-୧-୭୦ ଏହି ଦୁଇଦିନ ପାଳନ କରିବିବୋଲି ଶିକ୍ଷକମାନଙ୍କ ସମ୍ମତି ଅନୁଯାୟୀ ସ୍ଥିରକଲି । ଖୋରଧା ପାଇକ ବିଦ୍ରୋହର ପ୍ରଖ୍ୟାତ ସେନାପତି ବକ୍ସି ଜଗବନ୍ଧୁଙ୍କ ୧୪୧ ତମ ଶ୍ରାଦ୍ଧ ବାର୍ଷିକୀ ପ୍ରଥମ ଥର ପାଇଁ ନିଜ ସ୍କୁଲରେ ମହାସମାରୋହରେ ପାଳନ କରିବା ପାଇଁ ପ୍ରସ୍ତୁତ ହେଲି । ମୋର ଯେକୌଣସି ଯୋଜନା

ଛଅମାସ ପୂର୍ବରୁ ସ୍ଥିରୀକୃତ ହୋଇଥାଏ ।

ଗତ ଦୁଇତିନି ବର୍ଷ ସ୍କୁଲରେ ଗୋଳମାଳିଆ ପରିସ୍ଥିତି ସୃଷ୍ଟିହୋଇଥିଲା । କେତେକ ଶିକ୍ଷକ ପାଠପଢ଼ା ପ୍ରତି ସୁନଜର ଦେଉନଥିଲେ । କେତେକ ଶିକ୍ଷକ ଚାରିଟା ପୂର୍ବରୁ ଖସିଯାଉଥାନ୍ତି । ଦିବ୍ୟସିଂହବାବୁ କାହିଁକି ଶେଷ ଜୀବନରେ ଏପରି ବିଶୃଙ୍ଖଳା ସହ୍ୟ କରିଲେ ତାହା ତାଙ୍କୁ ହିଁ ଜଣା । ତେବେ ସେତେବେଳକୁ ସେ ଶିଥିଳ ହୋଇ ଯାଇଥିଲେ । ମୁଁ ଶିକ୍ଷକମାନଙ୍କ ଉପରେ ଚାପ ପକାଇଲି । ସେମାନେ ଅସହ୍ୟ ହେଲେ । ତିନିଜଣ ଶିକ୍ଷକ ମୋଠାରୁ ଅନୁମତି ନ ନେଇ ଶ୍ରେଣୀଗୃହଛାଡ଼ି ଦୁଇଟା ପରେ ଚାଲିଯାଇଥିଲେ । ମୁଁ ଜାଗ୍ରତ ପ୍ରହରୀ, ପ୍ରତି ପିରିୟଡ଼ରେ ଶିକ୍ଷକମାନଙ୍କର ଗତିବିଧି ଲକ୍ଷ୍ୟ କରୁଥାଏ । ପ୍ରତି ପିରିଅଡ଼ରେ ବିଦ୍ୟାଳୟରେ ଘୂରି ବୁଲୁଥାଏ । ସେ ଶ୍ରେଣୀ ପିଲାମାନଙ୍କ ଗୋଳମାଳ କାନକୁ ଆସିଲା । ସେଦିନ ସେମାନେ ଫେରିଲେ ନାହିଁ । ତହିଁ ପରଦିନ ସେମାନଙ୍କୁ ଅଫିସ୍‌କୁ ଡାକି ତାଗିଦ୍ କଲି । ଏହିପରି ଚାରି ଛଅଦିନ ଗଲା । ସେମାନଙ୍କ ଭିତରୁ ଜଣେ ଶିକ୍ଷାମନ୍ତ୍ରୀଙ୍କ ସଂପର୍କୀୟ ଥିଲେ । ସେତେବେଳକୁ ମୋ ଚାକିରି କାଳ ପଚିଶ ବର୍ଷ ହୋଇଗଲାଣି ଏ ସ୍କୁଲରେ । ଏଥିମଧ୍ୟରେ ଖୋର୍ଦ୍ଧାରେ ଖଣ୍ଡିଏ ପକ୍କା ଗୃହ ନିର୍ମାଣ କରିଥିଲି । ଘରୋଇ ସ୍କୁଲ ଥିଲାବେଳେ ବଦଳି ନଥିଲା । କେବଳ ସଂପୃକ୍ତ ଶିକ୍ଷକମାନେ ଯେ ମୋ ବିରୁଦ୍ଧରେ ଲାଗିଗଲେ ତାହା ନୁହେଁ ଅନ୍ୟମାନଙ୍କ ଭିତରେ ଭିତରେ ଷଡ଼ଯନ୍ତ୍ର ରହିଲା । ମୋ ଅପେକ୍ଷା ଜଣେ ନରମ ମାଲିକ ସେମାନେ ଖୋଜୁଥିଲେ । ୧୯୬୯ ମସିହା ବେଳକୁ ଏଠା ଶିକ୍ଷକମାନଙ୍କର କର୍ମନୈପୁଣ୍ୟ କମିକମି ଆସିଲାଣି, ଏହି ସମୟରେ ମୋ ଦୁର୍ଭାଗ୍ୟକୁ ରାଜ୍ୟସାରା ଛାତ୍ର ଧର୍ମଘଟ ଦୁଇମାସ ପର୍ଯ୍ୟନ୍ତ ଲାଗିରହିଲା । ''କଙ୍କଡ଼ାକୁ ଗୋଳିପାଣି ସୁହାଇଲା ।'' ବିଦ୍ୟାଳୟ ବନ୍ଦ ରହିଲା । ପିଲାମାନଙ୍କୁ ଉତ୍ତମରୂପେ ଶିକ୍ଷାଦାନ କରିବାର ସୁଯୋଗ ନଥିଲା । ତଥାପି ସ୍କୁଲ ଖୋଲିବା ପରେ ଦୁଇମାସ ପର୍ଯ୍ୟନ୍ତ ପାଠପଢ଼ା ଚାଲିଲା । କିନ୍ତୁ ଧୂର୍ତ୍ତମାନେ ଭିତରେ ଷଡ଼ଯନ୍ତ୍ର ଚଳେଇଥାନ୍ତି । ଏଠାକାର ଛୋଟକାଟିଆ ନେତାଙ୍କୁ ଧରି ଚାଲିଲେ । ମୁଁ ଏ ସବୁର କିଛି ସୁରାକ ପାଉନଥାଏ ।

ଏଥିମଧ୍ୟରେ ଆଉ ଗୋଟିଏ ଘଟଣା ଘଟିଲା । ଜଣେ ସନ୍ୟାସୀ ହାବେଲିଠାରେ ଏକଗୋଡ଼ରେ ଦଣ୍ଡାୟମାନ ରହି ନ ଖାଇ ନ ପିଇ ଠାକୁର ଆରାଧନା କରୁଥାଆନ୍ତି । ଜଣେ ଶିକ୍ଷକ ଭକ୍ତ ଆସି ମୋତେ କହିଲେ, ''ଆଜ୍ଞା, ମୁଁ ବାବାଜୀଙ୍କ ପାଖକୁ ଯିବି । ତିନି ଚାରି ଦିନ ଆସିବି ନାହିଁ, ଯେଉଁଦିନ ଆସିବି ସବୁଦିନ ପାଇଁ ଦସ୍ତଖତ କରିଦେବି ।'' ମୁଁ କହିଲି, ''ଏହା ଗୋଟିଏ ଖରାପ ପରମ୍ପରା ସୃଷ୍ଟି କରିବ, ତାହା ମୁଁ କରେଇବି କିପରି ?

ଆପଣଙ୍କୁ ଏତିକି ସୁବିଧା ଦେବି ଆପଣ ପ୍ରତିଦିନ ଆସି ଦସ୍ତଖତକରି ପ୍ରଥମ ପିରିଅଡ଼ପରେ ଗଲେ ଚଳେଇ ଦେଇ ହେବ ।'' କିନ୍ତୁ ସେହିଦିନଠାରୁ ମୋ ଉପରେ ସେ ରାଗ ରଖିଲେ । ସେମାନଙ୍କ ସଙ୍ଗେ ମିଶିଗଲେ । ଦୁଷ୍ଟଶକ୍ତିର ବଳ ଅଧିକ ହେଲା । ସମସ୍ତ ବିପଦର ସମ୍ମୁଖୀନ ହେବି ବୋଲି ନିଷ୍ପତ୍ତି ନେଲି । ତେବେ ମୁଁ ଅନ୍ତତଃ ଏଠାରେ ଦୁଇ ତିନିବର୍ଷ ଥିଲେ ମୋର ପାରଦର୍ଶିତା ଲୋକେ ଦେଖି ପାରିଥାଆନ୍ତେ । ଦେଖାଯାଉ ଭାଗ୍ୟରେ କ'ଣ ଅଛି ?

ଡିସେମ୍ବର ମାସ ପ୍ରଥମ ସପ୍ତାହରେ ଟେଷ୍ଟ ପରୀକ୍ଷା ଚାଲିଥିବାବେଳେ ମୋର ବଦଳି ଆଦେଶ ଆସି ପହଞ୍ଚିଗଲା । ମୁଣ୍ଡରେ ଚଡ଼କ ପଡ଼ିଲା । ଘରର ଜନସଂଖ୍ୟା ଏଗାର । ଏତେ ଗୁଡ଼ାଏ ଲୋକଙ୍କୁ ଚଳେଇବା କଷ୍ଟକର ବ୍ୟାପାର । ମାସକୁ ଦରମା ଦୁଇଶହ ପଞ୍ଚାଅଶୀ ଟଙ୍କା । ସେତେବେଳର ବଜାର ଦରରେ ଏତେଲୋକଙ୍କୁ ଚଳାଇବା କାଠିକର ପାଠ । ପରିବାର ନିୟନ୍ତ୍ରଣର ହାଉଆ ବୋହିଲା ବେଳକୁ ମୋ ପରିବାରକୁ ଚାରିପୁଅ ଦୁଇଝିଅ ଆସିଗଲେଣି । ବଜାର ଦରପ୍ରତି ଲକ୍ଷ୍ୟ ରଖିଲେ ଦରମା ଏକପ୍ରକାର ଥିଲା । କେବଳ ବହୁକୁଟୁମ୍ବୀ ହେତୁ ଯାହା ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । କଥାରେ ଅଛି,''ସ୍ତ୍ରୀମାନଙ୍କର ପୁରୁଷମାନଙ୍କ ଅପେକ୍ଷା ସରସ ବୁଦ୍ଧି ।'' ଏହି ଉକ୍ତିଟି ମୋ ପକ୍ଷେ ପ୍ରମାଣିତ ହୋଇଥିଲା । ବୁଦ୍ଧିମତୀ ସ୍ତ୍ରୀ ସହାୟରେ ମୁଁ ସକଳ ବାଧାବିଘ୍ନ ଅତିକ୍ରମ କରୁଥିଲି ।

୧୯୬୯-୭୦ ମସିହାରେ ବଜାରଦର ଏପରି ଥିଲା –

| | | |
|---|---|---|
| ସୋରିଷତେଲ | ୧ କେ.ଜି. | ଟ. ୪.୦୦ |
| ସୋରିଷ | ୧ କେ.ଜି. | ଟ. ୨.୦୦ |
| ଜିରା | ୧ କେ.ଜି. | ଟ. ୬.୦୦ |
| ଗୋଟା ବିରି | ୧ କେ.ଜି. | ଟ. ୧.୧୫ |
| ହଳଦୀ | ୧ କେ.ଜି. | ଟ. ୫.୫୦ |
| ଧନିଆ | ୧ କେ.ଜି. | ଟ. ୧.୫୦ |
| ନଡ଼ିଆ ତେଲ | ୧ କେ.ଜି. | ଟ. ୭.୫୦ |
| ବାଦାମ ତେଲ | ୧ କେ.ଜି. | ଟ. ୪.୨୫ |

| | | |
|---|---|---|
| ଫୁଟଣ | ୧ କେ.ଜି. | ଟ. ୪.୦୦ |
| ଗୁଆ | ୧ କେ.ଜି. | ଟ. ୯.୦୦ |
| ଲଙ୍କା | ୧ କେ.ଜି. | ଟ. ୪.୫୦ |
| ବୁଟ ବେସନ | ୧ କେ.ଜି. | ଟ. ୩.୫୦ |
| ମୁଗଡାଲି | ୧ କେ.ଜି. | ଟ. ୧.୯୦ |
| ଗୁଡ଼ | ୧ କେ.ଜି. | ଟ.୧.୬୦ |
| ଲୁଣ ବସ୍ତା | ୪୦ କେ.ଜି. | ଟ. ୯.୫୦ |
| ଖଇର | ୧ କେ.ଜି. | ଟ. ୩.୦୦ |
| ସନଲାଇଟ ସାବୁନ | ୧ଟା | ଟ. ୦.୫୫ |
| ଲାଇଫବଏ ସାବୁନ | ୧ଟା | ଟ. ୦.୬୫ |
| ଚା’ | ୧୦୦ଗ୍ରାମ | ଟ. ୧.୦୮ |
| ଦିଆସିଲି | ୧୨ଟା | ଟ. ୦:୮୮ |

ଉକ୍ତ ଦର ୧୯୬୭ ମସିହାରେ ଖୋରଧା ବଜାରରେ ଥିଲା । ୧୯୬୯-୭୦ ମସିହା ପର୍ଯ୍ୟନ୍ତ ଏହି ଦର ସ୍ଥିରଥିଲା । ପୂର୍ବେ ଦରଦାମ୍ କିଛି ବର୍ଷ ସ୍ଥିର ହୋଇ ରହୁଥିଲା । ଏବେ ପ୍ରତିଦିନ ଦର ପରିବର୍ତ୍ତନ ଘଟୁଛି । ବିଶେଷତଃ ଇନ୍ଦିରା ଗାନ୍ଧୀଙ୍କ ଦ୍ୱିତୀୟବାର ୧୯୮୦ ମସିହାରେ ରାଜନୀତିକୁ ପ୍ରତ୍ୟାଗମନ ପରେ ଦରଦାମ୍ ହୁହୁ ହୋଇ ବଢ଼ିଗଲା । ତାର ଗତିରୋଧ କରାଯାଇ ପାରୁନାହିଁ । ଦରଦାମ୍‌ରେ ପର ଲାଗିଲା ପରି ଲୋକେ ଅନୁଭବ କରୁଛନ୍ତି । ଏମ.ଏ.ପାସ୍ କରିବା ପରଠାରୁ ମୁଁ ଟିଉସନ ତ୍ୟାଗ କରିଥିଲି, ଏବେ ହେଡମାଷ୍ଟର ନାମଧାରୀ ହେବାରୁ ଆଦୌ ଟିଉସନ କଲି ନାହିଁ । ଏବର୍ଷ ମାଟ୍ରିକୁଲେସନ ପରୀକ୍ଷାରେ ବା ବୋର୍ଡ଼ କର୍ତ୍ତୃପକ୍ଷ ମୋତେ ଇଂରଜୀରେ ପ୍ରଧାନ ନିରୀକ୍ଷକ ରୂପେ ନିଯୁକ୍ତି ଦେଲେ । ମୁଁ ପ୍ରଧାନ ଶିକ୍ଷକର ଦରମା ପାଉନଥିଲି ମାତ୍ର ସକଳ କ୍ଷେତ୍ରରେ ପ୍ରଧାନ ଶିକ୍ଷକ ଥିଲି । ହଠାତ୍ ମୋର ବଦଳି ଆଦେଶ ‘‘ବିନା ମେଘେ ବ୍ରଜପାତ’’ ସଦୃଶ ହେଲା । ତେବେ ପୂର୍ବରୁ ଶିକ୍ଷକମାନଙ୍କ ସଭାରେ ୧୯୭୦ ଜାନୁଆରୀ ମାସରେ କେତେଗୁଡ଼ିଏ ଉତ୍ସବ ପାଳନ କରିବା ପାଇଁ ସର୍ବସମ୍ମତି କ୍ରମେ ସ୍ଥିର ହୋଇଥିଲା । ଏବେ ଚାଲିଗଲେ ସବୁ ଫସର ଫାଟିଯିବ । କଥାରେ ଅଛି ‘ଆଗତ ପଞ୍ଚା ସବୁ କଞ୍ଚା’ । ତେଣୁ

ବଦଳି ଆଦେଶ ଅସିଲେ ମଧ ଅନ୍ତତଃ ପକ୍ଷେ ଆଉ ଦୁଇମାସ ଏଠାରେ ଅବସ୍ଥାନ କରି ପୂର୍ବ ନିଷ୍ପତ୍ତି ଉତ୍ସବ ପାଳନ କରିବି ବୋଲି ସ୍ଥିର କଲି । ତେଣୁ ବ୍ୟକ୍ତିଗତ ଅସୁବିଧା ବର୍ଣ୍ଣନାକରି ଡି.ପି.ଆଇ. ମହୋଦୟଙ୍କୁ ଏକ ପତ୍ର ପ୍ରେରଣ କଲି । ବଦଳି ଆଦେଶ ଭଗବାନଙ୍କର ନିର୍ଦ୍ଦେଶ ବୋଲି ମନେକଲି ।

'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟଗତି ନାହିଁ ।'

ତଥାପି ଭଗବାନଙ୍କ ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ଛାର ମନୁଷ୍ୟ ପଛାଏ ନାହିଁ । ସେତେବେଳକୁ ସରକାର ଆମ୍ଭମାନଙ୍କ ପାଇଁ କିଛି ଚାକିରି ସର୍ତ୍ତ ଠିକ୍ କରିନଥିଲେ । ଏହି ସମୟରେ ପୁରୀ ଶିକ୍ଷା ସର୍କଲ ଇନ୍‌ସପେକ୍ଟର ବାବୁ ଗୋପାଳ ପଟ୍ଟନାୟକ ଖୋର୍ଦ୍ଧା ଡି.ଆଇ. ଅଫିସ ପରିଦର୍ଶନ କରିବାକୁ ଆଗମନ କରିଥିଲେ । ଆମ ସ୍କୁଲର ପ୍ରଭାବଶାଳୀ ଶିକ୍ଷକ ଶୈଳେନ୍ଦ୍ରବାବୁ ସେତେବେଳେ ନିଖିଳ ଉତ୍କଳ ବେସରକାରୀ ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ଥିଲେ ଏବଂ ଏକଦା ଗୋପାଳବାବୁଙ୍କ ସହପାଠୀ ଥିଲେ । ନିର୍ଭୟରେ ଗୋପାଳବାବୁଙ୍କୁ ପ୍ରଶ୍ନକଲେ, ''ଆମର ଚାକିରି ସର୍ତ୍ତ କିଛି ଠିକ୍ ନକରି ବଦଳି ଅର୍ଡ଼ର ଦେଇଛ କାହିଁକି ?'' ଗୋପାଳବାବୁ ଅବିଚଳିତ ହୋଇ ଉତ୍ତର ଦେଲେ, ''ମୁରଲୀ ବାବୁଙ୍କୁ ତ ତଳକୁ ଠେଲି ଦିଆଯାଉ ନାହିଁ ? ସରକାରଙ୍କ ନୀତି ଅନୁଯାୟୀ ସେ ହେଡ଼ମାଷ୍ଟର ହେଉଛନ୍ତି । ଏତେ କ୍ରୋଧ କାହିଁକି ? ତାଙ୍କୁ ତଳକୁ ଖସାଇବାର ଇଚ୍ଛା ଥିଲେ ତାଙ୍କୁ ଏଇଠି ରଖିଥାନ୍ତୁ ।'' ସେଦିନ ଶୈଳେନ୍ଦ୍ରବାବୁ ତାଙ୍କୁ ଯେପରି ଝାଡ଼ିଦେଲେ ମୁଁ ଅବଶ୍ୟ ତଟସ୍ଥ ହୋଇଗଲି । ସେଇଥିରେ କ'ଣ ମୋ କାମ ସମାଧାନ ହୋଇଗଲା ? ଯେତେହେଲେ ସେ ସରକାରୀ ବଳରେ ବଳୀୟାନ । ''ଜଳରେ ବାସକରି କୁମ୍ଭୀର ସଙ୍ଗେ କଳି କଲେ କ'ଣ ହେବ ?''

## ନିରାକାରପୁର ଯିବାପାଇଁ ପ୍ରସ୍ତୁତି :

ଦୁଇମାସ ଭିତରେ ନିରାକାରପୁର ଯିବାପାଇଁ ସଜବାଜ ହେଲି । ଅଗଣାରେ କଳେଇଗୁଡ଼ିକ ଗଦାମରା ହୋଇଥିଲା । ଶୀଘ୍ର ବେଙ୍ଗଳା ପକେଇବାକୁ ବନ୍ଦୋବସ୍ତ କଲି । ଖୋର୍ଦ୍ଧା ଜାଗାରୁ ଅତି ଶସ୍ତାରେ ୮ ଗୁଣ୍ଠ (ଗୁଣ୍ଠ ଟ. ୨୦୦-୦୦) ଜମି ବିକିଦେଇ ଯାହାର ଯାହା ବାକୀ ବୁକୁରା ଥିଲା ପରିଶୋଧ କରିବା ପାଇଁ ଚେଷ୍ଟିତ ହେଲି । ଏବେ ଗୁଣ୍ଠକର ଦାମ୍ ଷାଠିଏ ହଜାର ହେଲାଣି, ଥିଲେ କେତେ ଉପକାର ହୋଇ ନଥାନ୍ତା ? ସବୁବେଳେ ମୁଁ ପଛବୁଦ୍ଧିଆ । ୧୨-୧-୭୦ ଓ ୧୩-୧-୭୦ ଏହି ଦୁଇଦିନ ଗାନ୍ଧୀ ଶତବାର୍ଷିକୀ ଉତ୍ସବ ପାଳନ କରେଇଲି । ପ୍ରଥମ ଦିନ ପୁରୀ କଲେଜର ଅଧାପକ ବାଗ୍ମୀ

ହୃଦାନନ୍ଦ ରାୟ ଓ ସର୍କଲ ଇନ୍‌ସପେକ୍ଟର ଯଥାକ୍ରମେ ସଭାପତି ଓ ମୁଖ୍ୟ ଅତିଥି ରୂପେ ଓ ଦ୍ୱିତୀୟ ଦିନ ପ୍ରଜାତନ୍ତ୍ରର ସମ୍ପାଦକ ଶ୍ରୀ ଶ୍ରୀହର୍ଷ ମିଶ୍ର ସଭାପତି ଓ ମୁଖ୍ୟ ଅତିଥି ରୂପେ ଇଷ୍ଟର୍ଣ୍ଣ ଟାଇମସ୍‌ର ସୁଯୋଗ୍ୟ ସଂପାଦକ ବାବୁ ଜାନକୀବଲ୍ଲଭ ପଟ୍ଟନାୟକ ଯୋଗଦେଇ ଛାତ୍ର ଓ ଶିକ୍ଷକମାନଙ୍କୁ ସେମାନଙ୍କର ସାରଗର୍ଭକ ଭାଷଣ ପ୍ରଦାନ କଲେ । ଉତ୍ସବଟି ସୁଚାରୁରୂପେ ପାଳିତ ହେଉଥିବାରୁ ମନରେ ଆନନ୍ଦ ଢେଉ ଖେଳିଗଲା । ମାତ୍ର ଖୋର୍ଦ୍ଧା ହାଇସ୍କୁଲରେ ମୋର ଦିନକାଳ ସରି ସରି ଆସୁଥିଲା । ହେଲେହେଁ ମୁହୂର୍ତ୍ତେ ରହିଲେ ମଧ୍ୟ କର୍ତ୍ତବ୍ୟରୁ ବିଚ୍ୟୁତ ହେଲି ନାହିଁ । ଏହା ମୋର ସହଜାତ ପ୍ରବୃତ୍ତି । ପୁନଃ ୨୪-୧-୭୦ ତାରିଖରେ ବିଦ୍ୟାଳୟ ପରିସରରେ ଖୋର୍ଦ୍ଧା ପାଇକ ବିଦ୍ରୋହ ପ୍ରଖ୍ୟାତ ଯୋଦ୍ଧା ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କର ୧୪୧ତମ ଶ୍ରାଦ୍ଧବାର୍ଷିକୀ ଓଡ଼ିଶା ପ୍ରଦେଶରେ ସର୍ବ ପ୍ରଥମେ ପାଳନ କରାଇ ଖୋର୍ଦ୍ଧାର ପୂର୍ବ ଗୌରବକୁ ଉଜ୍ଜୀବିତ କରାଇ ଖୋର୍ଦ୍ଧା ହାଇସ୍କୁଲର ଛାତ୍ର ତଥା ଶିକ୍ଷକମାନଙ୍କ ସମ୍ମୁଖରେ ଉପସ୍ଥାପନ କରାଇଥିଲି । ଏହି ପରିପ୍ରେକ୍ଷୀରେ ଜାନୁଆରୀ ୨୬ ତାରିଖରେ ପାରମ୍ପରିକ ଭାବେ ବିଦ୍ୟାଳୟ ସମ୍ମୁଖ ପ୍ରାଙ୍ଗଣରେ ୨୦ତମ ଗଣତନ୍ତ୍ର ଦିବସ ଉପଲକ୍ଷେ ଛାତ୍ର ଶିକ୍ଷକଙ୍କ ଗହଣରେ ଜାତୀୟ ପତାକା ଉତ୍ତୋଳନ କଲି ଏବଂ ଛାତ୍ରମାନଙ୍କ ଗହଣରେ ଶୋଭାଯାତ୍ରାରେ ଅଂଶ ଗ୍ରହଣକରି କଚେରି ହତା ପରିସରରେ ବିରାଟ ଛାତ୍ର ମେଳାରେ ଯୋଗ ଦେଇଥିଲି । ଏତିକିରେ ମୋର କାମ ଶେଷ ହେଲାନାହିଁ । ସରକାର ବାହାଦୁର ମୋତେ ଏକ ମାସ ଛୁଟି ମଞ୍ଜୁର କରିଥିଲେ । ତାକୁ ସମ୍ମୁଖରେ ରଖି ନିର୍ଦ୍ଦିଷ୍ଟ ଦିନକୁ ଅପେକ୍ଷା କରିଥାଏ । ପୁନଃ ଆସି ପହଞ୍ଚିଲା ଓଡ଼ିଶା ରାଜ୍ୟର ପ୍ରାଣପ୍ରତିଷ୍ଠାତା ସ୍ୱନାମଧନ୍ୟ, ଜାତୀୟ ଗୌରବ ପ୍ରତିଭାଧାରୀ ବାଗ୍ମୀ ମଧୁସୂଦନ ଦାସଙ୍କ ଷଡ଼ତ୍ରିଂଶତତମ ଶ୍ରାଦ୍ଧ ଦିବସ । ଏହି ଶ୍ରାଦ୍ଧ ଫେବୃଆରୀ ମାସ ଚାରି ତାରିଖରେ ପଡ଼ିଥାଏ । ସେ ଶ୍ରାଦ୍ଧ ଦିବସରେ ସଭାପତିତ୍ୱ ଆସନ ଗ୍ରହଣ କରି ସର୍ବ ସମକ୍ଷରେ ମଧୁବାବୁଙ୍କର ବହୁମୁଖୀ ପ୍ରତିଭାର ବିଶଦ ଆଲୋଚନା କରି ଦେଶପ୍ରେମରେ ସମସ୍ତଙ୍କୁ ଉଦ୍‌ବୁଦ୍ଧ କଲି । ବିଦ୍ୟାଳୟ ଛାଡ଼ିବା ପର୍ଯ୍ୟନ୍ତ ପାଠପଢ଼ା ପ୍ରତି ନଜର ଦେଇଥାଏ । ଏଥିମଧ୍ୟରେ ଟେଷ୍ଟ ପରୀକ୍ଷାର ଫଳ ଅନୁଧ୍ୟାନ କରି ଉଚିତ ସଂଖ୍ୟକ ପରୀକ୍ଷାର୍ଥୀଙ୍କୁ ବୋର୍ଡ଼ ପରୀକ୍ଷା ନିମନ୍ତେ ପ୍ରେରଣ କଲି । ଏଥିମଧ୍ୟରେ ମୋ ପରବର୍ତ୍ତୀ ବନବାବୁ ୯ ତାରିଖରେ ମୋଠାରୁ ଦାୟିତ୍ୱ ଗ୍ରହଣ କଲେ । ମୁଁ ନିରାକାରପୁର ଯିବା ପାଇଁ ପ୍ରସ୍ତୁତ ହୋଇଗଲି । କେତେକ ଖଳ ଶିକ୍ଷକଙ୍କ କୁମନ୍ତ୍ରଣାରେ ବିଦ୍ୟାଳୟ ତରଫରୁ ମୋତେ ବିଦାୟ ସଭାରେ ଉପଯୁକ୍ତ ସମ୍ମାନ ପ୍ରଦର୍ଶନ ନ କରିବାର ମୁଁ ଅନୁଭବ କଲି ।

'କଥାରେ ଅଛି ସୁଧାରିଆ ଗାଈର ବାଛୁରୀ ମରେ ।' ବନବିହାରୀବାବୁ ସ୍କୁଲକୁ କେଉଁ ଉପରକୁ ଉଠାଇ ଦେବେ, ମୁଁ ପାରିବି ନାହିଁ ? ପୂର୍ବରୁ ମୁଁ ବନବିହାରୀ ବାବୁଙ୍କୁ ଭଲ ଭାବରେ ଜାଣିଥିଲି । ତାଙ୍କର ପରାକ୍ରମ ବିଷୟରେ ଅବଗତ ଥିଲି । ତେବେ ସେ ଅପେକ୍ଷାକୃତ ନରମ ମାଲିକ ହେବେ ବୋଲି ମୋର ଧାରଣା ହେଲା । 'ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ' ବୋଲି ଏହି ଆପ୍ତବାକ୍ୟ ସମାଜରେ ପ୍ରଚଳିତ । ମାଷ୍ଟରଲୋକ ଯେଉଁଠିକି ଗଲେ ସେହି କାମ କରିବ । ଏଠାରେ ରହିଲେ କୋଉ ଦୋଳି ଖେଳିବି, ସେଠାକୁ ଗଲେ କୋଉ ମାଟି ହାଣିବି ? ଖୋରଧା କୋଉ ସ୍ୱର୍ଗଭୂମି, ନିରାକାରପୁର କେଉଁ ମର୍ତ୍ତ୍ୟଭୂମି ? ଏହିପରି ନାନା କଥା ମନରାଜ୍ୟରେ ଉଭାହେଲା ।

ପ୍ରବାଦ ଅଛି "କୁମ୍ଭାର ଘର ବୋହୂ ଝାଟିକୁ ନଗଲେ ମାଟିକୁ ଯାଉ ।" ସେହି ଏକା କାମ । ତେବେ ଗୋଟିଏ ଜାଗାରେ ଏତେଦିନ ରହିବା ଦ୍ୱାରା ମାୟାମମତା ଲାଗିଯାଇଥିଲା । ଏକ ପ୍ରକାର ଜୀବନ କ'ଣ ମନୁଷ୍ୟ ସବୁବେଳେ ପାଇବ ? ଜୀବନ ମାତ୍ରେ ସୁଖ-ଦୁଃଖଭରା । ତେବେ ଏତେ ଭୟ କରିବି କାହିଁକି ? ମୁଁ ତ କଷଟିପଥରରେ କଷା ହୋଇଛି । ଯେତେ ଝଡ଼ଝଞ୍ଜା ବୋହିଲେ ମଧ ପାରିବି ବୋଲି ମୋର ଦୃଢ଼ତା ଅଛି ।

"ଡର କାହାକୁ, ଭୟ କାହାକୁ, ଠାକୁର ଅଛନ୍ତି ଚଉବାହାକୁ । "

ଏତେ ଆଣ୍ଠ ବାନ୍ଧିଲି ସିନା ଯେତେ ହେଲେ ନୂଆ ଜାଗା, ଅପରିଚିତ ଜାଗା, ନୂଆ ପରିବେଶ, ପୁଣି ମଫସଲ ଜାଗା ! ଗାଁଟାଉଟର, ଗାଁ ମାମଲତକାରିଆ ଲୋକଙ୍କ ଅଭାବ ନଥାଏ । ସେମାନଙ୍କ ମନନେଇ କାମ କରିବାକୁ ପଡ଼ିବ । ଏହିପରି ଚିନ୍ତାକରି ତହିଁ ଆରଦିନ ବସନ୍ତ ପଞ୍ଚମୀ ୧୦-୨-୭୦ ତାରିଖରେ ଖୋର୍ଦ୍ଧା ସ୍କୁଲର ଜଣେ ସହକର୍ମୀ ବାବୁ ହାଡ଼ିବନ୍ଧୁ ସାହୁଙ୍କ ସହିତ ସ୍ଥାନ ଅଟକଳ କରିବା ପାଇଁ ରେଳଯୋଗେ ଯାତ୍ରାକଲି । ସେତେବେଳେ ରାଜପଥରେ ସେ ଗ୍ରାମକୁ କୌଣସି ଯାନ ଯାତାୟାତ କରୁନଥିଲା । ପୂର୍ବରୁ ନିରାକାରପୁର ଯିବା କେବେ ଆବଶ୍ୟକ ପଡ଼ି ନଥିଲା । ଖୋର୍ଦ୍ଧାପରି ଟାଙ୍ଗରା ପାହାଡ଼ିଆ ଜାଗା । ନାଲିମାଟି, ପଶ୍ଚିମ ଦିଗରେ ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ଚିତ୍ରକୂଟ ପାହାଡ଼ର କମନୀୟ ଦୃଶ୍ୟ ଲୋକଲୋଚନକୁ ଆସେ । ମରାଳ ମାଳିନୀ ନୀଳାମ୍ବୁ ଚିଲିକାରୁ ସାଇଁ ସାଇଁ ଥଣ୍ଡାପବନ ବୋହି ଆସୁଥିବାରୁ ନିଦାଘ ସମୟରେ ଗରମ ବିଶେଷ ଅନୁଭୂତ ହୁଏନାହିଁ । ପ୍ରାକୃତିକ ପରିବେଶ ଅତୀବ ରମଣୀୟ । ହାଡ଼ିବନ୍ଧୁଙ୍କ ଘର ସେହି ଅଞ୍ଚଳରେ । ସେ ଅଞ୍ଚଳର କେତେକ ମୁଖିଆ ଲୋକଙ୍କ ସହିତ ମୋର

ପରିଚୟ କରାଇଦେଲେ । ସେମାନଙ୍କ ସହିତ ଆଳାପ ଆଲୋଚନା ହେଲା । ମୋର ସ୍ଥିତି ଠଉରେଇ ନେଲି । ତତ୍ପରେ ବିଦ୍ୟାଳୟ ହତା ପରିସରକୁ ପ୍ରବେଶ କଲି । ଶ୍ରୀପଞ୍ଚମୀ ହେତୁ ସେଠିକାର ଛାତ୍ରାବାସର ଅନ୍ତେବାସୀମାନେ ସାତ୍ତ୍ୱିକ ଭୋଜନର ବ୍ୟବସ୍ଥା କରିଥିଲେ । ଶିକ୍ଷକ ବନ୍ଧୁମାନଙ୍କର ଓ କିରାଣି ବାବୁ ଚିନ୍ତାମଣି ଦାସଙ୍କର ଆଦର କହିଲେ ନସରେ । ନ ଖୁଆଇ ଛାଡ଼ିଲେ ନାହିଁ । ପୁଣି ପ୍ରସ୍ଥାନ ସମୟରେ କୃଷ୍ଣବାବୁ ଖଣ୍ଡିଏ ରେଳ ଟିକଟ କାଟିଦେଲେ ଏବଂ ମୋତେ ବିଦାୟ ଦେବା ପାଇଁ ଷ୍ଟେସନକୁ ଆସିଲେ ।

ଇଂରାଜୀରେ କଥାଟିଏ ଅଛି–"First impression lasts long" ଖୋରଧାରେ ଏତେ ବର୍ଷ ରହିଲି । ଖୋରଧା ହାଇସ୍କୁଲର ଗୌରବ ପୂର୍ବ ପରମ୍ପରା ଫେରାଇ ଆଣିବା ପାଇଁ ପ୍ରାଣପ୍ରଣେ ଚେଷ୍ଟା କରିଥିଲି । କିନ୍ତୁ ଏ ଆଦରର କାଣିଚାଏ ମିଳି ନଥିଲା । ସେ ଦିନ ରେଳରେ ଜଟଣୀ ଯାତ୍ରାକରି ବସ୍ ଯୋଗେ ଖୋର୍ଦ୍ଧା ପ୍ରତ୍ୟାଗମନ କଲି ।

## ନିରାକାରପୁର ଗମନ :

ନିରାକାରପୁର ହାଇସ୍କୁଲରେ ଯୋଗଦେବା ପାଇଁ ସମସ୍ତ ଆୟୋଜନ କଲି । ଖୋର୍ଦ୍ଧା ହାଇସ୍କୁଲ ପ୍ରତି ମମତାରେ ପୂର୍ଣ୍ଣଚ୍ଛେଦ ପଡ଼ି ପଡ଼ି ଆସୁଥିଲା । ଟ୍ରକରେ ସମସ୍ତ ଜିନିଷପତ୍ର ପଠାଇ ଏକ ମାଟାଡ଼ୋର ସାହାଯ୍ୟରେ ୧୮-୦୨-୭୦ ତାରିଖରେ ପୂର୍ବାହ୍ଣ ଆଠଘଟିକାରେ ପ୍ରଧାନ ଶିକ୍ଷକ ବାସଗୃହରୁ ବାହାରି ପଡ଼ିଲି । ମୋର ଦୁଇଜଣ ବନ୍ଧୁ ବାବୁ ଶୈଳେନ୍ଦ୍ର କୁମାର ଦାସ ଓ ବାବୁ କାଶୀନାଥ ପ୍ରଧାନ ମୋତେ ବାଟେଇ ଦେବା ପାଇଁ ମୋ ପାଖେ ଉପସ୍ଥିତ ହେଲେ । ଭାରୀ ହୃଦୟରେ ମାଟାଡ଼ୋରରେ ବସିଲେ । ଖୋର୍ଦ୍ଧାକୁ ପଛରେ ପକାଇଦେଇ ଗାଡ଼ିଟା ଆଗକୁ ଆଗକୁ ମାଡ଼ି ଚାଲିଲା । ଗାଡ଼ିଟା ସିନା ଆଗକୁ ଆଗକୁ ଯିବାରେ ଲାଗିଲା ମନଟା ପଛକୁ ପଛକୁ ଦୃଷ୍ଟି ଫେରାଇବାରେ ଲାଗିଲା । ଖୋରଧା ମୋର ପ୍ରିୟ ଭୂଇଁ ଥିଲା । ତା'ର ପାଣି, ତା'ର ପବନ, ତା'ର ବିଲବାଡ଼ି, ତା'ର ପାହାଡ଼ ଜଙ୍ଗଲ, ନଦ ନଦୀ ମୋର ଅତ୍ୟନ୍ତ ପ୍ରିୟ ଥିଲା । ମୋ ପୂର୍ବପୁରୁଷମାନଙ୍କ ଖୋର୍ଦ୍ଧା ଥିଲା ରଙ୍ଗଭୂମି । ଗଙ୍ଗପଡ଼ା ଯୁଦ୍ଧରେ ସେମାନେ ବ୍ରିଟିଶ ବିରୁଦ୍ଧରେ ଲଢ଼େଇ କରି ସେମାନଙ୍କର ଶେଷ ସମର ଇଚ୍ଛା ଚରିତାର୍ଥ କରିଥିଲେ । ସେହି ଖୋରଧା ଭୂଇଁକୁ ଭଲ ପାଉଥିବାରୁ ସବୁ ଚାକିରିକୁ ଜଳାଞ୍ଜଳି ଦେଇ ରକ୍ତରଞ୍ଜିତ ଲାଲ ମାଟିରେ ଅଟକିଗଲି । ରହୁ ରହୁ ସମୟସୀମା ଜାଣି ପାରିଲି ନାହିଁ । ପଚିଶ ବର୍ଷ କାଳ ସ୍ଥାନର ମୋହ ଏଡ଼ି ପାରିଲି ନାହିଁ । ଜୀବନର ମୂଲ୍ୟବାନ

ସମୟ ଖୋରଧା ହାଇସ୍କୁଲ ସେବାରେ ବ୍ୟୟିତ ହେଲା । ଛାଡ଼ିଗଲାବେଳେ ଏହାର ଐଶ୍ୱର୍ଯ୍ୟମୟ ସକଳ ବିଭବ ଆଖିଆଗରେ ନାଚି ଉଠିଲା । ଯାତ୍ରା କଲାବେଳେ ଧୀରେ ଗାଡ଼ି ଚଳେଇବାକୁ ଡ୍ରାଇଭରକୁ ନିର୍ଦ୍ଦେଶ ଦେଲି । ପ୍ରଥମେ ଗାଡ଼ି ମୋର ଚିରବନ୍ଦିତ ଜୟୀରାଜଗୁରୁ ଛାତ୍ରାବାସ ପୂର୍ବ ପ୍ରାନ୍ତରେ ଯାତ୍ରାକରି ନୟାଗଡ଼ ରୋଡ଼ ଉପରକୁ ଉଠିଲା । ପୂର୍ବ ଦିଗକୁ କିଛିପଥ ଅତିକ୍ରମ କରି ଖୋର୍ଦ୍ଧା ଡାକ୍ତରଖାନା ସୀମାକୁ ସ୍ପର୍ଶକଲା । ଏହା ଏକ ପୁରାତନ ଚିକିତ୍ସାଳୟ । ପରେ ଜାତୀୟ ବୀର ଗୋପବନ୍ଧୁଙ୍କ ନାମରେ ନାମିତ ହୋଇଛି ।

'ଖୋରଧା ଦର୍ପଣ'ରୁ ଜଣାଯାଏ ୧୮୩୮ ମସିହାରେ ଓ୍ୱାବିଲ ସାହେବ ଏସ୍.ଡି.ଓ. ରୂପେ ଯୋଗ ଦେଇଥିଲେ । ଦିନେ ରାତ୍ରିକାଳରେ ସାହେବ ନିଘୋଡ଼ ନିଦରେ ଶୟନ କରିଥିବାବେଳେ ଜଣେ ଆତତାୟୀ ତାଙ୍କ ବେକକୁ ସମାନ ଦୁଇଖଣ୍ଡକରି କାଟିଦେବା ପାଇଁ ଆଘାତ କରିଥିଲା, ସୁଦକ୍ଷ ଡାକ୍ତର ଜଗନ୍ନାଥ ଚରଣ ମହାନ୍ତି ବେକକୁ ଏପରି ଭାବରେ ବ୍ୟାଣ୍ଡେଜ କରି ଦେଇଥିଲେ ଯେ କେଉଁଠାରେ କଟା ହୋଇଛି ଜଣାପଡିଲା ନାହିଁ । କଟକର ଗୋରା ସିଭିଲ ସର୍ଜନ ମଧ କ୍ଷତସ୍ଥାନ ଜାଣି ପାରିଲେ ନାହିଁ । ସେହି ଡାକ୍ତରଖାନା ଆଡ଼କୁ ଦୃଷ୍ଟି ଫେରାଇଲି । ତାର ପୂର୍ବ ଗୌରବ କଥା ମନେପକାଇ ସେହି ରାଜରାସ୍ତାରେ କିଛି ପଥ ପୂର୍ବକୁ ଅତିକ୍ରମକଲି । ଗାଡ଼ିଟି କଚ୍ଛପ ଗତିରେ ଚାଲିଥାଏ ।

**ଖୋର୍ଦ୍ଧା କ୍ଲବ :**

ଖୋର୍ଦ୍ଧା କ୍ଲବ ୧୯୧୬ ମସିହାରେ ତତ୍କାଳୀନ ଏସ୍.ଡି.ଓ. ଶ୍ରୀ ଗୋଖେଲ ସାହେବ, ଆଇ.ସି.ଏସ.ଙ୍କ ପ୍ରରୋଚନାରେ ପ୍ରତିଷ୍ଠା ଲାଭ କରିଥିଲା । ଇଂରେଜ ଶାସନ ନିରଙ୍କୁଶ ଭାବେ ଗତି କରୁଥିଲା । ପ୍ରଥମ ପୃଥିବୀ ସମରର ମଧ୍ୟବର୍ତ୍ତୀ କାଳ । ଶୁଣିଛି ସ୍ଥାନୀୟ ଡାକ୍ତରଖାନାର କମ୍ପାଉଣ୍ଡର ବାବୁ ଜୟକୃଷ୍ଣ ପରିଡାଙ୍କ ସମେତ କର୍ମଚାରୀବୃନ୍ଦ ଖୋର୍ଦ୍ଧା ଅଫିସର ସିରସ୍ତାଦାର ବାବୁ ଗୋପୀନାଥ ନାୟକ ପ୍ରଭୃତି କ୍ଲବର ଉନ୍ନତି ପାଇଁ ଲାଗି ପଡ଼ିଥିଲେ । ହାଇସ୍କୁଲ ସହରର ପଶ୍ଚିମ ତରଫକୁ ସ୍ଥାନାନ୍ତରିତ ହୋଇଯିବାରୁ ଆଖପାଖର ବହୁ ଜମି କ୍ଲବ ଅଧିକାର କଲା । ସେତେବେଳେ ଖୋରଧାରେ ଚିତ୍ତ ବିନୋଦନ କେନ୍ଦ୍ର କିଛି ନଥିଲା । କ୍ଲବଥିଲା ସବୁ ଖେଳ, କସରତ ସାଂସ୍କୃତିକ କାର୍ଯ୍ୟକ୍ଷେତ୍ରର ସ୍ଥାନ । ବର୍ତ୍ତମାନ ନିର୍ମିତ ଆନନ୍ଦ ଭବନ, ପ୍ରିୟା ଟକିଜ ଓ କ୍ଲବ ସାମନା ଜମିସବୁ କ୍ଲବ ପରିସରଭୁକ୍ତ । ଏବେ ମଧ ସହରର ଲୋକେ ଏହି ପରିସରରେ ଦୁର୍ଗାପୂଜା ପର୍ବ ପାଳନ କରନ୍ତି । କ୍ଲବ ସେତେବେଳେ ଶୈଳବାସିନୀ ପେଣ୍ଡାଲରେ ନାଟକ ପରିବେଷଣ ପ୍ରଭୃତି

ସାଂସ୍କୃତିକ କାର୍ଯ୍ୟମାନ ଆୟୋଜନ କରୁଥିଲା । ଏଥିରେ କେ.ସି. ବାବୁ, ମୃଷିବାବୁ, ବି.ସି.ବାବୁ, ରାଜକିଶୋର ବାବୁ, ବଟବାବୁ, ହାଡ଼ିବନ୍ଧୁବାବୁ ପ୍ରଭୃତି ମିଶି ଭିନ୍ନ ଭିନ୍ନ ସମୟରେ ଓଡ଼ିଆରେ ନାଟକ ପରିବେଷଣ କରୁଥିଲେ । ବେଳେବେଳେ ବଙ୍ଗ ନାଟକ ଅନୁବାଦ କରାଯାଇ ପରିବେଷଣ କରାଯାଉଥିଲା । ସେତେବେଳେ ଖୋରଧାରେ ସିନେମା ଗୃହ ବା ସ୍ଥାୟୀ ଥିଏଟର ଗୃହ ନଥିଲା । ନିକଟବର୍ତ୍ତୀ ଗୁରୁଜଙ୍ଗ ଗ୍ରାମରେ ଏହାର ବହୁ ପୂର୍ବରୁ ଗୋବିନ୍ଦ ନନ୍ଦ ଓ ହରି ନନ୍ଦ ପ୍ରଭୃତିଙ୍କ ସହାୟତାରେ ରାମଲୀଳା ଅଭିନୀତ ହେଉଥିଲା । ନାଟ୍ୟାଚାର୍ଯ୍ୟ କବିଚନ୍ଦ୍ର କାଳିବାବୁଙ୍କ ଗୁରୁଜଙ୍ଗ ରାମଲୀଳା ମଇଦାନ ପ୍ରଥମ ତାଲିମ କେନ୍ଦ୍ର ଥିଲା । ଏହା ୧୯୧୪ ମସିହାର କଥା ।

### କ୍ରୀଡ଼ା ସଂଗଠନ :

ଖୋର୍ଦ୍ଧାର କ୍ରୀଡ଼ା ସଂସଦ ଖୋର୍ଦ୍ଧା କ୍ଲବର ଅଂଶବିଶେଷ । ଆମ ପିଲାଦିନେ କଟକରେ କ୍ରୀଡ଼ାର ମାନ ଥିଲା । ସେତେବେଳେ ମଧୁବାବୁଙ୍କ ନେତୃତ୍ୱରେ କଟକରେ କ୍ରୀଡ଼ା ସଂସଦର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ୧୯୩୧ ମସିହାରେ ଖୋରଧାର କେତେକ ଯୁବକ ସର୍ବଶ୍ରୀ ସତ୍ୟ ଚକ୍ରବର୍ତ୍ତୀ, ସୁରୀ ପ୍ରଧାନ, ସାମସୁର ରହମନ, ବଟକୃଷ୍ଣ ପରିଚ୍ଛା, ବଂଶୀଧର ମହାପାତ୍ର ପ୍ରଭୃତି ଫୁଟବଲ ଖେଳରେ ଧ୍ୟାନ ଦେଉଥିଲେ । ସେମାନେ ମିଶି ଏକ କ୍ରୀଡ଼ାସଂଘ ଗଠନ କଲେ । ସେତେବେଳେ ପାରିକୁଦର ରାଜାସାହେବ ପୁରୀ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ଥାଆନ୍ତି । ଖୋରଧା କ୍ରୀଡ଼ା ସଂସଦକୁ ଗୋଟିଏ ରନର୍ସ କପ୍ ପ୍ରଦାନ କରି ଖୋର୍ଦ୍ଧା ପିଲାମାନଙ୍କର ଖେଳ ସ୍ପୃହାକୁ ସେ ଦ୍ୱିଗୁଣିତ କରିଦେଇଥିଲେ । ଖୋରଧାର ତତ୍କାଳୀନ ଏସ.ଡି.ଓ. କେ.ଏସ.ବି.ରମଣ, ଆଇ.ସି.ଏସ୍ ମଧ୍ୟ ଖେଳିବାପାଇଁ ପିଲାମାନଙ୍କୁ ଉତ୍ସାହିତ କରୁଥିଲେ । ଏହି ସମୟରେ ଗୋଡ଼ିପଡ଼ାର ଧନାଢ଼୍ୟ ବ୍ୟକ୍ତି ଶ୍ରୀ ଜଗନ୍ନାଥ ପ୍ରହରାଜ ଖୋର୍ଦ୍ଧା ପିଲାମାନଙ୍କୁ ନେଇ ଓଳସିଂହ ହାଇସ୍କୁଲର ପିଲାମାନଙ୍କ ସହିତ ଫୁଟବଲ ଖେଳାଇ ଖୋର୍ଦ୍ଧା ପିଲା ମ୍ୟାଚରେ ଜିଣିବାରୁ ସେମାନଙ୍କ ଅନୁରୋଧ କ୍ରମେ ୧୯୩୫ ମସିହାରେ ଏକ ଚାଲେଞ୍ଜ ସିଲ୍ଡ ପ୍ରଦାନ କରିଥିଲେ । ସେହି ପ୍ରହରାଜ ସିଲଡ଼ ହେତୁ ଖୋର୍ଦ୍ଧାରେ ଖେଳର ମାନ ବୃଦ୍ଧି ପାଇଲା । ଖୋର୍ଦ୍ଧାର ସର୍ବଶ୍ରୀ ସାମସୁର ରହମାନ, ମନୋହର ଦାସ, ସୁରେନ୍ଦ୍ରନାଥ ବସ୍ତିଆ, ରାମଚନ୍ଦ୍ର ରାଉତରାୟ, ପରମାନନ୍ଦ ପରିଡ଼ା, ପରବର୍ତ୍ତୀକାଳେ ରାଧାଗୋବିନ୍ଦ ଦାସ, ସୁରିରାମ ପ୍ରଭୃତି ଖେଳାଳିମାନେ ଏହି ଟିମ୍‌ରେ ଖେଳି ଖୁବ୍ ସୁନାମ ଅର୍ଜନ କରିଥିଲେ ।

ଏବେ ଖୋରଧାରେ ଖେଳ ହେଉଥିଲେ ମଧ୍ୟ ଖୋରଧା ଟିମ୍ ମୃତପ୍ରାୟ । ଏବେ ଫୁଟବଲ ଖେଳର ମାନ କମିକମି ଆସୁଛି । ତା ସ୍ଥାନ କ୍ରିକେଟ ଗ୍ରହଣ କଲାଣି ।

**ଖୋରଧା କଚେରି :**

ଆମ ଗାଡ଼ି ଥାନା ଓ ସବ୍‌ଡ଼ିଭିଜନ ଅଫିସ୍ ମଝିରେ ଥିବା ବିରାଟ ଅଶ୍ୱତ୍ଥ ବୃକ୍ଷକୁ ପ୍ରଦକ୍ଷିଣ କରି ପାଞ୍ଚ ନମ୍ବର ଜାତୀୟ ରାଜପଥ ଉପରକୁ ଉଠିଲା । ବାମ ଦିଗରେ ଖୋରଧାର ମହାମାନ୍ୟ ଏସ୍.ଡି.ଓ.ଙ୍କ ଅଫିସ ଦୃଷ୍ଟିପଥାରୂଢ଼ ହେଲା । ଖିଲାଣଟାଇପ ଛାତରେ ତିନିଗୋଟି ପ୍ରଶସ୍ତ ପ୍ରକୋଷ୍ଠ ସେଥିରେ ସନ୍ନିବେଶିତ ହୋଇଛି । କେତେକ ମତ ଦିଅନ୍ତି ଏହି ଖିଲାଣଟାଇପ ପ୍ରସ୍ତର ଗୃହ ମରହଟ୍ଟା ଶାସନ ଅମଳରୁ ନିର୍ମିତ ହୋଇଛି । ଖୋରଧା ଦର୍ପଣରୁ ଜଣାଯାଏ ଖୋରଧାର ତତ୍କାଳୀନ (୧୯୩୮ ମସିହା) ସବ୍‌ଡ଼ିଭିଜନ ଅଫିସର ରାୟବାହାଦୁର ମଧୁସୂଦନ ପଟ୍ଟନାୟକ ଏହି ସବୁ ଅଫିସ ଗୃହର ସଂପ୍ରସାରଣ କରିଥିଲେ । ତେବେ ଖିଲାଣଟାଇପ ଛାତ ଗୃହ ବ୍ୟତୀତ ଯେଉଁ ବିଲଡିଙ୍ଗ ଉତ୍ତର ଦିଗରେ ବିଦ୍ୟମାନ ତାହାକୁ ଶ୍ରୀ ମଧୁସୂଦନ ପଟ୍ଟନାୟକ ନିର୍ମାଣ କରିଥିବା ସମ୍ଭାବନାକୁ ଆସୁଛି । ସେ ବଡ଼ ବୁଦ୍ଧିମାନ ବ୍ୟକ୍ତିଥିଲେ । ଖୋର୍ଦ୍ଧା ଅଫିସର ସମସ୍ତ କୋଠାବାଡ଼ି ନିର୍ମାଣ କରିବା ସଙ୍ଗେସଙ୍ଗେ କୃଷକମାନଙ୍କ ସୁବିଧା ନିମିତ୍ତ ପ୍ରତି ଗାଁରେ ଧାନ ଅମାର ଖୋଲି ଦେଇଥିଲେ । ଏହାଦ୍ୱାରା ଜନ ଆନ୍ଦୋଳନର ତୀବ୍ରତା କମି ଯାଇଥିଲା । କିନ୍ତୁ ଅପର ପକ୍ଷରେ ତାଙ୍କର ପୂର୍ବପୁରୁଷ ନିଧି ପଟ୍ଟନାୟକ ଯେ ଗଜପତି ମହାରାଜାଙ୍କର ପାଞ୍ଜିଆ ଥିଲେ ସମସ୍ତ ରେକଡ଼ପତ୍ର ବ୍ରିଟିଶ ସରକାର ପାଖେ ଦାଖଲ କରିଦେବାରୁ ତା'ର ପୁରସ୍କାର ସ୍ୱରୂପ ଢେର୍ ଅନୁଗୃହୀତ ଜାଗିରି ଲାଭ କରିଥିଲେ । ମଧୁସୂଦନ ବ୍ରିଟିଶ ସରକାରର ପ୍ରିୟ ହୋଇଥିଲେ ମଧ୍ୟ ମୋବିଲ ସାହେବ ହତ୍ୟାଘଟଣାରେ ଜଡ଼ିତ ହୋଇ ପଡ଼ିବାରୁ ଚାକିରିରୁ ବହିଷ୍କୃତ ହେଲେ । ନିଜ ନିର୍ମିତ ନୂତନ କୋଠାଗୃହରେ ସେ ମୁହୂର୍ତ୍ତେ ବସିବାର ସୁଯୋଗ ପାଇ ନଥିଲେ ।

ପୁନଃ ମନେ ପଡ଼ିଲା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ଜ୍ୟେଷ୍ଠଭ୍ରାତା ସୁରେଶ ଚନ୍ଦ୍ର ବୋଷ ଏହି ହତା ମଧ୍ୟରେ ୧୯୨୩ ମସିହାରେ ସ୍ୱାଧୀନତା ସଂଗ୍ରାମୀ ଉତ୍କଳମଣି ଗୋପବନ୍ଧୁ ଦାସଙ୍କର କେସ୍ ବିଚାର କରି ନିର୍ଦ୍ଦୋଷରେ ଖଲାସ କରିଦେଇ ସାହସିକ ପଦକ୍ଷେପ ସ୍ୱରୂପ ନିଜ ଚାକିରିରୁ ଇସ୍ତଫା ପ୍ରଦାନ କରିଥିଲେ । ପୁଣି ମନେପଡ଼ିଲା ଭାରତ ସ୍ୱାଧୀନତା ଯୁଦ୍ଧରେ କେତେ ଦେଶପ୍ରେମୀ ସ୍ୱଦେଶବତ୍ସଳ ଜନନେତାମାନଙ୍କର ବିଚାର ଏଠାରେ ହୋଇ ଦଣ୍ଡବିଧାନ କରାଯାଇଥିଲା ।

ଗାଡ଼ି ଚାଲିଲା, ଗୀତା ଭବନ ନିକଟରେ ପ୍ରବେଶ କଲା । ଗୀତାଭବନ ୧୯୬୯-୭୦ ମସିହା କଥା । ୧୯୬୬ ମସିହାରେ ଜୟୀବାବୁଙ୍କ ମୃତ୍ୟୁପରେ ଦିବ୍ୟସିଂହବାବୁ ତା'ର ଦାୟିତ୍ୱ ତୁଲାଇଲେ ଏବଂ ଗୀତା ଭବନ ନିର୍ମାଣ ଦାୟିତ୍ୱ ନେଲେ ।

**ନବୀନାବାଗ୍ :**

ଗାଡ଼ିର ଗତି ଟିକିଏ ପ୍ରଖର ହେଲା । ନବୀନାବାଗ୍ ନିକଟରେ ଗାଡ଼ି ଅଟକିଲା । ଅଦୂରରେ ଗଜପତି ମହାରାଜାଙ୍କର ଅଧିଷ୍ଠାତ୍ରୀ ଦେବୀ ମା' ବରୁଣାଈଙ୍କ ପାହାଡ଼ ଦୃଷ୍ଟିଗୋଚର ହେଲା । ମା' ବରୁଣାଈ ଗଜପତି ମହାରାଜାଙ୍କର ପରମ ସହାୟକ ଥିଲେ । ସେତେବେଳେ ବରୁଣେଇ ପାହାଡ଼ ଘନ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ବାଘ, ଭାଲୁ, ହେଟା, ଗଧିଆ ପ୍ରଭୃତି ହିଂସ୍ରଜନ୍ତୁ ଓ ମିରିଗ, ହରିଣ, ଶମ୍ବର ପ୍ରଭୃତି ନିରୀହ ଜୀବଙ୍କ କୋଳାହଳରେ ଅରଣ୍ୟ କମ୍ପିଯାଉଥିଲା । ଏବେ ସେ ସୁରମ୍ୟ ପ୍ରାକୃତିକ ପରିବେଶ ଧ୍ୱଂସପ୍ରାପ୍ତ ହେଲାଣି । ବରୁଣେଇ ଶ୍ରୀହୀନ । ପରିବେଶ ନଷ୍ଟହେଲେ ଜନଜୀବନ ବାଧାପ୍ରାପ୍ତ ହେବ, ଲୋକେ ସବୁ ଜାଣି ମଧ ଅଗ୍ରୁାଁର କରୁଛନ୍ତି । ଏକା ରାତିକେ ସୁଲତାନ ହେବା ପ୍ରବୃତ୍ତି ବୃଦ୍ଧି ପାଉଥିବାରୁ ମୂଲ୍ୟବାନ ଶାଗୁଆନ ବୃକ୍ଷଗୁଡ଼ିକ ରାତାରାତି ଅନ୍ତର୍ଦ୍ଧାନ ହୋଇଯାଉଛି । କିନ୍ତୁ ନବୀନାବାଗରେ ବିନାବେଷ୍ଟନୀରେ ଶାଗୁଆନ ବୃକ୍ଷଗୁଡ଼ିକ ଶୋଭା ବର୍ଦ୍ଧନ କରୁଛି । ଖୋରଧା ଦର୍ପଣରୁ ଜଣାଯାଏ କୌଣସି ଗଜପତିଙ୍କର ନବୀନା ନାମକ ଏ ରକ୍ଷିତା ସ୍ତ୍ରୀ ଏଠାରେ ଅବସ୍ଥାନ କରୁଥିଲେ । ନବୀନାବାଗ୍ ୧୯୭୦ ମସିହା ସୁଦ୍ଧା ଏକ ସୁରମ୍ୟ ମନୋହର ଉଦ୍ୟାନରୂପେ ବିଦ୍ୟମାନ ଥିଲା । ବୃକ୍ଷରାଜିବେଷ୍ଟିତ ଏକ ସୁରମ୍ୟ ହର୍ମ୍ୟ ତା ଭିତରେ ମୂକସାକ୍ଷୀରୂପେ ଦଣ୍ଡାୟମାନ ।

ପରବର୍ତ୍ତୀ କାଳରେ ବ୍ରିଟିଶ ପିରିଅଡ଼ରେ ଉଚ୍ଚ କର୍ମଚାରୀ ଟେଲର ସାହେବ ଏହି ଉଦ୍ୟାନକୁ ନିଜ ବଧୂର ନିବାସ ସ୍ଥଳୀରେ ପରିଣତ କରିଥିଲେ । ପରେ ପରେ ଏହା କନିକା ରାଜାଙ୍କ ହାତକୁ ଚାଲିଯାଇଥିଲା ।

ଏହିପରି ଖୋର୍ଦ୍ଧାର ଅତୀତ ଓ ବର୍ତ୍ତମାନ କଥା ବାଟଯାକ ଚିନ୍ତାକରି ଗଲାବେଳେ ଖୋରଧାର କେତେକ ବିଶିଷ୍ଟ ବ୍ୟକ୍ତି ମନରାଇଜରେ ଉଭାହେଲେ । ୧୯୩୯ ମସିହାରେ ଖୋରଧାରେ ଯଦୁବାବୁଙ୍କର ଚେଷ୍ଟାରେ ବାଳିକା ମାଇନର ସ୍କୁଲଟିଏ ସ୍ଥାପିତ ହେଲା । ଟ୍ରେନିଂ ସ୍କୁଲ (୧୯୦୩ ମସିହାରେ) ପରିସରରେ ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ଥିଲା । ବାବୁ ରାଧାମୋହନ ଦୋରା ନୂଆକରି ତେଲେଙ୍ଗାସାହି ପାଖେ ୧୯୪୫ ମସିହାରେ ଏକ ୟୁ.ପି.ସ୍କୁଲ ଗଢ଼ିଲେ । କାଳକ୍ରମେ ତାହା ଜଗନ୍ନାଥ ବିଦ୍ୟାପୀଠ

(ମି.ଇ.ସ୍କୁଲ) ରେ ପରିଣତ ହୋଇଛି । ଗୁରୁଜଙ୍ଗ ହାଇସ୍କୁଲ ଷଷ୍ଠ ଦଶକରେ ଆରମ୍ଭ ହେଲା ।

ଏସବୁ ବିଷୟ ଭାବୁ ଭାବୁ ଗାଡ଼ି ଆସି ପଲ୍ଲା ଗ୍ରାମ ପାଖେ ପହଞ୍ଚି ଗଲାଣି । ପଲ୍ଲା ଗୋଟିଏ ପୁରାତନ ଗ୍ରାମ । ଚାରିଶହ ବର୍ଷରୁ କିଛି ଅଧିକ ହେବ ୧୫୬୮ ଖ୍ରୀ.ଅ.ରେ ଭୋଇ ବଂଶର ସୁଯୋଗ୍ୟ ମନ୍ତ୍ରୀ ଜନାର୍ଦ୍ଦନ ରାଉତରାୟଙ୍କ ପୁତ୍ର ରମେଇ ରାଉତରାୟ ଉକ୍ତ ପଲ୍ଲା ଗ୍ରାମର ବିଶିଷ୍ଟ ବ୍ୟକ୍ତି ବଳି ବିକ୍ରମ ସିଂହଙ୍କ ଠାରୁ ଖୋରଧା ଗ୍ରାମ କ୍ରୟକରି ସେଠାରେ ଖୋରଧାଗଡ଼ ନିର୍ମାଣ କରି ସଙ୍କୁଚିତ ଓଡ଼ିଶାର ରାଜଧାନୀ ସ୍ଥାପନ କଲେ ଏବଂ ରାମଚନ୍ଦ୍ର ଦେବ ପ୍ରଥମ ନାମ ଧାରଣକରି ଅଭିନବ ଇନ୍ଦ୍ରଦ୍ୟୁମ୍ନ ପଦ ପ୍ରାପ୍ତି ହେଲେ । ଏହି ଐତିହାସିକ ତଥ୍ୟ ମନରେ ଦେଶପ୍ରେମ ବହ୍ନି ପ୍ରଜ୍ୱଳିତ କଲା ଏବଂ ଓଡ଼ିଆଜାତିର ପୂର୍ବର ବୀରତ୍ୱ ମନଭିତରେ ଆଲୋଡ଼ନ ସୃଷ୍ଟିକଲା । ତେବେ ଓଡ଼ିଆ ଏତେ ଭୀରୁ କାହିଁକି ?

**ବିଶିଷ୍ଟ ବୟନ ଶିଳ୍ପୀ ବାବୁ ଜୟକୃଷ୍ଣ ଦାସ :**

ପଲ୍ଲା ଗ୍ରାମପାଖେ ଗାଡ଼ି ଟିକିଏ ଅଟକି ଯିବାରୁ ସେ ଗ୍ରାମର ବିଶିଷ୍ଟ ବୟନ ଶିଳ୍ପୀ ଖୋର୍ଦ୍ଧା ବୟନ ଶିଳ୍ପର ପ୍ରାଣପ୍ରତିଷ୍ଠାତା ଶ୍ରୀଯୁକ୍ତ ଜୟକୃଷ୍ଣ ଦାସ ମହାଶୟ ମୋ ମାନସ ପଟରେ ଉଭାହେଲେ । ଜୟୀବାବୁ ପୃଥୁଳାକାୟ, ଗୌରବର୍ଣ୍ଣ, ବଳିଲା ବଳିଲା ଶରୀର, ଧୋତି, ହାଫସାର୍ଟ ପରିହିତ ଜଣେ ମର୍ଯ୍ୟାଦାସଂପନ୍ନ ବ୍ୟକ୍ତି । ମୋ ସାଙ୍ଗେ ଅବଶ୍ୟ ତାଙ୍କର ପରିଚୟ ନଥିଲା, କିନ୍ତୁ ତାଙ୍କୁ ଭଲଭାବେ ଜାଣିଥିଲି । ଖୋରଧାର ପୂର୍ବ ନାମକୁ ଉପରକୁ ଉଠାଇବା ଲୋକମାନଙ୍କ ମଧ୍ୟରେ ସେ ଅନ୍ୟତମ । ଖୋରଧା ଗୋଟିଏ ବୀରଭୂମି ଥିଲା । ମାତ୍ର ଏବେ ସେଥିରେ ଭଟ୍ଟା ପଡ଼ିଯାଇଛି । କିନ୍ତୁ ଅନ୍ୟ ଦୃଷ୍ଟିରେ ଖୋର୍ଦ୍ଧାର ମହତ୍ତ୍ୱ ରହିଛି ।

ବର୍ତ୍ତମାନର ଖୋରଧା ଯଦି ବାହାର ଜଗତରେ ପରିଚିତ ହୋଇଥାଏ ତେବେ ପଲ୍ଲାଗ୍ରାମର ଏହି ଜୟକୃଷ୍ଣ ଦାସଙ୍କ ପାଇଁ । ବାବୁ ଜୟକୃଷ୍ଣ ଦାସ ବିହାରର ଭାଗଲପୁର ଅଞ୍ଚଳରେ ଷ୍ଟେପଲ ଶିଳ୍ପରେ ପାରଦର୍ଶିତା ଲାଭକରି ଓଡ଼ିଶା ଫେରି ଆସିଥିଲେ । ମନେହୁଏ ୧୯୪୯-୫୦ ମସିହା କଥା । ଜୟକୃଷ୍ଣବାବୁ ଖୋର୍ଦ୍ଧାକୁ ପ୍ରତ୍ୟାବର୍ତ୍ତନ କରି ଖୋରଧାର ମାରୁଆଡ଼ି ବ୍ୟବସାୟୀ ଓ ମହାଜନ ଗଣପତି ରାମଙ୍କ ସହାୟତାରେ ଏକ ଉନ୍ନତ ଧରଣର ଷ୍ଟେପଲ ବସ୍ତ୍ର ଶିଳ୍ପର ଶୁଭାରମ୍ଭ କଲେ । କାରଖାନାର ନାମ ଦିଆଗଲା ଶ୍ରୀକୃଷ୍ଣ ଉଇଭିଙ୍ଗ ଫ୍ୟାକ୍ଟରୀ । ଜୟକୃଷ୍ଣବାବୁଙ୍କ ବୁଦ୍ଧି ଓ ଗଣପତି ରାମଙ୍କ ଧନରେ ପ୍ରଥମେ ଖୋର୍ଦ୍ଧାରେ

ଏହି ବିରାଟ ଶିଳ୍ପ ଗଢ଼ି ଉଠିଥିଲା । ଓଡ଼ିଆମାନେ ଚିରକାଳ ଦରିଦ୍ର, କାରଣ ପଇସା ଅଧିକ ପାଇଗଲେ ସେମାନେ ବଦଖର୍ଚ୍ଚ କରନ୍ତି । ଦାରିଦ୍ର୍ୟ ସେମାନଙ୍କ ବୁଦ୍ଧିବୃତ୍ତି ନଷ୍ଟ କରିଦିଏ ।

ବାବୁ ଗଣପତି ରାମ ଧନକୁବେର ଥିଲେ । ଉକ୍ତ ଶିଳ୍ପର ଉନ୍ନତି ହେଲେ ତାଙ୍କର ପ୍ରଚୁର ଲାଭ ହେବ ଜାଣି ସେ ଏଥିରେ ମନଦେଲେ । ସେ ହେଲେ କଣ ରାଜା । ମାତ୍ର ପ୍ରଖ୍ୟାତ ବୟନ ଶିଳ୍ପୀ, ନିପୁଣ କାରିଗର ଯେଉଁ ଫକୀରକୁ ସେହି ଫକୀର ହୋଇ ରହିଲେ । ଜୟକୃଷ୍ଣ ଦାଙ୍କ ସକାଶେ ଏହି ମହତର କାର୍ଯ୍ୟ ସାଧିତ ହୋଇଥିଲା । ଖୋର୍ଦ୍ଧାର କେତେକ ମାରୁଆଡ଼ି ବ୍ୟବସାୟ ଓ କେତେକ ଓଡ଼ିଆ ବ୍ୟବସାୟ ଏହି ଶିଳ୍ପକୁ ଏବେ ମଧ୍ୟ ଆଶ୍ରୟ କରି ଅମାପ ଧନ ରୋଜଗାର କରୁଛନ୍ତି । ସେହି ଫାକ୍ଟରୀରୁ ବାହାରୁଥିବା ଲୁଙ୍ଗି, ଶାଢ଼ି, ଧୋତି ଗାମୁଛା ଓଡ଼ିଶାରେ କେବଳ ନୁହେଁ ସାରା ପୂର୍ବ ଭାରତରେ ପ୍ରସିଦ୍ଧିଲାଭ କରିଛି । ମହାଜନ ତ ‘‘ଶତଃ ସହସ୍ରଂ ଇଚ୍ଛତି, ସହସ୍ରଃ ଲକ୍ଷଂ ଇଚ୍ଛତି’’, ନ୍ୟାୟରେ ଅଚଳାଚଳ ସମ୍ପତ୍ତିର ମାଲିକ ହୋଇସାରିଲେଣି । କିନ୍ତୁ ଜନସଂଖ୍ୟାର ଯେପରି ବିସ୍ଫୋରଣ ହେଉଛି ଅଲକ୍ଷ୍ୟରେ ଏହି କାରଖାନା ବହୁ ଶ୍ରମିକମାନଙ୍କୁ ଅନ୍ନସଂସ୍ଥାନ ଦେଉଥିଲା । ବସ୍ତ୍ର ବ୍ୟବସାୟୀ ମହାଜନ ମଦନିରାମ କହନ୍ତି, ‘‘ରାଜ୍ୟ ସରକାର ଯଦି ଠିକଣା ସମୟରେ ଏହି ଶିଳ୍ପକୁ ସାହାଯ୍ୟ କରିବାକୁ ଆଗେଇ ଆସିଥାନ୍ତେ ତେବେ ରାଜ୍ୟରେ ପ୍ରଗତି ହେବା ସଙ୍ଗେସଙ୍ଗେ ବହୁ ବେକାର ଶ୍ରମିକ ଜୀବିକା ନିର୍ବାହ କରିବାରେ ସମର୍ଥ ହୋଇଥାଆନ୍ତେ ।’’ ବର୍ତ୍ତମାନ ଗଣପତି ରାମଙ୍କ ଫ୍ୟାକ୍ଟରୀ ଧୀରେ ଧୀରେ ଚାଲିଛି । ଶ୍ରୀ ମହାବୀର ସାହା, ମଦନ-ଦାମୋଦର ରାମଙ୍କ ବ୍ୟବସାୟ ଏଥିରେ ବେଶ୍ ସଫଳତା ସହ ଚାଲିଛି । ବସ୍ତ୍ର ବ୍ୟବସାୟୀ ମଦନରାମ ପୁନଃ କହନ୍ତି, ‘‘ଆନ୍ଧ୍ର, ତାମିଲନାଡୁ, କେରଳର ବସ୍ତ୍ର ବ୍ୟବସାୟୀଗଣ ଖୋର୍ଦ୍ଧା ବସ୍ତ୍ରକୁ ଅନୁକରଣ କରି ଲୁଙ୍ଗି, ଗାମୁଛା ଉତ୍ପାଦନ କଲେଣି ଏବଂ ଖୋର୍ଦ୍ଧାର ମୋହର ମାରି ବଜାରକୁ ଛାଡ଼ିଲେଣି । ତେଣୁ ଖୋରଧାର ବସ୍ତ୍ରଶିଳ୍ପ ଉଧେଇ ପାରୁନାହିଁ ।’’ ଏ ଉକ୍ତିରେ ସତ୍ୟତା ଅଛି ।

ଯେଉଁ ଜୟକୃଷ୍ଣବାବୁଙ୍କ ସକାଶେ ଖୋର୍ଦ୍ଧା ଲୁଙ୍ଗି, ଗାମୁଛା ଓ ଶାଢ଼ିର ଖ୍ୟାତି ସାରାଭାରତକୁ ବ୍ୟାପିଯାଇଥିଲା ସେହି ଜୟୀବାବୁଙ୍କ କଥା କିଏ ମନେ ରଖିଛି ? ଧନ୍ୟ ଜୟୀବାବୁ, ଧନ୍ୟ ତୁମର ଶିଳ୍ପପ୍ରାଣତା । ଖୋରଧାକୁ ସୁନାମ ପ୍ରଦାନ କରି ତୁମେ ଧନ୍ୟ ହୋଇଛ । ଖୋରଧାବାସୀଙ୍କୁ ଧନ୍ୟ କରିଛ । କିନ୍ତୁ ତୁମର ଦାୟାଦମାନଙ୍କ ଅବସ୍ଥା ଭଲ ଅଛି ତ ?

ଆଉ ବାଟରେ ଗାଡ଼ି କେଉଁଠି ଅଟକିବାର ନଥିଲା । ପିଚୁ ରାସ୍ତାରେ ଗାଡ଼ି ଘର୍‌ଘର୍ ହୋଇ ଗଡ଼ି ଚାଲିଲା ଦ୍ରୁତଗତିରେ । ବାଟରେ ଖୋର୍ଦ୍ଧା ଗଜପତିଙ୍କ ଦେଓ୍ୱାନ ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ବାସସ୍ଥାନ କୁରାଢ଼ମଲ୍ଲ ଓ ଛତ୍ରମାଗଡ଼ ଅତିକ୍ରମ କରି ଗାଡ଼ି ପବନ ବେଗରେ ମାଡ଼ି ଚାଲିଲା । ରଣପୁର ରାଷ୍ଟ୍ରବିହାରିଣୀ ଅମନ୍ଦଗାମିନୀ ନଦୀ ମନ୍ଦାକିନୀ ସହିତ ଭେଟ ହୋଇ ରାମେଶ୍ୱର ଶାଖା ରାଜପଥରେ କୁଟିଳ ପଥଦେଇ ଗାଡ଼ି ଆଗେଇ ଚାଲିଲା । ମୁଁ ଖୋରଧାର ପ୍ରାଚୀନ ବିଭବ କଥା ଭାବୁ ଭାବୁ ଗାଡ଼ି କେତେବେଳେ ଯାଇ କ୍ଷେତ୍ରବାସୀ ଏକାଡେମୀ ପରିସର ଭିତରେ ଢୁକିଲାଣି ମୋତେ ମାଲୁମ ନଥିଲା । ହାଇସ୍କୁଲ ଛାତ୍ରଛାତ୍ରୀଙ୍କର କୋଳାହଳ ଧ୍ୱନି ମୋ ଭାବନାରେ ପୂର୍ଣ୍ଣଚ୍ଛେଦ ଟାଣିଦେଲା । ସେତେବେଳେ ନଅଟା ପଚାଶ ମିନିଟ୍ । ବସାରେ ପହଞ୍ଚି କେଉଁଠି କେଉଁ ଜିନିଷ ରହିଲା, ଚାରିଆଡ଼କୁ ବିହଙ୍ଗାବଲୋକନ କରି ବିଦ୍ୟାଳୟରେ ପ୍ରବେଶ କଲି ଠିକ୍ ଦଶଟା କୋଡ଼ିଏ ମିନିଟରେ । ସାଢ଼େ ଦଶଟାରେ ସ୍କୁଲ ।

## ନିରାକାରପୁର ହାଇସ୍କୁଲରେ ପ୍ରବେଶ :

ନିୟମ ଅଛି ପ୍ରଥମ ଦିନ ପୂର୍ବାହ୍ନ ବାର ଘଣ୍ଟା ପୂର୍ବରୁ ଅନୁଷ୍ଠାନରେ ଯୋଗଦେଇ କାର୍ଯ୍ୟ ତୁଲାଇବାକୁ ପଡ଼ିଥାଏ । ମୁଁ କିନ୍ତୁ ତା'ର ବହୁ ଊର୍ଦ୍ଧ୍ୱରେ । ଖୋରଧା ହାଇସ୍କୁଲରେ ୧୯୪୪ ମସିହା ସେପ୍ଟେମ୍ବର ୧୪ ତାରିଖରେ ଯୋଗ ଦେଇଥିଲି ସେହି ପ୍ରାକ୍ ସମୟରେ । ମୁଁ ଥିଲି ସମୟର ଅଧୀନ । ତେଣୁ ସମୟର ଉପଯୁକ୍ତ ମର୍ଯ୍ୟାଦା ଦେବାକୁ ଜୀବନରେ ଭୁଲି ନାହିଁ ।

ସମସ୍ତେ ଅଚିହ୍ନା ଅଚିହ୍ନା । କେବଳ ସେଦିନ ଜଣେ ଦି'ଜଣଙ୍କ ସଙ୍ଗେ ଯାହା ପରିଚୟ ହୋଇଥିଲା । ଜଣ ଜଣ ହୋଇ ଶିକ୍ଷକବନ୍ଧୁମାନେ ଆସି ମୋତେ ସାକ୍ଷାତ କଲେ । ସମସ୍ତଙ୍କର ହାବଭାବ ବାରି ନେଉଥାଏ । ସମସ୍ତେ ମୋତେ ଆପଣାର କରିନେବା ପାଇଁ ଚେଷ୍ଟା କରୁଥିଲେ । ସମସ୍ତେ ମୋ ନିଜର ଲୋକ ବୋଲି ଭାବିନେଲି । କିପରି ଜାଣିବି କିଏ ଭଲ କିଏ ଭେଲ ? ଚିହ୍ନାଚିହ୍ନି ଶେଷ ହେଲାପରେ ସେମାନଙ୍କୁ ଗୋଟିଏ ପ୍ରସ୍ତାବ ଦେଲି, ପ୍ରଥମ ଦିନ ତ, ପିଲା ଓ ଶିକ୍ଷକ ବନ୍ଧୁମାନଙ୍କୁ ପଦେ ଦି' ପଦ କହିବି । କାହାଠାରେ କେତେ ମସଲା ଥାଏ ଆଦ୍ୟଭାଷଣରୁ ଜଣାପଡ଼େ । ନିଜର ପାଣ୍ଡିତ୍ୟ, ଗୁଣଗାରିମା ସେମାନଙ୍କ ସମ୍ମୁଖରେ ପ୍ରଦର୍ଶନ କରିବା ପାଇଁ ମୋ ପାଖେ କିଛି ନଥିଲା । ତଥାପି ପିଲାମାନେ ମୋତେ ଜାଣିବେ, ଶିକ୍ଷକମାନେ ବି ବୁଝିବେ ।

**ପ୍ରଥମ ସାକ୍ଷାତ :**

ସଭାର ଆୟୋଜନ ହେଲା । ଚୌକି ବେଞ୍ଚ ପଡ଼ିଗଲା । ମୋ'ଠାରୁ ବୟସ୍କ ବ୍ୟକ୍ତି ହେଉଛନ୍ତି କିରାଣିବାବୁ ଶ୍ରୀ ଚିନ୍ତାମଣି ଦାଶ ଓ ସଂସ୍କୃତ ଶାସ୍ତ୍ରର ଅଧିକାରୀ ପଣ୍ଡିତ ରଘୁନାଥ ମିଶ୍ର ଶର୍ମା । ସମସ୍ତେ ବସିଲେ । କିଛି ପ୍ରାରମ୍ଭିକ ସୂଚନା ଦେବାପରେ କହିଲି ଯେ କହିଲି, କହିଲି । ଅନର୍ଗଳ କହିଲି । ମଝିରେ ମଝିରେ କରତାଳି ଧ୍ୱନି ହେଉଥାଏ । ମୁଁ ଜଣେ ସୁବକ୍ତା ନହେଲେ ମଧ କହିବା ପାଇଁ ପିଲାଦିନୁ ଯାଁଳା ମାଇନର ସ୍କୁଲରୁ କିଛିକିଛି ଅଭ୍ୟାସ କରିଥିଲି । ନିର୍ଭୀକତା ଗୁଣଟା କହିବା ପାଇଁ ବହୁତ ସାହାଯ୍ୟ କରିଥାଏ ।

ଯେ କହିବ ତା'ର ବିଷୟବସ୍ତୁ ଉପରେ ପ୍ରଭୂତ ଜ୍ଞାନ ରହିବା ବାଞ୍ଛନୀୟ । ଖୋର୍ଦ୍ଧା ସ୍କୁଲ ଏକ ବୃହତ୍ ସ୍କୁଲ । ସେଠାରେ ଆଠଶହ କି ନଅଶହ ଛାତ୍ର । ସେପରିସ୍ଥଳେ ନିରାକାରପୁର ହାଇସ୍କୁଲରେ ସେତେବେଳେ ତିନିଶହ ପିଲା । ଛାଡ଼ିବି କାହିଁକି ? ବୀରଭୂମିରୁ ଯାଇ କ'ଣ ପଛେଇଯିବି ? ଚାଲିଲା ଭାଷଣ, ନିରାକାରପୁର ନାମର ବ୍ୟାଖ୍ୟା । ସ୍ଥାନର ମହତ୍ତ୍ୱ, ସର୍ବୋପରି ପ୍ରଥିତଯଶା ଦାନବୀର କ୍ଷେତ୍ରବାସୀଙ୍କ ସମ୍ବନ୍ଧେ ପୁଣି ଛାତ୍ର ଓ ଶିକ୍ଷକମାନଙ୍କ ପାଇଁ ଏକ ସାରଗର୍ଭକ ଭାଷଣ ଯେତେବେଳେ ଦେଇଦେଲି ଛାତ୍ର ଓ ଶିକ୍ଷକବୃନ୍ଦ ମୁଗ୍ଧ । ପୁନଃ କର୍ମମୟ ଜୀବନ ଆରମ୍ଭ ହେଲା । ଆଉ ବିଶ୍ରାମ ନାହିଁ ।

**ଅଞ୍ଚଳର ମୁଖିଆ ମୁଖିଆ ବ୍ୟକ୍ତି ଓ ବିଦ୍ୟାଳୟର ସ୍ଥିତି :**

ତହିଁ ପରଦିନଠାରୁ ସେ ଅଞ୍ଚଳର ମୁଖିଆ ମୁଖିଆ ଲୋକମାନଙ୍କ ପାଖକୁ ଯାଇ ସେମାନଙ୍କୁ ଆପଣାର କରିବାକୁ ଚେଷ୍ଟା ଚଳେଇଲି । ଯେତେହେଲେ ମଫସଲ ଅଞ୍ଚଳ । ସହର, ବଜାରର ହାଉଆ ଏଠାକୁ ଆସିବ କାହୁଁ । ମୁଁ ନୀରବ କର୍ମୀ, କଥା କମ୍ କାମ ବେଶି । ଆଜିକାଲିକା ଯୁଗକୁ ଏପରି ଢଙ୍ଗ କୁଳେଇବ କି ? ଯେଉଁମାନେ ନିଜକୁ ବିକେଇ ପାରିବେ ସେମାନେ ବର୍ତ୍ତିବେ । ଦେଖାଯାଉ ହୀନକପାଳିଆର ଜୀବନ ଏଠାରେ କିପରି କଟୁଛି ? ତେବେ ଯେଉଁପ୍ରକାର ସମର୍ପିତ ଜୀବନ ଖୋର୍ଦ୍ଧା ହାଇସ୍କୁଲରେ କଟାଉଥିଲି ସେହିପରି କିମ୍ବା ତା'ଠାରୁ ଅଧିକ ପରିମାଣରେ ବିଦ୍ୟାଳୟର ହିତ ନିମନ୍ତେ ଜୀବନକୁ ଉତ୍ସର୍ଗ କରିବାକୁ ଚେଷ୍ଟାକଲି ।

ନିରାକାରପୁର ଉଚ୍ଚବିଦ୍ୟାଳୟର ବୟସ ମୋଟେ ୨୦ ବର୍ଷ । ଗ୍ରାମର ଦକ୍ଷିଣ ଦିଗରେ ଏକ ନିର୍ଜନ ପ୍ରାନ୍ତରରେ ଏହା ଅବସ୍ଥିତ । ରେଳଷ୍ଟେସନରୁ ସିଧା ହାଇସ୍କୁଲକୁ ଆସିଲେ ଏକ ବିରାଟ ଆମ୍ରକାନନ ଦୃଷ୍ଟିପଥାରୂଢ଼ ହୁଏ । ରେଳଷ୍ଟେସନର ପଶ୍ଚିମ ଦିଗରେ ଚିତ୍ରକୁଟ ପାହାଡ଼ ଦୁଇ ମାଇଲ ବାଟ ପର୍ଯ୍ୟନ୍ତ ଉତ୍ତର ଦିଗକୁ ତା'ର କାୟା ବିସ୍ତାର କରି

ଅଜଗର ପ୍ରାୟ ପଡ଼ିରହିଛି । ପ୍ରବାଦ ଅଛି, ଶ୍ରୀ ରାମଚନ୍ଦ୍ର ବନଗମନ ବେଳେ ଏହି ପାହାଡ଼ ଉପରେ କିଛିଦିନ ବିଶ୍ରାମ କରିଥିଲେ । ଚୁତଃପାର୍ଶ୍ୱରେ ମୁନିଋଷିମାନେ ଆଶ୍ରମ ସ୍ଥାପନ କରିଥିଲେ । ବିଦ୍ୟାଳୟ ପରିସର ବାବୁ କଳ୍ପତରୁ ମହାନ୍ତିଙ୍କର ଘଞ୍ଚ ଆମ୍ରକାନନ ଦ୍ୱାରା ଅର୍ଦ୍ଧାବୃତ । ବିଦ୍ୟାଳୟରେ ଦୁଇଟି କ୍ୱାଟର ନିର୍ମିତ । ମୋ ପାଖ କ୍ୱାଟରରେ ବିଦ୍ୟାଳୟର ବରିଷ୍ଠ ଶିକ୍ଷକ ବାବୁ କୃଷ୍ଣଚନ୍ଦ୍ର ବଳିୟାରସିଂହ ବାସ କରୁଥିଲେ । ତାଙ୍କ ଥନ୍ତଲ ପେଟକୁ ନିଶ ଦି'ପଟା ତାଙ୍କୁ ପାଇକ ବିଦ୍ରୋହର ଯବାନ ପରି ସଜେଇ ଦେଇଥିଲା । ଗ୍ରୀଷ୍ମାବକାଶରେ ସେ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କଲେ, ପଡ଼ିଆଟା ଜନମାନବଶୂନ୍ୟ ବୋଧ ହେଉଥିଲା । ସେ ପର୍ଯ୍ୟନ୍ତ ସେଠାକୁ ବିଜୁଳି ଆଲୁଅ ପ୍ରବେଶ କରିନଥିଲା । ସନ୍ଧ୍ୟାର ଆଗମନରେ ଅନ୍ଧକାର ରାତ୍ରିରେ ଚାରିଆଡ଼ ଖାଁ ଖାଁ ବୋଧ ହେଉଥିଲା । ପନ୍ଦରବର୍ଷ କାଳ ବିଜୁଳି ଆଲୁଅରେ ଅଭ୍ୟସ୍ତ ରହିଥିବା ପରିବାରକୁ ଅଡୁଆ ଅଡୁଆ ଲାଗୁଥିଲା ।  ଡିବି, ଲଣ୍ଠନ, ଦୀପ ଆଲୁଅକୁ ପୁଣି ଫେରିଆସିବାକୁ ପଡ଼ିଲା । ଗୃହର ଚଟାଣ ସିମେଣ୍ଟ ନିର୍ମିତ ହେଲେ ମଧ୍ୟ ନିଦାଘକାଳେ ମଧ୍ୟ ସନ୍ତଉଥିଲା । ପ୍ରକୋଷ୍ଠର ଅବସ୍ଥିତି ଏପରି ଯେ ଉତ୍ତରଦିଗକୁ ମୁଣ୍ଡକରି ସର୍ବଦା ଶୋଇବାକୁ ପଡୁଥିଲା, ଯାହାକି ପୂରାପୂରି ଅମଙ୍ଗଳସୂଚକ, ସ୍ୱାସ୍ଥ୍ୟହାନିକାରକ । କ୍ୱାଟର ଭିତରେ ପାଣିର କୌଣସି ସୁବିଧା ନଥିଲା । ଦୁଇଶହ ମିଟର ଦୂରରୁ ବିଦ୍ୟାଳୟ କୂପରୁ ପାନୀୟ ତଥା ସ୍ନାନ ନିମନ୍ତେ ଜଳ ସଂଗ୍ରହ କରିବାକୁ ଅନ୍ୟ ଉପରେ ନିର୍ଭର କରିବାକୁ ହେଉଥିଲା । ଚାଳ ଛପର ହୋଇଥିବା ହେତୁ ଜନ୍ତୁଜନ୍ତାଙ୍କର ଭୟ ଥିଲା, ଅଗ୍ନିର ମଧ ଭୟ ଥିଲା । ଚତୁଃପାର୍ଶ୍ୱ ବଣଜଙ୍ଗଲ ପୂର୍ଣ୍ଣ ଥିଲା । ଚିତ୍ରକୂଟ ପାହାଡ଼ରେ ବାଦଲଖଣ୍ଡମାନ ଖେଳାବୁଲା କରି ମୂଷଳଧାରରେ ବୃଷ୍ଟିହେଲେ ସ୍ରୋତସ୍ୱିନୀ ନଦୀ ସଦୃଶ ଦଲକାଏ ଦଲକାଏ ଗୋଳିଆପାଣି ମାଡ଼ିଆସି କ୍ୱାଟର ଭିତରକୁ ଲମ୍ଫ ପ୍ରଦାନ କରୁଥିଲା । ଚତୁଃପାର୍ଶ୍ୱରେ କିଆଗଛ ଉହାଡ଼ରୁ ଲମ୍ବ ଜନ୍ତୁଗୁଡ଼ାକ ଗୃହ ମଧକୁ ପଶି ଆସୁଥିଲେ । କିଆବୁଦାଗୁଡ଼ାକ ଜଙ୍ଗଲପରି ଚତୁଃପାର୍ଶ୍ୱରେ ବଢ଼ି ମନରେ ଭୀତି ସଞ୍ଚାର କରୁଥିଲା । କିଆବୁଦାର ସହଯାତ୍ରୀ ଉଇହୁଙ୍କା ବିଷାକ୍ତ ସର୍ପ, କଙ୍କଡ଼ାବିଛାମାନଙ୍କର ଆବାସସ୍ଥଳୀ ଥିଲା । କ୍ୱାଟରଟିରେ ଦୁଇଟି ବାସଯୋଗ୍ୟ ପ୍ରକୋଷ୍ଠ ମଧ୍ୟରୁ ଗୋଟିଏ ବୈଠକ ଗୃହ ବା ଦାଣ୍ଡଗୃହ । ପୂର୍ବ ହେଡ଼ମାଷ୍ଟର ବନବିହାରୀବାବୁ ବରପାଲିର ପାଇଖାନାଟିଏ ବାଡ଼ିଆଡ଼େ ପକାଇଥିଲେ । ତା' ଚତୁଃପାର୍ଶ୍ୱରେ ଛିଣ୍ଡା ବସ୍ତା ବନ୍ଧା ହୋଇଥିଲା । ପଥଚାରୀ ପାଣ୍ଡବ ପାଟଣାରୁ ଷ୍ଟେସନ ଆଡ଼କୁ ଯାତ୍ରା କରିବାବେଳେ କଣେଇ କଣେଇ ଚାହୁଁଥିଲା । ନିର୍ଜନ ସ୍ଥାନକୁ ନିଛାଟିଆ ଘର । କ୍ୱାଟର ପାଖରେ କୌଣସି ଘରଦ୍ୱାର ନଥିଲା । ରାତ୍ରିରେ ହାନିଲାଭ ପାଇଁ ଦାତା ଦଇବି କେହି ନଥିଲେ । ଶ୍ରୀ ରାମଚନ୍ଦ୍ର ପିତୃସତ୍ୟ ପାଳନ କରି ଚଉଦ ବର୍ଷ ବନବାସ କରିଥିଲେ । ମୁଁ ବାର ବର୍ଷ କାଳ (ଏକ

ଯୁଗ) ବିନା ଆଲୁଅରେ କଠୋର ଜୀବନଯାପନ କରି ବହୁ ଅସୁବିଧାର ସମ୍ମୁଖୀନ ହେଲି । ପୁନଃ କର୍ତ୍ତବ୍ୟପରାୟଣ ଲୋକର ଶତ୍ରୁ ଅଧିକ ଓ ସେ ସମସ୍ତ ଦୁର୍ବିପାକ ସହ୍ୟ କରିବାକୁ ପ୍ରଭୁ ମୋତେ ବଳ ପ୍ରଦାନ କରିଥିଲେ । ବୃହତ୍ ପରିବାର ୧୧ଜଣଙ୍କୁ ନେଇ ଦେବୀ ପ୍ରତିମା ମାତା ସଙ୍ଗରେ ଧରି ଓ ପ୍ରାଣପ୍ରିୟା ପତ୍ନୀଙ୍କ ସହିତ ସମୟ କାଟିବାକୁ ଆରମ୍ଭ କଲି ।

କଥାରେ ଅଛି–

"ସୁଖ ବା ଦୁଃଖ ଆସୁ ଯାହା, ବହିବ ଧୀର ଚିତ୍ତେ ତାହା ॥"

ତେବେ ବ୍ୟକ୍ତି ଯେତେ ସ୍ଥିତପ୍ରଜ୍ଞ ହେଲେ ମଧ୍ୟ ଉକ୍ତ ଉଦ୍ଧୃତାଂଶକୁ ଲକ୍ଷ୍ୟକରି ଚଳିପାରିବ କି ? କେବଳ ସୁହାସିନୀ ଲକ୍ଷ୍ମୀ ସ୍ୱରୂପିଣୀ ବନବାସିନୀ ଦେବୀ ପାଖରେ ଥିବାରୁ ସବୁ ଦୁଃଖଦୁର୍ଦ୍ଦଶା ମାଡ଼ିମକଚି ଆଗେଇ ଚାଲିଲି । ଏତ ପ୍ରଭୁଙ୍କର ଦାନ । ନଚେତ୍ ମୋତେ ଏ ଅପନ୍ତରା ଅକୁଶଳୀ ସ୍ଥାନକୁ ଆଣିଥାନ୍ତେ କାହିଁକି ? ପରମେଶ୍ୱରଙ୍କ ଉପରେ ଭରସା ରଖିବାରୁ ମନୋବଳ ଦୃଢ଼ ହେଲା । କେତେ ଦିନ ଏଠାରେ ରହିବି କିଏ କହିପାରିବ ? 'ଯୁଆଡ଼େ ବୋଲି ତେଣେ ଯାଆ କର୍ମଘେନି ବୁଲୁଥାଆ' । ତେବେ ଦୁଃଖ କାହିଁକି ? କାହିଁକି ଅନୁଶୋଚନା, କାହିଁକି ମନସ୍ତାପ ? ଏହାତ ବିଧି ନିର୍ଦ୍ଦେଶ ।

**ବିଦ୍ୟାଳୟ ଚତୁର୍ଥ ଶ୍ରେଣୀ କର୍ମଚାରୀ :**

ବିଦ୍ୟାଳୟର ଚତୁର୍ଥ ଶ୍ରେଣୀ କର୍ମଚାରୀ ସର୍ବେଶ୍ୱର ଦାସ ବଡ଼ ସରଳ ପ୍ରକୃତିର । ସେ ବିଦ୍ୟାଳୟ କୂପରୁ ପ୍ରତ୍ୟହ ପାଣି ଯୋଗାଉଥିଲେ । ଜଳାଭାବ ଦୂର ହେବା ପାଇଁ ଅନ୍ୟ କୌଣସି ପନ୍ଥା ନଥିଲା । ଝାଡୁଦାର ଭିଖାରି ନାଏକ ଉତ୍ତମ ସ୍ୱଭାବର ଥିଲେ । ସେ ଗୃହକାର୍ଯ୍ୟରେ ଆମ୍ଭଙ୍କୁ ସାହାଯ୍ୟ କରୁଥିଲେ । ବନବାସିନୀ ଦେବୀ ତାଙ୍କୁ ପୁତ୍ରବତ୍ ପାଳନ କରୁଥିଲେ । ଦପ୍ତରୀ ପଞ୍ଚାନନ ବାରିକ ଖୁବ୍ ସମୟାନୁବର୍ତ୍ତୀ ଥିଲେ । ହେଡ୍‌ମାଷ୍ଟରଙ୍କ କ୍ୱାଟରକୁ ଜଳ ଯୋଗାଣର ଭାରନେଇଥିଲେ । ମୋଟାମୋଟି ଚତୁର୍ଥ ଶ୍ରେଣୀ କର୍ମଚାରୀମାନେ ନିଜନିଜ କାମରେ ଖିଲାପ କରୁନଥିଲେ । ସେମାନଙ୍କର ନିରଳସ କାର୍ଯ୍ୟକଳାପ ମୁଁ ଏପର୍ଯ୍ୟନ୍ତ ଭୁଲିପାରୁନାହିଁ ।

**ବିଦ୍ୟାଳୟ ଶ୍ରେଣୀଗୃହ ପରିବେଶ :**

ବିଦ୍ୟାଳୟ ଶ୍ରେଣୀ ଗୃହ, ପ୍ରଧାନ ଶିକ୍ଷକ ଗୃହ ଓ ଛାତ୍ରାବାସଟି ଚାଳଛପର ଗୃହ ଥିଲା । ଏତଦ୍‌ବ୍ୟତୀତ ବିଜ୍ଞାନାଗାର, ପୁସ୍ତକାଗାର, ହେଡମାଷ୍ଟର ଅଫିସଗୃହ ଆଜବେଷ୍ଟସ ପଥର ଗୃହ ଥିଲା । ବିଦ୍ୟାଳୟ ଛାଡ଼ିବାବେଳକୁ ବନବାବୁ ଏ ସବୁ ନିର୍ମାଣ

କରିଦେଇ ଯାଇଥିଲେ । ମୁଖ୍ୟ ଚାଳଛପର ଗୃହଟି ଶ୍ରେଣୀଗୃହ ହିସାବରେ ବ୍ୟବହୃତ ହେଉଥିଲା । ଶ୍ରେଣୀଗୃହ ମଝିରେ ଅଧାକାନ୍ଥ ଦିଆଯାଇଥିବାରୁ ଗୋଟିଏ ଶ୍ରେଣୀରେ ଶିକ୍ଷାଦାନ ସମୟରେ ଅପର ଗୃହଗୁଡ଼ିକରେ ପ୍ରତିଧ୍ୱନିତ ହେଉଥିଲା । ତେଣୁ ଅଧାପନାରେ ବ୍ୟାଘାତ ସୃଷ୍ଟି ହେଉଥିଲା । ମାଟି କାନ୍ଥରେ ସ୍ଥାନେ ସ୍ଥାନେ ଉଇହୁଙ୍କା ଗଢ଼ି ଉଠୁଥିଲା । ଉଇହୁଙ୍କାଗୁଡ଼ାକ ବୋଡ଼ାସାପ, ବେଙ୍ଗ ଓ କଙ୍କଡ଼ା ବିଛାମାନଙ୍କର ଆବାସ ସ୍ଥଳ ଥିଲା । ଗୋଟିଏ ପ୍ରକୋଷ୍ଠର କାନ୍ଥଟି ଟଳମଳ ହେଉଥିଲା । ମୁଁ ଘରେ ନପଶୁଣୁ ପିଲାମାନଙ୍କର ଅଭିଯୋଗର ବାତ୍ୟା ବହିଲା । ସେ କାନ୍ଥକୁ ଦିନେ ପିଲାମାନଙ୍କଦ୍ୱାରା ଭାଙ୍ଗିଦେଲି । ମୋର ମନେଅଛି ଦିନେ ମୋ ଉପସ୍ଥିତିରେ କାନ୍ଥପାଖ ହୁଙ୍କାରୁ ୧୭ଟି ବୋଡ଼ାଛୁଆ ଓ କେତେଟା କଙ୍କଡ଼ାବିଛା ମରାଗଲା । ବସିବାପାଇଁ ଆସବାବପତ୍ର ନଥିଲା । ତଳ ଶ୍ରେଣୀ ପିଲାମାନେ ଭୟଭୀତ ହୋଇ ଚଟାଣରେ ବସୁଥିଲେ । ଜୀବନଟା କ'ଣ ହଟହଟାରେ କଟିବ କି ? ଭଲ ଜାଗାକୁ ହେଡମାଷ୍ଟର ହୋଇ ଆସିଲି । କାହିଁ ଖୋରଧା ହାଇସ୍କୁଲର ସୁରମ୍ୟ ପ୍ରାସାଦ, କାହିଁ ନିରାକାରପୁର ହାଇସ୍କୁଲର ପରିତ୍ୟକ୍ତ, ଅର୍ଦ୍ଧଭଗ୍ନ, ସର୍ପ, ବେଙ୍ଗ, ବିଛା ଅଧ୍ୟୁଷିତ ଚାଳଛପର ଗୃହ ? ଆଉ ତ କିଛି ଉପାୟ ନଥିଲା । ଭାଗ୍ୟରେ ତ ଲେଖାଥିଲା, ପରିସ୍ଥିତି ସହ ଖାପଖୁଆଇ ଚଳିବାକୁ ପଡ଼ିବ । ଦୀର୍ଘ ୪ ବର୍ଷ ପର୍ଯ୍ୟନ୍ତ ସରକାରଙ୍କ ନିର୍ମାଣ ବିଭାଗ ସ୍କୁଲକୁ ହାତକୁ ନେଇ ନଥିଲେ । ଉନ୍ନୟନ ପାଣ୍ଠିରୁ ଗୃହ ଛପର ପାଇଁ ଇନ୍‌ସପେକ୍ଟର ମହୋଦୟ ଟଙ୍କା ମଞ୍ଜୁର କରୁଥିଲେ । ଖୋର୍ଦ୍ଧାରେ କେବଳ ପାଠପଢ଼ା ଉପରେ ତୀକ୍ଷ୍ଣ ନଜର ଦିଆଯାଉଥିଲା । ମାତ୍ର ଏଠାରେ ଘରବାଡ଼ି କଥା ସବୁ ଦେଖିବାକୁ ପଡ଼ିଲା । ବସିବାର ଓ ପଢ଼ିବାର ସୁବିଧା ଯେଉଁଠି ନଥିଲା ସେଠାରେ ପାଠପଢ଼ା କ'ଣ ହେବ ?

ନିରାକାରପୁର ଖୋର୍ଦ୍ଧାଠାରୁ ଷୋଳ ମାଇଲ ଦୂରରେ ଅବସ୍ଥିତ ଥିଲେ ହେଁ ଏଠାରେ ଜଳବାୟୁ ଖୋର୍ଦ୍ଧା ଜଳବାୟୁଠାରୁ ଉତ୍କୃଷ୍ଟତର । ସେଠାରେ ମୋର ପେଟରୋଗର ବ୍ୟଥା ବେଳେ ବେଳେ ଅନୁଭୂତ ହେଉଥିଲା । ମାତ୍ର ଏଠାରେ କିଛିମାସ ପରେ ଜଣାଗଲା ପେଟରୋଗ ଛାଏଁ ଛାଏଁ ଭଲ ହୋଇଯାଇଛି । ପାନୀୟ ଜଳର ଶୁଦ୍ଧତା ବହୁ ରୋଗକୁ ଉପଶମ କରେ । ଏଠାକାର କୂପ ଜଳ ମୋ ସ୍ୱାସ୍ଥ୍ୟପ୍ରତି ଅନୁକୂଳ ଥିଲା । ଚିତ୍ରକୂଟ ପାହାଡ଼ ଆଡୁ ଗୋଟିଏ ବଡ଼ଝର କୂଅ ଭିତରକୁ ପ୍ରବେଶ କରିଥିଲା । ତାହା ଔଷଧୀୟ ବୃକ୍ଷ ଚେର ଦେଇ ଆସୁଥିବାର ଜଣାପଡୁଥିଲା । ସ୍ଥାନଟି ବ୍ୟୟବହୁଳ ନଥିଲା । ପନିପରିବା ମାଛ, ମାଂସ ଅପେକ୍ଷାକୃତ ଶସ୍ତା ଥିଲା । ଶନିବାର ଓ ମଙ୍ଗଳବାରରେ ଗୋଟିଏ ବଡ଼ ହାଟ ଏଠାରେ ବସେ । ତିନି ଚାରିଗୋଟି ସାହିରେ ପ୍ରାୟ ପନ୍ଦର ଶହ ଲୋକ ବାସ

କରୁଥିଲେ । କଲେଜଟିଏ ଦଶ ବାର ବର୍ଷ ହେଲା ସ୍ଥାପିତ ହୋଇଥିବାରୁ ଟାଉନସିପ୍ ଗଢ଼ି ଉଠୁଥିଲା । ପାଞ୍ଚ ନମ୍ବର ଜାତୀୟ ରାଜପଥ ରାମେଶ୍ୱରଠାରୁ ଏକ ଶାଖା ରାସ୍ତା ନିରାକାରପୁର ଦେଇ ପୁରୀ ସବଡ଼ିଭିଜନର ନିମ୍ନ ଅଞ୍ଚଳକୁ ବିସ୍ତାରିତ ହୋଇଥିଲା । ନିମ୍ନଭୂମି ଅଞ୍ଚଳରୁ ବହୁଲୋକ ଏଠାରେ ଘରଦ୍ୱାର କରି ରହିବାକୁ ପସନ୍ଦ କରୁଥିଲେ ।

୧୯୫୯ ମସିହାରେ ଖୋରଧାରେ କଳା କଲେଜ ସ୍ଥାପିତ ହେବାସମୟରେ ନିରାକାରପୁରରେ ଗୋଟିଏ ବିଜ୍ଞାନ କଲେଜ ସ୍ଥାପିତ ହୋଇଥିଲା । ପରବର୍ତ୍ତୀକାଳରେ ପ୍ରାଣନାଥ ପଟ୍ଟନାୟକଙ୍କ ନାମାନୁସାରେ ଖୋର୍ଦ୍ଧା କଲେଜ ନାମିତ ହୋଇଛି । ସେହିପରି ଦାନବୀର ହୃଦୟବାନ କ୍ଷେତ୍ରବାସୀ ରାଉତରାୟଙ୍କ ନାମରେ ନିରାକାରପୁର କଲେଜ କ୍ଷେତ୍ରବାସୀ କଲେଜ ହିସାବରେ ପ୍ରସିଦ୍ଧି ଲାଭକଲା । କର୍ତ୍ତୃପକ୍ଷ ଆର୍ଥିକ ସାହାଯ୍ୟ ଲୋଭରେ ଡି.ଏ.ଭି. ସଂସ୍ଥାସହିତ କଲେଜକୁ ଯୋଡ଼ିଦେଲେ । କଲେଜ ନାଁ ରହିଲା କେ.ବି.ଡି.ଏ.ଭି. କଲେଜ, ନିରାକାରପୁର । ଋଷି ଦୟାନନ୍ଦ ସରସ୍ୱତୀ ଆର୍ଯ୍ୟଚେତନାର ଜାଗ୍ରତ ଜ୍ୟୋତିଥିଲେ । ସେ ଆର୍ଯ୍ୟସମାଜ ପ୍ରତିଷ୍ଠା କରିଥିଲେ । ତାଙ୍କ ନାମରେ ସମଗ୍ର ଭାରତରେ ବହୁ ଶିକ୍ଷାନୁଷ୍ଠାନ ଗଢ଼ାହୋଇଛି । ତାଙ୍କ ନାମ ସହିତ କ୍ଷେତ୍ରବାସୀଙ୍କ ନାମ ସଂଯୋଗ କୋଟିଜନ୍ମ ସୁକୃତର ଫଳ ବୋଲି ମନେହୁଏ । ତେଣୁ କ୍ଷେତ୍ରବାସୀ ଯାହା କରନ୍ତୁ ବା ନକରନ୍ତୁ ସୁଦୂର ଗଡ଼ସାହିରୁ ଆଗମନ କରି ନିରାକାରପୁରରେ ସ୍କୁଲ ଓ କଲେଜ ପ୍ରତିଷ୍ଠା କରି ଯେଉଁ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଛନ୍ତି ତାହା କାଳକାଳକୁ ସମଗ୍ର ରାଜ୍ୟର ମୁଖ ଯେ ଉଜ୍ଜ୍ୱଳ କରୁଥିବ ଏଥିରେ ସନ୍ଦେହର ଅବକାଶ ନାହିଁ । ୧୯୭୦ ମସିହାରେ ନିରାକାରପୁର କଲେଜ ସହିତ କଳା ବିଭାଗ ଯୋଗ କରାଯାଇ ଏକ ପୂର୍ଣ୍ଣାଙ୍ଗ କଲେଜରେ ପରିଣତ କରାଗଲା ।

ଏବେ ନିରାକାରପୁର ରେଳରାସ୍ତାଠାରୁ ପଦ୍ମପୁର ଖଜୁରିଆ ପର୍ଯ୍ୟନ୍ତ ବହୁ ଘରଦ୍ୱାର ଗଢ଼ି ଉଠିଲାଣି । ତିନିମାଇଲ ପୂର୍ବକୁ ସିଦ୍ଧେଶ୍ୱର ମହାଦେବଙ୍କ ବିଜେସ୍ଥଳୀ । ସେଠାରେ ପ୍ରତ୍ୟେକ ସଂକ୍ରାନ୍ତି ଦିନ ଏକ ବଡ଼ ମେଳା ଅନୁଷ୍ଠିତ ହୁଏ । ବିଦ୍ୟାଳୟ ପ୍ରତିଷ୍ଠା ହେଲା ୧୯୪୮ ମସିହାରେ । ଡିଆଗ୍ରାମର ଶ୍ରୀ ଆନନ୍ଦ ରଥ ଓ ଶ୍ରୀ ଜୟକୃଷ୍ଣ ଦାଶ ମୁଖ୍ୟ ଆୟୋଜକ ଥିଲେ । ବୋଲଗଡ଼ରେ ବାବୁ ଆନନ୍ଦ ରଥ ଶ୍ରୀ ବାମନ ମହାପାତ୍ରଙ୍କ ସହାୟତାରେ ହାଇସ୍କୁଲଟିଏ ଗଢ଼ିଲେ । ପଥରରୁ ପାଣି ବାହାର କରିଦେବା ଲୋକ । ସେ ଉତ୍ତମ ସଙ୍ଗଠକ । ସେତେବେଳେ ବହୁଦୂରରେ ହାଇସ୍କୁଲ ମାନ ଥିଲା । ଖୋରଧା, ଓଲସିଂହ, ଟାଙ୍ଗିସ୍କୁଲ, ବହୁଦୂରରେ । ତେଣୁ ନିରାକାରପୁର ଅଞ୍ଚଳରେ ଶିକ୍ଷାଲୋକ ବିତରଣ କରିବାର ପ୍ରଥମ ଚିନ୍ତାଶୀଳ ଲୋକ ଶ୍ରୀ ଆନନ୍ଦ ରଥ ।

## ନିରାକାରପୁରରେ ଶିକ୍ଷା ବିସ୍ତାର :

ଏଇଠି ଗୋଟିଏ କଥା ମନରେ ଜାଗରିତ ହୁଏ । ନିରାକାରପୁର ଶିକ୍ଷାବିସ୍ତାର କରିବା ପାଇଁ କାହାଠାରୁ ପ୍ରେରଣା ପାଇଲା ? ନିରାକାରପୁରଠାରୁ ପ୍ରାୟ ଛଅ କି. ସାତ କି.ମି. ଦୂରରେ ପୂର୍ବଦିଗକୁ ନିମ୍ନଭୂମିରେ ଅଞ୍ଜିରା ନାମକ ଏକ ପଲ୍ଲୀଗ୍ରାମ ଅବସ୍ଥିତ । ସେହି ଗ୍ରାମର ସାଧୁ, ସଚ୍ଚୋଟ, ନିରୀହ କୃଷକ ବାବୁ ପୀତବାସ ବରାଳଙ୍କ ବାସଗୃହ । ସେହି ଶିକ୍ଷାପ୍ରେମୀ ଧନାଢ୍ୟ କୃଷକ ନିଜଗ୍ରାମରେ ମାଇନର ସ୍କୁଲଟିଏ ପ୍ରତିଷ୍ଠା ନକରି ଦଳବେହେରା ଶ୍ରୀ ଭିକାରି ଚରଣ ଜଗଦ୍ଦେବଙ୍କ ଗ୍ରାମ ବକୁଠାରୁ ଏକ ମାଇଲ ଉତ୍ତରକୁ ମାଇନର ସ୍କୁଲଟିଏ ପ୍ରତିଷ୍ଠା କଲେ । ଭିକାରି ଜଗଦ୍ଦେବ ଜଣେ ଗୁଣୀ ଲୋକ । ପୀତବାସ ବରାଳ ଅମାୟିକ ବ୍ୟକ୍ତି । ଜଗଦ୍ଦେବ ମହାଶୟଙ୍କ ଦ୍ୱାରା ସେ ପ୍ରଭାବିତ ହୋଇ ନିରାକାରପୁର-ମୁକୁନ୍ଦପୁର ରାସ୍ତାକଡ଼ରେ ସ୍କୁଲଟି ପ୍ରତିଷ୍ଠା ନକରି ବକୁ ଗ୍ରାମର ଉତ୍ତର ଦିଗରେ ପ୍ରାୟ ପାଞ୍ଚଶହ ମିଟର ଦୂରରେ ଗହୀର ମଧ୍ୟରେ ଅନୁଷ୍ଠାନଟିଏ ନିର୍ମାଣ କଲେ । ତେଣୁ ସେ ଅଞ୍ଚଳରେ ଶିକ୍ଷାଲୋକ ବିସ୍ତାର କରିବାରେ ସେ ହେଲେ ପ୍ରଥମ ବ୍ୟକ୍ତି । ତାଙ୍କ ନାମ ଚିରକାଳ ଇତିହାସ ପୃଷ୍ଠାରେ ଯେ ଲିପିବଦ୍ଧ ହୋଇ ରହିବ ଏଥିରେ ମତଦ୍ୱୈଧ ନାହିଁ । ଲୋକମୁଖରୁ ଶୁଣାଯାଏ ସ୍କୁଲଟି ପ୍ରତିଷ୍ଠା କରି ତାର ପରିଚାଳନା ନିମନ୍ତେ ବରାଳ ମହାଶୟ କୋଡ଼ିଏ ମାଣ ଜମି ଖଞ୍ଜି ଦେଇଥିଲେ । ଏବେ ପଚିଶ ବର୍ଷ ପରେ ସେଠାରେ ଏକ ହାଇସ୍କୁଲ ଜନ୍ମଲାଭ କରିଛି । ଏଥିପାଇଁ ପୀତବାସ ବରାଳ ଧନ୍ୟ ଓ ଭିକାରି ଜଗଦ୍ଦେବ ମଧ୍ୟ ଧନ୍ୟ ।

## ମହାନ୍ କ୍ଷେତ୍ରବାସୀ ରାଉତରାୟ :

ସେତେବେଳକୁ କ୍ଷେତ୍ରବାସୀ ରାଉତରାୟ ମହାଶୟ ନିରାକାରପୁରରେ ଅବସ୍ଥାନ କରି ବ୍ୟବସାୟ କରି ବିପୁଳ ସମ୍ପତ୍ତିର ଅଧିକାରୀ ହେଲେଣି । ଆନନ୍ଦବାବୁ ବୋଲଗଡ଼ରୁ ଫେରିଥାନ୍ତି । ଉଦ୍ଦେଶ୍ୟ ଏଠାରେ ଗୋଟିଏ ଉଚ୍ଚତର ଶିକ୍ଷାନୁଷ୍ଠାନ ଗଢ଼ିବେ । ସେ ରାଉତରା ମହାଶୟଙ୍କୁ ତାଙ୍କ ବାସଭବନରେ ଭେଟିଲେ । ଅଞ୍ଜିରା ଗ୍ରାମର ବଦାନ୍ୟ ବ୍ୟକ୍ତି ବାବୁ ପୀତବାସ ବରାଳଙ୍କର ମାଇନର ସ୍କୁଲ ପ୍ରତିଷ୍ଠା ବିଷୟ ଜଣାଇଲେ । ରାଉତରା ମହୋଦୟ ଧନ କୁବେର । ସାଧାରଣତଃ ଧନବାନ୍ ବ୍ୟକ୍ତିର ମନରେ ଟିକିଏ ଅହଂଭାବ ଥାଏ । ସେ ବରାଳଙ୍କର ପ୍ରଶଂସା ସମ୍ଭାଳି ପାରିଲେନାହିଁ । ଆନନ୍ଦବାବୁଙ୍କର ପରାମର୍ଶରେ ନିରାକାରପୁରରେ ଏକ ମାଇନର ସ୍କୁଲ ୧୯୪୮ ମସିହାରେ ପ୍ରତିଷ୍ଠା କଲେ । ଏକା ବର୍ଷ ଦୁଇଟି ଶ୍ରେଣୀ ଖୋଲାଗଲା । ୧୯୪୯ ମସିହାରେ ମାଟ୍ରିକ କ୍ଲାସ ଅଷ୍ଟମ ଖୋଲାଗଲା । ପିଲାମାନେ ମାଟ୍ରିକ ପରୀକ୍ଷା ଦେଲେ ୧୯୫୪ ମସିହାରେ । ଖୋର୍ଦ୍ଧା

ହାଇସ୍କୁଲ ପରି ଏକ ବିରାଟ ସୌଧ ଚିତ୍ରକୂଟ ପାହାଡ଼ର ପାଦଦେଶରେ ରାଉତରା ନିର୍ମାଣ କଲେ । କିନ୍ତୁ ୧୯୫୯ ମସିହାରେ ସେଠାରେ ବିଜ୍ଞାନ କଲେଜ ଗଢ଼ାଗଲା । ବିଜ୍ଞାନ କଲେଜ ପ୍ରତିଷ୍ଠାରେ କଂଗ୍ରେସ କର୍ମୀ ଶ୍ରୀ ବନମାଳୀ ପଟ୍ଟନାୟକ ଓ ଶ୍ରୀ ସୁରଜମଲ୍ଲ ସାହା ଖୁବ୍ ସାହାଯ୍ୟ କରିଥିଲେ । ହାଇସ୍କୁଲ ପାଇଁ ନିର୍ମିତ ସୁରମ୍ୟ ଅଟ୍ଟାଳିକାଟି ବୃହତ୍ତର ସ୍ୱାର୍ଥଦୃଷ୍ଟିରୁ କଲେଜକୁ ଦାନ କରାଗଲା ଓ ପୂର୍ବର ପରିତ୍ୟକ୍ତ ଚାଳଛପର ଗୃହକୁ ହାଇସ୍କୁଲକୁ ପଠାଇ ଦିଆଗଲା ।

ରାଉତରା ମହୋଦୟ ଇଂରାଜୀ ପାଠ ପଢ଼ିନଥିଲେ ମଧ୍ୟ ଉଚ୍ଚଶିକ୍ଷାପ୍ରତି ତାଙ୍କର ବିଶେଷ ଅବଦାନ ଥିଲା । ସେ ଜଣେ ନିରଳସ ବୁଦ୍ଧିମାନ ବ୍ୟକ୍ତି ଥିଲେ । କିନ୍ତୁ ପାଟିରେ ଶଳା, ବେଧୁଆ ଗାଳି ବସାବାନ୍ଧି ରହିଥିଲା । ସେଗୁଡ଼ାକୁ ଲୋକେ ଗାଳିବୋଲି ଧରୁନଥିଲେ । ତାଙ୍କ ଜନ୍ମସ୍ଥାନ ଦୟାନଦୀର ବାମପାର୍ଶ୍ୱରେ କଣାସ ନିକଟବର୍ତ୍ତୀ ଜଙ୍କିଆ ଗଡ଼ସାହି ଗ୍ରାମରେ । ସେ ଔଡ୍ର-କ୍ଷତ୍ରିୟ । ଶୁଣାଯାଏ ବାଲ୍ୟକାଳେ ସେ ରେଙ୍ଗୁନ ଯାତ୍ରାକରି ଗୁଜୁରାଣ ମେଣ୍ଟାଉଥିଲେ । ୧୯୩୫ ମସିହାରେ ବର୍ମାଦେଶ ଭାରତରୁ ସ୍ୱତନ୍ତ୍ର ହୋଇଯିବାପରେ ଭାରତୀୟମାନେ ବର୍ମାରୁ ଭାରତକୁ ପ୍ରତ୍ୟାବର୍ତ୍ତନ କଲେ । ସେ କଲିକତା ବାଟେ ଗ୍ରାମକୁ ଫେରିଲାବେଳେ ବଡ଼ ବଡ଼ ଖ୍ୟାତନାମା କଣ୍ଟ୍ରାକ୍ଟରଙ୍କୁ ଭେଟି ସେମାନଙ୍କଠାରୁ ପ୍ରେରଣା ପାଇ ନିରାକାରପୁରରୁ ଓଡ଼ିଶା ବାହାରକୁ ଶ୍ରମିକ ପ୍ରେରଣ କଲେ । ଏହି କାର୍ଯ୍ୟକରି ଅଳ୍ପଦିନ ମଧ୍ୟରେ ସେ ଅମାପ ଧନର ମାଲିକ ହେଲେ । ସେ ଅଞ୍ଚଳର ଉନ୍ନତିକଳ୍ପେ କିଛି ଧନ ବ୍ୟୟ କଲେ । ଆନନ୍ଦବାବୁ ଏଥିରେ ପୂର୍ଣ୍ଣ ସହଯୋଗ କଲେ । ନିରାକାରପୁରର ଜ୍ଞାନଚକ୍ଷୁ ଖୋଲିଗଲା । ଲକ୍ଷ୍ମୀ-ସରସ୍ୱତୀ ଉଭୟେ ସଉତୁଣୀ ହେଲେ ମଧ୍ୟ ଉଭୟଙ୍କର ସହଯୋଗରେ ଜଗତର ରୂପ ବଦଳିଯାଏ । ମହାବୀର ଶିବାଜୀ ପାଠ ନପଢ଼ି ଏକ ଶକ୍ତିଶାଳୀ ହିନ୍ଦୁସାମ୍ରାଜ୍ୟ ଗଠନ କରିଥିଲେ । ମହାନ୍ ଆକବର ପାଠ ନପଢ଼ି ଏକ ବିରାଟ ସାମ୍ରାଜ୍ୟ ଗଠନ କରିଥିଲେ ଏବଂ ବିରାଟ ପୁସ୍ତକାଗାର ସ୍ଥାପନ କରିଥିଲେ । ତେବେ ରାଉତରାୟ ମହାଶୟ ଅଳ୍ପ ବିଦ୍ୟା ହାସଲ କରି ସମଗ୍ର ଭାରତରେ ପରିଚିତ ହେବେ ନାହିଁ କାହିଁକି ? ତାଙ୍କ ହୃଦୟ ନିର୍ମଳ ଥିଲା । ଦେବା ମରିବାକୁ କେହି ଭଲପାନ୍ତି ନାହିଁ ବୋଲି ପ୍ରବାଦ ଅଛି । ସେତେବେଳେ କାଶୀପୁରରେ ପ୍ରତାପୀ ବ୍ରହ୍ମାବଂଶ ବାସ କରୁଥିଲେ । ସେମାନଙ୍କର କ୍ଷମତା ଯେପରି ଥିଲା ଧନ ସେହିପରି ଥିଲା । କୋଡ଼ିଏ କି ତିରିଶ ଖଣ୍ଡ ମୌଜାରେ ନାଁ ପଡୁଥିଲା । ସେମାନେ ଧନର ସଦ୍‌ବ୍ୟବହାର କରି ପାରିଲେନାହିଁ, ଧନ ସବୁଦିନ ରହିପାରେ ନାହିଁ । ଧନ ଚାଲିଗଲେ ମନ ବି ମରିଯାଏ । ସେହିପରି ଧନୀ ବ୍ୟକ୍ତି ବିପୁଳ ସମ୍ପତ୍ତିର ମାଲିକ ଟାଙ୍ଗୋଳ ଅଧିବାସୀ

ବାବୁ ଋଷିରାମ ମହାନ୍ତି । ସେ ନାହାନ୍ତି କି ବ୍ରହ୍ମା କି କ୍ଷେତ୍ରବାସୀ ନାହାନ୍ତି । କିନ୍ତୁ କ୍ଷେତ୍ରବାସୀ ମରି ମଧ୍ୟ ଅମର । ଏବେ ମଧ୍ୟ ଆଚାଣ୍ଡାଳ-ବ୍ରାହ୍ମଣ ସମସ୍ତେ ତାଙ୍କୁ ଖାତିରି କରନ୍ତି ।

ତାଙ୍କ ପୁତ୍ର ଦିଗମ୍ବରବାବୁ ସୁମୂର୍ତ୍ତିବାନ ପୁରୁଷ । ବିପୁଳ ଧନର ମାଲିକ । କେବେ ପିତାଙ୍କ ନାମଧରି ଗର୍ବ କରନ୍ତି ନାହିଁ । କିନ୍ତୁ ଦାନ କରିବାର ପ୍ରବୃତ୍ତି ତାଙ୍କର ନଥିଲା । ମୁଁ ବାରବର୍ଷ କାଳ ତାଙ୍କୁ ଅଳି କଲି ବାପାଙ୍କର ଏକ ପ୍ରତିମୂର୍ତ୍ତି ବିଦ୍ୟାଳୟ ପ୍ରାଙ୍ଗଣରେ ପ୍ରତିଷ୍ଠା କରିବାପାଇଁ, ମାତ୍ର ସେ ଆଦୌ ରାଜି ହେଲେ ନାହିଁ । ଏପରିକି ତାଙ୍କ ପିତାଙ୍କର ଏକ ତୈଳଚିତ୍ର ଉନ୍ମୋଚନ କରିବାପାଇଁ ବି ପ୍ରବର୍ତ୍ତାଇଥିଲି । ମାତ୍ର ସେ ସବୁଥର ମୋତେ ନିରୁତ୍ସାହିତ କରିଥିଲେ । ଏଥିରୁ ଏକ ନିଶ୍ଚିତ ସିଦ୍ଧାନ୍ତରେ ଉପନୀତ ହୋଇଥିଲି ଯେ ପୂର୍ବଜନ୍ମର ସୁକୃତ ନଥିଲେ କେହି କେବେ ମହତ୍ତର କାର୍ଯ୍ୟ ସମ୍ପାଦନ କରିପାରିବେ ନାହିଁ ।

**ବିଦ୍ୟାଳୟର ବରିଷ୍ଠ ଶିକ୍ଷକ କୃଷ୍ଣଚନ୍ଦ୍ର ବଳିୟାରସିଂହ କହନ୍ତି :**

''ଆନନ୍ଦ ରଥ ହାଇସ୍କୁଲର ପ୍ରତିଷ୍ଠାତା ହେଡମାଷ୍ଟର । ସ୍କୁଲ ବହୁଦିନ ପର୍ଯ୍ୟନ୍ତ ଘରୋଇ ସ୍କୁଲ ଥିଲା ଏବଂ କ୍ଷେତ୍ରବାସୀ ରାଉତରାଙ୍କ ଉପରେ ନିର୍ଭର କରୁଥିଲା । ତେଣୁ ଟଙ୍କାପଇସାର ଘୋର ଅଭାବ ପରିଲକ୍ଷିତ ହେଉଥିଲା । ବିଦ୍ୟାଳୟର କର୍ମଚାରୀବୃନ୍ଦ ଦୁଇ ତିନି ମାସ ବେତନ ପାଆନ୍ତି ନାହିଁ । ଏପରି ସମୟରେ ରଥଙ୍କୁ ବୁଦ୍ଧି ଖୋଜିବାକୁ ପଡ଼େ । ବାବୁ ଜୟକୃଷ୍ଣ ଦାଶ ବିଦ୍ୟାଳୟର ସେକ୍ରେଟାରୀ । ଦିନ ଠିକ୍‌କରି ଉଭୟେ ଜୟୀବାବୁ ଓ ଆନନ୍ଦବାବୁ ରାଉତରା ମହୋଦୟଙ୍କ ପାଖକୁ ଟଙ୍କା ପାଇଁ ଯାଆନ୍ତି । ରାଉତରାଏ ବହୁ ଟଙ୍କା ଦେଲେଣି, ବେଳେ ବେଳେ ବିରକ୍ତଭାବ ପ୍ରକାଶ କରନ୍ତି । ଏପରିକି ଗାଳିଦେଇ କହନ୍ତି, ''ଶଳା ପଣ୍ଡା ଟୋକାଏ ମୋତେ ସାରିଦେଲେ । '' ରାଉତରାଙ୍କ କ୍ରୋଧ କ୍ଷଣିକ ମାତ୍ର– ଏକଥା ଗ୍ରହୀତା ଜାଣନ୍ତି । ତେଣୁ ରାଉତରାଙ୍କୁ ଖୁସି କରିବା ପାଇଁ ଉପାୟ ଖୋଜନ୍ତି । ରାଉତରାଏ ତାସ୍ ଖେଳପ୍ରିୟ । ଗୋଟିଏ ତରଫରେ ଦାଶେ, ରଥେ ଠରାଠରି ହୋଇ ବସନ୍ତି । ଅନ୍ୟ ତରଫରେ ରାଉତରାଏ ଓ ତାଙ୍କ ଗୁମାସ୍ତା ବସନ୍ତି । ରାଉତରାଙ୍କୁ ଖେଳରେ ଜିତାଇବା ସେମାନଙ୍କ ଉଦ୍ଦେଶ୍ୟ ।

ଦୁଇତିନି ଥର ବା ଅଧିକ ଥର ଖେଳ ହୁଏ । ରାଉତରାୟ ଜିତୁଥିଲେ ବାଜି ସଂଖ୍ୟା ବଢ଼ିଯାଏ । ଶେଷରେ ଖେଳ ବନ୍ଦ ହୁଏ । ରାଉତରାଏ ଅତୀବ ଖୁସି । ତା'ପରେ ଚା' ଜଳଖିଆ ପରିବେଷଣ କରାଯାଏ । ଜଳଖିଆ ଚା'ସରିଲେ ସେ ପୁଣି ପଚାରନ୍ତି, ''ରଥେ କୁଆଡ଼େ ଆସିଲେ ?'' ଉତ୍ତର ମିଳେ, ''ଆଜ୍ଞା, ମାଷ୍ଟରମାନେ ତିନି ମାସ ହେଲା ଦରମା ପାଇନାହାନ୍ତି । କାମ କରିବେ କିପରି ?'' କେତେ ଟଙ୍କା ଦରକାର ?

ଆଜ୍ଞା, ପାଞ୍ଚହଜାର ଟଙ୍କା ହେଲେ ଚଳିଯିବ । ତା'ଠାରୁ କମ୍ ନିଅ ବା ଏତେଟଙ୍କା ଏଇନା ନାହିଁ । ଏକଥା ରାଉତରାଙ୍କ ପାଟିରେ ପଶେ ନାହିଁ । ସାଙ୍ଗେ ସାଙ୍ଗେ ତାଙ୍କର ବିଶ୍ୱସ୍ତ ଦେହଲଗା ଚାକରକୁ ଡାକି କହନ୍ତି, ''ମଦନା ! ପାଞ୍ଚହଜାର ଟଙ୍କା ରଥଙ୍କୁ ଗଣି ଦେ ।'' ସେତେବେଳେ ଏତେଗୁଡ଼ାଏ ଟଙ୍କା ନିର୍ଲୋଭରେ ପଦେ କଥାରେ ବାହାର କରିଦେବା କମ୍ ବଦାନ୍ୟ ବ୍ୟକ୍ତିଙ୍କଠାରେ ଦେଖାଯାଏ । ଯେ ଶୁଣେ ସେ ଆଶ୍ଚର୍ଯ୍ୟ ନ ହୋଇ ରହିପାରେ ନାହିଁ । ଏହିପରି ଭାବରେ ଆନନ୍ଦବାବୁ ବିଦ୍ୟାଳୟ ଚଳାଉଥିଲେ । ନିରାକାରପୁର ପରି ଏକ ପଲ୍ଲୀଗ୍ରାମରେ ଯେଉଁଠାରେ ଭାରତ ସ୍ୱାଧୀନତାବେଳକୁ ମାଇନରସ୍କୁଲଟିଏ ନଥିଲା, ସେଠାରେ ମାଇନରସ୍କୁଲ, ପରେ ପରେ ହାଇସ୍କୁଲ ଓ ଛଅବର୍ଷ ପରେ ବିଜ୍ଞାନ କଲେଜଟିଏ ପ୍ରତିଷ୍ଠା କରିବା କମ୍ ବାହାଦୁରୀ କଥା ନୁହେଁ । ରାଉତରାଏ କଲେଜ ପ୍ରତିଷ୍ଠାକରି ଦୀର୍ଘ ଦଶ ବର୍ଷ କାଳ ଚଳେଇବା ପାଇଁ ସମସ୍ତ ଖର୍ଚ୍ଚ ବହନ କରିଥିଲେ । ଗାଁ ଗହଳିରେ କଲେଜ ପ୍ରତିଷ୍ଠା କରିବାରେ ନିରାକାରପୁର ପ୍ରଥମ ବୋଲି ମନେହୁଏ । ତେଣୁ ନିରାକାରପୁର ଅଞ୍ଚଳର ଜନସାଧାରଣ କାହିଁକି, ସମଗ୍ର ଉତ୍କଳବାସୀ ରାଉତରାୟଙ୍କ ପାଖେ ଚିରକାଳ ଋଣୀ ହୋଇରହିବେ ।

**କ୍ଷେତ୍ରବାସୀଙ୍କ ସହଧର୍ମିଣୀ :**

ଏଇ ପରିପ୍ରେକ୍ଷୀରେ ଆମ୍ଭେମାନେ ଆଉ ଗୋଟିଏ କଥା ମନେ ପକାଇଥାଉଁ । ସଂସ୍କୃତରେ ଗୋଟିଏ ଆପ୍ତବାକ୍ୟ ଅଛି –

''ଯୋଗ୍ୟଂ ଯୋଗ୍ୟେନ ଯୁଜୟେତ୍ ।'' ସ୍ୱାମୀ ଯେପରି ପତ୍ନୀ ସେହିପରି । କ୍ଷେତ୍ରବାସୀ ରାଉତରାଙ୍କ ଧର୍ମପତ୍ନୀ ମଧ୍ୟ ଜଣେ ଦୃଢ଼ମନା ନୀତିପରାୟଣା ମହିଳା ଥିଲେ । ମୁଁ ସେ ସ୍କୁଲକୁ ଗଲାବେଳକୁ କ୍ଷେତ୍ରବାସୀ ଆରପାରିକୁ ଚାଲିଯାଇଥିଲେ । ବାବୁ ଶ୍ରୀନିବାସ ପଣ୍ଡା ମହୋଦୟ ନିରାକାରପୁର କଲେଜର ଅଧକ୍ଷ ଥାଆନ୍ତି । କଲେଜ ପରିଚାଳନା ପାଇଁ କ୍ଷେତ୍ରବାସୀ ଏକଲକ୍ଷଟଙ୍କା ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ । ଅଶୀ ହଜାର ଟଙ୍କା ଦେଇଛନ୍ତି ତାଙ୍କର ମହାପ୍ରୟାଣ ଘଟିଲା । ସେତେବେଳେ ଘରୋଇ କଲେଜକୁ ରାଜ୍ୟସରକାର ପୂର୍ଣ୍ଣ ଟଙ୍କା ଦେଉନଥିଲେ । କଲେଜ ଅଧ୍ୟାପକଙ୍କ ପାଇଁ ଟଙ୍କାର ଘୋର ଅଭାବ ପଡ଼ିଲା । ଶ୍ରୀନିବାସବାବୁ ନିରାକାରପୁରସ୍ଥ ରାଉତରାଙ୍କ କୋଠିକୁ ଯାଇ ଅବଶିଷ୍ଟ କୋଡ଼ିଏ ହଜାର ଟଙ୍କା ଦେବାପାଇଁ ତାଙ୍କ ପୁତ୍ର ଦିଗମ୍ବରବାବୁଙ୍କୁ ଅନୁରୋଧ କଲେ । ମାତ୍ର ଦିଗମ୍ବରବାବୁ ଏତେଗୁଡ଼ାଏ ଟଙ୍କା ନାଁ ଶୁଣି କୁଣ୍ଠିତ ହେଲେ, ଏପଟ ସେପଟ ହେଲେ । ଏକଥା ରାଉତରାଙ୍କ ଧର୍ମପତ୍ନୀଙ୍କ କାନକୁ ଗଲା । ସେ ଦେଖିଲେ ଯେତେବେଳେ ସାଆନ୍ତ ପ୍ରତିଶ୍ରୁତି ଦେଇଛନ୍ତି ସେଥିରୁ ଓହରିଯିବା ଉଚିତ ହେବ ନାହିଁ । ସେ

ସାଙ୍ଗେ ସାଙ୍ଗେ ଦିଗମ୍ବରବାବୁଙ୍କୁ ଡାକି କହିଲେ, ''ଦିଗମ୍ବର ! ବାପା ଯାହା କହି ଯାଇଛନ୍ତି ତାକୁ ଖିଲାପ କରନାହିଁ । ପକେଇଲା ଛେପକୁ ଢୋକିବା ଉଚିତ ନୁହେଁ, ଶୀଘ୍ର ଯୋଗାଡ଼ କରି ଟଙ୍କା ଦିଅ ।''

ମାଆଙ୍କୁ ଦିଗମ୍ବରବାବୁ ଖୁବ ମାନନ୍ତି । ସେ କାଳବିଳମ୍ବ ନକରି ସାଙ୍ଗେ ସାଙ୍ଗେ ତହବିଲରୁ କୋଡ଼ିଏ ହଜାର ଟଙ୍କା ଗଣିଦେଲେ । ଉପରୋକ୍ତ ଘଟଣାଗୁଡ଼ିକରୁ କ୍ଷେତ୍ରବାସୀ ରାଉତରା ଓ ତାଙ୍କ ଧର୍ମପତ୍ନୀଙ୍କର ମହତପଣିଆ ଜଣାପଡ଼େ । କ୍ଷେତ୍ରବାସୀଙ୍କ ମହତପଣିଆର ବହୁ କଥା ମୁଁ ଶୁଣିଛି ମାତ୍ର ସେସବୁ ଏଠାରେ ସ୍ଥାନ ଦେବା ସହଜ ନୁହେଁ ।

ପ୍ରତିବର୍ଷ ଫେବୃଆରୀ ମାସ ଦୁଇ ତାରିଖରେ ପ୍ରତିଷ୍ଠାତା ଦିବସ ପାଳିତ ହୁଏ । ହାଇସ୍କୁଲ, କଲେଜ ପିଲାମାନେ ନିରାକାରପୁରସ୍ଥ ରାଉତରାଙ୍କ ସମାଧି ପୀଠରେ ପୁଷ୍ପମାଲ୍ୟ ଅର୍ପଣ କରିଥାଆନ୍ତି । ମୁଁ ସେଠାରେ ଗୋଟାଏ ଯୁଗ ରହିଗଲି । ପ୍ରତିବର୍ଷ ସେହି ମହାନ ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରେ । ସେଠାରୁ ପ୍ରତ୍ୟାବର୍ତ୍ତନ କରି ଛାତ୍ର ଓ ଶିକ୍ଷକମାନଙ୍କ ସମାବେଶରେ ତାଙ୍କର ଗୁଣଗାନ କରେ । କିନ୍ତୁ ପିତାଙ୍କର ବଦାନ୍ୟତା ଦିଗମ୍ବରବାବୁଙ୍କଠାରେ କାଣିଚାଏ ପରିଲିକ୍ଷତ ହେଲା ନାହିଁ । ତାଙ୍କ ଶ୍ରାଦ୍ଧ ଦିବସରେ ପିଲାମାନଙ୍କୁ ଅନୁପ୍ରାଣିତ କରିବାପାଇଁ ସେ ପଇସାଟିଏ ବି ଖର୍ଚ୍ଚ କରନ୍ତି ନାହିଁ । ତେବେ କ୍ଷେତ୍ରବାସୀ ଯେଉଁ ଅକ୍ଷୟକୀର୍ତ୍ତି ସ୍ଥାପନ କରିଯାଇଅଛନ୍ତି ତାହା ଚିରକାଳ ଜାଜ୍ୱଲ୍ୟମାନ ହୋଇରହିବ ।

## ନୂତନ ସ୍ଥାନରେ ମୋ କର୍ମମୟ ଜୀବନ ଆରମ୍ଭ :

ମୋର ସୌଭାଗ୍ୟ ଏହିପରି ଏକ ହାଇସ୍କୁଲ୍‌ରେ ପ୍ରଧାନଶିକ୍ଷକରୂପେ ୧୯୭୦ ମସିହା ଫେବୃଆରୀ ମାସ ଅଠର ତାରିଖରେ ଯୋଗଦେଲି । ଯୋଗଦେବାପରେ ମୁଁ ନିଜକଥା, ନିଜପତ୍ନୀ କଥା ବା ପୁଅଝିଅ କଥା ଚିନ୍ତା କରିବା ସଙ୍ଗେ ସଙ୍ଗେ ସେବା ମନୋଭାବାପନ୍ନ ହୋଇ ସ୍କୁଲର ମାନ ମହତ ବଢ଼ାଇବା ପାଇଁ ଲାଗି ପଡ଼ିଲି । ୧୯୭୦ ମସିହାବେଳକୁ ରାମେଶ୍ୱର, ବଙ୍କୁ, ଓହ୍ଲାଣ ଓ ଭୁଷଣ୍ଡପୁରରେ ହାଇସ୍କୁଲ୍‌ମାନ ଘରୋଇ ପ୍ରଚେଷ୍ଟାରେ ଖୋଲାଗଲାଣି । କିନ୍ତୁ ରାମେଶ୍ୱରରେ ବହୁପୂର୍ବରୁ ଶିକ୍ଷାଲୋକ ବିଚ୍ଛୁରିତ ହୋଇଥିଲା । ୧୯୨୦ ମସିହାର ବହୁପୂର୍ବରୁ ସେଠାରେ ଭର୍ଣ୍ଣାକୁଲାର ସ୍କୁଲ ଥିଲା । ୧୯୨୫ ମସିହାରେ ସବୁ ଭର୍ଣ୍ଣାକୁଲାର ସ୍କୁଲ୍ ମାଇନର ସ୍କୁଲରେ ପରିଣତ ହେବାରୁ ତାହା ମାଇନରସ୍କୁଲରେ ପରିଣତ ହୋଇଥିଲା । ସେଠାରେ ଲୋକମାନଙ୍କ ଜ୍ଞାନଚକ୍ଷୁ ପୂର୍ବରୁ ଖୋଲିଥିଲେ ହେଁ ସେମାନେ ମାଇନର ସ୍କୁଲଟିକୁ ହାଇସ୍କୁଲରେ ଏ

ପର୍ଯ୍ୟନ୍ତ ପରିଣତ କରିପାରିନଥିଲେ । ପୂର୍ବତନ ପ୍ରତିଷ୍ଠାତା ହେଡମାଷ୍ଟର ଆନନ୍ଦ ରଥଙ୍କ ସଙ୍ଗେ ବାର୍ତ୍ତାଳାପ ସମୟରେ 'Time ye old gipsy man' ପଦ୍ୟରୁ ପଦ ଉଦ୍ଧାର କରି କହିଲି, ସାର୍ ! ଉକ୍ତ ପଦ୍ୟର ବର୍ଣ୍ଣନା ଅନୁଯାୟୀ ସଭ୍ୟତା ପ୍ରଥମେ ଗ୍ରୀସ୍‌ରେ, ପରେ ରୋମରେ ଓ ତତ୍ପରେ ଲଣ୍ଡନରେ ରହିଲା କିନ୍ତୁ ଏବେ ଜାପାନ ତା' ସ୍ଥାନ ଅଧିକାର କରିଛି । ସେହିପରି ରାମେଶ୍ୱରରେ ପ୍ରଥମେ ଜ୍ଞାନପୀଠ ଥିଲା, ଏବେ ନିରାକାରପୁର ସେ ସ୍ଥାନ ଅଧିକାର କରିଛି । ଏପରି ସମୀକ୍ଷା କରିବାରୁ ସଙ୍ଗଠକ ଆନନ୍ଦବାବୁ ସ୍ମିତ ହସିଲେ ।

ନୂତନ ଜାଗା, ମୋତେ ବହୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିଲା । ବିଦ୍ୟାଳୟରେ ପ୍ରାୟ ତିନିଶହ କି ତିନିଶହ ପଚାଶ ଜଣ ପିଲା ଥିଲେ, କୋଡ଼ିଏ ଜଣ ଶିକ୍ଷକ ଓ ଚତୁର୍ଥ ଶ୍ରେଣୀ କର୍ମଚାରୀ ତିନିଜଣ ଥିଲେ । ଏହା ଗୋଟିଏ ମିଶ୍ରିତ ହାଇସ୍କୁଲ । ବଡ଼ିଲା ଝିଅମାନେ ଦୁଇ ତିନି ମାଇଲ୍ ଦୂରରୁ ଗହୀର ବିଲ, ଗ୍ରାମ୍ୟରାସ୍ତା ଦେଇ ଅଧ୍ୟୟନ କରିବାକୁ ଆସୁଥିଲେ । ଆଦ୍ୟ ଯୌବନର ଝିଅ, ପୁଅ ପଢୁଥିବାରୁ ସମସ୍ୟା ସୃଷ୍ଟି ହେବା ସ୍ୱାଭାବିକ । ଖୋର୍ଦ୍ଧାରେ ୧୯୬୧ ମସିହା ପର୍ଯ୍ୟନ୍ତ ଝିଅମାନେ ପୁଅମାନଙ୍କ ସହିତ ପଢୁଥିଲେ । ତାହା ବେଳେ ବେଳେ ସମସ୍ୟା ସୃଷ୍ଟି କରୁଥିଲା । ମାତ୍ର ତାହା ମୋ ପାଇଁ ନଥିଲା । କିନ୍ତୁ ଏଠାରେ ନିରାକାରପୁର ହାଇସ୍କୁଲରେ ସ୍କୁଲ୍‌ର ଦାୟିତ୍ୱ ସବୁ ମୋ ମୁଣ୍ଡରେ । ବାଟରେ କ'ଣ ଘଟିଲା ସେ ବିଷୟକୁ ମୁଁ ଅବା ମୁଣ୍ଡରେ ନ ନେଇପାରେ । ତଥାପି କେତେ ପ୍ରକାର ବାଧାବିଘ୍ନ ଘଟିପାରେ । ହେଡ଼ମାଷ୍ଟର ଚଉଆଖିଆ ହେବା ଆବଶ୍ୟକ । ଚତୁର ହେବା ଦରକାର । ଗ୍ରାମ୍ୟମାମଲତକାର ଲୋକଙ୍କ ସଙ୍ଗେ କିପରି ଚଳିବାକୁ ହେବ ତାହା ନିଜେ ନିର୍ଦ୍ଧାରଣ କରିବା ଆବଶ୍ୟକ ।

**ହେଡମାଷ୍ଟରଙ୍କ ଦାୟିତ୍ୱ :**

ବିଦ୍ୟାଳୟ ଅଫିସଗୃହରେ ସର୍ବଦା କାର୍ଯ୍ୟବ୍ୟସ୍ତ ରହି ଶ୍ରେଣୀ ପିଲାମାନଙ୍କ ପ୍ରତି ସଜାଗ ଦୃଷ୍ଟି ନ ରଖିଲେ, ପାଠପଢ଼ା ପ୍ରତି ଉପଯୁକ୍ତ ଦୃଷ୍ଟି ନଦେଲେ, ଶିକ୍ଷକମାନଙ୍କୁ କର୍ମଠ, କାର୍ଯ୍ୟଦକ୍ଷ ନ କରେଇଲେ, ସମୟାନୁବର୍ତ୍ତୀ ନ କରେଇଲେ ପ୍ରଧାନଶିକ୍ଷକ ଯୋଗ୍ୟ ବିବେଚିତ ହେବେନାହିଁ । ନାନା ଚେଷ୍ଟାକରି ରାଜ୍ୟପାଳ ବା ରାଷ୍ଟ୍ରପତି ପୁରସ୍କାର ଲାଭ କଲେ ମଧ ଲୋକଚକ୍ଷୁରେ ସେ ଶ୍ରେଷ୍ଠ ଆସନ ଲାଭ କରିପାରିବେ ନାହିଁ । ମୋ ବାଲ୍ୟକାଳ ଗୁଣୀ ହେଡ୍‌ମାଷ୍ଟର ଶ୍ରୀ ରାମକୃଷ୍ଣ ମହାପାତ୍ରଙ୍କ ସଂସ୍ପର୍ଶରେ ଆସି ଭବିଷ୍ୟତରେ ଜଣେ ଉତ୍ତମ ହେଡ୍‌ମାଷ୍ଟର ରୂପେ ବାହାରିବି ବୋଲି କଳ୍ପନା କରିଥିଲି । ପ୍ରଥମେ ମାଇନର ସ୍କୁଲର ହେଡ୍‌ମାଷ୍ଟର ଥିଲି । ଏବେ ହାଇସ୍କୁଲରେ ରହିଲି । ପ୍ରଧାନଶିକ୍ଷକ ଯେ କେବଳ ବିଦ୍ୟାର ଅଧିକାରୀ ହେଲେ ହୋଇଯିବ ତାହା ନୁହେଁ, ଅନ୍ୟ କେତେକ ଗୁଣ

ଆବଶ୍ୟକ । ଏଠାର ମୁଖ୍ୟ ଲୋକମାନଙ୍କ ସହ ବହୁ ସମୟରେ ଆଲୋଚନା କରୁଛି । ଯେଉଁ ଦେଶକୁ ଯିବ ସେ ଫଳ ଖାଇବାର ବିଧି ଅଛି । ସହରି ହାଉଆରେ ପଚିଶ ବର୍ଷ କଟେଇ ଏ ଅନଗ୍ରସର ଅଞ୍ଚଳକୁ ଆସିଛି । ସେଠାରେ ଜନସମ୍ପର୍କର ଆବଶ୍ୟକତା ବେଶି ପଡ଼ିନଥିଲା । କିନ୍ତୁ ମଫସଲ ଅଞ୍ଚଳରେ ଗ୍ରାମ୍ୟ ବୁଦ୍ଧିଜୀବୀଙ୍କ ସହ ଚଳିବାକୁ ପଡ଼ିବ । ଲୁହା ଜାଣି ପାଣି ନଦେଲେ ବିପଦରେ ପଡ଼ିବାକୁ ହୋଇଥାଏ । ତଥାପି ନୀଜ ନୀତିକୁ ତ ଜଳାଞ୍ଜଳି ଦେବାକୁ ପଡ଼ିବ ନାହିଁ ?

ସଂସ୍କୃତରେ ଗୋଟିଏ ଶ୍ଳୋକ ମନେପଡ଼େ–

''ନିନ୍ଦନ୍ତୁ ନୀତି ନିପୁଣା ଯଦିବା ସ୍ତୁବନ୍ତୁ

ଲକ୍ଷ୍ମୀସମାବିଶନ୍ତୁ ଗଚ୍ଛନ୍ତୁ ବା ଯଥେଚ୍ଛଂ

ଅଦୈବ ମରଣମସ୍ତୁ ଯୁଗାନ୍ତରେ ବା

ନ୍ୟାୟାତ୍ ପଥଃ ପ୍ରବିଚଳନ୍ତି ପଦଂ ଧୀରାଃ ।''

ଉକ୍ତ ଶ୍ଳୋକଟିର ଗୂଢ଼ ତତ୍ତ୍ୱ ବୁଝି ପ୍ରଗତି ପଥରେ ଆଗେଇବାକୁ ପଡ଼ିବ । ହାଇସ୍କୁଲଟିଏ ଚଳେଇବା ପାଇଁ ମୋ'ଠାରେ ସମସ୍ତ ଗୁଣ ଥିଲା । ଉକ୍ତ ହାଇସ୍କୁଲଟି କୋଡ଼ିଏ ବର୍ଷ ହେଲା ପ୍ରତିଷ୍ଠା ହେଲାଣି କିନ୍ତୁ ଗାଁରୁ ପାସ୍ କରିବା ପିଲାଙ୍କ ସଂଖ୍ୟା ନାସ୍ତିସୂଚକ । କିଛି ପରିବର୍ତ୍ତନ ହୋଇନାହିଁ । ଦରପାଠୁଆ ପିଲାଙ୍କ ସଂଖ୍ୟା ବେଶି । ଗ୍ରାମ୍ୟଲୋକେ ଅଧିକାଂଶ ଦରିଦ୍ର । ଛୋଟକାଟର ବାଣିଜ୍ୟ ବ୍ୟବସାୟ କରି ଗୁଜୁରାଣ ମେଣ୍ଟାନ୍ତି । ନିରକ୍ଷର ସଂଖ୍ୟା ବେଶି । କିନ୍ତୁ ଶାଳୀନତାର ଘୋର ଅଭାବବୋଲି ଗୋଟିଏ ଘଟଣାରୁ ଜାଣିପାରିଲି । ଦୁଇ ମାସ ହେଲା ମୁଁ ଏଠାକୁ ଆସିଥାଏ । ଖୋରଧାରେ ଥିବାବେଳେ ପରିବା କିଣିବା ମୋର ସଉକ ଥିଲା । କୌତୂହଳବଶତଃ ଦିନେ ସ୍ଥାନୀୟ ହାଟକୁ ଗଲି । ପରିବା ଦୋକାନରୁ ସଜ ପରିବା ବାଛିଲି । ଦୋକାନୀ ସେହି ଗ୍ରାମର ଲୋକ, ପୁଣି ତାଙ୍କର ଗୋଟିଏ ପୁଅ ଏଠାରେ ଅଧ୍ୟୟନ କରୁଛି । ଦୋକାନୀବାବୁ ମୋତେ ଚିହ୍ନିଛନ୍ତି । କିନ୍ତୁ ପରିବା ବାଛିବାବେଳେ ସେ ମୋ ହାତ ଛିଞ୍ଚାଡ଼ି ଦେଲେ । ମୁଁ ଗଭୀର ଅପମାନିତ ବୋଧକଲି । ଭାବିଲି ଖୁରଧା ମାର୍କେଟରେ କ'ଣ ସମସ୍ତେ ଶିକ୍ଷିତ ? ସେଠାରେ ତ ଏପରି ଅଶିଷ୍ଟ ଆଚରଣ ପରିଦୃଷ୍ଟ ହୁଏନାହିଁ ? କେଉଁଦିନ ଏମାନେ ସଦାଚାର ଶିକ୍ଷା କରିବେ ? ସେହିଦିନଠାରୁ ମୋର ପରିବା କିଣା ବନ୍ଦ ହେଲା । ଚିନ୍ତାକଲି ଆସିବାବେଳକୁ ଏଠାରେ ଯାହା ଦେଖୁଛି ଏଠାରୁ ବିଦାୟ ନେଲା ବେଳକୁ ଯେପରି ଗାଁର ରୂପ ବଦଳିଥିବ ।

ଦିନେ କଥା ପ୍ରସଙ୍ଗରେ ଆନନ୍ଦ ରଥଙ୍କ ଆଗେ ଏକଥା ପ୍ରକାଶ କରିବାରୁ ସେ କହିଲେ ''ହଇ ହେ ମୁରଲୀବାବୁ ! କାହା ସଙ୍ଗେ କାହାକୁ ତୁଳନା କରୁଛ ? ଖୋର୍ଦ୍ଧା ଶହେ ସତୁରି ବର୍ଷର ସବଡିଭିଜନ୍ ହେଡକ୍ୱାଟର ପୁଣି ଖୋର୍ଦ୍ଧା ମାଇନର ସ୍କୁଲକୁ ତ ଶତାଧିକ ବର୍ଷ ହେଲାଣି, ହାଇସ୍କୁଲକୁ ପାଖାପାଖି ଅଶୀ ବର୍ଷ ହେଲାଣି । ଲୋକଙ୍କର ରୁଚି ଦିନେ ଦୁଇଦିନରେ ବଦଳି ଯିବନାହିଁ । ଗୋଟିଏ ଜାତିର ସଭ୍ୟତା ଓ ସଂସ୍କୃତି ଗଢ଼ାହେବାକୁ ଶହ ଶହ ବର୍ଷ ବିତିଯାଉଛି । ସ୍କୁଲଟିଏ ବା କଲେଜଟିଏ ହୋଇଗଲା ବୋଲି ନିରାକାରପୁର କ'ଣ ଖୋର୍ଦ୍ଧା ହୋଇଯିବ ?'' ତାଙ୍କର ଯୁକ୍ତିମୂଳକ ଉତ୍ତରରେ ମୁଁ ସନ୍ତୋଷ ପ୍ରକାଶ କଲି ସତ ମାତ୍ର ଘରେ ନପଶୁଣୁ ଚାଳ ବାଜିଲା ପରି ହେଲା । ମୁଁ ତ ହଠାତ୍ ରାଗିଯିବା ଲୋକ । ଏଠାରେ କେତେଦିନ ରହିବି କିଏ କହିବ, ଯାହା ପ୍ରଭୁଙ୍କର ଇଚ୍ଛା ।

ମୁଁ ନୂଆହୋଇ ଆସିଛି ପୁଣି ମୁଣ୍ଡ ହୋଇ ଆସିଛି । ଗୋଟାଏ ଶିଙ୍ଗରେ କ'ଣ ମାଟି ତାଡ଼ି ପାରିବି ? ସ୍ଥାନୀୟ ଗ୍ରାମ୍ୟ ବୁଦ୍ଧିଜୀବୀଙ୍କର ସୌହାର୍ଦ୍ଦ୍ୟ ଲାଭ କରିବାକୁ ହେବ । ଏହା ଅର୍ଥ ନୁହେଁ କାହା ଆଗରେ ନଇଁ ନମସ୍ତେ ହେବି । ମାନସମ୍ମାନ ରକ୍ଷା କରି ଚାଲିବାକୁ ପଡ଼ିବ । ବେଳ ପଡ଼ିଲେ ଗଧପାଦ ବି ଧରିବାକୁ ପଡ଼ିବ । ତାହା ବୁଦ୍ଧିମାନର କଥା ।

## ଲୁହାଜାଣି ପାଣିଦେବା :

ପ୍ରଥମ ଦିନ ବିଶି ବେହେରାଙ୍କ ନିକଟକୁ ଯାଇଥିଲି । ମୁଁ ପ୍ରଧାନ ଶିକ୍ଷକ ହୋଇ ଆସିଥିବା ଜାଣି ସେ ମୋତେ ସମ୍ମାନ ଦେଖାଇଲେ । ବିଶି ବେହେରା ଧନୀ ଘରର ମଣିଷ । ବର୍ମାରୁ ଆସି ଏଠାରେ ବଣିଜ ବେପାର କରନ୍ତି । କଂଗ୍ରେସ ଭକ୍ତ, ଜାତିରେ କୈବର୍ତ୍ତ । ନମ୍ର ଓ ଭଦ୍ର । ଗ୍ରୋସରି ସପ୍‌ଟିଏ କରିଥିଲେ ।

ଶ୍ରୀ ବାନାମ୍ବର ଛୋଟରାୟ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି । ଯାହାକୁ କହନ୍ତି ଦାଣ୍ଡୁଆ ଲୋକ । ସେ ପସନ୍ଦିଆ ମଣିଷ, ପାଠରେ ବେଶୀ ଦଖଲ ନଥିଲା । ବଳିଲା ବଳିଲା ଦେହ । ନିଶ ଦି'ପଟା ଭଲ ମାନେ, ସ୍ୱାସ୍ଥ୍ୟବାନ୍ ପୁରୁଷ । ବକ୍ସି ଜଗବନ୍ଧୁଙ୍କ ଚେହେରା ପରି ଦେଖାଯାଆନ୍ତି । ନ୍ୟାୟପରାୟଣ । ତାଙ୍କ କଥାରେ ଓଜନ ଥିଲା । ସେ ଆଖପାଖ ତିରିଶ/ ଚାଳିଶ ଖଣ୍ଡି ମୌଜାରେ ନ୍ୟାୟ ନିଶାପ ଛିଣ୍ଡାଉଥିଲେ । ସେ ଔଡ୍ର-କ୍ଷତ୍ରିୟ ବା ଓଡ୍ରଖଣ୍ଡାୟତ । ତାଙ୍କ ଦାଦା ଲଛମନ ରାଉତରା ମଧ୍ୟ ନ୍ୟାୟପରାୟଣ । ଗାଁ ଲୋକମାନଙ୍କ ଉପରେ ଏ ଦୁହିଁଙ୍କର ପ୍ରଭାବ ଥିଲା । ନିରାକାରପୁରରେ ସେତେବେଳେ ପୁଲିସ ଷ୍ଟେସନ ନଥିଲା । ତେଣୁ ବେଳେବେଳେ ମୁଁ ଏମାନଙ୍କର ସାହାଯ୍ୟ ନେଇଥାଏ । ସ୍କୁଲରେ ଛାତ୍ର

ବିଶୃଙ୍ଖଳା କି ଅନ୍ୟ କୌଣସି ଅନିୟମିତତା ଦେଖାଦେଲେ ଏମାନଙ୍କୁ ଡାକେ । ଏମାନେ କଂଗ୍ରେସଭାବାପନ୍ନ, ମୁଁ ବି କଂଗ୍ରେସ ମତବାଦୀ । (ଆଜିକାଲିର କଂଗ୍ରେସ ନୁହେଁ) ସେମାନଙ୍କର ସହାନୁଭୂତି ମୁଁ ଏପର୍ଯ୍ୟନ୍ତ ଭୁଲିନାହିଁ । ଏ ଦୁହେଁ ମୋତେ ଅନ୍ତରରେ ଭଲ ପାଆନ୍ତି ।

ଏତଦ୍‌ବ୍ୟତୀତ ଯେଉଁମାନେ ଏଠାରେ ନେତା କିମ୍ୱା ଚତୁର ସେମାନଙ୍କୁ ହାତରେ ରଖିବାକୁ ଚେଷ୍ଟାକରେ । କିନ୍ତୁ ସେମାନଙ୍କୁ ସହଜେ ବିଶ୍ୱାସ କରେ ନାହିଁ । ବାବୁ ବଳରାମ ପାଇକରାୟ ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ସ୍କୁଲର ହିତାକାଂକ୍ଷୀ । ବାବୁ ଆନନ୍ଦ ରଥ ତ ପ୍ରତିଷ୍ଠାତା ହେଡ୍‌ମାଷ୍ଟର ଏବଂ କଂଗ୍ରେସୀ ବ୍ୟକ୍ତି, ଜ୍ଞାନୀ ଓ ଗୁଣୀ – ମୋ ପାଣ୍ଡିତ୍ୟରେ ସେ ସନ୍ତୋଷ ପ୍ରକାଶ କରନ୍ତି ।

## ମୋର ଭାବମୂର୍ତ୍ତି ରକ୍ଷା :

ମୋର ସବୁଠାରୁ ବଡ଼ ଦୋଷ ମୋର କଠୋର କର୍ତ୍ତବ୍ୟପରାୟଣତା । ତେଣୁ ବହୁ ସହକର୍ମୀଙ୍କର ମୁଁ ଅପ୍ରିୟ ହୁଏ । ସେମାନଙ୍କୁ କାମରେ ଲଗେଇବାକୁ ମୁଁ ସର୍ବଦା ଚାହେଁ । ତେଣୁ ସେମାନେ ମୋ ଅଲକ୍ଷ୍ୟରେ ମୋ ବିରୁଦ୍ଧରେ ଯାଆନ୍ତି । ସେଥିପାଇଁ ଖୋର୍ଦ୍ଧାରୁ ମୋର ବଦଳି । ସ୍ଥାନକାଳପାତ୍ରକୁ ନେଇ ନୀତି ନିର୍ଦ୍ଧାରଣ କରିବାକୁ ପଡ଼ିବ ବୋଲି ଇଚ୍ଛାକରେ, ମାତ୍ର ମନ ସନ୍ତୁଷ୍ଟ ହୁଏନାହିଁ ।

ପ୍ରଧାନ ଶିକ୍ଷକ ହେବାପାଇଁ କେତେଗୁଡ଼ିଏ ବିଶିଷ୍ଟ ଗୁଣର ଆବଶ୍ୟକ ପଡ଼ିଥାଏ । ପ୍ରଥମତଃ ପ୍ରଧାନଶିକ୍ଷକ ଜଣେ ବିଦ୍ୱାନ, ଆଦର୍ଶ, ନୀତିବାନ୍, ଚରିତ୍ରବାନ୍, କର୍ମଠ, ସମୟାନୁବର୍ତ୍ତୀ ସର୍ବୋପରି ବିଦ୍ୟାଳୟ ସ୍ୱାର୍ଥ ରକ୍ଷା କରିବାକୁ ସଦା ଆଗ୍ରହୀ ହେବା ବାଞ୍ଛନୀୟ । ଉତ୍ତମ ଶିକ୍ଷକ ହୁଅନ୍ତୁ ବା ଉତ୍ତମ ପ୍ରଧାନଶିକ୍ଷକ ହୁଅନ୍ତୁ ଚରିତ୍ର ସେମାନଙ୍କର ବଡ଼ ଅଳଙ୍କାର । ଚରିତ୍ରହୀନ ଶିକ୍ଷକ ବା ପ୍ରଧାନଶିକ୍ଷକ ଦେଶ ଓ ଜାତିର କଳଙ୍କ । ଶତଗୁଣର ଅଧିକାରୀ ହେଲେ ମଧ୍ୟ ଯଦି ଚରିତ୍ର ଟିକକ ନାହିଁ, ତେବେ ସେ ସର୍ବଜନଘୃଣ୍ୟ । ତେବେ ଉପରିସ୍ଥ କର୍ମଚାରୀମାନଙ୍କର ସୁନଜରରେ ନ ରହିଲେ ବିଦ୍ୟାଳୟ କାର୍ଯ୍ୟ ସାଧିତ ହୁଏନାହିଁ । ଯେତେ ଯାହାହେଲେ ମଧ୍ୟ ଚରିତ୍ରବାନ୍ ବ୍ୟକ୍ତି ଚିରବନ୍ଦନୀୟ । ତେଣୁ କବି ଗାଇଛନ୍ତି —

"ଥିଲେ ଥାଉ ପଛେ ଗୁଣ ହଜାର, ଚରିତ୍ର ନଥିଲେ ସବୁ ଅସାର"

ଏ ବିଦ୍ୟାଳୟକୁ ଆସୁ ଆସୁ ଜଣେ ଯୁବକ ବି.ଇଡି. ଶିକ୍ଷକଙ୍କର ଚରିତ୍ର ତ୍ରୁଟି ଜଣାଗଲା । ସଙ୍ଗେ ସଙ୍ଗେ ଶିକ୍ଷକ ବନ୍ଧୁମାନଙ୍କର ପରାମର୍ଶରେ ଏଠାରୁ ତାଙ୍କୁ ବିଦାୟ

କରିଦେଲି । ମୋର ଉଜ୍ଜ୍ୱଳ ନିଷ୍କଳଙ୍କ ଚରିତ୍ର ମୋତେ ସବୁଠାରେ ଉଚ୍ଚସ୍ଥାନ ଦେଇଛି । ମୋର ଚରିତ୍ର ସମ୍ବନ୍ଧରେ ମନ୍ତବ୍ୟ ଦେବାକୁ ଯାଇ ଭିଙ୍ଗାରପୁର ବକ୍ରେଶ୍ୱର ହାଇସ୍କୁଲର ନିଃସ୍ୱାର୍ଥପର ଚରିତ୍ରବାନ ସମ୍ପାଦକ ପ୍ରଖ୍ୟାତ ଜମିଦାର ଶ୍ରୀଯୁକ୍ତ ଗଙ୍ଗାଧର ଦାଶ ଚୌଧୁରୀ ରେଭେନ୍‌ସା କଲେଜର ତତ୍କାଳୀନ ପ୍ରିନସ୍‌ପାଲ ସ୍ୱନାମଧନ୍ୟ ଡକ୍ଟର ପ୍ରାଣକୃଷ୍ଣ ପରିଜା, ଆଇ.ଇ.ଏସ୍. ମହୋଦୟଙ୍କୁ ସୁପାରିଶ କରିଥିଲେ । ଯାହାହେଲେ ବି ମୋର ଅଗଣିତ ଛାତ୍ର ସମାଜ ମୋତେ ଉଚ୍ଚସ୍ଥାନ ଦେଉଥିଲେ । ଏହି ମିଶ୍ରିତ ବିଦ୍ୟାଳୟରେ ପୁଅଝିଅମାନଙ୍କ ପ୍ରତି ମୋର ସତର୍କ ଦୃଷ୍ଟି ଥିଲା ଏବଂ ଶିକ୍ଷକମାନଙ୍କୁ ଖଣ୍ଡାଧାରରେ ଚଲେଇବାକୁ ପଡୁଥିଲା । ମୋର କାର୍ଯ୍ୟକଳାପ ଉପରେ ଏବେ ଚାରିଶହ ପିଲାଙ୍କର ଆଠଶହ ଆଖି ଓ ଚବିଶ ଜଣ ଶିକ୍ଷକ ଏବଂ ଅନ୍ୟାନ୍ୟ କର୍ମଚାରୀଙ୍କର ଅଠଚାଳିଶ ଆଖି ସର୍ବଦା ଘୂରି ବୁଲୁଥିଲା । କାୟମନୋବାକ୍ୟରେ ନିର୍ମଳତା ଅବଲମ୍ବନ କରୁଥିଲି । ସମସ୍ତେ ନିର୍ମଳ ହୁଅନ୍ତୁ ଏହାହିଁ ମୁଁ ଚାହୁଁଥିଲି । ଉଦ୍ୟମ ବି ଅବ୍ୟାହତ ରଖିଥିଲି । ବହି ପଠନ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧା ଥିଲା । ତେଣୁ ବେକନ୍ ସାହେବଙ୍କ କଥାକୁ ସର୍ବଦା ମନରେ ଧାରଣ କରିଥିଲି । ବେକନ୍ କହିଛନ୍ତି —

"Reading makes a full man,
Writing a perfect man,
And speaking a ready man."

ମୋର ପ୍ରବନ୍ଧଗୁଡ଼ିକ ସେତେବେଳେ କଳିଙ୍ଗ, ମାତୃଭୂମି, ମାଧ୍ୟମିକ ଶିକ୍ଷା ପରିଷଦର ମୁଖପତ୍ରରେ ପ୍ରକାଶିତ ହେଉଥିଲା । ପରବର୍ତ୍ତୀକାଳରେ ସମାଜ, ସମ୍ବାଦ, ସମୟ ଓ ପ୍ରଜାତନ୍ତ୍ର, ନବୀନ ପତ୍ରିକା, କସ୍ତୁରୀ, ନବଜୀବନ ମାସିକ ପତ୍ରିକା, ସବୁଜ ସ୍ୱପ୍ନ ବାର୍ଷିକ ପତ୍ରିକା, ତାପଙ୍ଗ ମହୋତ୍ସବ ପତ୍ରିକା ପ୍ରଭୃତି ଦୈନିକ, ସାପ୍ତାହିକ ଓ ଅନ୍ୟାନ୍ୟ ପତ୍ରିକାରେ ପ୍ରକାଶିତ ହୋଇଛି । ରାଜ୍ୟସ୍ତରୀୟ ତଥା ଜାତୀୟସ୍ତରରେ ପୁରସ୍କାର ପାଇବାପାଇଁ ଯୋଗ୍ୟ ହେଲେ ହେଁ ତତ୍‌ପରତା ଓ ତଦ୍‌ଭୂରୀ ଅଭାବରୁ ପାଇପାରିନାହିଁ । ମୁଁ ଜଣେ ନିଷ୍କପଟ ଶିକ୍ଷକ, କୂଟକପଟହୀନ ଶିକ୍ଷକ ଏବଂ ଦମ୍ଭର ସହିତ କହିବି ମୁଁ ଜଣେ ସଚ୍ଚା ଟିପିକାଲ ସ୍କୁଲମାଷ୍ଟର । ଚଲାକପଣିଆ ବା ଧୂର୍ତ୍ତତାର ଅଭାବ ମୋ' ଠାରେ ପୂରାପୂରି ଅଛି ତେଣୁ ବିଦ୍ୟାଳୟ ସେବାର ସମସ୍ତ ସୁଗୁଣ ଆହରଣ କଲେ ମଧ ତାକୁ ବିଚାରକୁ ନିଆଗଲା ନାହିଁ । କୌଣସି ମାଦକଦ୍ରବ୍ୟ ମୁଁ ସେବନ କରେନାହିଁ । ମୁଁ ବାୟୁରୋଗୀ ତେଣୁ ଝାଡ଼ାଫେରିଲାବେଳେ ଖଣ୍ଡେ ବିଡ଼ି ଖାଇବା ପାଇଁ ଇଚ୍ଛା କରେ । ଏହା ଅତି ଲାଜର କଥା ।

କିନ୍ତୁ ବହୁଦିନ ହେଲା ସେ ଅଭ୍ୟାସ ଛାଡ଼ିସାରିଲିଣି ଏବଂ ଝାଡ଼ା ଗଲାବେଳେ ଚାରିଆଙ୍ଗୁଳିର ଖଣ୍ଡେ ଗବ ଦାନ୍ତକାଠି ଚୋବାଉଛି । ପ୍ରଧାନ ଶିକ୍ଷକ ଆସନ ଅଳଙ୍କୃତ କରିବା ପୂର୍ବରୁ ଘରୋଇ ଟିଉସନ ଛାଡ଼ି ଦେଇଥିଲି । ସହକାରୀ ଶିକ୍ଷକମାନେ ଘରୋଇ ଟିଉସନ କରୁଥିଲେ । ଶିକ୍ଷକମାନଙ୍କ ସଙ୍ଗେ ଅଯଥା ଦ୍ୱନ୍ଦ୍ୱକୁ ଏଡ଼ାଇ ଦେଇଥିଲି । ହେଡ୍‌ମାଷ୍ଟରେ ଟିଉସନ କଲେ ଖାତା ମୂଲ୍ୟାୟନ କଲାବେଳେ ପାତରଅନ୍ତର କରିପାରନ୍ତି, ଏହା ପ୍ରଧାନ ଶିକ୍ଷକଙ୍କ ପଦମର୍ଯ୍ୟାଦାହାନି ସଦୃଶ ହେବ । ମୋର ଜୀବନାଦର୍ଶ ଥିଲା ଜଣେ ଶିକ୍ଷକ ହେବି ତେଣୁ ଅନ୍ୟ ଚାକିରିକୁ ଗ୍ରହଣ କଲିନାହିଁ । ଶିକ୍ଷକ ଚାକିରି ଜନସେବା କରିବାରେ ସାହାଯ୍ୟ କରେ । ଆଧ୍ୟାତ୍ମିକ ପ୍ରଗତିର ଅର୍ଥ ମୁଁ ବୁଝେ ପ୍ରେମ, ଭଗବତ୍‌ଚିନ୍ତା, ପଡ଼ୋଶୀ ପ୍ରତି ସଦ୍‌ଭାବନା, ନିଃସ୍ୱାର୍ଥପରତା, ସଦ୍‌ଗ୍ରନ୍ଥପାଠ, ନିର୍ମଳ ସାଧୁ, ସଚ୍ଚୋଟ ଜୀବନ । ଏସବୁ ସ୍ୱର୍ଗୀୟ ଗୁଣଗୁଡ଼ିକ କର୍ମକ୍ଷେତ୍ରରେ ଆଗେଇବାକୁ ପ୍ରେରଣା ଯୋଗାଇଥାଏ ।

## ପ୍ରଧାନ ଶିକ୍ଷକ ପଦ କଣ ଲୋଭନୀୟ ? :

ପ୍ରଧାନଶିକ୍ଷକ ପଦ ଅଳଙ୍କୃତ କରିବା ପାଇଁ ୧୯୬୨ ମସିହାଠାରୁ ନାନା ଆଡୁ ପ୍ରତିଷ୍ଠିତ ସ୍କୁଲମାନଙ୍କରୁ ଡାକରା ଆସିଲା । ସ୍ୱାଭାବିକ ଭାବେ ଦେଖିବାକୁ ଗଲେ ସେତେବେଳେ ମୁଁ ଛାତ୍ରାବାସରେ ବହୁ ସୁବିଧା ଭୋଗ କରୁଥିଲି । ତେଣୁ ଏକ ପ୍ରତିଷ୍ଠିତ ସ୍ୱନାମଧନ୍ୟ ହାଇସ୍କୁଲରୁ ବାହାରକୁ ଯିବାପାଇଁ ଚାହିଁଲି ନାହିଁ । ପୁଣି ମନେକଲି କେତେଟା ଅଧିକ ଟଙ୍କାରେ ଏଡ଼େବଡ଼ ଗୁରୁଦାୟିତ୍ୱ ବହନ କରିବି ? ପୁରୀ ସର୍କଲ ଇନସପେକ୍ଟର ଶ୍ରୀଯୁକ୍ତ ଜଗନ୍ନାଥ ହରିଚନ୍ଦନ ବି କେତେଥର ପଚାରିଛନ୍ତି, ମାତ୍ର ହେୟ ମନେକରି ପ୍ରତ୍ୟାଖ୍ୟାନ କରିଥିଲି । ଯାଚିଲେ ଗ୍ରହଣ କଲି ନାହିଁ । ପରେ ମାଗି ମାଗି ମୁଣ୍ଡରୁ ବାଳ ଉପୁଡ଼ିଗଲା । ଖୋର୍ଦ୍ଧାରେ ରହିବି ବୋଲି ମନରେ ଚିନ୍ତା କରିଥିଲି, ମାତ୍ର ପରିଣତ ବୟସରେ ଯେତେବେଳେ ଦିବ୍ୟସିଂହବାବୁ ବାଟ ଛାଡ଼ିଲେ ନାହିଁ ସେତେବେଳେ ମୁଁ ହତାଶ ହୋଇଗଲି । ପୁନଃ ହେଡମାଷ୍ଟର ଦାୟିତ୍ୱ ବୃଦ୍ଧି ବହନ କରିବାର ପ୍ରଥମ ସପ୍ତାହରେ ସେ ହାଇସ୍କୁଲ ଶିକ୍ଷକମାନଙ୍କର ଜଡ଼ତ୍ୱ ଓ କର୍ମକୁଣ୍ଠତା ଭାଙ୍ଗିବାକୁ ଚେଷ୍ଟା କରିବା ଦ୍ୱାରା କର୍ତ୍ତୃପକ୍ଷଙ୍କ ଦ୍ୱାରା ମୋ ପାଇଁ ଦଣ୍ଡବିଧାନ କରାଗଲା । ଉପରିସ୍ଥ କର୍ମଚାରୀ ବା ମାଲିକଙ୍କୁ ତୁଷ୍ଟକରିବାର ଦକ୍ଷତା ମୋର ନଥିଲା ବା କୌଣସି ଉପହାର ଦେଇ ତୁଷ୍ଟ କରିବାର ପଟୁତା ମଧ୍ୟ ନଥିଲା । ଏହି ଗୁଣକୁ ଆଜିକାଲି ବିଚକ୍ଷଣତା କୁହାଯାଉଛି । ସୁରୁଚିସମ୍ପନ୍ନତା କୁହାଯାଉଛି । ସେପରି ଚତୁରତା ଅଭାବରୁ କର୍ମକ୍ଷେତ୍ରରେ ବହୁ ପଛରେ ପଡ଼ିରହିଲି । ମୋତେ ଦୁଇଜଣ ଅଭିଜ୍ଞ ଓ ଗୁଣୀ ପ୍ରଧାନଶିକ୍ଷକ ପ୍ରଶଂସାପତ୍ର ଦେଇଥିଲେ ମଧ୍ୟ ତାର କିଛି ଫଳ ହେଲା ନାହିଁ ।

ଦିନକୁଦିନ ମୂଲ୍ୟବୋଧ କମିକମି ଯାଉଛି । ସେ କଥାଗୁଡ଼ାକ ଯେ ଉଠାନ୍ତି ସେମାନେ ଏ ଯୁଗକୁ ଅଯୋଗ୍ୟ ।

୧୯୪୪ ମସିହାଠାରୁ ୧୯୪୯ ମସିହା ପର୍ଯ୍ୟନ୍ତ ମୁଁ ଗଣିତ, ଇଂରାଜୀ, ଇତିହାସ, ଭୂଗୋଳ ଓ ସାହିତ୍ୟ ପଢ଼ାଉଥିଲି । ୧୯୫୦ ମସିହାରେ ତାଲିମପାଇ ଉଚ୍ଚ ଶ୍ରେଣୀରେ ଇଂରାଜୀ, ଓଡ଼ିଆ, ଇତିହାସ, ସମାଜବିଜ୍ଞାନ ପଢ଼ାଇବାରେ ଲାଗିଡ଼ିଲି । ଇଂରାଜୀ ଗ୍ରାମାରରେ ମୁଁ ଧୁରୀଣ ଥିଲି । ତେଣୁ ଇଂରାଜୀ ସାହିତ୍ୟ ସହ ଇଂରାଜୀ ବ୍ୟାକରଣ ପଢ଼ାଇଲି ।

## ପ୍ରଧାନଶିକ୍ଷକଙ୍କ ଉତ୍ସର୍ଗୀକୃତ ଜୀବନ :

ପ୍ରଧାନ ଶିକ୍ଷକ ସ୍ୱୟଂ ଶ୍ରେଣୀରେ ଅଧ୍ୟାପନା କାର୍ଯ୍ୟ ସମ୍ପନ୍ନ ନ କରି ସହକର୍ମୀମାନଙ୍କ ପ୍ରତି କଠୋରତା ଅବଲମ୍ବନ କଲେ ବହୁ ସମୟରେ ଅପମାନିତ ଓ ସମାଲୋଚିତ ହୁଅନ୍ତି । ସେ ଶିକ୍ଷକମାନଙ୍କର ଆଦର୍ଶ ସ୍ଥାନୀୟ ହେବା ଉଚିତ । ବିଦ୍ୟା ଆଲୋଚନାରେ ସେ ଶିକ୍ଷକମାନଙ୍କର ସନ୍ଦେହମୋଚନ କରିବେ । ଉପଦେଶ ତ ଦେବେ କିନ୍ତୁ ନିଜେ ଉଦାହରଣ ସୃଷ୍ଟି କରିବେ । ତାହାହେଲେ ଶିକ୍ଷକମାନଙ୍କର ତାଙ୍କ ପ୍ରତି ଖାତିର ମନୋଭାବ ଛାଏଁ ଛାଏଁ ଜାଗ୍ରତ ହେବ । ପ୍ରଧାନଶିକ୍ଷକ ହେଲେ କ୍ଷମତାବିହୀନ ମୁଖ୍ୟମନ୍ତ୍ରୀ । ସ୍କୁଲ ମନ୍ତ୍ରିମଣ୍ଡଳରେ ସେ ହେଉଛନ୍ତି ମୁଖ୍ୟ । ମାତ୍ର ସମସ୍ତଙ୍କର ପୂର୍ଣ୍ଣସହାୟତା ଲାଭ କରି ସେ କାର୍ଯ୍ୟ ହାସଲ କରନ୍ତି । ପ୍ରଧାନଶିକ୍ଷକଙ୍କ ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ, ନିଷ୍କଳଙ୍କ ଚରିତ୍ର, ସମୟଜ୍ଞାନ, ବନ୍ଧୁବତ୍ସଳତା ଶିକ୍ଷକମାନଙ୍କ ଉପରେ ପ୍ରଭାବ ପକାଏ । ଭିନ୍ନଭିନ୍ନ ସମ୍ଭାବ୍ୟ ପ୍ରଥା ଅବଲମ୍ବନ କରି ସହକର୍ମୀମାନଙ୍କୁ ସେ ଠିକ୍ ବାଟକୁ ନେଇ ଆସିବେ । ସବୁ କୌଶଳ ଅବଲମ୍ବନ କରିବାପରେ ଯଦି ସେ ଅକୃତକାର୍ଯ୍ୟ ହୁଅନ୍ତି ତେବେ କଠୋର ପଦକ୍ଷେପ ଗ୍ରହଣ କରିବେ । ତଥାପି ମାନବବାଦିତାକୁ ସ୍ମରଣରେ ରଖିବେ । ବହୁ ପ୍ରଧାନଶିକ୍ଷକ ଶ୍ରେଣୀରେ ପାଠ ପଢ଼ାନ୍ତି ନାହିଁ । ତାହା ତ ଶୋଭନୀୟ ନୁହେଁ । କିନ୍ତୁ ଶ୍ରେଣୀରେ ମୁଖ୍ୟ ବିଷୟରେ ଅଧ୍ୟାପନା କରିବା ପ୍ରଧାନ ଶିକ୍ଷକଙ୍କର ଏକ ବିଶିଷ୍ଟ ଗୁଣ ହେବା ଆବଶ୍ୟକ । ଏହାଦ୍ୱାରା ଛାତ୍ରମାନେ ତାଙ୍କର ପାଣ୍ଡିତ୍ୟର ପରିଚୟ ପାଇବେ । କେତେକ ପ୍ରଧାନ ଶିକ୍ଷକ ଶ୍ରେଣୀରେ ଅଧ୍ୟାପନା କାର୍ଯ୍ୟ ସମ୍ପନ୍ନ କଲେ ମଧ୍ୟ ପଠିତ ବିଷୟ ଶେଷ କରିପାରନ୍ତି ନାହିଁ । ଏହା ଏକ ଗର୍ହିତ ଅପରାଧ । ମୁଁ ସପ୍ତାହକେ ବାରଟି ପିରିୟଡ଼ ଦଶମ ଓ ଏକାଦଶ ଶ୍ରେଣୀରେ ପଢ଼ାଉଥିଲି । ଅଧ୍ୟାପନା କାର୍ଯ୍ୟରେ ମୁଁ ପ୍ରବୀଣ ଥିଲି । ମୋ ପିଲାମାନେ ମୋ

ପାଠପଢ଼ାରେ ସନ୍ତୋଷ ପ୍ରକାଶ କରୁଥିଲେ । ପୂର୍ବରୁ ମୁଁ ପ୍ରସ୍ତୁତ ହୋଇ ଯାଉଥିଲି । ବାର୍ଷିକ ପରୀକ୍ଷା ପୂର୍ବରୁ ନିର୍ଦ୍ଦିଷ୍ଟ ପାଠ୍ୟକ୍ରମଗୁଡ଼ିକ ରିଭିଜନ କରିନେଉଥିଲି । ଏହାଦ୍ୱାରା ଛାତ୍ରଛାତ୍ରୀମାନଙ୍କର ସନ୍ଦେହମୋଚନ ହେଉଥିଲା । ମୋର ଶିକ୍ଷାଦାନ ପଦ୍ଧତିକୁ ମୁଁ ନିଜେ କେବଳ ଟେକିଲେ ହେବନାହିଁ, ତା'ର ଦୃଷ୍ଟାନ୍ତ ସ୍ୱରୂପ ଏବକାର ଜଣେ ଜିଲ୍ଲା କଲେକ୍ଟର ଓ ସେତେବେଳର ମୋ ଛାତ୍ର କ'ଣ ମତାମତ ଦେଇଛନ୍ତି ତାହା ନିମ୍ନରେ ବର୍ଣ୍ଣନା କରୁଛି । ସେ ବର୍ତ୍ତମାନ କେନ୍ଦୁଝର ଜିଲ୍ଲାର ଜିଲ୍ଲାପାଳ । ମୋ ପାଖକୁ ଖଣ୍ଡିଏ ପତ୍ରରେ ସେ ତା ୧-୭-୨୦୦୨ ରିଖରେ ଉଲ୍ଲେଖ କରିଛନ୍ତି, ''ପୂଜ୍ୟ ସାର୍, ଆପଣ ମୋତେ ଏପରି ଅନ୍ତରଙ୍ଗ ଭାବେ ମନେରଖିବାରୁ ମୁଁ କୃତଜ୍ଞ । ବାସ୍ତବିକ ଜଣେ ଛାତ୍ରର ଭବିଷ୍ୟତ ଅନେକାଂଶରେ ଶିକ୍ଷକଙ୍କର ବ୍ୟକ୍ତିତ୍ୱ, ନିଷ୍ଠା, ଚରିତ୍ରବତ୍ତା ଉପରେ ନିର୍ଭର କରେ । ଶିକ୍ଷକଙ୍କର ଶିକ୍ଷାଦାନ ପଦ୍ଧତି ଛାତ୍ରର ମନ ଉପରେ ଗଭୀର ରେଖାପାତ କରେ । ସେତେବେଳେ ଆପଣ ଯେପରି ଇଂରାଜୀ ବ୍ୟାକରଣର ଗୂଢ଼ତତ୍ତ୍ୱଗୁଡ଼ିକୁ ବୁଝାଉଥିଲେ ଏବଂ ଇଂରାଜୀ ସାହିତ୍ୟ ବୁଝାଉଥିଲେ ତାହା ମୋର ବର୍ତ୍ତମାନ ସୁଦ୍ଧା ମନେଅଛି । ଆଜିକାଲି ସ୍କୁଲରେ ସେପରି ପଢ଼ା ହେଉନାହିଁ । ଫଳତଃ ଦେଖାଯାଉଛି ଅନେକ ଉଚ୍ଚ ନମ୍ବର ରଖୁଥିବା ପିଲା ମଧ୍ୟ ଶୁଦ୍ଧ ଇଂରାଜୀ ଲେଖିପାରୁନାହାନ୍ତି । ସେଥିପାଇଁ ବିଦେଶକୁ ଯିବାକୁ ହେଲେ ଆଉଥରେ ଇଂରାଜୀ ପରୀକ୍ଷାରେ ପାସ୍ କରିବାକୁ ପଡୁଛି ।

ମାତ୍ର ବହିପାଠ ଅପେକ୍ଷା ଅନ୍ୟାନ୍ୟ ବିଷୟ ପ୍ରତି ମୋର ଗଭୀର ଆଗ୍ରହ ଥିଲା । ଅନ୍ୟାନ୍ୟ ସାକ୍ଷାତରେ । ଆପଣଙ୍କର ଦୀର୍ଘ ନିରାମୟ ଜୀବନ କାମନା କରି ରହିଲି ।

॥ ଇତି ॥

ଆପଣଙ୍କର

ଦୋଳଗୋବିନ୍ଦ ତ୍ରିପାଠୀ

ଜିଲ୍ଲାପାଳ,କେନ୍ଦୁଝର(ତା ୧୦-୭-୨୦୦୨)

**ସଦାଚାର ଶିକ୍ଷା :**

ଛାତ୍ରଛାତ୍ରୀମାନଙ୍କୁ ସଦାଚାର ଶିକ୍ଷା ଦେବାରେ ସବୁବେଳେ ସତର୍କ ଥିଲି । ଶ୍ରେଣୀରେ ନୀତିଶିକ୍ଷା ପିରିଅଡମାନ ନେଇ ସେମାନଙ୍କ ଉଦ୍ଦାମ ଆଚରଣକୁ ପୋଷା ମନାଉଥିଲି । ଅସଂଯତ ପ୍ରକୃତିକୁ ସଂଯତ କରୁଥିଲି । ଶିକ୍ଷକମାନଙ୍କୁ ମଧ୍ୟ ସୁନାଗରିକ ଗଠନ

କରିବା ନିମନ୍ତେ ପ୍ରବର୍ତ୍ତାଉଥିଲି । ବିଦ୍ୟାଳୟର ହିତଦୃଷ୍ଟିରୁ ଶିକ୍ଷକମାନଙ୍କ ସହିତ ପ୍ରତି ମାସରେ ବା ଆବଶ୍ୟକ ପଡ଼ିଲେ ପ୍ରତି ପନ୍ଦର ଦିନରେ ଆଲୋଚନା ସଭାର ଆୟୋଜନ କରୁଥିଲି । ଛାତ୍ରମାନେ ନିର୍ଭୟରେ ମୋ ନିକଟକୁ ଆସି ସେମାନଙ୍କର ଅଭିଯୋଗ ଉପସ୍ଥାପନ କରିବାକୁ ମୁଁ ବ୍ୟବସ୍ଥା କରିଥିଲି । ଶନିବାର ଦିନ ଶେଷ ଦୁଇ ପିରିଅଡ ତର୍କସଭାରେ ବ୍ୟୟିତ ହୁଏ । ଜରୁରୀକାଳୀନ ସମୟରେ ପ୍ରତ୍ୟେକ ଶନିବାର ଗ୍ରାମ୍ୟ ରାସ୍ତା, ପୁଷ୍କରିଣୀରୁ ଦଳ ସଫାଇ କାର୍ଯ୍ୟ ଜୋରସୋରରେ ଚାଲିଲା । କିନ୍ତୁ ତା'ର ସୁଫଳ ନ ମିଳିବାରୁ ବନ୍ଦ ହୋଇଗଲା । ଛାତ୍ରଛାତ୍ରୀମାନେ କିପରି ଆତ୍ମନିର୍ଭରଶୀଳ ହେବେ, ନିଜ ବାଡ଼ିବଗିଚାରେ ଉଦ୍ୟାନ କର୍ମରେ ପ୍ରବୃତ୍ତ ରହିବେ ସେଥିପାଇଁ ସେମାନଙ୍କୁ ଉତ୍ସାହିତ କରିଥାଏ । ମୁଁ ନିଜେ ମୋର କ୍ୱାଟର ସଂଲଗ୍ନ ବାଡ଼ିରେ ଅବସର ସମୟରେ କାର୍ଯ୍ୟକରି ନାନାପ୍ରକାର ଋତୁକାଳୀନ ପରିବା ଉତ୍ପାଦନ କରେ । ତାର ପ୍ରଭାବ ଛାତ୍ରଛାତ୍ରୀ ଓ ଶିକ୍ଷକ ଶିକ୍ଷୟିତ୍ରୀମାନଙ୍କ ଉପରେ ପଡ଼େ । ଦରିଦ୍ର ଛାତ୍ରମାନଙ୍କ ଅବସ୍ଥା ନିଜେ ପରୀକ୍ଷା କରି ସ୍କୁଲ ଫଣ୍ଡରୁ ଓ ବେଳେବେଳେ ନିଜହାତରୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥାଏ । ପ୍ରତିବର୍ଷ ଷାଣ୍ମାସିକ ପୂର୍ବରୁ ଥରେ ଓ ବାର୍ଷିକ ପରୀକ୍ଷା ପୂର୍ବରୁ ଥରେ ଷଷ୍ଠଠାରୁ ଏକାଦଶ ପର୍ଯ୍ୟନ୍ତ ଛାତ୍ରଛାତ୍ରୀମାନଙ୍କର ଲେଖାଗୁଡ଼ିକ ତନ୍ନତନ୍ନ କରି ଦେଖେ । ଏହାଦ୍ୱାରା ଶିକ୍ଷକମାନେ ତତ୍ପର ହୁଅନ୍ତି । ପିଲାମାନେ ବି ତତ୍ପର ହୁଅନ୍ତି । ମୁଁ ବିଦ୍ୟାଳୟରେ କୌଣସି ପିରିଅଡ଼କୁ ଖାଲି ପକାଇ ଦିଏ ନାହିଁ । ଖାଲି ପଡ଼ିଥିବା ପିରିଅଡ଼କୁ ମୁଁ ନିଜେ ବହୁ ସମୟରେ ପୂରଣ କରେ କିମ୍ବା ଅନ୍ୟ ଶିକ୍ଷକଙ୍କୁ ପଠାଏ । ପ୍ରତିଦିନ ଦଶ ଘଣ୍ଟା ପନ୍ଦର ମିନିଟ୍‌ରେ ବିଦ୍ୟାଳୟରେ ଯୋଗଦିଏ ଓ ଚାରିଟା ତିରିଶ ମିନିଟ୍‌ରେ ଗୃହକୁ ପ୍ରତ୍ୟାବର୍ତ୍ତନ କରେ । କୌଣସି ଶିକ୍ଷକ ପାଞ୍ଚ କି ସାତ ମିନିଟ୍ ବିଳମ୍ବରେ ଆସିଲେ ଗମ୍ଭୀରତା ସହିତ ତାଙ୍କ ଶ୍ରେଣୀକୁ ଯାଏ ଓ ଉପସ୍ଥାନ ପକାଏ, ସେ ଆଉ ଥରକୁ ସଜାଡ଼ି ହୋଇଯାଆନ୍ତି । ପାଠପଢ଼ା ଚାଲିଥିବା ସମୟରେ ମୁଁ ଚକ୍ର ପରି ଏପଟ ସେପଟ ଘୂରୁଥାଏ ଏବଂ ଦିନକେ ଦୁଇଟି ଶ୍ରେଣୀରେ ଶିକ୍ଷକଙ୍କ ଶିକ୍ଷାଦାନର ପ୍ରଣାଳୀ ତନଖି କରେ । ଶିକ୍ଷକମାନଙ୍କର ଭୁଲ ଦେଖିଲେ ପିଲାମାନଙ୍କ ସମ୍ମୁଖରେ ସେମାନଙ୍କୁ ସୂଚାଇ ନଦେଇ ପରେ ଅଫିସ୍ ଗୃହରେ ସେମାନଙ୍କୁ ସୂଚାଇ ଦେଇଥାଏ । ଥରେ ଜଣେ ଶ୍ରେଣୀ ଶିକ୍ଷକ ଇଂରାଜୀରେ କଳାପଟାରେ ଭୁଲ ବନାନ ଲେଖିଦେଇଥିଲେ । ମୁଁ ଶ୍ରେଣୀ ବୁଲୁବୁଲୁ ଶିକ୍ଷକ ମହାଶୟଙ୍କ ନାମଧରି ସେ ଭୁଲଟିକୁ ସେଥିରୁ ଉଠାଇଦେଲି । ସେ ଜାଣିପାରି ସଜାଗ ହେଲେ । ପିଲାମାନେ ବି ବୁଝିପାରିଲେ । ସବୁ ସମୟରେ ଯେ ଶିକ୍ଷକମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇପାରିବ ତା ନୁହେଁ । ନିରାକାରପୁରରେ ଗୃହର

ବଡ଼ ଅଭାବ । ଦୁଇଥର ପୋଡ଼ିଗଲା । ଲାଇବ୍ରେରୀ ଗୃହ ବାରଣ୍ଡାରେ ଏବଂ କ୍ରୀଡ଼ାପ୍ରାନ୍ତର ସ୍ଥିତ ବିରାଟ ଆମ୍ର ବୃକ୍ଷଛାୟାରେ ଦୁଇଟି ଶ୍ରେଣୀ ଚଳାଉଥିଲି । ପରେ ପରେ ଅସ୍ଥାୟୀ ବ୍ୟବସ୍ଥା କରି କାର୍ଯ୍ୟ ଚଳାଇଲି । ସ୍ଥାନାଭାବ ମୋତେ ବହୁ ଅସୁବିଧାର ସମ୍ମୁଖୀନ କରାଉଥିଲା । ତଥାପି ବୋର୍ଡ ପରୀକ୍ଷାରେ ଫଳ ଆଶାଜନକ ହେଉଥିଲା ।

## ପଢ଼ା ବାୟୁମଣ୍ଡଳ :

ବିଦ୍ୟାଳୟରେ ଶାନ୍ତିଶୃଙ୍ଖଳା ବିରାଜମାନ ହେଲେ ପଢ଼ାପଢ଼ିର ବାୟୁମଣ୍ଡଳ ଖେଳିଯାଏ । ପ୍ରାକୃତିକ ବିପତ୍ତିକୁ ଦୂର କରିବା ପାଇଁ ଶିକ୍ଷକମାନଙ୍କର ପୂର୍ଣ୍ଣ ସହଯୋଗ କାମନା କରେ । ସ୍କୁଲର ବହୁତ ଅଭାବ । ଶିକ୍ଷକମାନେ ଯେପରି ମନେକରିବେ ଏହା ସେମାନଙ୍କ ଅନୁଷ୍ଠାନ । ଏଠାରେ ବାଧବାଧକତା ସ୍ଥାୟୀ ଫଳ ପ୍ରଦାନ କରେ ନାହିଁ । ତେଣୁ ସେମାନଙ୍କୁ ଆପଣାର କରିବାକୁ ପଡ଼େ । ସେମାନଙ୍କର କର୍ମନିଷ୍ଠାକୁ ଜାଗ୍ରତ କରିବାକୁ ପଡ଼େ । ସେମାନଙ୍କ ନିଷ୍ଠାକୁ ସମୟେ ସମୟେ ପ୍ରଶଂସା କରେ । ସେମାନଙ୍କୁ ସାନଭାଇ ସଦୃଶ୍ୟ ଦେଖିବାକୁ ପଡ଼େ । ତଥାପି କେତେଜଣ ତା' ଭିତରେ ଗଳିଆ ପଡ଼ିଯାନ୍ତି । ସେମାନେ ନଗଣ୍ୟ ।

ମୋର ଦୃଢ଼ ଧାରଣା ବିଦ୍ୟାଳୟର ପଢ଼ାଟି ପ୍ରଥମ । କ୍ରୀଡ଼ା, ନାଟକୋତ୍ସବ, ଏନ.ସି.ସି.ରେ କୃତିତ୍ୱ, ଉଦ୍ୟାନ କର୍ମ ଓ ବୃକ୍ଷରୋପଣ ଓ ମାଗାଜିନ ପ୍ରକାଶ ତାପରେ । ତେବେ ପାଠପଢ଼ା ସହ ଏ ସବୁରେ କୃତକାର୍ଯ୍ୟତା ହାସଲ କଲେ ବିଦ୍ୟାଳୟ ଆଦର୍ଶ ବିଦ୍ୟାଳୟରେ ପରିଣତ ହୁଏ । ସ୍ଥାନାଭାବ ସତ୍ତ୍ୱେ ମୁଁ ଉଭୟ ଦିଗ ପ୍ରତି ସୁନଜର ଦେଲି ।

ଥରେ ଜଣେ ବି.ଏସ୍‌ସି. ବି.ଇଡି. ଶିକ୍ଷକ ମୋତେ ଟିକିଏ ଅବମାନନା କଲେ । ମୁଁ ତାଙ୍କୁ ଉତ୍ତମ ଉପଦେଶ ଦେଲେ ମଧ୍ୟ ସେ ତାକୁ ଖୁସିରେ ଗ୍ରହଣ କଲେ ନାହିଁ । ମୁଁ ଚୁପ୍ ହୋଇ ରହିଲି । ସେ ଅବଶ୍ୟ ଶ୍ରେଣୀରେ ଭଲ ପଢ଼ାନ୍ତି । ଦୁଇ ମାସପରେ ତାଙ୍କର ହଠାତ୍ ବଦଳି ଆଦେଶ ଆସିଲା । ସେ ଭାବିଥିଲେ, ''ପ୍ରଧାନଶିକ୍ଷକ ତାଙ୍କୁ ସାଙ୍ଗେ ସାଙ୍ଗେ ସ୍କୁଲରୁ ବିଦାୟ ଚିଠିପତ୍ର ଦେଇଦେବେ । କାରଣ ସେ ତାଙ୍କ ଉପରେ ସନ୍ତୁଷ୍ଟ ନାହାଁନ୍ତି । ତାଙ୍କର ସେଠାରେ ରହିବାକୁ ଖୁବ୍ ଇଚ୍ଛାଥିଲା ।'' ସେ ବହୁ ସନ୍ତର୍ପଣରେ ମୋ ନିକଟକୁ ଆସି କହିଲେ–''ସାର୍, ମୋର ବଦଳି ଆଦେଶ ଆସିଛି । ମୋତେ କ'ଣ ଏ ସ୍କୁଲରୁ ବିଦାୟ କରିଦେବେ ? ତାଙ୍କର ଏପରି କହିବାର ତାତ୍ପର୍ଯ୍ୟ ହେଲା ଯେ ପ୍ରଧାନ ଶିକ୍ଷକ ତାଙ୍କ ବ୍ୟବହାରରେ ସନ୍ତୁଷ୍ଟ ନାହାନ୍ତି । ତାଙ୍କ ଯୁକ୍ତିତର୍କରେ ମୁଁ ସିନା ଅସନ୍ତୁଷ୍ଟ ଥାଏ କିନ୍ତୁ ଭଲ

ଶିକ୍ଷକ ହିସାବରେ ତାଙ୍କ ପ୍ରତି ଦରଦ ଥାଏ । ତେଣୁ ମୁଁ ତାଙ୍କୁ ପ୍ରଶ୍ନକଲି, ଆପଣଙ୍କର କ'ଣ ଏଠାରେ ରହିବାକୁ ଆଗ୍ରହ ଅଛି ? ସେ କହିଲେ "ଆପଣଙ୍କ ନିକଟରେ ମୁଁ ସହକାରୀ ହେଲେ ଆପଣଙ୍କଠାରୁ କେତେଟା ଭଲ ଗୁଣ ଶିଖିବି । ମୁଁ ଏଠାରେ ରହିବାକୁ ଚାହୁଁଛି ।" ସେତିକି କଥାରେ ମୁଁ ଉପରକୁ ଚିଠି ଲେଖିଦେଲି ତାଙ୍କର ବଦଳି ଆଦେଶ ରଦ୍ଦ କରିଦେବାପାଇଁ । ଆଦେଶ ରଦ୍ଦ ହେଲା ଏବଂ ସେ ରହିଲେ । ଇନସପେକ୍ଟର କ'ଣ, ଡି.ପି.ଆଇ. ଅଫିସ କଣ ସବୁଠାରେ ମୋତେ ସମ୍ମାନ ମିଳେ । ସେ ବାବୁଙ୍କର ବଦଳି ଆଦେଶ ରଦ୍ଦ ହେବାରୁ ତାଙ୍କର ମୋ ପ୍ରତି ଭକ୍ତିଭାବ ଛାଏଁ ଛାଏଁ ଜାଗରିତ ହେଲା । ଅବସର ପରେ ସେଠାକୁ ମୁଁ ବହୁଦିନପରେ ଗଲେ ମଧ ତାଙ୍କ ମନ ଭିତରେ ମୋ ପ୍ରତି ଭକ୍ତିଭାବ ଅତୁଟ ଥିବାର ଜାଣିଲି । ପାଠପଢ଼ାରେ, ଶ୍ରେଣୀ ପରିଚାଳନାରେ ଶିକ୍ଷକମାନଙ୍କ ପ୍ରତି କଡ଼ା ମନୋଭାବ ପ୍ରଦର୍ଶନ କଲେ ମଧ ସେମାନଙ୍କ ପରିବାର ପ୍ରତି ଢେର୍ ଧ୍ୟାନ ଦେଉଥିଲି । ତଦ୍ୱାରା ସେମାନେ ମୋର ପ୍ରିୟ ହୁଅନ୍ତି । ମୋଟାମୋଟି ଏଠାରେ ଗୋଟିଏ ଉତ୍ତମ କର୍ମଠ, ଜ୍ଞାନଗର୍ଭା ଶିକ୍ଷକମଣ୍ଡଳୀ ମୋ ପାଖେ ରହିଥିଲେ । ମଝିରେ ମଝିରେ ଦୁଇ ତିନିଜଣ ଏଣୁତେଣୁ ଶିକ୍ଷକ ଆସୁଥିଲେ ମଧ ଏ ଘଡା ଭିତରେ ପଶିଗଲେ ସେମାନେ ବି ମଣ ହୋଇଯାନ୍ତି । ତଥାପି ସର୍ବଶ୍ରୀ ସତ୍ୟବାଦୀ ମିଶ୍ର, କୃଷ୍ଣଚନ୍ଦ୍ର ବଳୀୟାର ସିଂହ, ନାରାୟଣ ମହାପାତ୍ର, ପ୍ରଫୁଲ୍ଲ କୁମାର ସାହୁ, ପୂର୍ଣ୍ଣଚନ୍ଦ୍ର ଦାଶ, ବିଶ୍ୱନାଥ ରଥ, ନାରାୟଣ ଧଳ, ରଙ୍କନାଥ ମାଲୁ, ଉଲ୍ଲାସ ଚନ୍ଦ୍ର ସାମନ୍ତରାୟ, ବଳଭଦ୍ର ମହାପାତ୍ର ପ୍ରମୁଖ ଶିକ୍ଷକମାନେ ପ୍ରତ୍ୟେକ କାର୍ଯ୍ୟରେ ମୋତେ ସାହାଯ୍ୟ କରୁଥିଲେ । ଶେଷବେଳକୁ ନିଧିପୁରର ପ୍ରାଣ ମହାପାତ୍ର ଓ ପଟ୍ଟନାୟକ ଦୁଇଜଣ ଶିକ୍ଷକ ଆସି ପହଞ୍ଚିଲେ । ସବୁ ଶିକ୍ଷକ ଯେ ସର୍ବଗୁଣସଂପନ୍ନ ହୋଇଥିବେ ତାହା ନୁହେଁ । ସେମାନଙ୍କୁ ସର୍ବଦା ପ୍ରୋତ୍ସାହିତ କରିବାକୁ ପଡୁଥିଲା । ବାବୁ ହରିହର ମିଶ୍ର ମୋ ଚିନ୍ତାଧାରାର ଦୃଢ଼ ସମର୍ଥକ ଥିଲେ ଓ ସଦା କର୍ମଠ ଥିଲେ । ଶୃଙ୍ଖଳାରକ୍ଷକ ଥିଲେ । ମୁଁ ସେଠାରୁ ଆସିବାର ଚାରି ବର୍ଷ ପରେ ତାଙ୍କର କ୍ୟାନସରରେ ଅକାଳରେ ଦେହାନ୍ତ ହୋଇଗଲା । କିନ୍ତୁ ମଲାପର୍ଯ୍ୟନ୍ତ ମୁଁ ତାଙ୍କୁ ସ୍ମରଣ କରୁଥିବି ।

### ବୋର୍ଡ ପରୀକ୍ଷା :

ସ୍କୁଲରେ ଛଅଟି ଶ୍ରେଣୀ ଓ ଦଶଟି କି ଏଗାରଟି ସେକ୍ସନ୍ ଥିଲା । ପିଲା ସଂଖ୍ୟା ବଢ଼ିବାକୁ ଲାଗିଲା । ପ୍ରଥମ ଦୁଇ ତିନିବର୍ଷ ଚାରିଶହରୁ ନିମ୍ନରେ ଥିଲେ । ଯଦି ଶ୍ରେଣୀରେ

ଶହେଟି ପିଲା ହେଉଥିଲେ ତେବେ ମୁଁ ଅଶୀ କି ପଞ୍ଚାଅଶୀ ପିଲା ବୋର୍ଡ ପରୀକ୍ଷାକୁ ପଠାଏ । ସେଥିରୁ ଷାଠିଏ କି ପଞ୍ଚଷଠି ଜଣ ପାସ୍ କଲେ ମୁଁ ଆନନ୍ଦିତ ହୁଏ । କାରଣ ନିରାକାରପୁର ସ୍କୁଲକୁ ପ୍ରଥମ ଶ୍ରେଣୀୟ ପିଲାମାନେ ପ୍ରାୟ ଆସନ୍ତି ନାହିଁ । କେବଳ କଲେଜ ଅଧ୍ୟାପକଙ୍କ ପିଲା ଭଲ ପଢୁଥିଲେ । କେତେକ ନାମକରା ସ୍କୁଲରେ ଶହେରୁ ପଚାଶ ବା ତା'ଠାରୁ କମ୍ ପିଲା ବୋର୍ଡ ପରୀକ୍ଷାକୁ ପଠାଇ ସମସ୍ତେ ପାସ୍ କରିଗଲେ ବାହାବା ନିଅନ୍ତି । ମାତ୍ର ସେଥିରେ କିଛି ବାହାଦୁରି ନଥାଏ । ମାତ୍ର ସେ ଜନସାଧାରଣଙ୍କୁ କହିବେ ଆମର ପଚାଶରୁ ପଇଁଚାଳିଶ ପିଲା ପାସ୍ କଲେ । ଲୋକେ ଯେତେ ଶିକ୍ଷିତ ହେଲେ ମଧ୍ୟ ପରୀକ୍ଷାର ନିୟମ୍‌କାନୁନ୍ କିଛି ବୁଝନ୍ତି ନାହିଁ । ଏମାନେ ପ୍ରଚାର କରନ୍ତି ଆମର ୧୦୦% ବା ୯୦% ପିଲା ପାସ୍ କଲେ । ସେପରି କୌଶଳ ମୁଁ ଗ୍ରହଣ କରିନଥିଲି । ମଫସଲ ସ୍କୁଲ କଅଣ ସୁବିଧା ଥିଲା କି ? ଶିକ୍ଷାର ମାନ କମିଯିବାର ମୁଖ୍ୟ କାରଣ ହେଲା ୧୯୬୯-୭୦ ମସିହାରେ ଶିକ୍ଷାମନ୍ତ୍ରୀ ଜଣେ ଶିକ୍ଷା ସଂସ୍କାରକ ହୋଇଗଲେ । ତାଙ୍କର କି ଅନୁଭୂତି ଥିଲା ? ତେବେ ମନ୍ତ୍ରୀ ଯଦି ପ୍ରସ୍ତାବ ଦେଉଛନ୍ତି ଶିକ୍ଷାବିଭାଗର କର୍ମକର୍ତ୍ତାଗଣ ଜ୍ଞାନୀ, ଗୁଣୀଲୋକ ହେଲେ ମଧ୍ୟ ସମସ୍ତେ ବିନାଦ୍ୱିଧାରେ ମାନୁଛନ୍ତି । ଏପରି ହେବାଟା ମୋ ମତରେ ଉଚିତ ନଥିଲା । ସେହିଦିନଠାରୁ ଅଗାଡ଼ିଗୁଡ଼ାକ ମଧ୍ୟ ଚାଲୁଣୀରେ ଖସିଆସି ଶେଷ ଶ୍ରେଣୀରେ ପହଞ୍ଚିଲେ ଏବଂ ବାଟରେ ନାନା ବିଭ୍ରାଟ ସୃଷ୍ଟି କଲେ । ସବୁ ସହିବାକୁ ପଡୁଥାଏ ।

ତେଣୁ ପ୍ରତ୍ୟେକବର୍ଷ ମାଟ୍ରିକ ଫଳ ଭଲ ହେଉନଥିଲା । ଏ'ତ ନିପଟ ମଫସଲ ସ୍କୁଲ, ସବୁ ଅଭିଭାବକ ସଚେତନ ନଥିଲେ । ଯେଉଁମାନେ ନିଜ ନିଜର ପିଲାମାନଙ୍କ ପ୍ରତି ଟିକିଏ ଦୃଷ୍ଟି ଦେଉଥିଲେ ସେମାନେ କିଛି ଭଲ ଫଳ ଦେଖାଉଥିଲେ । ଶିକ୍ଷକମାନେ ପ୍ରତିକୂଳ ପରିସ୍ଥିତିରେ ଅଧ୍ୟାପନା କରୁଥିଲେ । ତେବେ ଗୋଟିଏ ଶ୍ରେଣୀରେ ପଢ଼େଇବାବେଳେ ଅଧା କାନ୍ଥଦିଆ ପାଖ ଶ୍ରେଣୀରେ ବ୍ୟାଘାତ ଘଟୁଥିଲା । ଗୋଟିଏ କ୍ଷେତ୍ରକୁ ଶସ୍ୟଶ୍ୟାମଳା କରିବା ପାଇଁ ଯେପରି ଆବଶ୍ୟକ ପଡ଼େ ଉତ୍ତମ କ୍ଷେତ୍ର, ଉତ୍ତମ ବିହନ, ଉତ୍ତମ କର୍ଷଣ ଓ ତାଲିମପ୍ରାପ୍ତ କୃଷକ ସେହିପରି ସବୁପ୍ରକାର ସୁବିଧା ନଥିଲେ ବୋର୍ଡ ବାର୍ଷିକ ପରୀକ୍ଷାରେ ଛାତ୍ରଛାତ୍ରୀଗଣ ଆଶାନୁରୂପ ଫଳ ପ୍ରଦର୍ଶନ କରିପାରିବେ ନାହିଁ । ମୁଁ ତ' ହେଲି ମେଢ଼ି, ସବୁ ଦୋଷ ମୋର, ତେଣୁ ପ୍ରତିବର୍ଷ ପଢ଼ାପଢ଼ିରେ ଉତ୍କର୍ଷତା ଦେଖାଇବାକୁ ଆଗଭର ହେଲି ଓ ଶିକ୍ଷକ-ଭାଇମାନଙ୍କୁ ଉତ୍ସାହିତ କରିବାରେ ଲାଗିଲି । ତେଣୁ ଶେଷ କେତେବର୍ଷ ଅସାଧାରଣ ଫଳପ୍ରାପ୍ତି ହେଲି ଏବଂ ସବୁଠାରୁ ଶେଷବର୍ଷ ଫଳ ରେକର୍ଡ଼ ଅତିକ୍ରମ କଲା ।

## ଶିକ୍ଷାମନ୍ତ୍ରୀଙ୍କ ତ୍ରୁଟିପୂର୍ଣ୍ଣ ଆଦେଶ :

ସେତେବେଳେ ସେ ଯେଉଁ ଶିକ୍ଷାନୀତି ସପ୍ତମ ଶ୍ରେଣୀ ପାଇଁ ପ୍ରଚଳନ କଲେ ତାର ଫଳ ଆମ୍ଭେ ବର୍ତ୍ତମାନ ମଧ ଭୋଗ କରୁଅଛୁ । ଦୁର୍ନୀତି ଦେବୀଙ୍କର ଭୟଙ୍କର ପାଟି ଭିତରେ ସମସ୍ତେ ପଶିଯାଉଛନ୍ତି । ୨୦୦୧ ମସିହାରେ ତିନି ଲକ୍ଷ ପିଲାଙ୍କ ମଧ୍ୟରୁ ଏକ ଲକ୍ଷ କୋଡ଼ିଏ ହଜାର ପିଲା ମାଟ୍ରିକ ପରୀକ୍ଷାରେ ପାସ୍ କରିଛନ୍ତି । ଏବେ ପ୍ରାୟ କୋଡ଼ିଏ ବର୍ଷ ହେଲା ନିଷ୍ଠାର ଘୋର ଅଭାବ ପରିଲକ୍ଷିତ ହେଉଛି । କେହି ଖାଟିକରି ପଢ଼ାଉ ନାହାଁନ୍ତି । ମାତ୍ର ଦରମା ବଢ଼ାଇବା ପାଇଁ ଦାବିକରି ଅନଶନ, ଧର୍ମଘଟ, ଆନ୍ଦୋଳନ ଏବଂ ଘେରାଉ କରିବାରେ ସମୟ ବ୍ୟୟ କରୁଛନ୍ତି । ଯେତେ ଯାହା ନିୟମକାନୁନ୍ କଲେ ମଧ ଲୋକ ଚରିତ୍ରର ପତନ ସମସ୍ତ ଦୁର୍ଗତିର ମୂଳକାରଣ । କେବେ ଏ ମହାନ୍ ଜାତିର ନିଦ ଭାଙ୍ଗିବ ? ବିବେକ ଉଦୟ ହେବ ? ମୁଁ ଜଣେ କର୍ମଯୋଗୀ । ବୋର୍ଡ ପରୀକ୍ଷାର ଫଳାଫଳ ବିଦ୍ୟାଳୟର ମାନମହତ ବୃଦ୍ଧିକରେ । ତେଣୁ ସେ ପରୀକ୍ଷାରେ ବେଶି ପିଲା କିପରି କୃତକାର୍ଯ୍ୟ ହେବେ ସେଥିପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟାକରେ । ଏଠାର ଜନସାଧାରଣ ସେତେ ଶିକ୍ଷା ସଚେତନ ନୁହଁନ୍ତି । ତେଣୁ ଟେଷ୍ଟ ପରୀକ୍ଷାରେ ସେହି ପିଲାମମାନଙ୍କୁ ସ୍ୱତନ୍ତ୍ର କୋଚିଙ୍ଗ ଦେବାପାଇଁ ବ୍ୟବସ୍ଥା କରେ । ପ୍ରତ୍ୟେକ ଶିକ୍ଷକ ଏଥିରେ ଅଂଶଗ୍ରହଣ କରନ୍ତି । ସେମାନଙ୍କୁ ସମ୍ଭାବ୍ୟ ପାରିଶ୍ରମିକ ବି ପ୍ରଦାନ କରାଯାଏ । ସେମାନଙ୍କୁ ମଙ୍ଗାଇବାକୁ ପଡୁଥିଲା । ଏହି ସ୍କୁଲ କୋଚିଙ୍ଗ୍‌ରୁ ସୁଫଳ ମିଳୁଥିଲା । କଡ଼ା ନିୟମ ଅନୁଯାୟୀ କାମ କରାଯାଉଥିଲା । ଏତଦ୍‌ବ୍ୟତୀତ ଯେଉଁ ଅଭିଭାବକ ପିଲାପାଇଁ ଖର୍ଚ୍ଚ କରିପାରିବେ ସେମାନଙ୍କ ପାଇଁ ସଂପୃକ୍ତ ଶିକ୍ଷକମାନଙ୍କୁ ପ୍ରଭାବିତ କରେ । ସେମାନେ ଘରୋଇ ଟିଉସନ କରି ଅଧିକ ପରୀକ୍ଷାର୍ଥୀଙ୍କୁ କୃତକାର୍ଯ୍ୟ କରିବାରେ ସାହାଯ୍ୟ କରନ୍ତି । ମୋ ସ୍କୁଲରେ ମାଟ୍ରିକ୍ ଫଳ, ବୋର୍ଡ ପାସ୍‌ହାର ଠାରୁ ସବୁବେଳେ ଉଚ୍ଚରେ ଥାଏ । ଘରର ଘୋର ଅଭାବ । ଗୃହଗୁଡ଼ିକ ଅଗ୍ନିଦଗ୍ଧ ହେବାପରେ ମଧ ବିଦ୍ୟାଳୟର ଫଳାଫଳ ସର୍ବଦା ସନ୍ତୋଷଜନକ ହେଉଥିଲା । ପଠାଇଥିବା ପିଲାମାନଙ୍କ ମଧ୍ୟରୁ ପାସ୍‌ହାର ଶତକଡ଼ା ଷାଠିଏ କି ଶତକଡ଼ା ସତୁରି ବେଳେବେଳେ ଅଧିକ ଥିଲା । କିନ୍ତୁ ପ୍ରତି ବାର୍ଷିକ ପରୀକ୍ଷାରେ କଡ଼ାକଡ଼ି ଭାବରେ ଶ୍ରେଣୀ ପ୍ରମୋଶନ ଦିଆଯାଉଥିଲା ।

ବୋର୍ଡ ପରୀକ୍ଷାଫଳ ଘୋଷିତ ହେବାପରେ ସ୍କୁଲକୁ ମାର୍କ ଲିଷ୍ଟ ସାତଦିନ ମଧ୍ୟରେ ଆସିଥାଏ । ସେହି ନମ୍ବର ତାଲିକାକୁ ଶିକ୍ଷକ ବନ୍ଧୁମାନଙ୍କ ସଭାରେ ଆଲୋଚିତ ହୁଏ । ତନ୍ନତନ୍ନ କରି ନିରୀକ୍ଷଣ କରାଯାଏ । ଯେଉଁ ଶିକ୍ଷକମାନେ ଯେଉଁ ବିଷୟରେ ଶ୍ରେଣୀରେ ଅଧ୍ୟାପନା କରନ୍ତି ତାଙ୍କୁ ପଚାରେ, "ଆପଣଙ୍କ ବିଷୟରେ ଏତେ ପିଲା ଫେଲ ହେଲେ

କାହିଁକି ? କଣ କଲେ ଆସନ୍ତା ବର୍ଷକୁ ଏପରି ଭୁଲ ହେବ ନାହିଁ ?'' ସମସ୍ତେ ନିଜ ନିଜର ଭୁଲ ବୁଝନ୍ତି ଆରଥରକୁ ସତର୍କ ରହନ୍ତି । ଆହୁରି ଭଲ ଫଳ ପାଇବାକୁ ଚେଷ୍ଟା କରନ୍ତି ।

## ଶ୍ରେଣୀ ପ୍ରମୋଶନ :

ପ୍ରତିବର୍ଷ ଶ୍ରେଣୀ ପ୍ରମୋଶନ ବେଳେ ବିଭ୍ରାଟ ଘଟେ । ସବୁ ପିଲା ଯେ ପାସ୍ କରିଯିବେ ତାହାନୁହେଁ । ପୂର୍ବରୁ ପିଲାମାନଙ୍କୁ ଯେତେ ସଚେତନ କରାଇଲେ ମଧ ଏମାନେ କିଛି ବୁଝନ୍ତି ନାହିଁ । ପଞ୍ଚାଟାଏ ଶ୍ରେଣୀ ପ୍ରମୋଶନବେଳେ ଗୋଳମାଳ କରନ୍ତି । କିନ୍ତୁ ମୋ ଅଟଳ ନୀତି ଆଗରେ ହାର ମାନନ୍ତି । ଏହି କଠୋର ନୀତି ଯୋଗୁଁ ନିରାକାରପୁରର କେତେକ ଅଭିଭାବକ ମୋର ଶତ୍ରୁ ପାଲଟି ଯାଆନ୍ତି ।  ଜଣେ ଅର୍ଦ୍ଧଶିକ୍ଷିତ ସେମାନଙ୍କୁ ଉସୁକାନ୍ତି । ମୁଁ କିନ୍ତୁ ସେଥିରେ ନଥାଏ । ବହୁ ଲୋକ ମୋ ପାଠପଢ଼ାରେ ଭୂୟସୀ ପ୍ରଶଂସା କରୁଥିଲେ ଏବଂ ସ୍କୁଲର ଶୃଙ୍ଖଳାକୁ ମଧ ପସନ୍ଦ କରୁଥିଲେ । ଯେଉଁଠି ରହିବ—ଅଧେ ଆପଣା ଅଧେ ପର ହୋଇ ରହିବେ ହିଁ ରହିବେ । ସଫଳତା ବିଫଳତା, ସମ୍ପଦ ବିପଦ ଦେଇ ବାର ବର୍ଷ କଟାଇ ଦେଲି ।

## ପଢ଼ାପଢ଼ି ପାଇଁ ଅସୁବିଧା :

ନିରାକାରପୁର ହାଇସ୍କୁଲରେ ନିଶ୍ୱାସ ମାରିବାକୁ ସମୟ ନଥାଏ । ସାପ, ବେଙ୍ଗ, କଙ୍କଡ଼ାବିଛା ବାସକରୁଥିବା ଶ୍ରେଣୀ ଗୃହରେ ପିଲାମାନେ ପଢ଼ିବେ କିପରି ? କଥାରେ ଅଛି—''ସସର୍ପେଚ ଗୃହେ ବାସ ମୃତ୍ୟୁରେବ ନ ସଂଶୟଃ ।'' ସର୍ପଦ୍ୱାରା କୌଣସି ପିଲା ଆଘାତପ୍ରାପ୍ତ ହେଲେ ହେଡମାଷ୍ଟର ଦୋଷୀ ହେବେ । ଯାହା ତ ସ୍ଥାନ ଥିଲା ଏବେ ୧୯୭୩ରେ ଗୃହଗୁଡ଼ିକ ଅଗ୍ନିଦଗ୍ଧ ହୋଇଯିବାପରେ ସ୍ଥାନାଭାବ ବିଶେଷ ଅନୁଭୂତ ହେଲା । ଗୃହ ଅଗ୍ନିଦଗ୍ଧ ହୋଇଯିବାପରେ ପୁରୀର ସର୍କଲ ଇନିସ୍‌ପେକ୍ଟର ମହୋଦୟ ଶ୍ରୀଯୁକ୍ତ ଦୁର୍ଯ୍ୟୋଧନ ରାଉତ, ଏମ୍.ଏ.ଡବ୍‌ଲିନ୍ ବିଦ୍ୟାଳୟ ପରିଦର୍ଶନ ସମୟରେ ମନ୍ତବ୍ୟ ଦେଲେ, ''ସ୍ଥାନୀୟ ପିଲାଏ ଗୃହ ଭସ୍ମୀଭୂତ କଲେ । ଏଠାରେ ସ୍କୁଲ କାହିଁକି ରହିବ ? ଉଠେଇଦେବା କଥା ।'' ମୁଁ ତ ଅଧସ୍ତନ କର୍ମଚାରୀ, ମୁଁ ବା କ'ଣ କହିବି ? ପୂର୍ବତନ ହେଡମାଷ୍ଟର ବାବୁ ଆନନ୍ଦ ରଥ ସେଠାରେ ଉପସ୍ଥିତ ଥିଲେ । ସେ କହିଲେ, ପୁରୀ କଲେଜର ପିଲାଏ ଅଧ୍ୟାପକଙ୍କ ଆଖି ଫୁଟାଇ ଦେଲେ ତେବେ କ'ଣ ସେଠାରୁ କଲେଜ ଉଠାଇ ଦିଆଯିବ ?

ଇନ୍‌ସପେକ୍ଟର ମହୋଦୟ ଚୁପ୍ । ଶ୍ରେଣୀ ପରିଦର୍ଶନ ନ କରି ସେମିତି ଫେରି ଚାଲିଗଲେ ।

## ସ୍କୁଲର ଅଭାବ ଅସୁବିଧା ଦୂର କରିବା ପାଇଁ ଚେଷ୍ଟା :

ପିଲାମାନଙ୍କ ପାଇଁ ଗୃହ ଅଭାବ, ଆସବାବପତ୍ର ଅଭାବ, ସ୍ଥାନାଭାବ ସର୍ବଦା ଥିଲା । ଅବଶ୍ୟ ଡି.ପି.ଆଇ. ମହୋଦୟ ଶ୍ରୀ ଦେବେନ୍ଦ୍ର ମିଶ୍ରଙ୍କ ଠାରୁ ପାଞ୍ଚହଜାର ଟଙ୍କାର ଗ୍ରାଣ୍ଟ ଆଣି ଦଗ୍ଧୀଭୂତ ଗୃହରୁ ଅବଶିଷ୍ଟ ଉପକରଣ ସଂଗ୍ରହ କରି ଦୁଇବଖରା ଶ୍ରେଣୀ ଗୃହ ନିର୍ମାଣ କଲି । ଆଣ୍ଠୁକୁ ଆଣ୍ଠୁ ଲଗାଲଗି ହୋଇ ବସିବା ଦ୍ୱାରା ପଢ଼ାପଢ଼ିରେ ବିଶେଷ ବ୍ୟାହତ ସୃଷ୍ଟି ହେଉଥିଲା । ଆମ୍ବଗଛମୂଳେ, ବାରଣ୍ଡାରେ ଏବଂ ତଳେ ବି ପିଲା ବସୁଥିଲେ । ହଲରେ ଦୁଇଟି ଓ ଛାତ୍ରାବାସରେ ଦୁଇଟି କାନ୍ଥ ମଝିରେ ଦେଇ ଆଉ କେତେଗୋଟି ଶ୍ରେଣୀ ଗୃହ ବାହାର କଲି । ଏହିପରି କେତେବର୍ଷ ସ୍କୁଲ ଚଳାଇଲି । ସହକାରୀ ଶିକ୍ଷକମାନେ ମୋତେ ସର୍ବାନ୍ତଃକରଣରେ ସାହାଯ୍ୟ କରନ୍ତି । ଗୃହ ନିର୍ମାଣ ନିମନ୍ତେ ବହୁବାର ଡି.ପି.ଆଇ.ଙ୍କ ଦ୍ୱାରସ୍ଥ ହେଲି । ଡି.ପି.ଆଇ.ମାନେ କ୍ଷମତାକୁ ଆସୁଥାନ୍ତି ଏବଂ ଯାଉଥାନ୍ତି । ଇନ୍‌ସପେକ୍ଟର ମଧ ବଦଳୁଥାନ୍ତି କିନ୍ତୁ ମୋର ବଦଳି ହେଉନଥାଏ । ସରକାର ସ୍କୁଲକୁ ନେବାର ତିନି ବର୍ଷରୁ ଊର୍ଦ୍ଧ୍ୱ ହେଲାଣି କିନ୍ତୁ ନିର୍ମାଣ ବିଭାଗ ସ୍କୁଲକୁ ହାତକୁ ନେଉନାହିଁ । ଦୋଦୁଲ୍ୟମାନ ଅବସ୍ଥାରେ ମୋତେ ସେଠାରେ ରହିବାକୁ ପଡୁଥିଲା ।

ଯେଉଁ ବର୍ଷ ବିଦ୍ୟାଳୟର ମୁଖ୍ୟ ଚାଳଛପର ଗୃହ ଅଗ୍ନିଦଗ୍ଧ ହୋଇଗଲା ସେବର୍ଷ ରାଜ୍ୟରେ ରାଷ୍ଟ୍ରପତି ଶାସନ ଚାଲିଥିଲା । ରାଜ୍ୟପାଳ ଥିଲେ ମାନ୍ୟବର ବି.ଡି.ଜତି । ସେତେବେଳକୁ ବିଶ୍ୱନାଥ ଦାଶଙ୍କର ମୁଖ୍ୟମନ୍ତ୍ରିତ୍ୱ ଗଲାଣି । ପରେ ପରେ ଶ୍ରୀମତୀ ନନ୍ଦିନୀ ଶତପଥୀ କେନ୍ଦ୍ରରୁ ଆସି ମୁଖ୍ୟମନ୍ତ୍ରୀ ଆସନରେ ବସିଲେଣି । ପୂର୍ବରୁ ୧୯୭୧ ମସିହାରେ ଭାରତ ପାକିସ୍ଥାନ ଯୁଦ୍ଧରେ ଭାରତ ବିପୁଳ ଜୟଲାଭ କରି ସମଗ୍ର ପୃଥିବୀରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କଲାଣି । ଇନ୍ଦିରାଗାନ୍ଧୀଙ୍କୁ ଦୁର୍ଗାରୂପରେ ଭାରତବାସୀ ଚିତ୍ରଣ କରୁଥାନ୍ତି । ସେ ଖୁବ୍ ପ୍ରଭାବଶାଳିନୀ ହୋଇପଡ଼ିଥାନ୍ତି । ସେ ପୃଥିବୀରେ ଶ୍ରେଷ୍ଠ ନାରୀନେତ୍ରୀ ଥିଲେ ।

## ମୋ ବିରୁଦ୍ଧରେ ଅଭିଯୋଗ :

ଏପର୍ଯ୍ୟନ୍ତ ମୁଁ ସ୍ୱାଧୀନ ଭାବରେ ଟ୍ରେଜେରିରୁ ଶିକ୍ଷକମାନଙ୍କ ଦରମା ଡ୍ର କରିପାରୁନଥିଲି । ତେଣୁ ପାଠ ପଢ଼ାଇବାରେ ବ୍ୟାଘାତ ସୃଷ୍ଟି ହେଉଥିଲା । ଏହି ଅସୁବିଧା କିପରି ସମାଧାନ ହେବ ସେଥିପାଇଁ ମୁଁ ଚେଷ୍ଟିତ ଥିଲି । ଏ ବର୍ଷ କାଶୀପୁରର ହରିମିଶ୍ର

ବି.ଏ., ବି.ଇଡି. ସ୍କୁଲରେ ଯୋଗଦେଲେ । ହରିବାବୁ ଦକ୍ଷ ଶିକ୍ଷକ । ମୋ ନୀତି ଓ ଦୃଢ଼ତାକୁ ସେ ଖୁବ୍ ପସନ୍ଦ କରୁଥିଲେ । ତାଙ୍କ ସାହାଯ୍ୟରେ ମୁଁ ବିଦ୍ୟାଳୟର ବହୁବିଧ ଉନ୍ନତି ସାଧନ କରିଥିଲି । ତାଙ୍କର ମୋ ପ୍ରତି ଭକ୍ତି, ବିଦ୍ୟାଳୟ ପ୍ରତି ନିଷ୍ଠା, ଛାତ୍ରଛାତ୍ରୀମାନଙ୍କ ପ୍ରତି କର୍ତ୍ତବ୍ୟ ମୋତେ ଖୁବ୍ ଆନନ୍ଦ ପ୍ରଦାନ କରୁଥିଲା । ସେ ମୋର ପରମ ସହାୟକ ଥିଲେ । ପୁଣି ସେ ବର୍ଷ ଡେଲାଙ୍ଗ ହାଇସ୍କୁଲରୁ କୃଷ୍ଣଚନ୍ଦ୍ର ବଳିଆର ସିଂହଙ୍କୁ ଅଣାଇଥିଲି । ଯେଉଁ ଆଶାରେ ମୁଁ ତାଙ୍କୁ ଏଠାକୁ ଅଣାଇଲି ତାହା ପୂରଣ ହେଲାନାହିଁ । ବିଦ୍ୟାଳୟ କାର୍ଯ୍ୟ ବାଧାପ୍ରାପ୍ତ ହେଲା । ସେ ମହାଶୟ ପରେ ମନକୁମନ ଏ ସ୍କୁଲ ପରିତ୍ୟାଗ କରି ନିଜଘର ପାଖ ବାଣପୁର ବାଳିକା ବିଦ୍ୟାଳୟକୁ ଚାଲିଗଲେ । ଜଣେ ବରିଷ୍ଠ ଶିକ୍ଷକଙ୍କ ପ୍ରରୋଚନାରେ କେତେଜଣ ମୋ' ନାଁରେ ଗୁରୁତର ଅଭିଯୋଗ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରେ ଉପସ୍ଥାପନ କଲେ । ସବୁଠାରେ ମୋ ବିଷୟ ପକାଇଥାନ୍ତି । ମୁଁ କାହାର ଅନ୍ୟାୟ ଅନୁରୋଧକୁ ପାସଙ୍ଗରେ ପକାଏ ନାହିଁ । ସେତେବେଳେ ପୁରୀ ସର୍କଲରେ ଇନ୍ସପେକ୍ଟର ଥାଆନ୍ତି ବାବୁ ଶିବରାମ ପଟ୍ଟନାୟକ । ସେମାନଙ୍କର ଅଭିଯୋଗ ଥିଲା, ''ହେଡମାଷ୍ଟର ସ୍କୁଲର ଆମ୍ବଗଛଟିଏ କାଟି ଘରକୁ ଜାଳେଣି ପାଇଁ ନେଇଗଲେ । ଖେଳ ଶିକ୍ଷକ ପୁରୁଣା ଖେଳ ସାମଗ୍ରୀକୁ ବିକ୍ରି କରି ପଇସା ଖାଇଗଲେ । ଲାଇବ୍ରେରୀ ଶିକ୍ଷକ ପିଲାମାନଙ୍କୁ ଲାଇବ୍ରେରୀ ବହି ପଢ଼ିବାକୁ ଦେଉନାହାଁନ୍ତି । ହେଡମାଷ୍ଟର ସ୍କୁଲରୁ ଟଙ୍କା ଖାଇ ଖୋର୍ଦ୍ଧାରେ ଗୃହ ନିର୍ମାଣ କରୁଛନ୍ତି । ପାଠପଢ଼ା ସମ୍ବନ୍ଧେ ବା ବିଶୃଙ୍ଖଳା ସମ୍ବନ୍ଧେ କିଛି ଅଭିଯୋଗ ଉପସ୍ଥାପନ କରିନଥିଲେ ।'' ଉକ୍ତ ଅଭିଯୋଗଗୁଡ଼ିକ ଗଭର୍ଣ୍ଣରଙ୍କ ପାଖକୁ ପଠା ହୋଇଥିଲା । ଚିଠିଟା ବୁଲି ବୁଲି ଇନ୍ସପେକ୍ଟରଙ୍କ ପାଖରେ ପହଞ୍ଚିଲା । ସେ ଏ ବିଷୟରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା କଥା । ଇନ୍ସପେକ୍ଟର ମହୋଦୟ ଖୋର୍ଦ୍ଧାର ଟାଣୁଆ ଡି.ଆଇ.ରଘୁନାଥ ପଲାଇଙ୍କୁ ଅନୁସନ୍ଧାନ କରିବା ପାଇଁ ପଠାଇଥିଲେ । ଅଭିଯୋଗଗୁଡ଼ିକ ଯେ ସଂପୂର୍ଣ୍ଣ ମିଥ୍ୟା ଏହା କୁହାଯାଇ ନପାରେ । ହାଇସ୍କୁଲ ପରିସର ମଧ୍ୟରେ ଗୋଟିଏ ବୁଢ଼ା କୋରଡ଼ିଆ ଆମ୍ବଗଛ ଥିଲା । ଗଛରେ ଡାଳପତ୍ର ନଥିଲା । କେଉଁ କାଳର ବୁଢ଼ା ଗଛ, ସାଧାରଣତଃ ସ୍ତ୍ରୀ ଲୋକଙ୍କର ଘରକରଣା ବୁଦ୍ଧି ପ୍ରଖର । ସ୍ତ୍ରୀ କହିଲେ, ହଇହେ, ''ଏଠାରେ ତ' କାଳର ଘୋର ଅଭାବ, ସେ ବୁଢ଼ା ଗଛଟା କାଟିଦେଲେ ହୁଅନ୍ତା ନାହିଁ ? '' ମୁଁ ଉତ୍ତର ଦେଲି, ''ଗଛଟା କୋରଡ଼ିଆ ହେଲେ ମଧ୍ୟ ସ୍କୁଲର, ମୁଁ କାଟିବି କିପରି ?'' ପରମୁହୂର୍ତ୍ତରେ ମୋ ବସା ପାଖରେ ବାସକରୁଥିବା ବରିଷ୍ଠ ଶିକ୍ଷକ ଶ୍ରୀ କୃଷ୍ଣଚନ୍ଦ୍ର ବଳିୟାରସିଂହଙ୍କୁ ପଚାରିଲି, ''ସେ କହିଲେ ବୁଢ଼ା ଗଛଟା ତ କାଟି ଦେଉନାହାଁନ୍ତି ।

ବିଶୁବାବୁ ବି ସେହି କଥା କହିଲେ ।'' ସ୍କୁଲର କିରାଣି ମୋତେ ଗୋଟିଏ ବୁଦ୍ଧି ବତାଇଲେ ସେମିତି ନେଲେ କିଏ କ'ଣ କହିବ ଆପଣ ତା ବାବଦକୁ କିଛି ଟଙ୍କା ଦେଇ ସେଇ ଗଛଟାକୁ ନେଇଯାନ୍ତୁ । ତାହାହିଁ ମୁଁ କଲି ।'' ଏକଥା ସେମାନଙ୍କୁ ଅଜଣା ଥିଲା । ରକ୍ଷାକବଚ ସ୍ୱରୂପ ବିଦ୍ୟାଳୟର ପାଣ୍ଠିରେ ସେତେବେଳେ ୬୦ଟଙ୍କା ଜମା କରି ଗଛକୁ କାଟି ଆଣିଲି । ଯେଉଁମାନେ ମୋତେ ଏଥିରେ ପୂରାଇ ଦେଲେ ସେମାନେ ପଛରେ ଏପରି ଛୁରା ମାରିବେ ବୋଲି ମୋର ବିଶ୍ୱାସ ନଥିଲା, ଅନ୍ୟ ଅଭିଯୋଗଗୁଡ଼ିକର କୌଣସି ଭିତ୍ତିଭୂମି ନଥିଲା । ଏହି ଅଭିଯୋଗ ଟାଣ କରିବା ପାଇଁ ସେମାନେ ଅବାନ୍ତର ବିଷୟଗୁଡ଼ିକ ଯୋଡ଼ିଥିଲେ ।

ବାବୁ ରଘୁନାଥ ପଲାଇ ସବୁ ବିଷୟ ତନ୍ନତନ୍ନ କରି ଅନୁସନ୍ଧାନ କଲେ । ମୋ' ଠାରୁ ଚା କପେ ବି ଗ୍ରହଣ କଲେନାହିଁ । ନିରାକାରପୁରକୁ ଆସିବାର ଏକ ଦଶନ୍ଧି ପୂର୍ବରୁ ମୁଁ ଗୃହ ନିର୍ମାଣ କରିଥିଲି ଏକଥା ପଲାଇବାବୁ ଭଲଭାବରେ ଜାଣିଥିଲେ । ନିରାକାରପୁର ଛୋଟ ପରିସର ପଡ଼ିଲା ଉଠିଲା । ଲୋକେ ଅନାଇ ରହିଲେ, ''ହେଡମାଷ୍ଟର କି ଦଣ୍ଡ ପାଇବେ ?'' ବରିଷ୍ଠ ଶିକ୍ଷକ ମହୋଦୟ କୁରୁଳି ହସୁଥାନ୍ତି । ଯେଉଁ କେତେଜଣ ଦରଖାସ୍ତରେ ସ୍ୱାକ୍ଷର କରିଥିଲେ ପଲାଇବାବୁ ସେମାନଙ୍କୁ ଡାକିଲେ, କେତେଜଣଙ୍କୁ କହିଲେ, ଏଠାରେ ଆପଣମାନଙ୍କର ଗୋଟିଏ ଗୋଟିଏ ଦସ୍ତଖତ ଦିଅନ୍ତୁ । କିନ୍ତୁ ଦସ୍ତଖତ ଭିନ୍ନ ହେଲା । ବୋଧହୁଏ ଦୁଇଚାରିଜଣ ମୁଣ୍ଡପାଗଳା ବାମ ଡାହାଣ ହାତରେ ଦସ୍ତଖତ କରିଥିବାର ତାଙ୍କର ହୃଦ୍‌ବୋଧ ହେଲା । ଯେତେବେଳେ ଗଛର ମୂଲ୍ୟଠାରୁ ଅଧିକ ଅର୍ଥ ଉଦ୍ୟାନ ପାଣ୍ଠିରେ ପଇଠ ହୋଇଛି, ସେ ଆଉ କହିବେ କ'ଣ ? ପୁଣି ମୋ ଖୋରଧା ଘରେ ପୂର୍ବତନ ଡି.ଆଇ.ଜେମସ୍ ସାହେବ ଥିଲେ । ଟ୍ରେନିଂ ସ୍କୁଲ ବହୁବର୍ଷ ହେଲା ଭଡ଼ା ନେଇଥିଲା । ଏସବୁ ଜାଣିବାପରେ ଲାଇବ୍ରେରୀ ଓ ଖେଳ ବିଷୟ ଉତ୍‌ଥାପିତ ହେଲା । ଉଭୟ ଶିକ୍ଷକ ଡକା ହେଲେ । ଲାଇବ୍ରେରୀ ରୁମ୍ ତଦାରଖରୁ ଜଣାପଡ଼ିଲା ଯେ ପିଲାମାନେ ପୁସ୍ତକ ମଝିରେ ମଝିରେ ନେଉଛନ୍ତି ଏବଂ ପୁରୁଣା ଖେଳଜିନିଷ ବିକ୍ରି ହୋଇ ଖେଳ ପାଣ୍ଠିରେ ଜମା ହୋଇଛି । ସମସ୍ତ ଅଭିଯୋଗ ମିଥ୍ୟା ପ୍ରମାଣିତ ହେଲା । ଅଭିଯୋଗର ଅସାରତା ପ୍ରମାଣ ଦେଖାଇ ସେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ରିପୋର୍ଟ ଦେଲେ । ସେଠାରେ ଉପସ୍ଥିତ ଜନତା ସମ୍ମୁଖରେ ସେ କହିଦେଲେ– ''ମୁରଲୀବାବୁଙ୍କୁ ମୁଁ ଦେଖିନଥିଲି ତାଙ୍କ ନାମ ମାତ୍ର ଶୁଣିଥିଲି । ତାଙ୍କ ବିରୁଦ୍ଧରେ ଅଭିଯୋଗ କର୍ତ୍ତୃପକ୍ଷଙ୍କୁ ଜଣାଇଦେବି ।'' ଅଭିଯୋଗକାରୀ ଜାଣିପାରିଲେ ଏଥରକ ଅସ୍ତ୍ର କାଟୁକଲା ନାହିଁ । ଆରଥରକୁ ଦେଖାଯିବ ।

## ଇନସ୍‌ପେକ୍ଟରଙ୍କ ମୋ ଉପରେ ବିଶ୍ୱାସ :

ଉକ୍ତ ଘଟଣାରୁ ସର୍କଲ ଇନ୍‌ସ୍‌ପେକ୍ଟର ଶିବରାମ ପଟ୍ଟନାୟକଙ୍କର ମୋ ଉପରେ ବିଶ୍ୱାସ ବଢ଼ିଲା । ମୋ ସଚ୍ଚୋଟପଣିଆରେ ସେ ଗଭୀର ଆନନ୍ଦ ପ୍ରକାଶ କଲେ । ସବୁ ବିଦ୍ୟାଳୟରେ Black sheep ରହିବେ । ଦୁଇ ତିନିଜଣ ଗୋଠଖଣ୍ଡିଆ ମେଳିଆ, କର୍ମକୁଣ୍ଠ ବ୍ୟକ୍ତି ରହିବେ । ସେମାନଙ୍କୁ ନେଇ କାମ କରିବାକୁ ହେବ । ତେବେ ବିଦ୍ୟାଳୟରେ ଅର୍ଦ୍ଧାଧିକ ବ୍ୟକ୍ତି ନିଷ୍ପାପର ଥିବାରୁ ଓ ମେଢ଼ି ଟାଣଥିବାରୁ ଅନ୍ୟ ଯେଉଁମାନେ ଆସି ମଝିରେ ଯୋଗଦେଉଥିଲେ ସେମାନେ ସେହି ଛାଞ୍ଚରେ ପଡ଼ିଯାଉଥିଲେ । ଜଣେଅଧେକୁ ଛାଡ଼ିଦେଲେ ଶିକ୍ଷକମାନଙ୍କର ମୋ ପ୍ରତି ଭାରି ଖାତିରି ଥିଲା । ମୁଁ ନିରପେକ୍ଷ ରହୁଥିଲି । ତେଣୁ ସମସ୍ତଙ୍କର ଶ୍ରଦ୍ଧା ଲାଭ କରୁଥିଲି । ଏହି ହାଇସ୍କୁଲକୁ ଏକ ଉନ୍ନତ ଧରଣର ସ୍କୁଲରେ ପରିଣତ କରିବା ପାଇଁ ସତତ ଚେଷ୍ଟା କରୁଥିଲି ।

## ଶ୍ରେଣୀ ପ୍ରମୋଶନ :

ଶ୍ରେଣୀ ପ୍ରମୋଶନ ଓ ଟେଷ୍ଟ ପରୀକ୍ଷାରେ ଏକ ନୂତନ ଉପାୟ ଅବଲମ୍ବନ କରୁଥିଲି । ଖୋର୍ଦ୍ଧାସ୍କୁଲ ଅନୁକରଣରେ ଏହା ସ୍ଥିରୀକୃତ ହୋଇଥିଲା । ଏଥିରେ ଅଧିକ ସମୟ ଖର୍ଚ୍ଚ ହେଉଥିଲା । ଜଣେ ଦୁଇଜଣ ବିଶ୍ୱାସୀ ଶିକ୍ଷକଙ୍କୁ ଏଥିରେ ସଂଶ୍ଳିଷ୍ଟ କରିଥାଏ । ପରୀକ୍ଷାଖାତାର ଚିଟ୍ ଉପରେ ଗୋଟିଏ ଲେଖାଏଁ ଗୁପ୍ତ ରୋଲନମ୍ବର ଦେଇଥାଏ । ଚିଟ୍ ଉପରେ ତାର ପ୍ରକୃତ ରୋଲନମ୍ବର ଥାଏ । ସେହି ଚିଟ୍ ଉପରେ ତଳେ କାର୍ବୋନ କାଗଜ ପକାଇ ଗୁପ୍ତ ନମ୍ବର ଉଠାଏ । ସେହି ଚିଟ୍‌ଗୁଡ଼ିକ ବିଡ଼ା ବାନ୍ଧି ମୁଁ ନିଜ ବାକ୍ସରେ ରଖିଥାଏ । ପ୍ରତ୍ୟେକ ଖାତା ନିରୀକ୍ଷା ପରେ ଚିଟ୍‌ଗୁଡ଼ିକ ଅନୁଧ୍ୟାନ କରି ଠିକ୍ ରୋଲନମ୍ବର ଦରଜ କରାଯାଏ । ଗୁପ୍ତ ରୋଲନମ୍ବର ନୀତି ଅବଲମ୍ବନ କରିବାଦ୍ୱାରା ପୂର୍ଣ୍ଣ ନିରପେକ୍ଷତା ଅବଲମ୍ବନ କରାଯାଇଥାଏ । ଅନ୍ୟ କେହି ଏ କଥା ଜାଣିପାରନ୍ତି ନାହିଁ ।

ପ୍ରତିବର୍ଷ ପ୍ରତି ଶ୍ରେଣୀରୁ ଆଠ ଦଶଜଣ ପିଲା ରହିଯାଉଥିଲେ । ସେହି ପିଲାମାନେ ଓ ସେମାନଙ୍କର ଅଶିକ୍ଷିତ ଅଭିଭାବକମାନେ ମୋତେ ବେଳେବେଳେ ହଇରାଣରେ ପକାଉଥିଲେ । ପୂର୍ବର ପ୍ରଧାନ ଶିକ୍ଷକ ଗ୍ରୀଷ୍ମାବକାଶ ପରେ ଆଉ କେତେଜଣକୁ ଶ୍ରେଣୀ ପ୍ରମୋଶନ ଦେଉଥିଲେ । ଏହା ଉତ୍ତମ ପରମ୍ପରା ସୃଷ୍ଟି କରେନାହିଁ । ମୁଁ ସେପରି କଲିନାହିଁ ବୋଲି ସଂପୃକ୍ତ ପିଲା ଓ ଅଭିଭାବକମାନେ ମୋର ଶତ୍ରୁ ପାଲଟିଗଲେ । କିନ୍ତୁ ମୁଁ ଥରେ ପ୍ରମୋଶନ ଦେବାରେ ଦୃଢ଼ତା ଦେଖାଉଥିଲି । ଫେଲ ହୋଇଥିବା ପିଲାଙ୍କୁ ଉପର ଶ୍ରେଣୀର

ସାର୍ଟିଫିକେଟ ଦେଇ ବିଦାୟ କରୁନଥିଲି । ମୋ ଆଖିରେ ଧନୀ ନିର୍ଦ୍ଧନ, ଶିକ୍ଷିତ ଅଶିକ୍ଷିତ ଘରର ପିଲା ସମସ୍ତେ ସମାନ । ଯେତେ ପ୍ରଭାବଶାଳୀ ଅଭିଭାବକ ହେଲେ ମଧ୍ୟ ମୁଁ ସେମାନଙ୍କୁ ଅନୁଗ୍ରହ ଦେଖାଉ ନଥିଲି । ପାତରଅନ୍ତର ବ୍ୟବହାର କଲେ ମୁଁ ଅହି ନର୍କରେ ପଡ଼ିବି ବୋଲି ମୋର ଧାରଣା ଥିଲା । ଶିକ୍ଷକମାନଙ୍କୁ ପଢ଼ା ସମୟରେ ମୁଁ ଟିପେ ସୁଦ୍ଧା ଛାଡ଼ି ଦେଉନଥିଲି । କିନ୍ତୁ ସେମାନଙ୍କ ପ୍ରତି ଆଶାଳୀନ ବ୍ୟବହାର ପ୍ରଦର୍ଶନ କରେନାହିଁ ।

## ବିଦ୍ୟାଳୟର ସ୍ଥାନାଭାବ ଦୂର କରିବା :

ବିଦ୍ୟାଳୟ ଗୃହ ନିର୍ମାଣ ମୋତେ ସର୍ବଦା ଘାରୁଥିଲା । ସଂପୃକ୍ତ ଅଫିସରମାନଙ୍କ ପାଖକୁ ଦୌଡ଼ି ଦୌଡ଼ି ପାଦରୁ ପାଣି ମରିଛି । ଇନସ୍‌ପେକ୍ଟର, ଡି.ପି.ଆଇ., ଏମ୍.ଏଲ.ଏ. ମନ୍ତ୍ରି ଓ ଇଞ୍ଜିନୟରଙ୍କ ଉପରେ ନାନା ଉପାୟରେ ଚାପ ପକାଇଛି । ଅନ୍ୟନାମ ଦେଇ ଛାତ୍ରଛାତ୍ରୀମାନଙ୍କ ଅଭାବ ଅସୁବିଧା ବର୍ଣ୍ଣନା କରି ସମ୍ବାଦପତ୍ରରେ ପ୍ରକାଶ କରିଛି । ଶେଷରେ କୃତକାର୍ଯ୍ୟ ବି ହୋଇଛି । ସେ ଗହନ ଜାଗାରେ ଗୌରବର ସହ ଜିଣିକରି ଆସିଛି । ତେଣୁ ଆଜି ମୋର ଗର୍ବ ଓ ଗୌରବ । ଶିକ୍ଷକ ବନ୍ଧୁମାନଙ୍କୁ ଏପରି ସ୍ନେହ ବନ୍ଧନରେ ବାନ୍ଧି ଦେଇଥିଲି ଯେ ସ୍କୁଲ ଉନ୍ନତିକଳ୍ପେ ଯାହାକୁ ଯାହା କହୁଥିଲି ସେ ତାହା ପାଳନ କରୁଥିଲେ । ଏପରିକି ଶିକ୍ଷକମାନଙ୍କ ସହଯୋଗରେ ବୃହତ୍ ଆମ୍ରବୃକ୍ଷ ଛାୟାରେ, ଲାଇବ୍ରେରୀ ବାରଣ୍ଡାରେ ତିନିଗୋଟି ଶ୍ରେଣୀ ଚଳାଉଥିଲି । ପିଲାମାନଙ୍କ ଲେଖାପଢ଼ା ଉପରେ ସର୍ବଦା ସତର୍କ ଦୃଷ୍ଟି ରଖୁଥିଲି । ଅଳ୍ପ ସମୟରେ ବହୁତ କାମ କରିବାକୁ ଚେଷ୍ଟା କରୁଥିଲି । ଉତ୍ତମ ପାଠପଢ଼ା ଓ ଶିକ୍ଷାର ମାନର ଅଧଃପତନ ପାଇଁ ଶିକ୍ଷକ, ଛାତ୍ର, ଅଭିଭାବକ, ସରକାର ଓ ସରକାରୀ ପରିଦର୍ଶକ କର୍ମଚାରୀଗଣ ମୁଖ୍ୟତଃ ଦାୟୀ । ସବୁକ୍ଷେତ୍ରରେ, ସବୁ ଅଫିସରେ ଚରିତ୍ରର ଅବକ୍ଷୟ ଘଟିଲାଣି । ମୂଲ୍ୟବୋଧର ଅର୍ଥ କିଛି ନାହିଁ । ଶିକ୍ଷାକ୍ଷେତ୍ରରେ ବି ସେଇଆ । ସ୍କୁଲ ଶାସନରେ ମୁଁ ବାହାର ଲୋକଙ୍କ ଅଯାଚିତ ପ୍ରବେଶ କରେଇ ଦେଉନଥିଲି । ସ୍କୁଲ ଗୁମର ବାହାର ଲୋକ ଜାଣିବାକୁ ସୁଯୋଗ ଦେଉନଥିଲି । ତଥାପି ମେଳରୁ ଅଲକ୍ଷ୍ୟରେ ଜଣେଅଧେ ଖସିଯାଉଥିଲେ । ସେମାନଙ୍କୁ ଖାତିର କରାଯାଉ ନଥିଲା । ଶିକ୍ଷକମାନଙ୍କ ତରଫରୁ ପ୍ରଧାନଶିକ୍ଷକଙ୍କ ବିରୁଦ୍ଧରେ କିଛି ଆପତ୍ତି ଅଭିଯୋଗ ଆସିଲେ ଷ୍ଟାପ ମିଟିଙ୍ଗ ଡକାଇ ମୁହାଁମୁହିଁ ସମସ୍ତ ଫଇସଲା କରୁଥିଲି । ସେମାନେ ଖୁସି ମୁଁ ବି ଖୁସି ।

## ତତ୍କାଳୀନ ଘରୋଇ ଟିଉସନ :

ବିଦ୍ୟାଳୟର ଦୁଇଚାରିଜଣ ଶିକ୍ଷକ ଘରୋଇ ଟିଉସନ କରୁଥିଲେ । ସେମାନଙ୍କ ମଧ୍ୟରୁ ବାବୁ ନାରାୟଣଚନ୍ଦ୍ର ଧଳ ଜଣେ । ତାଙ୍କ ଘର ଅବିଭକ୍ତ କଟକ ଜିଲ୍ଲାର ବହୁ

ଅଭ୍ୟନ୍ତରରେ ତଳଘଟି ଆଡ଼େ । ସେ ଏଠାରେ ବାସସ୍ଥାନ ଖୋଜୁଥିଲେ । ସ୍କୁଲ ବିଜ୍ଞାନ ଗୃହରେ ପୂର୍ବରୁ ଥରେ ଦି'ଥର ଜିନିଷ ଚୋରି ହୋଇଯାଇଥିଲା । ଗୋଟିଏ ଟେକାରେ ଦୁଇଟି ପକ୍ଷୀ ଶିକାର କଲା ସଦୃଶ ନାରାୟଣବାବୁଙ୍କୁ ବିଜ୍ଞାନ ଗୃହର ଦାୟିତ୍ୱ ଦେଇ ତାଙ୍କ ଅଭାବ ମୋଚନ କଲି । ତାଙ୍କର ଲାଭ ହେଲା । ମୋର ବି ଲାଭ ହେଲା । ନିରାକାରପୁର ସେତେବେଳେ ମଫସଲ ଅଞ୍ଚଳ । ଖୋରଧାରୁ କୌଣସି ଗାଡ଼ି ସେଠାକୁ ଯାଉନଥିଲା । ଲୋକେ ଏତେ ଶିକ୍ଷିତ ହୋଇନାହାନ୍ତି । କ୍ଷେତ୍ରବାସୀଙ୍କ ସକାଶେ ସ୍ଥାନଟି ଧନ୍ୟ ହୋଇଛି । ପିଲାମାନଙ୍କ ପାଠପଢ଼ା ପ୍ରତି ଅଭିଭାବକମାନଙ୍କର ସେତେ ଦୃଷ୍ଟି ନଥିଲା । କାହାପାଖେ ପଇସା ଅଛି ଯେ ଟିଉସନ ପାଇଁ ଅଧିକ ପଇସା ଖର୍ଚ୍ଚ କରିବ ? ତେବେ ଅଧ୍ୟାପକ ପ୍ରଭୃତି କେତେଜଣ ପାଠ ପଢ଼ାପ୍ରତି ସଜାଗ ଥିଲେ । ବୋର୍ଡ ପରୀକ୍ଷାରେ ବିଦ୍ୟାଳୟ ଭଲ ଫଳ ଦେଖାଇବା ପାଇଁ କେତେଜଣ ଶିକ୍ଷକଙ୍କୁ ଘରୋଇ ଟିଉସନ କରିବା ପାଇଁ ମୁଁ ପ୍ରବର୍ତ୍ତାଇଲି । ତାହାଦ୍ୱାରା ଶିକ୍ଷକ, ଛାତ୍ର, ଅଭିଭାବକ ଓ ସ୍କୁଲର ଲାଭ ହେବ । ତାହାହିଁ ହେଲା । ଧଳବାବୁ କେତେଜଣ ପିଲା ପଢ଼ାଇଲେ । ମୋ ସ୍କୁଲରେ ଅଧିକ ପିଲା ପାସ୍ କରିବେ ବୋଲି ଜାଣି ମୁଁ ଖୁସି ହେଲି । ଧଳବାବୁ ଗଣିତ ଓ ବିଜ୍ଞାନରେ ଧୁରୀଣ ଥିଲେ । ତେଣୁ ତାଙ୍କ ପାଖେ ପିଲା ଘରୋଇ ଟିଉସନ ହେବାକୁ ପସନ୍ଦ କଲେ । ସେହି ବରିଷ୍ଠ ଶିକ୍ଷକ ଜଣଙ୍କ ଲୁଚିରହି ହେଡମାଷ୍ଟରଙ୍କ ନାମରେ ଗୋଟାଏ ଗୁଜବ ସୃଷ୍ଟିକଲେ ଯେ ହେଡମାଷ୍ଟର ଧଳବାବୁଙ୍କଠାରୁ ଟିଉସନ ପାଇଁ ପଇସା ପାଉଛନ୍ତି । ଏହା ତ ବଡ଼ ଗର୍ହିତ କଥା । ମୋ ସୁନାମରେ ସେ ବୋଧହୁଏ ଈର୍ଷିତ ହେଉଛନ୍ତି ।

## ହେଡମାଷ୍ଟରଙ୍କ ନାମରେ ଶିକ୍ଷକମାନଙ୍କର ଅପବାଦ :

ମିଥ୍ୟା ଅପବାଦଟିଏ ସାଙ୍ଗେସାଙ୍ଗେ ରଟିଯାଏ । ଛୋଟ ଜାଗାଟିଏ । ଅନୁମାନ କଲି ସେ ଯାଇ ଶିକ୍ଷକମାନଙ୍କୁ କହିଲେ । ମାଲୁବାବୁ ଶିକ୍ଷକ ପ୍ରତିନିଧି ଥିଲେ । ସେ କଥାଟା ମୋ କାନକୁ ଆଣିଲେ । ଏହା ତ ଅସୁନ୍ଦର କଥା । ଶିକ୍ଷକ ଭାଇମାନଙ୍କର ମୋ ପ୍ରତି କି ଧାରଣା ସୃଷ୍ଟି ହେବ ? ସେମାନଙ୍କ ଚକ୍ଷୁରେ ମୁଁ ତ ହୀନ ହୋଇଯିବି । ମନେ ମନେ ପାଞ୍ଚି ଦିନଟିଏ ଠିକ୍ କଲି । ଆମ୍ର ବୃକ୍ଷମୂଳେ ଶିକ୍ଷକମାନଙ୍କର ଏକ ସଭାର ଆୟୋଜନ କଲି । ପ୍ରଥମେ ବିଦ୍ୟାଳୟ ପରିଚାଳନା ବିଷୟ ପଡ଼ିଲା, ତପ୍ରେ ଏ ବିଷୟଟି ଉତ୍ଥାପନ କଲି । ପ୍ରଥମେ ଘଟଣାର ପୂର୍ବକଥା ବର୍ଣ୍ଣନା କଲି । କହିଲି, ''ମୋ କାନକୁ ଆସିଛି ଆପଣମାନେ ମୋତେ ହୀନକରି ଦେଇଛନ୍ତି । ମୁଁ କେଉଁଠି ଧଳବାବୁଙ୍କଠାରୁ ଟିଉସନ ଟଙ୍କାରୁ ଭାଗ ନେଉଛି । କିଏ ଦେଖିଛି, କିଏ ଟଙ୍କା ଦେଇଛି, କିଏ ଟଙ୍କା ନେଇଛି । ଆପଣମାନଙ୍କ ମଧ୍ୟରୁ

ଯାହାର ସତ୍‌ସାହସ ଅଛି ସେ ପ୍ରମାଣ କରନ୍ତୁ ।'' ଏତେ କଥା ସ୍ପଷ୍ଟଭାବେ ଉଚ୍ଚାରଣ କରିବା ଦ୍ୱାରା ଉପସ୍ଥିତ ଶିକ୍ଷକବୃନ୍ଦ ଅବାକ୍ ହୋଇଗଲେ, ହଡ଼ବଡ଼ାଇ ଗଲେ । ଏ ତା' ମୁହଁକୁ ସେ ୟା ମୁହଁକୁ ଚାହିଁ ରହିଲେ । କାହା ପାଟିରୁ ପାଞ୍ଚମିନିଟ୍ ପର୍ଯ୍ୟନ୍ତ କଥା ବାହାରିଲା ନାହିଁ । ମିଥ୍ୟା କଥାଟା ଟାଣ, ମାତ୍ର ସତ୍‌ସାହସ ଦେଖାଇଲେ ଶୀଘ୍ର ମିଳେଇଯାଏ । ଏଠାରେ ତାହାହିଁ ଘଟିଲା । ଶେଷରେ ମାଲୁବାବୁ ଶିକ୍ଷକ ପ୍ରତିନିଧି ହାତଯୋଡ଼ି କ୍ଷମା ପ୍ରାର୍ଥନା ମାଗିଲେ । ସେ କହିଲେ, ''ସାର୍, ଏ କଥାରେ ସତ୍ୟତା ଲେଶମାତ୍ର ନାହିଁ । ଆପଣ ଏହିଠାରେ ଏ କଥାର ପରିସମାପ୍ତି ଘଟାନ୍ତୁ ।'' କ୍ଷମା ଦେବା ମୋର ଗୋଟାଏ ବଡ଼ ଗୁଣ । ବିଦ୍ରୋହ ଷ୍ଟାଫ ଭିତରୁ ବାହାରେ । ତାଙ୍କ ଭିତରୁ ଜଣେ ଏହାର ସ୍ରଷ୍ଟା ହୋଇଥାଏ ।

କିଛି ଦିନ ଚାଲିଲା । ପୁଣି ଏକ ଗୁଞ୍ଜରଣ ଶୁଣିଲି, ''ହେଡମାଷ୍ଟର ବ୍ରାହ୍ମଣ ଶିକ୍ଷକମାନଙ୍କୁ ଭଲ ପାଉଛନ୍ତି ।'' ଏହା କିପରି କଥା ? ଏପରି ହେଲେ କ'ଣ ଅନୁଷ୍ଠାନ ଚାଲିବ ? ହେଡମାଷ୍ଟର ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଶିକ୍ଷକ ଓ ଛାତ୍ରମାନଙ୍କୁ ସ୍ନେହ କରିବେ । ତାଙ୍କଠାରେ ଜାତିଭେଦର ଚିହ୍ନବର୍ଣ୍ଣ ରହିବା ଉଚିତ ନୁହେଁ । ବେଳ ଉଣ୍ଡି ଷ୍ଟାଫ ମିଟିଙ୍ଗ ଡକାଇଲି । ସର୍ବ ସମକ୍ଷରେ ଦମ୍ଭର ସହିତ କହିଲି–'' ଭାଇମାନେ ଦେଖନ୍ତୁ, ଯେଉଁମାନେ କର୍ମତତ୍ପର, କର୍ତ୍ତବ୍ୟପରାୟଣ, ପିଲାମାନଙ୍କର ଅଧିକ ଯତ୍ନ ନିଅନ୍ତି ସେମାନଙ୍କୁ ଯେକୌଣସି ହେଡମାଷ୍ଟର ଭଲ ପାଇବା ସ୍ୱାଭାବିକ । ପୁନଃ ଆପଣମାନଙ୍କ ଭିତରୁ ଯେଉଁମାନେ ମୋ ଆଦେଶକୁ ସଙ୍ଗେ ସଙ୍ଗେ ପାଳନ କରିଥାଆନ୍ତି ସେମାନଙ୍କ ପ୍ରତି ସହାନୁଭୂତିଶୀଳ ହେବା କେବଳ ମୋର ଲକ୍ଷଣ ନୁହେଁ ଏହା ସଚାରଚର ଦୃଷ୍ଟିଗୋଚର ହୁଏ । ତେଣୁ ଏଥିରେ ଅଭିଯୋଗ କରିବାର କ'ଣ କାରଣ ଅଛି ? ସମସ୍ତେ ଚୁପ୍, ସେତିକିରେ ସଭାଶେଷ । ଏହିପରି ବହୁ ଅଭିଯୋଗ ନିର୍ଭୟରେ ତୁଟାଇଛି । ସବୁ ସନ୍ଦେହ ଦୂର କରିପାରିଛି ।

## ସ୍କୁଲର ହିତ ପାଇଁ କାର୍ଯ୍ୟ :

ସ୍କୁଲର ହିତ ପାଇଁ କେତେ କାହା ସଙ୍ଗେ ଲଢ଼େଇ କରିଛି । ସମସ୍ତଙ୍କ ସଙ୍ଗେ ମିଶିଚି । ପୁଣି କାହା ସଙ୍ଗେ ମିଶିନାହିଁ । ହାତେମାପି ଚାଖଣ୍ଡେ ଚାଲିବା ମୋର ଲକ୍ଷଣ । ମୁଁ ଦୁଃସାହସିକ ନୁହେଁ । ଗୋଟିଏ ଜାଗାରେ ମୁଣ୍ଡ ହୋଇ ଏତେ ଦିନ ରହିବା ସମ୍ଭବ ନୁହେଁ । ଗାଁ ଲୋକମାନଙ୍କ ସହିତ ବେଶି ମିଳାମିଶା କଲେ ଅସୁବିଧା ହୋଇପାରେ । ତେଣୁ ଏତେ ଦୀର୍ଘ ସମୟ ଭିତରେ କାହାଠାରୁ ଚା' କପେ ଖାଇନାହିଁ । ସମସ୍ତେ ମୋର ଆପଣାର

ପୁଣି କେହି ଆପଣାର ନୁହନ୍ତି । ହେଡ୍‌ମାଷ୍ଟର ପଦମର୍ଯ୍ୟାଦା ରକ୍ଷା କରିବାରେ ସଦା ତତ୍ପର । ଗାଁ ଲୋକମାନଙ୍କୁ ବୁଝାଇବା ମଧ୍ୟ ମୋର ଏକ କାମ । ମୁଁ ଏଠାରେ କିଛି ଆଖିଦୃଶିଆ କାର୍ଯ୍ୟକରି ଜନସାଧାରଣଙ୍କ ମନରେ ଏ ପର୍ଯ୍ୟନ୍ତ ରହିଛି । ସ୍ୱାଭିମାନୀ ଓଡ଼ିଆ ଜାତୀୟତାର ଜନକ ଶ୍ରେଷ୍ଠ ବକ୍ତା, ଧୀଶକ୍ତିସମ୍ପନ୍ନ ଜାତୀୟ ଗୌରବ ଶ୍ରୀ ମଧୁସୂଦନ ଦାସଙ୍କ ଉକ୍ତି ମନରେ ସର୍ବଦା ଧାରଣ କରିଥାଏ—

''ଆଲୋ ସଖି ଆପଣା ମହତ ଆପେ ରଖି ।''

ସମୟେ ସମୟେ ନିହାତି ଅବାଧ୍ୟ ପିଲାର ଦୁଷ୍ଟାମି ମୋ ନିକଟକୁ ଆସେ । ସେ ପିଲାକୁ ବାଧ୍ୟ ସାର୍ଟିଫିକେଟ ଦେଇଦେଲେ ସେପରି ଛାତ୍ରର କିଛି ପରିବର୍ତ୍ତନ ହୁଏ ନାହିଁ । ବରଂ ସେ ପ୍ରତିଶୋଧପରାୟଣ ହୋଇ ସଂପୃକ୍ତ ଶିକ୍ଷକଙ୍କର କ୍ଷତି କରିବାକୁ ପଛାଏ ନାହିଁ । ତାକୁ ଏଠାରେ ଉପଯୁକ୍ତ ଦଣ୍ଡ ପ୍ରଦାନ କରି ତାର ପିତାଙ୍କୁ ଡକାଇ ପଠାଇ ତାକୁ ସଂଶୋଧନ କରାଯାଇପାରିବ । ଏହିପରି ନୀତି ଅବଲମ୍ବନ କରି ଗୋଟିଏ ହିନ୍ଦୁ ଓ ଗୋଟିଏ ମୁସଲମାନ ଛାତ୍ରର ଚରିତ୍ର ସଂଶୋଧନ କରାଯାଇପାରିଛି । ଆମର କର୍ତ୍ତବ୍ୟ ହେଉଛି ପିଲାମାନଙ୍କୁ ଠିକ୍ ବାଟରେ ପରିଚାଳନା କରିବା । ଏପରି ଉଦାହରଣ ବହୁତ ଦେଖାଯାଇଛି । ବିଦ୍ୟାଳୟର ସୁଛାତ୍ରମାନଙ୍କ ମଧ୍ୟରୁ କେତେକ ଭବିଷ୍ୟତରେ ବିପଥଗାମୀ ହେବାର ଶୁଣାଯାଏ । ହେଲେହେଁ ଛାତ୍ରଛାତ୍ରୀମାନଙ୍କୁ ସୁମଣିଷ କରିବା ପାଇଁ ଶିକ୍ଷକର ବହୁ ଦାୟିତ୍ୱ ଥିଲେ ମଧ୍ୟ ବହୁ କାରଣରୁ ସେମାନେ ଅମଣିଷ ହୋଇଯାଆନ୍ତି । କାରଣ ବିଦ୍ୟାଳୟରେ ପିଲା ମାତ୍ର ଛଅ ଘଣ୍ଟା ରହେ ଏବଂ ଅବଶିଷ୍ଟ ଅଠର ଘଣ୍ଟା ପିତାମାତା, ବନ୍ଧୁ ପରିଜନ, ପଡ଼ୋଶୀମାନଙ୍କ ସହିତ କଟାଇଥାଏ । ତେଣୁ ଶିକ୍ଷକମାନଙ୍କ ଅପେକ୍ଷା ପିତାମାତାଙ୍କ ଦାୟିତ୍ୱବୋଧ ଅଧିକ ମୂଲ୍ୟବାନ ଅଟେ । ସେମାନେ ତାଙ୍କ ଦାୟିତ୍ୱ ଉତ୍ତମ ରୂପେ ତୁଲାଇବା ଉଚିତ ମନେହୁଏ ।

## ସ୍କୁଲ୍ ମାଗାଜିନ୍‌ର ଆତ୍ମପ୍ରକାଶ :

୧୯୭୦ ମସିହା ବେଳକୁ ବିଦ୍ୟାଳୟର ବୟସ କୋଡ଼ିଏ ବର୍ଷ ଅତିକ୍ରାନ୍ତ କରିଥିଲେ ମଧ୍ୟ ସ୍କୁଲ ମାଗାଜିନ୍‌ଟିଏ ପ୍ରକାଶ ପାଇପାରି ନଥିଲା । ମାଗାଜିନ୍‌ଟିଏ ସ୍କୁଲର ସାଂସ୍କୃତିକ ଜୀବନର ଦର୍ପଣ ସଦୃଶ । ଏହି ପୁସ୍ତକରେ ଶିକ୍ଷକ ଓ ଛାତ୍ରଛାତ୍ରୀଙ୍କର ଚିନ୍ତାଧାରା ପ୍ରକାଶିତ ହୋଇଥାଏ । ଖୋର୍ଦ୍ଧା ହାଇସ୍କୁଲରେ ମାଗାଜିନ 'ଅବକାଶ'ର ମୁଁ ସମ୍ପାଦନା ମଣ୍ଡଳୀରେ ଥିଲି ଏବଂ ପରେ ପରେ ସମ୍ପାଦକ ବି ହୋଇଥିଲି । ତେଣୁ ନିରାକାରପୁର ହାଇସ୍କୁଲରେ ଏକ ବାର୍ଷିକ ପତ୍ରିକାର ପ୍ରକାଶ କରିବାର ଆୟୋଜନ କଲି । ଏଥିପାଇଁ କେତେଗୁଡ଼ିଏ

ନୀତି ନିୟମ ଅଛି । ପତ୍ରିକାର ନାମ କ'ଣ ରହିବ କେତେଗୁଡ଼ିଏ ନାମ ସ୍ଥିର କରି କେନ୍ଦ୍ର ସରକାର ପତ୍ରିକା ବିଭାଗକୁ ପତ୍ର ପ୍ରେରଣ କଲି । ଦୀର୍ଘ ଅଠରମାସ ପରେ ପତ୍ରିକାଟିର ନାମ କୌମୁଦୀ ଦିଆଯାଇ ଅନୁମତି ପତ୍ର ଆସିଲା । ତତ୍କାଳୀନ ପୁରୀ ଜିଲ୍ଲାପାଳ ମହୋଦୟ ମୋ ପାଖକୁ ପତ୍ରଟି ପ୍ରେରଣ କଲେ । ଜିଲ୍ଲାପାଳ ଅଫିସରେ କାର୍ଯ୍ୟରତ ତ୍ରିଲୋଚନପୁରର ବାବୁ ନବକିଶୋର ପଟ୍ଟନାୟକ (ମୋର ପୁରାତନ ଛାତ୍ର) ଙ୍କ ଚେଷ୍ଟାରେ ଅନୁମତି ମିଳିଲା ଏବଂ ବିଦ୍ୟାଳୟର ସୁଯୋଗ୍ୟ ଶିକ୍ଷକ ବାବୁ ଉଲ୍ଲାସ ଚନ୍ଦ୍ର ସାମନ୍ତରାୟ, ଏମ.ଏ.ବି.ଇ.ଡି. ସମ୍ପାଦନା ଦାୟିତ୍ୱରେ ରହି ଛଅ ମାସ ମଧ୍ୟରେ କୌମୁଦୀ ପ୍ରକାଶ କଲେ ।

୧୯୭୨ ମସିହାରେ କୌମୁଦୀର ପ୍ରଥମ ସଂଖ୍ୟା ଭିନ୍ନ ଭିନ୍ନ ରଙ୍ଗ ଓ ଶୈଳୀ ବହନ କରି ପ୍ରକାଶିତ ହେଲା । ବିଦ୍ୟାଳୟର ସାଂସ୍କୃତିକ ଇତିହାସରେ ଏହା ନବଯୁଗର ସୂତ୍ରପାତ କଲା । ଛାତ୍ରଛାତ୍ରୀ ଓ ଶିକ୍ଷକବୃନ୍ଦ ଆନନ୍ଦ ଉଲ୍ଲାସରେ ମାତି ଉଠିଲେ । ନିକଟବର୍ତ୍ତୀ ଶିକ୍ଷାନୁଷ୍ଠାନକୁ ଗୋଟିଏ ଗୋଟିଏ କପି ପ୍ରଦାନ କରାଗଲା ।

## ଉଦ୍ୟାନ ପାଣ୍ଠି ସୃଷ୍ଟି :

ମୁଁ ଉଦ୍ୟାନପ୍ରିୟ ଥିଲି । ପୁନଃ ପରିବେଶକୁ ସୁନ୍ଦର ସରସ କରିବାପାଇଁ ବୃକ୍ଷରୋପଣ ଏକାନ୍ତ ଆବଶ୍ୟକ । ବୃକ୍ଷ ମନୁଷ୍ୟର ପରମ ବନ୍ଧୁ । ତେଣୁ ବିଦ୍ୟାଳୟ ହତା ମଧ୍ୟରେ କେତେଗୁଡ଼ିଏ ନାରୀକେଳ ବୃକ୍ଷରୋପଣ କରିବାର ସ୍ପୃହା ଜାଗ୍ରତ ହେଲା । ତେବେ ସବୁ କାମରେ ପଇସା ଲୋଡ଼ା । ସେ ସମୟରେ ବୃକ୍ଷରୋପଣ ନିମନ୍ତେ ସରକାରଙ୍କ ତରଫରୁ ବ୍ଲକ ସ୍ତରରେ ବୃକ୍ଷ ଯୋଗାଇ ଦିଆଯାଉନଥିଲା । ତେଣୁ ଗୋଟିଏ ପାଣ୍ଠି ସୃଷ୍ଟି କରିବା ପାଇଁ ମନସ୍ଥ କଲି । ପ୍ରତ୍ୟେକ ପିଲାଠାରୁ ମାସିକ ଦଶ ପଇସା ମାତ୍ର ଆଦାୟ କରିବା ପାଇଁ ଶିକ୍ଷକମାନଙ୍କ ସଭାରେ ଠିକ୍ କଲି । ଏପରି ହେଲେ ଗୋଟିଏ ପିଲାଠାରୁ ବର୍ଷକୁ ଏକ ଟଙ୍କା କୋଡ଼ିଏ ପଇସା ଆଦାୟ କରାଯିବ । ଚାରିଶହ ପିଲାଙ୍କଠାରୁ ପ୍ରାୟ ପାଞ୍ଚଶହ ଟଙ୍କା ବର୍ଷକୁ ଆଦାୟ କରାଯିବ । ନାରୀକେଳ ବୃକ୍ଷରୋପଣ ଓ ତାର ସୁରକ୍ଷା ସୁରୁଖୁରୁରେ ହୋଇପାରିବ । ପ୍ରତ୍ୟେକ ଛାତ୍ର ଓ ଛାତ୍ରୀଙ୍କଠାରୁ ଷାଣ୍ମାସିକ ପଇସା ଆଦାୟ କରିବାକୁ ନୋଟିସ୍ ଦେଲି ଏବଂ ଆଦାୟ ବି କଲି । କିନ୍ତୁ କେତେକ ଅଭିଭାବକ ସେହି ଶିକ୍ଷକଙ୍କ ପ୍ରରୋଚନାରେ ମୋର ଏ କାର୍ଯ୍ୟର ନିନ୍ଦାକରି ଉପରକୁ ଅଭିଯୋଗପତ୍ର ଲେଖିଲେ । ଇନିସପେକ୍ଟର ଥାଆନ୍ତି ଶିବରାମ ପଟ୍ଟନାୟକ । ସେ ଆଦେଶ ଦେଲେ, "ପରିଚାଳନା ସମିତି ଦ୍ୱାରା ମଞ୍ଜୁର କରାଇ ମୋ ପାଖକୁ ପଠାଅ ।" ମୁଁ ତାହାହିଁ କଲି ।

ତେଣିକି କୌଣସି ସମାଲୋଚନା ଶୁଣାଗଲା ନାହିଁ । ୧୯୭୪ ମସିହାଠାରୁ ବୃକ୍ଷରୋପଣ କାର୍ଯ୍ୟ ହାତକୁ ନିଆଗଲା । ଶିବରାମବାବୁ ସଚ୍ଚୋଟ ଓ କାର୍ଯ୍ୟଦକ୍ଷ । ତାଙ୍କ ପାଖରେ ଅଫିସ କାମ ବାକି ପଡ଼େ ନାହିଁ । ମୋ ଉପରେ ତାଙ୍କର ବିଶ୍ୱାସ ଥାଏ ।

## ବିଦ୍ୟାଳୟରେ ପୁରସ୍କାର ବିତରଣ ଉତ୍ସବ :

ପ୍ରତି ଦୁଇବର୍ଷରେ ବିଦ୍ୟାଳୟରେ ଥରେ ପୁରସ୍କାର ବିତରଣ ଉତ୍ସବ ଅନୁଷ୍ଠିତ ହୁଏ । ବିଦ୍ୟାଳୟର ପରମ୍ପରା ଅନୁଯାୟୀ ଦୁଇଦିନ ନାଟକୋତ୍ସବ ପାଳିତ ହୁଏ । ତା' ସହିତ କେବଳ ଝିଅ ପିଲାମାନଙ୍କ ଦ୍ୱାରା ଗୀତିନାଟ୍ୟ ପରିବେଷଣ କରାଯାଏ । ଗଣକବି ବୈଷ୍ଣବ ପାଣିଙ୍କ ରଚିତ ଓ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଦ୍ୱାରା ସଂକ୍ଷିପ୍ତ ଗୀତିନାଟ୍ୟ ଅଭିନୀତ ହୁଏ । ଝିଅପିଲାମାନଙ୍କ ଅଭିନୟ ଯୋଗୁଁ ଗୀତିନାଟ୍ୟ ଦେଖିବାକୁ ଦର୍ଶକମାନେ ଆକର୍ଷିତ ହୁଅନ୍ତି । ଝିଅପିଲାମାନଙ୍କର ସେ ସମୟରେ ଭଲମନ୍ଦ ବୁଝିବା ପାଇଁ ଦୁଇଜଣ ନିଷ୍କଳଙ୍କ ଚରିତ୍ରର ଶିକ୍ଷକଙ୍କୁ ନିୟୋଜିତ କରିଥାଏ । ଆରମ୍ଭରୁ ପ୍ରାୟ ଏକ ମାସ ସମୟ ଲାଗେ । ଦୈନନ୍ଦିନ ପିରିଅଡ଼ଗୁଡ଼ିକ ଛୋଟ କରାଯାଇ ତିନିଟାରେ ଅଧ୍ୟାପନା କାର୍ଯ୍ୟ ଶେଷ କରାଯାଏ ଏବଂ ଅପରାହ୍ଣ ପାଞ୍ଚ ଘଟିକା ପର୍ଯ୍ୟନ୍ତ କଳାପ୍ରେମୀ ଛାତ୍ର ଓ ଶିକ୍ଷକମାନେ ନାଟକ ଅଭ୍ୟାସ କରନ୍ତି । ନାଟକୋତ୍ସବକୁ ସଫଳ କରିବା ପାଇଁ ବାଲୁଗାଁ, ବାଙ୍କପୁର, ମନ୍ଦାରବସ୍ତ ପ୍ରଭୃତି ବ୍ୟବସାୟୀ କଳାନୁଷ୍ଠାନର ସାହାଯ୍ୟ ନିଆଯାଏ । ନୃତ୍ୟଗୁରୁ ବାବୁ ରାଜକିଶୋର ପଣ୍ଡା ଶିଖାଇବା ଦାୟିତ୍ୱରେ ରହନ୍ତି । ରାମେଶ୍ୱରର ସିଂହବାବୁଙ୍କ ସହଯୋଗ ପ୍ରଶଂସନୀୟ । ଶିକ୍ଷକ ଓ ଛାତ୍ରଛାତ୍ରୀମାନେ ଉତ୍ସବକୁ ସାଫଲ୍ୟମଣ୍ଡିତ କରିବାକୁ ତତ୍ପର ହୋଇଉଠନ୍ତି । ପୁରସ୍କାର ବିତରଣ ଉତ୍ସବରେ ପାଠପଢ଼ାରେ କୃତିତ୍ୱ ହାସଲ କରିଥିବା କୃତୀ ଛାତ୍ରଛାତ୍ରୀମାନଙ୍କୁ ଏବଂ ସେବାକାର୍ଯ୍ୟ, କ୍ରୀଡ଼ା, ଉଦ୍ୟାନ କର୍ମ, ସାଧାରଣଜ୍ଞାନ ପ୍ରଭୃତି ବିଷୟରେ ପୁରସ୍କୃତ କରାଯାଏ । ପୁଅଝିଅ ବାହାଘର ଯେପରି ପରିବାର ଓ ପ୍ରିୟଜନମାନଙ୍କୁ ଆନନ୍ଦ ପ୍ରଦାନ କରେ ଏହି ପୁରସ୍କାର ବିତରଣ ତଥା ନାଟକୋତ୍ସବ ବିଦ୍ୟାଳୟର ଶିକ୍ଷକବୃନ୍ଦ, ତାଙ୍କର ପରିବାର ଓ ସ୍ଥାନୀୟ ଗ୍ରାମବାସୀମାନଙ୍କୁ ଏବଂ ନିରାକାରପୁରସ୍ଥ ଭିନ୍ନଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କୁ ସେହିପରି ଆନନ୍ଦ ପ୍ରଦାନ କରିଥାଏ । ଜନସାଧାରଣ ଏହି ବର୍ଣ୍ଣାଢ଼୍ୟ ଉତ୍ସବକୁ ବେଶ୍ ଉପଭୋଗ କରନ୍ତି । ନିମନ୍ତ୍ରିତ ଓ ଅନିମନ୍ତ୍ରିତ ଭଦ୍ରବ୍ୟକ୍ତିମାନେ ଏଥିରୁ କେତେ ଆନନ୍ଦ ପାଆନ୍ତି ତାହା ବର୍ଣ୍ଣନା କରିହେବ ନାହିଁ । ଏ ଅଞ୍ଚଳରେ ଏ ଉତ୍ସବଟି ଅନନ୍ୟସାଧାରଣ । ଏପରିକି ଏ ଅଞ୍ଚଳର ପନ୍ଦର କୋଡ଼ିଏ

ଖଣ୍ଡି ମୌଜାର ଭଦ୍ରବ୍ୟକ୍ତି ଓ ଭଦ୍ରମହିଳାଗଣ ଏହି ଉତ୍ସବ ଉପଭୋଗ କରିବା ପାଇଁ ବଳଦ ଛପରା ଗାଡ଼ି, ସାଇକେଲ, ସ୍କୁଟର, ମଟରସାଇକେଲ ଏପରିକି କାର୍‌ରେ ଏଠାକୁ ଆସିଥାଆନ୍ତି । ମୋର ବାରବର୍ଷ ଚାକିରି କାଳରେ ଏହି ଉତ୍ସବ ଛଅଥର ପାଳିତ ହୋଇଛି । ଟିକେଟ କିଣି ଭିତରକୁ ପ୍ରବେଶ କରିବାକୁ କି ଉତ୍କଣ୍ଠା ? ଟିକଟ କରାଯାଉ ନଥିଲେ ଜନସମୁଦ୍ରକୁ ସମ୍ଭାଳି ହୁଅନ୍ତା ନାହିଁ । ଉତ୍ସବଟି ଏକ ଠାକୁର ମେଲଣ ପରି ଅନୁମିତ ହୁଏ । ଶିକ୍ଷକମାନଙ୍କର ବନ୍ଧୁବାନ୍ଧବ କାହିଁକି ଅନ୍ୟ ଭଦ୍ର ପରିବାରର ପ୍ରିୟଜନମାନେ ଆସି କଳାକାରମାନଙ୍କୁ ଉତ୍ସାହିତ କରନ୍ତି । ଏହାର ଦାୟିତ୍ୱ ଆମ ଶିକ୍ଷକମାନଙ୍କ ଭିତରେ ବଣ୍ଟାଯାଉଥାଏ । ସର୍ବଶ୍ରୀ ନାରାୟଣ ମହାପାତ୍ର, ନାରାୟଣ ଧଳ, ହରିହର ମିଶ୍ର, କୃଷ୍ଣଚନ୍ଦ୍ର ବଳୀୟାରସିଂହ, ପ୍ରମୋଦ ପଣ୍ଡା, ଉଲ୍ଲାସ ଚନ୍ଦ୍ର ସାମନ୍ତରାୟ, ଚକ୍ରଧର ମିଶ୍ର, ସତ୍ୟବାଦୀ ରଥ ପ୍ରଭୃତିଙ୍କ ଉପରେ ସମସ୍ତ ଦାୟିତ୍ୱ ଅର୍ପଣ କରାଯାଇଥାଏ । ଏମାନଙ୍କ ଭିତରୁ ପାଞ୍ଚ ଜଣ ନାଟକ ପ୍ରଦର୍ଶନରେ ଅଂଶଗ୍ରହଣ କରୁଥିଲେ । ନାରୀ ଚରିତ୍ରରେ ପୁଅମାନେ ବାହାରୁଥିଲେ । ନାଟକୋତ୍ସବ ଉଦ୍‌ଘାଟନ କରିବା ପାଇଁ ନିରାକାରପୁରର ଜଣେ ଧନୀ, ମାନୀ ବ୍ୟକ୍ତି ଶ୍ରୀ ଭାଗୀରଥ ମହାପାତ୍ର ନିମନ୍ତ୍ରିତ ହୋଇଥିଲେ ଏବଂ ଆଉଥରେ ବିଦ୍ୟାଳୟ ପ୍ରତିଷ୍ଠାତାଙ୍କ ପୁତ୍ର ଶ୍ରୀ ଦିଗମ୍ବର ରାଉତରାୟ ଆଗମନ କରିଥିଲେ । ପୁରସ୍କାର ବିତରଣ ଉତ୍ସବରେ ମୁଖ୍ୟତଃ ମନ୍ତ୍ରୀ, ଡି.ପି.ଆଇ., ଡି.ଡି.ପି.ଆଇ, କଲେଜ ଅଧ୍ୟକ୍ଷ ପ୍ରଭୃତି ପୌରୋହିତ୍ୟ କରୁଥିଲେ । ପୁରସ୍କାର ବିତରଣ ଉତ୍ସବ ଶେଷ ହେବାପରେ ରାତ୍ରିରେ ବାଳକ ପିଲାଙ୍କ ଦ୍ୱାରା ନାଟକୋତ୍ସବ ଓ ବାଳିକା ପିଲାମାନଙ୍କ ଦ୍ୱାରା ଗୀତିନାଟ୍ୟ ପରିବେଷଣ କରାଯାଉଥିଲା । ଏହି ଉତ୍ସବ ଦୁଇ ଦିନ ଧରି ଅନୁଷ୍ଠିତ ହେଉଥିଲା । ଏପରି ବର୍ଣ୍ଣାଢ଼୍ୟ ଉତ୍ସବ ଅନ୍ୟ କେଉଁ ସ୍କୁଲରେ ଏପରିକି ନିରାକାରପୁର କଲେଜରେ ମଧ୍ୟ ପାଳନ କରାଯାଇ ପାରେ ନାହିଁ । ଉତ୍ସବ ସଫଳ ହେବାର ଏକମାତ୍ର କାରଣ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କର ଅକୁଣ୍ଠ ସହଯୋଗ । ଏବେ ମଧ୍ୟ ସେ ସ୍ଥାନରୁ ପ୍ରତ୍ୟାଗମନର ଦୁଇ ଦଶନ୍ଧିପରେ ସେହି ବର୍ଣ୍ଣାଢ଼୍ୟ ଉତ୍ସବର ସ୍ମୃତି ମନେପକାଇ ମୁଁ ଢେର୍ ଆନନ୍ଦ ଅନୁଭବ କରୁଛି । ମୋ ଜୀବନରେ ଆଉ ସେ ଦିନ ଆସିବ ନାହିଁ ।

## ଟିକେଟ ବିକ୍ରୟ ଧନ :

ଟିକେଟ ବିକ୍ରୟରୁ ଯେଉଁ ଧନ ମିଳୁଥିଲା ତାର ଉପଯୁକ୍ତ ବିନିଯୋଗ କରାଯାଇ ପାରିଛି । ଗୋରୁଗାଈଙ୍କର ହତା ମଧ୍ୟରେ ଅବାଧ ପ୍ରବେଶ ଓ ପଡ଼ୋଶୀ ଲୋକଙ୍କର ମଳମୂତ୍ର

ତ୍ୟାଗ ବନ୍ଦକରିବା ପାଇଁ ହତା ମଧ୍ୟରେ ଏକ ସୁଦୃଢ଼ ପ୍ରାଚୀର ନିର୍ମାଣ କରାଇଲି । ସେଠାରେ ଏକ ପ୍ରେକ୍ଷାଳୟ ନିର୍ମାଣ କରାଯାଇପାରିଛି ଏବଂ ସ୍କୁଲ ଓ ଶିକ୍ଷକମାନଙ୍କ ପାଇଁ ଏକ ଶୌଚାଳୟ ନିର୍ମାଣ କରାଯାଇଛି ।

ସେଠାର ଲୋକ ଏପରି ମଧୁର ସ୍ମୃତିକୁ ଭୁଲି ପାରୁନାହାଁନ୍ତି । ନିରାକାରପୁରରେ ନିଜ ଜୀବନ ସଂଘର୍ଷପୂର୍ଣ୍ଣ ଥିଲେ ସୁଦ୍ଧା ଆନନ୍ଦପ୍ରଦାୟକ ଥିଲା । ମୋର ପ୍ରାଣପ୍ରିୟା ଧର୍ମପତ୍ନୀ ମୋର ପ୍ରଧାନ ପରାମର୍ଶଦାତା ଥିଲେ ।

## ଜୀବନରେ ପରିବର୍ତ୍ତନ :

ପ୍ରବାଦ ଅଛି –

''ଯାଚିଲେ ନଖା'ନ୍ତି ସର ଲବଣି,

ମାଗି ଖାଉଥାନ୍ତି ତୋରାଣି ପାଣି ।''

ଗାଁ ଗହଳିରେ ଗୋଟିଏ ଢଗ ପ୍ରଚଳିତ''ଯାଚିଲା ଜିନିଷ ଛାଡ଼ିବ ନାହିଁ ।''୧୯୬୨-୬୩ ମସିହାରେ ପ୍ରଧାନଶିକ୍ଷକ ପଦ ଗ୍ରହଣ କରିବା ପାଇଁ ନାନାଆଡୁ ବିଶେଷତଃ ନୟାଗଡ଼ ଅଞ୍ଚଳରୁ ଓ କଟକ ଜିଲ୍ଲାର ସୁଦୂର ଗାଁରୁ ସମ୍ବାଦ ଆସି ପହଞ୍ଚିଲା, ମାତ୍ର ଏତେ ବଡ଼ ଦାୟିତ୍ୱ ବହନ କରିବାକୁ ପ୍ରାସଙ୍ଗିକତା କିଛି ଦେଖିଲି ନାହିଁ । ୧୯୬୬-୬୭ ମସିହାରେ କଳାହାଣ୍ଡିର ତରଭା ହାଇସ୍କୁଲରୁ ପ୍ରଧାନଶିକ୍ଷକ ହୋଇ ଯୋଗଦେବା ପାଇଁ ପୁରୀ ସର୍କଲ ଇନିସପେକ୍ଟର ବାବୁ ଜଗନ୍ନାଥ ହରିଚନ୍ଦନ, ଏମ୍.ଏ. (ଏଡ଼ିନ୍‌ବରୋ, ଲଣ୍ଡନ), ମୋତେ ପ୍ରବର୍ତ୍ତାଇଥିଲେ ମାତ୍ର ସେତେବେଳେ ନଗଣ୍ୟ ମନେକରି ଦୂରଦୁରାନ୍ତରକୁ ଯିବାପାଇଁ ସାହସ କଲି ନାହିଁ । ପରବର୍ତ୍ତୀ ସମୟରେ ସେହି ସାମାନ୍ୟ ପଦ ଲାଭକରିବା ପାଇଁ ମୋର ହଟହଟା କହିଲେ ନସରେ । ସମୟ ବଡ଼ ବଳବାନ୍, ଏବେ ଆତ୍ମସମ୍ମାନ ବଜାୟ ରଖିବା ସମୟ ଉପସ୍ଥିତ ହେଲା । ତେଣୁ ନପାଇବା ହେତୁ ମରଣାନ୍ତକ କଷ୍ଟ ହେଲା । ଯେତେବେଳେ ରାଜ୍ୟସରକାର ସଂସ୍କୃତ ପଣ୍ଡିତ ପ୍ରତିହାରୀ ବାବୁଙ୍କ ବଦଳି ଆଦେଶରେ କୋର୍ଟରେ ହାରିଗଲେ କ୍ରୋଧପରବଶ ହୋଇ ୧୪୨ଟି ବଛାବଛା ଘରୋଇ ହାଇସ୍କୁଲକୁ ବାଧହୋଇ ହାତକୁ ନେଇଗଲେ । ସେତେବେଳେ ଆମ ଶିକ୍ଷକ ଗୋଷ୍ଠୀକୁ ସନ୍ତୁଷ୍ଟ କରିବା ପାଇଁ ପ୍ରତିଶ୍ରୁତି ଦେଲେ । କିନ୍ତୁ ଚାକିରି ସର୍ତ୍ତାବଳୀ ଘୋଷଣା କଲେ ନାହିଁ । ହୁଙ୍କାପିଟା ଶାସନ ଚାଲିବାପରି ମନେହେଲା । କେତେକ ଯୁବକ ଶିକ୍ଷକ ଏହାକୁ ସ୍ୱାଗତ କଲେ । ବୃଦ୍ଧ ପ୍ରଧାନ ଶିକ୍ଷକଙ୍କ ପ୍ରଥମ ସହକାରୀଙ୍କୁ ପ୍ରଧାନ ଶିକ୍ଷକ ପଦ ନିଶ୍ଚୟ

ଦିଆଯିବ ବୋଲି ଦୃଢ଼ ପ୍ରତିଶ୍ରୁତି ଦେଲେ । ତେଣୁ ପ୍ରଧାନ ଶିକ୍ଷକ ପଦ ଲାଭ କରିବା ମୋର ଦାବି ଥିଲା । ସେତେବେଳକୁ ବି.ଇ.ଡି. ପୋଷ୍ଟରେ ମୁଁ ଊଣେଇଶି ବର୍ଷ ରହିସାରିଲିଣି । ସେତେବେଳେ ସରକାର ଚାହିଁଥିଲେ ଆମ୍ଭମାନଙ୍କୁ ସରକାରୀ ଶିକ୍ଷକ ପଦରେ ରଖିପାରିଥାନ୍ତେ । ମାତ୍ର ପ୍ରଥମେ ପ୍ରତିଶ୍ରୁତି ପାଳନ ନକଲେ ଅସନ୍ତୋଷ ଆନ୍ଦୋଳନର ରୂପ ନେଇପାରେ, ଏଣୁ ମୋତେ ସେଠାରେ ପ୍ରଧାନଶିକ୍ଷକ ଦାୟିତ୍ୱରେ ରଖିବା ପାଇଁ ବାଧ ହୋଇଥିଲେ । ଦିବ୍ୟସିଂହବାବୁ ତେଷ୍ଠରି ବର୍ଷ ପର୍ଯ୍ୟନ୍ତ ନରହି ଅନ୍ତତଃ ଛଅ ମାସ ପୂର୍ବରୁ ବିଦ୍ୟାଳୟ ଛାଡ଼ି ମୋତେ ପ୍ରଧାନ ଶିକ୍ଷକ ପଦରେ ଅଧିଷ୍ଠିତ କରାଇପାରିଥିଲେ ତାଙ୍କର ମହନୀୟତା ବଢ଼ିବା ସଙ୍ଗେସଙ୍ଗେ ମୋର ବି ଉପକାର ସାଧିତ ହୋଇଥାନ୍ତା । ୧୯୬୭ ମସିହାରୁ ଶୁଣାଗଲା ଦିବ୍ୟସିଂହବାବୁ ଆଜି ଛାଡୁଛନ୍ତି କାଲି ଛାଡୁଛନ୍ତି ମାତ୍ର ସେ ଲୋଭ ସମ୍ବରଣ କରିପାରିଲେ ନାହିଁ । ଏପରିକି ସରକାରୀ ହେବାର ଚାରିମାସ ପର୍ଯ୍ୟନ୍ତ ଓଠ କାମୁଡ଼ି ପଡ଼ି ରହିଲେ ।

ମୁଁ ପ୍ରଧାନଶିକ୍ଷକ ପଦରେ ତନିଥର ରହି ଗୁରୁଦାୟିତ୍ୱ ତୁଲାଇଲି ମାତ୍ର କେତେ ଗାଳି କେତେ ଅପମାନ ସହିଲି । ସବୁ ପାପତକ ମୁଣ୍ଡାଇଲି । କର୍ମଠ ହେବାରୁ ଶିକ୍ଷକମାନଙ୍କ ଭିତରେ ବହୁ ଶତ୍ରୁ ବାହାରି ପଡ଼ିଲେ । ସର୍ବଶେଷରେ ସେହି ଅନିଶ୍ଚିତ ଅବସ୍ଥାରେ ନିରାକାରପୁର ସରକାରୀ ସ୍କୁଲକୁ ବଦଳି ଆଦେଶ ଆସିଲା । ସରକାର ଆଦେଶ ଉପରେ ଆଦେଶ ଜାହିର କଲେ । ସେଠାରେ ତିନି ବର୍ଷରୁ ଊର୍ଦ୍ଧ୍ୱ ଗୁରୁଦାୟିତ୍ୱରେ ଅବସ୍ଥାନ କରିବା ପରେ ୧୯୭୩ ମସିହାର ଜାନୁଆରୀ ମାସରେ ସ୍ଥାୟୀ ପ୍ରଧାନ ଶିକ୍ଷକ ପଦରେ ରହିବାକୁ ଚିଠି ଆସିଲା । ଆମର ପ୍ରମୋଶନରେ ଶହେ ତେଇଶିଟି ସରକାରୀ ସ୍କୁଲରେ ପ୍ରଧାନ ଶିକ୍ଷକମାନେ ପ୍ରତିବନ୍ଧକ ସୃଷ୍ଟି କରୁଥାଆନ୍ତି । ସ୍ୱାର୍ଥ ଉଚ୍ଚ ନୀଚ, ବଡ଼ ସାନ, ଧର୍ମ ଅଧର୍ମ କିଛି ବିଚାର କରେ ନାହିଁ । ସ୍ୱାର୍ଥସାଧନ ନିମିତ୍ତ ନାନାପ୍ରକାର ଦୁଷ୍କର ପଥ ଅବଲମ୍ବନ କରାଯାଏ ।

## ମୋ ପୁଣ୍ୟମୟୀ ମା'ଙ୍କର ତିରୋଧାନ :

ମୋର ପୁଣ୍ୟମୟୀ ମା'ଙ୍କର ୧୯୭୨ ମସିହା ନଭେମ୍ବର ମାସ କାର୍ତ୍ତିକ ବଡ଼ ଏକାଦଶୀ ପୂର୍ବାହ୍ଣ ଏଗାରଟା ସମୟରେ ମହାପ୍ରୟାଣ ଘଟିଲା । ଘରୁ ବଡ଼ ମୁଣ୍ଡ ଚାଲିଗଲେ ବର୍ଷଯାକ ନାନା ବିତ୍‌ପାତ ପଡ଼ିଥାଏ । ସତକୁସତ ୧୯୭୩ ମସିହାରେ ଏପ୍ରିଲ ମାସରେ ସ୍କୁଲରେ ଚାଳଛପର ଗୃହ ଦୁର୍ବୃତ୍ତମାନଙ୍କ ଦ୍ୱାରା ଅଗ୍ନିଦଗ୍ଧ ହୋଇଗଲା । ବିପଦ

ସାଙ୍ଗସାଥୀମାନଙ୍କୁ ନେଇ ଆସେ । ମୋ ଅଲକ୍ଷ୍ୟରେ ଖତଗାଡ଼ କୁଟାରେ ନିଆଁ ଲାଗିଗଲା । ବଡ଼ପୁଅ ବି.ଏ. ପରୀକ୍ଷାରେ ଫେଲ ହେଲା । ଭୟର ସୀମା ବଢ଼ିଗଲା । ମନ ଜ୍ୱାଳାର ଅବସାନ ହେଲାନାହିଁ ।

ମୋ ମା' ସେରନ୍ତୀ ଦେଈ ନିରକ୍ଷରା, ସରଳା, ଏପରିକି ମହାକାର୍ତ୍ତିକ ମାସରେ ଆମିଷ ଖାଇଲା । କିନ୍ତୁ ସେ କାହା ଛନ୍ଦକପଟରେ ନଥାଏ । ଗୋଟାଏ ମହାନ ଦିନରେ ଓ ଭଲବାରରେ ଆମ୍ଭମାନଙ୍କୁ ଛାଡ଼ିଦେଇ ଚାଲିଗଲା । ମୋ କର୍ତ୍ତବ୍ୟରେ ମୁଁ କେବେହେଲେ ଅବହେଳା କରେ ନାହିଁ । ଶ୍ରମିକ ସଦୃଶ ବହୁତ ଖଟିଛି । ଉକ୍ତ ସ୍ୱଳ୍ପ ସମୟ ଭିତରେ ସ୍କୁଲର ଉଲ୍ଲେଖନୀୟ ଅଗ୍ରଗତି କରାଇପାରିଛି । ପଢ଼ା ବାୟୁମଣ୍ଡଳ ସୃଷ୍ଟି କରିପାରିଛି । କିନ୍ତୁ ମୋର ପୁରସ୍କାର ? ସେତେବେଳେ କେହି ଦେଲେନାହିଁ, ପରେ ବି ପାଇଲି ନାହିଁ ।

## ଦୁର୍ଭାବନା :

ବନମାଳୀ ପଟ୍ଟନାୟକଙ୍କ ମନ୍ତ୍ରିତ୍ୱ ସମୟରେ ଡି.ପି.ଆଇ. ଅଫିସ କଟକରୁ ସ୍ଥାନାନ୍ତରିତ ହୋଇ ରାଜଧାନୀ ଭୁବନେଶ୍ୱରରେ ଗାନ୍ଧୀଭବନରେ ପରିଚାଳିତ ହେଲା । ସେଠାକୁ ଗମନ କରି ଡି.ପି.ଆଇ. ମହୋଦୟଙ୍କୁ ସବୁ ହାଲ ହରକତ ଜଣାଇଲି । ସେ ଶୁଣି ନଶୁଣିଲା ପରି ହେଲେ । ପରେ ଡି.ପି.ଆଇ. ମହୋଦୟ କହିଲେ, ତୁମମାନଙ୍କ ପାଇଁ ସରକାର କିଛି କରୁନାହାନ୍ତି । ତୁମେମାନେ ତଳକୁ ଖସିବ । ମୁଣ୍ଡରେ ବଜ୍ର ପଡ଼ିଲା । ତେବେ କ'ଣ ବନମାଳୀବାବୁ ଆମକୁ ଠକିଦେଲେ ? ଏବେ ଡି.ପି.ଆଇ. ମହୋଦୟ ସାଫ୍ ସାଫ୍ ମନାକରି ଦେଲେ, ଆମକୁ ଆଉ ବିରକ୍ତ କରନାହିଁ । ଭାରାକ୍ରାନ୍ତ ହୃଦୟରେ ଦ୍ୱିତଳ ପ୍ରାସାଦରୁ ପାହୁଣ୍ଡ ଗଣିଗଣି ତଳକୁ ଓହ୍ଲାଇ ନିରାକାରପୁରକୁ ବାଟ କାଟିଲି । ଭାବନା ବଢ଼ିଯିବାରୁ ଗୋଡ଼ ପକେଇବାରେ ମେଳ ଖାଉ ନଥିଲା । ଏପଟ ସେପଟ ହେଲା । ଏତେଦିନ ଉଚ୍ଚସ୍ଥାନରେ ଅବସ୍ଥାନ କରି ତଳକୁ ଖସିଲେ କେମିତି ଲାଗିବ ? ଏହାଠାରୁ ବଳି ବଡ଼ ଧକ୍କା ଜୀବନରେ ଆଉ ଥାଇପାରେ ? ତଳକୁ ଖସିବା ମୃତ୍ୟୁ ସଙ୍ଗେ ସମାନ । ମୋ ଚାକିରିକୁ ଧିକ୍,ମୋ ଜୀବନକୁ ଧିକ୍ । ସମଗ୍ର ଜିଲ୍ଲାରେ ଶିକ୍ଷକ ମହଲରେ ମୋର ସୁନାମ ଥିଲା, ସମ୍ମାନ ବି ଥିଲା । ମୋତେ ବହୁଶିକ୍ଷକ ଜାଣନ୍ତି । ଖାତିରି ବି କରନ୍ତି । ଏବେ ସମସ୍ତଙ୍କ ପାଖେ ମୁଁ କ'ଣ ମୁହଁ ଲୁଚାଇବି ? ଏହିପରି ଅସଂଯତ ଭାବନାରାଜି ମୁଣ୍ଡଟାକୁ ଗୋଳମାଳିଆ କରିଦେଲା । ରାତ୍ରି ସାତଟା ସମୟରେ ବାସଗୃହରେ ପ୍ରବେଶ କରି ସମସ୍ତ ଦୁଃଖଦୈନ୍ୟ ବନବାସିନୀ ଦେବୀଙ୍କ ସମ୍ମୁଖରେ ପ୍ରକାଶ କଲି ।

ଗ୍ରୀଷ୍ମାବକାଶ ସକାଶେ ବିଦ୍ୟାଳୟ ମଇ ମାସ ତୃତୀୟ ସପ୍ତାହରେ ବନ୍ଦ ରହିଲା । ୪.୬.୧୯୭୩ ତାରିଖରେ ଇନିସ୍‌ପେକ୍ଟର ମହୋଦୟ ଦୁର୍ଯ୍ୟୋଧନ ରାଉତଙ୍କୁ ସାକ୍ଷାତ କରିବାପାଇଁ ପୁରୀ ଯାତ୍ରା କଲି । ଯେଉଁଠି ଡି.ପି.ଆଇ. ମହୋଦୟ କିଛି କରିପାରିଲେ ନାହିଁ ସେଠି ଇନସ୍‌ପେକ୍ଟର କରିବେ କ'ଣ ? ସେଦିନ ସମ୍ବାଦ ପାଇଲି ସୁନ୍ଦରଗଡ଼ ଖୁଣ୍ଟଗାଁ ହାଇସ୍କୁଲର ଭବାନୀଶଙ୍କର ଆଚାର୍ଯ୍ୟ ନୂତନ ହେଡମାଷ୍ଟର ହୋଇ ନିରାକାରପୁରକୁ ଆସୁଛନ୍ତି । ସେତେବେଳେ ଓଡ଼ିଶାରେ ରାଷ୍ଟ୍ରପତି ଶାସନ । ରାଜ୍ୟପାଳ ତ ବିଚାରବନ୍ତ ଲୋକ, ଆମ କଥା ବୁଝିଥାଆନ୍ତେ । ମାତ୍ର ଭାଗ୍ୟର ବିଡ଼ମ୍ବନା । ''ଅଭାଗା ଯୁଆଡ଼େ ଯାଏ ସାଗର ଶୁଖିଯାଏ ।'' ମୋ ଦୁଃଖରେ ବନବାସିନୀ ଦେବୀ ମ୍ରିୟମାଣ । ସେ ଏ ଘଟଣା ତତ୍‌କାଳୀନ ନାରୀନେତ୍ରୀ ନନ୍ଦିନୀ ଶତପଥୀଙ୍କୁ ପତ୍ରଦ୍ୱାରା ଜଣାଇଲେ ମାତ୍ର କ'ଣ ବା ହୁଅନ୍ତା ? ଯେତେବେଳେ ଦେଖିଲି ନିଷ୍ଠା, ସାଧୁତା, କାର୍ଯ୍ୟଦକ୍ଷତାର କିଛି ମୂଲ୍ୟ ନାହିଁ ସେତେବେଳେ ଭଗବାନ ଅଛନ୍ତି ବୋଲି କିପରି ଜାଣିବି ? ଏପରି ଅବସ୍ଥାରେ ମନରୁ ଭଗବାନ ଉପରୁ ଆଶା ଭରସା ତୁଟିଗଲା । ଗ୍ରୀଷ୍ମାବକାଶ ସମୟଟାଯାକ ସ୍କୁଲର ଅସ୍ଥାୟୀ ଗୃହ ନିର୍ମାଣରେ ଲାଗିପଡ଼ିଲି । ନିଜକଥା ଚିନ୍ତା କରିବାକୁ ବେଳ ନଥିଲା । ସହଧର୍ମିଣୀଙ୍କୁ କହିଥାଏ ପେଡ଼ିପୁଟୁଳା ବାନ୍ଧି ଏ ସ୍ଥାନ ତ୍ୟାଗ କରିବା ନିମନ୍ତେ ପ୍ରସ୍ତୁତ ହେବାପାଇଁ । କିନ୍ତୁ ମନରେ ଗଭୀର ଆତ୍ମବିଶ୍ୱାସ ଭରି ରହିଥିଲା । ମୁଁ ନିଶ୍ଚୟ ସ୍ଥାୟୀ ହେଡମାଷ୍ଟର ପଦ ପାଇବି ଏବଂ ଖୋର୍ଦ୍ଧା ହାଇସ୍କୁଲରେ ଦାୟିତ୍ୱ ନେବା ଦିନଠାରୁ ପାଇବି । ଏ ଧାରଣା ମୋର ବଳବତୀ ହେଉଥିଲା । କୌଣସି ସ୍କୁଲକୁ ସହକାରୀ ହୋଇ ଯିବି ନାହିଁ । ଆତ୍ମବିଶ୍ୱାସହିଁ ମନୁଷ୍ୟକୁ ନିଶ୍ଚିତ ବିପଦରୁ ରକ୍ଷା କରେ ।

''ତୁଣ୍ଡ ବାଇଦ ସହସ୍ର କୋଶ' । ନୂଆ ହେଡ୍‌ମାଷ୍ଟର ଆଗମନ କରୁଛନ୍ତି । ଦିନେ ଓଳିଏ ଭିତରେ ହାଇସ୍କୁଲରେ ପହଞ୍ଚିଯିବେ । ମୋର ସମ୍ମାନ ଖସି ଖସି ଆସୁଥିଲା ।

## ଦେଶ ଶାସନର ଚିତ୍ର :

ଦେଶରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଶାସନ । କଂଗ୍ରେସ ବିଭାଜନ ହୋଇଯାଇଥାଏ । ସିଣ୍ଡିକେଟ ଗୋଷ୍ଠୀ ଅଲଗା ହୋଇଯାଆନ୍ତି । ଦୁଃସାହସିକ କାର୍ଯ୍ୟକରି ଇନ୍ଦିରାଗାନ୍ଧୀ ଜଗତକୁ ଚମକାଇ ଦେଇଥାଆନ୍ତି । କମ୍ୟୁନିଷ୍ଟ ଏମ୍.ପି.ମାନଙ୍କ ସହାୟତାରେ ଶାସନ ଚାଲିଥାଏ । ସେମାନଙ୍କର ସମର୍ଥନ ପାଇ ସେ ରାଜାମାନଙ୍କର ହାତପାଣ୍ଠି ଉଚ୍ଛେଦ କରିଥିଲେ ଏବଂ ବଡ଼ ବଡ଼ ବ୍ୟାଙ୍କଗୁଡ଼ିକୁ ଜାତୀୟକରଣ କରିଥିଲେ । ୧୯୭୧ ମସିହା

ଭାରତ ପାକିସ୍ଥାନ ଯୁଦ୍ଧରେ ସେ କୂଟନୀତି ପ୍ରୟୋଗକରି ବଙ୍ଗଳାଦେଶ ସୃଷ୍ଟିକରି ଜଗତକୁ ଚମତ୍କୃତ କରିଦେଇଥିଲେ । ପାକିସ୍ଥାନର ଅଣ୍ଟା ଭାଙ୍ଗିଗଲା ସତ ମାତ୍ର ବଙ୍ଗଳାଦେଶ ସୃଷ୍ଟି ଦ୍ୱାରା ଭାରତର କି ଲାଭ ହେଲା ? ଆମେରିକାର ସହାୟତା ଲାଭ କଲେ ମଧ୍ୟ ପାକିସ୍ଥାନ କିଛି କରିପାରିଲା ନାହିଁ । ପାକିସ୍ଥାନର ପ୍ରଧାନମନ୍ତ୍ରୀ ଜୁଲଫିକର ଅଲ୍ଲୀ ଭୁଟ୍ଟ ସିମଳା ଚୁକ୍ତି ସ୍ୱାକ୍ଷର କରି ସମସ୍ତ ବିବାଦ ଏହି ଚୁକ୍ତି ଅନୁଯାୟୀ ଦ୍ୱିପାକ୍ଷିକ ଆଲୋଚନା ମାଧ୍ୟମରେ ନିଷ୍ପତ୍ତି କରିବେ ବୋଲି ସ୍ୱୀକୃତି ପ୍ରଦାନ କଲେ । ଇନ୍ଦିରାଗାନ୍ଧୀ ସମଗ୍ର ପୃଥିବୀରେ ଜଣେ ଶକ୍ତିଶାଳୀ ନେତ୍ରୀ ଭାବରେ ଆବିର୍ଭୂତା ହେଲେ । ଭାରତର ମାନସମ୍ମାନ ଯଥେଷ୍ଟ ବୃଦ୍ଧି ପାଇବାରେ ଲାଗିଲା ।

## ମୋ ମନ କେଉଁଠି :

ଭବାନୀବାବୁଙ୍କ ପତ୍ର ମୋ ମୁଣ୍ଡକୁ ଓଜନିଆ କରିଦେଲା । ଏଣେ ଓଡ଼ିଶା ମାଧ୍ୟମିକ ଶିକ୍ଷକ ସଙ୍ଘର କର୍ମକର୍ତ୍ତାଗଣ ତତ୍କାଳୀନ ସାଂସଦ ଶ୍ରୀ ବନମାଳୀ ପଟ୍ଟନାୟକଙ୍କୁ ଭେଟି ସେମାନଙ୍କର ଦାବି ପୂରଣ କରିବାପାଇଁ ତାଙ୍କ ଉପରେ ଚାପ ପକାଇଲେ । ଆଶାର ସଞ୍ଚାର ହେଲା । ଆମ୍ଭମାନଙ୍କ ସେକ୍ରେଟାରୀ ଶ୍ରୀ ବୃନ୍ଦାବନ ଆଚାର୍ଯ୍ୟ ଏସବୁ କାମରେ ଖୁବ୍ ତତ୍ପରତା ପ୍ରକାଶ କରି ଆମ୍ଭମାନଙ୍କ ପାଇଁ କିଛି ବ୍ୟବସ୍ଥା କଲେ ବୋଲି ଜନରବ ହେଲା । କିନ୍ତୁ ଜନରବଟା ସବୁବେଳେ ସତ୍ୟ ହୁଏନାହିଁ ।

ଦୀର୍ଘସମୟ ହେଲା ମୁଁ ମାହାଳିଆ ମୁକୁନ୍ଦଦେବ ପଦରେ ଅବସ୍ଥାନ କରି ଚୌକିଦାର ସ୍ୱରୂପ ଆଦେଶ ପାଳନ କରୁଥିଲି । ସେ ବର୍ଷ ଗ୍ରୀଷ୍ମାବକାଶ ପରେ ବିଦ୍ୟାଳୟ ଖୋଲିନାହିଁ । ବନବାସିନୀ ଦେବୀଙ୍କର ଉଗ୍ରତାରାଙ୍କ ଉପରେ ଅଗାଧ ବିଶ୍ୱାସ । ସେ ସମସ୍ତ ଦୁର୍ଗତିରୁ ମୁକ୍ତ କରିଦେବେ ବୋଲି ତାଙ୍କର ଦୃଢ଼ ଧାରଣା ।

## ବନବାସିନୀ ଦେବୀଙ୍କ ସତୀତ୍ୱ :

ବନବାସିନୀ ଦେବୀ ତାରାଦେଈଙ୍କୁ ଆରାଧନା କରିବାରେ ବହୁ ସମୟ ବ୍ୟୟ କରୁଥିଲେ । ଦିନେ ଦୁଇଦିନ ହେଲା ସେ ମୋତେ ଖୁବ୍ ହିମ୍ମତ ଦେଉଥାନ୍ତି । ଟାପରା କରି କହିଲେ, ''ବୁଝିଲ ସାର୍, ତୁମର ଏଥର ପ୍ରଧାନ ଶିକ୍ଷକ ପଦ ସ୍ଥାୟୀ ହେଉଛି ଏବଂ ଯେଉଁ ଦିନଠାରୁ ରହିଛ ସେହିଦିନଠାରୁ । ମନ ବ୍ୟସ୍ତ କରନାହିଁ । ଆଉଥରେ ଡି.ପି.ଆଇ. ମହୋଦୟଙ୍କ ନିକଟକୁ ଯାଅ ।'' ''ଆହେ, ଏ କି ଆଶ୍ଚର୍ଯ୍ୟ କଥା । ସେ ତ ମୋତେ ଚାରିଦିନ ପୂର୍ବରୁ ସାଫ୍ ସାଫ୍ ମନା କରିଦେଲେ । ଆଉ ନିର୍ଲଜ୍ଜ ଭାବେ ଯିବି କାହିଁକି ? ଡି.ପି.ଆଇ.

ଡକ୍ଟର ଦେବେନ୍ଦ୍ର ମିଶ୍ର ଓ ଇ.ଓ. ଶ୍ରୀ ରାମଚନ୍ଦ୍ର ମିଶ୍ରଙ୍କୁ ଦୁଇ ଦୁଇଥର ସାକ୍ଷାତ କରିଛି । ଆଉ କୋଉ ମୁହଁରେ ଯିବି ? ମୋ ବିଶ୍ୱାସ ପୂରାପୂରି ତୁଟିଯାଇଛି । କୂଳକିନାରା କିଛି ନପାଇ ପ୍ରତିଦିନ ପଞ୍ଚାକ୍ଷର ଜପ କରୁଛି ।'' କିନ୍ତୁ ବନବାସିନୀ ଦେବୀ ଯେ ସାକ୍ଷାତ ଲକ୍ଷ୍ମୀସ୍ୱରୂପିଣୀ ଏ କଥା ମୁଁ ଜାଣିନଥିଲି । ସେ ମୋତେ ବାରମ୍ବାର କହୁଥାଆନ୍ତି, ''ଥରେ ଚେଷ୍ଟାକଲେ କୌଣସି କାର୍ଯ୍ୟ ସାଧିତ ହୁଏନାହିଁ । ଆଉଥରେ ଯାଅ ନିଶ୍ଚୟ ହେବ ।'' ସେ ଦୃଢ଼ ସ୍ୱରରେ ମତ ପ୍ରକାଶ କଲେ, ''ମୁଁ କାନିରେ ଗଣ୍ଠି ପକାଉଛି ଏଥରକ ତୁମେ ସେ ପଦରେ ସ୍ଥାୟୀ ହେଉଛ । ଯଦି ନହୁଏ ତେବେ ମୁଁ ସତୀ ସ୍ତ୍ରୀ ନୁହେଁ ।'' ''ଏଁ, ଏ ଯୁଗରେ ପୁଣି ସତୀ ସ୍ତ୍ରୀ ଅଛନ୍ତି ? କେଡ଼େ କଥାଟାଏ କହି ପକାଇଲ ?''

**ଶୁଭସମୟ ଆଗତ :**

ମୋର ଆଦୌ ଆଶା ନଥିଲା । ତଥାପି ବୁଡ଼ିଗଲା ମଣିଷ କୁଟାଖିଅକୁ ବି ଆଶ୍ରା କରିଥାଏ । ୨୯-୬-୭୩ ତାରିଖରେ ପୁନଃ ଗାନ୍ଧୀଭବନକୁ ଯାତ୍ରା କଲି । ତେବେ ଇ.ଓ. ହେଉଛନ୍ତି କର୍ତ୍ତା, ପ୍ରତ୍ୟେକ ଥର ମୋତେ ଦୂର୍‌ଦୂର୍ ମାର୍‌ମାର୍ କହି ଘଉଡ଼ାଇ ଦେଇଥିଲେ । କିନ୍ତୁ ଏଥରକ ଇ.ଓ. ମହାଶୟଙ୍କର ହାବଭାବରେ ପରିବର୍ତ୍ତନ ଲକ୍ଷ୍ୟ କଲି । ମୁଁ ତାଙ୍କ ସମ୍ମୁଖରେ ମାଇଲା ମୂଷାପରି ଠିଆହେଲି । ସେ ଏଥରକ ମୋ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଲକ୍ଷ୍ୟ କଲେ । କେଉଁଥର ସେ ମୋତେ ଏତେ ସମୟ ନିରୀକ୍ଷଣ କରନ୍ତି ନାହିଁ । ତାଙ୍କ ଚକ୍ଷୁ ଦ୍ୱୟରେ ବିସ୍ମିତ ଭାବର ଚିହ୍ନ ଦେଖାଗଲା । ସେ କିଛି ସମୟ ନୀରବ ରହି କହି ପକାଇଲେ, ''କିହୋ, ତୁମେ କ'ଣ କିମିଆ ଜାଣିଛ କି ?'' ମୁଁ ଏତେ ବିବ୍ରତ ହୋଇପଡ଼ିଥିଲି ଯେ ମୋ ପାଟିରୁ ବଚନ ବାହାରିଲା ନାହିଁ । କିଛି ସମୟ ପରେ ଶକ୍ତି ସଞ୍ଚୟ କରି ଉତ୍ତର ଦେଲି, ''ନାହିଁ ଆଜ୍ଞା ମୁଁ ଜଣେ ନିଷ୍ଠାପର, କର୍ତ୍ତବ୍ୟପରାୟଣ ଶିକ୍ଷକ । ମୋର କେହି ସାହା ଭରସା ନାହାନ୍ତି । ଜଗଦୀଶ ଭରସା । ଆପଣ ତ ସବୁ, ଯାହା କରିବେ ?'' ତତ୍‌କ୍ଷଣାତ୍ ରାମବାବୁ କହିଲେ, ''ତୁମେ ତୁମ ପଦରେ ସ୍ଥାୟୀ ହେଉଛ ଏବଂ ରହିବା ଦିନ ଠାରୁ, ଆଉ ଚିନ୍ତା କ'ଣ ?'' ରାମବାବୁ ସହାନୁଭୂତିଶୀଳ ହୋଇ କହିଲେ, '' ଏବେ ଯାଅ ଡି.ପି.ଆଇ.ଙ୍କୁ ସାକ୍ଷାତ କର ।'' ମୋ ମନରେ ଦମ୍ଭ ଆସିଲା । ଡି.ପି.ଆଇ. ଡକ୍ଟର ଶ୍ରୀ ଦେବେନ୍ଦ୍ର ନାଥ ମିଶ୍ର ଦେବୋପମ ବ୍ୟକ୍ତି । ତାଙ୍କଠାରେ ମନୁଷ୍ୟତା ଥିଲା । ତାଙ୍କୁ ମୂଳରୁ ଚୂଳ ପର୍ଯ୍ୟନ୍ତ ସବୁକଥା କହିଗଲି । ପୂର୍ବଥର ପରି ଏଥର ଅସୂୟା ଭାବ ଦେଖାଇଲେ ନାହିଁ । ସେ ସାଙ୍ଗେ ସାଙ୍ଗେ ଫୋନ କରି ଇ.ଓ. ମହାଶୟଙ୍କୁ ଡକାଇଲେ । ମୋ ସାମନାରେ ତାଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ—

ସେଠାକୁ କିଏ ଯାଉଛି ?

—ସେଠାକୁ ଭବାନୀଶଙ୍କର ଆଚାର୍ଯ୍ୟ ଯାଉଛନ୍ତି ।

ସେ କେଉଁଠାରୁ ଆସୁଛନ୍ତି ?

—ସେ ସୁନ୍ଦରଗଡ଼ ଜିଲ୍ଲାର ଖୁଣ୍ଟଗାଁ ହାଇସ୍କୁଲରୁ ପ୍ରମୋଶନରେ ଆସୁଛନ୍ତି ।

ତାଙ୍କ ଘର କେଉଁଠି ?

—ତାଙ୍କ ଘର ଖଲ୍ଲିକୋଟ ।

ତାଙ୍କୁ ନିରାକାରପୁର କାହିଁକି ଦେଉଛ ?

—ଆଜ୍ଞା, ତାଙ୍କ ଭାଇ ମୋତେ ପ୍ରାର୍ଥନା କରିଛନ୍ତି ?

ତାଙ୍କ ଭାଇ କିଏ ?

—ତାଙ୍କ ଭାଇ ଭୁବନେଶ୍ୱର ବାର୍‌ରେ ଜଣେ ଆଡଭୋକେଟ ।

ଖଲ୍ଲିକୋଟ ବର୍ତ୍ତମାନ ଖାଲିଅଛି ?

—ହଁ ଆଜ୍ଞା, ଖଲ୍ଲିକୋଟ ବର୍ତ୍ତମାନ ଖାଲିଅଛି ।

ଦେବେନ୍ଦ୍ରବାବୁ କିଛି ସମୟ ଚିନ୍ତାକଲେ, ମୋତେ ଭଲଭାବରେ ନିରୀକ୍ଷଣ କରି କହିଲେ, ''ନା, ତା କରନାହିଁ । କର୍ମଠ କାର୍ଯ୍ୟଦକ୍ଷ Typical Master କୁ ସେହିଠାରେ ରଖ, ତାଙ୍କୁ ଖଲ୍ଲିକୋଟକୁ ପଠାଇଦିଅ, ଉଭୟଙ୍କର ସୁବିଧା ହେବ ।'' ତା' ପରେ ମୋତେ କହିଲେ, ''ଆପଣ ଯାଆନ୍ତୁ, ପୋଷ୍ଟିଙ୍ଗ ଅର୍ଡ଼ର ଯାଉଛି ।''

ଦେବେନ୍ଦ୍ରବାବୁଙ୍କର ଏପରି ସ୍ନେହବୋଳା କଥାରେ ମନରେ ସ୍ୱର୍ଗୀୟ ଆନନ୍ଦ ଜାତ ହେଲା । ସାଧୁ ସାଧୁ ଉଚ୍ଚାରଣ କରି କୃତଜ୍ଞତା ଓ ବିନୟର ସହିତ ଲମ୍ୱା ଦଣ୍ଡବତ ପକାଇ ଗାନ୍ଧୀଭବନ ଛାଡ଼ିଲି । ଗାଡ଼ି ସମୟ ଏକ ଘଣ୍ଟା ବାକି ଥିଲା । ବନବାସିନୀ ଦେବୀଙ୍କ ସତୀତ୍ୱ ବିଷୟ ଚିନ୍ତା କରି କରି ପାଦ ପକାଇଲି । ପରମେଶ୍ୱରଙ୍କ ପ୍ରତି ମନ କୃତଜ୍ଞତାରେ ଭରିଗଲା । ଏବେ ତାଙ୍କ ଉପରେ ଗଭୀର ପ୍ରତ୍ୟୟ ଆସିଲା ।

''କରି କରାଉ ତାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ । ''

ସେଦିନ ଗୃହକୁ ଆଗମନ କରି ବନବାସିନୀ ଦେବୀଙ୍କୁ ପ୍ରଥମେ ବଧେଇ ଜଣାଇଲି । ସେ ଏତେ ଖୁସି ହୋଇଗଲେ ଯେ ରାଜା ରାଜ୍ୟଟିଏ ପାଇଲେ ସେତିକି ଖୁସି ହେବ କି ନାହିଁ ସନ୍ଦେହ ।

ଅପେକ୍ଷା କରିବାକୁ ପଡ଼ିଲା । ମୋର ଡି.ପି.ଆଇ. ଅଫିସ ଉପରେ ପୂର୍ବରୁ ଧାରଣା ନଥିଲା । ଏହା ତ ଗମ୍ଭୀରି ଘରର କଥା । ଏତେ ଶୀଘ୍ର ଅର୍ଡ଼ରଟା ବାହାରିବ କିପରି ? ସେତେବେଳେ ସବୁସ୍ତରରେ ପଇସାପତ୍ରର ଏତେ କାରବାର ନଥିଲା । ସମସ୍ତେ ମୋଟାମୋଟି ନିର୍ମଳ ଥିଲେ ।

ବିଦ୍ୟାଳୟ ୪-୭-୭୩ ତାରିଖ ଶୁକ୍ରବାର ଦିନ ଗ୍ରୀଷ୍ମାବକାଶ ପରେ ଖୋଲିଲା । ମୁଁ ସଂପୂର୍ଣ୍ଣ ଆଶା କରିଥିଲି ବିଦ୍ୟାଳୟ ଖୋଲିବା ପୂର୍ବରୁ ଅର୍ଡ଼ରଟା ଆସି ପହଞ୍ଚିଯିବ । ମାତ୍ର ତା'ପରେ ଦୁଇ ଚାରିଦିନ ଅପେକ୍ଷା କଲି କିନ୍ତୁ ଅର୍ଡ଼ର କାହିଁ ? ଅପେକ୍ଷା କରିକରି ଆଖିରୁ ପାଣି ମଲା, ବ୍ୟସ୍ତ ହୋଇପଡ଼ିଲି । ମାତ୍ର ମୋ ପରି ଓଲାଲୋକ ଜଗତରେ ନାହାନ୍ତି । ମୁଁ ଡି.ପି.ଆଇ. ଅଫିସକୁ ଯାଇ ଯୋଗାଡ଼ କରିଥାନ୍ତି, ମାତ୍ର ମୁଁ ତାହା କରିନାହିଁ । ମୋର ଧାରଣା ଥିଲା ଅର୍ଡ଼ରଟା ମନକୁମନ ଆସିଯିବ । ମୋର ସେ ଧାରଣା ଭୁଲ ।

## ମୋର ମନୋଭାବ :

ସ୍କୁଲ ଖୋଲିବାଦିନ ବିଦ୍ୟାଳୟ ଅଫିସଗୃହରେ ବସି କାଗଜପତ୍ର ତନଖି କରୁଛି । ନୂତନ ହେଡମାଷ୍ଟର ଶ୍ରୀ ଭବାନୀଶଙ୍କର ଆଚାର୍ଯ୍ୟ ରୂପାରଙ୍ଗର ଚିକ୍ ଚିକ୍ ପୋଷାକ ପରିଧାନ କରି ସଂଭ୍ରମରେ ଅଫିସ ଦୁଆର ମୁହଁରେ ହାଜର ହୋଇଗଲେ । ମୁଁ ଯେତେବେଳେ ଜାଣିଲି ସେ ନୂତନ ହେଡମାଷ୍ଟର, ମୋ ଛାତି ଦପ୍‌କିନି ହୋଇଗଲା । ଅନ୍ତର ଭିତରେ ଦୁଃଖ ବଢ଼ିଗଲେ ମଧ ବାହ୍ୟ ଉପଚାରରେ ତାଙ୍କୁ ଅଭିବାଦନ ଜଣାଇଲି । ସେ ଆସନ ଗ୍ରହଣ କଲେ ମଧ ମୋ ମନଟା ଆମ୍ବିଲା ପଡ଼ିଗଲା । ତେବେ ପଞ୍ଚାନନ ହାତେ ଚା' ମଗାଇଲି ।

ମୋର ଶୃଙ୍ଖଳାରକ୍ଷା ଓ ପାଠପଢ଼ାରେ କଠୋରତା ଯୋଗୁଁ କେତେକ ଆଳସ୍ୟ-ପରାୟଣ ଶିକ୍ଷକ ମୋତେ ଅନ୍ତରରେ ଭଲ ପାଉନଥିଲେ । ନୂତନ ପ୍ରଧାନ ଶିକ୍ଷକଙ୍କୁ ସମସ୍ତେ ଜଣଜଣ କରି ଅଭିବାଦନ ଜଣାଇଲେ । ଭବାନୀବାବୁ ଆମ ସ୍କୁଲର ବିଜ୍ଞାନ ଶିକ୍ଷକ ପୃଥୁଳକାୟ, ଦୁର୍ଗାବାବୁଙ୍କର ଭ୍ରାତା ହେବେ । ତେଣୁ ସେଦିନ ସେ ତାଙ୍କୁ ନିଜ ପ୍ରକୋଷ୍ଠରେ ସ୍ଥାନ ଦେଲେ । ପରଦିନ ଭବାନୀବାବୁଙ୍କୁ ସମ୍ମାନ ଦେଖାଇ ଏନ୍.ସି.ସି. ପ୍ରକୋଷ୍ଠରେ

ରଖାଇଲି । ସମସ୍ତ କାଗଜପତ୍ର ଠିକ୍‌ଠାକ୍ କରିବାକୁ କିରାଣି ବାବୁ ଶ୍ରୀ ଚିନ୍ତାମଣି ଦାଶଙ୍କୁ ମୌଖିକ ଆଦେଶ ଦେଇ ତିନି ଚାରିଦିନ ମଧ୍ୟରେ ଦାୟିତ୍ୱ ହସ୍ତାନ୍ତର କରିଦେବି ବୋଲି ତାଙ୍କୁ ପ୍ରତିଶ୍ରୁତି ଦେଲି । କିନ୍ତୁ ମନରେ କ୍ଷୋଭ ଆସୁଥିଲା । ସ୍କୁଲ ଛୁଟିପରେ ବସାକୁ ପ୍ରତ୍ୟାବର୍ତ୍ତନ କଲି । ହୃଦୟ ଭାରାକ୍ରାନ୍ତ, ବେଙ୍ଗ କୂଅରେ ପଡ଼ିଲେ ସମସ୍ତେ ଟେକାଏ ଟେକାଏ ପକାନ୍ତି । ଡି.ପି.ଆଇ.ଙ୍କୁ ସାକ୍ଷାତକରି ଫେରିବାର ପାଞ୍ଚ କି ସାତ ଦିନ ହୋଇଗଲାଣି । ବଳରାମବାବୁ କହିଲେ, ନାହିଁ ନାହିଁ, ଦୁଇଜଣ ହେଡମାଷ୍ଟର । ଜଣେ ଚାର୍ଯ ନେବାକୁ ବସିଛି ଜଣେ ଚାର୍ଯ ଦେଉନାହିଁ । ଆନନ୍ଦ ରଥ ମଝିରେ ମଝିରେ ଆସି ନୂତନ ହେଡମାଷ୍ଟରଙ୍କ ପାଖରେ ଆଳାପ ଆଲୋଚନାରେ ବ୍ୟସ୍ତ ରହନ୍ତି । ନୂତନ ହେଡମାଷ୍ଟର ବପୁବାନ ପୁଣି ଚିକ୍‌ଚିକ୍ କରୁଥିବା ଜିନ୍ କନାରେ ପ୍ୟାଣ୍ଟ କୋର୍ଟ ପରିହିତ ପୁଣି କଥା କହିବାରେ ଧୁରୀଣ । ମୋର ଜୀର୍ଣ୍ଣଶୀର୍ଣ୍ଣ ଶରୀର ପୁଣି ସଫେଦ୍ ଧଳା କନାର ଧୋତି, କୁର୍ତ୍ତା ଆବୃତ ।–

କଥାରେ ଅଛି–

"ବିଦ୍ୟୟା ବପୁଶା ବାଚା<br>
ବସ୍ତ୍ରେଣ ବିଭବନ୍ୟତା<br>
ବକାର ପଞ୍ଚଭିଃ ଯତ୍ର<br>
ନରଃ ପ୍ରାପ୍ନୋତି ଗୌରବଂ ।।"

ଆନନ୍ଦ ରଥଙ୍କର ମୋ ପ୍ରତି ଭଲଭାବ ଥିଲା । ତେଣୁ ଯେତେବେଳେ ସେ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ ମୋ ମୁହଁ ରଙ୍ଗା ପଡ଼ିଯାଉଥିଲା । ମୁଁ ମଣିଷ ଚିହ୍ନିପାରେ ନାହିଁ । ଦଇବ ମୋ ପ୍ରତି ପ୍ରତିକୂଳ । ମଣିଷ କଥା କ'ଣ କହିବି ? ଦୁର୍ଗାବାବୁ ଅସ୍ୱାଭାବିକ ଭାବେ ପୃଥୁଳକାୟ । ସେ କାମରେ ଢିଲା କରନ୍ତି । ମୁଁ ବହୁବାର ତାଗିଦ୍ କରିଛି । ସେ ଭବାନୀବାବୁଙ୍କ ପାଖେ ବସି ଟୁପୁରୁ ଟାପର ହୁଅନ୍ତି । ଦାୟିତ୍ୱ ହସ୍ତାନ୍ତର କରିନଥିବା ହେତୁ ମୋର ଯାହା ଟିକିଏ ସମ୍ମାନ ଥାଏ ।

ସେଦିନ ବସାକୁ ଯାଇ ଲଥିକିନା ଚୌକିରେ ବସିପଡ଼ିଲି । ବିରକ୍ତିରେ ବନବାସିନୀ ଦେବୀଙ୍କୁ କହିଲି, "କାହିଁ ତୁମର ସତୀତ୍ୱ, କୁଆଡ଼େ ଗଲେ ତମ ତାରା ଦେଈ ? ମୋତେ କ'ଣ ସେମାନେ ଠକିଦେଲେ କି ?" ବନବାସିନୀ ଦେବୀ ନୀରବ, ନିଶ୍ଚଳ, ଅବିଚଳିତ ।

କିଛି ସମୟ ଧ୍ୟାନମଗ୍ନ ହୋଇ ଉଠିପଡ଼ି ବଜ୍ରଗମ୍ଭୀର ସ୍ୱରରେ କହିଲେ, ‘‘କି ଆଶ୍ଚର୍ଯ୍ୟ କଥା ସବୁ କଥା କ’ଣ ଥରକେ ହୋଇଯାଏ ? ଯାଅ, କାଲି ଯାଅ, ଅର୍ଡ଼ର ନେଇକରି ଆସିବ ।’’

## ସମୟର ଶୁଭେଚ୍ଛା :

ରାଉତ ସାହେବ ଦୁଇଥର ପୁରୀରୁ ଟେଲିଗ୍ରାମ କରି ସାରିଲେଣି । ଶୀଘ୍ର ଦାୟିତ୍ୱ ହସ୍ତାନ୍ତର କରିଦିଅ ନଚେତ୍ ସସ୍‌ପେଣ୍ଡ କରିଦେବି । ମୁଁ ହଡ଼ବଡ଼େଇ ଗଲିଣି । କିନ୍ତୁ ତହିଁ ଆରଦିନ ସ୍ତ୍ରୀଙ୍କର କଥା ମାନି ପୁନଃ ଗାନ୍ଧୀଭବନକୁ ଦୌଡ଼ିଲି । ଇ.ଓ. ମହାଶୟଙ୍କୁ ସାକ୍ଷାତ କରି ସବୁକଥା ଜଣେଇ ଦେଲି । ନୂଆ ହେଡମାଷ୍ଟର ଆସିଗଲେଣି, ଭାରି ତନାଘନା ଲଗାଉଛନ୍ତି । ଆପଣ ଶୀଘ୍ର ସୁବିଚାର କରନ୍ତୁ । ସେ ମୋ ପ୍ରତି ସଦୟ ଦୃଷ୍ଟି ପକାଇ କହିଲେ, ‘‘ଆସନ୍ତାକାଲିକୁ ଆସ ।’’ ତହିଁ ଆରଦିନ ଶନିବାର । ଭୟଙ୍କର କୋହଲା ପାଗ । ତଥାପି ମୁଁ ଏଗାରଟା ବେଳକୁ ଗାନ୍ଧୀଭବନରେ ପ୍ରବେଶ କଲି ।

ମଝିରେ ମଝିରେ ଅସରାଏ ଲେଖାଏଁ ବର୍ଷା ହେଉଥାଏ । ଆକାଶରେ କଳା ବାଦଲଗୁଡ଼ାକ ଚଲାବୁଲା କରୁଥାଆନ୍ତି, ରାସ୍ତାଘାଟରେ ଜନସମାଗମ ପତଳା ପଡ଼ି ଯାଇଥାଏ । ମୋର ସିନା ଜୀବନ ମରଣ ସମସ୍ୟା ଉପୁଜିଛି ବୋଲି ମୁଁ ଯାଉଛି ନଚେତ୍ ଏ ପାଗରେ ସାପ ବି ଗାତରୁ ବାହାରିବ ନାହିଁ । ମୁଁ ପ୍ରମାଦ ଗଣିଲି । ରାମବାବୁ କଫୁଆ ଲୋକ । ଆସିବେ କି ନାହିଁ । ସେ ଆସିବା ପାଇଁ ମୁଁ କିଛି ବୁଦ୍ଧି ଖର୍ଚ୍ଚ କରି ନାହିଁ । ବେଶ୍ ଥଣ୍ଡା ଅନୁଭୂତ ହେଉଥିଲା । କଥାରେ ଅଛି ‘‘ମାଘେ ଶୀତ କି ମେଘେ ଶୀତ୍ ।’’ ମନରେ ଭୟ ଓ ଆଶଙ୍କା, ରାମବାବୁ ଆସିବେ କି ନାହିଁ ?

ଧର୍ମଚକ୍ର ଘୂରିଲା । ପ୍ରାୟ ଦୁଇଟା ବେଳକୁ ରାମବାବୁ ଆସି ପହଞ୍ଚିଗଲେ । ମୋ ଦେହରେ ଜୀବନ ପଶିଲା । ଷ୍ଟେନୋ ବଂଶୀବାବୁଙ୍କୁ ଆଗରୁ ଭେଟିଥିଲି । ସେ ନାହିଁ କରିବାର ବାଟ ନଥିଲା । ସାଙ୍ଗେ ସାଙ୍ଗେ ଅର୍ଡ଼ର ଲେଖାଗଲା । ବଂଶୀବାବୁ ମୋତେ ଦୁଇଟି ଅର୍ଡ଼ର ଧରାଇଦେଲେ । ଗୋଟିଏ ମୋର, ଅନ୍ୟଟି ଭବାନୀବାବୁଙ୍କର ।

## ସ୍ଥାୟୀ ପ୍ରଧାନଶିକ୍ଷକ ପଦ ପ୍ରାପ୍ତିର ପରବର୍ତ୍ତୀ କୌତୂହଳପ୍ରଦ ଘଟଣା :

ମୋର ସେଠାରେ ଅବସ୍ଥାନ ଓ ଭବାନୀବାବୁଙ୍କର ଖଲ୍ଲିକୋଟ ଗମନ ଚିଠି ଦୁଇଖଣ୍ଡ ଧରି ଇ.ଓ.ଶ୍ରୀ ରାମଚନ୍ଦ୍ର ମିଶ୍ର ମହାଶୟଙ୍କୁ ଲମ୍ବା ଦଣ୍ଡବତଟିଏ ପକାଇ, ବଂଶୀବାବୁଙ୍କର ମୁଣ୍ଡରେ ଆଶୀର୍ବାଦସୂଚକ ହାତ ବୁଲାଇ ନିରାକାରପୁର ପ୍ରସ୍ଥାନ କଲି । ଆଜିକାଲି ଯୁଗରେ ଏପରି ଗୋଟିଏ ସ୍ଥାୟୀ ନିଯୁକ୍ତି ପତ୍ର ପାଇଥିଲେ ହଜାର ଗଣିବାକୁ

ପଡ଼ିଥାଆନ୍ତା । ମାତ୍ର ରାମଚନ୍ଦ୍ରବାବୁ କି ବଂଶୀବାବୁ କେହି ମୋ'ଠାରୁ କାଣିକଉଡ଼ିଟିଏ ବି ନେଇନାହାନ୍ତି । ସେମାନଙ୍କ ପାଖେ ମୁଁ ଚିରକୃତଜ୍ଞ ରହିଲି । ମୋର ପ୍ରଧାନଶିକ୍ଷକ ପଦ ଦାୟିତ୍ୱ ନେବା ଦିନଠାରୁ ଗଣାଗଲା ।

ଆଉ ଗୋଟିଏ ବିଷୟ ଏଠାରେ ଉଲ୍ଲେଖ କରୁଛି, ଭବାନୀବାବୁ ଯେଉଁଦିନ ଆସି ନିରାକାରପୁର ହାଇସ୍କୁଲରେ ପଦାର୍ପଣ କଲେ ତାର ଦିନେ ଦୁଇ ଦିନ ପରେ ବିଦ୍ୟାଳୟ ପ୍ରାର୍ଥନା ସଭାରେ ଯୋଗଦେଇ ନିଜକୁ ପ୍ରକୃତ ହେଡମାଷ୍ଟର ବୋଲି ସାବ୍ୟସ୍ତ କରିବାକୁ ଚାହିଁଲେ । ମୋତେ ଭାରି ଅଡୁଆ ଅଡୁଆ ବୋଧହେଲା । ପିଲାମାନଙ୍କ ସମ୍ମୁଖରେ ମୁଁ ଲଜ୍ଜିତ ହେଲି । କିନ୍ତୁ ମୁଁ ଅତି ସ୍ୱାଭିମାନୀ । ହଠାତ୍ ସେଠାରେ କହିଦେଲି, ଯେପର୍ଯ୍ୟନ୍ତ ଭବାନୀବାବୁ ବିଦ୍ୟାଳୟ ଦାୟିତ୍ୱ ବହନ କରିନାହାନ୍ତି ସେପର୍ଯ୍ୟନ୍ତ ବିଦ୍ୟାଳୟର କୌଣସି ଉତ୍ସବରେ ଯୋଗ ଦେବାକୁ ସେ କିଏ ? ଭବାନୀବାବୁଙ୍କ ରାଗ ପଞ୍ଚମରେ ପହଞ୍ଚିଲା । ସେ ତହିଁ ଆରଦିନ ସି.ଆଇ.ଙ୍କ ପାଖକୁ ଟେଲିଗ୍ରାମ କରିବାକୁ ହଟିଲେ ନାହିଁ । ସେ ବୋଧହୁଏ ଭାଇ ଦୁର୍ଗାବାବୁଙ୍କର ବୁଦ୍ଧିରେ ପଡ଼ି ଏପରି କଲେ ।

କଥା ଅଛି — ''ନିଜ ବୁଦ୍ଧିରେ ଘାସ କାଟିବ ସିନା ପରବୁଦ୍ଧିରେ ଘୋଡ଼ାଚଢ଼ିବ ନାହିଁ ।'' ଏଣେ ରାଉତ ସାହେବ ଯେ କି ଟ୍ରେନିଂ କଲେଜରେ ମୋର ଗୁରୁ ଥିଲେ ସେ ବି ଟିକିଏ ମୁଖଲଜ୍ଜା ରକ୍ଷା ନକରି ଟେଲିଗ୍ରାମ ଉପରେ ଟେଲିଗ୍ରାମ ପଠାଇଲେ ।

ରାମଚନ୍ଦ୍ର ମିଶ୍ରଙ୍କ ପାଖରୁ ଫେରିଆସିଲାବେଳେ ମନ ଖାଲି କୁରୁଳି ଉଠୁଥିଲା ମାତ୍ର ବିପଦରେ ଅଧୀର ନହେବା କି ସମ୍ପଦରେ ଗର୍ବିତ ନହେବା ମୋର ପ୍ରକୃତି । ତେଣୁ ନିରାକାରପୁରରେ ପ୍ରବେଶ କରି ନିଜ ପ୍ରାଣପ୍ରିୟା ସହଧର୍ମିଣୀ ଯାଦୁକାରିଣୀ ଶ୍ରୀମତୀ ବନବାସିନୀ ଦେବୀଙ୍କ ବ୍ୟତୀତ ଅନ୍ୟ କାହାକୁ ଏ ସମ୍ବାଦ ଜଣାଇ ନଥିଲି । ଭବାନୀବାବୁ ଏହି କେତେଦିନ ଭିତରେ ବିଦ୍ୟାଳୟ ପରିସରରେ ଅଭିଜାତପୂର୍ଣ୍ଣ ଆଡ୍ଡା ଜମେଇ ସାରିଲେଣି । ଶିକ୍ଷକମାନେ ତାଙ୍କୁ ନୂତନ ଦୃଷ୍ଟିରେ ଦେଖିଲେଣି । ମୋର କାର୍ଯ୍ୟକଳାପ ପ୍ରତି ସେମାନଙ୍କର ସନ୍ଦେହପୂର୍ଣ୍ଣ ଦୃଷ୍ଟି ମୋତେ ବ୍ୟଥିତ କରୁଥାଏ । ମୁଁ ଶନିବାର ଦିନ ଫେରି କାହାକୁ କିଛି କହିନାହିଁ । ରବିବାର ଦିନ ସ୍କୁଲର ପଡ଼ୋଶୀ ବାବୁ ତ୍ରିଲୋଚନ ହୋତାଙ୍କର ପୁଅ ବାହାଘର । ସେ ଆମ ଉଭୟଙ୍କୁ ନିମନ୍ତ୍ରଣ କରିଥିଲେ । ଭବାନୀବାବୁ ଓ ମୁଁ ଦୁର୍ଗାବାବୁଙ୍କ ସହିତ ଭୋଜିସ୍ଥଳକୁ ଗଲୁ ଏବଂ ଗୋଟିଏ ସ୍ଥାନରେ ବସିଲୁ । ତା' ପରଦିନ ସୋମବାର, ଷ୍ଟେସନ ମାଷ୍ଟର ମହାପାତ୍ରଙ୍କ ଝିଅ ବାହାଘର । ଏ ପର୍ଯ୍ୟନ୍ତ ଭବାନୀବାବୁ ଅନ୍ଧାରରେ ଥିଲେ । ମୁଁ ସେଠାରେ ତାଙ୍କୁ କହିଲି, ସାର୍, ଓଃ ଆଜି କ୍ଷୀରୀଟା ଖୁବ୍ ଭଲ

ହୋଇଛି । ଆସନ୍ତାକାଲି ଷ୍ଟେସନମାଷ୍ଟରଙ୍କ ଭୋଜି ଏହାଠାରୁ ଆହୁରି ବଢ଼ିଆ ହେବ । ଯିବାଟି ? ମୁଁ ଜାଣେ ଭବାନୀବାବୁ ସେଠାକୁ ଯାଇପାରିବେ ନାହିଁ । କେବଳ କୌତୁକ ଦେଖିବାପାଇଁ ଏପରି ପଚାରିଦେଲି । ଭବାନୀବାବୁ ଉତ୍ତର ଦେଲେ, ''ହଇ ହେ ମୁରଲୀବାବୁ ଭୋଜି କିଏ ଛାଡ଼େ ? ନିଶ୍ଚୟ ଯିବା ନା ?'' ମୋ ମନରେ ଉଦ୍ଦାମ ହସଟାକୁ ମୁଁ ଚାପି ରଖିଲି । ମୋ ହସଟା ସ୍ୱତନ୍ତ୍ର ଧରଣର । କହିଦେଲି -- ବ୍ରାହ୍ମଣମାନେ ଛତିଶ ପାଟକରେ ରଜା, ଭୋଜିଭାତକୁ ବିଶେଷତଃ କ୍ଷୀରୀ ଖାଇବାକୁ ବାଇ । ଆପଣ ନ ଗଲେ କଣ ମଉଜ ହେବ କି ? ସେଦିନ ଭୋଜି ଖିଆ ସରିଲା । ତାଙ୍କୁ ପ୍ରକୋଷ୍ଠରେ ଛାଡ଼ି ଦେଇ ମୁଁ କ୍ୱାଟରକୁ ଗଲି ।

## ଭବାନୀବାବୁ ଶିଶୁପାଳ ହେଲେ :

ତହିଁ ଆରଦିନ ସୋମବାର । ବିଦ୍ୟାଳୟ ଯଥାରୀତି ଚାଲିଲା । ଭବାନୀବାବୁଙ୍କର ଚିଠି ତାଙ୍କୁ ଦେବା କଥା ମାତ୍ର ମୁଁ ତାଙ୍କୁ ହାତେ ହାତେ ଦେଲେ ସେ ଅପମାନିତ ମନେ କରିବେ । ତେଣୁ ଗୋଟିଏ ଉପାୟ ଚିନ୍ତା କଲି । ଡି.ପି.ଆଇ. ଅଫିସ୍‌ରୁ ଆଣିଥିବା ଖାମ୍ ଉପରେ ପୁରୁଣା ସର୍ଭିସ ଷ୍ଟାମ୍ପ ମାରିଦେଲି । ସେହି ଚିଠି ଖଣ୍ଡିକ ପିଅନ ସର୍ବେଶ୍ୱର ହାତକୁ ବଢ଼େଇ ଦେଇ ଡାକଘରକୁ ଡାକ ଆଣିବାକୁ ପଠାଇଲି । ଠିକ୍ ସମୟରେ ମୁଁ ଅଫିସ୍ ଦୁଆର ମୁହଁରେ ଏପଟ ସେପଟ ହେଉଛି । ସର୍ବେଶ୍ୱର ଚିଠିଗୁଡ଼ିକ ନେଇ ଆସିଲା । ବାଟରୁ ତା ହାତରୁ ଭବାନୀବାବୁ ଚିଠିସବୁ ଦେଖିବାକୁ ଉଦ୍ୟତ ହେଲାବେଳକୁ ମୁଁ ପାଟି କରି କହିଲି, ସେଠାରେ କ'ଣ ଦେଉଛ ? ମୁଁ ଆଗ ଦେଖିବି । ସର୍ବେଶ୍ୱର ଚିଠି ସବୁ ଯାହା ତାଙ୍କୁ ଦେଖାଇବାକୁ ଯାଉଥିଲା ବନ୍ଦ କଲା । ମୋ ପାଖକୁ ଆଣିବାରୁ ମୁଁ ଚିଠି ଦେଖି ଭବାନୀବାବୁଙ୍କ ଚିଠିଟି ସାଙ୍ଗେ ସାଙ୍ଗେ ତାଙ୍କ ପାଖକୁ ପଠାଇଦେଲି । ମୁଁ ତ' ସବୁ ଜାଣିଛି । ଭବାନୀବାବୁ ଚିଠି ପଢ଼ି ହତବାକ୍ । ତାଙ୍କ ମୁଣ୍ଡ ତ ଗୋଲ । ଷ୍ଟେସନମାଷ୍ଟରଙ୍କ ଭୋଜି ଖାଉଛି କିଏ ? ତାଙ୍କୁ ଆଉ ବେଳ ଅଣ୍ଟିଲା ନାହିଁ । ପେଡ଼ିପୁଟୁଳା ବାନ୍ଧି ରାଉତ ସାହେବଙ୍କ ପାଖକୁ ଦୌଡ଼ିଲେ । ଚିଠି ଦେଖି ରାଉତସାହେବଙ୍କ ଅକଲ ଗୁଡୁମ୍ । ଭବାନୀବାବୁ ପୁରୀରୁ ଆଉ ନିରାକାରପୁର ଫେରିନାହାନ୍ତି । ଗାଆଁକୁ ବାଟ କାଟିଲେ । ସେ ତେଣେ ମୁଁ ଏଣେ ।

## ଜନସାଧାରଣଙ୍କ ଧାରଣା :

ଏଣେ ଦାୟିତ୍ୱ ନେବାଠାରୁ ହେଡମାଷ୍ଟର ହୋଇଗଲି ବୋଲି ଚାରିଆଡ଼େ ପ୍ରଚାର ହୋଇଗଲା । ଯେଉଁ ଶିକ୍ଷକମାନେ ତାଙ୍କ ପଛରେ ଘୋଡ଼ାଉଥିଲେ ସେମାନେ ମାଇଲା

ମୂଷାପରି ନମ୍ର ହୋଇଗଲେ, ପୁଣି ମୋର ଅନୁଗତ ବୋଲି ପ୍ରହସନ କଲେ । ଏ ତ ଜଗତର ନୀତି । ବାହାର ମାମଲତକାରିଆମାନେ କିଏ କିପରି ତାଙ୍କୁ ତୁଆଇକରି ରଖିବାକୁ ଚାହୁଁଥିଲେ, ତୁନିହୋଇ ରହିଗଲେ । ସେମାନେ ସମସ୍ତେ ଆଶ୍ଚର୍ଯ୍ୟ ନହୋଇ ରହିପାରିଲେ ନାହିଁ । ଯେଉଁ ଶିକ୍ଷକମାନେ ପୋଲାଫାଙ୍କିଆ ହୋଇ ତାଙ୍କ ପାଖେ ଅଲକ୍ଷ୍ୟରେ ଭଲେଇ ହେଉଥିଲେ ସେମାନେ ମନକୁମନ ବାଟକୁ ଚାଲିଆସିଲେ । ମୁଁ କାହାକୁ କିଛି ନ କହି ହର୍ଷୋତ୍‌ଫୁଲ୍ଲ ଚିତ୍ତରେ ବିଦ୍ୟାଳୟ କାର୍ଯ୍ୟରେ ମନଧ୍ୟାନ ଦେଲି । ବହୁଦିନର ଆକାଂକ୍ଷା ପୂରଣ ହେଲା । ମୋର ପ୍ରାଣପ୍ରିୟା ଧର୍ମପତ୍ନୀକୁ କେଉଁ ଭାଷାରେ କିପରି ବଧେଇ ଜଣେଇବି ଜାଣିପାରିଲି ନାହିଁ । ସେ ମୋ ଜୀବନର ପଥପ୍ରଦର୍ଶିକା । ତାଙ୍କ ବଳରେ ଏ ପର୍ଯ୍ୟନ୍ତ ସୁରୁଖୁରୁରେ ଚାଲିଆସିଛି । ଏଠାରେ କି ପ୍ରକାର ଦୈବଶକ୍ତି କାର୍ଯ୍ୟକଲା ସେ ପୂର୍ବରୁ ଜାଣିପାରିଥିଲେ । ତାଙ୍କଠାରେ ଯେଉଁ ଦୈବଶକ୍ତି ଥିଲା ମୁଁ ତାର ଉଚିତ ବିନିଯୋଗ କରିପାରି ନଥିଲି । କାଳର କୁଟିଳ ଗତି ।

## ମୋର ମାନ ରହିଗଲା :

ଶିକ୍ଷକମାନଙ୍କର ସମ୍ମାନ ମୋ ପ୍ରତି ବୃଦ୍ଧି ପାଇବାରେ ଲାଗିଲା । ଏଥିରେ ମୋର କିଛି ବାହାଦୁରୀ ନଥିଲା । ଏ ସବୁ ବନବାସିନୀ ଦେବୀଙ୍କର ଉଗ୍ରତାରାଙ୍କ ଉପରେ ଭକ୍ତିର ପ୍ରଭାବ । ଶିକ୍ଷକମାନଙ୍କ ଭିତରେ କର୍ମପ୍ରବଣତା ବୃଦ୍ଧି ପାଇଲା । କାହା ଆଗରେ ମୁଁ ବଡ଼େଇ ଦେଖେଇଲି ନାହିଁ । ବିଦ୍ୟାଳୟ ନୂତନ ଉନ୍ମାଦନାରେ ଅଗ୍ରଗତି କରିବାରେ ଲାଗିଲା । ମୋ ଦେହରେ ଶତସିଂହର ବଳ ଦେଖାଦେଲା । ମୋ ପେଟରୋଗ ପଛରେ ରହିଲା । ଉଠିଲା ଉତ୍ସାହ, ଉଠିଲା ପ୍ରେରଣା ।

ବିଦ୍ୟାଳୟରେ ଶିକ୍ଷାର ମାନ ଏବଂ ଶୃଙ୍ଖଳା ରକ୍ଷାକରିବା ପାଇଁ କେତେକେତେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥିଲି । ତାହାଦ୍ୱାରା ଛାତ୍ରଛାତ୍ରୀମାନଙ୍କର ଚରିତ୍ରରେ ଏକ ଉଲ୍ଲେଖନୀୟ ପରିବର୍ତ୍ତନ ସଂଘଟିତ ହୋଇଥିଲା । ଦୋଷୀ ଛାତ୍ରମାନଙ୍କୁ ଠିକ୍ ପନ୍ଥାରେ ପରିଚାଳିତ କରିବା ପାଇଁ ଓ ଅନ୍ୟ ଛାତ୍ରଛାତ୍ରୀମାନେ ଭବିଷ୍ୟତରେ ସୁମଣିଷ ହେବାପାଇଁ ସେମାନଙ୍କୁ ଦଣ୍ଡ ମୁଁ ଦେଉଥିଲି । ଏହାଦ୍ୱାରା ବିଦ୍ୟାଳୟର ତଥା ଛାତ୍ରସମାଜର ଅଶେଷ କଲ୍ୟାଣ ସାଧିତ ହୋଇପାରିଛି । ମୋତେ କିଏ ଭଲ ପାଉ ବା ଭଲ ନପାଉ ମୁଁ କିନ୍ତୁ କର୍ତ୍ତବ୍ୟ କରିଚାଲିଥାଏ ।

## ଅପରାଧୀକୁ ଦଣ୍ଡ ଦେବାର ଧାରା :

ଥରେ ବାର୍ଷିକ ପରୀକ୍ଷାରେ ଦଶମ ଶ୍ରେଣୀର କୌଣସି ଜଣେ ଛାତ୍ର ଅସଦୁପାୟ ଅବଲମ୍ବନ କରି କେତେକ ପ୍ରଶ୍ନର ଉତ୍ତର ଘରେ ଲେଖିନେଇ ପରୀକ୍ଷା ଖାତାରେ ଯୋଡ଼ି ଦେଲା । ଉତ୍ତରଗୁଡ଼ିକ ଦୁଇ କି ତିନି ପୃଷ୍ଠାରେ ସୀମିତ ଥିଲା । ସମ୍ପୃକ୍ତ ପରୀକ୍ଷକ ଶିକ୍ଷକ ଖାତାଟିକୁ ପ୍ରଧାନଶିକ୍ଷକଙ୍କ ନଜରକୁ ଆଣିଲେ । ଶିକ୍ଷକମାନେ ବି ଜାଣିଲେ । ଏହା ଏକ ଗୁରୁତର ଅପରାଧ ବୋଲି ବିବେଚିତ ହେଲା । ଶିକ୍ଷକମାନଙ୍କ ସମ୍ମୁଖରେ କି ପ୍ରକାର ଦଣ୍ଡ ସେ ପିଲାକୁ ଦିଆଯିବ ନିଷ୍ପତ୍ତି ହେଲା । ୧୯୭୧ ମସିହାର କଥା । କୋଡ଼ିଏ ଟଙ୍କାର ମୂଲ୍ୟ ଖୁବ୍ ବେଶି ଥିଲା । କିନ୍ତୁ ପିଲାର ଏପରି ଆଚରଣ ହେତୁ ତାକୁ କୋଡ଼ିଏ ଟଙ୍କା ଜୋରିମାନା କରାଗଲା । ପିଲାର ଅଭିଭାବକ ଗ୍ରାମର ଯଦିଓ ଏକ ପ୍ରତିପତ୍ତିଶାଳୀ ବ୍ୟକ୍ତି, ଧାର୍ଯ୍ୟ ଜୋରିମାନା ଦେବାକୁ ବାଧ୍ୟ ହୋଇଥିଲେ । ବିଦ୍ୟାଳୟର ଅନ୍ୟ ପିଲାମାନଙ୍କୁ ନ୍ୟାୟ ମାର୍ଗକୁ ଆଣିବା ପାଇଁ ଏପରି ଦଣ୍ଡ ଦିଆଯାଇଥିଲା । ଏହି କାର୍ଯ୍ୟାନୁଷ୍ଠାନ ସକାଶେ ମୁଁ କେତେକଙ୍କର ଶତ୍ରୁ ପାଲଟିଗଲି ।

ଅନ୍ୟ ଗୋଟିଏ ଘଟଣା ଦକ୍ଷିଣ ଦିଗରେ ଏକ ପାଖ ଗ୍ରାମର ଦଶମ ଶ୍ରେଣୀର ଗୋଟିଏ ପିଲା ବିଦ୍ୟାଳୟର ଖେଳ ଶିକ୍ଷକଙ୍କୁ ଡ୍ରିଲ୍ କ୍ଲାସରେ ହାତଉଠେଇ ବେଜ୍ଜିତ କଲା । ଏ ତ ବଡ଼ ଅପରାଧ । ଶିକ୍ଷକ ଏ ଘଟଣା ପ୍ରଧାନଶିକ୍ଷକଙ୍କ ଦୃଷ୍ଟିଗୋଚର କଲେ । ସବୁ ଶିକ୍ଷକମାନେ ବସି ନିଷ୍ପତ୍ତି କଲେ ସେ ପିଲାକୁ ବିଦ୍ୟାଳୟରୁ ବାଧ୍ୟତାମୂଳକ ଟ୍ରାନ୍ସଫର ସାର୍ଟିଫିକେଟ୍ ଦେଇ ବାହାର କରିଦେବାକୁ । ମୋର ମତ ଅନ୍ୟ ପ୍ରକାର ଥିଲା । ପିଲାଙ୍କୁ ଆଣିଥାଏ ମଣିଷ କରିବାପାଇଁ । ଯଦି ତାର ଆଚରଣ ସଂଶୋଧନ ନ କରାଯିବ ତେବେ ସେ ଏଠାରୁ ଚାଲିଗଲେ ମଧ୍ୟ ସେ ଶିକ୍ଷକଙ୍କ ପ୍ରତି କେବଳ ନୁହେଁ ଅନ୍ୟ ଶିକ୍ଷକଙ୍କ ପ୍ରତି ସେହିପରି ଆଚରଣ ବାରମ୍ବାର ପ୍ରଦର୍ଶନ କରିବ । ଗୋଟିଏ କଥା ସେ ପିଲାକୁ ତୁନିକରି କହିଲି, ଯଦି ତୁମର ଆଚରଣ ଶିକ୍ଷକବନ୍ଧୁମାନଙ୍କୁ ସନ୍ତୋଷ ପ୍ରଦାନ କରିବ ତେବେ ତୁମକୁ ଦୋଷରୁ ମୁକ୍ତ କରାଯିବ । ଉକ୍ତ ପିଲାଟି ସବୁପିଲାଙ୍କ ଉପସ୍ଥିତିରେ ବାରମ୍ବାର ଗୋଡ଼ ତଳେ ପଡ଼ି କ୍ଷମା ପ୍ରାର୍ଥନା ମାଗୁଥାଏ । ପିଲା ତ ସବୁବେଳେ ପିଲା, ସବୁ ପିଲା ବି ସମାନ ନୁହଁନ୍ତି । ପିଲାମାନଙ୍କ ଚରିତ୍ରକୁ ଶିକ୍ଷକମାନେ ସଂଶୋଧନ କରନ୍ତି । ତେଣୁ ତାକୁ ସେଦିନ ସମସ୍ତେ କ୍ଷମା ପ୍ରଦାନ କଲେ କିଛି ଜୋରିମାନା ଆଦାୟ କରି । ସେହିଦନିଠାରୁ ସେ ପିଲାଟିର ଚରିତ୍ରରେ ଉଲ୍ଲେଖନୀୟ ପରିବର୍ତ୍ତନ ଦେଖାଦେଲା । ଆଉ ଜଣେ ମୁସଲମାନ ପିଲାର ଚରିତ୍ର

ବି ଏହିପରି ଭାବରେ ସଂଶୋଧନ କରାଯାଇପାରିଥିଲା । ପିଲାକୁ ସ୍କୁଲରୁ ବହିଷ୍କାର କରିଦେଲେ ଯେ ସେ ନିର୍ମଳ ହୋଇଯିବ ତା' ନୁହେଁ, ସେହି ଅନୁଷ୍ଠାନରେ ରହିବାର ସୁଯୋଗ ଦେଇ ତାର ଆଚରଣକୁ ପରିବର୍ତ୍ତନ କରାଯିବା ଉଚିତ ! ଏହିପରି ବହୁ ପିଲା ସତ୍‌ପଥକୁ ଆସିଛନ୍ତି ଏବଂ ଜୀବନରେ ଉନ୍ନତି କରିଛନ୍ତି । ଦୁଷ୍ଟ ପିଲାକୁ ସତ୍‌ପଥକୁ ଆଣିବା ପାଇଁ ଜୀବନରେ ନାନା ଉପାୟ ଅବଲମ୍ବନ କରିଛି ।

"ଦଣ୍ଡିବା ଶକ୍ତି ଯାର ଥାଇ

ସେ ପୁଣି କ୍ଷମା ଆଚରଇ । " (ଭାଗବତବାଣୀ)

## ମାତୃଭାଷାରେ ନୋଟିସ୍ ଲେଖା:

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିବାବେଳେ ୧୯୫୪ ମସିହାରେ ଓଡ଼ିଆଭାଷାକୁ ଓଡ଼ିଶାର କୋର୍ଟ, କଚେରି, ଅଫିସମାନଙ୍କରେ ପ୍ରଚଳନ କରିବା ପାଇଁ ନିୟମ କରିଦେଲେ । ସେତେବେଳେ ଖୋର୍ଦ୍ଧା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥାଆନ୍ତି ଦିବ୍ୟସିଂହବାବୁ । ସେ ଛାତ୍ରମାନଙ୍କର ନୋଟିସ ବହିରେ ଓଡ଼ିଆ ଭାଷାରେ ନୋଟିସ୍ ଦେଲେ । ସେହି ସମୟରୁ ଦରଖାସ୍ତ ଓଡ଼ିଆ ଭାଷାରେ ଆହ୍ୱାନ କଲେ । ମୋର ବି ମନେ ଅଛି ମୁଁ ୧୯୪୪ ମସିହାରେ ପିଚୁକୁଳି ମାଇନର ସ୍କୁଲରେ ପ୍ରଧାନଶିକ୍ଷକ ଥିବାବେଳେ ଇଂରାଜୀ ଭାଷାରେ ନୋଟିସ ପ୍ରଦାନ କରୁଥିଲି । ଏକଥା ସତ ଯେ ଇଂରାଜୀ ଭାଷା ପ୍ରତି ଆମ୍ଭମାନଙ୍କର ମୋହ ଥିଲା । ଓଡ଼ିଆ ଆମର ମାତୃଭାଷା । ମାତୃଭାଷାର ଉନ୍ନତି କଥା ଚିନ୍ତା କଲାବେଳେ ଆମ୍ଭେମାନେ ସର୍ବଦା ଶୁଦ୍ଧ ଓଡ଼ିଆ କହିବା ଓ ଲେଖିବା ଉଚିତ । ବନ୍ଧୁ ଓ ପରିଜନମାନଙ୍କ ପାଖକୁ ଓଡ଼ିଆରେ ଚିଠି ଲେଖିବାକୁ ପଡ଼ିବ । ବିବାହ, ବ୍ରତ ପ୍ରଭୃତି ନିମନ୍ତ୍ରଣପତ୍ର ଓଡ଼ିଆରେ ଦେବାକୁ ପଡ଼ିବ । ଆମେ ଯଦି ଆମ ଆଡୁ ଓଡ଼ିଆ ଭାଷା ବ୍ୟବହାର ନ କରିବା ତେବେ ସରକାରକୁ ଦୋଷ ଦେବା କାହିଁକି ? ଅବଶ୍ୟ ଏହାଦ୍ୱାରା ପିଲାଙ୍କର ଇଂରାଜୀ ଜ୍ଞାନ ଟିକିଏ କମିଯିବ । ଏ ପରିସ୍ଥିତିରେ ମୁଁ ଦିବ୍ୟସିଂହବାବୁଙ୍କ ପନ୍ଥା ଅବଲମ୍ବନ କଲି । ପିଲାମାନଙ୍କର ଓଡ଼ିଆ ଜ୍ଞାନ ବଢ଼ିଲା । ମାତୃଭାଷାରେ ଶକ୍ତିଶାଳୀ ହେଲେ ଓଡ଼ିଆଜାତି ଯେ ଅଗ୍ରଗତି କରିବ ଏଥିରେ ସନ୍ଦେହ ନାହିଁ ।

ତେଣୁ ମେହେର କବି କହିଛନ୍ତି —

"ମାତୃଭୂମି ମାତୃଭାଷାର ମମତା ଯାହୃଦେ ଜନମି ନାହିଁ

ତାକୁ ଯଦି ଜ୍ଞାନୀ ଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ।"

ଓଡ଼ିଆ ଭାଷା ଏକ ସମୃଦ୍ଧ ପୁରାତନ ଭାଷା । ଏହା କିପରି ସମଗ୍ର ଭାରତବର୍ଷରେ ପ୍ରତିଷ୍ଠା ଲାଭ କରିବ ଆମ୍ଭମାନଙ୍କର ଚେଷ୍ଟା ହେବା ଉଚିତ । ଆମ୍ଭେମାନେ ତାର ଉପଯୁକ୍ତ ଦାୟାଦ ହେବା ଏବଂ ଦିଲ୍ଲୀ ଦରବାରରେ ଏହାକୁ ଆଗ ବେଞ୍ଚରେ ସ୍ଥାନ ଦେବାକୁ ସାମୂହିକ ଚେଷ୍ଟା କରିବା ଆବଶ୍ୟକ । ବହୁବାର ମୁଁ ଶିକ୍ଷକ ସଭାରେ କହିଥାଏ ଇଂରାଜୀ ଆନ୍ତର୍ଜାତିକ ଭାଷା ହେଲେ ମଧ ମାତୃଭାଷା ଓଡ଼ିଆର ଉନ୍ନତି ଆମର କାମ୍ୟ ହେବା ଉଚିତ । ମୋ କଥାକୁ ବନ୍ଧୁମାନେ ପସନ୍ଦ କରନ୍ତି ।

## ବନବାସିନୀ ଦେବୀଙ୍କ ସହ ଶେଷ ତିନିବର୍ଷ :

ମୋ ମନ ଭିତରେ ସର୍ବଦା ଚିନ୍ତା ରହିଲା ବିଦ୍ୟାଳୟ ଓ ଛାତ୍ରଛାତ୍ରୀମାନଙ୍କର ସାମୂହିକ ଉନ୍ନତି । କାୟମନୋବାକ୍ୟରେ ଶୟନେ, ସ୍ୱପନେ, ଜାଗରଣେ କେବଳ ବିଦ୍ୟାଳୟ, ବିଦ୍ୟାଳୟ, ବିଦ୍ୟାଳୟ । ମୁଁ ଘରର ହାନିଲାଭ କିଛି ବୁଝୁନଥିଲି । ସ୍ୱଳ୍ପ ଦରମା, ବୋର୍ଡ ପରୀକ୍ଷାଖାତା ଦେଖାରୁ ମିଳୁଥିବା ପଇସା ଓ ପୁସ୍ତକ ବିକ୍ରୟରୁ ଯେଉଁ କିଛି ପାଉଥିଲି ସମସ୍ତ ଧନ ସ୍ତ୍ରୀଙ୍କ ପାଖେ ଦାଖଲ କରୁଥିଲି । ସ୍ତ୍ରୀଙ୍କର ଘରକରଣା ବୁଦ୍ଧି ପ୍ରଖର ଥିଲା । ସେ ସ୍ୱାମୀ ସୋହାଗିନୀ, ସ୍ନେହମୟୀ ଜନନୀ, ଆଦର୍ଶ ଗୃହିଣୀ ଓ ଉତ୍ତମ ପରାମର୍ଶଦାୟିନୀ । ମୁଁ ଯେତେବେଳେ କୌଣସି କାର୍ଯ୍ୟରେ ଆଗେଇବାକୁ ଭୟ କରୁଥିଲି ସେତେବେଳେ ସେ ମୋତେ ସାହସ ପ୍ରଦାନ କରୁଥିଲେ । କେତେକ ନୂତନ କଥା କହି ଓ କରି ସେ ମୋତେ ଚମକାଇ ଦେଉଥିଲେ । ମୋର ସ୍ଥାୟୀ ହେଡମାଷ୍ଟର ପଦ ତାଙ୍କ ଯୋଗୁଁ ସମ୍ଭବ ହୋଇ ପାରିଥିଲା । ସେ ପ୍ରତିଦିନ ସ୍ତୋତ୍ର ପାଠ କରୁଥିଲେ । ସେ ମୋ ଘରକୁ ଆସିବା ପରେ ପରେ ମୋର ସମସ୍ତ ପ୍ରଗତି ସାଧିତ ହୋଇଥିଲା । ମୁଁ ଯେତେବେଳେ ଏସବୁ ଜାଣିଲି ସେ ମୋ'ଠାରୁ ଦୂରେଇ ହୋଇଗଲେ । ତାଙ୍କୁ କିଛି ସୁଖ ସୁବିଧା ଦେଇ ପାରିନଥିଲି କି ତାଙ୍କ ଠାରୁ ଅଧିକ କିଛି ହାସଲ କରିପାରିନଥିଲି । ମୁଁ ତାଙ୍କର ମହିମା ଜାଣିଲାବେଳକୁ ସେ ଆରପାରିକି ଚାଲିଯାଇଥିଲେ । ତାଙ୍କଠାରେ କିଛି ଅଦ୍ଭୁତ ଗୁଣ ଥିଲା ବୋଲି ବିଳମ୍ବରେ ଜାଣିଲି ।

ନିରାକାରପୁର ନାମଟି ମୋ ପାଇଁ ପୂର୍ବ ପରିଚିତ ହେଲେହେଁ ସ୍ଥାନଟି ମୋ ପାଇଁ ନୂତନ ଥିଲା । ମୋର ତ ଚାରି ପୁଅ, ଦୁଇ ଝିଅ ଥିଲେ । ମା ସେଠାରେ ତିନି ବର୍ଷ ରହିଥିଲେ ଓ ଧର୍ମପତ୍ନୀ ସାତବର୍ଷ ରହିଥିଲେ । ଗୋଟିଏ ଭଣଜା ଓ ଭ୍ରାତୃଷ୍ପୁତ୍ର ମୋ ସାଙ୍ଗେ ଥିଲେ । ଏତେଗୁଡ଼ିଏ ଲୋକଙ୍କୁ ନେଇ ପରିବାର ଚଳାଇବା କଷ୍ଟକର ବ୍ୟାପାର ଥିଲା । ସେଠାରେ ପରିସ୍ଥିତି ସହ ଖାପଖୁଆଇ ଅପେକ୍ଷାକୃତ ଅଶିକ୍ଷିତ, ଅଣକୁଶଳୀ ଓ

କଠୋର ଜାତିଭେଦ ମାନୁଥିବା ବ୍ୟକ୍ତିମାନଙ୍କ ସହ ଜୀବନଯାପନ କରିବା ଦୁରୂହ ବ୍ୟାପାର ଥିଲା । ଅପରାହ୍ନ ଚାରିଘଣ୍ଟା ପରେ ବିଦ୍ୟାଳୟ ବନ୍ଦ ହୋଇଗଲେ ଶିକ୍ଷକମାନେ ଯେ ଯାହା ଗୃହକୁ ଗମନ କରୁଥିଲେ । ମୁଁ କିନ୍ତୁ ସେହି ନିର୍ଜନ, ଆଲୋକବିହୀନ ରୁକ୍ଷ ପ୍ରାନ୍ତରରେ ଏକାକୀ ସମୟ ଅତିବାହିତ କରୁଥିଲି । ପ୍ରଥମ ତିନି ଚାରିବର୍ଷ ପୁରୀ ସି.ଆଇ. ଅଫିସକୁ ଦୌଡ଼ି ଦୌଡ଼ି ଅଧାପ୍ରାଣ ହୋଇଯାଇଥିଲି । ପୂର୍ବରେ ଘରୋଇ ସ୍କୁଲରେ ଥିବାରୁ ସରକାରୀ ଟ୍ରେଜେରିରୁ ଟଙ୍କା ଉଠାଇବାକୁ କାଇଦା ଜଣାନଥିଲା । ତେଣୁ ଦେଅଣ ନେଅଣ କରିବାରେ କାନ୍ଦିବାକୁ ପଡୁଥିଲା । ଏବେ ୧୯୭୩ ଠାରୁ ହଇରାଣରୁ ରକ୍ଷା ପାଇଗଲି ।

## ଲୋକଚରିତ୍ର :

ଅପରପକ୍ଷରେ ନିରାକାରପୁର ସ୍କୁଲ ଘର ଅବସ୍ଥା ଅତି କଦର୍ଯ୍ୟ ଥିଲା । ଯାହା ବା ପଢ଼ାପଢ଼ି ଚାଲୁଥିଲା ମୁଖ୍ୟ ଚାଳଛପର ଗୃହ ଅଗ୍ନିଦଗ୍ଧ ହୋଇଯିବାପରେ ଅବସ୍ଥା ଗାଇଲେ ଶେଷ ହେବନାହିଁ । ଲୋକମାନଙ୍କଠାରେ ସହଯୋଗର ଅଭାବ ପରିଲକ୍ଷିତ ହେଉଥିଲା । କେତେକ ଅଭିଭାବକ ସୁବିଧାବାଦୀ, ଅଭିମାନୀ, ଆତ୍ମକୈନ୍ଦ୍ରିକ ଥିଲେ । ଅସଲ ସମୟରେ ସେମାନେ ଦୂରେଇ ହୋଇଯିବେ । ଅନ୍ୟମାନେ ବିଦ୍ୟାଶିକ୍ଷାରେ ଅନଗ୍ରସର ତେଣୁ ବାକ୍‌ଯୁଦ୍ଧପାଇଁ ପ୍ରସ୍ତୁତ । ବିଦ୍ୟାଳୟର ହାନିଲାଭରେ ସେମାନଙ୍କର କିଛି ଯାଏଆସେ ନାହିଁ । ଖୋରଧାରେ ଜାତିଭେଦ ପ୍ରଥା ଲିଭିଲିଭି ଆସୁଥିବାବେଳେ ଏଠାରେ ଗାଁ ଗଣ୍ଡାମାନଙ୍କରେ ଜାତିଭେଦ ଉତ୍କଟତର ଥିଲା । ତେଣୁ ଆମେ ଉଭୟ ଏଠାରେ କ୍ଷୁଦ୍ର ପରିସରରେ ଚଳିବା ମୁସ୍କିଲ ହୋଇପଡ଼ିଥିଲା । ଉଚ୍ଚ ଜାତିମାନେ ଛୋଟଜାତିକୁ ଘୃଣା କରିବା ଦ୍ୱାରା ଓ ବିଦ୍ୟାଳୟରେ ଏ ମନୋଭାବ ଭର୍ତ୍ତି କରିବା ଦ୍ୱାରା ମୋ ପାଇଁ ସମସ୍ୟା ସୃଷ୍ଟିକରି ଦେଲେ । ତଥାପି ମାଡ଼ିମକଚି ମାନ ଅପମାନ ସହ୍ୟକରି ସାହସର ସହିତ ସମସ୍ୟା ସମାଧାନ କରିବାରେ ସଫଳତା ହାସଲ କଲି ।

ବିଦ୍ୟାଳୟ ହତାଟି ଚାରିପାଖେ ଖୋଲା । ପୂର୍ବଦିଗରେ ପ୍ରାକୃତିକ କଣ୍ଟାବାଡ଼ଟିଏ ଗଢ଼ି ଉଠିଥିଲା । ଉତ୍ତର ଦିଗରେ ଯେଉଁ କେତେଗୁଡ଼ିଏ ଗୃହ ଅବସ୍ଥିତ ଥିଲା ତାର ଦ୍ୱାରଗୁଡ଼ିକ ସ୍କୁଲ ଆଡ଼କୁ ଖୋଲାଥିବାରୁ ସେ ଗୃହର ଲୋକମାନେ ସ୍କୁଲ ପଡ଼ିଆରେ ମଳମୂତ୍ର ତ୍ୟାଗ କରୁଥିଲେ । ବିଦ୍ୟାଳୟ କାର୍ଯ୍ୟ ଚାଲିଥିବାବେଳେ ସ୍କୁଲ ଭିତରେ ବଳଦ ଗାଡ଼ି, ମଟର ସାଇକେଲ, ସାଇକେଲ, ସ୍କୁଟର ଯିବାଆସିବା କରିବା ଦ୍ୱାରା ଅଧାପନା କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି ହେଉଥିଲା । ପ୍ରଧାନ ଶିକ୍ଷକଙ୍କ ବାସଗୃହ ସୁରକ୍ଷିତ ନଥିଲା । ବିଜୁଳି ଆଲୁଅର

ସ୍ୱପ୍ନ ଥିଲା । ଚଳଣିରେ ୧୫ ବର୍ଷ ତଳକୁ ଖସିଗଲି । ପୁନର୍ମୂଷିକ ସଦୃଶ୍ୟ ପୁନଃ ଡିବି, ଲଣ୍ଡନର ସହାୟତା ଲୋଡ଼ିଲି । ୧୯୭୪ ମସିହାରେ ବିଦ୍ୟାଳୟରେ ରଜତ ଜୟନ୍ତୀ ଉପଲକ୍ଷେ 'କୌମୁଦୀ' ର ଏକ ବିଶେଷ ସଂଖ୍ୟା ପ୍ରକାଶ ପାଇଲା । ବିଦ୍ୟାଳୟ ପରିଚାଳନା ସମିତିରେ ଯେଉଁମାନେ ସଭ୍ୟ ରହିଥିଲେ ସେମାନଙ୍କଠାରେ ସେବା ମନୋଭାବର ଘୋର ଅଭାବ ଥିଲା । ବିଦ୍ୟାଳୟର ସାମୂହିକ ପ୍ରଗତି ଚିନ୍ତା କରିବା ସେମାନଙ୍କ ପାଖେ ନଥିଲା । ଯାହା ପ୍ରଧାନଶିକ୍ଷକ ଚିନ୍ତାକରିବେ ତାହାହିଁ କାର୍ଯ୍ୟକାରୀ ହେଉଥିଲା ।

ମୋ ସ୍ତ୍ରୀଙ୍କର ଜମିବାଡ଼ି ପରିଚାଳନା ଉପରେ ଜ୍ଞାନ ଥିଲା । ତେଣୁ ବହୁ ସମୟରେ ସେ ଗ୍ରାମକୁ ଯାଇ ନିଜ ହାତରେ ଜମିବାଡ଼ି ସୁପରିଚାଳନା କରୁଥିଲେ । ବନବାସିନୀ ଦେବୀ ମିଷ୍ଟଭାଷିଣୀ ଥିଲେ । ସ୍ଥାନୀୟ କଲେଜର ଅଧ୍ୟାପକମାନଙ୍କ ଅର୍ଦ୍ଧାଙ୍ଗିନୀମାନଙ୍କ ଗହଣରେ ସେ ଅତିଶୟ ପ୍ରିୟ ଥିଲେ ଏବଂ ପାଣ୍ଡବପାଟଣା ଓ ନିରାକାରପୁର ସାହିର ସୁଖଦୁଃଖରେ ସେ ଭାଗୀ ହେଉଥିଲେ । ଏହିପରି ଭାବରେ ନିରାକାରପୁର ଜୀବନକୁ ଉଭୟ ସ୍ୱାମୀ-ସ୍ତ୍ରୀ ଆଦରି ନେଲୁ । ଏଠାରେ ରହଣି ସମୟରେ ବନବାସିନୀଦେବୀ ମୋ' ସହିତ ପୁରୀ, କୋଣାର୍କ, ଭୁବନେଶ୍ୱର, ନନ୍ଦନକାନନ, ଭଗବତୀ ପୀଠ, ଚିଲିକା ପ୍ରଭୃତି ଦର୍ଶନୀୟ ଭୌଗୋଳିକ ତଥା ଐତିହାସିକ ସ୍ଥାନମାନ ପରିଭ୍ରମଣ କରି ପରମ ସନ୍ତୋଷ ଲାଭ କରିଥିଲେ । ସେ ବହୁବାର ମା' ଉଗ୍ରତାରାଙ୍କ ନିକଟକୁ ଯାଇ ତାଙ୍କର ମାନସିକ ମାଳଣା କରନ୍ତି ।

ବିଦ୍ୟାଳୟ ସ୍ଥାନାଭାବ ସତ୍ତ୍ୱେ ଛାତ୍ରଛାତ୍ରୀମାନଙ୍କୁ ବିଜ୍ଞାନଗୃହ ଓ ଲାଇବ୍ରେରୀ ଗୃହ ବାରଣ୍ଡାରେ ଏବଂ ଆମ୍ରବୃକ୍ଷ ଛାୟାରେ ଶିକ୍ଷାଦାନ କାର୍ଯ୍ୟ ସମାପନ କଲେ ମଧ ମାଟ୍ରିକ୍ ପରୀକ୍ଷାରେ ଉତ୍ତମଫଳ ପ୍ରଦର୍ଶନ କରାଉଥିଲି । ଏପରିକି ଉପରିସ୍ଥ କର୍ମକର୍ତ୍ତାଗଣ ମୋର ଭୂରିଭୂରି ପ୍ରଶଂସା କରୁଥିଲେ । ସି.ଆଇ. ଓ ଡି.ପି.ଆଇ. ଅଫିସରେ ମୋର ଭଲ ନାମ ଥିଲା । ମୁଁ ଟିକିଏ ଚେଷ୍ଟା କରିଥିଲେ ଆଉ ପାଇବା କିଛି ସମ୍ଭବ ହୋଇଥାଆନ୍ତା । ମାତ୍ର ମୋର ସେ ଗୁଣର ଘୋର ଅଭାବ ଥିଲା ।

ଗୀତାରେ ବ୍ୟକ୍ତ କରାଯାଇଛି—କର୍ମେଣବାଧିକାରସ୍ତେ ମା' ଫଳେଷୁ କଦାଚନ । କାମ କରିଯାଅ, ଫଳ ପାଇଁ ଆଶା କରନାହିଁ । ମୋ ଜୀବନରେ ତାହାହିଁ ଘଟିଛି । ଯେତେ ଯେଉଁଠି କାମ କରିଛି ମୋତେ କେହି କିଛି ଦେଇନାହିଁ । ଏଥିପାଇଁ ମୋର ଅନମନୀୟତା ଦାୟୀ ବୋଲି ମନେକରେ ।

## ଇନ୍ଦିରାଗାନ୍ଧୀଙ୍କ ଶାସନର ନମୁନା :

୧୯୭୫ ମସିହା ମଧ୍ୟଭାଗରେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କଲେ । ଆଲ୍ଲାବାଦ ନିର୍ବାଚନମଣ୍ଡଳୀରୁ ତାଙ୍କ ନିର୍ବାଚନ ଅସିଦ୍ଧ ହେଲା । କିନ୍ତୁ ସେ ସଭ୍ୟପଦରୁ ଓହରି ନଯାଇ କଂଗ୍ରେସୀ ଖୁସାମଦିଆଙ୍କ ଦ୍ୱାରା ପ୍ରଭାବିତ ହୋଇ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ । ସେତେବେଳେ ବାହାରୁ କିଛି ବିପଦ ନଥିଲା । ଏପରି ପରିସ୍ଥିତିରେ ଦେଶର କେତେକ ବଡ଼ ବଡ଼ ସ୍ୱାଧୀନଚେତା କଂଗ୍ରେସକର୍ମୀ ଜୟପ୍ରକାଶଙ୍କ ସଙ୍ଗେ ଯୋଗଦେଇ ଜରୁରୀ ପରିସ୍ଥିତି ବିରୁଦ୍ଧରେ ଆନ୍ଦୋଳନ ଆରମ୍ଭ କରିଦେଲେ । ଦେଶସାରା ପ୍ରତିରୋଧର ହାଓ୍ୱା ପ୍ରବାହିତ ହେଲା । ଓଡ଼ିଶାରେ ସେତେବେଳେ ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କ ନିର୍ଦ୍ଦେଶରେ ଶ୍ରୀ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ପ୍ରଭୃତି ବିରୋଧୀଦଳର ବହୁନେତା ଓ ଜାତୀୟବାଦୀ ନେତା ଜେଲ ଭିତରେ ଆବଦ୍ଧ ହେଲେ । ଏହିପରି ସଙ୍କଟ ପରିସ୍ଥିତି ଏକ ବର୍ଷରୁ ଊର୍ଦ୍ଧ୍ୱକାଳ ଦେଶରେ ଲାଗିରହିଲା । ଦେଶର ସ୍ୱାଧୀନତାପିପାସୁ ଜନଗଣ ଅତିଷ୍ଠ ହୋଇପଡ଼ିଲେ । ଲୋକଙ୍କର ବ୍ୟକ୍ତିସ୍ୱାଧୀନତା ଲୋପ ପାଇଲା । ଜରୁରୀ ପରିସ୍ଥିତିର କାରଣ କେହି ଜାଣିପାରିଲେ ନାହିଁ । ଇନ୍ଦିରାଗାନ୍ଧୀଙ୍କ କନିଷ୍ଠ ପୁତ୍ର ସଞ୍ଜୟ ଗାନ୍ଧୀଙ୍କର କାର୍ଯ୍ୟକଳାପ ଅସହ୍ୟ ହେଲା । ଏତେବେଳକୁ ୧୯୭୨ ମସିହାରେ ଚମ୍ବଲ ଉପତ୍ୟକାରେ ଡାକୁମାନଙ୍କୁ ଠିକ୍ ବାଟକୁ ଆଣି ଖଲାସ କରାଇ ଦେଇଥିବାରୁ ଜୟପ୍ରକାଶ ନାରାୟଣ ସାରା ଭାରତରେ ପ୍ରସିଦ୍ଧି ଲାଭ କରିଥାଆନ୍ତି । ସେହି ଡାକୁମାନେ ନୂତନ ଜୀବନ କଟାଇଲେ ଏବଂ ସେମାନଙ୍କ ମଧ୍ୟରୁ ପଞ୍ଚମ ସିଂହ ଈଶ୍ୱରୀୟ ବିଶ୍ୱବିଦ୍ୟାଳୟରେ ବରିଷ୍ଠ ସଭ୍ୟ ହେଲେ । ତାଙ୍କୁ ବାଲ୍ମିକୀ ଋଷିଙ୍କ ସଙ୍ଗେ ତୁଳନା କରାଯାଉଛି । ସେହି ବିଖ୍ୟାତ ଲୋକନେତା ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ ଗଣ ଆନ୍ଦୋଳନ ଆରମ୍ଭ ହେଲା । ୧୯୭୬ ମସିହା ଶେଷଭାଗରେ ଜରୁରୀ ପରିସ୍ଥିତି ଉଠି ପୁଣି ନିର୍ବାଚନ ପାଇଁ ଘୋଷଣା କରାଗଲା । ନିର୍ବାଚନରେ ଇନ୍ଦିରାଗାନ୍ଧୀ ଶୋଚନୀୟ ଭାବରେ ପରାସ୍ତ ହେଲେ । ଏହା ତାଙ୍କୁ ପ୍ରଚଣ୍ଡ ଧକ୍କାଦେଲା ।

## ଜନତା ଦଳ ଗଠନ :

ମୋରାରଜୀ ଦେଶାଇ କେନ୍ଦ୍ରରେ ପ୍ରଧାନମନ୍ତ୍ରୀ ଆସନ ଗ୍ରହଣ କଲେ । ବିଜୁବାବୁ ଓ ଶ୍ରୀ ରବିରାୟ ଏବଂ ଓଡ଼ିଶାର ଆଉ କେତେଜଣ ତାଙ୍କ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଲେ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କଲେ ଶ୍ରୀ ନୀଳମଣି ରାଉତରାୟ । ସଂଜୀବ ରେଡ଼ି ରାଷ୍ଟ୍ରପତି ଭାବେ ନିର୍ବାଚିତ ହେଲେ । ସମଗ୍ର ଭାରତବର୍ଷରେ ଜନତା ହାୱା ବୋହିଲା । ୧୯୭୭ ମସିହା ପ୍ରାରମ୍ଭରେ ଦେଶର ଜନତା ସରକାର କାର୍ଯ୍ୟଭାର ଗ୍ରହଣ କଲେ । ଦେଶରେ ଏପରି ପରିବର୍ତ୍ତନ ସାଙ୍ଗକୁ ମୋ ପାରିବାରିକ ଜୀବନରେ ବଜ୍ରପାତ ହେଲା । ମୋର ଆକାଂକ୍ଷିତ ସୁନାର ସଂସାର ମୁହୂର୍ତ୍ତକେ ଚୂରମାର ହୋଇଗଲା । ସତେକି ସୁଖ ଲାଭ କରିବା ମୋ ଜୀବନରେ ନାହିଁ । ଦୁଃଖର କରାଳଛାୟା ଘୋଟିଗଲା । ଚତୁର୍ଦ୍ଦିଗ ଅନ୍ଧକାରମୟ, ବୁଦ୍ଧିବାଟ କିଛି ଦୃଶ୍ୟ ହେଲାନାହିଁ ।

## ପ୍ରାଣପ୍ରିୟା ପତ୍ନୀବିୟୋଗ :

୧୯୭୬ ମସିହା ନଭେମ୍ବର ପ୍ରଥମ ସପ୍ତାହରେ ବନବାସିନୀ ଦେବୀ ଗାଁରେ ଲଘୁଧାନ ବେଙ୍ଗଳା ପକେଇ ବସାକୁ ପ୍ରତ୍ୟାବର୍ତ୍ତନ କଲେ । ଗାଁ ମାଇପିଙ୍କୁ କେତେ ଜଣ ପରମାସୀ କରି ଆସିଲେ । ପ୍ରଥମାଷ୍ଟମୀ ପର୍ବ ଆଗରେ ଅଛି । ବଡ଼ପୁଅକୁ ପୋଢୁଆଁ କରିବା ପାଇଁ ଗ୍ରାମରୁ ନୂଆ ଚାଉଳ ଓ ନୂଆ ବିରି ଆସିଲା । ଏସବୁ ଜିନିଷ ଘରେ ସେଇମିତି ପଡ଼ି ରହଛି । ସେ ଗାଁରୁ ଆସି ବେମାରରେ ପଡ଼ିଲେ । ସେ ସାମାନ୍ୟ ବେମାର ବୋଲି ମୁଁ ମନେକଲି । ନିରାକାରପୁର ଡାକ୍ତର ବ୍ରଜ ବଲ୍ଲୀୟାର ସିଂହ ଆପେଣ୍ଡିସାଇଟସ୍ କହି ଚିକିତ୍ସା ଆରମ୍ଭ କଲେ । ତାଙ୍କର ଝାଡ଼ା ଆରମ୍ଭ ହେଲା । ଆଦୌ ଉପଶମ ହେଲାନାହିଁ । ମୁଁ 'ଟା କେଡ଼େ ମୂର୍ଖ । ଏହା ସାଘାଂତିକ ରୋଗ ବୋଲି ଠଉରେଇ ପାରିଲିନାହିଁ । ଆଠ ଦଶଦିନପରେ ଖୋର୍ଦ୍ଧା ଡାକ୍ତରଖାନାକୁ ନେଲି । ସେଠାରେ କେ.ସି.ସାହୁ ନାମକ ଡାକ୍ତର ଖୁବ୍ ନାଁ କରିଥିଲେ । ତାଙ୍କ ଚିକତ୍ସାରେ ପେଟଟା ଫୁଲେଇଗଲା । ମୁଁ ଯାଉଥାଏ ଆସୁଥାଏ । କଥାଟାକୁ ଏତେ ଗୁରୁତର ମନେ କଲିନାହିଁ । ତାଙ୍କ ରୋଗଟା ସାହୁବାବୁ ଜାଣିପାରିଲେ ନାହିଁ । ଅନ୍ୟ ଜଣେ ଡାକ୍ତର ପନ୍ନଗଭୂଷଣ । ତାଙ୍କର ଖୋର୍ଦ୍ଧାରେ ଖୁବ୍ ନାଁ ଥିଲା । ସେ କହିଲେ, ପେଟରେ ଟିଉମର ଅଛି, ଶୀଘ୍ର ଏହିକ୍ଷଣି କଟକ ନିଅ । ନଚେତ୍ ରୋଗିଣୀର ମୃତ୍ୟୁ ଅବଶ୍ୟମ୍ଭାବୀ । ମୁଁ ବନବାସିନୀଙ୍କ ପାଖରେ ସବୁବେଳେ ରହିପାରୁନଥିଲି । ସେଥିପାଇଁ ମୁଁ ସବୁଠାରୁ ବଡ଼ ଦୋଷୀ । ମୋର ଧାରଣା ନଥିଲା ବନବାସିନୀ ଦେବୀ ମୋ ପାଖରୁ ଅନ୍ତର ହୋଇଯିବେ । ମୁଁ ମନରେ ଦୃଢ଼ ଧାରଣା ପୋଷଣ କରିଥିଲି ବନବାସିନୀ ମୋ ପାଖେ ପାଖେ ସର୍ବଦା ରହିବେ । ଜ୍ୟୋତିଷଠାରୁ କିଛି ସୁରାକ ବି ପାଇନଥିଲି । ତାଙ୍କ ମୃତ୍ୟୁ କଥା ମୁଁ କାହିଁକି ଚିନ୍ତା କରିବି ? ତା' ନ ହୋଇଥିଲେ ସ୍କୁଲ କାମ ତେଣିକି ପକେଇ ମୁଁ ତାଙ୍କ ପାଖେ ସର୍ବଦା ରହିଥାନ୍ତି । ମୋର କର୍ମ ବାମ ବୋଲି ମୁଁ ଜାଣିନଥିଲି ।

ସେତେବେଳେ ବୁକୁନାବାବୁ ମୋ ଖୋର୍ଦ୍ଧା ଟାଇଲଘରେ ଅବସ୍ଥାନ କରୁଥିଲେ । ବୁକୁନା ମିଶ୍ର କଟକ ମେଡ଼ିକାଲରେ ଶେଷବର୍ଷର ଛାତ୍ର । ହାଉସମ୍ୟାନସିପ୍ କରୁଥାନ୍ତି । ଗତି ପଟ୍ଟନାୟକଙ୍କ ପୁଅ ଟୁକୁନା ମୋତେ ଖୁବ୍ ସାହସ ଦେଲେ, କହିଲେ, ବୁକୁନା ଭାଇ ଆମକୁ ସାହାଯ୍ୟ କରିବେ । ଟୁକୁନା କଥାରେ ମୁଁ ଭଳିଗଲି । ରାତି ରାତି ରୋଗିଣୀକୁ କଟକ ନେଲି । ଟୁକୁନା ବୁକୁନାବାବୁଙ୍କୁ ଡାକି ଆଣି ରୋଗିଣୀକୁ ଦେଖାଇଲା । ସେଦିନ ବୁକୁନାବାବୁ ଯେତିକି ଆସିଥିଲେ ସେତିକି । ଆଉ ଆଦୌ ଆସିଲେ ନାହିଁ । ରୋଗିଣୀକୁ ନେଇ ମାଟରନିଟ୍ ୱାର୍ଡରେ ଭର୍ତ୍ତି କରାଗଲା । ସଂସାରର ହାଲଚାଲ ସମ୍ବନ୍ଧେ ମୋର କିଛି ଜ୍ଞାନ ନଥିଲା । କିଏ ପଇସା ନେବ, କେତେ ନେବ, କିଏ ବୁଝାବୁଝି କରିବ ଏକଥା ମୋତେ କିଛି ଜଣାନଥିଲା । ମୋ ସହିତ ନକୁଳ, ମୁନା ଥିଲେ । ଅନ୍ୟ କିଏ ଥିଲେ ମୋର ମନେ ନାହିଁ । ତହିଁଆରଦିନ ରୋଗିଣୀକୁ ତିନି ମହଲାରେ ଥିବା ସର୍ଜିକାଲ ୱାଡ଼କୁ ନେଲି । କେଉଁ ଡାକ୍ତରଙ୍କୁ ମୁଁ ହାତ କରିପାରିଲି ନାହିଁ । ବୁକୁନାବାବୁ କି ପ୍ରକାର ମଣିଷ, ତାଙ୍କ ଛାତ୍ରାବାସକୁ କେତେଥର ଗଲି, ତାଙ୍କୁ ଡାକିଲି, ମୋ ପୂର୍ବର କେତେଜଣ ଛାତ୍ରଙ୍କୁ ଡାକିଲି, କେହି ମୁହୂର୍ତ୍ତେ ମାତ୍ର ଆସିଲେ ନାହିଁ । ଟୁକୁନା ବି ଆଉ ଗଲେ ନାହିଁ । ମୋର ଜଣେ ପୁରାତନ ଛାତ୍ର ଅଧ୍ୟାପକ ବିଭୂତି ରାୟକୁ ବହୁବାର ସାକ୍ଷାତ୍ କଲି । ସେ କେବଳ ସାନ୍ତ୍ୱନା ଦେଉଥିଲେ । ମାଡାମଙ୍କର କିଛି ହୋଇନାହିଁ । ସେ ଆଉ ଦୁଇ ଚାରିଦିନ ପରେ ଫେରିଯିବେ । କିନ୍ତୁ ସେ ଅଶରୀରେ ଫେରିଲେ । ବୁକୁନାବାବୁ ଦିନେ ହେଲେ ମୁହଁ ଦେଖେଇଲେ ନାହିଁ । ଧନ୍ୟ ବୁକୁନାବାବୁ, ଧନ୍ୟ ତୁମର ମନୁଷ୍ୟତ୍ୱ । ମୁଁ କେଡ଼େ ହୀନକପାଳିଆ । କେତେଥର ମେଡିକାଲ ଛାତ୍ରାବାସକୁ ଯାଇଛି, କେତେ ନେହୁରା ହୋଇଛି, କୌଣସି ପିଲା କର୍ଣ୍ଣପାତ କରିନାହାନ୍ତି । ସଂସାରଟା କେତେ ସ୍ୱାର୍ଥପର ! ବୋଧହୁଏ ମୋ ଭାଗ୍ୟ ମୋର ବାମ ହେଲା ।

ସର୍ଜିକାଲ ୱାର୍ଡରେ ଥିବାବେଳେ ଖୋର୍ଦ୍ଧା ହାଇସ୍କୁଲର ମୋର ଜଣେ ଛାତ୍ର, ଖୋର୍ଦ୍ଧା ସହରର ବିଶିଷ୍ଟ ଆଇନଜୀବୀଙ୍କ ପୁତ୍ର ସେଠାରେ ଏମ୍.ଏସ. କରୁଥାନ୍ତି । ତାଙ୍କୁ ଦେଖି ମୋର ଦମ୍ଭ ଓ ସାହସ ବଢ଼ିଗଲା ଦଶ ଗୁଣ । ସେ ପିଲା ମୋ ପାଖରେ ଛଅବର୍ଷ ଅଧ୍ୟୟନ କରିଛି । ତାଙ୍କ ବାପା ଜଣେ ବିଶିଷ୍ଟ ଆଇନଜୀବୀ । ଏକଦା ଖୋର୍ଦ୍ଧା ହାଇସ୍କୁଲରେ ଅଧ୍ୟାପନା କରୁଥିଲେ । ମୁଁ ଭାବିଲି ଏଥରକ ରୋଗିଣୀ ଆରୋଗ୍ୟ ଲାଭ କରିବ, ଗୃହକୁ ଫେରିଯିବ । ସେ ଛାତ୍ର ଉପରେ ପରମେଶ୍ୱର ପୁଷ୍ପ ବୃଷ୍ଟି କରିବେ । ଏହି ସମୟରେ ଜଣେ ଡାକ୍ତର ସେହି ରୁମକୁ ଗୋଟିଏ ରୋଗୀ ଦେଖିବାକୁ ଆସିଥିଲେ, ମୁଁ ତାଙ୍କୁ ବହୁ କାକୁତି ମିନତି

କଲି ରୋଗିଣୀକୁ ଟିକିଏ ଦେଖିଯିବା ପାଇଁ, ମାତ୍ର ସେ ଅନ୍ୟ ରୋଗୀ ପାଇଁ ଆବଦ୍ଧ ଥିଲେ । ମୋର ଧାରଣା ନଥିଲା, ଡାକ୍ତର ଯାହାଠାରୁ ପଇସା ନେବେ ତାକୁ କେବଳ ଦେଖିବେ, ଅନ୍ୟକୁ ନୁହେଁ । ସେ ମହାଶୟ ଆଡ଼ଆଖିରେ ଚାହିଁଲେ ନାହିଁ । ଏମାନେ କ'ଣ ମଣିଷ ନା ପିଶାଚ ? ତାଙ୍କ କଥାକୁ ଛାଡ଼, ସେମାନେ ତ ଅପରିଚିତ । ନିଜର ପରିଚିତମାନେ କ'ଣ କଲେ ?

## ମୋ ଛାତ୍ରର ମୋ ପ୍ରତି ବ୍ୟବହାର :

ମୋର ଅତି ପରିଚିତ ପ୍ରିୟ ଛାତ୍ର ଯେ ଏମ୍.ଏସ୍. କରୁଥିଲା, ମୁଁ ତାକୁ ପଚାରିଲି, "ପୁଅ କ'ଣ କରିବି, ତୁ ଯେପରି କହିବୁ ମୁଁ ସେପରି କରିବି । ମୋତେ କିଛି ଜଣାନାହିଁ । ବୁଦ୍ଧି ବତେଇ ଦେ ବାପା । କାହାକୁ କିପରି ବ୍ୟବହାର କରିବି ?" କିନ୍ତୁ ମୋର ଭାଗ୍ୟ ଛୋଟ । ମୁଁ ହୀନକପାଳିଆ । ପ୍ରଭୁଙ୍କର ଶୁଭଦୃଷ୍ଟି ମୋ ପ୍ରତି ନଥିଲା । ଏଣେ ତାର ବ୍ୟବହାର ମୋ ପ୍ରତି ଅସହ୍ୟ ହେଲା । ସେ ମୋତେ ମାର୍‌ମାର୍ ଦୂର୍‌ଦୂର୍ କଲା । କହିଲା, " ଅଧ୍ୟାପକ ପାଟନା ଯାଇଛନ୍ତି, ସେ ଆଜି ଆସିବେ । ତା ପୂର୍ବରୁ ରୋଗିଣୀକୁ ଏଠାରୁ ଶୀଘ୍ର ଉଠାଅ ।" ସେ ଅଗନାଅଗନି ବନସ୍ତରେ ମୁଁ କଣ କରିବି ? ତା' କଥା ମାନି ରୋଗିଣୀକୁ ତଳକୁ ଆଣିବି କିପରି ? ମୋତେ ବୁଦ୍ଧିବାଟ ଦିଶିଲା ନାହିଁ । ଦମ୍ଭ ବାନ୍ଧିଥିଲି ସେ ମୋ ଦୁଃଖ ବୁଝିବ । ମାତ୍ର ସେ ହେଲା କୁମ୍ଭୀର । ତା' ବ୍ୟବହାର ମୋତେ ବ୍ୟଥିତ କଲା । ମୁଁ କାନ୍ଦୁଣୁମାନ୍ଦୁଣୁ ହୋଇ କିପରି ତା'ଠାରୁ ରକ୍ଷା ପାଇବି ଚିନ୍ତାକଲି । ତା' ବ୍ୟବହାରରେ ଏତେଦୂର ମର୍ମାହତ ହୋଇପଡ଼ିଲି ଯେ ହଠାତ୍ କହି ପକେଇଲି, "ସ୍ତ୍ରୀର ପଛେ ଜୀବନ ହାନି ହେଉ ନରପିଶାଚ ଟୋକାର ମୁହଁ ଚାହିଁବି ନାହିଁ ।" ଏପରି ଛାତ୍ର ତ ପୁଣି ଜଗତରେ ଅଛନ୍ତି ? ସେ ପୁଣି କାଲିକି କାଲି ବଡ଼ ଡାକ୍ତର ହୋଇ ହଜାର ହଜାର ରୋଗୀଙ୍କୁ ସେବା କରିବ ? ଏ ରକ୍ତଶୋଷକ ଅମଣିଷଗୁଡ଼ିଙ୍କର ଭବିଷ୍ୟତ ମଙ୍ଗଳମୟ ହେବ କି ? ତା'କଥା ମନରୁ ପୋଛିଦେଲି । ସେଦିନ ଅନ୍ୟ ଜଣେ ନୂତନ ଡାକ୍ତରୀ ଛାତ୍ର ବାବୁ ବିକ୍ରମ ଖୟା ସାହାଯ୍ୟରେ ଗମ୍ଭାରିମୁଣ୍ଡାର ଡାକ୍ତର ସାହୁବାବୁଙ୍କୁ ନିବେଦନ କରି ରୋଗିଣୀକୁ ତଳମହଲା ଫିମେଲ ୱାର୍ଡରେ ଭର୍ତ୍ତି କଲି । ସେ ୱାର୍ଡରେ କାଉଗୁଡ଼ାଏ ଖାଲି ରାଉରାଉ ହେଉଥାଅନ୍ତି । ଶ୍ମଶାନଭୂଇଁରେ ଚିଲ, ଶାଗୁଣା ଉଡ଼ିଲା ପରି ସେ ୱାର୍ଡଟା ବୋଧ ହେଉଥାଏ । ମନରେ ଭୟ, ଆଶଙ୍କା । କିତନି ବିଶେଷଜ୍ଞ ଡାକ୍ତରଙ୍କ କୌଣସି ଉପାୟରେ ସନ୍ତୁଷ୍ଟ କରିପାରିଲି ନାହିଁ । ଚିକିତ୍ସାରେ ଡାକ୍ତରମାନେ ଖୁବ୍ ଅବହେଳା ପ୍ରଦର୍ଶନ କଲେ । ରୋଗିଣୀର ରୋଗ

ଚିହ୍ନିପାରିଲେ ନାହିଁ । ପ୍ରତି ମୁହୂର୍ତ୍ତରେ ସିରିଞ୍ଜ୍ ସିରିଞ୍ଜ୍ ରକ୍ତ ନେଇ ତାଙ୍କୁ ଦରମରା କରିଦେଲେ । ମେଡିକାଲ ହସପିଟାଲ ଉତ୍ତର ପାର୍ଶ୍ୱ ଫାଟକ ନିକଟରେ ମହାନ୍ତିବାବୁଙ୍କ କ୍ଲିନିକ୍‌ରେ ବହୁ କଷ୍ଟରେ ବନବାସିନୀ ଦେବୀଙ୍କୁ ମେଡିକାଲରୁ ନେଇ ଏକ୍ସ-ରେ କରିବାରୁ ଜଣାଗଲା ତାଙ୍କର ଗୋଟାଏ କିଡ୍‌ନି ନଷ୍ଟ ହୋଇଯାଇଛି । ମେଡିକାଲର ବିଶେଷଜ୍ଞ ଡାକ୍ତର ଏହା ଜଣାଇ ଦିଆଗଲା ମାତ୍ର ସେମାନେ Intensive X-Ray କରିବା ପାଇଁ ଜିଦ୍ ଧରିଲେ । ଡକ୍ଟର ମହାନ୍ତି କିଛି ଜାଣେ ନାହିଁ ବୋଲି କହିଲେ । Intensive X-Ray କରିବାର ଦିନ ଗଡ଼ିଗଡ଼ି ଗଲା । ମୋ ଭାଗ୍ୟକୁ ବଡ଼ଦିନ ଛୁଟିରେ ଡାକ୍ତରମାନେ ଦିଲ୍ଲୀ ଚାଲିଗଲେ । କେହି ଧରାଛୁଆଁ ଦେଲେ ନାହିଁ । ଯେଉଁଦିନ ମେଡିକାଲ ହସପିଟାଲରେ Intensive X-Ray କରାଗଲା ସେଦିନ ଟେବୁଲରୁ ଫେରିଆସି ରୋଗିଣୀ କହିଲା, ଆଜି ମୋ ଦେହରୁ ସବୁବଳ ଚାଲିଗଲା । ଡିସେମ୍ବର ସତର ତାରିଖରେ ତାଙ୍କୁ ବୟାଳିଶ ବର୍ଷ ପୂରିଗଲା । 'ମୁଁ ମନେ କରିଥିଲି ଗୋଟାଏ ବଡ଼ ବିପଦରୁ ରକ୍ଷା ପାଇଗଲି ।' ଆଜି ଜାନୁଆରୀ ମାସ ପାଞ୍ଚ ତାରିଖ ବୁଧବାର, ଅଭିଷେକ ପୂର୍ଣ୍ଣିମା ଦିନ । କିନ୍ତୁ —

ବଡ଼ କ୍ରୁର କାଳ ବଡ଼ ଅବିଶ୍ୱାସୀ<br>
ହାବୁଡ଼ି ଯିବଟି ଆଚମ୍ବିତେ ଆସି ।

ପରୀକ୍ଷାର ଘଣ୍ଟାଏ ଦେଢ଼ ଘଣ୍ଟାପରେ ସବୁ ଶେଷ । ମୋ ପରି ଅଧମ, ଅପଦାର୍ଥ ଲୋକ ଡାକ୍ତରଙ୍କୁ ଧରିପାରିଲା ନାହିଁ । ଏ ଯୁଗପାଇଁ ମୁଁ ଅଯୋଗ୍ୟ, ଅପଗଣ୍ଡ, କଥା କହି କିମ୍ବା ଟଙ୍କା ଦେଇ ଲୋକଙ୍କୁ ସନ୍ତୁଷ୍ଟ କରିବା ଗୁଣ ମୋ' ଠାରେ ନଥିଲା । ଦିନକୁଦିନ ଡାକ୍ତରମାନେ ଅମଣିଷ ପାଲଟି ଯାଉଛନ୍ତି । ନୈତିକ ଚରିତ୍ରର ଘୋର ଅବକ୍ଷୟ ଘଟୁଛି । ସେମାନେ ଅର୍ଥପାଗଳ ହୋଇପଡୁଛନ୍ତି । ସବୁ ଡାକ୍ତର ଯେ ଏପରି ତାହା ନୁହେଁ, ତେବେ ବହୁ ଡାକ୍ତର ମାନବୀୟ ସୁଗୁଣଗୁଡ଼ିକ ହରାଇଛନ୍ତି । ଛାତ୍ରାବସ୍ଥାରେ ଯେତେ ନୀତି ଶିକ୍ଷା ଦେଲେ ବି ସ୍ୱାର୍ଥ ଆଗରେ ସବୁ ହାର ମାନି ଯାଉଛି । ମେଡିକାଲ ହସ୍‌ପିଟାଲ ଏକ ଭୂତଖାନା । ସେଠାରେ କିଏ ଚିହ୍ନାପରିଚୟ ଥିଲେ ଅବା କଅଣ ହୋଇପାରେ ନଚେତ୍ ମେଡିକାଲ ହସପିଟାଲ କଟକକୁ ଯିବା ଅର୍ଥ ଯମାଳୟକୁ ଯିବା । ମୋର କିଛି ଦୋଷ ରହିଲା ଯେହେତୁ ମୋ ହାତ ଗଢ଼ିଲା ଛାତ୍ର ମୋ ପାଖେ ପଶିଲା ନାହିଁ, ତାହାହେଲେ କ'ଣ ମାଡ଼ ଗାଳି ଦେଇ ପିଲାଙ୍କୁ ସୁପଥକୁ ଆଣିବା ପାପ ? ମୋ କର୍ମ ବାମ ପଡ଼ି ଯାଇଥିବ । ତେଣୁ ମଣିଷ କରଣୀ କାଟୁକଲା ନାହିଁ । ମୋର ଭାଗ୍ୟ ଦୋଷ ବୋଲି ନିଜକୁ ଧିକ୍କାର କରି କବାଟ ଆଉଜେଇ କ୍ରନ୍ଦନ କରିବାରେ ଲାଗିଲି ।

## ସ୍ତ୍ରୀଙ୍କ ମୃତ୍ୟୁପରେ :

ବନବାସିନୀ ଦେବୀଙ୍କ ପ୍ରୟାଣ ମୋତେ ଦାରୁଣ ଆଘାତ ଦେଲା । ମୋ ସୁନାର ସଂସାର ଚୂନା ହୋଇଗଲା । ବନନବାସିନୀ ଦେବୀ ଅକାଳରେ ଗଛ ପତର କନ୍ଦେଇ ଆମ୍ଭମାନଙ୍କୁ ଦୁଃଖ ସାଗରରେ ଭସେଇ ଦେଇ ଆରପାରିକି ଚାଲିଗଲେ । ଝିଅ ପିଲା ଦୁଇଟା ଭୋ ଭୋ କାନ୍ଦି ଉଠିଲେ । ମୋତେ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । ପରମେଶ୍ୱର ମୋତେ କେତେବଡ଼ ଦଣ୍ଡଟାଏ ଦେଲେ ରେ ? ମୁଁ କାହାର ବା କି କ୍ଷତି କରିଥିଲି ? ମୋ ନୀତିରେ କେବଳ ଅଟଳ ରହୁଥିଲି । ତେବେ ନୀତି ନିୟମ ମାନି ଚଳିବା କ'ଣ ଅପରାଧ ? ଏ ଅପରାଧ ଭିତରେ ଏତିକି ମନେକରୁଛି ମୁଁ ସଦାସର୍ବଦା ସ୍କୁଲ କାମରେ ବ୍ୟସ୍ତ ରହୁଥିଲି, ତାଙ୍କର ସ୍ୱାସ୍ଥ୍ୟପାଇଁ ଉପଯୁକ୍ତ ଯତ୍ନ ନେଇନଥିଲି । ତେଣୁ ତାଙ୍କର ମୃତ୍ୟୁ ପାଇଁ ଅନ୍ୟମାନଙ୍କ ଅପେକ୍ଷା ମୁଁ ନିଜକୁ ବେଶୀ ଦାୟୀ କରୁଛି । ମୁଁ କ'ଣ ଏ ପାପରୁ ମୁକ୍ତିପାଇବି ? ମୋ ପାଠପଢ଼ାକୁ ଧିକ୍, ମୋ କର୍ତ୍ତବ୍ୟପରାୟଣତାକୁ ଧିକ୍ । ମୋ ଛାତ୍ରମାନଙ୍କ ପାଇଁ ଗର୍ବ କରିବାଟିକୁ ବି ଧିକ୍ ।

## ସବୁ ଓଲଟପାଲଟ ହୋଇଗଲା :

କଟକ ମେଡିକାଲରେ ଅଧ୍ୟୟନ କରୁଥିବା ଅନ୍ୟ ଜଣେ ଛାତ୍ରକୁ ବହୁବାର ପ୍ରାର୍ଥନା କରିଥିଲି ମୋତେ ଟିକିଏ ସାହାଯ୍ୟ କରିବା ପାଇଁ । ମାତ୍ର ସେ ଏତେଦିନ ବଧିର ହୋଇ ରହିଲା କାହିଁକି ଯେ ଆସିଲା ନାହିଁ ? ମରିବାର ଦୁଇଘଣ୍ଟା ପରେ ଆସି ଶବକୁ କାର୍ ଭିତରକୁ ନେଲା । କଟକ ସହର ବିଷୟରେ ମୁଁ ଅଜ୍ଞ ଥିଲି । ମହାନ୍ତିବାବୁଙ୍କ କ୍ଲିନିକ୍‌ର ମ୍ୟାନେଜର ମୃତ ଦେହକୁ ନିରାକାରପୁର ନେବାରେ ସମସ୍ତ ବନ୍ଦୋବସ୍ତ କରିଦେଲେ, ତାଙ୍କ ପାଖେ ଋଣୀ ହୋଇ ରହିଲି । କାଶୀବାବୁ ଓ ଶୈଳେନ୍ଦ୍ରବାବୁ ରୋଗିଣୀକୁ ଦେଖିବାକୁ ଥରେ ଦୁଇଥର ଯାଇଥିଲେ । ସେମାନଙ୍କୁ ମୁଁ ଭୁଲିପାରିବି ନାହିଁ । ରୋଗିଣୀର ଚିକିତ୍ସା ସମୟରେ ବାବୁ ନକୁଳ କୁମାର ମୋତେ ବହୁ ସାହାଯ୍ୟ କରିଥିଲେ । ମାତ୍ର ତାଙ୍କ ଯଶ ରହିଲା ନାହିଁ । ମୁଁ ନକୁଳ କୁମାର ପ୍ରତି ଚିର ଋଣୀ ହୋଇ ରହିଗଲି । ସେହି କାଳରାତ୍ରିରେ ଶବ ବହନ କରି ରାତ୍ରି ଦୁଇଟାରେ ନିରାକାରପୁରରେ ପହଞ୍ଚିଲି । କୋଳାହଳ ଶୁଣି ଶୀତରାତି ହେଲେ ମଧ୍ୟ ପଣ୍ଡିତ ବଳଭଦ୍ର ମହାପାତ୍ର ସାଙ୍ଗେ ସାଙ୍ଗେ ଆସି ରାତ୍ରି ଶେଷପର୍ଯ୍ୟନ୍ତ ଆମ୍ଭମାନଙ୍କ ଗହଣରେ ରହିଲେ । ମାତ୍ର ପଡ଼ୋଶୀ ଗୃହରେ ଅବସ୍ଥାନ କରୁଥିବା ବରିଷ୍ଠ ଶିକ୍ଷକ କୃଷ୍ଣବାବୁ ଆସିଲେ ନାହିଁ । ଏ ଦୁର୍ଦ୍ଦିନରେ କାହାକୁ କ'ଣ କହିବି ? ପ୍ରକୃତି ପୁରୁଷ ଉଭୟଙ୍କ ମିଳନରେ ସଂସାରର ସୃଷ୍ଟି । ଗୋଟିକ ବିହୁନେ ଅନ୍ୟଟି ଅକାମୀ । ପିଲାଗୁଡ଼ାକ ଅନାଥ ହୋଇଗଲେ, ସେମାନଙ୍କ

କୋହ ସମ୍ଭାଳିବ କିଏ ? ସପ୍ତମ ଶ୍ରେଣୀରେ ପଢୁଥିବା ଏଗାର ବର୍ଷର ଛୁଆଟି ବଲବଲ କରି ଚାହୁଁଥାଏ । ଝିଅଦ୍ୱୟଙ୍କର ପାଠପଢ଼ାରେ ପୂର୍ଣ୍ଣଚ୍ଛେଦ ପଡ଼ିଲା । ସବୁ ଓଲଟପାଲଟ ହୋଇଗଲା ।

## ଶବଯାତ୍ରା : ଶୋକର ଛାୟା :

ମୃତ ଶରୀରକୁ ଦାଣଘରେ ସଜେଇ ରଖାଗଲା । ପ୍ରଭାତ ଆସିଲା । ଲୋକେ ଥାଟ ପଟୁଆର ଭାଙ୍ଗିଲେ । ପାଖ ପଡ଼ିଶାର ମା, ମାଇପେମାନେ ଶେଷ ଦର୍ଶନ କରିବା ପାଇଁ ରୁଣ୍ଡ ହେଲେ । ମୋ ଭାଉଜ ଶବକୁ ତେଲ, ହଳଦୀ, ସିନ୍ଦୂରରେ ସଜ୍ଜିତ କରି ଅହିଅ ବେଶ ଧାରଣ କରାଇଲେ । କୋକେଇ ତିଆରି କରାଗଲା । ନିରାକାରପୁର ସାହିର ଶବବାହକମାନେ ଆସି ରାମ ନାମ ସତ୍ୟ ହେ ଉଚ୍ଚାରଣ କରି ଶବ ବହନ କଲେ । ଅହିଅ ଡେଙ୍ଗୁରା ବାଜି ଉଠିଲା । ମନେପଡ଼ିଗଲା ଅଠେଇଶ ବର୍ଷ ତଳେ ବନବାସିନୀ ଦେବୀ ଏହିପରି ଦିନେ ଶୋଭାଯାତ୍ରାରେ ବରକନ୍ୟା ବେଶରେ ସବାରି ପାଲିଙ୍କିରେ ଗ୍ରାମ ଦାଣ୍ଡରେ ଯାତ୍ରା କଲାବେଳେ ଅରୁଆ ଚାଉଳ ପଇସା ବିଞ୍ଚି ଆନନ୍ଦ ପରିବେଶରେ ଗୃହପ୍ରବେଶ କରିଥିଲେ । ଆଜି ଶବଯାତ୍ରାରେ ଲିଆ କଉଡ଼ି ବିଞ୍ଚି ଶୋକାକୁଳ ଜନସମାଗମ ମଧ୍ୟରେ ସେ ତାଙ୍କର ସ୍ଥାୟୀ ଗୃହକୁ ଯାତ୍ରା କଲେ ପ୍ରଭୁଙ୍କ ସହିତ ମିଳିତ ହେବାପାଇଁ । ନିରାକାରପୁର ଶ୍ମଶାନରେ ଚାରି ବର୍ଷ ପୂର୍ବେ ଯେଉଁଠାରେ ଚଉରାଶୀ ବର୍ଷ ବୃଦ୍ଧା ଶାଶୁଙ୍କର ମରଶରୀର ପାଉଁଶରେ ପରିଣତ ହୋଇଥିଲା ଆଜି ସେହିଠାରେ ସେହି ଶୀତଋତୁରେ ଅହିଅ ବୋହୂର (୪୨) ମରଶରୀର ନିମିଷକେ ନିଶ୍ଚିହ୍ନ ହୋଇଗଲା ।

ଏହି ହାତରେ ମୁଁ ତାଙ୍କୁ ପାଉଁଶରେ ପରିଣତ କରିଦେଇ ଆସିଲି । ଅଲକ୍ଷ୍ୟରେ ଚକ୍ଷୁରୁ ଲୋତକ ବର୍ଷଣ ହେଉଥିଲା । ମାସ ମାସ ଧରି ଲୋତକ ଝରିଲା ସେ ଆଉ ବନ୍ଦ ହେବାର ନୁହେଁ । କିଏ ଜଣେ ଆସି କହିଲା, ''ସବୁଦିନେ କ'ଣ ଏମିତି ହେଉଥିବ । ମିଛ ମାୟା ଏ ସଂସାର ସବୁଛାଡ଼ି, ପୁନଃ କର୍ମରେ ଯୋଗଦିଅ । ଦୁଆର ଆଉଜେଇ ମୁଁ କାନ୍ଦିବାରେ ଲାଗିଲି । ମୋ ଭାଗ୍ୟକୁ କେବଳ ନିନ୍ଦିବାରେ ଲାଗିଥାଏ । ଡାକ୍ତରମାନଙ୍କୁ ଦୋଷ ଦେବାପାଇଁ ମୋ ପାଖେ ଭାଷା ନଥିଲା । ଡାକ୍ତରି ଚାକିରିରେ ପଇସା ଅନେକ, ଏହା ଗୋଟିଏ ମହତ ବେଉସା । ସେବାମୂଳକ ଏକ ଚାକିରି । ଏଥିରେ ପଇସା ମିଳେ ସମ୍ମାନ ବି ମିଳେ । ସେମାନଙ୍କ ମିଷ୍ଟ ମଧୁର ବ୍ୟବହାରରେ ରୋଗ ଅଧେ ଭଲ ହୋଇଯାଏ । ରୋଗୀପକ୍ଷେ ଡାକ୍ତର ଭଗବାନ ସଦୃଶ କିନ୍ତୁ ଡାକ୍ତର ନିଜର କର୍ତ୍ତବ୍ୟ ପ୍ରତି ଅବହେଳା କରି ଟଙ୍କା ଉପରେ ମନଦେଲେ ସବୁ ସୁନାମ ନଷ୍ଟ ହୋଇଯାଏ । କେତେକ ଡାକ୍ତର ରକ୍ତଶୋଷକ

କାମ କରନ୍ତି । ତେଣୁ ତାଙ୍କୁ Leech କୁହାଯାଏ । ଯେଉଁମାନେ କେବଳ ପଇସା ଅର୍ଜନ ପାଇଁ ପାଠ ପଢ଼ନ୍ତି, ରୋଗୀର ରକ୍ତ ଶୋଷି ନିଅନ୍ତି ସେମାନେ କ'ଣ ମଣିଷ ? ସେମାନେ ଦେଶ ଓ ଜାତିର ଘୃଣ୍ୟ । ସେମାନଙ୍କ ପାଖରେ ମାନବିକତା ନଥାଏ । ସେମାନେ ଅର୍ଥଗୃଧ୍ନ, ଅମଣିଷ, ପାପିଷ୍ଠ । ସେମାନଙ୍କଠାରେ ମାନବିକତା ରହିଲେ ସେମାନେ ହେବେ ଠାକୁର ।

## ପରିବାର ରସାତଳଗାମୀ :

'ଜାତସ୍ୟ ହି ଧ୍ରୁବ ମୃତ୍ୟୁ ।' ଏକଥା ସତ୍ୟ, ପ୍ରତ୍ୟେକ ବ୍ୟକ୍ତି ରୋଗ କବଳରୁ ରକ୍ଷା ପାଇବା ପାଇଁ ଡାକ୍ତରଙ୍କ ପାଖକୁ ଦୌଡ଼ିବ ହିଁ ଦୌଡ଼ିବ । ଏପରିସ୍ଥଳେ ଯଦି ଡାକ୍ତର ବାବୁ ପ୍ରବୋଧନା ଦେଲା, ମିଷ୍ଟ ବ୍ୟବହାର କଲା, ତେବେ ସେ ପ୍ରକୃତ ଡାକ୍ତର । ମୋ ଭାଗ୍ୟକୁ ଡାକ୍ତରମାନେ ବଧିର ହୋଇଗଲେ । ତାଙ୍କ ମୃତ୍ୟୁଶଯ୍ୟାରେ ମୁଁ ତ ସବୁ ଠାକୁରଙ୍କୁ ଡାକିଛି କିନ୍ତୁ କାହାରି ତ ଦୟା ହେଲାନାହିଁ । ଠାକୁରେ ଏତେ ବଡ଼ ପରିବାରଟାକୁ ସମୂଳେ ଧ୍ୱଂସ କରିଦେଲେ ? ମୋ ନିଷ୍ଠା, କର୍ତ୍ତବ୍ୟପରାୟଣତା, ବିଦ୍ୟାଳୟ ପାଇଁ ଉତ୍ସର୍ଗୀକୃତ ଜୀବନର ମୂଲ୍ୟ କ'ଣ ? କି ପାପ କଲି ଯେ ମୋତେ ଏ ଦଣ୍ଡ । ଜଙ୍ଗାମରିଚ ଚୋରକୁ ଫାଶୀଦଣ୍ଡ ଦେବା ସଦୃଶ୍ୟ ଏ କାର୍ଯ୍ୟ । ତେବେ ଭଗବାନଙ୍କୁ ଦୋଷ ଦେବାକୁ ଆମେ କିଏ ? ଯାହା ଉଚିତ ମଣନ୍ତି ତାହା ସେ କରନ୍ତି । ଆମେ ମୂଢ଼, ଅଧମ, ମାନବ ଜାଣିବା କ'ଣ ?

ତେବେ ମୋ ଗୃହଟାରେ ସ୍ଥିରତା ଆସୁଥିବାବେଳେ ତାର ଉତ୍‌ଥାନର ଅୟମାରମ୍ଭ ବେଳେ ହଠାତ୍ ବଜ୍ରପାତ ଘଟି ସମସ୍ତ ସୁଖ ସଂସାର ମାଟିରେ ମିଶିଗଲା, ମୋର ଭବିଷ୍ୟତ ଜୀବନ କୁହେଳିକାମୟ ହୋଇଗଲା । ଭଙ୍ଗାଘରଟାର ଆସବାବ ଛିନ୍ନଛତ୍ର ହୋଇଗଲା । ଗୃହହେଲା ଶ୍ରୀହୀନ, ଜୀବନ ହେଲା ଆହୁଲା ବିହୀନ ନୌକା । ସୁଖ ସୌଭାଗ୍ୟ ଦୂରେଇ ହୋଇଗଲା । ମରୁଭୂମିରେ ଜଳର ସନ୍ଧାନ କାହିଁ ? ମୁହଁ ମାଡ଼ି ପଡ଼ିରହିଲି । ଉଠିଲା ବେଳକୁ ଛୋଟା ହୋଇଯାଇଛି । ନିଛାଟିଆ ଜାଗାଟା ଆହୁରି ଖାଁ ଖାଁ ଲାଗିଲା । ଭୂତ, ପ୍ରେତଗୁଡ଼ାକ ଆଖି ତରାଟି ଚାହିଁଲା ପରି ବୋଧହେଲା । କିଟିମିଟିଆ ଅନ୍ଧାରରେ ପିଲାଗୁଡ଼ାକ ବେଶୀ ଶଙ୍କାକୁଳ ହେଲେ । କଲେଜରେ ପଢୁଥିବା ଝିଅ ମଞ୍ଜୁଶ୍ରୀ ପାଠପଢ଼ା ଛାଡି ସାହାଯ୍ୟ କରିବାକୁ ଆଗେଇ ଆସିଲା । ମୁଁ ଥକ୍କା ହୋଇ ବସିପଡ଼ିଥିଲି । ଗୋଟିଏ ଯୋଡ଼ିଏ ନୁହେଁ ଛଅଛଅଟା ପିଲା । ଏମାନଙ୍କୁ ପାଳିବା ମୋ ପକ୍ଷେ ସହଜ ନଥିଲା । ମୁଁ ଭାଙ୍ଗିପଡିଲେ ପିଲାଗୁଡ଼ାକ ଅନାଥ ହୋଇଯିବେ । ସ୍ତ୍ରୀଙ୍କୁ ସବୁବେଳେ ମନେ ମନେ ଗୁଣି ହେଲି । ଏପରି ହେଲେ ମୁଁ ଅସ୍ଥି କଙ୍କାଳସାର ହୋଇଯିବି । କିଏ କେତେ କଥା ବୁଝାଇଲେ, "ମିଛମାୟା ଏ ସଂସାର ।

ବନ୍ୟା ସ୍ରୋତରେ ଦୁହେଁଯାକ ଭାସି ଆସିଥିଲ, ମଝିରେ ତେଣିକି ସ୍ରୋତର ବେଗ ବୃଦ୍ଧି ପାଇବାରେ ଜଣେ ତେଣେ ଖସି ଚାଲିଗଲା । ଅନ୍ୟ ଜଣେ ମୁଖ୍ୟ ସ୍ରୋତରେ ଭାସି ଭାସି ଯାଉଛି । ତେଣୁ ଅନୁଶୋଚନା କରିବାର କିଛି ଆବଶ୍ୟକତା ନାହିଁ ।'' ମନକୁମନ ଖୁବ୍ ବୁଝାଇଲି । ନିଜ କର୍ତ୍ତବ୍ୟପଥରୁ ବିଚ୍ୟୁତ ନହୋଇ ଦୈବ ଦୁର୍ବିପାକ ମୁକାବିଲା କରି ପୁନଃ କର୍ତ୍ତବ୍ୟପଥରେ ମନଧ୍ୟାନ ଦେଲି । ଧର୍ମପତ୍ନୀ ଚାଲିଗଲେ, ପୁଣି ଅସମୟରେ ଚାଲିଗଲେ । କର୍ତ୍ତବ୍ୟକୁ ତରିଯାଇଥାଆନ୍ତି ମାତ୍ର ମୋ ନୀତିରେ କିଛି ପରିବର୍ତ୍ତନ ହେଲାନାହିଁ । ପ୍ରଭୁ ମୋତେ କଠିନ ପରୀକ୍ଷାର ସମ୍ମୁଖୀନ କରାଇଲେ । ଗୃହର ମୁଁ ହେଲି ବାପା ଓ ମା । ଉଭୟ କାର୍ଯ୍ୟ ସାଧନ କରିବାକୁ ହେଲେ ଯାହାହୁଏ ତାହାହିଁ ହେଲା । ନିଜ ପିଲାମାନଙ୍କ ପ୍ରତି ନରମ ମନୋଭାବ ପ୍ରଦର୍ଶନ କଲି । ସେଥିରୁ ବିଚ୍ୟୁତ ହେଲେ କି ଲାଭ ହେବ ?

## ସ୍ୱାମୀ-ସ୍ତ୍ରୀ ଉଭୟ କର୍ମଜୀବୀ ହେଲେ ଜୀବନ କିପରି ଚାଲେ :

ଆଜିକାଲି ସ୍ୱାମୀ ସ୍ତ୍ରୀ ଉଭୟ ଚାକିରି କରିବାରେ ଆନନ୍ଦ ଉପଭୋଗ କରିଥାନ୍ତି । ଏପରିକି ବାହାଘରବେଳେ ଚାକିରିଆ ପୁଅ ଚାକିରିଆ ଝିଅକୁ ଅଧିକ ପସନ୍ଦ କରେ । ଉଭୟେ ଚାକିରି କରି ବହୁଟଙ୍କା ରୋଜଗାର କରନ୍ତି । ସ୍ତ୍ରୀ ମନଇଚ୍ଛା ଦାମିକା ଶାଢ଼ି, ଅଳଙ୍କାର, କିସମ କିସମର ଗହଣା ସାଇତିବାରେ ସମର୍ଥ ହୁଅନ୍ତି । ଗାଡ଼ିମଟର କିଣନ୍ତି, ଦାମିକା ପ୍ରାସାଦ ନିର୍ମାଣ କରନ୍ତି । କିନ୍ତୁ ସେମାନଙ୍କ ସାମାଜିକ ଜୀବନରେ ସୁଖଶାନ୍ତି ଥିବାର ଜଣାଯାଏ ନାହିଁ । ଉଭୟ ଦିନ ଦଶଟା ବେଳକୁ ବାହାରି ପଡ଼ନ୍ତି । କିଏ ପାଞ୍ଚଟା ବେଳକୁ ଫେରେ ତ କିଏ ଛଅଟା ବେଳକୁ । ପୁଅ ଝିଅ ହେଲେ ଅସୁବିଧା ଗାଆଣି ଗାଇରେ ସରେ ନାହିଁ । ପିଲାମାନଙ୍କର ହେପାଜତ କରିବ କିଏ ? ବାପା, ମାଙ୍କୁ ପିଲାମାନେ ଚିହ୍ନିପାରନ୍ତି ନାହିଁ । ହେଲେହେଁ ମାସ ଶେଷରେ ଏତେ ଟଙ୍କା ପଇସା ଦେଖି ଉଭୟ ପ୍ରେମ୍ ହୋଇଯାନ୍ତି । ସନ୍ତାନସନ୍ତତି ସେତେବେଳେ ତାଙ୍କୁ ବୋଝ ହୁଅନ୍ତି । ବଡ଼ ବଡ଼ ଚାକିରିରେ ଥିଲେ ଆୟା ପିଲାମାନଙ୍କର ସବୁ ହୁଅନ୍ତି । ବେଳେବେଳେ ଚାକରମାନଙ୍କ ଦ୍ୱାରା ନାନା ଦୁର୍ବିପାକ ସୃଷ୍ଟି ହୋଇଥାଏ । ଏଥିରେ କି ସମାଜ ଜୀବନ ? ଘରେ ଶାଶୁବୁଢ଼ୀ ବା ନଣନ୍ଦ ଥିଲେ ଅବା ଅବସ୍ଥା ସାମାନ୍ୟ ସୁଧୁରେ । ଏପ୍ରକାର ଜୀବନରେ କ'ଣ ସରସତା ଥାଏ ?

## ବନବାସିନୀଙ୍କ ପ୍ରଶସ୍ତିଗାନ :

ବନବାସିନୀ ଦେବୀ ଚାକିରି କରିନଥିଲେ କି ମୋତେ ପଇସା ଦେଉନଥିଲେ । କିନ୍ତୁ ଗୃହରେ ତାଙ୍କ ଉପରେ ଯେଉଁ କାର୍ଯ୍ୟ ନ୍ୟସ୍ତ ଥିଲା ତାହା ଚାକିରିଠାରୁ ବଳକା ଥିଲା ।

ସମାଜ ଜୀବନ ବି ମଧୁମୟ ହେଉଥିଲା । ସେ ମୋ ଗୃହକୁ ଆଗମନ କରିବା ଦିନଠାରୁ ଗୋପାଳନରେ ମନପ୍ରାଣ ଢାଳି ଦେଇଥିଲେ । ଘରୁ କେତେବେଳେ ଦୁଧ, ଦହି, ଛେନା, ଲହୁଣୀ ଛାଡୁ ନଥିଲା । ପିଲାମାନଙ୍କ ସ୍ୱାସ୍ଥ୍ୟ ତାଙ୍କ ହାତେ ନିରାପଦ ଥିଲା । ତାଙ୍କ ପକ୍ଷେ ବିଦେଶୀ କୁକୁଡ଼ା ପାଳନ ଏକ ଲାଭଜନକ ବ୍ୟବସାୟ ଥିଲା । ସେ ବହୁସମୟ ପାକଶାଳା ଉଦ୍ୟାନରେ ବ୍ୟୟ କରୁଥିଲେ । ବାଡ଼ିବଗିଚାରୁ ସଦ୍ୟ ପନିପରିବା ଶାକ୍‌ସବଜି ମିଳୁଥିଲା । ତାର ମୂଲ୍ୟ କେତେ କହିହେବ ନାହିଁ । ମୁଁ ବିଦ୍ୟାଳୟରୁ ଫେରିଲାବେଳକୁ ମୋ ପାଇଁ ଓ ପିଲାମାନଙ୍କ ପାଇଁ ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ ହୋଇ ରହିଥିଲା । ତାଙ୍କଠାରେ ବାତ୍ସଲ୍ୟମମତା ପୂରି ରହିଥିଲା । ମୋର ସ୍ୱଳ୍ପ ଦରମାରେ ଏତେଗୁଡ଼ିଏ ପିଲାଙ୍କୁ ବେଶ୍ ଚଳେଇ ପାରିଥିଲେ । ଗୃହ କାମ ବ୍ୟତୀତ ତାଙ୍କର ବି ବିଲବାଡ଼ି କାମ ବୁଝିବାରେ ଦକ୍ଷତା ଥିଲା । ଧାନ କଟା ଓ ବଛା ସମୟରେ ଛତାଧରି ହିଡ଼ମୁଣ୍ଡରେ ବସି କାମ ତଦାରଖ କରିପାରୁଥିଲେ । ସେ ମୋ ଜୀବନର ସମସ୍ତ ପ୍ରଗତିର ମୂଳ ଉତ୍ସ ଥିଲେ । ମୁଁ ବି' କଡ଼ାର ଫକୀର ଥିଲି । ତାଙ୍କ ସଂସ୍ପର୍ଶରେ ଆସିବା ପରେ ମୋର ବହୁବିଧ ଉନ୍ନତିର ବାଟ ଫିଟିଲା । ତାଙ୍କ ହାତ ସ୍ପର୍ଶରେ ଲୁହା ସୁନା ପାଲଟି ଯାଉଥିଲା । ତାଙ୍କ ସହ ରହି ଘରୋଇଭାବେ ବି.ଏ. ଓ ଏମ.ଏ. ପାସ୍ କଲି । ଖୋରଧା ସହରରେ ଏକ ସୁଦୃଶ୍ୟ ଗୃହ ନିର୍ମାଣ କଲି । ଗାଁରେ ଛଅ ଏକର ଚାଷଜମି କିଣିଲି । ତାଙ୍କଠାରେ କିଛି କୁହୁକିନୀ ଶକ୍ତି ଥିଲା । ମୋ ବସାକୁ ଯେ ଆସୁଥିଲା ଭୋକ ପେଟରେ ଫେରୁନଥିଲା । ସେ ସାକ୍ଷାତ ଲକ୍ଷ୍ମୀପ୍ରତିମା ଥିଲେ । ଗରିବ, ଦୁଃଖୀଜନଙ୍କ ପାଇଁ ତାଙ୍କ ହୃଦୟ ତରଳି ଯାଉଥିଲା । ନିରାକାରପୁର ନନପଡ଼ାସାହିର ବିହାରୀ ପ୍ରଧାନଙ୍କ ଗୃହ ଅଗ୍ନିଦଗ୍ଧ ହେବା ସମୟରେ ରାତି ଅଧରେ ସେଠାକୁ ଯାଇ ପରିବାର ବର୍ଗଙ୍କୁ ସାନ୍ତ୍ୱନା ଦେବା ସଙ୍ଗେସଙ୍ଗେ ଆର୍ଥିକ ସାହାଯ୍ୟ ଦେବାରେ ହେଳା କରିନଥିଲେ ।

## ବନବାସିନୀ ଦେବୀଙ୍କ ଉନ୍ନତ ଚିନ୍ତା :

ସମାଜ ଜୀବନରେ ସେ ମୋ'ଠାରୁ ଆଗୁଆ ଥିଲେ । ଛୁଆଁ ଅଛୁଆଁ ଭେଦଭାବ ତାଙ୍କର ନଥିଲା । ରାତ୍ରି ଜଗୁଆଳି ଭିକାରୀ ନାଏକ ହାଡ଼ି ହେଲେ ମଧ ସେ ତାକୁ ନିଜ ପୁତ୍ର ସଦୃଶ ଦେଖୁଥିଲେ । ତା' ପ୍ରତି ଓ ତାର ପରିବାର ପ୍ରତି ସଦା ସ୍ନେହଶୀଳା ଥିଲେ । ପଞ୍ଚାନନ ସର୍ବେଶ୍ୱର ପ୍ରତି ଦୟାମୟୀ ମା' ଥିଲେ । କାହାକୁ କଣ ଦେଇ ସେ ବୋଧବାଧ କରନ୍ତି ମୋତେ ଜଣାନଥିଲା । ତାଙ୍କ ମୁହଁରେ ମୋହିନୀ ଶକ୍ତି ଥିଲା । ତାଙ୍କ ସୁନ୍ଦର ଚେହେରାରେ ଶତ୍ରୁ ବି ବଶ ହୋଇଯାଉଥିଲା । ପାଖ ସାହିମାନଙ୍କରେ ସେ ଖୁବ୍ ପ୍ରିୟ ଥିଲେ । କଲେଜ ଅଧ୍ୟାପକମାନଙ୍କ ସ୍ତ୍ରୀମାନଙ୍କର ସେ ଏକପ୍ରକାର ପରାମର୍ଶଦାତା ଥିଲେ । ସେ ପତି-

ସୋହାଗିନୀ ଥିବାରୁ ସ୍ୱାମୀ ପାଖେ ପାଖେ ରହିବାକୁ ଅଧିକ ପସନ୍ଦ କରୁଥିଲେ । ପତି ମଧ ତାଙ୍କୁ ମୁହୂର୍ତ୍ତେ ନ ଦେଖିଲେ ବାଇବିଛୁପରି ହେଉଥିଲେ । ସେ ମୋ ପାଖରେ ଥିବାରୁ ମୁଁ ଦୁଃଖକୁ ଦୁଃଖ ବୋଲି ମନେ କରୁନଥିଲି । ତାଙ୍କର ସୁଚିନ୍ତିତ ପରାମର୍ଶ ମୋତେ ବହୁ ବିପଦରୁ ଉଦ୍ଧାର କରିଛି । ମୁଁ ତାଙ୍କର ସେବାଯତ୍ନ ଠିକ୍ ଭାବରେ କରିନପାରିବାରୁ ସେ ଅକାଳରେ ଚାଲିଗଲେ । ୧୯୭୬ ମସିହା ଅକ୍ଟୋବର ମାସରେ ସେ ମୋତେ କହିଲେ, ''ମୁଁ ତମ ଘରତିଆରି ପାଇଁ ସବୁ ଅଳଙ୍କାର ବିକ୍ରି କଲି । ମୋତେ ପଟେ ପଟେ ସୁନାଚୁଡ଼ି ଦେବନାହିଁ ?'' ମୋ ପାଖେ ସବୁବେଳେ ନିଅଣ୍ଟ । ମୁଁ ତାଙ୍କୁ କହିଲି, ''ଦୁଇ ଝିଅଙ୍କ ନାମରେ ଡାକଘରେ ଜମା ହୋଇଥିବା ଟଙ୍କା ଆସନ୍ତା ମାର୍ଚ୍ଚ ମାସରେ ପୂର୍ଣ୍ଣାଙ୍ଗ ହେବ । ସେତିକିବେଳେ ତୁମ ପାଇଁ ଦୁଇ ଦୁଇପଟ ସୁନାଚୁଡ଼ି ଗଢ଼ିଦେବି ।'' ମନରେ କି ଆନନ୍ଦ ! କିଛି ସମୟପରେ ଏତିକିମାତ୍ର କହିଲେ, ''ମୁଁ ସେପର୍ଯ୍ୟନ୍ତ ରହିଲେ ତ ?'' ଏ କଥା ମୁଁ ହସରେ ଉଡ଼ାଇଦେଲି । ସତକୁସତ ଟଙ୍କା ମ୍ୟାଚୁରିଟିର ତିନି ମାସ ପୂର୍ବରୁ ସେ ଏ ଜଗତରୁ ଚିର ବିଦାୟ ନେଇ ଚାଲିଗଲେ ।

ଯେଉଁ ପତ୍ନୀ ମୋ ପାଇଁ ସର୍ବସ୍ୱ ତ୍ୟାଗ କରିଥିଲା, ସ୍ୱର୍ଗରୁ ଅଭିଶାପ ପାଇ ଧରାଧାମକୁ ଓହ୍ଲାଇ ଆସିଥିଲା, ଅଳ୍ପଦିନ ଅବସ୍ଥାନ କରି ଜୀବନର ଯୌବନରେ ହଠାତ୍ ଅନ୍ତର ହୋଇଗଲା । ତା ପାଇଁ କିଛି ସ୍ଥାୟୀ ବ୍ୟବସ୍ଥା କରିବା ନିମନ୍ତେ ମନରେ ସ୍ଥିର କଲି ।

## ବନବାସିନୀ ଦେବୀଙ୍କ ନାମରେ ପୁରସ୍କାର ପ୍ରଚଳନ :

ନିରାକାରପୁର ହାଇସ୍କୁଲରେ ମୋର ଅବସ୍ଥାନ କାଳେ ସେ ମୃତ୍ୟୁବରଣ କଲେ । ତେଣୁ ସେହି ହାଇସ୍କୁଲରେ କିଛି ଛାତ୍ରହିତକର କଥା କରିବାକୁ ପଡ଼ିବ । ଏହା ଗୋଟିଏ ମଫସଲ ସ୍କୁଲ । ଏଠାରେ ସହରୀ ସ୍କୁଲପରି କୌଣସି ପ୍ରତିଯୋଗିତା ଅନୁଷ୍ଠିତ ହୁଏନାହିଁ । ଛାତ୍ରଛାତ୍ରୀମାନଙ୍କର ଲେଖିବା ଓ କହିବା ଶକ୍ତି ବୃଦ୍ଧି ପାଉନାହିଁ । ସେମାନେ ସଭା ସମିତିରେ ଦିପଦ କହିବାକୁ ସାହସ କରୁନାହାନ୍ତି କି ଶୁଦ୍ଧଭାବରେ ପ୍ରବନ୍ଧ ଲେଖିବାକୁ ଆଗଭର ହେଉନାହାନ୍ତି । ତେଣୁ ପିଲାମାନଙ୍କୁ ପ୍ରେରଣା ଦେବାପାଇଁ ବକ୍ତୃତା, ପ୍ରବନ୍ଧ ଓ ସଙ୍ଗୀତ ପ୍ରତିଯୋଗିତା କାର୍ଯ୍ୟ ସମ୍ପାଦନା କରି କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରାଯିବାର ସମସ୍ତ ଆୟୋଜନ କଲି । ଶିକ୍ଷକ ବନ୍ଧୁମାନଙ୍କର ମତାମତ ଲୋଡ଼ିଲି । ସେମାନେ ତାଙ୍କର ଶ୍ରାଦ୍ଧବାସରରେ ପୁରସ୍କାର ପ୍ରଦାନ କରିବା ପାଇଁ ସର୍ବାନ୍ତଃକରଣରେ ସମର୍ଥନ କଲେ । ତେଣୁ ୧୯୭୮ ମସିହା ପ୍ରଥମ ଶ୍ରାଦ୍ଧବାସରରେ ଏହି ପୁରସ୍କାର ବନବାସିନୀ ଦେବୀ ସ୍ମୃତି ପୁରସ୍କାର ନାମରେ ଘୋଷିତ ହୋଇ ପ୍ରଦାନ କରାଗଲା । ସେହି

ବର୍ଷଠାରୁ ପ୍ରତିବର୍ଷ ଏହା ସେହି ସ୍କୁଲରେ ପାଳିତ ହୋଇ ଆସୁଥିଲା । ୧୯୮୮ ମସିହା ପର୍ଯ୍ୟନ୍ତ ସେହି ବିଦ୍ୟାଳୟରେ ଚାଲିଲା ମାତ୍ର ତତ୍କାଳୀନ ପ୍ରଧାନ ଶିକ୍ଷକଙ୍କ ଅସହଯୋଗରୁ ଏହା ସେଠାରୁ ଖୋର୍ଦ୍ଧା ସାହିତ୍ୟ ସଂସଦକୁ ଉଠି ଆସିଛି । ସେଥିପାଇଁ ଏକ ପାଣ୍ଠି ସୃଷ୍ଟି କରାଯାଇଛି ।

## ବିଦ୍ୟାଳୟର ନୂତନ ଗୃହ ନିର୍ମାଣ ପାଇଁ କେତେ ହଟହଟା :

ନିରାକାରପୁର ହାଇସ୍କୁଲର ଚାଳଛପର ଗୃହଟି ଅଗ୍ନିଦଗ୍ଧ ହୋଇଯିବା ସମୟରେ ରାଜ୍ୟରେ କଂଗ୍ରେସ ଶାସନ ଚାଲିଥିଲା । ସେତେବେଳେ ବହୁବାର ଆମ ବିଧାୟକ ତଥା ମନ୍ତ୍ରୀଙ୍କ ଦ୍ୱାରସ୍ଥ ହୋଇଛି । କିନ୍ତୁ କିଛି ଫଳ ହେଲାନାହିଁ । ବିଦ୍ୟାଳୟରେ କ୍ରୀଡ଼ାଉତ୍ସବ ପାଳନ କରିବାକୁ ଯାଇ ଲୋକସଭା ସଦସ୍ୟ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀଙ୍କୁ ସଭାପତିତ୍ୱ କରିବାପାଇଁ ଆମନ୍ତ୍ରଣ କରିଥିଲି । ସେ ମହାଶୟ ସ୍କୁଲପ୍ରତି ସହାନୁଭୂତିଶୀଳ ଥିଲେ । ସ୍କୁଲର ଦୈନ୍ୟ ଅବସ୍ଥା ତାଙ୍କୁ ଜଣେଇବାରେ ସେ ତତ୍କାଳୀନ ଡି.ପି.ଆଇ. ଡକ୍ଟର ଦେବେନ୍ଦ୍ର ମିଶ୍ରଙ୍କ ଉପରେ ପ୍ରଭାବ ପକାଇ ଟ.୫,୦୦୦(ପାଞ୍ଚହଜାର) ମଞ୍ଜୁର କରାଇଲେ । ଛାତ୍ରାବାସ ବିଲ୍ଡ଼ିଙ୍ଗ ଓ ହଲ ମଝିରେ ସ୍ଥାୟୀ ଭାବରେ କାନ୍ଥ ନିର୍ମାଣ କରି ଛଅଗୋଟି ଶ୍ରେଣୀ ପ୍ରକୋଷ୍ଠର ବ୍ୟବସ୍ଥା କଲି ଏବଂ ଅଗ୍ନିଦଗ୍ଧ ଗୃହରୁ କାଷ୍ଠ ସଂଗ୍ରହ କରି ଆଉ ଦୁଇଗୋଟି ଶ୍ରେଣୀଗୃହ ନିର୍ମାଣ କରାଇଲି । ଛାତ୍ରଛାତ୍ରୀମାନେ ଚଟାଣରେ ବସି ବିଦ୍ୟା ଅଧ୍ୟୟନ କଲେ । ଦୁଇଗୋଟି ଶ୍ରେଣୀ ଆମ୍ବଗଛ ମୂଳେ ଓ ଅନ୍ୟ ଗୋଟିଏ ଶ୍ରେଣୀ ବିଜ୍ଞାନ ଗୃହ ବାରଣ୍ଡାରେ ବହୁଦିନ ପର୍ଯ୍ୟନ୍ତ ଚାଲିଲା । ବର୍ଷାଦିନେ ଅସୁବିଧା ସୀମା ଅତିକ୍ରମ କରୁଥିଲା । ମୁଁ ତୁନି ହୋଇ ବସି ନଥାଏ । ସ୍ଥାନୀୟ ଅଞ୍ଚଳରୁ ସାହାଯ୍ୟ ସହାନୁଭୂତି କିଛି ମିଳିଲା ନାହିଁ । ସ୍ଥାୟୀ ଗୃହ ନିର୍ମାଣ ନିମନ୍ତେ ଡି.ପି.ଆଇ. ଅଫିସ, ଇଞ୍ଜିନିୟର ଅଫିସକୁ ଏବଂ ଲୋକପ୍ରତିନିଧିମାନଙ୍କ ପାଖକୁ ଦୌଡ଼ି ଦୌଡ଼ି ନୟାନ୍ତ ହୋଇଗଲି । ଗୃହନିର୍ମାଣ ପ୍ଲାନ ଯାଉଥାଏ ଫେରୁଥାଏ । ସ୍ଥାନୀୟ ଅଧିବାସୀମାନେ ଏ ବିଷୟରେ ବଡ଼ ଉଦାସୀନ । ଆଶ୍ଚର୍ଯ୍ୟର କଥା କଂଗ୍ରେସ ବଡ଼ପଣ୍ଡାମାନେ ଆଦୌ ମନଧ୍ୟାନ ଦେଉ ନଥିଲେ । ଏ ଅଞ୍ଚଳରେ ଶିକ୍ଷିତ ଲୋକେ ସମସ୍ତେ ବାହାରେ । କାହାକୁ ଧରି କାମ କରିବି ? ଅନ୍ୟନାମ ଦେଇ ସମ୍ବାଦପତ୍ରରେ ଗୃହାଭାବ, ପାଠପଢ଼ାରେ ବ୍ୟାଘାତ ବିଷୟ ବର୍ଣ୍ଣନାକରି ବହୁବାର ପ୍ରକାଶ କରିଛି । କିନ୍ତୁ କେହି ଶୁଣନ୍ତି ନାହିଁ । ତଥାପି ମୋ ଚେଷ୍ଟାରୁ ମୁଁ ବିରତ ହେଉ ନଥାଏ । ସବୁଆଡ଼କୁ ଡି.ଓ. ଲେଟର ପଠାଉଥାଏ । ବହୁବାର ଖୋରଧାର ବିଧାୟକ ବେଣୁବାବୁଙ୍କ ଦ୍ୱାରସ୍ଥ ହେଲି । ଉତ୍ସବ ଗୁଡ଼ିକରେ ଯୋଗଦେବା ପାଇଁ ତାଙ୍କୁ ଡାକିଛି । ମାତ୍ର କିଛି ସୁଫଳ ହେଲାନାହିଁ ।

## ନୂତନ ଗୃହାରମ୍ଭ ପ୍ରଚେଷ୍ଟା :

ଏଣେ ପାଠପଢ଼ାକୁ ପୁଣି ଦେଖିବାକୁ ପଡ଼ିବ । ସେଥିରେ ପଛେଇ ଗଲେ ନିନ୍ଦାପାଇବି । ତେଣୁ ପାଠପଢ଼ାରେ ତୀକ୍ଷ୍ଣ ଦୃଷ୍ଟି ରଖିଥାଏ । ବାର୍ଷିକ ବୋର୍ଡ ପରୀକ୍ଷାର ଫଳ ଯେପରି ଉତ୍ତମ ହେବ ସେଥିପାଇଁ ଶିକ୍ଷକ ସଭାରେ ବାରମ୍ବାର ସଜାଗ କରୁଥାଏ । ମୁଁ ଜଣେ ପ୍ରବୀଣ ଶିକ୍ଷକ ଥିଲି । ମୋତେ କେହି ଶିଖାଇବେ ନାହିଁ । ଉତ୍ସାହ ଉଦ୍ଦୀପନା ମଧ୍ୟରେ କାର୍ଯ୍ୟ କରୁଥାଏ । ଏହିପରି ଆନନ୍ଦ ନିରାନନ୍ଦ ଭିତରେ ଜୀବନ କଟୁ କଟୁ ୧୯୭୭ ମସିହାରେ ସମଗ୍ର ଦେଶରେ ନିର୍ବାଚନ ହେଲା । କେନ୍ଦ୍ରରେ କଣ ରାଜ୍ୟରେ କଣ କଂଗ୍ରେସ ଚିଟପଟାଙ୍ଗ ମାରିଲା । କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଓ ରାଜ୍ୟରେ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ଜନତା ସରକାର ଗଢ଼ାଗଲା । ଖୋରଧାର ବିଧାୟକ ହେଲେ ବାବୁ ସୁଦର୍ଶନ ମହାନ୍ତି । ଏଇଠି କୁହାଯାଏ ଭାଗ୍ୟ । ସୁଦର୍ଶନ ମୋର ଛାତ୍ର ପୁଣି ଛାତ୍ରାବାସରେ ଅନ୍ତେବାସୀ ଥିଲା । ମୁଁ ବି ସେତେବେଳେ ଛାତ୍ରାବାସରେ ସୁପରିଟେଣ୍ଡେଣ୍ଟ ଥିଲି । ଉତ୍ତମ ଅଧ୍ୟୟନ ନିମନ୍ତେ ତାକୁ ବହୁବାର ତାଗିଦ୍ କରିଛି । ଏବେ ସେ ଆମର ସମ୍ମାନାସ୍ପଦ ବିଧାୟକ । ମୋର ସାହସ ବଢ଼ିଗଲା । ମୁଁ ଠିକ୍ କରିନେଲି ଏଥରକ ନିରାକାରପୁର ହାଇସ୍କୁଲ ଗୃହ ନିଶ୍ଚୟ ତିଆର ହୋଇଯିବ । ସୁଦର୍ଶନବାବୁଙ୍କୁ ବହୁବାର କହିଛି ଓ ବହୁଥର ତା' ଗାଁ ଠିକଣାରେ ଚିଠି ଦେଇଛି । ବହୁବାର ସଭାସମିତିରେ ସାକ୍ଷାତ କରିଛି ଏବଂ କହିଛି, ''ବାପାରେ, ନିରାକାରପୁର ସ୍କୁଲ ଗୃହ ନିର୍ମାଣ ହେଲେ ତୁମର ସୁନାମ ବଢ଼ିଯିବ । ତୁମେ ସର୍ବଜନ ମାନ୍ୟ ହେବ । '' ସୁଦର୍ଶନଙ୍କ ଉତ୍ତରରେ ମୁଁ ସନ୍ତୋଷ ପ୍ରକାଶ କଲି ଏବଂ ଧାରଣା କଲି ନିରାକାରପୁର ହାଇସ୍କୁଲର ଭାଗ୍ୟ ଏଥରକ ବଦଳିଯିବ । ଶୁଭଦିନ ଆସି ପହଞ୍ଚିଲା । ଏହି ବର୍ଷ ବିଧାୟକ ଓ ଶିକ୍ଷାମନ୍ତ୍ରୀ ପ୍ରଦୀପ୍ତ ଦାସଙ୍କ ସାଙ୍ଗେ ଲାଗିଲି । ଏପରିକି ଶିକ୍ଷାମନ୍ତ୍ରୀ କଲେଜ ପରିଦର୍ଶନ କରିବାକୁ ଆସିଥିବାବେଳେ ବିଦ୍ୟାଳୟର ଦୈନ୍ୟ ଅବସ୍ଥା ଦେଖିବା ପାଇଁ ଅନୁରୋଧ କରିଥିଲି । ନିରାକାରପୁରର କେତେକ ଜାଣିବା ଶୁଣିବା ବ୍ୟକ୍ତି ତାଙ୍କୁ ସଙ୍ଗରେ ଆଣି ହାଇସ୍କୁଲର ନଗ୍ନରୂପ ଦେଖାଇଲେ । ସେଥିରେ କିଛି ବିଶେଷ ଫଳ ହେଲାନାହିଁ । ପ୍ରଦୀପ୍ତବାବୁଙ୍କୁ ଛାଡ଼ି ସୁଦର୍ଶନକୁ ବାରମ୍ବାର ଭେଟିଲି । ବହୁବାର ବୁଝାଇଲି । ବିଧାୟକଙ୍କ ମତାନୁଯାୟୀ ସେ ବର୍ଷ ପୁରସ୍କାର ବିତରଣ ସଭାକୁ ପ୍ରତାପବାବୁଙ୍କୁ ଆମନ୍ତ୍ରଣ କଲି । ଶିକ୍ଷା ସଚିବଙ୍କ ସହିତ ମନ୍ତ୍ରୀ ଆସି ପହଞ୍ଚିଲେ । ସ୍ଥାନାଭାବସତ୍ତ୍ୱେ ବିଦ୍ୟାଳୟ ଶିକ୍ଷାକ୍ଷେତ୍ରରେ ଆଗେଇଛି ଶୁଣି ମନ୍ତ୍ରୀମହୋଦୟ ସନ୍ତୋଷ ପ୍ରକାଶ କଲେ ଏବଂ ସତ୍ୟବାଦୀ ବନବିଦ୍ୟାଳୟକୁ ଉଦାହରଣ ଦେଇ ମତ ପ୍ରକାଶ କଲେ । ଆଉ ଘରର କଣ ଆବଶ୍ୟକତା,

ଫଳ ତ ସନ୍ତୋଷଜନକ ହେଉଛି । ମୋ ମନଟା ପ୍ରଥମେ ଫିକା ପଡ଼ିଗଲା । କିନ୍ତୁ ବିଦ୍ୟାଳୟ ଛାଡ଼ିବାବେଳେ ସେ ଗୃହ ନିର୍ମାଣ ପାଇଁ ଅନୁକୂଳ ମତ ପୋଷଣ କରିଥିଲେ । ସେ ବର୍ଷ ପୁରୀ ଜିଲ୍ଲାର ଉନ୍ନୟନ କମିଟିରେ ନିରାକାରପୁର ସ୍କୁଲ ଗୃହ ନିର୍ମାଣ ପ୍ରସ୍ତାବ ସର୍ବସମ୍ମତିକ୍ରମେ ଗୃହୀତ ହେଲା । ରାଜ୍ୟ ସରକାର ୬ ବଖରା ପକ୍କାଗୃହ ନିର୍ମାଣ ପାଇଁ ଦୁଇ ଲକ୍ଷ ଟଙ୍କା ମଞ୍ଜୁର କଲେ । ପୁରୀର ନିର୍ବାହୀଯନ୍ତ୍ରୀ, ଖୋରଧାର ସହକାରୀ ଇଞ୍ଜିନିୟର ଓ ଜୁନିୟର ଇଞ୍ଜିନିଅର ଶ୍ରୀ ବାଳକୃଷ୍ଣ ସ୍ୱାଇଁ ବାବୁଙ୍କର ସାହାଯ୍ୟ ମୁଁ ଭୁଲିପାରିବି ନାହିଁ । ବିଶେଷତଃ ସ୍ୱାଇଁବାବୁଙ୍କର ନିଷ୍ଠା ଓ କର୍ତ୍ତବ୍ୟପରାୟଣତା ମୋତେ ଅତ୍ୟନ୍ତ ମୁଗ୍ଧ କଲା । ବିଦ୍ୟାଳୟ ଗୃହ ନିର୍ମାଣ ହୋଇଗଲେ ଛାତ୍ରଛାତ୍ରୀମାନଙ୍କର ବହୁଦିନର ଅଭାବ ଦୂରୀଭୂତ ହେବ । ତା' ସହିତ ମୋର କାର୍ଯ୍ୟକାଳ ମଧ୍ୟରେ ଗୃହ କାର୍ଯ୍ୟ ସଂପୂର୍ଣ୍ଣ ହେଲେ ମୋର ଶ୍ରମ ସାର୍ଥକ ହେବ ଏବଂ ସ୍ଥାନୀୟ ଲୋକମାନଙ୍କର ମୁଁ ପ୍ରଶଂସାଭାଜନ ହେବି । ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ସ୍ୱାଇଁବାବୁଙ୍କ ଉପରେ ବାରମ୍ବାର ଚାପ ପକାଇଲି । ପୁରୀ ନିର୍ବାହୀ ଯନ୍ତ୍ରୀ ଶଶାଙ୍କବାବୁ ଥାଆନ୍ତି ନିକଟବର୍ତ୍ତୀ କାଶୀପୁର ଗ୍ରାମର ଓ ସେ ଏହି ସ୍କୁଲର ଛାତ୍ର । ତେଣୁ ତାଙ୍କ ଉପରେ ଚାପ ବି ପକେଇଲି ।

ବହୁ ପୋଷିତ ଟେଣ୍ଡର ଡକାଗଲା । ଜଣେ କଣ୍ଟ୍ରାକ୍ଟର କାମ ଆରମ୍ଭ କଲେ । ଡନାଘଁନାରେ କାମ ଦ୍ରୁତଗତିରେ ଆଗେଇଲା । କାମ ଅଧା ହେଲାବେଳକୁ ସେ ତ କୁଆଡ଼େ ଗଲେ ଆଉ ଆସିଲେ ନାହିଁ । ମୋ ମୁଣ୍ଡକୁ ତେନ୍ତୁଳିଆ ବିଛା କାମୁଡ଼ିଲା । ପୁନଃ ସ୍ୱାଇଁ ବାବୁଙ୍କ ପଛେ ପଛେ ଲାଗିଲି । ଖୋରଧା ସହକାରୀ ଇଞ୍ଜିନିୟରଙ୍କୁ ବହୁଥର ସାକ୍ଷାତ କଲି । ମଝିରେ ମଝିରେ ଡି.ଓ. ଲେଟର ଲେଖିଲି । ମନରେ ଧାରଣା ହେଲା ଯଦି ନ ସରେ ତେବେ ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଯିବ । ମୁଁ ତ ଅବସର ନେଇଯିବି, ପରେ ଗୃହ ନିର୍ମାଣ ଶେଷ ହେଲେ ମୋର କି ଲାଭ ? ପୁନଃ ଟେଣ୍ଡର ଡକା ହେଲା । ଦୂରଦୂରାନ୍ତରରୁ ଜଣେ କଣ୍ଟ୍ରାକ୍ଟର ଆସିଲେ । ପୂର୍ବାପେକ୍ଷା ଉକ୍ତ କଣ୍ଟ୍ରାକ୍ଟର ଆଗ୍ରହୀ ପରି ଜଣାପଡୁଥିଲେ । କାର୍ଯ୍ୟଟି କିପରି ଶୀଘ୍ର ସମ୍ପୂର୍ଣ୍ଣ ହେବ ଏଥିପାଇଁ ମୁଁ ବ୍ୟାକୁଳ ଥିଲି । ସେ ମହାଶୟଙ୍କୁ କଥାକଥାରେ ସନ୍ତୁଷ୍ଟ କଲି । ସେ ପୂରାଦମରେ କାର୍ଯ୍ୟରେ ଲାଗିଗଲେ । ମୁଁ ସର୍ବଦା ପ୍ରଭୁଙ୍କ ଉପରେ ନିର୍ଭର କରୁଥାଏ । ବାଳକୃଷ୍ଣ ସ୍ୱାଇଁ ବାବୁ କାମ କରିବା ଲୋକ । ଯେତେବେଳେ କାମ ବନ୍ଦ ହେଉଥାଏ ସେତେବେଳେ ମୁଁ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ଉତ୍ସାହ ଦେଉଥାଏ । ଏହିପରି ସମୟରେ ଜନତା ସରକାର କେନ୍ଦ୍ରରେ ତିରିଶ ମାସ ତିଷ୍ଠି ରହି ଭାଙ୍ଗିଗଲା । ଏହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ମୁଁ ଅନୁଭବ କଲି ମୋ କାମଟା ବନ୍ଦ ହୋଇଯିବ କି ?

## ଜନତା ସରକାର :

ଜନତା ସରକାରରେ ସବୁ ଦଳର ବାଘଗୁଡ଼ାକ ଏକାଠି ହୋଇଥିଲେ । ତେଣୁ ଝଗଡ଼ା ଲାଗିବା ସ୍ୱାଭାବିକ, ଉତ୍ତମ ବୁଝାମଣା ନ ରହିଲେ କୌଣସି ଅନୁଷ୍ଠାନ ଉଧେଇ ପାରେ ନାହିଁ । ଜନତା ଦଳର ସୃଷ୍ଟିକର୍ତ୍ତା ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ଦେହାନ୍ତ ହୋଇଯିବାପରେ ସେମାନଙ୍କୁ ଏକତା ସୂତ୍ରରେ ଆବଦ୍ଧ ରଖିବାକୁ କେହି ରହିଲେ ନାହିଁ । ସ୍ୱାର୍ଥ ମନୁଷ୍ୟର ସମସ୍ତ ଦୁଃଖ ଦୁର୍ଗତିର କାରଣ । ଯେଉଁମାନେ ପୁରୋଭାଗରେ ରହିବେ, ଯେଉଁମାନେ ଦେଶର ଲଗାମ ଧାରଣ କରିବାକୁ ଯୋଗ୍ୟ, ଯେଉଁମାନେ ଦେଶର ଗୋଟିଏ ଗୋଟିଏ ମୁଣ୍ଡ ସେମାନେ ଯଦି ସଂକୀର୍ଣ୍ଣ ସ୍ୱାର୍ଥାନ୍ୱେଷୀ ହେବେ ତେବେ ସେ ଦେଶ ଅଗ୍ରଗତି କରିପାରିବ କି ? ଜନତା ସରକାର ଭଲ କାମ ଗୁଡ଼ିଏ ହାତକୁ ନେଇଥିଲା । ଭଲ ବି ଚାଲୁଥିଲା । ଓଡ଼ିଶାର ଦୁଇ ତିନିଜଣ କ୍ୟାବିନେଟ ମନ୍ତ୍ରୀ ଥିଲେ ତେବେ ସମସ୍ତେ ମୁରବୀ ସାଜିଲେ କଣ ଗୃହ ଚାଲିବ ? ନେତାଏ କହିଲେ ''ଶ୍ରୀ ଚରଣ ସିଂହ ଓ ରାଜନାରାୟଣଙ୍କ ଚକ୍ରାନ୍ତ ଯୋଗୁଁ ସରକାର ପତନ ହେଲା ।'' ମୁଁ ତ ସ୍ୱଭାବତଃ ଭୟାଳୁ, ପ୍ରମାଦ ଗଣିଲି । ଜନସାଧାରଣ ମନେକଲେ କଂଗ୍ରେସ ବ୍ୟତୀତ ଆଉ କେହି ଦେଶ ଚଳେଇ ପାରିବେ ନାହିଁ । ଲୋକେ କଂଗ୍ରେସ ଉପରେ ଆସ୍ଥା ରଖିଲେ । ପୁନଃ ନିର୍ବାଚନରେ କେନ୍ଦ୍ରରେ ଇନ୍ଦିରା ଗାନ୍ଧୀ ସରକାର ଗଢ଼ିଲେ ଓ ରାଜ୍ୟରେ ଜାନକୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଆସନ ଗ୍ରହଣ କଲେ । କଂଗ୍ରେସ ସରକାର ଅମଳରେ କାମ ବନ୍ଦ ହୋଇଯିବ କି ? ମୁଁ କୌଣସି ଦଳର ଶତ୍ରୁ ନଥିଲି । ମୋର ଭୟ ଓ ଆଶଙ୍କା ଦୂର ହେଲା କାମ ଯେମିତି ଚାଲୁଥିଲା ସେମିତି ଚାଲିଲା ।

## ଛାତ୍ରଛାତ୍ରୀମାନଙ୍କୁ ସୁମଣିଷ କରି ଗଢ଼ି ତୋଳିବା ପାଇଁ ନାନା ଉପାୟ :

ମୁଁ ଯେ କେବଳ ଗୃହ ନିର୍ମାଣରେ ଲିପ୍ତ ଥିଲି ତା ନୁହେଁ । ଗୃହ ନିର୍ମାଣ କାର୍ଯ୍ୟ ତା ବାଟରେ ଆଗେଇ ଚାଲିଥାଏ । ଏଣେ ଅଧାପକ କାର୍ଯ୍ୟ ଜୋରସୋରରେ ଚାଲିଥାଏ । ବିଦ୍ୟାଳୟ ଆରମ୍ଭ ପୂର୍ବରୁ ପ୍ରତିଦିନ ପ୍ରାର୍ଥନା ସଭା ହୁଏ । ସ୍କୁଲର ବହୁ ଅସୁବିଧା । ହଲଟିଏ ନଥିଲା । ପ୍ରତିଦିନ ଛାତ୍ରଛାତ୍ରୀମାନେ ବିଦ୍ୟାଳୟ ସମ୍ମୁଖରେ ଦଣ୍ଡାୟମାନ ହୋଇ ରହିଥିବା ଆମ୍ରବୃକ୍ଷ ମୂଳେ ଏକତ୍ରିତ ହୁଅନ୍ତି । ଠିକ୍ ଦଶଟା ପନ୍ଦର ମିନିଟରେ ମୁଁ ପ୍ରାର୍ଥନାରେ ଯୋଗଦିଏ ଏବଂ ସମୟାନୁବର୍ତ୍ତୀ ଶ୍ରୀ ବଳଭଦ୍ର ମହାପାତ୍ର ମଧ ଯୋଗଦିଅନ୍ତି । ଅନ୍ୟ ଶିକ୍ଷକମାନଙ୍କୁ ବାଧ କରେନାହିଁ । କିନ୍ତୁ ସାଢ଼େ ଦଶଟାରୁ ଚାରିଟା ହେଉଛି ସ୍କୁଲ ସମୟ । ସେ ସମୟରେ ବିଦ୍ୟାଳୟରେ ଅଧାପନା କାର୍ଯ୍ୟ ସୁଚାରୁରୂପେ ପାଳନ କରିବା ପାଇଁ କଡ଼ାକଡ଼ି ନଜର

ଦିଏ । ପିଲାମାନଙ୍କୁ ଶୃଙ୍ଖଳାଭିତ୍ତିରେ ଆବଦ୍ଧ ରଖିବାକୁ ଶିକ୍ଷକମାନେ ତୀକ୍ଷ୍ଣ ନଜର ଦେବା ବାଞ୍ଛନୀୟ । ନିରପେକ୍ଷତା ଅବଲମ୍ବନ ମୋର ମୁଖ୍ୟ କାର୍ଯ୍ୟ । ଜଣକୁ ଭଲ ପାଇବା ଓ ଅନ୍ୟକୁ ଶତ୍ରୁବୋଲି ବିବେଚନା କରିବା ମୋର ଧର୍ମ ନୁହେଁ ।

## ବିଦ୍ୟାଳୟରେ ଭିନ୍ନ ଭିନ୍ନ ଦିବସ ପାଳନ :

ସାରାବର୍ଷ ବିଦ୍ୟାଳୟରେ ଜାତୀୟ ବୀରମାନଙ୍କର ଜୟନ୍ତୀ ଓ ଶ୍ରାଦ୍ଧବାସରରେ ସେମାନଙ୍କ ମହନୀୟ ଗୁଣଗାନ କରି ଓ କରାଇ ଛାତ୍ରଛାତ୍ରୀମାନଙ୍କୁ ଅନୁରୂପ ଚରିତ୍ର ଗଠନ କରିବା ପାଇଁ ପ୍ରେରଣା ଯୋଗାଏ । ଏଠାରେ ଛାତ୍ରଛାତ୍ରୀମାନେ ନିଜ ଗୃହରୁ ଶିଷ୍ଟାଚାର, ସହୃଦୟତା, କର୍ତ୍ତବ୍ୟପରାୟଣତା ଗୁଣଗୁଡ଼ିକ ଶିକ୍ଷା କରିବାରେ ଅବହେଳା ପ୍ରଦର୍ଶନ କରିଥାଆନ୍ତି । କେତେକ ପିଲାଙ୍କଠାରେ ରୂକ୍ଷ ବ୍ୟବହାର ଦେଖାଯାଏ । ଶିକ୍ଷକମାନଙ୍କୁ ପ୍ରଥମେ ଆସନ ଗ୍ରହଣ କରିଥିବାବେଳେ ପଥ ଅତିକ୍ରମ କରିବା ବିଧି ଶିଖେଇବାକୁ ପଡୁଥିଲା । ପିଲାମାନଙ୍କୁ ମୁଁ ବାଧ କରୁଥିଲି, ''ମୋତେ ନମସ୍କାର କର, ଶିକ୍ଷକମାନଙ୍କୁ ନମସ୍କାର କର ।'' ଏପରି କଥା କହିଲେ ଲୋକେ ହସିବେ । କିନ୍ତୁ ସେମାନେ ଘରୁ ତ ଶିଖିଲେ ନାହିଁ, ତେଣୁ ଶିକ୍ଷାନୁଷ୍ଠାନରେ ଶିଖେଇବାକୁ ପଡ଼ିବ । ନମ୍ର ହୁଅ, ଭଦ୍ର ହୁଅ, ବାପା ମା, ମଉସା ମାଉସୀ, ମାମୁ ମାଈଁ, ଅଜା ଆଈ ପ୍ରଭୃତିଙ୍କୁ କିପରି ସମ୍ମାନ ଦିଆଯିବା ଏହା ବି ଶିଖେଇବାକୁ ପଡୁଥିଲା । ଅସଲ ଉଦ୍ଦେଶ୍ୟ ସେମାନେ ନିଜେ ଭଲ ହେବେ ଅନ୍ୟମାନଙ୍କୁ ଭଲ ହେବାରେ ସାହାଯ୍ୟ କରିବେ । ଦେଶର ସୁନାଗରିକ ହେବା ପାଇଁ, ଅନ୍ୟ ପ୍ରତି ଦୟା ଦେଖାଇବା ପାଇଁ ଓ ଦୀନ ଦୁଃଖୀଙ୍କୁ ଅସମୟରେ ସାହାଯ୍ୟ କରିବା ପାଇଁ ସେମାନଙ୍କୁ ଉପଦେଶ ଦେବାକୁ ପଡ଼ିଥାଏ । ଏପରିକ ନିଜ ଆଚରଣ ଦ୍ୱାରା ଛାତ୍ରଛାତ୍ରୀମାନଙ୍କୁ ପ୍ରଭାବିତ କରିବାକୁ ପଡ଼େ । ବିଦ୍ୟାଳୟରେ ଯେତେଗୁଡ଼ିଏ ପର୍ବପର୍ବାଣି ପାଳନ କରାଯାଏ ତାର ଗୁରୁତ୍ୱ ସେମାନଙ୍କୁ ଅବଗତ କରାଯାଏ । ଗୁରୁଦିବସ ପାଳନ ବିଷୟରେ ପିଲାମାନଙ୍କୁ ବୁଝାଇ ଦିଆଯାଏ । ଶିକ୍ଷକମାନେ ଗୁରୁଦିବସ ପାଳନ କରିବେ କିପରି ? ଅଭିଭାବକମାନେ ଜନସାଧାରଣ ଓ ସରକାର ଗୁରୁଙ୍କର ଗୁଣାବଳୀ ବର୍ଣ୍ଣନା କରି ପିଲାମାନଙ୍କୁ ସେହିପରି ଗଢ଼ିବା ପାଇଁ ପରାମର୍ଶ ଦେବା ଉଚିତ । ଅବଶ୍ୟ ଗୁରୁମାନେ ଗୁରୁହେବାକୁ ଯୋଗ୍ୟ ହେବା ବାଞ୍ଛନୀୟ । ଗୁରୁ ଆଦର୍ଶସ୍ଥାନୀୟ ନହେଲେ, ସବୁ ସୁଗୁଣର ଅଧିକାର ନହେଲେ ସେ ଗୁରୁପଦବାଚ୍ୟ ହେବେନାହିଁ । 'ମାଗି ଓଳିକି ଯାଚି କଲ୍ୟାଣ' ନ୍ୟାୟରେ ଗୁରୁ ମୂଳରୁ ଚୂଳ ପର୍ଯ୍ୟନ୍ତ ପିଲା କିପରି ସ୍ୱର୍ଗୀୟ ଗୁଣଗୁଡ଼ିକର ଅଧିକାରୀ ହେବ ତାର ପ୍ରଚେଷ୍ଟା ଶିକ୍ଷକ କରେଇପାରିବେ । ପିଲାମାନଙ୍କୁ ଉତ୍ତମ ମଣିଷ କରିବାକୁ ମୁଁ ସର୍ବଦା

ସଚେଷ୍ଟ । ତେଣୁ ବାହାରୁ ଧର୍ମାତ୍ମା ଲୋକମାନଙ୍କୁ ସ୍କୁଲକୁ ଡକାଇ ପିଲାମାନଙ୍କୁ ଉଦ୍‌ବୋଧନ ଦେବାପାଇଁ ବହୁ ଚେଷ୍ଟା କରିଛି ।

## ରାଜ୍ୟ ଭିତରୁ ଧର୍ମାତ୍ମାମାନଙ୍କୁ ଆଣି ପ୍ରବଚନ ପ୍ରଦାନ :

ମୁଁ ତ ସବୁବେଳେ ପିଲାମାନଙ୍କୁ କହିଛି କିନ୍ତୁ ନିଜେ ଉପଦେଶ ଦେଲେ ତାର ପ୍ରଭାବ ଅପେକ୍ଷା ସାଧୁସନ୍ଥମାନେ ଉପଦେଶ ଦେଲେ ଅଧିକ ପ୍ରଭାବ ପଡ଼ିବ । ପ୍ରଧାନ ଶିକ୍ଷକ ଶ୍ରୀ ଦିବ୍ୟସିଂହବାବୁ, ଶ୍ରୀ ବିନାୟକ ଷଡ଼ଙ୍ଗୀ ଓ ସାଧୁ ସନ୍ୟାସୀମାନଙ୍କୁ ବହୁବାର ବିଦ୍ୟାଳୟ ପରିସରକୁ ଆମନ୍ତ୍ରଣ କରି ବହୁ ଧର୍ମବାଣୀ, ନୀତବାଣୀ, ସଦାଚାର ଶୁଣାଇଛି । ସ୍ଥାନୀୟ କଲେଜରେ ସଂସ୍କୃତ ଭାଷାଭିତ୍ତିକ ଓ ବିଜ୍ଞାନ ପ୍ରାଧ୍ୟାପକ ଶ୍ରୀ ସୁଧାଂଶୁ ଭୂଷଣ ଦାସଙ୍କୁ ନିମନ୍ତ୍ରଣ କରି ପିଲାମାନଙ୍କୁ ସୁମଣିଷ କରିବାରେ ସାହାଯ୍ୟ କରିଛି । ବହୁବାର ବାହାର ମହତ ବ୍ୟକ୍ତିମାନଙ୍କୁ ନିମନ୍ତ୍ରଣ କରିଛି କେବଳ ଆମର ଦାୟାଦମାନଙ୍କୁ ଶୁଦ୍ଧ ସୁବର୍ଣ୍ଣ ପରି ଗଢ଼ି ତୋଳିବା ପାଇଁ । ଏହା ପିଲାମାନଙ୍କ ଉପରେ ଭଲ ପ୍ରଭାବ ପକାଇଛି ବୋଲି ମୋର ଦୃଢ଼ ଧାରଣା । ହେଡମାଷ୍ଟର କେବଳ ଜ୍ଞାନୀ ହେଲେ ଚଳିବ ନାହିଁ ତାଙ୍କ ଜ୍ଞାନକୁ ପିଲାମାନଙ୍କ ମଧ୍ୟରେ କିପରି ବିତରଣ କରାଯିବ ତାହା ଦେଖିବା ତାଙ୍କର ପରମ କର୍ତ୍ତବ୍ୟ । ପ୍ରଧାନ ଶିକ୍ଷକ ମଧ ସୁଗୁଣଗୁଡ଼ିକର ଅଧିକାରୀ ହେବା କଥା । ଶିକ୍ଷକମାନେ ମଧ ମାନବିକ ସୁଗୁଣଗୁଡ଼ିକ ଆହରଣ କରିବେ । ଛାତ୍ରମାନେ ସମସ୍ତ ମହାନ୍ ଗୁଣ ସେମାନଙ୍କଠାରୁ ଶିକ୍ଷା କରିବେ । କିନ୍ତୁ ସର୍ବୋପରି ନିର୍ଦ୍ଦିଷ୍ଟ ବିଦ୍ୟାଭ୍ୟାସ କରିବେ । ''ଛାତ୍ରଣାଂ ଅଧ୍ୟୟନଃ ତପଃ'' । ଏହାକୁ ସ୍ମରଣ କରିବେ । ତେଣୁ ନିରାକାରପୁର ହାଇସ୍କୁଲରେ ଉତ୍ତମ ପଢ଼ା ବାୟୁମଣ୍ଡଳ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସଦାଚାର ଶିକ୍ଷାରେ ମୁଁ ଲାଗିପଡ଼ିଥିଲି । ପିଲାମାନେ ଦେଶର କିପରି ଗୋଟିଏ ଗୋଟିଏ କୀର୍ତ୍ତିସ୍ତମ୍ଭ ହୋଇପାରିବେ ଏହା ହିଁ ମୋର ଭାବନା ଥିଲା । ସେତେବେଳେ ଯେଉଁ ଉନ୍ନତ ପରମ୍ପରା ସୃଷ୍ଟି କରିଥିଲି, ଯେଉଁ ସୁଦୃଢ଼ ଶୃଙ୍ଖଳା ସ୍ଥାନ ସୃଷ୍ଟି କରିଥିଲି ତାହା ବହୁବର୍ଷ ପର୍ଯ୍ୟନ୍ତ ବଳବତ୍ତର ଥିଲା । ଗୋଟିଏ ମହାନ୍ ପରମ୍ପରା ସୃଷ୍ଟି କରିବାକୁ ଯେତିକି ସମୟ ଲାଗେ ତାକୁ ଧ୍ୱଂସ କରିବାକୁ ତା'ଠାରୁ ବେଶି ସମୟ ଲାଗେ । ତେବେ ଛାତ୍ରମାନଙ୍କ ଚରିତ୍ର ଗଠନ ମୋର ମୁଖ୍ୟ କାମ ଥିଲା । ନୀତିଶିକ୍ଷା ପିରିୟଡ଼ ପ୍ରଚଳନ ଏ ଦିଗରେ ସମ୍ୟକ୍ ପଦକ୍ଷେପ ଗ୍ରହଣ କରିଥିଲା ।

## ଝୁନୁର ବାହାଘର :

ସ୍ତ୍ରୀଙ୍କ ମୃତ୍ୟୁର ଏକ ବର୍ଷପରେ ଝିଅ ଜୟଶ୍ରୀର ବିଭାଘର କରେଇ ନେଲି । ସ୍ତ୍ରୀଙ୍କର ପଣ ଅନୁଯାୟୀ ବାବୁ ନକୁଳ କୁମାରଙ୍କ ସହିତ ସେ ବର୍ଷ ଅର୍ଥାତ୍ ୧୯୭୮ ମସିହା ମେ

ମାସ ୩୧ ତାରିଖରେ ବିବାହ ସମ୍ପନ୍ନ ହୋଇଗଲା । ବିଭାଘର କରେଇବା ମୋ ଜୀବନରେ ନୂଆ । ମୁଁ ଅଣ୍ଡିରାଚଣ୍ଡିଆ ଲୋକ । ସ୍ତ୍ରୀଙ୍କର ବିୟୋଗ ପରେ ଦୁଇ କନ୍ୟାଙ୍କର ବିଭାଘର ଶୀଘ୍ର ସଂପନ୍ନ କରିଦେବି ବୋଲି ମନସ୍ଥ କରିଥିଲି । ସମାଜ ଜୀବନରେ ମୋର ସ୍ଥାନ ସ୍ୱଳ୍ପ । ବୁଦ୍ଧିମତୀ ଧର୍ମପତ୍ନୀ ନାହାନ୍ତି । ଯାହାହେଉ ବନ୍ଧୁବାନ୍ଧବ ପରିଜନମାନେ ମିଶି ବାହାଘର ସୁରୁଖୁରୁରେ କରେଇ ନେଲେ । କଥାରେ ଅଛି ବିଭାଘର ପରେ ବେଦି ମୁଁହ ପୋଡ଼ା । କିନ୍ତୁ ଏକ ବର୍ଷ ପର୍ଯ୍ୟନ୍ତ ଜୁଆଇଁ ସାଆନ୍ତଙ୍କ ଘରକୁ ଭାର ସମ୍ଭାର ବୋହିବାକୁ ପଡ଼ିଲା । ସେତେବେଳେ ବଜାର ଦରର ନମୁନା ଏଠାରେ ଦେଲି ।

| | | | | | |
|---|---|---|---|---|---|
| ବେସନ | ୧ କେଜି. | ଟ. ୩.୦୦ | ଚିନି | ୧ କେ.ଜି | ଟ. ୪.୧୮ |
| ଜିରା | ୧ କେ.ଜି | ଟ. ୨୭.୦୦ | ହଳଦୀ | ୧ କେ.ଜି | ଟ. ୮.୭୫ |
| ମଇଦା | ୧ କେ.ଜି | ଟ. ୧.୮୨ | ହରଡ଼ ଡ଼ାଲି | ୧ କେ.ଜି. | ଟ. ୪.୫୦ |
| ସୁଜି | ୧ କେ.ଜି | ଟ. ୧.୮୫ | ନାଲିଲଙ୍କା | ୧ କେ.ଜି. | ଟ. ୭.୨୫ |
| ସୋରିଷ | ୧ କେ.ଜି | ଟ. ୩.୬୫ | ତେଜପତ୍ର | ୨୦୦ ଗ୍ରା. | ଟ. ୦.୪୦ |
| ଧନିଆ | ୧ କେ.ଜି | ଟ. ୩.୨୫ | ପୋସ୍ତକ | ୧ କେ.ଜି. | ଟ. ୭.୦୦ |
| ଗୋଲମରିଚ | ୧୦୦ଗ୍ରା | ଟ. ୨.୧୦ | ପାନମଧୁରୀ | ୫୦୦ଗ୍ରା. | ଟ. ୩.୧୩ |
| କଳାଜିରା | ୨୦୦ଗ୍ରା | ଟ. ୨.୪୦ | | | |

ଦିନକୁଦିନ ମୁଦ୍ରାସ୍ଫୀତି ଘଟୁଛି । ସରକାର ଋଣଭାରରେ ସଢ଼ୁଛନ୍ତି ଏଥିମଧ୍ୟରେ ଦର ଆକାଶଛୁଆଁ ହେଲାଣି । ମୋର ୧୯୮୧ ମସିହାରେ ଅବସର ସମୟରେ ବଜାର ଦର ଯାହାଥିଲା ଏବେ ୨୦୦୩ ମସିହାରେ ଦଶଗୁଣ ପନ୍ଦରଗୁଣ ବି ବଢ଼ିଛି । ଇନ୍ଦିରା ଗାନ୍ଧୀ ଯେତେବେଳେ ୧୯୮୦ରେ ଭାରତ ଶାସନର ଲଗାମ ପୁନଃ ଧରିଲେ ଦରଦାମ୍ ଯେପରି ଦ୍ରୁତ ଗତିରେ ଆକାଶକୁ ଉଠିଗଲା, ଉପର ସ୍ତରରେ ଦୁର୍ନୀତିର ହାଉଆ ସେହିପରି ବିଜୁଳି ବେଗରେ ପ୍ରବାହିତ ହେଲା ।

## ପୁନଃ ବଦଳିପାଲା :

ଝୁନୁର ବାହାଘର ସିନା ଶେଷ ହେଲା ପୁଣି ବର୍ଷକର ପର୍ବପର୍ବାଣି ଅଛି । ପୁରୀ ଜିଲ୍ଲାରେ ଜଗନ୍ନାଥ ମହାପ୍ରଭୁଙ୍କ ବେଶି ପ୍ରଭାବ ଥିବାରୁ ବାର ମାସରେ ତେର ପର୍ବ ପାଳିତ

ହୁଏ । ଅନ୍ୟ ଜିଲ୍ଲାମାନଙ୍କରେ ଏପରି ସିଧିବିଧି ଦେଖାଯାଏ ନାହିଁ । ବାହାଘର ପରେ ଟିକିଏ ନିଶ୍ୱାସ ମାରିଲାବେଳକୁ ମୋ ପଛରେ ଲାଗିଗଲେ ଦୁଷ୍ଟବୁଦ୍ଧିମାନେ । ପୁଣି ବଦଳି ପାଲା । ସେହି ବରିଷ୍ଠ ଶିକ୍ଷକ ଯାହାଙ୍କୁ ମୁଁ ମେଳିଆ ଓ କୁଆଚରଣ ହେତୁ ଏ ସ୍କୁଲରୁ ୧୯୭୭ ମସିହାରେ ବଦଳି କରି ଦେଇଥିଲି ନିଜ ଅଞ୍ଚଳର ମନ୍ତ୍ରୀଙ୍କ ଦୟାରୁ ଯେ ପୁଣି ଏଠାରେ ଦୁଇ ଦିନ ପରେ ଅବସ୍ଥାପିତ ହେଲେ ସେହି ଶିକ୍ଷକ ଡି.ପି.ଆଇ. ଅଫିସର ଏ ଅଞ୍ଚଳବାସୀ ଜଣେ କିରାଣିଙ୍କ ସାହାଯ୍ୟରେ ମୋର ଦୂର ସ୍ଥାନକୁ ବଦଳି କରିଦେଲେ ।

## ବିନାମେଘେ ବଜ୍ରପାତ :

ଏ ଦାରୁଣ ସମୟରେ ଏ ବିପଦ ଆସି ପହଞ୍ଚିଲା । ସେ ଶିକ୍ଷକ ମହାଶୟ ଓ ତାଙ୍କର ଦୁଇଜଣ ସହଯୋଗୀ ମୋ ଅଲକ୍ଷ୍ୟରେ ଖାଲି କୁରୁଳି ହସିଲେ । ତାଙ୍କର ପୁଷମାସକୁ ମୋର ସର୍ବନାଶ । ବନବାସିନୀଙ୍କ ମୃତ୍ୟୁରେ ମୁଁ ଛାନିଆ ହୋଇପଡ଼ିଥିଲି । ପରିବାରର ସବୁତକ ବୋଝ ମୋ ମୁଣ୍ଡରେ ପଡ଼ିଲା । ଏପର୍ଯ୍ୟନ୍ତ ଦୁଇଟି ଚକରେ ଗାଡ଼ି ଚାଲୁଥିଲା । ଗୋଟିଏ ଚକ ଭାଙ୍ଗିଗଲା । ସ୍କୁଲ କାମ କିପରି ଚଳାଇବି, ପିଲାମାନଙ୍କ କଥା ବୁଝିବି କିପରି, ଗାଁ ଜମିକଥା ପୁଣି ଅଛି ? ତେଣୁ ନିରାକାରପୁରରୁ ଗାଁ ପାଖକୁ ଗଲେ ଉତ୍ତମ ହେବ । ଖୋର୍ଦ୍ଧା ହାଇସ୍କୁଲକୁ ଯିବି ବୋଲି ଗୋଟିଏ ସ୍ମାରକ ପତ୍ର ଝିଅ ବିଭାହେବା ପରେ ପରେ ଡି.ପି.ଆଇ. ମହୋଦୟଙ୍କ ପାଖକୁ ପଠାଇଥିଲି । ମାତ୍ର ଖୋର୍ଦ୍ଧା ସ୍କୁଲ ପରିବର୍ତ୍ତେ ଗଞ୍ଜାମର ଗୋଳମାଳିଆ ଜାଗା ପୁରୁଷୋତ୍ତମପୁରକୁ ମୋର ବଦଳି କରାଯାଇଥିଲା । ଚାକିରି ତ କରିଥାଇଁ ବଦଳିକୁ ଭୟ କଲେ କଣ ଚଳିବ ? ତେବେ ମୋର ଏପରି ଦୁର୍ଦ୍ଦିନରେ ସେଠାକୁ ଯିବା ମୋ ପକ୍ଷେ ସମ୍ଭବ ହେଲାନାହଁ । ସବୁଦିନ ସମାନ ଯାଏନାହିଁ । ବନବାସିନୀଙ୍କ ମୃତ୍ୟୁପରେ ନାନା ଦୁର୍ବିପାକ ଦେଇ ଗତି କରିବାକୁ ପଡୁଥାଏ । ପରିବାର ଅବସ୍ଥା କାହାକୁ ଜଣା ନହେଲେ ବି ମୋ ଶିକ୍ଷକ ଭାଇମାନଙ୍କୁ ଜଣା । କର୍ତ୍ତବ୍ୟନିଷ୍ଠ, ସମୟାନୁବର୍ତ୍ତୀ ଲୋକର ନିଜ ଅନୁଷ୍ଠାନରେ ଶତ୍ରୁ ଅନେକ ବାହାରିବେ । ମନ ଭିତରେ ଏକ ମିଶନାରୀ ସ୍ପିରିଟ୍ ଜାଗ୍ରତ ନହେଲେ ଶିକ୍ଷକ ଜନସେବା କାର୍ଯ୍ୟ ବା ଛାତ୍ରସେବା କାର୍ଯ୍ୟ ପରି ମହତ କାର୍ଯ୍ୟ ସମ୍ପାଦନ କରିପାରେନାହିଁ । ସବୁ ଲୋକ ସମାନ ହୋଇଗଲେ, କର୍ତ୍ତବ୍ୟପରାୟଣ ତଥା ସମୟାନୁବର୍ତ୍ତୀ ହୋଇଗଲେ, ଧର୍ମପ୍ରାଣ ତଥା ଉଦାରତାଭାବାପନ୍ନ ହୋଇଗଲେ ପୃଥିବୀ ସ୍ୱର୍ଗରେ ପରିଣତ ହୋଇଯାଆନ୍ତା । ପ୍ରତ୍ୟେକ ଅନୁଷ୍ଠାନରେ ଦୁଷ୍ଟବୁଦ୍ଧି ରହିବେ ହିଁ ରହିବେ, ସେତେବେଳେ ସେମାନେ ନ୍ୟାୟ ଅନ୍ୟାୟ ବିଚାର କରନ୍ତି ନାହିଁ । ମୁଁ ତ କିଛି ଦୋଷ କରିନାହିଁ, ଯେଉଁ ଶିକ୍ଷକ କାର୍ଯ୍ୟରେ ଅବହେଳା କରନ୍ତି ସେମାନଙ୍କୁ ତାଗିଦ୍ କରିବା କ'ଣ ପାପ ? ମୁଁ ଖୁବ୍

କାର୍ଯ୍ୟଦକ୍ଷ କିନ୍ତୁ ଦୈବ ମୋ ଦମ୍ଭ ଭାଙ୍ଗି ଦେଉଛି । ବେଡ଼ି ଉପରେ କୋରଡ଼ା ମାଡ଼ । ସବୁ ସ୍ଥାନରେ ଦୁର୍ଦ୍ଦଶା ବଢ଼ିଯାଏ । ଯେତେବେଳେ ମୋତେ ଦଣ୍ଡ ମିଳିଛି, ପ୍ରଭୁ ପଠେଇଛନ୍ତି ବୋଲି ଧାରଣା କରିନେଲି । ଯେ ଦଣ୍ଡ ଦେଇଛନ୍ତି ସେ ଦଣ୍ଡରୁ ମୁକୁଳାଇବେ । ଜଣେ ଲୋକ ମୁଣ୍ଡଭାବେ ଗୋଟିଏ ଜାଗାରେ ଆଠ ନଅବର୍ଷ ରହିଗଲେ ସାଧାରଣ ଲୋକଙ୍କ କଥା ବା କ'ଣ କହିବା ଶିକ୍ଷକମାନଙ୍କ ଭିତରୁ ଶତ୍ରୁ ବାହାରିବେ । ସବୁବେଳେ ଶୃଙ୍ଖଳିତ ଜୀବନଯାପନ କରି ସେମାନେ ଅତିଷ୍ଠ ହେଲେଣି । କେତେକ ମୋ ବଦଳିକୁ ସ୍ୱାଗତ କଲେ, କେତେକ ନିରପେକ୍ଷ ରହିଲେ ।

ରହୁ ରହୁ ନାନା ଘାତପ୍ରତିଘାତ ଭିତରେ ନିରାକାରପୁରରେ ଆଠ ବର୍ଷ ରହିଗଲି । ଗୋଟିଏ ସ୍ଥାନରେ ପୁଣି ମୁଣ୍ଡ ହୋଇ ରହିଲେ କେତେଲୋକ ନାସିକା କୁଞ୍ଚନ କଲେ । ଏପରିକି ଜଣେ ଶିକ୍ଷାବିତ୍ ଅଧ୍ୟାପକ ବି କହିଲେ ମୁରଲୀବାବୁ ଏଠାରୁ ବଦଳି ହୋଇ ଅନ୍ୟ ସ୍ଥାନକୁ ଯାଉନାହାନ୍ତି କାହିଁକି ? ପୁନଃ ମୋର ଦୃଢ଼ ଶୃଙ୍ଖଳାରକ୍ଷାରେ କେତେକଙ୍କର ଅସୁବିଧା ହେଉଥିଲା । ମୁଁ କାହାକଥା ରଖୁନଥିଲି । ସେ ଦୃଷ୍ଟିରୁ ଦେଖିଲେ ମୋ ବଦଳି ହେବା ଠିକ୍ କିନ୍ତୁ କେତେକ ବାହାର ଲୋକଙ୍କର ମଙ୍ଗଳ ନହେଲେ ବି ଅନୁଷ୍ଠାନର ମାନ ଉନ୍ନତ ରଖିବାକୁ ମୁଁ ସର୍ବଦା ବ୍ରତୀ ଥିଲି । ଜଣେ ଅଧ୍ୟାପକଙ୍କ ଅଭିଯୋଗ ମୋ କାନକୁ ଆସିଲା, ମନେ ମନେ ଦୁଃଖିତ ହେଲି । ଯେତେବେଳେ ଦେଖିଲି ଏଠାରେ ରହିବା ଉଚିତ ହେବନାହିଁ ସେତେବେଳକୁ ମୋର କାଳ ଶେଷ ହୋଇ ଆସୁଥିଲା । ମୁଁ କ'ଣ କାହାର କ୍ଷତି କରୁଥିଲି କି ? ତେବେ ଇଂରେଜ ରାଜକବି ଲର୍ଡ ଟେନିସ୍‌ଙ୍କ ପୁରୁଣା ପଂକ୍ତି ପୁନଃ ମନେପଡ଼ିଲା—

*"The old order changeth yielding place to new.*
*Lest one good custom should corrupt the world."*

ଗୋଟିଏ ଲୋକର ଶାସନ ଯେତେ ଉତ୍କୃଷ୍ଟ ହେଲେ ମଧ୍ୟ ଲୋକେ ପରିବର୍ତ୍ତନ ଚାହାଁନ୍ତି ।

ଅଧ୍ୟାପକଙ୍କର ସେହିକଥା ମନେପକାଇ ଏବେ ହସ ଲାଗେ । ମୁଁ ସେଠାରୁ ଦୀର୍ଘ ୨୨ ବର୍ଷ ହେଲା ଆସିଲିଣି । ମୁଁ ସେଠାରେ ରାତିଦିନ ତଡ଼ା ପକେଇ ଜଗି ବସିଥିଲି, ଅନୁଷ୍ଠାନର ସ୍ୱାର୍ଥ ରକ୍ଷା କରୁଥିଲି । କୁଟା ଖଣ୍ଡିଏ କେହି ନେବାକୁ ସାହସ କରୁନଥିଲେ ମାତ୍ର ଏବେ କୌଣସି ହେଡମାଷ୍ଟର ତ ସେଠାରେ ରହୁନାହାନ୍ତି, ଗୋଟାଏ ଗୋଡ଼ ତାଙ୍କ ଗାଁରେ ରହିଲେ ଆର ଗୋଡ଼ ସ୍କୁଲରେ । ଏବେ ସେ ଅଧ୍ୟାପକ ଅଛନ୍ତି, ଗାଁ ଲୋକେ ଅଛନ୍ତି, ସ୍କୁଲ ବି ଅଛି । ପ୍ରଧାନ ଶିକ୍ଷକମାନେ ଅଛନ୍ତି ମାତ୍ର ବିଦ୍ୟାଳୟ ସ୍ୱାର୍ଥକୁ ଜଗିବ କିଏ ? ଛାତ୍ରଛାତ୍ରୀମାନଙ୍କ ହିତ ଚିନ୍ତା କରିବ କିଏ ?

ନାରଣବାବୁ ଜଣେ କର୍ତ୍ତବ୍ୟନିଷ୍ଠ ଶିକ୍ଷକ । ପଢ଼େଇବାରେ ଧୁରନ୍ଧର । ପ୍ରଧାନ ଶିକ୍ଷକଙ୍କର ବଡ଼ ଆଜ୍ଞାନୁବର୍ତ୍ତୀ । ସେ ମୋତେ କହିଲେ, ''ସାର୍, ଏଥରକ ବଦଳି ଆଦେଶ ଯଦି ରହିତ କରିଦିଅନ୍ତେ, ଏ ନିଲଠାଙ୍କ ମୁହଁରେ ଚୂନ କାଳି ବୋଳି ଦିଅନ୍ତେ ।'' ମୋର ନୈତିକ ବଳ ସୁଦୃଢ଼ । ମୁଁ ତାଙ୍କୁ କହିଲି, ''ଦେଖ, ନାରଣବାବୁ, ବଦଳି ସ୍ଥଗିତ କରିବା ପାଇଁ ମୁଁ କୌଣସି ବିଧାୟକ ବା ମନ୍ତ୍ରୀଙ୍କ ନିକଟକୁ ଯିବିନାହିଁ । ଯେଉଁ ଡି.ପି.ଆଇ. ମହୋଦୟ ମୋର ବଦଳି ଆଦେଶ ପଠାଉଛନ୍ତି ସେ ମହାଶୟ ମୋ ବଦଳି ଆଦେଶକୁ ସ୍ଥଗିତ ରଖିବେ । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ମୁଁ ଜୋର ଦେଇ ଏକଥା କହିଲି ।''

## ମୋର ବଦଳି ଆଦେଶ ରହିତ :

ତହିଁ ଆରଦିନ ଡି.ପି.ଆଇ. ଅଫିସର ମୋର ଜଣେ ପୁରାତନ ଛାତ୍ର ଦୁର୍ଗା ଚରଣ ମହାପାତ୍ରଙ୍କୁ ସାଙ୍ଗରେ ଧରି ଇ.ଓ. ମହୋଦୟଙ୍କୁ ସାକ୍ଷାତ କଲି । ପାଢ଼ୀବାବୁ ଭଲ ଲୋକପରି ଜଣାପଡୁଥିଲେ । ସେ ପ୍ରଶ୍ନ କଲେ, 'ଆପଣ ସେଠାରେ ଆଠ ବର୍ଷ ରହିଲେଣି । ବଦଳି ହେବା କଥା, ବଦଳି ତ ହୋଇଛି ଅସୁବିଧା କ'ଣ ?' ମୁଁ କହିଲି, ସାର୍ 'ମୋ ଚାକିରି ସରିଲାଣି ଏଣେ ସ୍ତ୍ରୀର ଅକାଳ ବିୟୋଗ ମୋ ଅଣ୍ଟା ଭାଙ୍ଗି ଦେଇଛି । ଟିକି ଟିକି ପିଲାଗୁଡ଼ାଙ୍କୁ ନେଇ କୁଆଡ଼େ ଯିବି ? ମୁଁ ପ୍ରାର୍ଥନା କରିଥିଲି, ମୋତେ ମୋ ଘରଂ ପାଖ ଖୋର୍ଦ୍ଧାକୁ ଦିଅନ୍ତୁ ।' ଯଦି ନ ଦିଅନ୍ତି ଏହିଠାରେ ବର୍ଷେ ଦି'ବର୍ଷ ରଖି ଦିଅନ୍ତୁ । ପାଢ଼ୀବାବୁ ମୋ ପ୍ରତି ସହାନୁଭୂତିଶୀଳ ହେଲେ, କହିଲେ 'ଖଣ୍ଡିଏ ସ୍ମାରକପତ୍ର ଦିଅ । ମୁଁ ସ୍ମାରକପତ୍ରଟିଏ ନେଇ ସାଙ୍ଗରେ ନେଇଥିଲି, ଦେଇଦେଲି ।' ସେଦିନ ସେତିକି, ବସାକୁ ପାହୁଣ୍ଡ ଗଣି ଗଣି ଫେରିଲି । ମନଟା ଆମ୍ବୁଲ ଖାଇଲା ପରି ଲାଗୁଥାଏ । ସମସ୍ତଙ୍କର ଭାବନାଟା ନିଜ ଆଡ଼କୁ ଟାଣି ନେଉଥାଏ । କେତେ ବାଧାବିଘ୍ନ ଜୀବନରେ ଆସିବ । ସବୁ ତ ସହିବାକୁ ପଡ଼ିବ ? ଭାଗ୍ୟକୁ ନିନ୍ଦା କରିବି ନା ଆଉ କାହାକୁ କରିବି ? ମଣିଷ ଜଞ୍ଜାଳ ଭିତରେ ଘାଣ୍ଟି ହେବାପାଇଁ ତ ଏ ପୃଥିବୀକୁ ଆସିଛି ? ମୁଁ ଘାଣ୍ଟି ହେବ ନାହିଁ କାହିଁକି ?

ତହିଁ ପରଦିନ ନୂତନ ଡି.ପି.ଆଇ. ବାବୁ ଗଦାଧର ମିଶ୍ରଙ୍କୁ ସାକ୍ଷାତ କଲି । ସେ ମହାଶୟ ସ୍ୱଭାବତଃ ବଦରାଗୀ ହୋଇଥିବାରୁ ଏବଂ ନିକଟରେ ଯୋଗ ଦେଇଥିବାରୁ ମୋ ଦୁଃଖ ବୁଝିବାକୁ ସମର୍ଥ ହେଲେ ନାହିଁ । ବାହାରକୁ ବାହାରି ଆସିଲି । ମନଟା ଗୋଳେଇ ଘାଣ୍ଟି ହେଲା । କୋହ ଉଠିଲା, ଚାକିରି ପ୍ରତି ଘୃଣାଭାବ ଜାଗି ଉଠିଲା । ପୁଣି ଭାବିଲି, 'ଏପରି ଅଧୈର୍ଯ୍ୟ ହେଲେ କ'ଣ ଚଳିବ ?' ଏତିକିବେଳେ ମନରେ ଗୋଟିଏ ଚିନ୍ତା ଢୁକିଲା । 'ଏତେ

ବାଟ ତ ଆସିଛି ଟିକିଏ ଉଚ୍ଚ ଡି.ପି.ଆଇ. ମହୋଦୟଙ୍କୁ ସାକ୍ଷାତ କରିଯିବି ।' ଉଚ୍ଚ ଡି.ପି.ଆଇ. ଶ୍ରୀଯୁକ୍ତ ବିଧୁଭୂଷଣ ଦାସ ବଡ଼ କଡ଼ା ମିଜାଜର ଲୋକ ବୋଲି ଶୁଣିଥିଲି । କିନ୍ତୁ ଜ୍ଞାନୀ ଓ କଠୋର କର୍ତ୍ତବ୍ୟପରାୟଣ । ମୁଁ ତ ମୋ ଦୁଃଖ ଜଣାଇବି, ଭୟ କରିବାର କାରଣ କ'ଣ ଅଛି ? ଶେଷ ଚେଷ୍ଟା କରିବି ନଚେତ୍ ନିରାଶ ମନରେ ଗୃହକୁ ଫେରିବି । କର୍ମ ବାମ ପଡ଼ିଲେ କିଏ କ'ଣ ବଦଳେଇ ଦେଇପାରିବ ?

ଏହିପରି ଭାବନା ମନରେ ପୋଷଣ କରି ବିଧୁବାବୁଙ୍କ କୋଠରିରେ ଜଗୁଆଳିର ଅନୁମତି ନେଇ ପ୍ରବେଶ କଲି । ପ୍ରବେଶ କରୁକରୁ ଏକ ଲମ୍ବା ଚଉଡ଼ା ଦଣ୍ଡବତ ପକାଇଲି । ଦୁଃଖଗୁଡ଼ିକ ଗୋଟି ଗୋଟି କରି ସ୍ୱଳ୍ପ ସମୟ ମଧ୍ୟରେ ବର୍ଣ୍ଣନା କରିଗଲି । ଦରିଆପାରିର ଆଠଟି ରତ୍ନ ପୁସ୍ତକରୁ ଖଣ୍ଡିଏ ତାଙ୍କୁ ପୂର୍ବରୁ ପ୍ରଦାନ କରିଥିଲି । ସେ ମୋତେ ସେତେବେଳେ ପ୍ରଶ୍ନ କଲେ 'ସ୍କୁଲ ଡି.ପି.ଆଇ.ଙ୍କୁ ସାକ୍ଷାତ କଲନାହିଁ ?' ମୁଁ ତାଙ୍କୁ ନମ୍ରଭାବରେ ଉତ୍ତର ଦେଲି, ''ସାର୍, ତାଙ୍କ ବ୍ୟବହାର ମୋ ପ୍ରତି ଉତ୍ତମ ହେଲାନାହିଁ । ତେଣୁ ଅନନ୍ୟୋପାୟ ହୋଇ ଆପଣଙ୍କ ନିକଟକୁ ଆସିଛି । ଆପଣ ତ ସର୍ବେସର୍ବା, ଯାହା ବିଚାର କରିବେ । ମୁଁ ମୋ ଦୁଃଖ ଆଉ କାହାକୁ ଜଣାଇବି ?'' ପୁଣି ମନେ ମନେ ଭାବୁଥାଏ 'ମୋ କହିବାରେ କେଉଁଠି କିଛି ଭୁଲ ରହିଗଲା କି ?' ବିଧୁବାବୁ ଉଚ୍ଚଦରର ଲୋକ, ଜ୍ଞାନୀ, ପଣ୍ଡିତ, ଗୁଣଜ୍ଞ । ଯାହାହେଉ ମୋ ପ୍ରାର୍ଥନା ସେ ମନଦେଇ ଶୁଣିଲେ, ତାପରେ ନୀରବ ରହିଲେ । ମୁଁ ପୁଣି କହି ଚାଲିଲି,''ସାର୍, ମୋର ବର୍ତ୍ତମାନ ଅବସ୍ଥା ଦୃଷ୍ଟିରୁ ମୁଁ ମୋ ଗାଁ ପାଖ ଖୋର୍ଦ୍ଧା ସ୍କୁଲକୁ ଯିବିବୋଲି ଆପଣଙ୍କ ନିକଟକୁ ସ୍ମାରକପତ୍ର ପଠାଇଥିଲି । ଏତେ ବାଟକୁ ପଠାଇଦେଲେ ମା' ଛେଉଣ୍ଡ ପିଲାଗୁଡ଼ାଙ୍କର ଦୁର୍ଦ୍ଦଶା ବଢ଼ିଯିବ ।''

ପୁଣି କହିଲି, 'ସାର୍, ବିଦ୍ୟାଳୟ ଗୃହ ପାଞ୍ଚ ବର୍ଷ ହେଲା ପୋଡ଼ିଗଲାଣି ମୁଁ ଆମ୍ର ବୃକ୍ଷମୂଳେ, ବାରଣ୍ଡାରେ ବସେଇବାରେ ସମସ୍ତ ବନ୍ଦୋବସ୍ତ କରିଛି । ସାର୍, ବୋର୍ଡ ପରୀକ୍ଷାରେ ମୋ ସ୍କୁଲର ଫଳ ଉତ୍ତମ ହେଉନାହିଁ କି ?'

'ସାର୍, ମୋ ବିରୁଦ୍ଧରେ ମୋର ଉପରିସ୍ଥ ଅଫିସର ପୁରୀ ସର୍କଲ ଇନିସପେକ୍ଟର ମହୋଦୟଙ୍କର କୌଣସି ବିପରୀତ ମନ୍ତବ୍ୟ ଅଛି କି ?'

'ସାର୍, ମୁଁ କ'ଣ ସରକାରୀ ଧନ ବା ସ୍କୁଲ ଧନ ତୋସରପାତ କରିଛି ?''

'ସାର୍, ବିଦ୍ୟାଳୟର ଉତ୍ତମ ଅଧ୍ୟାପନା ଓ ଶାନ୍ତିଶୃଙ୍ଖଳା ପ୍ରତି ଗଭୀର ମନୋନିବେଶ କରୁଛି କି ନାହିଁ ଆପଣ ଅଞ୍ଚଳବାସୀଙ୍କଠାରୁ ଅନୁସନ୍ଧାନ କଲେ ସବୁ ଜାଣିପାରିବେ ।'

'ତେବେ ସାର୍, କେଉଁଥିପାଇଁ ମୋ ଦୁର୍ଦ୍ଦିନରେ ଏତେ ବଡ଼ ଦଣ୍ଡ ଦିଆଯାଇଛି ?'

ବହୁବର୍ଷ ତଳେ ଖୋରଧା, ଏସ୍.ଡି.ଓ. ଆର.ଏନ. ସାହୁ ମହାଶୟଙ୍କୁ ନିର୍ଭୀକ ଉତ୍ତର ଦେଇଥିଲି ବୋଲି ସେ ଅପମାନିତ ବୋଧକରି ମୋତେ ଗିରଫ କରିବେ ବୋଲି ଧମକ ଦେଇଥିଲେ । ଯେ ତ ଆମର ସର୍ବୋଚ୍ଚକର୍ତ୍ତା । ଏଠାରେ କ'ଣ ଘଟିବ କିଏ କହିବ ? ବିଧୁବାବୁ ମୋ ଆଡ଼କୁ କିଛି ସମୟ ଚାହିଁ ରହିଲେ । ତା'ପରେ ମୋ ଦୁଃଖ ବୁଝିବେ ବୋଲି କହି ମୋତେ ବିଦାୟ କରିଦେଲେ ।

ବାହାର ପୋର୍ଟିକକୁ ଆସି ଏଣିକି ତେଣିକି ଚାହୁଁଥାଏ । ଦୁଃଖଗୁଡ଼ାକ କହିଦେବାରୁ ମୁଣ୍ଡଟା ଖାଲି ହୋଇଯାଇଥାଏ । ପୁଣି ଭାବନା ବସା ବାନ୍ଧିଲା । ରେଳଗାଡ଼ି ସମୟ ନିକଟତର ହୋଇ ଆସୁଥାଏ । ଭାବୁଥାଏ ମୋ ଦୁଃଖଟା କ'ଣ ବିଧୁବାବୁ ଏତେ ଶୀଘ୍ର ଦୂର କରିପାରିବେ ? କେତେଲୋକ ତ ତାଙ୍କୁ ସାକ୍ଷାତ କରୁଛନ୍ତି ? ତେବେ ସେ ଶିକ୍ଷା ବିଭାଗର ସର୍ବମୟ କର୍ତ୍ତା । ଚାହିଁଲେ ମୋ ଦୁଃଖ ବୁଝିବେ । ନ ବୁଝିଲେ ମୁଁ କାହିଁକି ମନ ଦୁଃଖ କରିବି ? ମନଟା ଖାଲି ଗୋଳେଇ ଘାଣ୍ଟି ହେଉଥାଏ । ମୁଁ ସ୍ୱଭାବତଃ ମୁହଁଫିଟା ନୁହେଁ । ତଥାପି ସର୍ବୋଚ୍ଚ କର୍ତ୍ତାଙ୍କୁ ତ ଗୁହାରି କଲି । ଆଉ କ'ଣ କରିଥାନ୍ତି ? ମୁଁ ସେଠାରୁ ଫେରି ପୋର୍ଟିକରେ ଘୂରୁଥିଲି । ଏହି ସମୟରେ ଡେପୁଟି ଡି.ପି.ଆଇ. ସେକସନ ଅଫିସର ଓ ଇ.ଓ. ମହୋଦୟ ବିଧୁବାବୁଙ୍କ କକ୍ଷରେ ପ୍ରବେଶ କଲେ । ମୁଁ ଦେଖିଲି ସେମାନେ ଗଲେ ପନ୍ଦର ମିନିଟ୍ ସେଠାରେ କଟେଇ ସେ ପ୍ରକୋଷ୍ଠରୁ ବାହାରିଲେ । ଗୋପାଳବାବୁ ରେଭେନ୍ସା କଲେଜର ମୋର ସହପାଠୀ ଥିଲେ । ସେ ଡି.ଡି.ପି.ଆଇ. । ଫେରିଲାବେଳେ ମୋତେ କହିଲେ— ମୁରଲୀବାବୁ, ତୁମର ମନୋବାଞ୍ଛା ପୂରଣ ହୋଇଗଲା । ଏବେ ଯାଅ । ମୁଁ କୃତଜ୍ଞତାରେ ହସଟିଏ ହସି ତାଙ୍କୁ ବଧେଇ ଜଣାଇଲି, ନିରାକାରପୁର ଗାଡ଼ି ଧରିବା ପାଇଁ ଲମ୍ବା ଲମ୍ବା ପାହୁଣ୍ଡ ବଢ଼େଇଲି ।

ପରଦିନ ବଦଳି ଆଦେଶ ରଦ୍ଦ ହୋଇ ନିରାକାରପୁର ହାଇସ୍କୁଲକୁ ଆସିଗଲା । ସମସ୍ତେ ତଟସ୍ଥ । ବିରୋଧୀମାନଙ୍କର ମୁହଁ ରଙ୍ଗା ପଡ଼ିଗଲା । ମୁଁ କିନ୍ତୁ ସେହି ଦୁଷ୍ଟଜନ୍ତୁମାନଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲିନାହିଁ । ସେମାନେ ସଂଖ୍ୟାରେ ବେଶି ନୁହଁନ୍ତି । ଦୁଇ ତିନିଜଣ ବୁଡ଼ି ବୁଡ଼ି ପାଣି ପିଉଥିଲେ । ମୁଁ ଦେଖିଲି ଏମାନେ ମୋର କ'ଣ କରିବେ ? ମୋର ମାନସିକ ବଳ ଖୁବ୍ ଦୃଢ଼ । ଭାଗ୍ୟଲକ୍ଷ୍ମୀ ମୋ କାନ୍ଧରେ । ପିଲାମାନଙ୍କର ସର୍ବାଙ୍ଗୀନ ଉନ୍ନତି ତଥା କାର୍ଯ୍ୟରେ ପରିଣତ କରିବାରୁ ସେମାନେ ହରବର ହେଉଥିଲେ । ମୁଁ କିନ୍ତୁ ଟିପେ କାହାକୁ ଛାଡ଼ି ଦେଉନଥିଲି, ଆମ୍ଭେମାନେ କିଛି ମାଗଣାରେ ଖଟୁ ନାହୁଁ ।

ଦରମା ଆମକୁ ଧାର୍ଯ୍ୟ ହେଉ । ଛାତ୍ରଙ୍କ ପାଇଁ, ଅନୁଷ୍ଠାନ ପାଇଁ, ଗ୍ରାମ ପାଇଁ କାର୍ଯ୍ୟ କରିବାକୁ ବିଶେଷତଃ ଛାତ୍ରଛାତ୍ରୀମାନଙ୍କୁ ସମର କ୍ଷେତ୍ରରେ ଜଣେ ଜଣେ ସଚ୍ଚା ସୈନିକ ହେବାପାଇଁ ମୁଁ ଉଦ୍‌ବୋଧନ ଦେଇଥାଏ । ଏଥିରେ ଶିକ୍ଷକ କ୍ଷୁଣ୍ଣ ହେଲେ ଚଳିବ ? କହ୍ନେଇ ଲାଗି ସିନା ଗାଈ ଗୁହାଳ ! ମୋ ସମୟରେ ଜଣେ ଦି'ଜଣଙ୍କୁ ଛାଡ଼ିଦେଲେ ଏକ ଦକ୍ଷ ଶିକ୍ଷକମଣ୍ଡଳୀ ମୋ ନେତୃତ୍ୱରେ ପରିଚାଳିତ ହେଉଥିଲେ । ଯେଉଁମାନେ ଅଲଗା ଥିଲେ ସେମାନେ ଦେଖିଲେ ଆଉ ପାରିହେବ ନାହିଁ । ତେଣୁ ଗୋଟି ଗୋଟି ହୋଇ ଚାରି ମାସ ଭିତରେ ଛାଡ଼ି ପଳେଇଲେ । ମୁଁ ଭାବୁଥିଲି ସମସ୍ତ କାର୍ଯ୍ୟ ଶେଷ କରି ମୁଁ ଏଠାରୁ ବିଦାୟ ନେଇଯିବି । କିନ୍ତୁ ସବୁ ପ୍ରଭୁଙ୍କ ଉପରେ । ତେବେ 'ଚେଷ୍ଟୟାଂ କି ନ ଲଭ୍ୟତେ ।' 'ଉଦ୍‌ଯୋଗିନଂ ପୁରୁଷ ସିଂହ ଉପୈତି ଲକ୍ଷ୍ମୀ ।' ଇଚ୍ଛାଶକ୍ତି ପ୍ରବଳ ହେଲେ ଅସାଧ୍ୟ କାର୍ଯ୍ୟ ସାଧିତ ହୋଇଥାଏ । ସମସ୍ତ ପ୍ରତିବନ୍ଧକ ଛାଏଁ ଛାଏଁ ଉଭେଇଯାଏ ।

**ଉଗ୍ରତାରା ପୀଠ :**

ଏ ଅଞ୍ଚଳରେ ତିନି ଚାରିଗୋଟି ଆକର୍ଷଣୀୟ ସ୍ଥାନ ଆମ୍ଭମାନଙ୍କର ଦୃଷ୍ଟିପଥାରୂଢ଼ ହୁଏ । ପ୍ରତବର୍ଷ ଟେଷ୍ଟ ପରୀକ୍ଷା ପରେ ଛାତ୍ରଛାତ୍ରୀମାନେ ବଣଭୋଜିର ଆୟୋଜନ କରିଥାନ୍ତି । ଶିକ୍ଷକବନ୍ଧୁମାନେ ସେମାନଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗ କରନ୍ତି । ବଣଭୋଜି ପାଇଁ ପ୍ରଥମ ନମ୍ବର ସ୍ଥାନ ହେଉଛି ତାରାଦେଈ ପୀଠ । ଭୂଷଣ୍ଡପୁର ରେଳଷ୍ଟେସନର ଦୁଇ କି.ମି. ପଶ୍ଚିମକୁ ଏକ ବୁଦୁବୁଦିଆ ଘଞ୍ଚ ଜଙ୍ଗଲ ଓ ବିଶାଳ ଆମ୍ରକୁଞ୍ଜ ମଧ୍ୟରେ ଏହି ରମଣୀୟ ସ୍ଥାନଟି ଅବସ୍ଥିତ । ପାହାଡ଼ିଆ ଅଞ୍ଚଳ ଓ ନିମ୍ନଭାଗରେ ସ୍ୱଚ୍ଛଜଳର ଦୁଇଟି ଝରଣା ପ୍ରସ୍ତର ପ୍ରାଚୀର ଦ୍ୱାରା ଆବଦ୍ଧ ।

ଗୋଟିଏ କୁଣ୍ଡର ଜଳ ସ୍ନାନ ପାଇଁ ଓ ଅନ୍ୟଟିର ଜଳ ପାନୀୟ ରୂପେ ବ୍ୟବହୃତ ହୋଇଥାଏ । ପାହାଡ଼ର କାଛିରେ ଏକ ପାନ୍ଥଶାଳା ବିଦ୍ୟମାନ । ରାତ୍ରିଯାପନ କରିବା ପାଇଁ ସ୍ଥାନାଭାବ ଅନୁଭୂତ ହୁଏନାହିଁ । ଉଗ୍ରତାରା ପ୍ରତ୍ୟକ୍ଷ ଠାକୁରାଣୀ ବୋଲି ଜନମୁଖରେ ପ୍ରଚଳିତ । ସ୍ଥାନଟିର ପ୍ରାକୃତିକ ପରିବେଶ ଅତ୍ୟନ୍ତ ମନୋମୁଗ୍ଧକର । ଅଦୂରରେ ଦେବ ଦେବ ମହାଦେବଙ୍କ ମନ୍ଦିର । ପାହାଡ଼ର ଉପରିଭାଗ ଛାୟାପ୍ରଦ ବୃକ୍ଷରାଜି ଦ୍ୱାରା ସୁଶୋଭିତ । ବର୍ଷର ସବୁ ଋତୁରେ ସ୍ଥାନଟିର ପ୍ରାକୃତିକ ଦୃଶ୍ୟରାଜି ଉପଭୋଗ୍ୟ । ଓଡ଼ିଶାର ଭିନ୍ନ ଭିନ୍ନ ଅଞ୍ଚଳରୁ ଦର୍ଶନାଭିଳାଷୀ ବ୍ୟକ୍ତିମାନେ ବିବାହ, ବ୍ରତ, ପୁନିଅଁ ପର୍ବରେ ଏଠାରେ ଏକତ୍ରିତ ହୁଅନ୍ତି । ସ୍ଥାନଟିର ପ୍ରାକୃତିକ ସୌନ୍ଦର୍ଯ୍ୟ ରାଜନୀତିକ କ୍ରୀଡ଼ାସ୍ଥଳୀ ହୋଇଥାଏ ।

ସେମାନେ ଏଠାରେ ସାମ୍ବତ୍ସରିକ ଉତ୍ସବ ମଉଜ ମଜଲିସ କରିବାରେ ଲିପ୍ତ ରହନ୍ତି । ତାରଦେଈ ବା ଉଗ୍ରତାରା ଠାକୁରାଣୀ ହୋଇଥିବାରୁ ହିନ୍ଦୁମତ ଅନୁଯାୟୀ କାର୍ତ୍ତିକ ଓ ମାର୍ଗଶିର ଦୁଇମାସ ବ୍ୟତୀତ ଅନ୍ୟ ମାସରେ ଶନିବାର ଓ ମଙ୍ଗଳବାର ଦିନ ଏଠାରେ ପଶୁବଳି ଦେବାର ବିଧି ଅଛି । ହିନ୍ଦୁ ଧର୍ମର ଭିନ୍ନ ଭିନ୍ନ ମତବାଦର ଲୋକମାନଙ୍କୁ ସନ୍ତୁଷ୍ଟ କରିବାର ବିଧି ଥିବାରୁ ତାରାପୀଠରେ ତାମସିକ ଖାଦ୍ୟ ବ୍ୟବସ୍ଥା ହୋଇଥାଏ । ପ୍ରତିବର୍ଷ ରଜ ସଂକ୍ରାନ୍ତି ଉପଲକ୍ଷେ ଏଠାରେ ଗୋଟିଏ ବଡ଼ ମେଳା ଅନୁଷ୍ଠିତ ହୁଏ । ଜନସମାଗମ ଅଧିକରୁ ଅଧିକ ହୁଏ । ଉଗ୍ରତାରାଙ୍କ ମହିମା ସମଗ୍ର ଉତ୍କଳରେ ପ୍ରକଟ କରିବା ପାଇଁ ସ୍ଥାନୀୟ ବୋଡ଼ଙ୍ଗରା ଗ୍ରାମର ପଣ୍ଡିତ ଶ୍ରୀ ନାରାୟଣ ତ୍ରିପାଠୀ ରାଜାରାଜୁଡ଼ାଙ୍କ ସହାୟତାରେ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରିଥିଲେ, ପାନ୍ଥଶାଳାଟି ନିର୍ମାଣ କରାଇଥିଲେ ଏବଂ ଜଳକୁଣ୍ଡଗୁଡ଼ିକରୁ ପଙ୍କୋଦ୍ଧାର କରି ସେମାନଙ୍କର ସୌନ୍ଦର୍ଯ୍ୟ ବୃଦ୍ଧି କରିଥିଲେ । ପ୍ରତିବର୍ଷ ହଜାର ହଜାର ପର୍ଯ୍ୟଟକ ଏହି ରମଣୀୟ ସ୍ଥାନଟିକୁ ପରିଦର୍ଶନ କରିଥାନ୍ତି ଏବଂ ଉଗ୍ରତାରାଙ୍କ ଆଶୀର୍ବାଦ ଭିକ୍ଷା କରିଥାନ୍ତି ।

### କପିଳେଶ୍ୱର ପୀଠ :

ଏ ଅଞ୍ଚଳର ଦ୍ୱିତୀୟ ଆକର୍ଷଣୀୟ ସ୍ଥାନ ହେଉଛି ଶୈବପୀଠ କପିଳେଶ୍ୱର ପୀଠ । ଏହି ସ୍ଥାନଟି ଆମ ହାଇସ୍କୁଲଠାରୁ ଦୁଇ ମାଇଲ ଦକ୍ଷିଣ ଦିଗରେ ଆମ୍ରକୁଞ୍ଜ ଶୋଭିତ ଏକ ବିରାଟ ବାଲୁକାମୟ ପ୍ରାନ୍ତରର ପୂର୍ବ ଦିଗରେ ବାଳିଗାଁ ଗ୍ରାମଠାରୁ କିଛି ଦୂରରେ ଅବସ୍ଥିତ । ବିଦ୍ୟାଳୟର ଏକାଦଶ ଶ୍ରେଣୀର ଛାତ୍ରଛାତ୍ରୀମାନେ ତାରାଦେବୀ ପୀଠକୁ ଯିବା ସବୁବେଳେ ସମ୍ଭବ ହୁଏନାହିଁ । ତେଣୁ କପିଳେଶ୍ୱର ପୀଠରେ ଭୋଜିର ଆୟୋଜନ କରାଯାଏ । ସୂର୍ଯ୍ୟବଂଶୀୟ ରାଜା କପିଳେନ୍ଦ୍ର ଦେବ ଏଠାରେ କପିଳେଶ୍ୱର ମନ୍ଦିର ନିର୍ମାଣ କରିଥିବାର ପ୍ରବାଦ ଅଛି । କେହି କେହି କହନ୍ତି ଏହି ମନ୍ଦିର ଅତି ପୁରାତନ, ନବମ କି ଦଶମ ଶତାବ୍ଦୀରେ ନିର୍ମିତ । ଯାହାହେଉ ତତ୍କାଳୀନ ରାଜା ବିରାଟ ପୁଷ୍କରିଣୀ ଖନନ କରି ତାର ଚତୁଃପାର୍ଶ୍ୱରେ ଚାରିଗୋଟି ଗ୍ରାମ ଡିଆ, କୋଳସାହି, ଭୋଇସାହି ଏବଂ ଭଟସାହି ସ୍ଥାପନ କରିଥିଲେ କିନ୍ତୁ ମନ୍ଦିର ସମ୍ମୁଖରେ ଏକ ସାଧାରଣ ପୁଷ୍କରିଣୀ । ପ୍ରତିବର୍ଷ ଅଶୋକାଷ୍ଟମୀ ଓ ରାମନବମୀ ଦିନ ଏଠାରେ ଏକ ବୃହତ୍ ମେଳାର ଆୟୋଜନ କରାଯାଏ । ଭୁବନେଶ୍ୱର ରଥଯାତ୍ରା ସଦୃଶ ଏଠାରୁ କପିଳେଶ୍ୱର ଦେବଙ୍କ ବିଜେପ୍ରତିମା ରଥରେ ବିଜେକରି ଡିଆଗ୍ରାମକୁ ଯାଇ ସ୍ୱତନ୍ତ୍ର ମନ୍ଦିରରେ ଅବସ୍ଥାନ କରନ୍ତି । ବାହୁଡ଼ା ଦିନ ଜାକଜମକରେ ସ୍ୱମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ଏଇ ପରିପ୍ରେକ୍ଷୀରେ ନବମୀଠାରୁ ଏକାଦଶୀ ପର୍ଯ୍ୟନ୍ତ ଡିଆଗ୍ରାମଟି ଆନନ୍ଦ

ଉଲ୍ଲାସରେ ମୁଖରିତ ହୁଏ । ପାଲା, ଦାସକାଠିଆ, ଗୋଟିପୁଅନାଚ ପ୍ରଭୃତି ସାଂସ୍କୃତିକ ଉତ୍ସବମାନ ଅନୁଷ୍ଠିତ ହୁଏ । ମନ୍ଦିରର ପରିଚାଳକ ଆନନ୍ଦ ରଥ ମହୋଦୟ ଶିକ୍ଷକ ଓ ଅଧ୍ୟାପକମାନଙ୍କୁ ମିଷ୍ଟାନ୍ନ ଭୋଜନରେ ଆପ୍ୟାୟିତ କରନ୍ତି । ତାଙ୍କ ସହିତ ସାଂସ୍କୃତିକ ଆଲୋଚନାରେ କିଛି ସମୟ ବ୍ୟୟିତ ହୁଏ । ଆଖପାଖ ଅଞ୍ଚଳରେ ବହୁଲୋକ ଦଳଦଳ ହୋଇ ଏହି ମେଳାରେ ଯୋଗ ଦିଅନ୍ତି । ରାତ୍ରିକାଳରେ ଜନସମାଗମ ବୃଦ୍ଧିପ୍ରାପ୍ତ ହୁଏ । କପିଳେଶ୍ୱର ମହାଦେବ ନିରାମିଷାଶୀ କିନ୍ତୁ ତାଙ୍କର ଠିକ୍ ବାମ କଡ଼ରେ ନାରାୟଣୀଙ୍କ ମନ୍ଦିର ବିଦ୍ୟମାନ । ନାରାୟଣୀ ଆମିଷାଶୀ । ଭୋଜି ସମୟରେ ମହାଦେବଙ୍କ ପାଇଁ ସାତ୍ତ୍ୱିକ ଖାଦ୍ୟ ପ୍ରସ୍ତୁତ ହେଲେ ମଧ ପ୍ରଥାନୁଯାୟୀ ନାରାୟଣୀଙ୍କ ପାଖେ ପୋଡ଼ାମାଛ ଉତ୍ସର୍ଗ କରାଯାଏ । ବୋଧହୁଏ ଉଗ୍ରମାଂସାଶୀମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏପରି ବିଧାନ ଖଞ୍ଜା ଯାଇଛି । ହିନ୍ଦୁଧର୍ମ ଏକ ବିରାଟ ଧର୍ମ । ଏହି ଧର୍ମରେ ବ୍ୟକ୍ତି ସ୍ୱାଧୀନତା ଉଲ୍ଲେଖନୀୟ । କିଏ ଶିବଭକ୍ତ ତ କିଏ ବିଷ୍ଣୁଭକ୍ତ, କିଏ ଗଣପତି ଭକ୍ତ ତ କିଏ ଦେବୀ ଭକ୍ତ । ଯେ ଯେଉଁ ମତବାଦ ଗ୍ରହଣ କଲା ମନା ନାହିଁ । କିନ୍ତୁ ସମସ୍ତେ ଏକ ଭାରତ ମାତାର ସନ୍ତାନ । ଗୋଟିଏ ସୂତାରେ ବନ୍ଧା । ବିଶେଷତଃ ଏକାଦଶ ଶ୍ରେଣୀର ପିଲାମାନେ ଟେଷ୍ଟ ପରୀକ୍ଷାପରେ ନିର୍ମଳ ଶାନ୍ତ, ପବିତ୍ର ପରିବେଶରେ ଏହି କପିଳେଶ୍ୱର ମନ୍ଦିରପ୍ରାଙ୍ଗଣରେ ଭୋଜି ଆୟୋଜନ କରିଥାନ୍ତି । ଛାତ୍ରଛାତ୍ରୀମାନଙ୍କ ଗହଣରେ ସମୟଟି ଆନନ୍ଦରେ କଟେ । ଏପରି ସୁମଧୁର ସମୟ ଆଉ ଜୀବନରେ କେବେ ଆସିବ ନାହିଁ । ଏ ପୀଠରେ ଶୃଙ୍ଖଳା ତଥା ପରିଷ୍କାର ପରିଚ୍ଛନ୍ନତା ପାଇଁ ବହୁ କାର୍ଯ୍ୟ କରିବାର ଅଛି । ଏହାକୁ ସୁଦୃଶ୍ୟ କରି ଏକ ପର୍ଯ୍ୟଟନ କେନ୍ଦ୍ର କରାଗଲେ ଉତ୍ତମ ହୁଅନ୍ତା ଏବଂ ମନ୍ଦିର ସମ୍ବନ୍ଧେ ଗବେଷଣା ହେଲେ ବହୁବିଧ୍ ତଥ୍ୟ ମିଳନ୍ତା ।

### ଭୈରବୀ ପୀଠ :

ଏହି ଅବସରରେ ଆଉ ଗୋଟିଏ ରମଣୀୟ ସ୍ଥାନ ଓ ଦେବୀପୀଠ କଥା ମନରେ ଜାଗରିତ ହେଉଛି । ତାହା ହେଉଛି ଭୈରବୀ ପୀଠ । କାଶୀପୁର ଗ୍ରାମର ଗ୍ରାମଦେବତୀ ହେଉଛନ୍ତି ଏହି ଭୈରବୀ । ବିଦ୍ୟାଳୟଠାରୁ ଦୁଇ କି.ମି. ଦକ୍ଷିଣ-ପଶ୍ଚିମକୁ ଚିତ୍ରକୂଟ ପାହାଡ଼ର ପାଦଦେଶରେ ଏକ ଦୁର୍ଗମ ଟାଙ୍ଗରାମୟ ସ୍ଥାନରେ ଦେବୀପୀଠଟି ବିଦ୍ୟମାନ । ଭୈରବୀଙ୍କ ମହିମା ଅବର୍ଣ୍ଣନୀୟ । ତାଙ୍କ ନାଁ ଧରିଲେ ମନ୍ଦୁ ଉଠି ବସେ । ବଣଭୋଜି ପାଇଁ ସ୍ଥାନଟି ଉପଯୁକ୍ତ ସ୍ଥାନ । ପ୍ରାକୃତିକ ସୌନ୍ଦର୍ଯ୍ୟର ଅଭାବ ପରିଲକ୍ଷିତ ହୁଏ । ଅଦୂରରେ ଚିତ୍ରକୂଟ ପାହାଡ଼ର ଶୋଭା ଅତୁଳନୀୟ । ଗ୍ରୀଷ୍ମକାଳ ରାତ୍ରି ଆରାମଦାୟକ । ଏଠାକୁ

କଲେଜ ଅଧ୍ୟାପକମାନଙ୍କ ସହ କେତେବାର ଯାତ୍ରାକରି ନିଃସଙ୍ଗ ଜୀବନର ଦୁଃଖ ଭୁଲିଯାଇଛି । ଶିକ୍ଷକମାନଙ୍କର ଅନୁରୋଧ ଓ କୁନିକୁନି ପିଲାମାନଙ୍କର ପ୍ରାର୍ଥନାକୁ ପାଥେୟ କରି ଏ ସ୍ଥାନ କେତେଥର ପରିଦର୍ଶନ କରିଛି ।

## ବିଦ୍ୟାଳୟର ସ୍ୱାର୍ଥରକ୍ଷା :

ମୁଁ ବିଦ୍ୟାଳୟର ଜାଗ୍ରତ ପ୍ରହରୀ ଥିଲି । ସ୍କୁଲ ଛୁଟିପରେ ଯେ ଯୁଆଡ଼େ ଚାଲିଗଲେ ମଧ୍ୟ ମୁଁ ସେଠାରେ ରହିଥାଏ ଏବଂ ମୋ ପାଖ କ୍ୱାଟରରେ ହରିହର ମିଶ୍ର ବହୁବର୍ଷ ରହୁଥିଲେ । ହରିବାବୁ ଜଣେ ଆଦର୍ଶ ନୀତିବାନ୍ ଶିକ୍ଷକ ଥିଲେ । ବିଦ୍ୟାଳୟର ସ୍ୱାର୍ଥରକ୍ଷାରେ ବରାବର ସାହାଯ୍ୟ କରୁଥିଲେ । ୧୯୭୯ ମସିହା ଫେବୃଆରୀ କି ମାର୍ଚ୍ଚ ସମୟ ପୂର୍ବାହ୍ନ ଦଶଟା ସମୟ ହେବ । ନୂତନ ଜମି ମାଲିକ ପବନ ଚନ୍ଦ୍ର ବିଦ୍ୟାଳୟର ସୀମା ଅତିକ୍ରମ କରି ପ୍ରାୟ ଦଶ ଫୁଟ ପର୍ଯ୍ୟନ୍ତ ପଶ୍ଚିମକୁ ମାଡ଼ି ଆସି ବାଡ଼ ବୁଜୁଛନ୍ତି ଏବଂ ସୀମା ଭିତରେ ବହୁକାଳରୁ ତିଷ୍ଠି ରହିଥିବା ଛାୟାପ୍ରଦ ଆମ୍ର ବୃକ୍ଷଗୁଡ଼ିକ ନିଜ ଅକ୍ତିଆରକୁ ନେଇ ଯାଇଛନ୍ତି । ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ ବିଦ୍ୟାଳୟର ପ୍ରବୀଣ ନିଷ୍ଠାବାନ ଶିକ୍ଷକ ଶ୍ରୀ ହରିହର ମିଶ୍ରଙ୍କୁ ପରାମର୍ଶ ଦେଲି । ବିଦ୍ୟାଳୟ ସ୍ୱାର୍ଥରକ୍ଷା କରିବାକୁ ଯାଇ ସେ କେତେକ ପିଲାଙ୍କ ସାହାଯ୍ୟରେ ପବନବାବୁଙ୍କ ନୂତନ ବାଡ଼ ଉପାଡ଼ି ଦେବାକୁ ପ୍ରସ୍ତୁତ ହେଲେ ଏବଂ ମୋତେ ବାଡ଼ ଉପୁଡ଼ା କାର୍ଯ୍ୟରେ ସଂଶ୍ଳିଷ୍ଟ ହେବାପାଇଁ ଇଚ୍ଛାପ୍ରକାଶ କଲେ । ମାତ୍ର ତାଙ୍କୁ ସତର୍କ କରେଇ ଦେଇ କହିଲି, ହରିବାବୁ ! ହେଡ଼ମାଷ୍ଟର କେସ୍ ବୁଝିବେ, ସେ ଯଦି ଗୋଟିଏ ପକ୍ଷ ହୋଇଯିବେ ତେବେ ମକଦ୍ଦମା ବୁଝିବାକୁ ଅସୁବିଧା ହେବ । ଆପଣ ମୁଦଲା ହୁଅନ୍ତୁ ମୁଁ କେସ୍ ବୁଝିବି । ତେଣୁ ସେ ସେଥିରୁ ନିବୃତ୍ତ ହେଲେ । ବାଡ଼ ଉପୁଡ଼ା ସମ୍ବାଦଟି ପବନ ବେଗରେ ପବନ ଚନ୍ଦ୍ରଙ୍କ ପାଖରେ ପହଞ୍ଚିଗଲା । ସେ ରାଗରେ ନିଆଁବାଣ । ଅପରାହ୍ନ ତିନିଘଟିକା ସମୟରେ ପବନ ଚନ୍ଦ୍ର ସାହିର କେତେଜଣ ମୁଖିଆଙ୍କୁ ସାଙ୍ଗରେ ଧରି ତଡ଼ାବାଡ଼ି ସହ ସ୍କୁଲ ବାରଣ୍ଡାକୁ ଉଠିଆସି ତୁମ୍ଭିତୋଫାନ ଦେଖାଇଲେ । ମୋ କାନକୁ ସମ୍ବାଦ ଆସିଗଲା । ସେମାନେ ହରିବାବୁଙ୍କ ଉପରେ ରକ୍ତ ଚାଉଳ ଚୋବାଇଲେ । ବାଡ଼ ଉପାଡ଼ିବାବେଳେ ମୁଁ ହରିବାବୁଙ୍କୁ କହି ଦେଇଥିଲି, ''ହରିବାବୁ ! ଆପଣ ଯାହା କରିବେ କରନ୍ତୁ କିନ୍ତୁ ଯେତେବେଳେ ସେମାନେ ମୋ ନିକଟକୁ ଆସିବେ ମୁଁ ଆପଣଙ୍କୁ ନିଶ୍ଚୟ ରାଗିବି, ଆପଣ ବିଚଳିତ ହେବେନାହିଁ ।'' ଯେତେବେଳେ ସେମାନେ ଠିଆ ହୋଇ ପାଟିତୁଣ୍ଡ କରୁଥିଲେ, ଦପ୍ତରୀକୁ ଆଦେଶ ଦେଲି ସେମାନଙ୍କୁ ମୋ ନିକଟକୁ ଡାକି ଆଣିବାକୁ । ମୁଁ ତ ସବୁ ଜାଣିଛି କିଛି ନଜାଣିଲାପରି ଅଭିନୟ କରିବାକୁ ପଡ଼ିଲା । ଏପରି ନକଲେ

ବିଦ୍ୟାଳୟର ସ୍ୱାର୍ଥରକ୍ଷା ହେବ କିପରି ? ସେମାନଙ୍କୁ ପଚାରିଲି "ହଁ ଘଟଣା କ'ଣ ? ଆପଣମାନେ କାହିଁକି ଉତ୍ତ୍ୟକ୍ତ ହେଉଛନ୍ତି ।" ସେମାନଙ୍କ ମଧ୍ୟରେ ଆଗୁଆ ଜଣେ ଦି'ଜଣ ହରିବାବୁଙ୍କ ଉପରେ ବିଷୋଦ୍‌ଗାର କଲେ । ସବୁ ଶୁଣିସାରିବା ପରେ ସେମାନଙ୍କ ସମ୍ମୁଖରେ ମୁଁ କହିଲି, "ହଉ, ହରିବାବୁଙ୍କୁ ଡାକି ସବୁ ବୁଝିଦେଉଛି ।" ହରିବାବୁ ଆସି ପହଞ୍ଚିଗଲେ, ତାଙ୍କୁ ଭୀଷଣ ବିରକ୍ତ ହେଲି । ପଚାରିଲି, "ହରିବାବୁ ! ଘଟଣା କ'ଣ ?" ହରିବାବୁ ନିର୍ଭୟରେ ସବୁକଥା କହିଲେ, "ସାର୍, ସ୍କୁଲ ପ୍ରତିଷ୍ଠା ଦିନଠାରୁ ପୂର୍ବପାଖ ଫଳବୃକ୍ଷଗୁଡ଼ିକ ସ୍କୁଲ ଅଧିକାରରେ ଥିଲା ଏବଂ ସ୍କୁଲ ପିଲାମାନେ ସେହି ଫଳଗୁଡ଼ିକ ଉପଭୋଗ କରୁଥିଲେ । ଏବେ ଜମି ମାଲିକ ସେ ଜମିଗୁଡ଼ିକୁ ପବନବାବୁଙ୍କୁ ବିକ୍ରି କରିଦେଇଛନ୍ତି । ତେଣୁ ପବନବାବୁ କହୁଛନ୍ତି ଏ ବୃକ୍ଷଗୁଡ଼ିକ ତାଙ୍କର । ସ୍କୁଲର ଜନ୍ମଦିନଠାରୁ ଏ ବୃକ୍ଷଗୁଡ଼ିକ ଆମ ଅକ୍ତିଆରରେ ରହିଥିଲା । ଏବେ ସେ କହିଦେଲେ କ'ଣ ତାଙ୍କର ହୋଇଯିବ ? ତେଣୁ ପିଲାମାନଙ୍କୁ ନେଇ ମୁଁ ବାଡ଼ ଉଠେଇ ଦେଇଛି ।" ହରିବାବୁଙ୍କ କଥାରେ ବି ଦୃଢ଼ ଯୁକ୍ତି ଥିଲା । ଏ ଜଟିଳ ବିଷୟଟିକୁ ତ ପୁଣି ସମାଧାନ କରାଯିବ ।

ସାଙ୍ଗେସାଙ୍ଗେ କେତେଜଣ ବରିଷ୍ଠ ଶିକ୍ଷକଙ୍କୁ ଅଫିସ ଗୃହକୁ ଡକାଇଲି । ସେମାନଙ୍କୁ ସେଠାରେ ବସିବାପାଇଁ ସ୍ଥାନ ଦେଲି । ଶିକ୍ଷକମାନଙ୍କ ମତାମତ ଲୋଡ଼ିଲି । ସମସ୍ତଙ୍କ ଆଗରେ ସେମାନେ କହିଲେ, "ଆର.ଆଇ.ଙ୍କୁ ଡକାଇ ସୀମା ନିର୍ଦ୍ଧାରଣ କରାଯାଉ ।" ଗ୍ରାମବାସୀଙ୍କ ଆଡ଼କୁ ମୁହଁ ଫେରାଇଲି । ସେମାନଙ୍କୁ ପଚାରିଲି, 'ତୁମମାନଙ୍କ ମତ କଅଣ ?' ସେମାନେ କହିଲେ, ହଁ, ଆଞ୍ଚା ନଳ ଆଗରେ ବଳ କାହାର, ତାହାହିଁ ହେଉ ।' ଦିନ ଧାର୍ଯ୍ୟ ହେଲା । ବିଦ୍ୟାଳୟ ସ୍ୱାର୍ଥରକ୍ଷା କରିବା ପାଇଁ ଆର. ଆଇ. ମହାଶୟଙ୍କୁ ଅବଗତ କରାଇଲି । ସେଦିନ ସମସ୍ତେ ରୁଣ୍ଡ ହେଲେ । ନକ୍ସା ଦେଖି ମାପ ହେଲା । ମାପ କରିବାରୁ ପବନ ଚନ୍ଦ୍ରଙ୍କ ଜମି ଭିତରକୁ ସ୍କୁଲର ଦଶ କଡ଼ି ବାହାରିଲା । ସ୍କୁଲର ଏତେ ଜାଗା ବାହାରିବାରୁ ପିଲା ଓ ଶିକ୍ଷକମାନେ ଆନନ୍ଦିତ ହେଲେ କିନ୍ତୁ ବିଚରା ପବନ ଥକ୍କା ହୋଇ ଠିଆ ହୋଇଗଲା । ଗାଁ ଲୋକ ମୋ ଆଡ଼କୁ ଦୃଷ୍ଟି ଫେରାଇ ନିବେଦନ କଲେ କଥାଟା ଛିଣାଇ ଦେବାପାଇଁ । ମୁଁ ଦେଖିଲି ତା' ଜମିରୁ ଖଣ୍ଡେ ନେଇ ଆସିବାରେ ଆମର କି ଲାଭ ହେବ ? ତେଣୁ ଶିକ୍ଷକ, ପିଲା ଓ ଗାଁ ମୁଖିଆମାନଙ୍କୁ ପରାମର୍ଶ ଦେଲି, 'ପବନ ଚନ୍ଦ୍ର ଦରିଦ୍ର ଲୋକ' ଆମେ ତା' ଜମି ନେବା ନାହିଁ । ଯେଉଁଠି ସ୍କୁଲ ସୀମା ପୂର୍ବେ ଥିଲା ସେଇଠି ରହୁ ।' ସମସ୍ତେ ମୋ କଥାକୁ ସମର୍ଥନ କଲେ । ସେ ପାଖରେ ସ୍କୁଲ ସୀମାରେ ପଥର ଖଣ୍ଡେ ଖଣ୍ଡେ ତିରିଶ ଖଣ୍ଡ ପଥର ଜମିରେ ପୋତି ଦିଆଗଲା । ସୀମା ସୁରକ୍ଷା

ହେଲା । ବାହାର ଲୋକ ସ୍କୁଲ ଜାଗା ନେଇଯିବା ନୂଆ କଥା ନୁହେଁ । ଏ' ଗାଁରେ ଲୋକେ କେବଳ ନୁହନ୍ତି ସଚରାଚର ବିଦ୍ୟାଳୟ ଜାଗା ବା ସର୍ବସାଧାରଣ ଜାଗାରୁ ଖଣ୍ଡେ ଖଣ୍ଡେ ନେଇଯିବାକୁ ପ୍ରସ୍ତୁତ । ଖୋରଧା ହାଇସ୍କୁଲରେ ଥିବାବେଳେ ବି ସେହିପରି ଘଟିଥିଲା । ଏଠାରେ ବି ତାହାହିଁ ଘଟିଲା । ଏବେ ବିଦ୍ୟାଳୟର ସ୍ୱାର୍ଥରକ୍ଷା ହେଲା । ସେହିଦିନଠାରୁ ବିଦ୍ୟାଳୟ ଜାଗା ମାଡ଼ି ଆସିବାକୁ ଆଉ କେହି ସାହସ କଲେନାହିଁ ।

## ନୂତନ ଅସୁବିଧା :

ପୁନଃ ଆଉ ଗୋଟିଏ ନୂଆ ବିପଦ ଦେଖାଦେଲା । ଜଣେ ପଢୁଆ ଲୋକ ଆସି ମୋତେ କହିଲେ, 'ଆଜ୍ଞା ସ୍କୁଲ ଭିତରେ ମୋତେ ଟିକିଏ ଜାଗା ଦିଅନ୍ତୁ, ଆମ ଶଗଡ଼ ବଳଦ ଯିବାଆସିବା କରିବ ।' ମୁଁ ହସିଲି, 'କହିଲି ହଇହୋ ଏହା ତ ଉଭଟ କଥା । ଜଣେ ବଳଦ ଗାଡ଼ି ନେଲେ ଅନ୍ୟମାନେ ନେବାକୁ ସାହସ କରିବେ । ତାହା ହୋଇପାରିବ ନାହିଁ ।' ଏଣୁ ସେ ମୋର ଚିରଶତ୍ରୁ ପାଲଟିଲେ । ଏହିପରି ଯାହାର ସ୍ୱାର୍ଥରେ ବାଧା ଉପୁଜିଲା ସେ ମୋର ଶତ୍ରୁ ହେଲେ । ପ୍ରତ୍ୟହ ପ୍ରାତଃକାଳେ ବିଦ୍ୟାଳୟ ଚତୁଃପାର୍ଶ୍ୱରେ ଘେରାଏ ବୁଲିଆସେ । କେଉଁଠି କିଏ କ'ଣ ନେଲା, କିଏ କି କ୍ଷତି କଲା ସବୁ ବୁଲି ଦେଖେ ଏବଂ ତା'ର ସମାଧାନ କରେ । ମୁଁ ତ ତଡ଼ାବାଡ଼ି ପକେଇ ସେଠାରେ ଜଗି ରହୁଥିଲି । ଜାଗ୍ରତ ପ୍ରହରୀ ଥିଲି । ପାଠପଢ଼ାଟା ଯେପରି ଚାଲିଥାଏ ଖେଳଟା ସେହିପରି ଚାଲିଥାଏ, ସାଂସ୍କୃତିକ କାର୍ଯ୍ୟ ବି ସେମିତି ଚାଲିଥାଏ । ମୁଁ ସେଠାରୁ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଆସିଲିଣି । କେତେ ହେଡମାଷ୍ଟ୍ର ଆସୁଛନ୍ତି କେତେ ଯାଉଛନ୍ତି ମାତ୍ର ଜଣେ ହେଲେ ସେଠାରେ ଡେରା ପକେଇ ରହିଲେ ନାହିଁ । ସେମାନଙ୍କର ଗୋଟିଏ ପାଦ ଗାଁରେ ହେଲେ ଆଉ ଗୋଟିଏ ପାଦ ସ୍କୁଲରେ । ଏପରିସ୍ଥଳେ ସ୍କୁଲର ଉନ୍ନତି କଥା ଚିନ୍ତା କରିବେ କେତେବେଳେ ? ମୋଟାମୋଟି ସ୍କୁଲର ସ୍ୱାର୍ଥରକ୍ଷା ପାଇଁ ମୁଁ ସର୍ବଦା ପ୍ରସ୍ତୁତ ଥିଲି । ଲୋକମାନଙ୍କ ସହିତ ଅତ୍ୟଧିକ ମିଶୁନଥିଲି । ଗୋଟିଏ ଯୁଗ ବିତେଇବାକୁ ବହୁ କଷ୍ଟ ସହ୍ୟ କରିବାକୁ ପଡ଼ିଥିଲା । ହେଲେହେଁ ସବୁକଥାରେ ସଫଳତା ହାସଲ କରି ଆସିଛି ।

## ମୋର ଦ୍ୱିତୀୟ ଶ୍ରେଣୀକୁ ପ୍ରମୋଶନ :

ବିର୍ତ୍ତମାନ ସିନିୟର ଏସ୍.ଇ.ଏସ୍. ପୋଷ୍ଟରେ ଜଣେ ଶିକ୍ଷକ ଦୁଇ ତିନିବର୍ଷ ରହିବା ପରେ ଦ୍ୱିତୀୟ ଶ୍ରେଣୀକୁ ଉନ୍ନୀତ ହେଉଛନ୍ତି । ୧ ତ୍ର ମୁଁ ସିନିୟର ଏସ.ଇ.ଏସ. ପୋଷ୍ଟରେ ଦଶ ବର୍ଷ ରହିବାପରେ ୧୯୮୦ ମସିହା ଜୁନ୍ ମାସ ନଅ ତାରିଖରେ ଦ୍ୱିତୀୟ ଶ୍ରେଣୀକୁ

ଉନ୍ନୀତ ହେଲି । ଏତିକି ଯୁକ୍ତି ଥାଇପାରେ ସେତେବେଳେ ସରକାର ବାହାଦୁର ଆମ୍ଭମାନଙ୍କୁ ନେଲାବେଳେ କିଛି ନୀତି ସ୍ଥିର କରିନଥିଲେ । ମୋ ପ୍ରମୋଶନରେ ଯେ ବେଶୀ ଆନନ୍ଦିତ ହୋଇଥାଆନ୍ତେ ସେ ସେତେବେଳକୁ ପରପାରିରେ । ତଥାପି ଏତେଦିନକେ ସମ୍ମାନଟିଏ ମିଳିଲା ବୋଲି ପ୍ରଭୁଙ୍କ ପାଖେ କୃତଜ୍ଞ ରହିଲି । ସେ ତ ସର୍ବମୟ କର୍ତ୍ତା, ତାଙ୍କର ବିନା ଇଚ୍ଛାରେ ଗଛର ପତ୍ରଟିଏ ବି ଦୋହଲିବ ନାହିଁ । ଶିକ୍ଷକମାନଙ୍କର ଇଚ୍ଛା ପୂରଣ କରିବାରେ ଅବହେଳା ପ୍ରଦର୍ଶନ କରିବି କାହିଁକି ? ମୋର ଶୁଭ ସମୟ ଆସିଗଲା ବୋଲି ମନେ କଲି ।

## ଖେଳପଡ଼ିଆ ବିଷୟ :

ଶେଷ ତିନିବର୍ଷ ମଧ୍ୟରେ ବିଦ୍ୟାଳୟ ପାଇଁ ଯାହା କରିଯିବା କଥା କରିବାକୁ ବସିଲି । ଖେଳପଡ଼ିଆର ଉନ୍ନତି ନିମନ୍ତେ ସରକାରୀ ଅନୁଦାନ କିଛି ମିଳିଲା । ତାର ଉଚିତ ବିନିଯୋଗ କରିବି । ବିଦ୍ୟାଳୟ ସମ୍ମୁଖ ପଡ଼ିଆଟି ଖାଲ ଢିପର ପଡ଼ିଆ । ତାକୁ ଖେଳ ପଡ଼ିଆରେ ପରିଣତ କରିବା ପାଇଁ ବହୁ ପ୍ରତିବନ୍ଧକ ଥିଲା । ପ୍ରତିବନ୍ଧକଗୁଡ଼ିକ ଦୂର କରିବାକୁ ଉଦ୍ୟତ ହୋଇ ପ୍ରଥମେ ପଦକ୍ଷେପ ସ୍ୱରୂପ ସରକାରୀ ଅନୁଦାନରେ ପଡ଼ିଆକୁ ସମତୁଲ କରିବାକୁ ପଡ଼ିଲା । କ୍ରୀଡ଼ା ପାଡରର ପ୍ରାୟ ପଚସ୍ତରି ଭାଗ କାର୍ଯ୍ୟ ସଂପୂର୍ଣ୍ଣ ହେଲା । ମାତ୍ର ମଧ୍ୟସ୍ଥଳରେ କୂପ ଓ ବିରାଟ ଆମ୍ରଗଛଟି ପ୍ରତିବନ୍ଧକ ସୃଷ୍ଟିକଲା । ସାମୂହିକ ସ୍ୱାର୍ଥସାଧନ ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦିଆଯାଏ । ବହୁଜନଙ୍କ ମତ ହେଲା କୂଅ ପୋତିବା ଓ ଆମ୍ବ ଗଛଟିକୁ କାଟିଦେବା । ପ୍ରଧାନଶିକ୍ଷକ ବହୁଜନ ମତ ପ୍ରତି ସମ୍ମାନ ଦେଖାଇ କାର୍ଯ୍ୟ ସାଧନ କରିଯିବା ଉଚିତ । ମାତ୍ର ମୁଁ ସ୍ୱଭାବତଃ ଧର୍ମଭୀରୁ । କୂପର ସୁଶୀତଳ, ଆରୋଗ୍ୟକାରୀ ଜଳ ମୋର ଚାଳିଶ ବର୍ଷର ପେଟରୋଗ ଦୂର କରିପାରିଛି ଏବଂ ବିଦ୍ୟାଳୟର ପରମବନ୍ଧୁ ଓ ହଳ ରୂପେ କାର୍ଯ୍ୟ ସଂପାଦନ କରିଆସୁଥିବା ବିରାଟ ଆମ୍ରବୃକ୍ଷଟିକୁ କାଟି ପକେଇବା ଏକ ଅମାନୁଷିକ କାର୍ଯ୍ୟ ହେବ । ଏ ଦୁହିଁଙ୍କ ନିକଟରେ ଶିକ୍ଷକ ବନ୍ଧୁଗଣ, ଛାତ୍ରସମାଜ ବିଶେଷତଃ ମୁଁ ସ୍ୱଂୟ ବିଶେଷ ଭାବେ ଋଣୀ । ତେଣୁ କୂପ ପୋତିବା ଓ ବୃକ୍ଷକାଟିବା ଏ ଦୁଇଟି କାର୍ଯ୍ୟ କରିବାକୁ ବିବେକ ବାଧା ଦେଲା । ସେପରି କାର୍ଯ୍ୟ କରିଥିଲେ ମୁଁ ଅହିନର୍କରେ ପଡ଼ିଥାଆନ୍ତି ଓ ମହାପାପରେ ଭାଗୀ ହୋଇଥାଆନ୍ତି । କୂପ ପୋତିବା ଏକ ଅଧର୍ମ କାର୍ଯ୍ୟ, ଫଳନ୍ତି ବୃକ୍ଷରେ କୁରାଢ଼ି ଚୋଟ ବସେଇବା ତତୋଽଧିକ ଅନୀତି କାର୍ଯ୍ୟ । ବର୍ଷକପରେ ଅବସର ନେବି । ଏତେ ଅଧର୍ମ କର୍ମ କରିବି କାହିଁକି ? ବର୍ତ୍ତମାନ ଜୀବନଠାରୁ ପର ଜୀବନ ଆହୁରି ମଧୁମୟ ହେବା ପାଇଁ ମୁଁ ଚାହେଁ ।

ଏଠାରେ ମୋତେ କେହି କେହି ପଳାୟନପନ୍ଥୀ ବୋଲି କହିପାରନ୍ତି । ମାତ୍ର ମୁଁ ପଳାୟନପନ୍ଥୀ ନୁହେଁ । ସ୍କୁଲ ପ୍ରତି, ଛାତ୍ରଛାତ୍ରୀମାନଙ୍କ ପ୍ରତି ମୋର ଗଭୀର ସ୍ନେହ ଓ କର୍ତ୍ତବ୍ୟ ଅଛି । ମୋ କାମ କାହାକୁ ତୁଷ୍ଟ କରିବା ପାଇଁ ନୁହେଁ । ତେଣୁ ହାଡ଼େ ପଡୁ ଗୋଡ଼େ ପଡୁ ବିଦ୍ୟାଳୟ ସ୍ୱାର୍ଥ ନିଶ୍ଚୟ ରକ୍ଷା କରିବି । ମୋର ଶେଷଦିନ ପର୍ଯ୍ୟନ୍ତ ଶାନ୍ତିଶୃଙ୍ଖଳା ଓ ଅଧ୍ୟାପନା ବଜାୟ ରଖିବି । ନିରବଚ୍ଛିନ୍ନ ଭାବେ ଶାନ୍ତି, ସଦ୍ଭାବ ସହ ପାଠପଢ଼ା ଚାଲିଥିଲା । ମୋ ନୀତିକୁ ସମ୍ମାନ ପ୍ରଦର୍ଶନ କରୁଥିଲି । ଅନ୍ୟ ଶିକ୍ଷକମାନଙ୍କୁ ସେଥିରେ ଅନୁପ୍ରାଣିତ କରେଇ ପାରିଥିଲି । ସେଠାରେ ଆଉ ଦୁଇବର୍ଷ ରହିବାର ସୁବିଧା ପାଇଥିଲେ କୂଅ ନପୋତି ଆମ୍ବଗଛକୁ ନକାଟି ଖେଳପଡ଼ିଆ କିପରି କରାଯାଇପାରିଥାଆନ୍ତା ତାହା ମୁଁ ଦେଖିଥାଆନ୍ତି । ଏବେ ତ ପରମାୟୁ ସରି ଆସୁଥିଲା ତେଣୁ ସେ ବିଷୟରେ ମୁଣ୍ଡ ଖେଳେଇଲି ନାହିଁ । ଅକ୍ଟୋବର ୩୧ ତାରିଖ ପର୍ଯ୍ୟନ୍ତ ହେଡ୍‌ମାଷ୍ଟର ଥିଲି । ଗୃହ ଉଦ୍‌ଘାଟନ ପରେ ଦୁର୍ଗାପୂଜା ଛୁଟି ଓ ତା'ପରେ ମୋଟେ ଦଶ ଦିନ ସମୟ ଥିଲା । ତଥାପି ଶେଷଦିନ ପର୍ଯ୍ୟନ୍ତ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିନଥିଲି ।

## ମଞ୍ଜୁଶ୍ରୀର ବିଭାଘର ଆୟୋଜନ ଓ ସଂପନ୍ନ :

ମା' ଗୃହଛାଡ଼ି ଆରପାରିକୁ ଚାଲିଗଲା ପରେ ଚାରିବର୍ଷ କାଳ ଏତେବଡ଼ ପରିବାରର ଦାୟିତ୍ୱ ନେବ କିଏ ? ସେମାନଙ୍କୁ ଖୁଆଇ ଦେବ କିଏ ? ରନ୍ଧାବଢ଼ା କରିବ କିଏ ? ମୁଁ ମୁଣ୍ଡରେ ହାତଦେଇ ବସିଲି । ଲୋକେ ଭିନ୍ନ ଭିନ୍ନ ପରାମର୍ଶ ଦେଲେ । ମାତ୍ର ତାହା ବେଶି ଖରାପ ହୋଇଥାଆନ୍ତା । ମୁଁ ଅବସ୍ଥା ସମ୍ଭାଳି ପାରି ନଥାନ୍ତି । କଲେଜରେ ବି.ଏ. ପଢୁଥିବା ମୋ ଝିଅ ମଞ୍ଜୁଶ୍ରୀ ଅଣ୍ଟାଭିଡ଼ି ବାହାରିଲା । ବିଦ୍ୟା ଅଧ୍ୟୟନ ଓ ରନ୍ଧାବଢ଼ା ଉଭୟ ଚାଲିଲା । ଗୃହରେ ସ୍ତ୍ରୀ ଲୋକ କେହି ନଥିଲେ । ମା' ନାହିଁ ଯେ ଝିଅକଥା ଭାବିବ । ମୋ ଚାକିରିକାଳ ମଧ୍ୟରେ ଅର୍ଥାତ୍ ପାଞ୍ଚବର୍ଷ ଭିତରେ ଝିଅର ବିବାହ ସମ୍ପନ୍ନ କରିଦେଲେ ମୁଁ ମୁକ୍ତି ପାଇବି । ମନ ଭିତରେ ଗଭୀର ଦୁଃଖ ବସା ବାନ୍ଧିଥାଏ । ସୁଯୋଗ ନ ଆସିଲେ ଶୁଭକାର୍ଯ୍ୟ ସମ୍ପନ୍ନ ହୁଏ ନାହିଁ ।

ଢୁଆଇଁଟିଏ ପାଇବା କାଠିକର ପାଠ । ସବୁ ତ ମଙ୍ଗଳମୟଙ୍କ ଇଚ୍ଛା । ସବୁ ଶିକ୍ଷକଙ୍କୁ ନିଜର ବୋଲି ଭାବୁଥିଲି । ବର୍ଷେ ଗଲା, ଦଶ ବର୍ଷ ଗଲା । ଏହି ସମୟରେ ପ୍ରାଣନାଥ ମହାପାତ୍ର ନାମକ ଜଣେ ଶିକ୍ଷକ ଓଳ ସିଂହରୁ ବଦଳି ହୋଇ ଆସିଲେ । ଶିକ୍ଷକ କର୍ମଠ, କାର୍ଯ୍ୟଦକ୍ଷ, ସୁପଣ୍ଡିତ, ଜ୍ଞାନଗର୍ଭା । କୁଳୀନ ପରିବାରର ଲୋକ ବୋଲି

ଜଣାପଡ଼େ । ତେବେ ସେ ଓଳସିଂହ ସ୍କୁଲର ଶିକ୍ଷକ ଥିଲାବେଳେ ତାଙ୍କର ଜଣେ ଛାତ୍ର ଏଥିମଧ୍ୟରେ ସମବାୟ ବିଭାଗରେ ଚାକିରି କରିଥିଲେ । ସେ ମୋ ଝିଅ ସହିତ ସେହି ଯୁବକର ବିଭାଘର ପ୍ରସଙ୍ଗ ଉଠାଇଲେ । ପିଲାଟିର ପାମ କାଳିନ୍ଦୀ ଚରଣ ବଳିୟାରସିଂହ । ଘର ସରପାରି, ମଳାଗୁଣୀ ନଦୀକୂଳରେ ।

ପ୍ରସ୍ତାବଟି ଏକ ଉତ୍ତମ ପ୍ରସ୍ତାବ । ଅନ୍ୟ ସବୁ ପ୍ରସ୍ତାବ ଛାଡ଼ି ସେହି ପ୍ରସ୍ତାବରେ ମନ ମାନିଲା ଏବଂ ୧୯୮୧ ମସିହା ଜାନୁଆରୀ ୨୭ ତାରିଖରେ ମଞ୍ଜୁଶ୍ରୀର କାଳିନ୍ଦୀ ଚରଣଙ୍କ ସହିତ ଶୁଭପରିଣୟ ସମ୍ପନ୍ନ ହେଲା । କିଛିଦିନ ହାତରେ ରୋଷେଇ ବ୍ୟବସ୍ଥା କଲି । ଘର ଖାଲି ହୋଇଗଲା । ଏବେ ଚାରିପୁଅଙ୍କ ସହିତ ବାସ କରିବାକୁ ପଡ଼ିଲା । ମୁଣ୍ଡରୁ ଏକ ବଡ଼ ବୋଝ ଖସିଲା ।

ଏବେ ସ୍ୱଚକ୍ଷୁରେ ଦେଖୁଛି ଲୋକେ ଅବସର ନେଲା ପରେ ଦଶବର୍ଷ ପନ୍ଦର ବର୍ଷ ମଧ୍ୟରେ କନ୍ୟାମାନଙ୍କର ବିବାହ ଉତ୍ସବ ସମ୍ପନ୍ନ କରିପାରୁ ନାହାନ୍ତି । ମୋ ଆଖି ଆଗରେ କେତେ ବଡ଼ ବଡ଼ କର୍ମଚାରୀ ଦୁଇ ଦୁଇଟା କନ୍ୟା ଛାଡ଼ି ସ୍ୱର୍ଗବାସ କଲେଣି, ଅଥଚ ମୋ ଚାକିରିକାଳ ମଧ୍ୟରେ ଦୁଇଟିଯାକ ଝିଅଙ୍କୁ ଯେ ପରଗୋତ୍ରୀ କରିଦେଲି, ଏହା ସେହି ବିଶ୍ୱନିୟନ୍ତାଙ୍କ ଶୁଭେଚ୍ଛା ନୁହେଁ ତ ଆଉ କ'ଣ ? ସାମାନ୍ୟ ମାନବ ତାଙ୍କର ଅନ୍ତ ପାଇବ କିପରି ?

## ମୋର ଉଦ୍‌ବିଗ୍ନତା :

ଏ ବର୍ଷ ଶିକ୍ଷାମନ୍ଦିରରୁ ଚିରବିଦାୟ ନେବି । ଏଇଦିନୁ ମନ ଛନଛନ ହେଲାଣି । ଶିକ୍ଷକ ଓ ଛାତ୍ରମାନଙ୍କୁ ଜଗି ଜଗି ଅତିଷ୍ଠ ହେଲିଣି । ମାର୍ଚ୍ଚ ମାସ ସମୟ । ଅଫିସ ଗୃହରେ ବସି କାଗଜପତ୍ର ତନଖି କରୁଛି । ଏହି ସମୟରେ ଜଣେ ସହକର୍ମୀ ଆସି ମୋ ପାଖେ ଆପତ୍ତି କଲେ, ''ଆଜ୍ଞା ଯେଉଁ ପଥରେ ନିରାକାରପୁର ପିଲାମାନେ ଗ୍ରାମ ଭିତରକୁ ଯାତ୍ରା କରନ୍ତି ଅର୍ଥାତ୍ ସ୍କୁଲର ମୁଖ୍ୟ ପ୍ରବେଶ ଦ୍ୱାରରେ ଜନୈକ କହ୍ନେଇ ସାହୁ ପଥର ଗଦା କରିଦେଲାଣି । ସେ ସେଠାରେ ଗୃହ ନିର୍ମାଣ କରିବ । ସେ ପଥ ବନ୍ଦ ହୋଇଗଲେ ବାହାରୁ ବା ଭିତରୁ ଯିବାଆସିବା କରିବା କିପରି ? ପରିଦର୍ଶକ କର୍ମଚାରୀ ଆସିବେ କିପରି ? ଆପଣ ଏହାର କିଛି ସମାଧାନ ନକଲେ ଚିରଦିନ ପାଇଁ ପସ୍ତେଇବାକୁ ପଡ଼ିବ । ଆପଣ ଯିବାପରେ ଅଞ୍ଚଳ ଲୋକ ସବୁଯାକ ଦୋଷ ଆପଣଙ୍କ ଉପରେ ଢାଳିଦେବେ ।'' ତାଙ୍କୁ ଦଣ୍ଡେ ଚାହିଁଲି । ଭାବିଲି ଯେଉଁଠିକି ଗଲି ସେହି ଏକା କଥା । ପୁନଶ୍ଚ ଭାବିଲି ଶିକ୍ଷକ ଯାହା

କହୁଛନ୍ତି ସତକଥା । ତେବେ କରିବି କ'ଣ ? ଭଲ ଜାଗାକୁ ଆସିଲି । ସବୁବେଳେ ଆରମ୍ଭରୁ ଶେଷପର୍ଯ୍ୟନ୍ତ ସମସ୍ୟା ଲାଗି ରହିଛି । ଜୀବନଟାଯାକ ଗଲା ଯୁଦ୍ଧ କରି କରି । ସେମାନେ ଦୋଷ ଛଡ଼େଇ ଚାଲିଗଲେ । ଡେଙ୍ଗା ମୁଣ୍ଡରେ ଠେଙ୍ଗା । ପ୍ରବେଶ ପଥଟି ଜଣକର ନୁହେଁ । ସେ ଜାଗାଟାକୁ ଜଣେ କ୍ରୟ କରିବ ବୋଲି ବହିଣା ଦେଇଛି । ବହିଣା ଦେବା ଲୋକଟା ପଥର ଜମା କଲାଣି । ଯେଉଁମାନେ ଜାଗାଟି ବିକ୍ରି କରୁଛନ୍ତି ସେମାନେ ସାତଜଣ ଗ୍ରାମର ମୁଖ୍ୟବ୍ୟକ୍ତି ବାନାମ୍ବର ଛୋଟରାୟଙ୍କ କବଳରେ । ଏବେ ତିନି ଶେଣାରେ ପାଣି ଉଠିବ । କାହାକୁ ଧରିବାକୁ ପଡ଼ିବ ଏଇ ଚିନ୍ତାରେ ଦିନେ ଦୁଇଦିନ କଟିଗଲା । 'ରାଜ୍ୟ ପାପ ରଜା ମୁଣ୍ଡରେ' । ଭଲ ହେଉ ମନ୍ଦ ହେଉ ଚିରଦିନ ପାଇଁ ରାସ୍ତାଟି ବନ୍ଦ ହୋଇଯିବ । ବଡ଼ ଅଡୁଆରେ ପଡ଼ିଲି । ବୁଝୁବୁଝୁ ଚାରି ପାଞ୍ଚହଜାର ଟଙ୍କା ଲୋଡ଼ା । ଏତେଗୁଡ଼ିଏ ଟଙ୍କା ଏକାକାଳୀନ ଦେବ କିଏ ? ଦାନବୀର କ୍ଷେତ୍ରବାସୀ ତ ନାହାନ୍ତି ? କାହା ପାଖକୁ ଯିବି, କ'ଣ କରିବି ? ଏହି ଭାବନା ମୋତେ ଦିନରାତି ଘାରିଲା । ପିଲାମାନେ ମୋର ପ୍ରଧାନ ଅବଲମ୍ବନ । କିନ୍ତୁ ସରକାରୀ ସ୍କୁଲ ହେତୁ ଚାନ୍ଦା ଆଦାୟ କରିବା ଅପରାଧ । କିଏ ଯଦି କଣ ଲେଖିଦିଏ ତେବେ ମୋର ଦୁର୍ନାମ ହେବ । ଚେଙ୍ଗିଦେବା ଲୋକର ଅଭାବ ନାହିଁ । ସବୁ ଆଡ଼କୁ ଡରିବାକୁ ପଡୁଛି । ଶ୍ରେୟାଂସି ବହୁବିଘ୍ନାନି । ସଂଯୋଗ ରାସ୍ତାଟି ହାତରୁ ଖସିଗଲେ କଳଙ୍କ ମୁଣ୍ଡାଇବାକୁ ପଡ଼ିବ । ସବୁ କଥା ବିଚାର କରି ଶିକ୍ଷକ ଭାଇମାନଙ୍କର ଏକ ସଭା ଡକାଇଲି । ସେମାନଙ୍କୁ ନ ଧରିଲେ କୌଣସି କାର୍ଯ୍ୟରେ ଆଗେଇ ହେବ ନାହିଁ । ନାନାଦିଗରୁ ଆଲୋଚନା ହେଲା । ବାନାମ୍ବର ବାବୁଙ୍କୁ ନ ଧରିଲେ କିଛି ହୋଇପାରିବ ନାହିଁ । ମୋ ସାନ ଜୁଆଇଁଙ୍କର ସେ ହେଉଛନ୍ତି ମଉସା । ବନ୍ଧୁବାନ୍ଧବ ନ ଯୋଡ଼ିଲେ ଆଗେଇ ହେବ ନାହିଁ । ଗୋଟିଏ ମଉକା ମିଳିଗଲା ସମୁଦୀ ଡାକିବାକୁ । ସ୍କୁଲ କାମଟା କିପରି ସୁରୁଖୁରୁରେ ହେବ ଏ ଚିନ୍ତା ମୁଣ୍ଡରେ ପଶିଲା ।

ବନ୍ଧୁ କୃପାସିନ୍ଧୁ ତ୍ରିପାଠୀ ସ୍କୁଲର ପଡ଼ୋଶୀ । ତାକୁ ସାଙ୍ଗରେ ଧରି ବାନାମ୍ବର ବାବୁଙ୍କ ପାଖକୁ ଯାତ୍ରା କଲି । ସମୁଦୀ ବୋଲି ସମ୍ବୋଧନ କରିବାରୁ ସେ ଖୁସୀ ହେବାପରି ଜଣାପଡ଼ିଲା । ପୂର୍ବେ ହେଡମାଷ୍ଟରଙ୍କ କଥା କହି ମୋତେ କେତେକ କର୍କଶ ଓ ଅଶାଳୀନ ବାକ୍ୟ କହିଲେ । ତାଙ୍କ ବ୍ୟବହାରରେ ମୋ ବନ୍ଧୁ କୃପାସିନ୍ଧୁବାବୁ ବେଶି ଅପମାନିତ ବୋଧ କଲେ । ମୁଁ ଯଦି ସେଇ ମୁହୂର୍ତ୍ତରେ ମୋର ମାନସମ୍ମାନ ଜଗି ସେଠାରୁ ଖସି ଆସିଥାଆନ୍ତି ତେବେ ରାସ୍ତା କିଣା କାମ ହୋଇପାରି ନଥାନ୍ତା । ଅନୁଷ୍ଠାନ ପାଇଁ ଅପମାନ ସହିଲେ କିଛି କ୍ଷତି ନାହିଁ ଭାବି ଛୋଟରାଙ୍କ ସଙ୍ଗେ କଥାଭାଷା କଲି । ରାସ୍ତା ଜମିକିଣା,

ରେଜେଷ୍ଟ୍ରି ଖର୍ଚ୍ଚ, ଟାଙ୍ଗି ଯିବାଆସିବା ଖର୍ଚ୍ଚ ସବୁ ମିଶି ପ୍ରାୟ ଚାରିହଜାର ଟଙ୍କା ପଡ଼ିବ ବୋଲି ଜଣାପଡ଼ିଲା । ଯୋଗାଡ଼ କରିସାରିଲାପରେ ମେ ମାସ ପ୍ରଥମ ସପ୍ତାହରେ ରେଜେଷ୍ଟ୍ରି କାମ ଶେଷ ହେବ । ବସାକୁ ଫେରିଲି । ବାଟରେ କୃପାସିନ୍ଧୁବାବୁ ମୋତେ ତାଚ୍ଛଲ୍ୟ କରି କହିଲେ 'ଆପଣ ଜଣେ ଗ୍ରାମ୍ୟ ବୁଦ୍ଧିଜୀବୀଠାରୁ ଏତେ ଅପମାନ ସହିଲେ' କିପରି ? ମୁଁ ତାଙ୍କୁ ଉତ୍ତର ଦେଲି, ''କହିଲି ବୁଝିଲେ ତ୍ରିପାଠୀବାବୁ, ମୁଁ ନ ସହିଥିଲେ ବାରବରଷର ତପସ୍ୟା ଶୁଖୁଆ ପୋଡ଼ାରେ ଯାଇଥାଆନ୍ତା । ଏ କାମରେ ବିଳମ୍ବ କଲେ ଚଳିବ ନାହିଁ । ମୋର ପରମାୟୁ ସରିଆସୁଛି । ଯାହାକରିବା ଶୀଘ୍ରଶୀଘ୍ର କରିବା ।''

## ଦୁଇ ବନ୍ଧୁଙ୍କର କଥୋପକଥନ ଓ ପଥ ନିର୍ମାଣର ମସୁଧା :

ଏହିପରି ଦୁଇବନ୍ଧୁ ବହୁକଥା ପକେଇ ଗୃହକୁ ଫେରିଲୁ । ଥୋପଟା ଠିକ୍ କାମ ଦେଇଛି ବୋଲି ଭାବିନେଲି । ତହିଁ ଆରଦିନ ସ୍କୁଲର ସହକର୍ମୀମାନଙ୍କ ସହାୟତାରେ ଆଖ ପାଖ ଗ୍ରାମର ଓ ସେ ସାହିର ମୁଖିଆ ଲୋକମାନଙ୍କୁ ଡକାଇଲି । ଯୁବକ ସରପଞ୍ଚ ମହାଶୟ ବି ଆସିଲେ । ନିରାକାରପୁର ଗ୍ରାମବାସୀ ମଙ୍ଗିଗଲେ ଅନ୍ୟମାନେ ବାଟକୁ ଆସିଯିବେ । ଶିକ୍ଷକମାନଙ୍କର ମନ ଏକ । ହରିବାବୁ, ନାରଣବାବୁ, ଧଳବାବୁ, ବିଶୁବାବୁ, ଏବଂ ଅନ୍ୟ ସିନିଅର ଶିକ୍ଷକମାନଙ୍କ ମନ ଏକ । ସେମାନେ ମୋତେ ସାହାଯ୍ୟ କଲେ । ଗ୍ରାମବାସୀମାନଙ୍କୁ ଆସନ ପ୍ରଦାନ କଲି । ଶିଷ୍ଟାଚାର ଦୃଷ୍ଟିରୁ ସେମାନଙ୍କୁ କପେ କପେ ଚାହା ଦେବାର ବନ୍ଦୋବସ୍ତ କଲି । ପ୍ରଧାନଶିକ୍ଷକ ସେମାନଙ୍କୁ ସମ୍ମାନ ଦେଖାଇଲେ ବୋଲି ସେମାନେ ଯେତେବେଳେ ଅନୁଭବ କଲେ ସେତିକିବେଳେ ପ୍ରସଙ୍ଗ ଉଠାଇଲି । ''ଭାଇମାନେ, ଏ ଅନୁଷ୍ଠାନ ଆପଣମାନଙ୍କର, ଆପଣମାନଙ୍କର ସ୍ନେହ ଶ୍ରଦ୍ଧା ଓ ସଦିଚ୍ଛା ନ ମିଳିଲେ ଏ ଅନୁଷ୍ଠାନ ଦିନେହେଲେ ଚଳିପାରିବ ନାହିଁ । ସ୍କୁଲ ପ୍ରତିଷ୍ଠାର ତିରିଶ ବର୍ଷ ହେଲାଣି ଅଥଚ ମୁଖ୍ୟ ରାସ୍ତାସହ ସ୍କୁଲକୁ ସଂଯୋଗ କରିବା ପାଇଁ କୌଣସି ହେଡମାଷ୍ଟର ଚିନ୍ତା କରିନାହାନ୍ତି । ଏ ବିଦ୍ୟାଳୟ ନିଜର ପ୍ରସ୍ତର ନିର୍ମିତ ଗୃହଟି କଲେଜକୁ ଦାନ କରି ଏ ଝାଟିମାଟି ଗୃହକୁ ଆଶ୍ରାକରି ରହିଛି । ଏ କଥା ଆପଣମାନେ ନିଶ୍ଚୟ ହୃଦୟଙ୍ଗମ କରିପାରୁଥିବେ । ଦୁଇ ଲକ୍ଷ ଟଙ୍କା ବ୍ୟୟରେ ଯେଉଁ ସୁରମ୍ୟ ପ୍ରାସାଦଟି ନିର୍ମିତ ହେଉଛି ତା କାମ ଶେଷହେବା ଉପରେ । ତପ୍ପରେ ମୁଁ ଏଠାରୁ ପ୍ରସ୍ଥାନ କରିବି । କିନ୍ତୁ ଭାଇମାନେ ଏତେ ବଡ଼ ମନୋରମ ସୌଧ ନିର୍ମାଣକରି ଯଦି ସଂଯୋଗ ପଥଟିଏ ନ ଥିବ ତେବେ ଏ ବିରାଟ ସୌଧର ମହତ୍ତ୍ୱ ରହିବଟି ? ଏଥିପାଇଁ ମୁଁ ଆପଣମାନଙ୍କର ସାହାଯ୍ୟ ସହଯୋଗ କାମନା କରୁଛି । ଏ ଅନୁଷ୍ଠାନର ପ୍ରକୃତ ମାଲିକ ଆପଣମାନେ । ସମସ୍ତେ

ମିଶି ଏତିକି ଯଦି ନ କରିବା ତେବେ ଚିରକାଳ ଅନୁତାପ କରୁଥିବା । ପଛରେ ଆପଣମାନେ ମୋତେ ଗାଳିଦେବେ । ଆପଣମାନଙ୍କର ସାହାଯ୍ୟ ମିଳିଲେ ମୁଁ ଏ 'ତପ୍ତବୈତରଣୀ ' ପାରି ହୋଇ ପାରିବି । ମୁଁ ମଧ ଠିକ୍ କରିଛି ଏ କାମ ପାଇଁ ଚାନ୍ଦା ଦେବି ଏବଂ ଶିକ୍ଷକମାନେ ସରକାରୀ ଚାକିରିଆ ହେଲେ ମଧ୍ୟ ସେମାନେ କିଛି କିଛି ଚାନ୍ଦା ଦେବେ ବୋଲି ମୋତେ ପ୍ରତିଶ୍ରୁତି ଦେଇଛନ୍ତି । କେବଳ ଛାତ୍ରଛାତ୍ରୀମାନଙ୍କଠାରୁ କିଛି କିଛି ଆଦାୟ କରିବାପାଇଁ ଆପଣମାନଙ୍କର ପୂର୍ଣ୍ଣ ସମର୍ଥନ ମିଳିଲେ ଆମ୍ଭେମାନେ ପ୍ରବେଶ ପଥଟି କିଣିପାରିବା ।'' ମୋର ଏପରି ମନଛୁଆଁ କଥାରେ ସେମାନେ ଏତେଦୂର ପ୍ରଭାବିତ ହୋଇପଡ଼ିଲେ ଯେ ହଁ ହଁ, ନିଶ୍ଚୟ ପଥ କିଣାଯିବ ବୋଲି ଏକ ସ୍ୱରରେ ଉଚ୍ଚାରଣ କଲେ । ହେଡମାଷ୍ଟରଙ୍କ ଉପରେ ସମସ୍ତ ଦାୟିତ୍ୱ ଦେଇ ସ୍ଥାନ ପରିତ୍ୟାଗକଲେ । ରାସ୍ତାକ୍ରୟର ଗୋଟିଏ ପର୍ଯ୍ୟାୟ ଶେଷ ହେଲା । ମୁଁ ଦୀର୍ଘଶ୍ୱାସ ପକାଇଲି ।

## ଛାତ୍ରଛାତ୍ରୀମାନଙ୍କର ପୂର୍ଣ୍ଣ ସହଯୋଗ :

ପୁନଃ ଛାତ୍ରଛାତ୍ରୀମାନଙ୍କୁ ମଙ୍ଗାଇବା ପାଇଁ ଆଉ ଏକ ସଭାର ଆବଶ୍ୟକତା ପଡ଼ିଲା । କୋଠାକାମ ଦ୍ରୁତଗତିରେ ଚାଲିଥାଏ । ଖୋର୍ଦ୍ଧାର ଜୁନିଅର ଇଞ୍ଜିନିୟର ବାବୁ ବାଳକୃଷ୍ଣ ସ୍ୱାଇଁ ମୋ କଥାକୁ ତଳେ ପକେଇ ଦେଉ ନଥିଲେ । ଏତିକିବେଳେ ସଭାଟିଏ କଲି । ପୂର୍ବରୁ ବଛାବଛା ସହକର୍ମୀମାନଙ୍କ ସହିତ ବିଶଦ ଆଲୋଚନା କରିଥିଲି । କିଏ କ'ଣ କହିବେ ସୂଚାଇ ଦେଇଥିଲି । ପ୍ରଥମେ ବାବୁ ପ୍ରମୋଦ ପଣ୍ଡା ପ୍ରତ୍ୟେକ ଦଶଟଙ୍କା ଦିଅନ୍ତୁ ବୋଲି କହିଥିଲେ । ମାତ୍ର ତାହା କାଟ ଖାଇଗଲା, ତପୂର ନାରଣବାବୁ ଗୋଟିଏ ସୁଚିନ୍ତିତ ଭାଷଣ ଦେଇ ସାତ ଟଙ୍କା ଲେଖାଏଁ ଦେବାପାଇଁ ପ୍ରତ୍ୟେକ ପିଲାଙ୍କୁ ଅନୁରୋଧ କଲେ । ତଥାପି ପିଲାମାନେ ରାଜିହେଲେ ନାହିଁ । ହରିହର ମିଶ୍ର ଜଣେ ଦକ୍ଷ ଶିକ୍ଷକ, ତାଙ୍କ କଥା ପିଲାମାନେ ଖୁବ୍ ମାନନ୍ତି । ସେ ଠିଆ ହୋଇ କହିଲେ, ''ମୋର ପ୍ରିୟ ଛାତ୍ରମାନେ ଶିକ୍ଷକମାନେ ସରକାରୀ ଚାକିରିଆ, ଆଜି ଏଠାରେ ଅଛନ୍ତି, ଆସନ୍ତା କାଲି କୁଆଡ଼େ ଯିବେ । ତଥାପି ଏହି ମହତ୍ କାର୍ଯ୍ୟରେ କିଛି କିଛି ଚାନ୍ଦା ଦେବାକୁ ସେମାନେ ରାଜି ଅଛନ୍ତି, ତୁମ୍ଭେମାନେ ଏ ସ୍ଥାନର ପିଲା, ଏଠାରେ ଆତଯାତ ହେବ । ତମ ସ୍କୁଲ ବୋଲି ଗର୍ବ କରିବ । କାହିଁକି ଚାନ୍ଦାଦେବ ନାହିଁ ।'' ପିଲାମାନେ ତଥାପି ତଳକୁ ମୁହଁ ପୋତି ବସିଲେ । ପିଲାମାନଙ୍କର ମନୋଭାବ ମୁଁ ଠଉରେଇ ନେଇଥିଲି । ଦଶମ ଶ୍ରେଣୀର ପ୍ରଥମ ପିଲା ବିନାୟକ ତ୍ରିପାଠୀକୁ ହାତ କରିନେଲି । ଶେଷରେ ମୁଁ ଠିଆହୋଇ ପିଲାମାନଙ୍କୁ ବୁଝାଇଲି । କେତେକ ଉପଦେଶ ଦେଲି । ସେମାନେ ମୋ ମୁହଁକୁ ଚାତକ ପରି ରହିଁ

ରହିଥାନ୍ତି । ପୁଣି କହିଲି, ''ତୁମମାନଙ୍କ ଭିତରେ ବହୁ ଗରିବ ପିଲା ଅଛନ୍ତି, ଏତେ ଟଙ୍କା ଜଣକେ ଦେବା ସହଜ ନୁହେଁ । ତେବେ ବିଦ୍ୟାଳୟର ମହତ କାର୍ଯ୍ୟଟିଏ ହେବ । ସମସ୍ତଙ୍କ ମନଲାଖି ମୁଁ କଥା କହିବି ତୁମ୍ଭେମାନେ ମୋତେ ସମର୍ଥନ କରିବ ନିଶ୍ଚୟ । ଦଶଟଙ୍କା ଛାଡ଼, ସାତ ଟଙ୍କା ଛାଡ଼, ପ୍ରତ୍ୟେକ ପିଲା ପାଞ୍ଚ ଟଙ୍କା ଲେଖାଏଁ ଦିଅନ୍ତୁ ।'' ଏତିକବେଳେ ବିନୟ ତାଳି ମାରିଦେଲା । ସବୁପିଲା ତାଳିମାରି ପ୍ରସ୍ତାବଟିକୁ ସମର୍ଥନ କଲେ । ସମସ୍ତଙ୍କ ମଧ୍ୟରେ ହର୍ଷଧ୍ୱନି ଶୁଣାଗଲା । ସଭାଶେଷ, ମୋ କାମ ବି ଶେଷ ।

## ୩ୟ ପର୍ଯ୍ୟାୟ ଆରମ୍ଭ :

ପରଦିନ ରସିଦ୍‌ବହି ଛପା ହେଲା । ଚାନ୍ଦା ଆଦାୟ କାମ ଚାଲିଲା । ପ୍ରାୟ ଦୁଇ ହଜାର ପାଞ୍ଚଶହ ଟଙ୍କା ଆଦାୟ ହେଲା । ବଜାରରୁ କିଛି ଆଦାୟ କଲି । ସ୍କୁଲର ଏକ ପାଶ୍‌ବୁକ୍ ବହିରୁ ହଜାର ଟଙ୍କା ଏବଂ ଶିକ୍ଷକମାନଙ୍କଠାରୁ କିଛି ଟଙ୍କା ଆଦାୟ କଲି । ଏହିପରି ଟଙ୍କାଟା ଆଦାୟ ହୋଇଗଲା । ବାନାମ୍ବରବାବୁ ଓ ବାୟାମାନଙ୍କୁ ଧରି ଟାଙ୍ଗି ଗଲି, ସେଠାରେ ଜମି ରେଜେଷ୍ଟ୍ରି ହେଲା । ରାମେଶ୍ୱରର ମୋହରିର ବାବୁ ଦୁଃଖିଶ୍ୟାମ ପଟ୍ଟନାୟକ ତାଙ୍କର ଲେଖେଇ ପଇସା ପଚାଶ ଟଙ୍କା ନ ନେଇ ସ୍କୁଲ ଇତିହାସରେ ଚିରଦିନ ପାଇଁ ରହିଗଲେ । ଅଞ୍ଚଳବାସୀ ମୋ କାମକୁ ଖୁବ୍ ତାରିଫ କଲେ । ଗୋଟିକ ପରେ ଗୋଟିଏ କାମ ସୁରୁଖୁରୁରେ ହୋଇଯାଉଥିବାରୁ ମୋ ଆନନ୍ଦର ସୀମା ନଥାଏ । ଭଗବାନ ଦେଲାବେଳେ ଛପରଫାଡ଼ି ଦିଅନ୍ତି, ଭଲକାମଗୁଡ଼ାକ ଛାଏଁଛାଏଁ ହୋଇଯାଏ । କିନ୍ତୁ ଜଣକର ପୂରା ଅଭାବ ଅନୁଭବ କରୁଥିଲି । ସବୁଥାଇ କିଛି ନଥିଲା ପରି ବୋଧ ହେଉଥିଲା । ସେହି ଜଣକ ସକାଶେ ଜୀବନଟା ବିଷମୟ ହୋଇଗଲା ।

## ଆଉ ଏକ ସଫଳତା–ଏବର୍ଷ ବିଦ୍ୟାଳୟରେ ମାଟ୍ରିକ ପରୀକ୍ଷା ଫଳ ଆଶାତୀତ :

ବିଦ୍ୟାଳୟ ଗ୍ରୀଷ୍ମଅବକାଶ ସକାଶେ ମେ ମାସ ତୃତୀୟ ସପ୍ତାହରେ ବନ୍ଦ ହେଲା । ଆଉ ଚାରି ପାଞ୍ଚମାସ ମାତ୍ର ମୋର ପରମାୟୁ । ମୁଁ ଦିନ ଗଣୁଥାଏ । ମନରେ ଉଦ୍‌ବେଗ ବଢ଼ି ବଢ଼ି ଚାଲିଥାଏ । ଜୁନମାସ ଶେଷବେଳକୁ ମାଟ୍ରିକ ପରୀକ୍ଷା ଫଳ ପ୍ରକାଶିତ ହେଲା । ଆମ ସ୍କୁଲର ଫଳ ଏବର୍ଷ ସବୁ ବର୍ଷଠାରୁ ବଳିଗଲା । ଏ ବର୍ଷ ବିଦ୍ୟାଳୟର ପାସ୍ ସଂଖ୍ୟା ଢେର୍ ଅଧିକ । ସେତେବେଳେ ଆଜିକାଲିପରି ପିଲାମାନେ ପ୍ରଥମ ଶ୍ରେଣୀରେ ଅଧିକ ସଂଖ୍ୟାରେ ପାସ୍ କରୁନଥିଲେ । ଆମ ସ୍କୁଲର ଅବସ୍ଥା ଯେ ଏପରି ଥିଲା ତାହା ନୁହେଁ ।

ସବୁ ସ୍କୁଲର ଅବସ୍ଥା ଊଣାଅଧିକେ ଏପରି । ଏବର୍ଷ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ପିଲା ସଂଖ୍ୟା ଅଧିକ ଏବଂ ତୃତୀୟ ଶ୍ରେଣୀରେ ପାସ୍ କରିଥିବା ଛାତ୍ରଙ୍କ ଅପେକ୍ଷା ଦ୍ୱିତୀୟ ଶ୍ରେଣୀରେ ଅଧିକ ପିଲା କୃତକାର୍ଯ୍ୟ ହୋଇଥିଲେ । ଶିକ୍ଷକବନ୍ଧୁମାନେ ଓ ଅଞ୍ଚଳବାସୀ ବିଦ୍ୟାଳୟ ଫଳାଫଳରେ ପରମ ସନ୍ତୋଷ ଲାଭ କଲେ । ପୂର୍ବାପେକ୍ଷା ମୋର ସୁନାମ ଆହୁରି ବଢ଼ିଗଲା । ଏ ବର୍ଷ ବା ଶେଷବର୍ଷର ମାଟ୍ରିକ ପରୀକ୍ଷାଫଳ ଏତେ ଭଲ ହୋଇଥିଲା ଯେ ମୁଁ ଆତ୍ମହରା ହୋଇପଡ଼ିଲି । ଏହାର ଅର୍ଥ ନୁହେଁ ଯେ ଅନ୍ୟବର୍ଷର ଫଳ ବିଶେଷ ଖରାପ ହୋଇଥିଲା । ଏଠାରୁ କିପରି ସୁରୁଖୁରୁରେ ବିଦାୟ ନେବି ଏ ଚିନ୍ତା ମନ ମଧ୍ୟରେ ଘାରିଲା । ନିରାକାରପୁର କଲେଜର ସୁଯୋଗ୍ୟ ଅଧ୍ୟକ୍ଷ ଦୃଢ଼ ଶୃଙ୍ଖଳାରକ୍ଷକ ଦକ୍ଷ ପ୍ରଶାସକ ଶ୍ରୀଯୁକ୍ତ ଶ୍ରୀନିବାସ ପଣ୍ଡା ଏଠାରୁ ବିଦାୟ ନେଲାବେଳେ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ତାଙ୍କୁ ବିଶେଷ ହଇରାଣ କରିଥିଲେ । ଏଠାରେ ଅଧିବାସୀମାନେ ଅପେକ୍ଷାକୃତ କମ୍ ମାର୍ଜିତ ଓ ଶିକ୍ଷାପ୍ରାପ୍ତ । ତେଣୁ ଏମାନଙ୍କୁ ବୁଝାଇବା ବି କାଠିକର ପାଠ । ଏହାର ଅର୍ଥ ନୁହେଁ ଯେ ଏଠାରେ ଭଲ ଲୋକ, ଗୁଣ ଚିହ୍ନିବା ଲୋକ ନଥିଲେ । ସଜ ମାଛରେ ପୋକ ପକାଇବା ଲୋକ ସବୁଠାରେ ଅଛନ୍ତି । ମୁଁ କିପରି ସୁରୁଖୁରୁରେ ବିଦାୟ ନେବି । ଅବଶ୍ୟ ମୋର ରହଣି ସମୟରେ ବିଦ୍ୟାଳୟର ବହୁବିଧ ଉନ୍ନତି ସାଧିତ ହୋଇଛି । ମୋର ନୈତିକ ବଳ ଖୁବ୍ ଉଚ୍ଚରେ ଥିଲା । ତଥାପି କେଉଁ ଦୁଷ୍ଟଜନ କି କାଣ୍ଡ ଘଟାଇବ କିଏ କହିବ ?

## ମୋ କାର୍ଯ୍ୟର ସମୀକ୍ଷା :

ପ୍ରଧାନଶିକ୍ଷକ ହେଲେ ଯେ ସବୁ ଶିକ୍ଷକଙ୍କ ଉପରେ କେବଳ କ୍ଷମତା ଜାହିର କରିବାକୁ ପଡ଼େ ତା' ନୁହେଁ, କେବଳ ଦୃଢ଼ଶୃଙ୍ଖଳା ରଖିବା ଉଚିତ । ଅଧ୍ୟାପନା, ଛାତ୍ରମାନଙ୍କର ଚରିତ୍ର ଗଠନ, ବିଦ୍ୟାଳୟର ସୁରକ୍ଷା ପ୍ରତି ସମ୍ୟକ୍ ଦୃଷ୍ଟି ଦେବା ଉଚିତ । କିନ୍ତୁ ବହୁ ସମୟରେ ସେ ନିଃସଙ୍ଗ ଜୀବନଯାପନ କରନ୍ତି । ପଚିଶ ବର୍ଷକାଳ ସହକାରୀ ଶିକ୍ଷକ ଭାବରେ କାଳ କାଟିଥିବାବେଳେ ବହୁ ଶିକ୍ଷକ ବନ୍ଧୁ ପାଇଥିଲେ । ସାଙ୍ଗମେଳରେ ସମାଜ ପାଇଁ ବା ଶିକ୍ଷାନୁଷ୍ଠାନ ପାଇଁ ବହୁ କାର୍ଯ୍ୟ ସାଧନ କରିଥିଲି । ଛାତ୍ରମାନେ ନିର୍ଭୟରେ ମୋ ସାଙ୍ଗରେ ମିଶୁଥିଲେ । ସେମାନଙ୍କର ମୋ ପ୍ରତି ଭୟଭ୍ରାନ୍ତି କିଛି ନଥିଲା, କେବଳ ଭକ୍ତିଭାବ ଥିଲା । ଛାତ୍ରମାନଙ୍କର ପ୍ରତ୍ୟେକ ଅଭାବ ଅସୁବିଧା ଦୂର କରିପାରୁଥିଲି । ଏବେ ଛାତ୍ରଛାତ୍ରୀମାନେ ମୋ ପାଖକୁ ଆସିବାକୁ ଭୟ କରୁଛନ୍ତି । ଶିକ୍ଷକମାନେ ସଙ୍କୋଚବୋଧ କରୁଛନ୍ତି । ଶିକ୍ଷକମାନେ ଏବଂ ଛାତ୍ରମାନେ ମୋ ସହିତ ଅଳ୍ପ ମିଶୁଛନ୍ତି । ଏ କ୍ଷୁଦ୍ର ସହରରେ ଜଣେ ଦୁଇଜଣଙ୍କ ସହିତ ଭାବର ଆଦାନପ୍ରଦାନ

କରୁଥିଲି । ସଦା ମାପିଚୁପି ଚଳୁଥିଲି । ମୋ ଉପରେ ପାଞ୍ଚଶହ ପିଲାଙ୍କର ହଜାର ଆଖି ଓ କୋଡ଼ିଏ ଜଣ ଶିକ୍ଷକଙ୍କର ଚାଳିଶଟି ଆଖି ଅନବରତ ଘୂରୁଥିଲା । ତେଣୁ ମୁଁ ନିଜକୁ ଆଦର୍ଶ ମଣିଷ ରୂପେ ପ୍ରତିଷ୍ଠା କରିବା ପାଇଁ ସର୍ବଦା ଚେଷ୍ଟା କରୁଥିଲି । ଜନସମାଜଙ୍କ ଚକ୍ଷୁରେ ମୋର ଭାବମୂର୍ତ୍ତି ବଢ଼ାଇବା ମୋ ଲକ୍ଷ୍ୟ ଥିଲା । ନୀତିମୟ, ଶୃଙ୍ଖଳାମୟ ଜୀବନଯାପନ ମୋର ମଟୋ ଥିଲା ।

## ମୋର ସଚ୍ଚୋଟତା ପରୀକ୍ଷା :

ନିଜକୁ ସାଧୁ ସଚ୍ଚୋଟ କହି ଗର୍ବ କରିବା ମୂର୍ଖତାର ପରିଚାୟକ । ହାତରେ ତ ଖଡ଼ା ସିଝୁ ନାହିଁ । ମୁଁ ପୂରାପୂରି ଅପଦାର୍ଥ ବୋଲି ମନେକରେ । ଥରେ ଜଣେ ବାଉରି ପିଲା ମୋ ନିକଟକୁ ରାତ୍ରି ସମୟରେ ଆସି କହିଲା, ''ସାର୍, ଆପଣଙ୍କ ସ୍କୁଲରେ ପିଅନ ଚାକିରି ଖାଲି ଅଛି । ଆପଣ ମୋତେ ସେ ପଦରେ ନିଯୁକ୍ତି କରିଦିଅନ୍ତୁ ।'' ଅବଶ୍ୟ ସେତେବେଳକୁ ମୁଁ ଦ୍ୱିତୀୟ ଶ୍ରେଣୀ ପାହିଆ ପାଇସାରିଥିଲି । ଏତିକିକହି ସେ ମୋତେ ପାଞ୍ଚଶହ ଟଙ୍କା ଯାଚିଲା । କୌଣସି ଦୁର୍ବୃତ୍ତ ତାକୁ ମୋ ପାଖକୁ ପଠାଇଛି ବୋଲି ଧରିନେଲି । କାଣ୍ଡି (ବାଉରିପିଲା) ମୋ ଛାତ୍ର ଥିଲା । ତାକୁ ଏପରିଭାବରେ ଏ କାର୍ଯ୍ୟରୁ ନିବୃତ୍ତ କଲି ଯେ ସେ କେବଳ ତାର ବନ୍ଧୁ ଓ ସାହିପଡ଼ିଶାରେ ମୋର ସୁନାମ ଗାଇଲା । ସେତେବେଳକୁ ସବୁକ୍ଷେତ୍ରରେ ଦୁର୍ନୀତି ପଶି ପଶି ଆସୁଥିଲା ।

ସେତେବେଳକୁ ମୁଁ ହାତେମାପି ଚାଖଣ୍ଡେ ଚାଲୁଥିଲି । ନିରାକାରପୁରରେ ଗୋଟିଏ ଯୁଗ ରହିଗଲି । କାହା ଦ୍ୱାରେ ଚାହା କପେ ପାନ କରିନାହିଁ । ମନର ଦୁଃଖ ଲାଘବ କରିବା ପାଇଁ ପଦେ ଦିପଦ ମିଠା କଥା କହିବା ପାଇଁ ଘରେ କେହି ନଥିଲେ । ଜୀବନଟା ଶୁଷ୍କ ଓ ନୀରସ ହୋଇପଡ଼ିଥିଲା । ବେଳେବେଳେ ଜଣେଅଧେ ସହକାରୀ ଶିକ୍ଷକଙ୍କୁ ସାଙ୍ଗରେ ଧରି ରେଳଷ୍ଟେସନ ସିମେଣ୍ଟ ଚୌକିରେ ଆଳାପ ଆଲୋଚନା କରୁଥିଲି । ତେବେ ମୁଖ୍ୟପଦରେ ରହିଲେ ଜୀବନଟା ଦୁର୍ବିସହ ହୋଇପଡୁଥିଲା । ଏଠାରେ ଆଉ ଗୋଟିଏ ଦୁଇଟି କଥା ବର୍ଣ୍ଣନା କରିବାକୁ ଯାଉଛି । ନିରାକାରପୁରକୁ ଆସୁଆସୁ ବାର୍ଷିକ ପରୀକ୍ଷା (ଶ୍ରେଣୀ ପ୍ରମୋଶନ) ହେଲା । ପିଲାମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ମନର ପିଲା ଥିଲେ । ମୁଁ ଆସୁଆସୁ ପ୍ରଭୁ ମୋତେ ପରୀକ୍ଷା କରିବାରେ ଲାଗିଲେ । ଜଣେ ମୁସଲମାନ ପିଲା ଓ ଜଣେ ହିନ୍ଦୁପିଲା ଯେଉଁମାନେ ପାଠ ଭଲ ପଢୁ ନଥିଲେ, ପରୀକ୍ଷାଫଳ ପ୍ରକାଶ ପାଇବା ଦିନ ମୋତେ ଏକପ୍ରକାର କାବୁ କରିଦେବା ପାଇଁ ମୋ ବାଡ଼ିପାଖେ ଏକ ବିରାଟ ପାଚିଲା ପଣସ ରଖି ମୋ ଧର୍ମପତ୍ନୀଙ୍କୁ

ପ୍ରଭାବିତ କରିବା ପାଇଁ ଚେଷ୍ଟା କଲେ । ସାଧାରଣତଃ ସ୍ତ୍ରୀଲୋକମାନେ ଅଧିକ ଲୋଭାସକ୍ତ । ମୋ କାନକୁ ଯେତେବେଳେ କଥାଟା ଗଲା, ମୁଁ ରାଗରେ ହଠାତ୍ ଚଟିଗଲି । ଉଠାଅ, ଉଠାଅ କହି ସେମାନଙ୍କୁ ଦୂର୍‌ଦୂର୍ ମାର୍‌ମାର୍ କଲି । ଗୋଟିଏ ବିପଦରୁ ରକ୍ଷା ପାଇଲି ।

କେତେ ଛୋଟ ଛୋଟ କଥାରେ ମଧ ଲୋକେ ମୋତେ ପରୀକ୍ଷା କରିବାକୁ ଚେଷ୍ଟା କରିଛନ୍ତି । ଥରେ କାଶୀପୁରର ଜଣେ ଅଭିଭାବକ ନିଜ ପୁତ୍ରର ବୃତ୍ତି ପଇସା ପାଇବା ପାଇଁ ମୋ ପାଖକୁ କିଛି ବାଡ଼ିବଗିଚାର ଫଳ, ପରିବା ଧରି ଆସି ମୁଁ କ୍ୱାଟରରେ ଥିବାବେଳେ ପହଞ୍ଚିଲେ । ବୃତ୍ତି ତ ସରକାର ପ୍ରଦାନ କରିଛନ୍ତି, ମୁଁ କିଏ ? ଏ କ'ଣ ଆଣିଛ ? 'ଆଜ୍ଞା, ଏ ଗଣ୍ଡାକ ବାଡ଼ିର ଜିନିଷ ।' ବାବୁ ଏପରି କାହିଁକି ଦେଉଛ, ଏ ଜିନିଷ ଏଠାରୁ ଉଠାଅ, ତମର ବୃତ୍ତି ଧନ ଆସିଯାଇଛି । ତୁମେ ପାଇବ, ଏସବୁ ମୋର ଆବଶ୍ୟକ ନାହିଁ । ଶୀଘ୍ର ଏଠାରୁ ଉଠାଅ । ଏହିପରି ଦୁଇ ତିନିଥର ଘଟିଛି । ତା'ପରେ ଆଉ ଘଟିଲା ନାହିଁ । ମାତ୍ର ମୋର ନୀତିରୁ ମୁଁ ଖସି ଯାଇନାହିଁ । ତେବେ ଲୋକମାନଙ୍କ ସଙ୍ଗେ ମିଶିବା ପାଇଁ ବାହାଘର, ବ୍ରତଘର ଭୋଜିଭାତ ଖାଇବାକୁ ବହୁବାର ଯାତ୍ରା କରିଛି । ସମାଜ ସହିତ ଖାପଖୁଆଇ ଚଳିବାକୁ ଚେଷ୍ଟା କରିଛି । 'ସାମାନ୍ୟ କଥାରୁ ବଡ଼ କଥାଟାଏ ବାହାରି ପଡ଼ିବ ।'

## ୧୯୫୩ ମସିହାର ଏକ ଘଟଣା :

୧୯୫୦ ମସିହାରେ ମୁଁ ବିଧିବଦ୍ଧଭାବେ ଜଣେ ଟି.ଜି. ଶିକ୍ଷକର ସମସ୍ତ ଯୋଗ୍ୟତା ହାସଲ କଲି ଏବଂ ୧୯୫୩ ମସିହାରେ ବାର୍ଷିକ ମାଟ୍ରିକ୍ ପରୀକ୍ଷାରେ ପିଲାମାନଙ୍କ ପରୀକ୍ଷକ ରୂପେ ନିର୍ବାଚିତ ହେଲି । ସେତେବେଳକୁ ସେକେଣ୍ଡାରୀ ବୋର୍ଡ ଗଢ଼ା ହୋଇନଥିଲା । ୧୯୪୩ ମସିହା ନଭେମ୍ବର ମାସରେ ଗଢ଼ିଉଠିଥିବା ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପିଲାମାନେ ମାଟ୍ରିକ୍ ପରୀକ୍ଷା ଦେଉଥିଲେ । ମୁଁ ଜଣେ ପରୀକ୍ଷକ ଭାବେ ନିଯୁକ୍ତି ପାଇଥିବାରୁ ମନରେ ଅପାର ଆନନ୍ଦ ଜାତ ହୋଇଥିଲା । ପୂର୍ବରୁ କହିଛି ମୁଁ ନୀତିନିଷ୍ଠ, କର୍ତ୍ତବ୍ୟପରାୟଣ ଶିକ୍ଷକ ଥିଲି । ସେତେବେଳେ ପରୀକ୍ଷଖାତାଗୁଡ଼ିକ ଡାକରେ ପରୀକ୍ଷକଙ୍କ ନିକଟକୁ ପଠାଯାଉଥିଲା । କିନ୍ତୁ ନିରୀକ୍ଷକମାନେ ବିଶ୍ୱବିଦ୍ୟାଳୟ ଅଫିସ୍‌କୁ ଯାଇ ମୁଖ୍ୟ ନିରୀକ୍ଷକଙ୍କ ପାଖେ ପହଞ୍ଚି ଖାତା ଦେଖିବାର ସୂତ୍ର ଜାଣିବାପାଇଁ ଆଲୋଚନାରେ ଭାଗ ନେଉଥିଲେ । କଟକ ବର୍ଦ୍ଧମାନ କୋଠିରେ ବିଶ୍ୱବିଦ୍ୟାଳୟ ଅଫିସ୍ କାର୍ଯ୍ୟ ଚାଲୁଥିଲା । ମୋର ପରିଷ୍କାର ସ୍ମରଣ ଅଛି ଗଞ୍ଜାମ ଜିଲ୍ଲାର ଜଣେ ପ୍ରଖ୍ୟାତ ପ୍ରଧାନ ଶିକ୍ଷକ (ନାଁ ମନେନାହିଁ) ଇଂରାଜୀ ଦ୍ୱିତୀୟ ପତ୍ରରେ ମୁଖ୍ୟ ନିରୀକ୍ଷକ ଥିଲେ । ମୋ' ପରି ଆଉ ପ୍ରାୟ ପନ୍ଦର କି ଷୋଳଜଣ

ସହକାରୀ ନିରୀକ୍ଷକ ଆସିଥିଲେ । ସେତେବେଳେ ସମଗ୍ର ଓଡ଼ିଶା ପ୍ରଦେଶରେ ପ୍ରାୟ ତିନି ହଜାର ପାଞ୍ଚଶହ ଛାତ୍ର ଓ ଛାତ୍ରୀ ପରୀକ୍ଷାରେ ଅବତୀର୍ଣ୍ଣ ହୋଇଥିଲେ । ଜଣେ ପରୀକ୍ଷକଙ୍କ ଭାଗରେ ପ୍ରାୟ ଦୁଇଶହ ଖାତା ପଡୁଥିଲା । ଅବଶ୍ୟ ପ୍ରତିବର୍ଷ ମାଟ୍ରିକ ପରୀକ୍ଷାର୍ଥୀଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । ମୁଁ ଛଅଥର ନିରୀକ୍ଷକ ରୂପେ ଦକ୍ଷ ହୋଇଥିଲି । ପରୀକ୍ଷାଖାତା ଦେଖିବାରେ ଗଭୀର ନିରପେକ୍ଷତା ଅବଲମ୍ବନ କରିବାକୁ ପଡୁଥିଲା । ଏପରିକି ସୁରାକ ପାଇ କୌଣସି ବନ୍ଧୁଜନ ତାଙ୍କ ପ୍ରିୟଲୋକ ନିଜ ଆତ୍ମୀୟସ୍ୱଜନଙ୍କ ଖାତାରେ କିଛି ଅଧିକ ନମ୍ବର ଦେବାପାଇଁ ଅନୁରୋଧ କଲେ ତାହାକୁ ପ୍ରତ୍ୟାଖ୍ୟାନ କରିବାକୁ ପଡୁଥିଲା ।

## ଏକ ଅପ୍ରୀତିକର କଥା :

ଗୋଟିଏ କୌତୂହଳ କଥା ଏଠାରେ ବର୍ଣ୍ଣନା କଲେ ଅପ୍ରାସଙ୍ଗିକ ହେବନାହିଁ । ଥରେ ମୋର ବାଲ୍ୟଗୁରୁ ପରମ ହିତାକାଂକ୍ଷୀ ଜଣେ ପରୀକ୍ଷାର୍ଥୀକୁ ପାସ୍ କରେଇ ଦେବାପାଇଁ ମୋତେ ଅନୁରୋଧ କଲେ । ମୁଁ ତାଙ୍କର ଆଶ୍ରିତ ଛାତ୍ର ଥିଲି । ତେବେ କ'ଣ ନୀତି ନିୟମକୁ ଜଳାଞ୍ଜଳି ଦେବି ? ଏପରି ଅନ୍ୟାୟ କାହିଁକି କରିବି ? ମୁଁ ହଲାପଟାରେ ପଡ଼ିଲି । ତଥାପି ତାଙ୍କର ମନ ରକ୍ଷାକରି କହିଲି,'ସାର୍, ଯଦି ସେ ପିଲାର ଚବିଶ କି ପଚିଶ ନମ୍ବର ଥିବ ତେବେ ମୁଁ ତାକୁ ପାସ୍ କରେଇ ଦେବି କିନ୍ତୁ କମ୍ ନମ୍ବର ଥିଲେ ପାରିବି ନାହିଁ ।' ଏତେକଥା ଶୁଣି ମଧ୍ୟ ସେ ତା'ର ପରୀକ୍ଷାଖାତା ଦେଖିବା ପାଇଁ ଜିଦ୍ ଧରିଲେ । ଏଠାରେ ମୁଁ ତାଙ୍କର ଅପ୍ରିୟ ହେବାକୁ ବାଧ ହୋଇଥିଲି । ଉତ୍ତରଦେଲି, 'ସାର୍, ମୁଁ ଖାତା ଦେଖେଇପାରିବି ନାହିଁ ।'ସେ ମୋ ପାଖେ ଆଉ ମୁହୂର୍ତ୍ତେ ମଧ ରହିଲେ ନାହିଁ । ହଠାତ୍ ସେ ସ୍ଥାନ ପରିତ୍ୟାଗ କଲେ ।

## ବିଦ୍ୟାଳୟର ନୂତନ ଗୃହ ଉଦ୍‌ଘାଟନ ଉତ୍ସବ ପାଇଁ ଆୟୋଜନ :

ସେ ବର୍ଷ ଅଗଷ୍ଟ ମାସ ସୁଦ୍ଧା ସ୍କୁଲ ସୌଧ କାର୍ଯ୍ୟ ସଂପୂର୍ଣ୍ଣ ହେଲା । ନୂତନ ଗୃହ ଉଦ୍‌ଘାଟନ କରିବା ପାଇଁ ପ୍ରସ୍ତୁତ ହେଲି । ଏଣେତେଣେ ଚିଠିପତ୍ର ଆଦାନପ୍ରଦାନ କରାଗଲା । ସେତେବେଳେ ରାଜ୍ୟରୁ ଜନତା ସରକାର ଯାଇ ବର୍ଷେ ଦେଢ଼ ବର୍ଷ ହେଲା କଂଗ୍ରେସ ସରକାର ଦେଶର ଲଗାମ ଧରିଲେଣି । କେନ୍ଦ୍ରରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଓ ରାଜ୍ୟରେ ଶ୍ରୀ ଜାନକୀବଲ୍ଲଭ ପଟନାୟକ ମନ୍ତ୍ରିମଣ୍ଡଳ ଗଢ଼ିଛନ୍ତି । ଦେଶବାସୀଙ୍କ ବହୁ ଉପକାର ସାଧନ କରିବା ପାଇଁ ଦମ୍ଭୋକ୍ତି ପ୍ରକାଶ କଲେଣି ।୧୯୭୩ରୁ ୧୯୭୬ ମସିହା ପର୍ଯ୍ୟନ୍ତ ରାଜ୍ୟରେ କଂଗ୍ରେସ ଶାସନ ସମୟରେ ବିଦ୍ୟାଳୟର ଗୃହ ନିର୍ମାଣ ପାଇଁ

ଭୁବନେଶ୍ୱର ଦୌଡ଼ି ଦୌଡ଼ି ବିଧାୟକ ତଥା ମନ୍ତ୍ରୀଙ୍କୁ ସାକ୍ଷାତ୍ କରିକରି ପୁରସ୍କାର ବିତରଣୀ ସଭାକୁ ଡାକି ଯେଉଁ କାମ ହୋଇପାରୁ ନଥିଲା ଜନତା ସରକାର ତିରିଶ ମାସ ମଧ୍ୟରେ ତା'ଠାରୁ ଢେର୍ ଅଧିକ କାମ କରିଥିଲେ । କଂଗ୍ରେସର କିନ୍ତୁ ନାଁ ହେଲା ।

ଖୋର୍ଦ୍ଧାର ନିର୍ବାଚନମଣ୍ଡଳୀରୁ ତତ୍କାଳୀନ ଲୋକପ୍ରତିନିଧି କୁରାଢ଼ମଲ୍ଲ ନିବାସୀ ବାବୁ ସୁଦର୍ଶନ ମହାନ୍ତିଙ୍କ ଗଭୀର ଆନ୍ତରିକତା ଓ ଦୃଢ଼ ମନୋବଳ ହେତୁ ଦୁଇ ଲକ୍ଷ ଟଙ୍କା ବ୍ୟୟରେ ନିରାକାରପୁରର ମୁଖ୍ୟ ହାଇସ୍କୁଲ ଗୃହ ନିର୍ମାଣ କରାଯାଇପାରିଲା । ଜନତା ସରକାରର ଅମଳରେ ଗୃହକାର୍ଯ୍ୟ ଆରମ୍ଭ ହୋଇ କଂଗ୍ରେସ ସରକାର ଅମଳରେ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହେଲା । ସେତେବେଳକୁ ଛାତ୍ରଛାତ୍ରୀ ସଂଖ୍ୟା ପାଞ୍ଚଶହ ଟପିଗଲାଣି । ଦୀର୍ଘଦିନର ସାପ ବେଙ୍ଗ କଙ୍କଡ଼ାବିଛା ଅଧ୍ୟୁଷିତ ଅଧାକାନ୍ଥିଆ ମାଟି ଗୃହର ବିଲୋପ ସାଧନ ହେଲା । ସ୍ଥାନାଭାବ ଦୂରୀଭୂତ ହେଲା । ବହୁ ଆୟାସ ସହକାରେ ସୌଧଟି ଯେପରି ନିର୍ମାଣ ହୋଇଛି ମୁଖ୍ୟମନ୍ତ୍ରୀ ଏହାକୁ ଉଦ୍‌ଘାଟନ କଲେ ଉତ୍ତମ ହେବ ବୋଲି ସମସ୍ତଙ୍କର ମତ ପ୍ରକାଶ ପାଇଲା । ପୁନଶ୍ଚ ମୁଖ୍ୟମନ୍ତ୍ରୀ ଏ ଅଞ୍ଚଳର ଅଧିବାସୀ । ସେ ଆଗମନ କଲେ ବିଦ୍ୟାଳୟର ମାନ ବଢ଼ିବା ସଙ୍ଗେ ତାଙ୍କର ମଧ ମାନ ବୃଦ୍ଧିପାଇବ ଏବଂ ଲୋକମାନଙ୍କର ହୃଦୟ କନ୍ଦରରେ ସେ ଚିରକାଳ ଜାଗ୍ରତ ହୋଇ ରହିବେ । ଏହି ଆଶା ପୋଷଣ କରି ଦିନ ଧାର୍ଯ୍ୟ କରିବା ପାଇଁ ଏ ଅଞ୍ଚଳରେ ପ୍ରଭାବଶାଳୀ ହୋଇ ଉଠିଥିବା ବାବୁ କୃଷ୍ଣ ପଟ୍ଟନାୟକଙ୍କୁ ସାଙ୍ଗରେ ନନେଇ ସହକାରୀ ଶିକ୍ଷକ ପ୍ରମୋଦବାବୁଙ୍କୁ ସାଙ୍ଗରେ ନେଇ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବା ପାଇଁ ବାହାରିଲି । ଅବଶ୍ୟ ଅଧିକ ପଇସା ଖର୍ଚ୍ଚ ହୋଇଯିବ ଭାବି କୃଷ୍ଣବାବୁଙ୍କୁ ସାଙ୍ଗରେ ନେଇପାରିଲୁ ନାହିଁ ।

## ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବାପାଇଁ ଅପେକ୍ଷା :

ଆମେ ଦୁଇଜଣ ରାତ୍ରିକାଳରେ ମୁଖ୍ୟମନ୍ତ୍ରୀଙ୍କ ଚାମ୍ବରରେ ପ୍ରବେଶ କଲୁ, ସେ ଆଶାୟୀ ବ୍ୟକ୍ତିମାନଙ୍କୁ ସାକ୍ଷାତ କରିବା ପାଇଁ ସମ୍ବାଦ ପଠାଇଲେ । ଆମେ ଦୁହେଁ ଆଶ୍ୱସ୍ତ ହେଲୁ । ମାତ୍ର ରାତ୍ରି ଦଶଟା ହେଲା । ଏଗାରଟା ହେଲା । ରାତ୍ରି ଗୋଟାଏରେ ସମ୍ବାଦ ଆସିଲା ତାଙ୍କର ଦାନ୍ତ ପୀଡ଼ା ହୋଇଛି, ସେ ଆସିପାରିବେ ନାହିଁ । ଆମର ମନ ଫିକା ପଡ଼ିଗଲା । ଖୋର୍ଦ୍ଧା ହାଇସ୍କୁଲରୁ ଜାନକୀବାବୁ ମୋତେ ଜାଣିଥିଲେ । ଚିଟ୍‌ରେ ମୋ ନାମ ଲେଖି ପଠାଇଥିଲେ ବୋଧହୁଏ ଭଲ ହୋଇଥାନ୍ତା । ମାତ୍ର ମୁଁ ତାହା ନ କରିବାଟା ଏକ ମସ୍ତବଡ଼ ଭୁଲ୍ । ଯାହାହେଉ ସେଠାରୁ ଫେରି ଭୁବନେଶ୍ୱର ରେଳଷ୍ଟେସନ ଉପରମହଲାରେ

ରାତ୍ରି କଟାଇଲୁ । ପ୍ରତ୍ୟୁଷରୁ ନିତ୍ୟକର୍ମ ସମାପନ କରି ଫରେଷ୍ଟ ପାର୍କକୁ ଦୌଡ଼ିଲୁ ତତ୍କାଳୀନ ବିଧାୟକ ପ୍ରସନ୍ନ କୁମାର ପାଟଶାଣୀଙ୍କ ନିକଟକୁ । ସେ ମହାଶୟ ଶିକ୍ଷାମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ସଙ୍ଗରେ ନେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଲେ । ମାତ୍ର ମୁଖ୍ୟମନ୍ତ୍ରୀଙ୍କୁ ଆଣି ପାରୁନଥିବାରୁ ମୋ ମନରେ ଗଭୀର ଦୁଃଖ ଜାତ ହେଲା ।

## କୃଷ୍ଣବାବୁ ଛିଗୁଲେଇ କହିଲେ ଏବଂ ତା'ର ଯଥାର୍ଥ ଉତ୍ତର ପାଇଲେ :

ସେଦିନ ଭୁବନେଶ୍ୱରରୁ ଖୋର୍ଦ୍ଧା ଦେଇ ନିରାକାରପୁର ଯାତ୍ରା କଲୁ । ଖୋର୍ଦ୍ଧାରେ କୃଷ୍ଣବାବୁଙ୍କ ସହିତ ମୋର ହଠାତ୍ ସାକ୍ଷାତ୍ ହେଲା । ତାଙ୍କୁ ସମସ୍ତେ ସବୁ ସରକାରୀ କାର୍ଯ୍ୟରେ ଡାକନ୍ତି । ମାତ୍ର ପଇସାପତ୍ର ଦୃଷ୍ଟିରୁ ଏ କାମରେ ମୁଁ ତାଙ୍କୁ ନଡାକିଥିବାରୁ ସେ ମୋ ଉପରେ ବିଶେଷ ବିଷାଦିତ ହେଲେ । ସେ ମୋତେ ପଚାରିଦେଲେ, ''ହଁ, କ'ଣ ହେଲା ? ମୁଖ୍ୟମନ୍ତ୍ରୀ କେବେ ଆସୁଛନ୍ତି ।'' ମୁଁ ମନ ଦୁଃଖରେ କହିଲି ''ମୁଖ୍ୟମନ୍ତ୍ରୀ ଆସିବା କଥା ଦୂରେ ଥାଉ ସେ ତ ଆମମାନଙ୍କୁ ସାକ୍ଷାତ କଲେ ନାହିଁ । ତାଙ୍କର ଦାନ୍ତ ପାଡ଼ା ହେଉଛି ବୋଲି ସମ୍ବାଦ ଆସି ଆମ ପାଖରେ ପହଞ୍ଚିଲା । ମୁଁ ଆଉ କ'ଣ କରିବି ?''

''ହଇହେ ବାବୁ ଏ ତ ଆପଣଙ୍କ ରାଜ୍ୟ, ଆପଣ ରାଜା । ଆସିଥିଲେ କେତେ ଉତ୍ତମ ହୋଇଥାନ୍ତା । କେତେ ଉପକାର ହୋଇଥାନ୍ତା । ଆପଣଙ୍କ ସମ୍ମାନ ଆହୁରି ଉପରେ ରହିଥାନ୍ତା ।'' କୃଷ୍ଣବାବୁ ମୋ ଉପରେ କ୍ଷୁବ୍ଧ ଥିଲେ । ହଠାତ୍ କହିଲେ, ''ସେ କ'ଣ ତମ ବାରିପଟେ ଘର କରି ଅଛନ୍ତି କି ତମ କଥାରେ ଦୌଡ଼ି ଆସିବେ ?'' ମୁଁ ସ୍ୱଭାବତଃ ସ୍ୱାଭିମାନୀ । ତାଙ୍କର ବଡ଼ଲୋକିଆ କଥାରେ ମୁଁ ବି ହଠାତ୍ କହି ପକାଇଲି, ''ମୁଁ କ'ଣ ତାଙ୍କ ବାଡ଼ିପଟେ ଘର କରିଛି କି ? ନଆସିଲେ ନାହିଁ । ମୁଁ କ'ଣ ମୋ ପୁଅକୁ ଚାକିରି ଦେବାକୁ ଯାଇଥିଲି ନା ମୋର ଚାକିରିକାଳ ବଢ଼ାଇବାକୁ ଯାଇଥିଲି ? ଏ ତୁମ ଇଲାକା, ତୁମର ସୁନାମ ବଢ଼ିଥାନ୍ତା । ନ ଆସିଲେ କାହାର କ'ଣ ହୋଇଯିବ ହେ ?'' ମୁଁ ତାଙ୍କ କଟାକ୍ଷକୁ ସମ୍ଭାଳି ପାରିଲିନାହିଁ । ତେଣୁ ଏପରି ଉତ୍ତର ଦେଲି । କୃଷ୍ଣବାବୁଙ୍କ ରାଗ ତ ପଞ୍ଚମରେ ଦେଖି ମୁଁ ସେ ସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ଚାଲିଲି । ବାଟରେ ଗଲାବେଳେ ଭାବିଲି, 'ଏ ତ ଯେପରି ଲୋକ, ପୁଣି ସାନଭାଇ ମୁଖ୍ୟମନ୍ତ୍ରୀ, କ'ଣ ଘଟୁଛି କେଜାଣି ?''

## ଶିକ୍ଷାମନ୍ତ୍ରୀଙ୍କ ଗସ୍ତ ସମୟ :

ଦୁଇ ଚାରିଦିନ ପରେ ଶିକ୍ଷାମନ୍ତ୍ରୀଙ୍କ ଗସ୍ତ କାର୍ଯ୍ୟକ୍ରମ ବିଦ୍ୟାଳୟରେ ଆସି ପହଞ୍ଚିଲା । ଆଗାମୀ ଅକ୍ଟୋବର ତିନି ତାରିଖ ଦିନ ଶିକ୍ଷାମନ୍ତ୍ରୀ ଆସିବେ । ପ୍ରସନ୍ନ

ପାଟଶାଣୀଙ୍କ ପଢ଼ାସାଥୀ ମୋର ସହକାରୀ ଶିକ୍ଷକ ପଲେଇବାବୁଙ୍କୁ ସେମାନଙ୍କୁ ଭୁବନେଶ୍ୱରରୁ ଆଣିବାକୁ ପଠାଇଲି । ମନ୍ତ୍ରୀ ବିଧାୟକ ଓ ସେମାନଙ୍କର ପାରି ପାରିଧିଆ ଗଣ ତିନି ତାରିଖ ପୂର୍ବାହ୍ନ ଆଠଟା ବେଳେ ରାମେଶ୍ୱର ଛକରୁ ଶାଖା ରାଜପଥରେ ନିରାକାରପୁର ଅଭିମୁଖେ ଯାତ୍ରା କଲେ । ସେତିକିବେଳେ କୃଷ୍ଣବାବୁ ନିରାକାରପୁରର କେତେକଙ୍କୁ ସାଙ୍ଗରେ ଧରି ସେମାନଙ୍କ ବାଟ ଓଗାଳିଲେ । ସେମାନେ ମନ୍ତ୍ରୀଙ୍କୁ କହିଲେ, "ସେ ହେଡମାଷ୍ଟରଟା ବଦମାସିଆ । ସେ ମୁଖ୍ୟମନ୍ତ୍ରୀଙ୍କ ଦାନ୍ତ ଭାଙ୍ଗିଦେବ ବୋଲି କହିଛି, ସେ ସ୍ଥାନକୁ ମୋଟେ ଯାଅ ନାହିଁ, ଏଠାରୁ ଫେରିଯାଅ ।"

ଆଶ୍ଚର୍ଯ୍ୟ କଥା, ଏତେବଡ଼ ଆୟୋଜନ କ'ଣ ଭଣ୍ଡୁର ହୋଇଯିବ ? ପଲେଇ ବାବୁ ବିଧାୟକଙ୍କୁ ବହୁତ ବୁଝାଇଲେ । କିନ୍ତୁ କୃଷ୍ଣବାବୁ ମୁଖ୍ୟମନ୍ତ୍ରୀଙ୍କ ଭାଇ । ତାଙ୍କ କଥା ସେ ନମାନିବେ କେମିତି ? କିନ୍ତୁ ପଲେଇବାବୁ କହିଲେ, "ଚାଲନ୍ତୁ ଦେଖିବେ ହେଡମାଷ୍ଟର କିପରି ଲୋକ । ଏହାଙ୍କର କିଛି ବ୍ୟକ୍ତିଗତ କୁସା ଥିବ ।" ପ୍ରସନ୍ନବାବୁ ରାଜି ହେଲେ ଏବଂ ଶିକ୍ଷାମନ୍ତ୍ରୀଙ୍କୁ ରାଜି କରେଇଲେ । ସମସ୍ତ ବାଧାବିଘ୍ନ ସତ୍ତ୍ୱେ ସେମାନେ ଠିକ୍ ନଅଟା ସମୟରେ ବିଦ୍ୟାଳୟ ପରିସରରେ ପ୍ରବେଶ କଲେ । ପ୍ରଭୁଙ୍କର ଯାହା ବରାଦ ଥିବ ସାଧାରଣ ମଣିଷ କିପରି ଜାଣିବ ? ଭଗବାନଙ୍କ ରାଜ୍ୟରେ କେତେବେଳେ କ'ଣ ଘଟିବ ପୂର୍ବରୁ ସ୍ଥିର ହୋଇ ରହିଛି । ଏହା ମୋର ଧାରଣା । ଛାର ମଣିଷ କ'ଣ ବା ଠଉରେଇବ ? ପରମେଶ୍ୱରଙ୍କ କଥା ଯଦି ନଗଣ୍ୟ ମନୁଷ୍ୟ ଜାଣିପାରୁଥାନ୍ତା ତେବେ ସେ କ'ଣ ସମ୍ଭଳା ପଡ଼ନ୍ତା ? ଧରାକୁ ସରା ମନେ କରୁଥାଆନ୍ତା ।

## ମହାସମାରୋହରେ ଉତ୍ସବ ପାଳନ :

ମନ୍ତ୍ରୀ ମହୋଦୟ ତିନିଟା ବେଳେ ବମ୍ୱେ ଯାତ୍ରା କରିବେ । ପୂର୍ବାହ୍ନ ସଭାକାର୍ଯ୍ୟ ପାଇଁ ଉପଯୁକ୍ତ ସମୟ ନହେଲେ ମଧ୍ୟ ସହକର୍ମୀମାନଙ୍କର ତତ୍ପରତା ହେତୁ ଆଖପାଖ ଅଞ୍ଚଳରୁ ପ୍ରାୟ ପାଞ୍ଚହଜାର ଲୋକ ସଭାରେ ରୁଣ୍ଡ ହୋଇଥିଲେ । ଅଧଘଣ୍ଟା ପରିଚର୍ଯ୍ୟାପରେ ସଭାକାର୍ଯ୍ୟ ଉତ୍ତର ପାର୍ଶ୍ୱସ୍ଥ ପ୍ରେକ୍ଷାଳୟରେ ଆରମ୍ଭ ହେଲା । ଆରମ୍ଭ ପୂର୍ବରୁ ମନ୍ତ୍ରୀ ମହୋଦୟ ବହୁପ୍ରତୀକ୍ଷିତ ନୂତନ ଅଟ୍ଟାଳିକା ଉଦ୍‌ଘାଟନ କଲେ । ତାଙ୍କ ସଙ୍ଗେ ସଙ୍ଗେ ମୁଁ ଛାଇପରି ରହୁଥିଲି । ବହୁପଦସ୍ଥ ଲୋକେ ସଭାରେ ଯୋଗ ଦେଇଥିଲେ । ନିରାକାରପୁର ଉଚ୍ଚ ବିଦ୍ୟାଳୟ ଜୀବନରେ ଏହା ଏକ ଗରିମାମୟ ଉତ୍ସବ । ମହାଆଡ଼ମ୍ବର ସହକାରେ ସଭାକାର୍ଯ୍ୟ ପରିସମାପ୍ତି ଘଟିଲା । ମନ୍ତ୍ରୀ ମହୋଦୟ ବାଟ ଘଟଣାକୁ ମନେପକେଇ

ମତବ୍ୟକ୍ତ କଲେ– "ବାଟରେ ଖଳଲୋକ ମୋତେ ବିପଥଗାମୀ କରେଇ ଦେଉଥିଲେ, ପ୍ରସନ୍ନ ସକାଶେ ବର୍ତ୍ତିଗଲି । ଯାହାଦେଖିଲି ପ୍ରଧାନଶିକ୍ଷକ ଜଣେ ଉଚ୍ଚମାନର ବ୍ୟକ୍ତି । ତାଙ୍କଠାରେ ସାମାନ୍ୟତମ ତ୍ରୁଟି ଦେଖିଲି ନାହିଁ ।"

ଅତିଥିମାନଙ୍କୁ ଯଥୋଚିତ ସମ୍ବର୍ଦ୍ଧନା ଜ୍ଞାପନ କରି ସେମାନଙ୍କଠାରୁ ବିଦାୟ ନେଲୁ । ଯେଉଁ ଧାରଣା ନେଇ ସେ ନିରାକାରପୁର ମାଟିରେ ପାଦ ଦେଇଥିଲେ ତା'ର ବିପରୀତ ଧାରଣା ନେଇ ସ୍ଥାନ ପରିତ୍ୟାଗ କଲେ । ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ଆନନ୍ଦର ସୀମା ରହିଲା ନାହିଁ । ନିରାକାରପୁର ଜନମାନସରେ ପ୍ରଧାନଶିକ୍ଷକ ଉଚ୍ଚସ୍ଥାନ ଦଖଲ କଲେ । ପରମ୍ପରା ଅନୁଯାୟୀ ନାଟକୋତ୍ସବ ଦୁଇରାତ୍ରି ପ୍ରଦର୍ଶିତ ହେଲା । ବାଳିକା ପିଲାମାନଙ୍କ ଦ୍ୱାରା ଦୁଇରାତି ଗୀତିନାଟ୍ୟ ଅଭିନୀତ ହେଲା । ନିରାକାରପୁର ଆଗମନ ସମୟରେ ବିଦ୍ୟାଳୟ ଯେଉଁ ଅବସ୍ଥାରେ ଦେଖିଥିଲି ଛାଡ଼ିଗଲାବେଳେ ବହୁ ଉଚ୍ଚରେ ଦେଖି କୃତକୃତ୍ୟ ହେଲି ।

## ନାଟକ ମହୋତ୍ସବର ମହତ୍ତ୍ୱ :

ଏଠାରେ ନିୟମ ଅନୁଯାୟୀ ପ୍ରତି ଦୁଇବର୍ଷରେ ଥରେ ପୁରସ୍କାର ବିତରଣ ଉତ୍ସବ ଅନୁଷ୍ଠିତ ହୁଏ । ତା' ସହିତ ଦୁଇଦିନ ନାଟକୋତ୍ସବ ପାଳିତ ହୁଏ । ବିଦ୍ୟାଳୟମାନଙ୍କରେ ଯେଉଁ ନାଟକୋତ୍ସବ ପାଳିତ ହୁଏ ସେଥିରେ ଦୁଇଟି ଦିଗପ୍ରତି ଧ୍ୟାନଦେବାକୁ ହୁଏ । ଏ ବିଦ୍ୟାଳୟରେ ନାଟକ ପରିବେଶଣ କରିବା ପାଇଁ ପୂର୍ବରୁ ପରମ୍ପରା ଥିଲା । ତେବେ ଖୋର୍ଦ୍ଧା ହାଇସ୍କୁଲ ଛାତ୍ରାବାସରେ ମୁଁ ସୁପରିଟେଣ୍ଡେଣ୍ଟ ପଦରେ ଥିବାବେଳେ ଛାତ୍ରାବାସର ପିଲାମାନେ ପ୍ରତିବର୍ଷ ଅଗଷ୍ଟପନ୍ଦର ସ୍ୱାଧୀନତା ଦିବସରେ ସେ ସମ୍ପର୍କୀୟ ନାଟକଟି ପରିବେଶଣ କରୁଥିଲେ । କିନ୍ତୁ ତାହା ଭିନ୍ନ ଧରଣର ଥିଲା, ସେଥିରେ ଦୈହିକ ପ୍ରେମ ବିଷୟ ବର୍ଣ୍ଣିତ ନଥିଲା । କିନ୍ତୁ ଏ ବିଦ୍ୟାଳୟରେ ପ୍ରଦର୍ଶିତ ନାଟକ ସମାଜସ୍ତରୀୟ ଥିଲା । ଏହିଠାରେ ପ୍ରଶ୍ନଉଠେ ଯେଉଁ ପୁରୁଷ ପିଲାଟି ନାରୀ ଭୂମିକାରେ ଅବତୀର୍ଣ୍ଣ ହୁଏ ପରବର୍ତ୍ତୀ କାଳରେ ପିଲାମାନଙ୍କ ଦ୍ୱାରା ସମାଲୋଚିତ ହୋଇଥାଏ । ପଢ଼ାପଢ଼ିରେ ବ୍ୟାଘାତ ଘଟେ । ପ୍ରଥମେ ପ୍ରଥମେ ମୁଁ ଏହାର ବିରୋଧୀ ଥିଲି । ପରେ ଶିକ୍ଷକ ବନ୍ଧୁମାନଙ୍କ ଅନୁରୋଧରେ ଏ ବିଷୟରେ ରାଜି ହୋଇଥିଲି । ତେବେ ଏକଥା ପରିସ୍ଫୁଟ ଯେ କେଉଁ ପିଲାଠାରେ କି ଅନ୍ତର୍ନିହିତ ଗୁଣ ଥାଏ ତାହା ବାଲ୍ୟକାଳୁ ଜଣାଯାଇଥାଏ ଏବଂ ଉତ୍ତର କାଳରେ ସେ କେଉଁ ଧନ୍ଦା ଗ୍ରହଣ କରିବ ତାହା ଜଣାପଡ଼ିଯାଏ । ଭବିଷ୍ୟତରେ କିଏ କମେଡ଼ିଆନ ହେବ ତ କିଏ ନାୟକ ଭୂମିକାରେ, କିଏ ନାୟିକା ଭୂମିକାରେ କୃତିତ୍ୱ ଅର୍ଜନ କରିବ, କିଏ ବାଣା

ବାଦକ କିଏ ସଙ୍ଗୀତଜ୍ଞ ହେବେ ପିଲାଦିନୁ ଜଣାପଡ଼ିଯାଏ ଏବଂ ଭବିଷ୍ୟତ ଜୀବନର ମୂଳଭିତ୍ତି ପଡ଼ିଥାଏ । କ୍ଷତି ଅପେକ୍ଷା ଲାଭ ଅଧିକ ହେଉଥିବା ଯୁକ୍ତି ଶୁଣି ନାଟକୋତ୍ସବରେ ପୁଅମାନେ ଝିଅ ଭୂମିକାରେ ଅବତୀର୍ଣ୍ଣ ହେବାପାଇଁ ସ୍ୱୀକୃତି ପ୍ରଦାନ କରିଥିଲି । ଯାହାହେଲେ ମଧ ନିରାକାରପୁର ହାଇସ୍କୁଲର ନାଟକୋତ୍ସବ ସେ ଅଞ୍ଚଳରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।

## ମୋ କାର୍ଯ୍ୟର ସମୀକ୍ଷା :

ପୂର୍ବରୁ କହିଛି ବାହାଘର ପରେ ବେଦି ମୁହଁ ପୋଡ଼ା । ମୋ ଚାକିରି ଜୀବନର ଏକ ଗୌରବମୟ ଅଧ୍ୟାୟ ଶେଷ ହେଲା । ବହୁ ବାଧାବିଘ୍ନ ସତ୍ତ୍ୱେ କୃତିତ୍ୱର ସହିତ କାର୍ଯ୍ୟ ସମୂହ ସଂପାଦନା କରିଥିବାରୁ ମନରେ ଆନନ୍ଦର ସୀମା ଲଂଘନ କଲା । ନିରାକାରପୁର ଆସିଥିବାବେଳେ ତା'ର ଅବସ୍ଥା ଯାହା ସନ୍ଦର୍ଶନ କରିଥିଲି ପ୍ରସ୍ଥାନବେଳେ ତା'ର ବହୁବିଧ ଉନ୍ନତି ଦେଖି ବିସ୍ମୟ ପ୍ରକାଶ କରିଥିଲି । ଏସବୁ ଦୈବୀକୃତ ବୋଲି ପ୍ରତୀୟମାନ ହେଲା । ୩୧-୧୦-୧୯୮୧ରେ ଯେତେବେଳେ ନିରାକାରପୁର ତ୍ୟାଗ କରୁଛି ନିଜ କାର୍ଯ୍ୟର ସମୀକ୍ଷା କରିବାରେ ଲାଗିପଡ଼ିଲି । ଦୁଇ ଲକ୍ଷ ଟଙ୍କା ବ୍ୟୟରେ ବିଦ୍ୟାଳୟର ଛଅଟି ପ୍ରକୋଷ୍ଠ ବିଶିଷ୍ଟ ଏକ ସୁଦୀର୍ଘ ଅଟ୍ଟାଳିକା ନିର୍ମାଣ, ସଂଯୋଗ ରାସ୍ତା କ୍ରୟକରି ବିଦ୍ୟାଳୟର ତ୍ରିଂଶବର୍ଷର ଅଭାବ ପୂରଣ, ବିଦ୍ୟାଳୟରେ ବିଦ୍ୟୁତ୍ ଆଲୋକର ସଂଯୋଗ ବ୍ୟବସ୍ଥା, ପ୍ରେକ୍ଷାଳୟ ନିର୍ମାଣ, ଉତ୍ତରଦିଗ ସୁରକ୍ଷା ନିମନ୍ତେ ପ୍ରସ୍ତର ପାଚେରି ନିର୍ମାଣ, ସ୍କୁଲ ପରିସରରେ ବିଂଶାଧିକ ନାରୀକେଳ ବୃକ୍ଷରୋପଣ, ପ୍ରଧାନଶିକ୍ଷକଙ୍କ କ୍ୱାଟର ଓ ଛାତ୍ରାବାସ ଛାତ ଆଚ୍ଛବେଷ୍ଟସକରଣ, ସୁଲଭ ଶୌଚାଳୟ ନିର୍ମାଣ, କ୍ରୀଡ଼ାପ୍ରାନ୍ତର ନିର୍ମାଣରେ ୭୫% ଅଗ୍ରଗତି, ନୂତନ କୂପ ଖନନ, ବିଦ୍ୟାଳୟର ଦକ୍ଷିଣ ଓ ପୂର୍ବପାଖ ସୀମା ନିର୍ଦ୍ଧାରଣ ଏବଂ ସର୍ବୋପରି ସାଂସ୍କୃତିକ ଚେତନା ଆଣିବା ପାଇଁ ବିଦ୍ୟାଳୟରେ 'କୌମୁଦୀ' ନାମକ ବାର୍ଷିକ ମୁଖପତ୍ର ପ୍ରକାଶନ ମୋର କୃତିତ୍ୱର ପରିପ୍ରକାଶ ଏହା ମୁଁ ଦମ୍ଭ ସହକାରେ ପ୍ରକାଶ କରୁଛି । ମୁଁ ଗର୍ବ କରୁନାହିଁ । ବାର ବର୍ଷକାଳ ମୋର ସମସ୍ତ ଦୁର୍ଗତି ଓ ଦୁର୍ବିପାକ ସତ୍ତ୍ୱେ ମୁଁ ମୋ କର୍ତ୍ତବ୍ୟରେ ଟିକିଏ ମାତ୍ର ହେଳା କରିନାହିଁ । ତତପୁରୀ ଅଭାବରୁ ରାଜ୍ୟ ସରକାର ବା କେନ୍ଦ୍ର ସରକାରଠାରୁ ପୁରସ୍କାର ପାଇ ନଥିଲେ ମଧ ଜନସାଧାରଣ ଓ ଛାତ୍ରଛାତ୍ରୀମାନଙ୍କଠାରୁ ଯେଉଁ ପୁରସ୍କାର ଲାଭ କଲି ତାହା ଅବର୍ଣ୍ଣନୀୟ । ମହାମାନ୍ୟ ସମ୍ରାଟ ନେପୋଲିଅନଙ୍କ ଭାଷାରେ ଅସମ୍ଭବ କିଛି ନାହିଁ । ଦୃଢ଼ ଇଚ୍ଛାଶକ୍ତି ଥିଲେ ଅସାଧ୍ୟ ସାଧିତ ହୋଇଥାଏ ।

## ବିଦ୍ୟାଳୟରେ ମୋର ଶେଷଦିନ :

ଅଦ୍ୟ ଅକ୍ଟୋବର ମାସ ୩୧ ତାରିଖ ଶନିବାର । ମାସର ଶେଷ ଦିନ, ପୁଣି ସପ୍ତାହର ଶେଷଦିନ । ପୁନଶ୍ଚ ମୋ ଚାକିରିକାଳର ଶେଷଦିନ । ଦେଶର ଅଗଣିତ ଛାତ୍ରଛାତ୍ରୀମାନଙ୍କୁ ସୁନାଗରିକ କରି ଗଢ଼ିତୋଳିବା ନିମନ୍ତେ ଲୋଭନୀୟ ଚାକିରି ଛାଡ଼ି ଶିକ୍ଷକତାକୁ ସାଦରେ ଗ୍ରହଣ କରିଥିଲି । ତାର ସମୟ ଆଜି ଶେଷ ହୋଇଯାଇଛି । ପିଲାମାନଙ୍କୁ ଆଉ ଘଣ୍ଟାଘଣ୍ଟାଧରି ଉପଦେଶ ଦେବାର ସୁଯୋଗ ମିଳିବ ନାହିଁ । ଭବିଷ୍ୟତ ଜୀବନ ବଡ଼ ଦୁଃଖଦାୟକ ହେବ । ନାନା ଘାତପ୍ରତିଘାତ ଝଡ଼ଝଞ୍ଜା ସହି ଏଠାରେ ଗୋଟାଏ ଯୁଗ ବିତେଇଦେଲି । ଏଠାକୁ ଆସିଥିଲୁ କେତେଜଣ, ଫେରିଲୁ କେତେଜଣ ? ସୁଖଦୁଃଖର ଜୀବନ । ସମସ୍ତ ମାୟାମମତା ତୁଟାଇବାକୁ ପଡ଼ିଲା । ବିଦାୟକାଳୀନ ସଭାଟିଏ ଜାକଜମକରେ ପାଳିତ ହେଲା । ଲୋଭନୀୟ ଉପଢ଼ୌକନ ସ୍ନେହମମତା ଅପେକ୍ଷା ତୁଚ୍ଛ । ସବୁପିଲାମାନଙ୍କ ଆଖିରେ ଲୁହ । ମୋର ହୃଦୟ ଟାଣ । ବିପଦରେ କେବେ କାନ୍ଦିନାହିଁ । ପ୍ରାଣପ୍ରିୟା ପତ୍ନୀ ବିୟୋଗରେ ଆଖିରୁ ଲୁହ ଗଡ଼ିବାର କେହି ଦେଖି ନଥିଲେ । କିନ୍ତୁ ସେଦିନ ଆଖିରୁ ଲୋତକଧାର ଛୁଟିଲା । କୁନି କୁନି ପୁଅ ଝିଅମାନଙ୍କର ସୌମ୍ୟବଦନ ଆଉ ଦେଖିବାକୁ ମିଳିବ ନାହିଁ କି ସେମାନଙ୍କ ଅଭାବ ଅଭିଯୋଗ ମୋ' ଆଗେ କହିବାକୁ କେହି ଆସିବେ ନାହିଁ । ସେମାନଙ୍କ ଗହଣରେ ସମୟ କାଟି ସ୍ତ୍ରୀ ବିରହଜନିତ ଦୁଃଖ ଭୁଲିଯାଉଥିଲି । ଆସନ୍ତାକାଲିଠାରୁ ଜୀବନ ନୀରସ, ଶୁଷ୍କ ହୋଇଯିବ । ସମ୍ବର୍ଦ୍ଧନାର ଉତ୍ତରରେ ହୃଦୟରୁ କୋହ ଉଠିଲା, କିଛି କହିପାରିଲି ନାହିଁ । ଶିକ୍ଷକବନ୍ଧୁମାନଙ୍କଠାରୁ ଓ କୁନି କୁନି ପିଲାମାନଙ୍କଠାରୁ ଶେଷ ବିଦାୟ ନେଇ ବସାକୁ ଫେରିଲି । ଖୋର୍ଦ୍ଧା ହାଇସ୍କୁଲରେ ଜୀବନର ଉତ୍କୃଷ୍ଟ ସମୟ ପଚିଶ ବର୍ଷ କାଳ କଟେଇ ଖୋର୍ଦ୍ଧା ସ୍କୁଲର ମାନସମ୍ମାନ ଅକ୍ଷୁଣ୍ଣ ରଖିବାରେ ସର୍ବଦା ଚେଷ୍ଟିତ ଥିଲି । ସେହି ପ୍ରଖ୍ୟାତ ବିଦ୍ୟାଳୟର ଉନ୍ନତିକଳ୍ପେ ଜୀବନକୁ ପଳପଳ କରି ଉତ୍ସର୍ଗ କରିଥିଲି । ଅସଲ କ୍ରିଟିକାଲ ପିରିୟଡ଼ରେ ସେଠାରେ କଠୋର ଶାନ୍ତିଶୃଙ୍ଖଳା ରକ୍ଷାକରି ସ୍କୁଲର ମାନକୁ ଏକ ସ୍ତରକୁ ନେଇ ଆସିଥିଲି । ସେଠାରେ ଯେଉଁ ମାନସମ୍ମାନ ମିଳି ନଥିଲା ନିପଟ ମଫସଲ ନିରାକାରପୁର ହାଇସ୍କୁଲର ଛାତ୍ରଛାତ୍ରୀ ତଥା ଶିକ୍ଷକ ବନ୍ଧୁମାନଙ୍କର ସମ୍ବର୍ଦ୍ଧନା ତାଠାରୁ ଶତଗୁଣେ ବଳିପଡ଼ିଲା । ମୁଁ ଅଭିଭୂତ ହୋଇପଡ଼ିଲି । ଯେତେ ଅକୁଶଳୀ ଗ୍ରାମବାସୀ ହେଲେ ମଧ ମୋ ହୃଦୟକନ୍ଦରରେ ନିରାକାରପୁର ମୃତ୍ୟୁ ପର୍ଯ୍ୟନ୍ତ ଜାଗ୍ରତ ହୋଇ ରହିଥିବ । ମୋର ଦୃଢ଼ ଧାରଣା ମୋର କାର୍ଯ୍ୟ ନିମନ୍ତେ ସେମାନେ ମୋତେ ଭୁଲିପାରିବେ ନାହିଁ । ରାଜଦଣ୍ଡ ହାତରୁ ଚାଲିଗଲେ ରାଜା ଯେପରି ଶ୍ରୀହୀନ

ହୋଇପଡ଼ନ୍ତି ମୁଁ ସେହିପରି ଶ୍ରୀଯୁକ୍ତରୁ ବଞ୍ଚିତ ହେଲି । ସହକର୍ମୀମାନଙ୍କ ଶତ ଅନୁରୋଧ ସତ୍ତ୍ୱେ ମୁଁ ସେଠାରେ ଆଉ ମୁହୂର୍ତ୍ତେ ବାସ କରିବାକୁ ଉଚିତ ମଣିଲି ନାହିଁ । ସେହି ଶନିବାର ରାତ୍ରିଟି ମୋ ସାର୍ଥକ ଶିକ୍ଷକ ଜୀବନର ସମୀକ୍ଷା କରିବାରେ ଲାଗିଲି । ଗତ ସଇଁତିରିଶ ବର୍ଷର ଘଟଣାବଳୀ ମୋ ମନ ରାଇଜରେ ଗୋଟି ଗୋଟି ହୋଇ ଉଭାହେଲା । ଅବଶ୍ୟ ଅତୀତକୁ ଭାଳି ହୋଇ କିଛି ଲାଭ ନାହିଁ । ତଥାପି ଅତୀତ ଭବିଷ୍ୟତର ଜନନୀ, ବର୍ତ୍ତମାନର ପ୍ରେରଣାଦାତା । ଏଇ ପରିପ୍ରେକ୍ଷୀରେ ରାଜ୍ୟସ୍ତରୀୟ ବା ଜାତୀୟସ୍ତରର ଶିକ୍ଷକ ପୁରସ୍କାର କଥା ମନେପଡ଼ିଲା । ମୋ' ଠାରେ ପୁରସ୍କାର ପାଇବାର ସମସ୍ତ ଯୋଗ୍ୟତା ଥିଲେ ମଧ ତତ୍‌ପୁରୀ ଗୁଣର ଘୋର ଅଭାବ ଥିଲା । ତେଣୁ ଜୀବନର ବହୁ କ୍ଷେତ୍ରରେ ପରାଜୟ ବରଣ କରିଛି ।

## ସରକାରଙ୍କ ଶିକ୍ଷକ ସମ୍ମାନ ଉତ୍ସବ :

୧୯୬୧ ମସିହାଠାରୁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ପକ୍ଷରୁ ଚରିତ୍ରବତ୍ତା, କର୍ତ୍ତବ୍ୟପରାୟଣତା, ନିଷ୍ଠା, ପାଣ୍ଡିତ୍ୟ, ସଙ୍ଗଠନ ଶକ୍ତି, ଜନସେବା ଓ ସାହିତ୍ୟ ସେବା ଯୋଗୁଁ ଶିକ୍ଷକମାନଙ୍କୁ ରାଜ୍ୟ ଓ ଜାତୀୟସ୍ତରର ପୁରସ୍କାରମାନ ପ୍ରଦାନ କରାଯାଉଅଛି । ଏଥିମଧ୍ୟରୁ କେଉଁ ଗୁଣଟି ମୋର ଅଭାବ ଥିଲା କି ? ଦିନକୁଦିନ ଜାତୀୟ ଚରିତ୍ରର ଅବକ୍ଷୟ ହେଉଛି । ଯେଉଁମାନେ ବିଚାର କରିବେ ସେମାନଙ୍କର ଚରିତ୍ର ନିମ୍ନଗାମୀ । ଏପରିସ୍ଥଳେ ସବୁ ସମୟରେ ଉଚିତ ବା ଯୋଗ୍ୟ ବ୍ୟକ୍ତିଙ୍କୁ ପୁରସ୍କାର ଦିଆଯାଇପାରିବ କି ? ଅଫିସର, ମନ୍ତ୍ରୀ, ଉଚ୍ଚପଦସ୍ଥ ଅଧିକାରୀମାନଙ୍କ ମଧ୍ୟରେ ନୈତିକତାର ଅବକ୍ଷୟ ବେଶି । ଧରାଧରିର ଆବଶ୍ୟକତା ଅଛି, ତୋଷାମୋଦର ଆବଶ୍ୟକତା ଅଛି । ୧୯୬୨ ମସିହାର ସମାଜ ୧୯୭୨ ମସିହାରେ ନାହିଁ କି ୧୯୭୨ର ସମାଜ ୧୯୮୨ରେ ନାହିଁ । ଶିକ୍ଷକ ମହାଶୟଙ୍କର ସମସ୍ତ ସଦଗୁଣ ଥିଲେ ମଧ ସେ ଧୂର୍ତ୍ତ, ଚାଲାକ, ତୋଷାମୋଦପ୍ରିୟ ଓ କିଛି ଅର୍ଥ ଉତ୍ସର୍ଗ କରିବାର ଦକ୍ଷତା ନଥିଲେ ରାୟସାହେବ ବା ରାୟବାହାଦୁର ପଦବୀ ସେ ପାଇପାରିବେ ନାହିଁ । ଆମ ଆଖି ଆଗରେ ଜଣେ ପ୍ରଧାନଶିକ୍ଷକ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ବିଡ଼ି ଟାଣନ୍ତି, ଘରୋଇ ଟିଉସନରେ ସର୍ବଦା ଲିପ୍ତ, ସାହିତ୍ୟସେବା ଶୂନ୍ୟ, ଶିକ୍ଷକମାନଙ୍କୁ ଭୟଭୀତ କରି ରଖିବାର କୌଶଳ ଜଣା, ସେ ହେଲେ ଯୋଗ୍ୟ ଅଥଚ ଏଇ ପରିପ୍ରେକ୍ଷୀରେ ଜଣେ ପ୍ରଧାନ ଶିକ୍ଷକ ନିର୍ମଳ ଚରିତ୍ରର ଅଧିକାରୀ, ଅଧ୍ୟାପନାରେ ଧୁରୀଣ, ଜଣେ ସାହିତ୍ୟିକ, ପ୍ରାବନ୍ଧିକ, ଜନସେବୀ, ପଣ୍ଡିତ, ଆଦର୍ଶ ଶିକ୍ଷକ ଅଥଚ ସେ ହେଲେ ଅଯୋଗ୍ୟ ।

ତେବେ ପୁରସ୍କାର ପାଇବାର ମାପକାଠି କ'ଣ ? ''କହି ପୋଛି ଜାଣେ ଯେ, ପଚା ଚିଙ୍ଗୁଡ଼ି ବିକେ ସେ ।'' ଆଜିକାଲି ପୁରସ୍କାର ପାଇବା ଏଇ ସ୍ତରକୁ ଆସିଗଲାଣି ।

ତେବେ କଥାରେ ଅଛି 'ସେବା କାର୍ପଣ୍ୟ ଦେବା ଫଳେ କିବା ଅସାଧ ମହୀତଳେ ।' ମୁଁ ଦୁଇ ଦୁଇଥର ଡାକରା ପାଇ ଉଚ୍ଚ ଅଫିସରଙ୍କୁ ସାକ୍ଷାତ କରିଥିଲି ମାତ୍ର ତତ୍‌ପୁରୀ ଅଭାବରୁ ସବୁଥର ଅକୃତକାର୍ଯ୍ୟ ହୋଇଛି । ତେଣିକି ଯେତେଥର ଡାକରା ଆସିଲା ଆଉ ଗଲିନାହିଁ । ଏହା ଏକ ପ୍ରହସନ ପରି ମୋତେ ବୋଧହେଲା । ଉପର ମହଲରେ ହାତ ନଥିଲେ ଜଣେ ବିଜ୍ଞ ଶିକ୍ଷକ ହାତକୁ ଏ ପୁରସ୍କାର ଆସିପାରିବ ନାହିଁ । ବର୍ତ୍ତମାନ ସମାଜରେ ନୀତିନିଷ୍ଠ, କର୍ତ୍ତବ୍ୟପରାୟଣ, ସମୟାନୁବର୍ତ୍ତୀ, ସଚ୍ଚୋଟ ତଥା ସରଳ, ନିଷ୍କପଟ ଲୋକ ଅପାଙ୍‌କ୍ତେୟ ହୋଇପଡ଼ିଛନ୍ତି । ତଥାପି ସତ୍ୟର ପ୍ରତିଷ୍ଠା ନିମନ୍ତେ ସଂଗ୍ରାମ କରିବାକୁ ପଡ଼ିବ । ସଂଗ୍ରାମ କ୍ଷୁଦ୍ର ହେଲେ ମଧ ଦିନେ ଯେ ବିଜୟ ଘଟିବ ଏଥିରେ ସନ୍ଦେହ ନାହିଁ । ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଗାଳ୍ପିକ ମନୋଜ ଦାସଙ୍କ ମତରେ, 'ଯେକୌଣସି ପୁରସ୍କାର ଲାଭକରିବା ଏକ ଯୋଗାଯୋଗ ବ୍ୟାପାର, ଯେ ଯେତେ ଚତୁର ଭାବରେ ଉପରିସ୍ଥ କର୍ମଚାରୀମାନଙ୍କୁ ତୁଷ୍ଟ କରିପାରିଲା, ଯେ ନିଜର କୃତ୍ରିମ ଭାବମୂର୍ତ୍ତିକୁ ସମସ୍ତଙ୍କ ଆଗରେ ପ୍ରକଟ କରିପାରିଲା, ଯେ ପ୍ରଚାରଧର୍ମୀ ହୋଇ ନିଜର ବଡ଼ିମା ଦେଖାଇପାରିଲା ଓ ସମସ୍ତଙ୍କୁ ବିମୋହିତ କରିଦେଲା, ସେ ବହୁ ଦୁର୍ଗୁଣର ଅଧିକାରୀ ହେଲେ ମଧ ବହୁ ଅର୍ଥ ବିନିମୟରେ ଖାତାକୁ ଏପଟ ସେପଟ କରିପାରିଲା ସେ ଚରିତ୍ରବାନ୍, ସାଧୁ, ସଚ୍ଚୋଟ, ସ୍ୱନାମଧନ୍ୟ ଶିକ୍ଷକମାନଙ୍କୁ ପଛରେ ପକେଇଦେଇ ଯେକୌଣସି ପୁରସ୍କାର (ରାଜ୍ୟସ୍ତରୀୟ ବା କେନ୍ଦ୍ରସ୍ତରୀୟ) କୁ ଧରିପାରିବ ।' ଏପରିସ୍ଥଳେ ମୋ ଭାଗ୍ୟରେ ଏ ପୁରସ୍କାର ଜୁଟିବ କୁଆଡୁ ?

ରାତ୍ରି ପାହି ଆସିଲା । ସ୍ୱପ୍ନ ଉଭେଇଗଲା । ୪ ତାରିଖ ବୁଧବାର ଦିନ ପିଲାମାନଙ୍କ ସହ ପୁନଃ ସେହି ରକ୍ତରଞ୍ଜିତ ଐତିହ୍ୟବିମଣ୍ଡିତ ବୀରପ୍ରସୂ ଖୋରଧାର ଲାଲମାଟିକୁ ସଲାମ ବଜାଇବାକୁ ଦୌଡ଼ିଗଲି । ଖୋରଧା ମାଟି ମୋର ଅତିପ୍ରିୟ । ତା'ର ସମସ୍ତ ଦୋଷଦୁର୍ବଳତା ସତ୍ତ୍ୱେ ମୁଁ ତାକୁ ହୃଦୟର ସହ ଭଲପାଏ । ଏଣିକି ତା' ସେବାରେ ଅଧିକ ମନଦେବି ।

## ମୋର ଅବସର ଜୀବନ — କେତେ ସ୍ୱାର୍ଥ କେତେ ପରମାର୍ଥ :

ଅବସରଜୀବନ ଏକ ଭାରାକ୍ରାନ୍ତ ନିରାନନ୍ଦ ଜୀବନ, ମୋ ପାଇଁ ଆହୁରି ନିରାନନ୍ଦ । ମୁଁ ଅବସର ନେବାବେଳକୁ ମୋତେ ଷାଠିଏ ବର୍ଷ ଅତିକ୍ରମ କରିସାରିଥିଲା ।

ମୋ ପକ୍ଷରେ ଏହାହିଁ ଏକ ଅସ୍ୱସ୍ତିକର ଜୀବନ । ଶୈଶବ, କୈଶୋର, ଯୌବନ ଓ ପ୍ରୌଢ଼ାବସ୍ଥା ପରେ ବାର୍ଦ୍ଧକ୍ୟ ଆସେ । ଅଙ୍ଗପ୍ରତ୍ୟଙ୍ଗରେ ଶିଥିଳତା ଦେଖାଦିଏ । ଅବସର ମୋହରଟା ଦେହରେ ବାଜିଗଲେ ମାନସିକ ପ୍ରକ୍ରିୟାରେ ଶୀଘ୍ର ଶୀଘ୍ର ବୃଦ୍ଧାବସ୍ଥା ଆସିଯାଏ । ଶରୀର ମୃତ୍ୟୁପାଇଁ ପ୍ରସ୍ତୁତ ହୁଏ । ରୋଗରେ ପଡ଼ି ଅକାଳରେ ମୃତ୍ୟୁବରଣ ନକଲେ କିମ୍ବା ଭୟଙ୍କର ମାରାତ୍ମକ ରୋଗ ହେତୁ ଆତ୍ମହତ୍ୟା ନକଲେ ମନୁଷ୍ୟ ସ୍ୱାଭାବିକ ପ୍ରକ୍ରିୟାରେ ମୃତ୍ୟୁବରଣ କରେ । ଚାକିରିରୁ ଅବସର ନେବା ଯେପରି ଏକ ସ୍ୱାଭାବିକ ପ୍ରକ୍ରିୟା ବୃଦ୍ଧ ହେବା ସେହିପରି ଏକ ସ୍ୱାଭାବିକ ପ୍ରକିୟା । ଗୀତା କହେ 'ଜାତସ୍ୟ ହିଁ ଧ୍ରୁବ ମୃତ୍ୟୁ ।' ମନୁଷ୍ୟ ଜୀବନ ସ୍ୱଳ୍ପ କିନ୍ତୁ ମନୁଷ୍ୟ ଜନ୍ମଲାଭ କରିବା କୋଟି ଜନ୍ମ ସୁକୃତର ଫଳ । ତେଣୁ ମାନବଜୀବନର ସତ୍ ଉପଯୋଗ କରିବା ବିଧେୟ । ଜୀବନକୁ ସତ୍‌କର୍ମରେ ପ୍ରବୃତ୍ତ କରେଇବା ଏବଂ ମାତୃଭାଷା ପ୍ରତି, ମାତୃଭୂମି ପ୍ରତି ଓ ଦେଶବାସୀଙ୍କ ପ୍ରତି ନିଜ ଜୀବନକୁ ଉତ୍ସର୍ଗ ନକଲେ ଜୀବନ ନିରର୍ଥକ ହୁଏ । ଅବଶ୍ୟ ଶିକ୍ଷକ ଜୀବନ ଏକ ମହତ ଜୀବନ । ଯେଉଁ ଦୀର୍ଘକାଳ ୩୭ ବର୍ଷ ଦେଶପାଇଁ ମହତ କାର୍ଯ୍ୟ ସମ୍ପାଦନ କଲି ଏବେ ବୃଦ୍ଧ ସମୟଟି କିପରି କଟେଇବି ଏହି ଚିନ୍ତାରେ ରହିଲି ।

## ମୋର ସାଥୀହୀନ ଜୀବନ :

କଥାରେ ଅଛି''ଆତ୍ମନାଂ ସତତଂ ରକ୍ଷେତ୍'', ପୁନଃ, ''ଆତ୍ମାକୁଶଳେ ସର୍ବସିଦ୍ଧି, ଜାଣିବ ଏହୁ ମହାବିଧି ।'' ନିଜ ଶରୀର ସୁସ୍ଥ ରହିଲେ କିଛି କାମ କରିହେବ । ତେବେ ଯେଉଁ ଆଦରଯତ୍ନ ପାଇଲେ ଲୋକର ମୃତ୍ୟୁ ଦୂରେଇ ଯାଏ, ସେପରି ଆଦରଯତ୍ନକୁ ଅପେକ୍ଷା କରି ରହିଲି । ପ୍ରଥମେ ଖୋରଧାରେ ଅବସ୍ଥାନ ନିଃସଙ୍ଗ ବୋଧହେଲା । ମନରେ ସରାଗ, ଆନନ୍ଦର ଘୋର ଅଭାବ । ଦୀର୍ଘଦିନର ପୁଞ୍ଜୀଭୂତ ଦୁଃଖ ମୁଣ୍ଡକୁ ଘୋଡ଼େଇ ପକେଇଛି । ଧନଦଉଲତ ପିତା ଲାଗୁଛି । ମୋର ପୂର୍ବର ସହକର୍ମୀମାନଙ୍କ ଘରକୁ ଯେତେବେଳେ ପ୍ରବେଶ କରେ ମୋ ସଙ୍ଗେ ଆଳାପ ଆଲୋଚନା କରିବା ପାଇଁ କାହାର ବେଳ ନଥାଏ । ଯେଝା କାମରେ ଯେ ବ୍ୟସ୍ତ । ମୋ ସଙ୍ଗେ କଥାଭାଷା କିଏ୍ କରିବ ? ମୁଁ କ'ଣ ତେବେ ଅଲୋଡ଼ା, ଅପାଙ୍‌କ୍ତେୟ ? ପ୍ରତିମୁହୂର୍ତ୍ତରେ ମରଣକୁ ଆମନ୍ତ୍ରଣ କରୁଛି । ରୋଗର ଚାପ ବୃଦ୍ଧି ପାଉଛି । ମରଣକୁ ଚାହିଁଲେ ସେ କ'ଣ ଆସିବ ? 'ଆତ୍ମହତ୍ୟା ମହାପାପ ।

## ପୂର୍ବ ବନ୍ଧୁମାନଙ୍କ ସଙ୍ଗେ ଭେଟ :

ଗୋଟିଏ ଯୁଗ ପରେ ବହୁ ଅଚିହ୍ନା ଅଚିହ୍ନା ମୁହଁ ଆଖିରେ ପଡୁଛି । ପୁରୁଣା ବନ୍ଧୁମାନଙ୍କୁ ଖୋଜିଗଲି । ସେମାନେ ଏହି ସହରରେ ଥିଲେ ମଧ ଦୂରଙ୍କାଗାରେ । କଥାଭାଷା ନକଲେ ଜୀବନଟା ନୀରସ ବୋଧହେବ । ମନୁଷ୍ୟ ସାମାଜିକ ପ୍ରାଣୀ । ଯଦି ସମାଜ ନାହିଁ ତେବେ ଜୀବନ ନାହିଁ । ଏହିପରି ପ୍ରାୟ ଏକ ବର୍ଷ କଟିଗଲା । ପରିସ୍ଥିତି ସହ ଖାପଖୁଆଇଲି । ପୁରାତନ ଛାତ୍ରମାନଙ୍କୁ କିଏ କେଉଁଠି ସହରରେ ଅଛନ୍ତି ଖୋଜିଗଲି ।

ଏଣେ ୧୯୮୨ ମସିହାରେ ମୁଁ ମୋର ପ୍ରାପ୍ୟ ସରକାରଙ୍କଠାରୁ ପାଇଲି । ମୋର ମାସିକ ଦରମା ଏକହଜାର ଟଙ୍କାରେ ପହଞ୍ଚିଥିଲା । ସେହି ଅନୁସାରେ ମୁଁ ଚାଳିଶ ହଜାର ଟଙ୍କା ପାଇଲି । ଘରଟି ଅଧା ହୋଇପଡ଼ିଥିଲା ଛାତ କାମ ବାକି ଥିଲା । ଛାତ ପକେଇବାରେ ଅଠର ହଜାର ଟଙ୍କା ଖର୍ଚ୍ଚ ହେଲା । ଅବଶିଷ୍ଟ ଦୁଆର ଝରକା ପାଇଁ କାଠ କିଣାଗଲା । ମୋଟାମୋଟି ଘରକାମ ଶେଷ ହେଲା । ଘରକୁ ବ୍ୟାଙ୍କକୁ ଭଡ଼ା ଦେଇ ୪ ବର୍ଷ ଭିତରେ ୪୮ ହଜାରରେ ସବୁ କାର୍ଯ୍ୟ ଶେଷ କଲି । ୪ବର୍ଷ ପରେ ପୁନଃ ସେ ଗୃହରେ ଅବସ୍ଥାନ କଲି । ସହରକୁ ସୁନ୍ଦର କରି ଗଢ଼ିତୋଳିବା ସହରବାସୀଙ୍କ କର୍ତ୍ତବ୍ୟ । ରାଜ୍ୟରେ ତଥା ଦେଶରେ କଂଗ୍ରେସ ଶାସନ । ପୂର୍ବରୁ କଂଗ୍ରେସର ଢେର୍ ସୁନାମ ଥିଲା । ଏବେ ସେଥିରେ ଭଟ୍ଟା ପଡ଼ିଗଲେ ମଧ କିଛି ସୁନାମ ଅଛି । କଂଗ୍ରେସ ଏଥର ଲଗାମ ଧରିବାବେଳୁ ଦେଶରେ ଦରଦାମ ହୁହୁ ହୋଇ ବଢ଼ିଲା, ଦୁର୍ନୀତି ବଢ଼ିଲା, ତଥାପି ସରକାର ଦୃଢ଼ ଥିବାପରି ଜଣାପଡୁଥିଲା । ଇନ୍ଦିରାଗାନ୍ଧୀଙ୍କ ସମୟ । ଏହିପରି ସମୟରେ ମୋର ଅବସର । କି ପେନସନ ବା ପାଇବି ? ସରକାର ତ ପନ୍ଦର ବର୍ଷ ଚାକିରିକୁ ବିଚାରକୁ ନେଲେ ନାହିଁ । ତଥାପି ଯାହା ତ ମିଳିବ ? ପେନସନ ପାଇବା ପର୍ଯ୍ୟନ୍ତ କଷ୍ଟରେ କହିବାକୁ ପଡ଼ିଲା ।

## ଅବସର ଜୀବନର ପ୍ରାରମ୍ଭକାଳ :

ଅବସର ଜୀବନ କିପରି କଟେଇବି ତା'ର କିଛି ଯୋଜନା କରିନଥିଲି । ଗୃହରେ ପ୍ରବେଶ କରୁକରୁ କଟକରୁ ଜଣେ ପ୍ରକାଶକ ଆସି ଅନୁରୋଧ କଲେ ନଗରବିଜ୍ଞାନ ଉପରେ ଖଣ୍ଡିଏ ପ୍ରଶ୍ନୋତ୍ତର ପୁସ୍ତକ ଲେଖିବା ପାଇଁ । ମୋର ବି ଆୟର ପନ୍ଥା କିଛି ନଥିଲା । ମୁଁ ଦୁଇ ତିନିମାସ ମଧରେ ପୁସ୍ତକଟି ଲେଖି ପାଣ୍ଡୁଲିପିଟି ତାଙ୍କ ହସ୍ତେ ପ୍ରଦାନ କଲି । ପୁସ୍ତକଟି ଛାପିବାରେ ଶହେ ବାଇଶି ପୃଷ୍ଠା ହେଲା । ଦିନେ ପ୍ରକାଶକ ବନ୍ଧୁ ମୋ ନିକଟକୁ ଆଗମନ କରି ପୃଷ୍ଠା ପାଞ୍ଚ ଟଙ୍କା ହିସାବରେ ମୋତେ ଛଅ ଶହ ଦଶ ଟଙ୍କା ପ୍ରଦାନ କଲେ । ପୁସ୍ତକଟିକୁ

ସେ କ୍ରୟ କରିନେଲେ । ସେ ଟଙ୍କା ମୁଁ ଉପଯୋଗକରି ଗୋଟିଏ ଚାରି ବ୍ଲେଡ଼ ବିଶିଷ୍ଟ ସିଲିଙ୍ଗ ପଙ୍ଖାକିଣି ପଙ୍ଖାଟି ମୋର ନିଜ ପ୍ରକୋଷ୍ଠରେ ଝୁଲାଇ ଦେଲି । ଏବେ ସୁଦ୍ଧା ତାହା ଝୁଲୁଛି ଏବଂ ମୋର ପ୍ରଥମ ଆୟର ପନ୍ଥା ଘୋଷଣା କରୁଛି ।

## ମୋର ଟିଉସନରୁ ଆୟ :

ଏହି ସମୟରେ କେତେଜଣ ଅଭିଭାବକ ଆସି ତାଙ୍କ ପିଲାମାନଙ୍କୁ ମାଟ୍ରିକ ପରୀକ୍ଷାକୁ ତାଲିମଦେବା ପାଇଁ ପ୍ରବର୍ତ୍ତାଇଲେ । ସେମାନଙ୍କ ଅନୁରୋଧ ଏଡ଼ାଇ ପାରିଲିନାହିଁ । ମାସିକ ଫି ଦେଲେ କୋଡ଼ିଏ ଟଙ୍କା । ଏହିପରି ଅଶୀ ଟଙ୍କା ମିଳିଲା । ଆୟ ଅର୍ଥ ପୁସ୍ତକ କ୍ରୟରେ ବିନିଯୋଗ କଲି । ମୋର ମାନ ଜଗିରଖି ଜଣେ ହେଡମାଷ୍ଟର ପଚାଶ ଟଙ୍କା ଦେଲେ । ଏହିପରି ଦୁଇ ତିନିବର୍ଷ ଅତିବାହିତ ହେଲା । ମୋର ବି ଆୟର ପନ୍ଥା କିଛି ନଥିଲା । ଦୂର ଗ୍ରାମରୁ କେହି କେହି ତାଙ୍କ ସ୍କୁଲକୁ ହେଡମାଷ୍ଟର ହୋଇଯିବାପାଇଁ ଅନୁରୋଧ କଲେ ମାତ୍ର ଗ୍ରାମ ବୁଦ୍ଧିଜୀବୀମାନଙ୍କର ଦୌରାତ୍ମ୍ୟକୁ ମନେ ପକାଇଲି । ଅଶିକ୍ଷିତ, ମାମଲତକାର ଲୋକେ ମୋର ମାଲିକ ହେବେ ଏବଂ ମୋ ଉପରେ କ୍ଷମତା ଜାହିର କରିବେ, ତେଣୁ ସେଥିରେ ସହମତି ଦେଇପାରିଲି ନାହିଁ । ଦୀର୍ଘକାଳ ଶିକ୍ଷକ ରହି ରହି ଚିଟା ହୋଇଥିଲି, ଯେତେ ଯୁଆଡ଼େ ଡାକରା ଆସିଲା ଗଲିନାହିଁ । ଜଣେ ତ ଲୋକ କ'ଣ ଚଳିପାରିବ ନାହିଁ କି ?

ଏଥିମଧ୍ୟରେ ପେନସନ ପାଇଲି ମୋଟେ ବାଇଶି ବର୍ଷର -ମାସକୁ ମାତ୍ର ଟ.୩୩୫ ଏବଂ ଟି.ଆଇ. ମିଶି ଚାରିଶହ ଅନେଶୋତ ଟଙ୍କା । ସେଥିରୁ ଶହେ ଏଗାର ଟଙ୍କା କଟିଗଲେ ଅବଶିଷ୍ଟ ତିନିଶହ ଅଠାଅଶୀ ଟଙ୍କା ପାଇଲି । ସେତେବେଳେ ଏତେ କମ୍ ପେନସନ ପଇସାରେ ଚଳିପାରୁନଥିଲି । ୧୯୯୪ ମସିହା ପର୍ଯ୍ୟନ୍ତ ଗୁଜୁରାଣ ମେଣ୍ଟାଇବା ଦୁର୍ବହ ହୋଇପଡୁଥିଲା । ତପୂରେ କିଛି ଅଧିକ ମିଳିଲା । ୧୯୯୬ ମସିହାଠାରୁ ଦୁଇ ହଜାର ଶହେ ଛୟାନବେ ଟଙ୍କା ଓ ଟି.ଆଇ. ୪୧% ମିଳୁଛି । ଏବେ ସେ ପଇସାରେ ପୁସ୍ତକ କିଣୁଛି, ଔଷଧ ଖର୍ଚ୍ଚ କରୁଛି ଓ ମୋର ଯାବତୀୟ ଆବଶ୍ୟକତା ପୂରଣ କରିପାରୁଛି । ଏହି ପେନସନ ଟଙ୍କାରେ ପୁସ୍ତକ ପ୍ରକାଶନ କରୁଛି ।

## ଆଉ ଟିଉସନ କଲିନାହିଁ :

ମୋର କେତେକ ବନ୍ଧୁ ଅବସରଜୀବନକୁ ସମ୍ଭୋଗ କରିବା ପାଇଁ ତାସ, ପଶା ଖେଳରେ ବ୍ୟୟ କରୁଛନ୍ତି । ମୋ ମନ ତେଣିକି ଆଦୌ ଯାଉନାହିଁ । ହାଇସ୍କୁଲରେ ଅଧ୍ୟୟନ

ସମୟରେ ମୋର ସାଙ୍ଗସାଥୀମାନେ ଭଲି, ଫୁଟବଲ ଖେଳୁଥିଲେ । ମୁଁ ଖେଳୁ ନଥିଲି । କିନ୍ତୁ ଶ୍ରେଣୀ ଶ୍ରେଣୀ ଭିତରେ ଲିଗ୍ ମ୍ୟାଚ ହେଲେ ମୋତେ ସେମାନେ ଖେଳିବାକୁ ଡାକନ୍ତି । ସେତେବେଳେ ଆଗ୍ରହ ସହକାରେ ଯୋଗଦେଇ ସେମାନଙ୍କୁ ଉତ୍ସାହିତ କରିଥାଏ । ତାସ, ପଶାଖେଳରେ ବୁଦ୍ଧି ଲୋଡ଼ା, କିନ୍ତୁ ମୁଁ ସେଥିରେ ପାରେନାହିଁ । ସବୁଠାରୁ ସହଜ ଖେଳ ଟୋଣ୍ଟିନାଇନ । କେତେବେଳେ କେମିତି ଛୁଟିଦିନମାନଙ୍କରେ ସାଥୀପିଲାଙ୍କ ସହ ଏହି ସହଜ ଖେଳଟି ଖେଳିଥାଏ । ମୋର ଚତୁରତା ଅଭାବରୁ ମୋର ଖେଳସାଥୀ ହାରିଯାଏ । ମୋ ଉପରେ ସେ ଦୋଷତକ ଢାଳିଦିଏ । ମୋତେ ଗାଳିଦିଏ । ମୁଁ ଆଉ ଖେଳିବାକୁ ସାହସ କରେ ନାହିଁ । ଖେଳ ଯାହାର ଏପରି, ସେ ଅବସରବେଳେ ଖେଳିବ କ'ଣ ? ସାଙ୍ଗସାଥୀମାନେ ମୋତେ ଖେଳ ଖେଳିବାକୁ ଡାକନ୍ତି ନାହିଁ । ଖେଳରେ ମୁଁ ଅତି ଦରିଦ୍ର ।

## ପୁସ୍ତକପାଠ ପ୍ରତି ମମତା :

ବାଲ୍ୟକାଳୁ ମାଇନର ସ୍କୁଲରେ ଅଧ୍ୟୟନ ସମୟରୁ ପୁସ୍ତକ ପାଠପ୍ରତି ମୋର ପ୍ରବଳ ଝୁଙ୍କ ଥିଲା । ପୁରାତନ ମାଇନର ସ୍କୁଲରେ ଏକ ସମୃଦ୍ଧ ପୁସ୍ତକାଳୟ ଥିଲା । ମୋର ତତ୍କାଳୀନ ଶିକ୍ଷକମାନେ ସମସ୍ତେ ଅଗାଧ ଜ୍ଞାନର ଅଧିକାରୀ ଥିଲେ । ନିୟମିତଭାବେ ଆମ୍ଭମାନଙ୍କୁ ପୁସ୍ତକ ଯୋଗାଉଥିଲେ । ଚାରି ବର୍ଷ ଭିତରେ ଓଡ଼ିଶାର ବଡ଼ ବଡ଼ ଲେଖକଙ୍କର ବହୁ ପୁସ୍ତକ ଅଧ୍ୟୟନ କରିଛି ଏବଂ ବହୁ ବିଷୟରେ ଜ୍ଞାନ ଲାଭ କରିଛି । ମୁଁ ତ ଶିକ୍ଷକ ଜୀବନଯାପନ କଲି । ନାନା ଝଞ୍ଜାଳ ମଧ୍ୟରେ ପୁସ୍ତକ ଅଧ୍ୟୟନ ଚାଲିଥାଏ । ଏକ ପ୍ରସିଦ୍ଧ ହାଇସ୍କୁଲରେ ବିରାଟ ଲାଇବ୍ରେରୀ ଭିତରେ ନିଜକୁ ନିମଜ୍ଜିତ କରେ । କାହାଠାରୁ ମାଗି କରି ଉତ୍ତମ ଦରର ପୁସ୍ତକଟିଏ ପାଇଲେ ତାକୁ ପାଖରେ ରଖିଦେବାକୁ ଚାହେଁ । ଏବେ ଅବସର ସମୟରେ ଉଚିତ ବିନିଯୋଗ କରିବାପାଇଁ ପୁସ୍ତକ ମୋର ପରମବନ୍ଧୁ ସାଜିଛି । ଇଂରାଜୀ କବି ରବର୍ଟ ସାଉଦି ଗାଇଛନ୍ତି —

*"My never failing friends are they*
*with whom I converse day by day."*

ଏହି ଦୁଇଟି ଧାଡ଼ିକୁ ସର୍ବଦା ମନରେ ଧାରଣ କରିଥାଏ । ପୁସ୍ତକ ବନ୍ଧୁ ହେଉଛି ମଣିଷର ପରମ ବନ୍ଧୁ । ମଣିଷ ବନ୍ଧୁ ସହିତ ମନୋମାଳିନ୍ୟ ଘଟିପାରେ କିନ୍ତୁ ପୁସ୍ତକ ବନ୍ଧୁ ବ୍ୟକ୍ତିବିଶେଷଙ୍କୁ ଦୁଃଖରେ ସାନ୍ତ୍ୱନା ପ୍ରଦାନ କରେ, ସୁଖରେ ପ୍ରାଚୁର୍ଯ୍ୟ ବଢ଼ାଏ । ତେଣୁ ଅନ୍ୟ ଜଣେ ଇଂରାଜୀ କବ ଆଣ୍ଡ୍ରେ ଲ୍ୟାଙ୍ଗ ଗାଇଛନ୍ତି —

*"When others fail him, the wise man*
*looks to the sure companionship of books."*

ତେଣୁ ଉପାଦେୟ ପୁସ୍ତକ ସହିତ ଜୀବନର ଅବଶିଷ୍ଟ ସମୟ ବ୍ୟୟ କରିବାରେ ତତ୍ପର ହୋଇଉଠିଛି । ସଂସ୍କୃତରେ ଏକ ଉଜ୍ଜ୍ୱଳ ସୂକ୍ତି ମନେପଡ଼େ —

ସାହିତ୍ୟ, ସଙ୍ଗୀତ, କଳା ବିହୀନ
ସାକ୍ଷାତ ମନୁଷ୍ୟ ପଶୁ ପୁଚ୍ଛ ବିଶାଣ ହୀନ ।

ମୋର ସଙ୍ଗୀତରେ ବ୍ୟୁତ୍ପତ୍ତି ନାହିଁ କି କଳାରେ ନାହିଁ । ତଥାପି ମୁଁ ସଙ୍ଗୀତ ଓ କଳାପ୍ରେମୀ । ପାଖେ ପାଖେ ରେଡ଼ିଓଟିଏ ରଖିଥାଏ କେବଳ ସଙ୍ଗୀତ ଶୁଣିବା ପାଇଁ । ସାହିତ୍ୟ ବିଶେଷତଃ ଓଡ଼ିଆ ସାହିତ୍ୟର ଉତ୍କର୍ଷତା ମୋର ମନ ଭିତରେ ବସା ବାନ୍ଧି ରହିଛି ।

ଏବେ ବୃଦ୍ଧାବସ୍ଥା ମାଡ଼ି ମାଡ଼ି ଆସୁଛି । ଜୀବନ ଯେ କେତେବେଳେ ଶେଷ ହୋଇଯିବ ଜଣାନାହିଁ । ସମୟ କାହାରିକୁ ଅପେକ୍ଷା କରେନାହିଁ । ଯେତିକି ସମୟ ଅଛି ତାକୁ ଜାତି ସେବାରେ, ଦେଶ ସେବାରେ ଓ ଭାଷା ସେବାରେ ଲଗେଇବି ବୋଲି ମନସ୍ଥ କଲି । ପୁସ୍ତକ ପଠନ ପାଇଁ ପୁସ୍ତକାଳୟଟିଏ ଗଠନ କରିଛି ।

ଜ୍ଞାନ ମଣ୍ଡଳ କହନ୍ତି–

ଉପଯୁକ୍ତ ପୁସ୍ତକ ଅଭାବରେ ଭଗବାନ ନୀରବ, ନ୍ୟାୟ ସୁପ୍ତ, ବିଜ୍ଞାନର ଗତିରୁଦ୍ଧ, ଦର୍ଶନ ପଙ୍ଗୁ, ବିଦ୍ୟା ମୂକ, ଅନ୍ୟ ସବୁକିଛି ଅନ୍ଧକାର ଗର୍ଭରେ ସଂପୂର୍ଣ୍ଣ ଅସ୍ପଷ୍ଟ –

ତେଣୁ ଉତ୍ତମ ପୁସ୍ତକ ପଠନ ମନୁଷ୍ୟ ପକ୍ଷରେ ଏକାନ୍ତ ଅପରିହାର୍ଯ୍ୟ । ପୁସ୍ତକ ମିଳିଲେ ତ ?

ଏବେ ମୋ ଆୟର କିଛି ଅଂଶ ପ୍ରତିମାସରେ ପୁସ୍ତକ କ୍ରୟରେ ବ୍ୟୟ କରୁଛି । ଏତେଗୁଡ଼ିଏ ପୁସ୍ତକ ହୋଇଗଲାଣି ଯେ ସେଗୁଡିକ ଏକ ଆଲମିରାରେ ସାଇତି ରଖିଛି । ଏବେ ଯେତେଗୁଡ଼ିଏ ପୁସ୍ତକ ମେଳା ମୋ ଗୃହ ନିକଟବର୍ତ୍ତୀ ସ୍ଥାନରେ ଅନୁଷ୍ଠିତ ହେଉଛି ସେ ସବୁ ସ୍ଥାନକୁ ଯାଇ ଉତ୍ତମ ପୁସ୍ତକ କ୍ରୟ କରୁଛି । ପୁସ୍ତକ ଯେ ଅଧ୍ୟୟନ କରିବ ସେ କ'ଣ ସବୁ ସମୟ ସେଥିରେ ଖର୍ଚ୍ଚ କରିପାରିବ ? ତେଣୁ ଅନ୍ୟ କିଛି ସମାଜସେବା କାମ ହାତକୁ ନେବା ପାଇଁ ଆଗଭର ହେଲି ।

## ମୋର ପୂର୍ବର ବନ୍ଧୁ :

ସତ୍ୟକଥା କହିବା ମୋର ନୀତି ହେଲେ ହେଁ ସର୍ବଦା ସବୁ ପରିସ୍ଥିତିରେ ସତ୍ୟ କହିବା ସମ୍ଭବ ହୁଏନାହିଁ କି ମିଛ କହି ହୁଏନାହିଁ । ସମାଜ ଭିତରେ ଚଳିବାକୁ ହେଲେ ସତକଥା ନକହି ବେଳେବେଳେ ନୀରବତା ଅବଲମ୍ବନ କରିବାକୁ ପଡ଼େ । ସଭା ସମିତରେ ସତ୍ୟବଚନ ମୁହଁରୁ ବାହାରି ପଡ଼ିଲେ ବହୁ ଲୋକଙ୍କର ଅପ୍ରିୟ ହେବାକୁ ପଡ଼େ । ସମସ୍ତଙ୍କ

ମରଜିକୁ ଜଗିରଖି ଚଳିବା ସହଜ ନୁହେଁ । ଗାଁଗହଳି ପରି ସହରରେ ଜନସହଯୋଗ ସବୁବେଳେ ମିଳେନାହିଁ । ଗ୍ରାମ୍ୟ ବୁଦ୍ଧିଜୀବୀ ହୁଅନ୍ତୁ କିମ୍ବା ସହରୀ ବୁଦ୍ଧିଜୀବୀ ହୁଅନ୍ତୁ ସେମାନଙ୍କଠାରୁ ଦୂରରେ ରହିବାକୁ ମୁଁ ପସନ୍ଦ କରେ । ନିରାକାରପୁର ଅବସ୍ଥାନ କାଳରେ ଦୁଇଜଣ ଘନିଷ୍ଠ ବନ୍ଧୁ ଥିଲେ । ଜଣେ ଇଂରାଜୀ ଅଧ୍ୟାପକ ବୀର କିଶୋର ଭୂୟାଁ ମହାପାତ୍ର ଓ ଅପର ଜଣକ ବାବୁ କୃପାସିନ୍ଧୁ ତ୍ରିପାଠୀ । ବନବାସିନୀ ଦେବୀଙ୍କ ମୃତ୍ୟୁପରେ ସମୟ କଟେଇବା ପାଇଁ ବହୁ ସମୟରେ ଏମାନଙ୍କର ଦ୍ୱାରସ୍ଥ ହେଉଥିଲି । ବୀରବାବୁଙ୍କ ଶ୍ୱଶୁର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବାଞ୍ଛାନିଧି ପଟ୍ଟନାୟକ ତାଙ୍କ ସଂଗ୍ରାମୀ ଜୀବନର ବହୁ କାହାଣୀ ମୋତେ କହୁଥିଲେ, ମୁଁ ଢେର୍ ଆନନ୍ଦ ଉପଭୋଗ କରୁଥିଲି । ବୀରବାବୁଙ୍କ ପତ୍ନୀ ମୃଣାଳିନୀଦେବୀ ଜଣେ ବନ୍ଧୁପରାୟଣା ମହିଳା ଥିଲେ । ଖୋର୍ଦ୍ଧାରେ ସେପରି ବନ୍ଧୁ କେହି ମିଳିଲେ ନାହିଁ । ଯେ ବି ଥିଲେ ମୋ ବାସଭବନଠାରୁ ଦୁଇ କି.ମି. ଦୂରରେ । ତଥାପି ସମୟେ ସମୟେ ସେମାନଙ୍କର ସାହଚର୍ଯ୍ୟ ଲାଭ କରୁଥିଲି । ମୁଁ ଯେ ଏତେବର୍ଷ ବଞ୍ଚିବି ବିଶ୍ୱାସ କରିନଥିଲି । ବନ୍ଧୁହୀନ ଜୀବନ ମନସ୍ତାପକୁ ବଢ଼ାଇଥିଲା । ନିଜ ଗାଁକୁ ବେଳେବେଳେ ଯାତାୟାତ କରୁଥିଲି । ଜମିଚାଷରେ ମନ ଦେଉଥିଲି । ମୁଁ ସରଳ, ସାଦାସିଧା । ଆମ ଗାଁରେ ବହୁ ସରଳବ୍ୟକ୍ତି ଅଛନ୍ତି । ମୁଁ ସେମାନଙ୍କଠାରୁ କୌଣସି ଗୁଣରେ ଉତ୍କୃଷ୍ଟ ନୁହେଁ । ସଂସାର ସମ୍ବନ୍ଧେ ମୋର ଜ୍ଞାନ ସୀମିତ । କେଉଁ ସୁକୃତରୁ ମୁଁ ଦି'ଅକ୍ଷର ପଢ଼ିଗଲି ଏବଂ ଶିକ୍ଷକତା କଲି । ଚତୁରୀ ସ୍ତ୍ରୀ ମୋତେ ଚଳେଇ ନେଇଥିଲା । ତାଙ୍କର ଅଭାବ ସର୍ବଦା ଅନୁଭବ କରୁଛି । ଯାହାଉପରେ ହୁକୁମ ଜାହିରି କଲେ ସହିଯାଆନ୍ତା ସେ ନାହିଁ । ମୁଁ ବିନା ପଇସାରେ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଗ୍ରୀ ଲାଭ କରିଥିଲି । କିନ୍ତୁ ପଇସା ଖର୍ଚ୍ଚ କଲେ ବି ମୋ ଛଅଗୋଟି ପୁତ୍ର କନ୍ୟା ମଧ୍ୟରୁ ଜଣେ ହେଲେ ସେତେବାଟ ଗଲେନାହିଁ । ମୋ ପିଲାମାନେ ମୋ ମନୋମତ ବିଦ୍ୟାହାସଲ ନକଲେ ମଧ୍ୟ କେହି ଅମଣିଷ ହୋଇନାହାନ୍ତି ।

## ମୋ ଛାତ୍ରଛାତ୍ରୀଙ୍କ କୃତିତ୍ୱ ମୋର ଗର୍ବ ବୋଲି ମନେକରେ :

ମୋର ଅଗଣିତ ଛାତ୍ରଛାତ୍ରୀ ଯେଉଁମାନେ ଜୀବନରେ ଉନ୍ନତିର ଚରମ ସୋପାନରେ ଉପନୀତ ହୋଇଛନ୍ତି ସେମାନଙ୍କ ନାମ ମନେପକାଇ ମୁଁ ଏବେ ମଧ୍ୟ ଆନନ୍ଦ ଓ ଗର୍ବ ଅନୁଭବ କରୁଛି । ସେମାନେ ହେଲେ ଡାକ୍ତର ଯୋଗମାୟା ପଟ୍ଟନାୟକ, ବୈଜ୍ଞାନିକ ପ୍ରଭାକର ମହାପାତ୍ର, ଇଂଜିନିୟର ସଚ୍ଚିଦାନନ୍ଦ ସିଂହ, ଶ୍ରୀ ଯୋଗେନ୍ଦ୍ର କୁମାର ଦାସ, ଆଇ.ଏ.ଏସ୍., ଶ୍ରୀ ପରଶୁରାମ ବେହେରା, ଆଇ.ଏ.ଏସ୍., ଶ୍ରୀ ଶ୍ୟାମସୁନ୍ଦର ଅଗ୍ରୱାଲା, ଆଇ.ଏ.ଏସ୍., ଶ୍ରୀ ସୁରେନ୍ଦ୍ର କୁମାର ପଣ୍ଡା, ଆଇ.ଏ.ଏସ., ଗଳାରୋଗ ବିଶେଷଜ୍ଞ ଡକ୍ଟର

ସଚ୍ଚିଦାନନ୍ଦ ପଣ୍ଡା, ଇଂଜିନିୟର ଅଜିତ ରାୟ, ସ୍ୱତନ୍ତ୍ର ଶିକ୍ଷା ଅଧିକାରୀ ଶ୍ରୀ ଆଶୁତୋଷ ପଟ୍ଟନାୟକ, ଶିକ୍ଷାବିତ୍ ଶ୍ରୀମତୀ ରମାଦେବୀ ଓ ଡକ୍ଟର ରାମଚନ୍ଦ୍ର ଷଡ଼ଙ୍ଗୀ, ଲେଫ୍‌ଟନ୍ୟାଣ୍ଟ କର୍ଣ୍ଣେଲ ଶ୍ରୀ ସୁଧାଂଶୁ ଭୂଷଣ ନାୟକ, ପ୍ରଶାସକ ଡକ୍ଟର ଗୋପାଳକୃଷ୍ଣ ଶ୍ରୀଚନ୍ଦନ, ବିଶିଷ୍ଟ କବି ଡକ୍ଟର ବଂଶୀଧର ଷଡ଼ଙ୍ଗୀ, ମୁଖ୍ୟ ବନ ଅଧିକାରୀ ସର୍ବଶ୍ରୀ ଲକ୍ଷ୍ମୀକାନ୍ତ ପଟ୍ଟନାୟକ, ନୃସିଂହ ଚରଣ ପଟ୍ଟନାୟକ, ବିଜୟକେତନ ପଟ୍ଟନାୟକ, ସୌମ୍ୟକାନ୍ତ ଛୋଟରାୟ, ସାହିତ୍ୟିକ ଓ ଅଧକ୍ଷ ଲକ୍ଷ୍ମଣକୁମାର ପରିଡ଼ା, ଚିଫ୍ ପୋଷ୍ଟମାଷ୍ଟର ଜେନେରାଲ ଶ୍ରୀ ଭାସ୍କର ଚନ୍ଦ୍ର ମହାନ୍ତି, ବିଶିଷ୍ଟ ସାମ୍ବାଦିକ ଶ୍ରୀ ପ୍ରଦୋଷ ପଟ୍ଟନାୟକ ଏବଂ ସର୍ବଶ୍ରୀ ବଙ୍କିମ ଚନ୍ଦ୍ର ମହାନ୍ତି, ପ୍ରଫୁଲ୍ଲ ଚନ୍ଦ୍ର ମିଶ୍ର, ଯତିନ କୁମାର ଦାସ, ମୋଜାମିଲ୍ ଖାନ୍, ବିଶିଷ୍ଟ ବୈଜ୍ଞାନିକ ଡକ୍ଟର ଜାପ୍ରାନ୍ କେଶରୀ ରାୟ, ବିଧୂଭୂଷଣ ତ୍ରିପାଠୀ, ଆଇ.ଏ.ଏସ. । ସମସ୍ତଙ୍କ ନାମ ଏଠାରେ ଉଲ୍ଲେଖ କରିବା ସମ୍ଭବ ନୁହେଁ । ଏମାନଙ୍କ କୃତିତ୍ୱରେ ମୋର ଛାତି କୁଣ୍ଢେମୋଟ ହୋଇଯାଏ । ଏହାହିଁ ମୋର କୃତିତ୍ୱର ମାପକାଠି, ଗର୍ବ ଓ ଶିକ୍ଷକର ଗର୍ବ । ଏମାନଙ୍କ ନାମ ମୁଁ ମନେରଖିଛି । ମାତ୍ର ସେମାନେ ମୋତେ ମନେପକାନ୍ତି କି ନାହିଁ ମୁଁ କହିପାରିବି ନାହିଁ । କେତେକ ପ୍ରିୟ ଛାତ୍ରଙ୍କ ନାମ ମୁଁ ମନେରଖିଛି । ସେମାନେ ହେଲେ ଜଟାଧାରୀ ପରିଡ଼ା, ସୀତାକାନ୍ତ ମିଶ୍ର, ପ୍ରଶାସକ ଗୋପୀନାଥ ପ୍ରସାଦ, ହୋମିଓ ଡକ୍ଟର ଜଗମୋହନ ମହାନ୍ତି, ବୈକୁଣ୍ଠନାଥ ରାଜଗୁରୁ, ବାସୁଦେବ ଦୋରା, ପ୍ରଜେଶନାଥ ବାଗ୍‌ଚି, ଗୋପାଳକୃଷ୍ଣ ଦାସ, ସରୋଜ ସୁନ୍ଦର ପଟ୍ଟନାୟକ, ଉପେନ୍ଦ୍ର ନାଥ ନନ୍ଦ, ବାଇଧର ମହାପାତ୍ର, ଜ୍ୟୋତିରିନ୍ଦ୍ର ନାଥ ମିତ୍ର, ଡକ୍ଟର ପୂର୍ଣ୍ଣଚନ୍ଦ୍ର ସାହୁ ଓ ପଦ୍ମଚରଣ ସାହୁ, ରାମାନନ୍ଦ ରାମ, ନାରଣ ରାଓ, କୃଷ୍ଣଚନ୍ଦ୍ର ପଟ୍ଟନାୟକ, କୃଷ୍ଣଚନ୍ଦ୍ର ସିଂହ, ଦୀନବନ୍ଧୁ ବିଶ୍ୱାଳ, ସୀତାକାନ୍ତ ମିଶ୍ର ପ୍ରଭୃତି । ସାଧୁ ଓ ସଚ୍ଚୋଟ ଜୀବନ ମୋର ଲକ୍ଷ୍ୟ । Not to borrow not to lend ମୋର ନୀତି । ଖୋରଧାକୁ ପ୍ରତ୍ୟାଗମନ କରି ପ୍ରଥମ ତିନି ବର୍ଷ ଘରୋଇ ଟିଉସନରେ ମନ ଦେଇଥିଲି । ସେଥିରେ ଜୀବନରେ କିଛି ମୂଲ୍ୟ ହେବନାହିଁ ଜାଣି ସେ ପଥ ଛାଡ଼ିଲି । ଏହି ସମୟରେ ଖୋରଧା ସହରରେ ଗୋଟିଏ ସଙ୍ଗଠନ ଗଢ଼ିଲି ଏବଂ ପ୍ରତ୍ୟହ ସେଥିରେ କିଛି ସମୟ ବ୍ୟୟିତ କଲି ।

## ଖୋରଧା ସହରରେ ପାଇକ ଖଣ୍ଡାୟତ ସଙ୍ଗଠନ ଗଠନ :

ଦିନେ ଦାଣ୍ଡଦୁଆର ବାରଣ୍ଡାରେ ଚୌକି ଉପରେ ବସି ବହି ପଢୁଛି । ଅପରାହ୍ଣ ସମୟ । ଦଳେ ଯୁବକ ମୋ ପାଖେ ହାଜର । ସେମାନେ କହିଲେ– ‘‘ସାର୍, ଆମ୍ଭେମାନେ ଖୋର୍ଦ୍ଧା ସହରରେ ଏକ ଖଣ୍ଡାୟତ ସଙ୍ଗଠନ ଆୟୋଜନ କରୁଛୁ, ଆଜି ଏକ ସଭା ହେବ ।

ଆପଣ ସେହି ସଭାରେ ସଭାପତି ରୂପେ ଆସନ ଗ୍ରହଣ କରିବେ ଏବଂ ଆମ୍ଭମାନଙ୍କୁ ଦିଗ୍‌ଦର୍ଶନ ଦେବେ । '' ୧୯୮୪ ମସିହା ସମୟ । ସେମାନଙ୍କ କଥା ଶୁଣି ମୁଁ ପ୍ରଥମେ ହଡ଼ବଡ଼େଇ ଗଲି । ଏହା ଏକ ସାମ୍ପ୍ରଦାୟିକ ସଭା ହେବବୋଲି ମନେକଲି । କିନ୍ତୁ ସେମାନେ ବାରମ୍ବାର ପ୍ରାର୍ଥନା କରିବାରୁ ବହୁ ଚିନ୍ତାକରି ମୁଁ ରାଜିହେଲି । ରାଜିହେବାର ବହୁତ କାରଣ ଅଛି । ଯେଉଁମାନଙ୍କର ପୂର୍ବପୁରୁଷ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ରାଜ୍ୟଜୟ କରିଥିଲେ, ଯେଉଁମାନେ ପୂର୍ବେ ଗଜପତି ମହାରାଜାଙ୍କର ସୈନ୍ୟବାହିନୀର ସ୍ତମ୍ଭ ସ୍ୱରୂପ ଥିଲେ, ଯେଉଁମାନଙ୍କ ଯୋଗୁଁ ସମଗ୍ର ଓଡ଼ିଶାରେ ଦୀର୍ଘ ପାଞ୍ଚଶତ ବର୍ଷ ପର୍ଯ୍ୟନ୍ତ ଶାନ୍ତି ବିରାଜମାନ କରିଥିଲା, ଯେଉଁମାନଙ୍କର ପୂର୍ବପୁରୁଷ ୧୮୧୭ରେ ଖୋର୍ଦ୍ଧା ପାଇକ ବିଦ୍ରୋହରେ ଯୋଗଦେଇ ନଅ ବର୍ଷକାଳ ଦୁର୍ଦ୍ଧାନ୍ତ ବ୍ରିଟିଶ ଜାତିକୁ ଅସ୍ତବ୍ୟସ୍ତ କରିପକେଇଲେ, ଓଡ଼ିଶା ନିଜର ସ୍ୱାଧୀନତା ଦୀର୍ଘ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଯେଉଁମାନଙ୍କ ବାହୁବଳରେ ଅକ୍ଷୁଣ୍ଣ ରଖିପାରିଥିଲା, ଓଡ଼ିଶାର ଯେଉଁ ପାଇକବାହିନୀ ବ୍ରିଟିଶ୍‌ବାହିନୀର ମୁକାବିଲା କରି ବହୁସଂଖ୍ୟାରେ ପ୍ରାଣଦଣ୍ଡ ଭୋଗକରି ଏବଂ ଆଣ୍ଡାମାନକୁ ନିର୍ବାସିତ ହୋଇ ଏ ଜାତିର ମାନରକ୍ଷା କରିଥିଲେ, ସେହି ଔଦ୍ର-କ୍ଷତ୍ରିୟ ବା ପାଇକ ଖଣ୍ଡାୟତ ବା କୃଷକବାହିନୀର ବଂଶଧରମାନେ ଏ ସ୍ୱାଧୀନ ଯୁଗରେ ଦଳିତ, ଘୃଣିତ ଆଉ ନିଷ୍ପେଷିତ କାହିଁକି ? ଏପରିକି ଆଦିବାସୀ, ହରିଜନମାନଙ୍କଠାରୁ ସେମାନଙ୍କର ଆର୍ଥିକ ଅବସ୍ଥା ଦୀନ କାହିଁକି ? ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜି ଦାରିଦ୍ର୍ୟର ସୀମାରେଖା ତଳେ । ସ୍ୱାଧୀନ ସରକାର ସେମାନଙ୍କ ପାଇଁ କରିଛି କ'ଣ ? ଦେଶ ତ' ତେପନ ବର୍ଷ ହେଲା ପରାଧୀନତା ଶୃଙ୍ଖଳାରୁ ମୁକ୍ତି ପାଇଲାଣି ମାତ୍ର ସ୍ଲୋଗାନ ଦେବା ବ୍ୟତୀତ କୃଷିର ଉନ୍ନତି ପାଇଁ କରିଛି କ'ଣ ? ସେମାନେ ଶିକ୍ଷାଦୀକ୍ଷାରେ ଅତି ଅନଗ୍ରସର ହେତୁ ନାନା ନିର୍ଯ୍ୟାତନା ସହ୍ୟ କରୁଅଛନ୍ତି । ଦେଶକୁ ଖାଦ୍ୟ ଯୋଗାଉଥିବା ଜାତିର ଯଦି ଏପରି ଦୁର୍ଦ୍ଦଶା ହୁଏ ତେବେ, ଏ ଦେଶ ଆତ୍ମନିର୍ଭରଶୀଳ ହୋଇପାରିବଟି ? ଆଗେଇ ପାରିବଟି ?

ଯେଉଁମାନେ ଚାଲାକ ଚତୁର ହୋଇ ଆଗୁଆ ପାଠପଢ଼ି ଇଂରାଜୀ ଶାସନକୁ ବିନାଦ୍ୱିଧାରେ ଗ୍ରହଣ କରିନେଲେ, ଦେଶଦ୍ରୋହ କାମକରି ଇଂରେଜ ଜାତିର ପ୍ରିୟଭାଜନ ହେଲେ ଏବଂ ଅନୁଗୃହୀତ ଜାଗିରି ଲାଭ କଲେ, ଦେଶ ନାମରେ ନିଜର ଓ ଆତ୍ମୀୟ ସ୍ୱଜନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ କରିବାରେ ଲାଗିଲେ, ସରଳ ନିରୀହ ନିରକ୍ଷର ଲୋକମାନଙ୍କୁ ଭୁଲେଇ ଦେଇପାରିଲେ, ସେମାନେ ଏ ଯୋଦ୍ଧା ଜାତିର ଅନଗ୍ରସରତା ପାଇଁ ଦାୟୀ ନୁହଁନ୍ତି କି ? ଏହିକଥା ମନ ଭିତରେ ପୋଷଣକରି ସେମାନଙ୍କ ଅନୁଷ୍ଠାନ ସ୍ୱାଭିମାନୀ ପାଇକ ଅନୁଷ୍ଠାନର ସଭାପତି ହେବାକୁ ସ୍ୱୀକୃତି ପ୍ରଦାନ କଲି ।

## ସଂଗଠନରେ ଯୋଗଦେବାର ଉଦ୍ଦେଶ୍ୟ :

ଏହି ଅନଗ୍ରସର ଜାତି ମଧ୍ୟରେ ଏକ ଶିକ୍ଷାଗତ ତଥା ସାଂସ୍କୃତିକଚେତନା ଜାଗ୍ରତ କରିପାରିଲେ ଏକ ମହତ୍ତର କାମ କରିପାରିବି ବୋଲି ମନେ ମନେ ସିଦ୍ଧାନ୍ତ ନେଲି । ଅନୁଗାମୀ ନାମକ ଏକ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିଲି । ଏହାର ଲକ୍ଷ୍ୟ ଥିଲା ଅନଗ୍ରସର ପାଇକଜାତି ପାଇଁ କିଛି କାର୍ଯ୍ୟସାଧନ କରିବା, ସେମାନଙ୍କ ଭିତରେ ଶିକ୍ଷାଲୋକ ପ୍ରବେଶ କରେଇବା । ଏଇ ପରିପ୍ରେକ୍ଷୀରେ ଖୋର୍ଦ୍ଧା ଏବଂ ତାର ତଳିଅଞ୍ଚଳ ଭାଲିଆବାଡ଼ି, ସାହେବ ନୂଆଗାଁ, କୁମାର ବସ୍ତ, ପାଇକ ତିଗିରିଆ ଗାଁମାନଙ୍କରେ ସଭାସମିତି କରି ଶିକ୍ଷାପ୍ରତି ଚେତନା ଜାଗ୍ରତ କରିଛି । ଏପରିକି ପିପିଲି, ପୁରୀରେ ବହୁଥର ଖଣ୍ଡାୟତ ସଭାରେ ଯୋଗଦେଇ ଉଦ୍‌ବୋଧନ ଦେଇଛି । ୧୯୮୬ମସିହାରେ ଅଗ୍ରଗାମୀ ଅନୁଷ୍ଠାନ ତରଫରୁ ଖୋର୍ଦ୍ଧା ଚାନ୍ଦମାରି ପଡ଼ିଆରେ ସ୍ୱତନ୍ତ୍ର ଉତ୍କଳର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ମୋ ସଭାପତିତ୍ୱରେ ଏବଂ ମୁଖ୍ୟବକ୍ତା ସୁବକ୍ତା ଶିକ୍ଷାବିତ୍ ବାବୁ ପଦ୍ମଲୋଚନ ପାଲଟା ସିଂହଙ୍କ ଗହଣରେ ଉତ୍କଳ ଦିବସ ଅବସରରେ ମହାସମାରୋହରେ ପାଳନ କରାଯାଇଛି । ପୂର୍ବରୁ ଖୋରଧା ଜୀବନରେ ଏପରି ବର୍ଣ୍ଣାଢ଼୍ୟ ଉତ୍ସବ ସରକାରୀ ବା ବେସରକାରୀ ସ୍ତରରେ ପାଳିତ ହୋଇନଥିଲା । ସହର ଭିତରେ ନୂତନ ପ୍ରେରଣା, ନୂତନ ଉନ୍ମାଦନା ଆଣିବା ପାଇଁ ସାହି ସାହି ବୁଲି ଘରଘର ବୁଲି ସଭ୍ୟ ସଂଗ୍ରହ କରିଛି । ଆଡ଼ଭୋକେଟ ପ୍ରାଣକୃଷ୍ଣ ଦଳବେହେରା ଏହି ଅନୁଷ୍ଠାନରେ ସେକ୍ରେଟାରୀ ରୂପେ ନିର୍ବାଚିତ ହୋଇଥିଲେ । କାମ କେତେବର୍ଷ ଭଲ ଚାଲିଲା । ତତ୍ପରେ ଶତ୍ରୁମାନେ ଏହା ଭିତରେ ଖଳବୁଦ୍ଧି ପ୍ରୟୋଗ କରି ଏହାକୁ ମଳିନ କରିଦେଲେ । ଶେଷରେ ମୁଁ ପିଆରୀମୋହନ ବାବୁଙ୍କ ସଙ୍ଗେ ମିଶି ରାଜ୍ୟରେ ଜାଗରଣ ସୃଷ୍ଟି କଲି ଏବଂ ବାଙ୍କୋଇ, ସ୍ୱପ୍ନେଶ୍ୱର ମନ୍ଦିର, ବରୁଣାଇ ପୀଠ, ଖୋରଧା ତାରକେଶ୍ୱର ମନ୍ଦିର ପରିସର ପ୍ରଭୃତି ସଭାରେ ଯୋଗଦେଲି । ସବୁସ୍ଥଳରେ ମୋର ଗୋଟିଏ କଥା— ଏ ବିରାଟ ଜାତିକୁ ଶିକ୍ଷାଲୋକ ପ୍ରଦାନ ନକଲେ ଏ ଜାତି ଉଠିପାରିବ ନାହିଁ । ଏବେ ମଧ ମୁଁ ସାନପଦର, ହନୁମନ୍ତିଆ ଡ୍ୟାମ ବଙ୍ଗଳା, ଖଣ୍ଡଗିରି ଭୁବନେଶ୍ୱରରେ ଖଣ୍ଡାୟତ ଭାଇମାନଙ୍କର ସଭାରେ ଯୋଗଦେଇ ସେହି ନିଷ୍ପେଷିତ ଜାତିଭାଇମାନଙ୍କୁ ଉଦ୍‌ବୋଧନ ଦେଉଛି । ମୋର ବଳ କମି କମିଗଲେ ମଧ ମୁଁ ଭାଇମାନଙ୍କ ପାଇଁ କାର୍ଯ୍ୟ କରିବାରେ ଲାଗିଛି । ଖୋର୍ଦ୍ଧା ସହରରେ ଏକ ପାଇକ ସଙ୍ଗଠନ ଗୃହ ଉଦ୍‌ଘାଟିତ ହୋଇଛି । ଆଶା କରୁଛି ଦିନେ ଏ ଜାତି ସମଗ୍ର ଓଡ଼ିଶାରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବ ।

## ଖୋରଧା ସାହିତ୍ୟ ସଂସଦରେ ଯୋଗଦାନ :

ଖୋର୍ଦ୍ଧା ସାହିତ୍ୟ ସଂସଦ ୧୯୮୫ ମସିହା ଡିସେମ୍ବର ମାସ ୩୦ ତାରିଖରେ ଗୋପାଳକୃଷ୍ଣ ଦାସଙ୍କ ଆବାହକତ୍ୱରେ ଅଧ୍ୟାପକ ବାବୁ ଲକ୍ଷ୍ମୀନାରାୟଣ ରାୟସିଂହଙ୍କ ତତ୍ତ୍ୱାବଧାନରେ କେତେଜଣ ଉତ୍ସାହୀ ଯୁବକଙ୍କ ଚେଷ୍ଟାରେ ପ୍ରତିଷ୍ଠିତ ହେଲା । ବାବୁ ଲକ୍ଷ୍ମୀନାରାୟଣ ରାୟସିଂହ ପ୍ରତିଷ୍ଠାତା-ସଭାପତି ହେଲେ । ମୁଁ ଅବସର ନେଲିଣି । କାମ କିଛି ନାହିଁ । ଟିଉସନ କରିବାକୁ ଆଗ୍ରହ ନାହିଁ । ବେକାର ହୋଇ ବସିଥାଏ । କିଏ ଜଣେ ମୋତେ କହିଲେ ସାହିତ୍ୟ ସଂସଦରେ ଯୋଗଦେବା ପାଇଁ । ପ୍ରଥମେ ବର୍ଷକୁ ଦଶ ଟଙ୍କା ଚାନ୍ଦା ଦେଇ ୧୯୮୬ ମସିହା ମାର୍ଚ୍ଚ ମାସରେ ଉକ୍ତ ସଂସଦର ସଭ୍ୟ ରହିଲି । ପ୍ରତିମାସ ଦ୍ୱିତୀୟ ରବିବାର ଦିନ ଅଧିବେଶନ ବସୁଥିଲା । ପ୍ରାୟ ଅପରାହ୍ଣ ଚାରି ଘଟିକାରୁ ରାତ୍ରି ସାତ ଘଟିକା ପର୍ଯ୍ୟନ୍ତ ଆଲୋଚନା ସମାଲୋଚନା ଚାଲୁଥିଲା । ସେତେବେଳେ ସଭ୍ୟ ଥିଲେ ସର୍ବଶ୍ରୀ ପଦ୍ମଲୋଚନ ପାଇଟା ସିଂହ, ବଂଶୀଧର ରାଉତ, ଗୋପାଳକୃଷ୍ଣ ଦାସ, ପ୍ରାଣକୃଷ୍ଣ ଦଳବେହେରା, ବିମଳ ଚନ୍ଦ୍ର ଷଡ଼ଙ୍ଗୀ, ଶ୍ରୀମତୀ ଶ୍ୱେତପଦ୍ମାସିନୀ ମହାନ୍ତି, ବନଜଦେବୀ, ରମାଦେଇ ପ୍ରଭୃତି । ମୁଁ ପ୍ରତିଥର ପ୍ରବନ୍ଧଟିଏ ନେଇ ସେଠାରେ ପାଠ କରୁଥିଲି । ତା'ଉପରେ ବି ଆଲୋଚନା ହେଉଥିଲା । ଯେକୌଣସି ସଭାସମିତିରେ ସଭ୍ୟ ହେଲେ ମୁଁ ସର୍ବଦା ଅନୁଭବ କରେ ଏ ସଭାର ଅଭାବ ଅସୁବିଧା କ'ଣ ? କାହିଁକି ବେଶୀ ସଂଖ୍ୟକ ସଭ୍ୟ ଏଠାକୁ ଆସୁନାହାନ୍ତି ? ପଚାରିଲି ଏ ସଂସଦର ସଭାପତି କିଏ ? ସେ ତ ଆଦୌ ଏଥିରେ ଯୋଗଦେଉନାହାନ୍ତି ? ସେ ପର୍ଯ୍ୟନ୍ତ ସଭାପତି ମହୋଦୟଙ୍କୁ ଆମେ ଦେଖି ନଥିଲୁ । ତେଣୁ ମୁଁ ଗୋଟିଏ ଅଭିଯୋଗ କଲି । ସଭାପତି ତ ମୂଳରୁ ଆସୁନାହାନ୍ତି । ସଭାପତି ହେଉଛନ୍ତି ସଭାର ଭୂଷଣ, ସମସ୍ତ ମାସିକ ଆସରରେ ସେ ଉପସ୍ଥିତ ରହିବା ବାଞ୍ଛନୀୟ । ସେ ଯଦି ନ ରହୁଛନ୍ତି ତେବେ ଅନ୍ୟଜଣଙ୍କୁ ସଭାପତି କରାଯାଉ । ପଦ୍ମଲୋଚନବାବୁ ହୁଅନ୍ତୁ, ବଂଶୀଧର ରାଉତ ହୁଅନ୍ତୁ ନଚେତ୍ ବନଜଦେବୀ ହୁଅନ୍ତୁ । ସେମାନେ ଯୁବକ ଯୁବତୀ, ସେମାନଙ୍କଠାରେ ଅଫୁରନ୍ତ ବଳ ଅଛି, ସାହିତ୍ୟିକ ପ୍ରତିଭା ଅଛି । ମାତ୍ର ସେମାନେ କେହି ଦାୟିତ୍ୱ ମୁଣ୍ଡାଇବାକୁ ଆଗେଇ ଆସିଲେ ନାହିଁ ।

## ମୋର ସଭାପତି ଆସନ ଲାଭ :

କଣ ଚିନ୍ତାକରି ଏ ଅଭାଗା ଉପରେ ଦାୟିତ୍ୱ ଲଦିଦେଲେ । ବୋଧହୁଏ ଜୁନ କି ଜୁଲାଇ ମାସରେ ମୁଁ ସର୍ବସମ୍ମତିକ୍ରମେ ସଭାପତି ଆସନ ଗ୍ରହଣ କଲି ।

ମୁଁ ସଭାପତି ଦାୟିତ୍ୱରେ ରହିବା ପରଠାରୁ ସଂସଦରେ ନୂତନ ଜୀବନ ଭରିଦେବା ପାଇଁ ଅବିରତ ଉଦ୍ୟମ ଚଳାଇଲି । ଆଜୀବନ ସଭ୍ୟ ଚାନ୍ଦା ଏକଶତ ଟଙ୍କା ଥିଲା, ତାକୁ ଦେଲି । ସହର ସାରା ଭ୍ରମଣ କରି ସଭ୍ୟ ସଂଗହ କଲି । ପଦ୍ମଲୋଚନବାବୁ ବଂଶୀଧର ବାବୁ, ବନଜଦେବୀ ମୋତେ ପ୍ରେରଣା ଯୋଗାଉଥାନ୍ତି । ମୁଁ ଯେତେବେଳେ ଖୋର୍ଦ୍ଧା ସାହିତ୍ୟ ସଭାରେ ସଭାପତିରୂପେ ନିର୍ବାଚିତ ହେଲି ମୋ' ମନରେ ଗୋଟିଏ ଭାବନା ଜାଗରିତ ହେଲା । ମୁଁ ଯେପରି ସଭାପତି ପାଇଁ ଯୋଗ୍ୟ ହେବି, ସେଥିପାଇଁ ଗଳ୍ପ, ପ୍ରବନ୍ଧ, ରଚନା କରିବାରେ ମନଦେଲି । ପୂର୍ବରୁ ମୋର କର୍ମମୟ ଜୀବନରେ ଚାରିଟି ପୁସ୍ତକ ପ୍ରଣୟନ କରିଥିଲି । ସମାଲୋଚନାମୂଳକ ପ୍ରବନ୍ଧ ମାତୃଭୂମିରେ ପ୍ରକାଶ କରିବାକୁ ପଠାଉଥିଲି ଏବଂ ଖୋରଧା ସ୍କୁଲ ମୁଖପତ୍ର ଅବକାଶରେ ଛପାଉଥିଲି । ସେତେବେଳେ କର୍ମ ବନ୍ଧନରେ ବାନ୍ଧି ହୋଇଥିଲି, ଏବେ ତ ମୁକ୍ତ । ତେଣୁ ଜୋରସୋରରେ ଲେଖାମାନ ଲେଖି ସମାଜ, ସମ୍ବାଦ, ସମୟ, ପ୍ରଜାତନ୍ତ୍ର, ଧରିତ୍ରୀରେ ପ୍ରକାଶ କଲି । ପ୍ରତ୍ୟେକ ସାହିତ୍ୟ ସଭାରେ ସଭ୍ୟମାନଙ୍କୁ ଉଦ୍‌ବୋଧନ ଦେବାରେ ଲାଗିପଡ଼ିଲି ।

## ଉତ୍କଳ ସାହିତ୍ୟ ସମାଜର ସୃଷ୍ଟି ବିଷୟ ବର୍ଣ୍ଣନା କରି ଲେଖକମାନଙ୍କୁ ପ୍ରେରଣା :

ଏହି ପରିପ୍ରେକ୍ଷୀରେ ସଭ୍ୟମାନଙ୍କୁ ଉତ୍ସାହିତ କରିବା ପାଇଁ ଉତ୍କଳର ଶ୍ରେଷ୍ଠ ସାହିତ୍ୟକ ତଥା ସାଂସ୍କୃତିକ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସୃଷ୍ଟି ଓ ପ୍ରଗତି ସମ୍ବନ୍ଧେ ସଭ୍ୟମାନଙ୍କ ସମ୍ମୁଖରେ ବୟାନ କଲି । କହିଲି ଅତୀତକୁ ରୋମନ୍ଥନ କରି ବ୍ୟକ୍ତି ଭବିଷ୍ୟତ ଆଡ଼କୁ ଅଗ୍ରସର ହୋଇଥାଏ ।୧୮୯୩ ମସିହା ଡିସେମ୍ବର ୧୬ ତାରିଖ ଦିନ ସାହିତ୍ୟିକ ନର୍ମାଲ ସ୍କୁଲର ଶିକ୍ଷକ ବାବୁ ଚନ୍ଦ୍ରମୋହନ ମହାରଣାଙ୍କ ପ୍ରେରଣାରେ ଓ ପ୍ରଧାନଶିକ୍ଷକ ଭକ୍ତକବି ମଧୁସୂଦନ ରାଓଙ୍କ ସଭାପତିତ୍ୱରେ ଓଡ଼ିଆ ଭାଷାର ପ୍ରଥମ ଆଲୋଚନା ସଭା ନର୍ମାଲ ସ୍କୁଲ ଛାତ୍ରମାନଙ୍କ ଗହଣରେ ପରିଚାଳିତ ହେଲା । ପ୍ରଥମେ ସଭାପତି ପ୍ରଧାନଶିକ୍ଷକ ଶ୍ରୀ ମଧୁସୂଦନ ରାଓ ଓ ସଂପାଦକ ସେହି ନର୍ମାଲ ସ୍କୁଲର ଗଣିତ ଶିକ୍ଷକ ଚନ୍ଦ୍ରମୋହନ ମହାରଣା ରହିଲେ । ସେହି ନର୍ମାଲ ସ୍କୁଲରେ ଆଲୋଚନା ସଭା ନିୟମିତ ଭାବରେ ଚାଲିଲା ଏବଂ ସେହି ଦିନମାନଙ୍କର ବରେଣ୍ୟ ସାହିତ୍ୟିକ ବାଗ୍ମୀ ବିଶ୍ୱନାଥ କର, ପଲ୍ଲୀକବି ନନ୍ଦକିଶୋର ବଳ, କୃଷ୍ଣ ପ୍ରସାଦ ଚୌଧୁରୀ ଯୋଗ ଦେଉଥିଲେ । ନର୍ମାଲ ସ୍କୁଲର ଛାତ୍ର ଓ ଶିକ୍ଷକମାନେ ବି ସାହିତ୍ୟ ସଭାରେ ଅଂଶଗ୍ରହଣ କରୁଥିଲେ । ୧୮୯୩ର ସେହି ଆଲୋଚନା

ସଭାଟି ୧୯୦୩ ମସିହା ମଇ ମାସ ୭ ତାରିଖରେ ଉତ୍କଳ ସାହିତ୍ୟ ସମାଜରୂପେ ଏକ ବୃହତ୍ ରୂପ ଧାରଣ କଲା । କବିବର ରାଧାନାଥ ରାୟ ପ୍ରଥମ ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରିଥିଲେ । ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ସେ ଚାରିଗୋଟି ପନ୍ଥା ନିର୍ଣ୍ଣୟ କରିଥିଲେ — (୧) ପ୍ରାଚୀନ ପାଣ୍ଡୁଲିପି ସଂଗ୍ରହ ଓ ସାଧାରଣ ଓଡ଼ିଆ ପୁସ୍ତକାଗାର ସ୍ଥାପନ (୨) ଯୁବ ଲେଖକମାନଙ୍କୁ ଉତ୍ସାହ ପ୍ରଦାନ କରିବା ପାଇଁ ପାଣ୍ଠି ଗଠନ (୩) ଓଡ଼ିଆ ଭାଷାର ଇତିହାସ ସଙ୍କଳନ (୪) ପ୍ରାଚୀନ ଉତ୍କଳ ସାହିତ୍ୟ ଆଲୋଚନା । ସାହିତ୍ୟିକ ମୁରାରୀ ମୋହନ ଜେନା କହନ୍ତି, "୧୯୦୩ ମସିହା ମଇ ମାସ ୭ ତାରିଖରେ ଜାତୀୟ ଗୌରବ ମଧୁସୂଦନ ଦାସଙ୍କ ନିର୍ଦ୍ଦେଶ ଓ ପରାମର୍ଶରେ ମଧୁସୂଦନ ରାଓଙ୍କ ଆଲୋଚନା ସଭାଟି ଉତ୍କଳ ସାହିତ୍ୟ ସମାଜ ନାମରେ ନାମିତ ହେଲା । ଅତଏବ ମଧୁସୂଦନ ଦାସ ଏହାର ପ୍ରାଣ ପ୍ରଦାନ କଲେ ଓ ଭକ୍ତକବି ମଧୁସୂଦନ ରାଓ ଏହି ଅନୁଷ୍ଠାନର ଧାଈ ରୂପେ କାମ କଲେ ।" ୧୯୦୩ ମସିହା ଡିସେମ୍ବର ମାସ ୩୦ ତାରିଖ ସମସ୍ତ ଉତ୍କଳବାସୀଙ୍କ ଏକତ୍ରୀକରଣ ନିମନ୍ତେ ଯେଉଁ ଜାତୀୟ ମହାସଭା ଉତ୍କଳ ସମ୍ମିଳନୀ, ଜାତୀୟଗୌରବ ମଧୁସୂଦନ ଦାସଙ୍କ ପ୍ରଚେଷ୍ଟାରେ ଗଢ଼ାହେଲା ତାର ସମସ୍ତ ବିବରଣୀ ମାତୃଭାଷା ଓଡ଼ିଆରେ ଲିପିବଦ୍ଧ ହେବ ବୋଲି ସ୍ଥିର ହେଲା ଓ ସମ୍ମିଳନୀ କାର୍ଯ୍ୟ ଇଂରାଜୀରେ ନହୋଇ ଓଡ଼ିଆ ଭାଷାରେ ଦ୍ରୁତ ଗତିରେ ଆଗେଇ ଚାଲିଲା ।

ସେହି ଉତ୍କଳ ସାହିତ୍ୟ ସମାଜ ଆଜି ଏକଶତବର୍ଷ ବେଳକୁ ଏକ ବିରାଟ ବଟ ଦ୍ରୁମରେ ପରିଣତ ହୋଇଅଛି । ଏବେ ମୁଁ କହିଲି ଭାଇମାନେ, ଆମ୍ଭେମାନେ ସେହି ମହାନ୍ ମହାନ୍ ସାହିତ୍ୟରଥୀମାନଙ୍କର ପଦାଙ୍କ ଅନୁସରଣ କରିବା ଏବଂ ଓଡ଼ିଆ ଭାଷାର ଉନ୍ନତି ପାଇଁ ଏକାଧିକ ସାହିତ୍ୟ ସଭାର ପ୍ରତିଷ୍ଠା କରିବା ଉଚିତ । ଏଥିମଧ୍ୟରେ ଖୋରଧାରେ ଜନସଂଖ୍ୟା ଚାଳିଶ ହଜାରରୁ ଊର୍ଦ୍ଧ୍ୱ ହେଲାଣି । ହାଇସ୍କୁଲ ସଂଖ୍ୟା ପାଞ୍ଚରେ ପହଞ୍ଚିଲାଣି । ଜାତି- ଧର୍ମ-ବର୍ଣ୍ଣ ନିର୍ବିଶେଷରେ ବହୁଲୋକ ବିଦ୍ୟା ଅଧ୍ୟୟନ କଲେଣି । ଗଳ୍ପ, ଉପନ୍ୟାସ, ପ୍ରବନ୍ଧ ରଚନା କରିବାକୁ ଆଗେଇ ଆସିଲେଣି । ଗ୍ରାମ ଓ ସହରରେ ବହୁ ସାହିତ୍ୟସଭା ଅନୁଷ୍ଠିତ ହେଲେ ଦେଶର ଅଗଣିତ ନୂତନ ସାହିତ୍ୟିକ ବନ୍ଧୁଗଣ ଉତ୍ସାହିତ ହୋଇ ମାତୃଭାଷାର ଉନ୍ନତିରେ ମନପ୍ରାଣ ଢାଳିଦେବେ । ଖୋରଧାର ଲୁପ୍ତ ସଂସ୍କୃତିର ଉନ୍ମୋଚନ କରିବେ । ଏଥିପାଇଁ ଖୋରଧା ସାହିତ୍ୟ ସଂସଦ୍‌ର ସୃଷ୍ଟି । ଅତିକମ୍‌ରେ ଖୋରଧା ଓ ତାର ଆଖପାଖର ସାହିତ୍ୟିକମାନେ ଏଥିରେ ଅଂଶଗ୍ରହଣ କରି ପ୍ରବନ୍ଧ, ଗଳ୍ପ, କବିତା ମାଧ୍ୟମରେ ଦେଶର ସାମାଜିକ, ରାଜନୀତିକ, ଆଧ୍ୟାତ୍ମିକ ଜୀବନର ରୂପରେଖ ଦେଇ ସମାଜ ଜୀବନକୁ

ଗରିମାମୟ କରିବେ ଓ ଉଚ୍ଚତର ସୋପାନକୁ ନେଇଯିବେ । ଏହିପରି ଭାବନା ମନରେ ସଞ୍ଚୟ କରି ଖୋରଧା ସାହିତ୍ୟ ସଂସଦର ସଭାପତି ପଦ ଗ୍ରହଣ କରିଥିଲି । ପୂର୍ବରୁ ମୋର ସାହିତ୍ୟ ପ୍ରତି ଅଭିରୁଚି ଥିଲା । କାର୍ଯ୍ୟ ଚାପରେ ତାହା ଚିପି ହୋଇଯାଇଥିଲା । ଏବେ ତାହା ପୁନର୍ଜୀବିତ ହେଲା ।

## ସାହିତ୍ୟରେ ମୋର ନୂତନ ପ୍ରଚେଷ୍ଟା :

ସଭାମାନଙ୍କରେ ଯୁବ ଲେଖକ ଓ ଲେଖିକା ଯୋଗଦେଲେ । ସାହିତ୍ୟସଭା ନିୟମିତ ଭାବେ ଚାଲିଲା । ଧମାଧମ କାମ ଚାଲିଲା । ପ୍ରଥମ ବାର୍ଷିକ ସଭା ୧୯୮୭ ମସିହା ଜାନୁଆରୀ ମାସରେ ଅନୁଷ୍ଠିତ ହେଲା । ସଂସଦର ମୁଖପତ୍ର କସ୍ତୁରୀର ପ୍ରଥମ ସଂଖ୍ୟା ଉନ୍ମୋଚିତ ହେଲା । କସ୍ତୁରୀ ଉନ୍ମୋଚନ ପାଇଁ ବିଶିଷ୍ଟ ସଭ୍ୟ ବାବୁ ପଦ୍ମଲୋଚନ ପାଲଟାସିଂହଙ୍କର ଆର୍ଥିକ ସାହାଯ୍ୟ ଉଲ୍ଲେଖଯୋଗ୍ୟ ।

ଦ୍ୱିତୀୟ ବର୍ଷ ପାଇଁ ପୁନଃ ମୁରଲୀଧର ପ୍ରଧାନ ସଭାପତି ନିର୍ବାଚିତ ହେଲେ । ବନଜଦେବୀ ଉପସଭାପତି, ସର୍ବଶ୍ରୀ ବିମଳ ଚନ୍ଦ୍ର ଷଡ଼ଙ୍ଗୀ ସଂପାଦକ ଓ ଗୋପାଳକୃଷ୍ଣ ଦାସ କାର୍ଯ୍ୟକାରୀ ସଂପାଦକ ରୂପେ ବଛାହେଲେ । ୧୯୮୮ ଜାନୁଆରୀ ପହିଲାରେ ସଂସଦର ଦ୍ୱିତୀୟ ବାର୍ଷିକସଭା ଅନୁଷ୍ଠିତ ହେଲା ଏବଂ କସ୍ତୁରୀ ନୂତନ ସମ୍ଭାର ବହନ କରି ଆତ୍ମପ୍ରକାଶ କଲା । ସଭ୍ୟ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଉତ୍ସାହ ଉଦ୍ଦୀପନା ବୃଦ୍ଧି ପାଇଲା । ତୃତୀୟ ବର୍ଷ ନିର୍ବାଚନରେ ପୁନଃ ଶ୍ରୀ ପ୍ରଧାନ ସଭାପତି ଦାୟିତ୍ୱ ବହନ କଲେ । ସଂପାଦକ ହେଲେ ଶ୍ରୀ ବୈକୁଣ୍ଠ ନାଥ ରାଜଗୁରୁ, କାର୍ଯ୍ୟକାରୀ ସଂପାଦକ ଶ୍ରୀ ଗୋପାଳକୃଷ୍ଣ ଦାସ, କୋଷାଧ୍ୟକ୍ଷ ଶ୍ରୀ ହାଡ଼ିବନ୍ଧୁ ଦାସ । ଏମାନଙ୍କ ବ୍ୟତୀତ ସର୍ବଶ୍ରୀ ପଦ୍ମଲୋଚନ ପାଲଟାସିଂହ, ବଂଶୀଧର ରାଉତ, ବିମଳ ଚନ୍ଦ୍ର ଷଡ଼ଙ୍ଗୀ, ଅଶୋକ କୁମାର ମଙ୍ଗରାଜ, ରମେଶ ଚନ୍ଦ୍ର ଭଞ୍ଜ, ଶ୍ରୀମତୀ ବନଜଦେବୀ ଓ ଶ୍ରୀମତୀ ଶ୍ୱେତପଦ୍ମାସିନୀ ମହାନ୍ତି କାର୍ଯ୍ୟକାରୀ କମିଟିରେ ସ୍ଥାନ ପାଇଲେ । ଏ ବର୍ଷ ମୋର ଦୁର୍ଭାଗ୍ୟ ମୁଁ କଳାଝାଡ଼ାରେ ଶଯ୍ୟାଶାୟୀ ହେଲି । ଯେତେ ତନାଘନା ଲଗାଇଲେ ମଧ କସ୍ତୁରୀ ଛପାଯାଇପାରିଲା ନାହିଁ । କେବଳ ବାର୍ଷିକ ଅଧିବେଶନରେ କବିତା ପାଠୋତ୍ସବକରି ସଭା ସମ୍ପନ୍ନ ହେଲା । ମୁଁ ବଡ଼ ଲଜ୍ଜିତ ହେଲି । ମର୍ମେ ମର୍ମେ ଦୁଃଖ ଅନୁଭବ କଲି । ୧୯୮୯ ମସହି ଡିସେମ୍ବର ୩୦ ତାରିଖରେ ସଂସଦର ତୃତୀୟ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଲା । ମୁଖ୍ୟବକ୍ତା ଓ ମୁଖ୍ୟଅତିଥିରୂପେ ଯଥାକ୍ରମେ ଡକ୍ଟର ସଂଘମିତ୍ରା ମିଶ୍ର, ଡକ୍ଟର ନାରାୟଣ ଶତପଥୀ ଯୋଗଦେଲେ । ଏହି ଅଧିବେଶନର

ଗୁରୁତ୍ୱ ହେଲା କସ୍ତୁରୀ ନୂତନ ଭାବେ ବର୍ଣ୍ଣାଢ଼୍ୟ ରୂପରେ ଆତ୍ମପ୍ରକାଶ କଲା । ପତ୍ରିକା ପ୍ରକାଶନ ପାଇଁ ସଂପାଦକ ବୈକୁଣ୍ଠ ନାଥ ରାଜଗୁରୁଙ୍କ ଦାନ ଉଲ୍ଲେଖଯୋଗ୍ୟ । ଶ୍ରୀଗୋପାଳକୃଷ୍ଣ ଦାସଙ୍କ ସହଯୋଗ ପ୍ରଶଂସନୀୟ । ଏହି ସମୟରୁ ଆମ ସାହିତ୍ୟ ସଂସଦ ତରଫରୁ ବୀରପୂଜା କରିବାର କାର୍ଯ୍ୟ ଆରମ୍ଭ ହେଲା । ସେବର୍ଷ ମୋ ସଭାପତିତ୍ୱରେ ଓଡ଼ିଶାର ତଥା ଖୋରଧାର ବିଶିଷ୍ଟ ମୃଣ୍ମୟ ଶିଳ୍ପୀ ଶ୍ରୀ ଲୋକନାଥ ପ୍ରଧାନଙ୍କୁ ମଧ୍ୟ ସମ୍ବର୍ଦ୍ଧିତ କରାଗଲା । ସେହିବର୍ଷଠାରୁ ସଭାପତି ତାଙ୍କ ପରଲୋକଗତ ସହଧର୍ମିଣୀ ଶ୍ରୀମତୀ ବନବାସିନୀ ଦେବୀଙ୍କ ସ୍ମୃତିରେ ସବଡିଭିଜନର ହାଇସ୍କୁଲସ୍ତରୀୟ ତିନିଗୋଟି ପୁରସ୍କାର ଓ ସଂପାଦକ ଶ୍ରୀ ରାଜଗୁରୁ ତାଙ୍କ ପିତାଙ୍କ ସ୍ମୃତିରେ କଲେଜସ୍ତରୀୟ ତିନିଗୋଟି ପୁରସ୍କାର ମାତୃଭାଷାର ଉନ୍ନତିକଳ୍ପେ ପ୍ରଦାନ କରିଥିଲେ । ଉକ୍ତ ପୁରସ୍କାରଦ୍ୱୟ ସବୁଦିନ ପାଇଁ ପ୍ରଦାନ କରାଯିବାର ବ୍ୟବସ୍ଥା କରାଯାଇଛି । ଖୋର୍ଦ୍ଧା ସାହିତ୍ୟ ସଂସଦ ଖୋରଧା ସହରରୁ ରାଜ୍ୟ ଭିତରକୁ ପ୍ରବେଶ କଲା ।

୧୯୯୦-୯୧-୯୨ ମସିହାରେ ମଧ୍ୟ ମୁଁ ସାହିତ୍ୟ ସଂସଦର ସଭାପତି ହୋଇ ନିର୍ବାଚିତ ହୋଇଥିଲି ଏବଂ ସଂସଦର ସାମୂହିକ ଉନ୍ନତି ନିମନ୍ତେ ପ୍ରାଣପ୍ରଣେ ଚେଷ୍ଟା କରିଥିଲି । ବାର୍ଷିକ ଉତ୍ସବମାନଙ୍କରେ ବିଶିଷ୍ଟ ସଂଗ୍ରାହକ ଶ୍ରୀ ଦାଶରଥି ପଟ୍ଟନାୟକ, ବରେଣ୍ୟ କବି ବିନୋଦ ନାୟକ, ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ, ବିଶିଷ୍ଟ ଔପନାସିକ ଶ୍ରୀ ଲକ୍ଷ୍ମୀଧର ନାୟକ, ପ୍ରଖ୍ୟାତ ଗାଳ୍ପିକ ଶ୍ରୀ ସାତକଡ଼ି ହୋତା, ପ୍ରାବନ୍ଧିକ ଶ୍ରୀ ଗଣେଶ ପ୍ରସାଦ ପରିଜା, କବି ଓ ସମାଲୋଚକ ଶ୍ରୀ ଶତ୍ରୁଘ୍ନ ପାଣ୍ଡବ, ଶ୍ରୀ ଶ୍ରୀନିବାସ ପାଠୀ, ସାହିତ୍ୟିକ ଶ୍ରୀ ପଠାଣି ପଟ୍ଟନାୟକ, ଐତିହାସିକ ଡକ୍ଟର ଜଗନ୍ନାଥ ପଟ୍ଟନାୟକ ଓ କବି ସଚ୍ଚି ରାଉତରାୟଙ୍କୁ ଅଭିନନ୍ଦିତ କରାଯାଇଥିଲା । ସାହିତ୍ୟ ସଂସଦର ପ୍ରାରମ୍ଭକାଳରେ ଐତିହାସିକ ଦିଗମ୍ବର ଶ୍ରୀଚନ୍ଦନ ଓ କେଦାର ନାଥ ମହାପାତ୍ରଙ୍କୁ ମରଣୋତ୍ତର ପୁରସ୍କାର ପ୍ରଦାନ କରାଯାଇଥିଲା । ସେତେବେଳେ ଜଟଣୀ, କୁମାରବସ୍ତ, ଗୁରୁଜଙ୍ଗ, ବେଗୁନିଆର ସାହିତ୍ୟପ୍ରେମୀଗଣ ପ୍ରତିମାସ ଅଧିବେଶନରେ ଯୋଗଦେଉଥିଲେ । ମୁଁ ପ୍ରତି ଅଧିବେଶନରେ ଗୋଟିଏ ଲେଖାଏଁ ଗଳ୍ପ ବା ପ୍ରବନ୍ଧ ପାଠ କରୁଥିଲି । ମୋ ଲେଖାଗୁଡ଼ିକ ନୀତିପୂର୍ଣ୍ଣ ଓ ଜାତୀୟତା ଭାବରେ ଆପ୍ଲୁତ ଥିଲା । ଖୋରଧାର ଗୌରବମୟ ଅତୀତକୁ ଖୋରଧା ବାହାରେ ପ୍ରକାଶ କଲେ ବାହାର ଲୋକେ ତ ଜାଣିବେ, ଖୋରଧା ଲୋକ ବି ଜାଣିବେ । ଏହି ଭାବନାର ବଶବର୍ତ୍ତୀ ହୋଇ ୩୧ଟି କ୍ଷୁଦ୍ର ଗଳ୍ପ ଓ ୫୩ଟି ଜୀବନୀ ପ୍ରବନ୍ଧ ଏବଂ ବାରୋଟି ଐତିହାସିକ ପ୍ରବନ୍ଧ ପ୍ରକାଶ କଲିଣି ।

## ଅନ୍ୟ ଏକ ପ୍ରତିଦ୍ୱନ୍ଦ୍ୱୀ ସଂସଦ :

ମୁଁ ସାହିତ୍ୟ ସଂସଦର ସଭାପତି ଆସନରେ ଥିବାବେଳେ ଆମରି ସଭ୍ୟମାନଙ୍କ ଭିତରୁ କେତେ ମୋ ବିରୁଦ୍ଧରେ କୁହାରଟନା କରି ଏକ ନୂତନ ସଂସଦ ସନ୍ଧ୍ୟା ସାହିତ୍ୟ ସଂସଦ ନାମରେ ଗଢ଼ିଦେଲେ ଏବଂ ଧନୀ ଉଚ୍ଚ ଚାକିରିଆଙ୍କଠାରୁ ଧନ ଆଣି ସେମାନଙ୍କୁ ମାନପତ୍ର ଯାଚି ପ୍ରଦାନ କଲେ । ମୂଳ ସଂସଦରୁ କେତେକ ସେଥିରେ ଯୋଗଦେଲେ । ମୂଳ ସାହିତ୍ୟ ସଂସଦକୁ ଭାଙ୍ଗିଦେବାପାଇଁ ଚେଷ୍ଟା ଚଳାଇଲେ । ମାତ୍ର ମୋର ଦୃଢ଼ତା ମୂଳ ଅନୁଷ୍ଠାନକୁ ଧ୍ୱଂସ କରିବାକୁ ଦେବିନାହିଁ । କିନ୍ତୁ କେତେଜଣ ସାହିତ୍ୟିକ ବନ୍ଧୁ ସନ୍ଧ୍ୟା ସାହିତ୍ୟ ସଂସଦକୁ ସମର୍ଥନ କଲେ ଏବଂ ସେଥିରେ ଯୋଗଦେଲେ । ସଂସଦର ଟାଣୁଆ ସଭ୍ୟ କେତେଜଣ ସେ ସଂସଦରେ କେତେଥର ଯୋଗଦେଲେ । ମୋର ମନୋବଳ ଅବଶ୍ୟ ଦୃଢ଼ । 'ସନ୍ଧ୍ୟା ସାହିତ୍ୟ ସଂସଦ'ର କର୍ମଠ ସଂପାଦକ ଘରଘର ବୁଲି ସଭ୍ୟ ସଂଗ୍ରହ କଲେ ଓ ଚାନ୍ଦା ଆଦାୟ କଲେ । ମୁଁ ସତୁରି ବର୍ଷର ବୃଦ୍ଧ । ମୁଁ ଏସବୁ କାର୍ଯ୍ୟ କରିବାକୁ ଅକ୍ଷମ ହେଲି । ଦିବାକର ପାଟଶାଣୀ ମୋର ଛାତ୍ର, ମୋତେ କହିଲେ ସାର୍, "ଆପଣ ସନ୍ଧ୍ୟା ସାହିତ୍ୟ ସଂସଦରେ ମିଶିଯାଆନ୍ତୁ ।" ମୁଁ ସ୍ୱାଭିମାନୀ, କହିଲି, "କ'ଣ ହେଲା ? ମୂଳ ଅଗ ସଙ୍ଗେ ମିଶିବ ? ସେମାନେ ଏ ସଂସଦରୁ ଗଲେ କାହିଁକି ?" ମୋର କଠୋର ଶୃଙ୍ଖଳା ଭିତରେ ବୋଧହୁଏ ରହିପାରିଲେ ନାହିଁ । ପୁନଶ୍ଚ ଈର୍ଷାପରାୟଣ ହେଲେ । ମୁଁ ସବୁ ସମ୍ଭାଳି ରହିଲି । ମାତ୍ର ଦେଖୁଁ ଦେଖୁଁ ଦୁଇ ତିନି ବର୍ଷ ପରେ 'ସନ୍ଧ୍ୟା ସାହିତ୍ୟ ସଂସଦ' ଜଳ ବୁଦ୍‌ବୁଦ ପରି ମିଳେଇଗଲା । ସେମାନେ ପୁଣି ମୂଳ ସାହିତ୍ୟ ସଂସଦକୁ ଫେରିଆସିଲେ । ମୁଁ ଯଦି ମୂଳ ସଂସଦରୁ ଭାଙ୍ଗି ଦେଇଥାଆନ୍ତି ତେବେ ଅବସ୍ଥା କ'ଣ ହୋଇଥାଅନ୍ତା ? – ସବୁ ବିଶ୍ୱନିୟନ୍ତାଙ୍କ ଇଚ୍ଛା ।

## ସାହିତ୍ୟ ସଂସଦର ଅଗ୍ରଗତି :

ଖୋରଧା ସାହିତ୍ୟ ସଂସଦ ଗମ୍ଭୀରତା ସହିତ ଅଗ୍ରଗତି କଲା । ମୁଁ ୧୯୯୩ ମସିହା ପର୍ଯ୍ୟନ୍ତ ଆଠ ବର୍ଷକାଳ ଏହି ସଂସଦର ସଭାପତିରୂପେ ନିର୍ବାଚିତ ହୋଇ ସାହିତ୍ୟ ସଂସଦକୁ ବାଳରିଷ୍ଟରୁ ରକ୍ଷାକଲି ବୋଲି ମନରେ ଆନନ୍ଦ ଲାଭ କଲି । କିନ୍ତୁ ମୋର ଶତ୍ରୁ ବାହାରିଲେ । ଏହା ଲୋକଙ୍କ ଲକ୍ଷଣ । ଏଣିକି ମୁଁ ସଂସଦର କୌଣସି କର୍ମକର୍ତ୍ତାରୂପେ ରହିଲି ନାହିଁ । କେବଳ ଆଜୀବନ ସଭ୍ୟ ରହିଲି । ଏ ପର୍ଯ୍ୟନ୍ତ ଉପଦେଷ୍ଟାରୂପେ ରହି ପ୍ରତ୍ୟେକ ଅଧିବେଶନରେ ଯୋଗଦାନ କରୁଅଛି । ମୋର ସାହିତ୍ୟ ସେବା ପାଇଁ

କେନ୍ଦ୍ରସାହିତ୍ୟ ଏକାଡ଼େମୀର ବରେଣ୍ୟ ସଭାପତି ଶ୍ରୀଯୁକ୍ତ ରମାକାନ୍ତ ରଥଙ୍କ ଦ୍ୱାରା ଖୋର୍ଦ୍ଧାରେ ସମ୍ବର୍ଦ୍ଧିତ ହୋଇଥିଲି ।

ଏହି ସ୍ୱଳ୍ପସମୟ ମଧ୍ୟରେ ଆଠଖଣ୍ଡି ପୁସ୍ତକ ଓ ପୂର୍ବରୁ ଦୁଇ ତିନିଖଣ୍ଡ ପାଠ୍ୟପୁସ୍ତକ ଓ ଜୀବନୀ ସାହିତ୍ୟ ପୁସ୍ତକ ପ୍ରକାଶିତ ହୋଇଛି । ଏବେ ଆଖିକୁ ଦିଶୁନାହିଁ, ପଢ଼ିବି କଣ, ଲେଖିବି କିପରି ? ମୋର ପୁସ୍ତକଗୁଡ଼ିକ ହେଲା —

୧ । A Simple Guide to English Translation of VI, VII & VIII

୨ । ସାମାଜିକ ଶିକ୍ଷା – ୯ମ, ୧୦ମ, ଏକାଦଶ

୩ । ଦରିଆପାରିର ଆଠଟି ରତ୍ନ – ଜୀବନୀ ପୁସ୍ତକ

୪ । ମରଦେହେ ଅମର ମଣିଷ – ୧ମ ଓ ୨ୟ ଭାଗ ପରିବର୍ଦ୍ଧିତ ସଂସ୍କରଣ

୫ । ଜତୁଗୃହର ଜରଦ୍‌ଗବ (କ୍ଷୁଦ୍ରଗଳ୍ପ)

୬ । ନିର୍ବେଦର ବେଦଧ୍ୱନି (କ୍ଷୁଦ୍ରଗଳ୍ପ)

୭ । ଡୁଣ୍ଡୁଭର ବିଷଜ୍ୱାଳା (କ୍ଷୁଦ୍ରଗଳ୍ପ)

୮ । ଲାଲ ମାଟିର ସପ୍ତରଥୀ - ଜୀବନୀ ପୁସ୍ତକ

୯ । ଲାଲ ମାଟିର ସୌରଭ – ଜୀବନୀ ପୁସ୍ତକ

୧୦ । ଇତିହାସର ଝଲକ – ଐତିହାସିକ ପ୍ରବନ୍ଧ

୧୧ । କିଶୋର କୌମୁଦୀ – ନୀତିଶିକ୍ଷା ସମ୍ବଳିତ ଶିଶୁ ଗଳ୍ପ ସମୂହ

୧୨ । କେତେ ବ୍ୟଥା କେତେ ଗାଥା (ଆତ୍ମଜୀବନୀ)

## ସାହିତ୍ୟସଂସଦ ବାହାରେ ମୋ କାମ :

ମୁଁ ଜଣେ କୃତୀ ସାହିତ୍ୟିକ, ପ୍ରାବନ୍ଧିକ ବା ଗାଳ୍ପିକ ନୁହେଁ କି ମୋତେ କେହି ସ୍ୱୀକୃତି ଦେଇ ନାହାନ୍ତି । ତଥାପି ଉତ୍କଳବାଣୀ ଭଣ୍ଡାରକୁ କିଛି ସୁଖପାଠ୍ୟ ଅନୁସନ୍ଧାନମୂଳକ ପୁସ୍ତକ, ପ୍ରବନ୍ଧ ଓ ସଂସ୍କାରମୂଳକ ପୁସ୍ତକମାନ ଦାନ କରିଥିବାରୁ ମୁଁ ଆନନ୍ଦିତ । ପ୍ରତ୍ୟେକ ସଭାସମିତିରେ ଯୋଗଦେଇ ପ୍ରିୟ ଭାଇମାନଙ୍କୁ ଓ ଛାତ୍ରଛାତ୍ରୀମାନଙ୍କୁ ଉଦ୍‌ବୋଧନ ଦେବା ମୋର ଏକ କାମ ହୋଇଛି । ପ୍ରଥମେ ପେନସନର୍‌ମାନଙ୍କର ଉପସଭାପତି ରୂପେ ନିର୍ବାଚିତ ହୋଇଥିଲି । ଏବେ ସେହି ସଭାରେ ଉପଦେଷ୍ଟା ହୋଇ ରହିଛି ।

## ଶ୍ରୀରାମ ନଗର :

ଯେଉଁ ସାହି ଭିତରେ ମୋର ବାସଗୃହ ତାର ଗୋଟିଏ ନିର୍ଦ୍ଦିଷ୍ଟ ସୁନ୍ଦର ନାମ ନଥିଲା । କିଏ କେତେ ନାମରେ ସମ୍ବୋଧନ କରୁଥିଲେ । ତେଣୁ ୧୯୮୯ ମସିହାରେ ନାମ ପରିବର୍ତ୍ତନ କରି ଲୋକମାନଙ୍କର ଉପସ୍ଥିତିରେ ଓ ସ୍ୱୀକୃତିରେ ଗୋଟିଏ ଉପଯୁକ୍ତ ନାମ ଦିଆଯିବାର ସିଦ୍ଧାନ୍ତ ଗ୍ରହଣ କରାଗଲା । ସାହିର ନୂତନ ନାମ ହେଲା ଶ୍ରୀରାମ ନଗର । ଏହି ନଗରପାଇଁ ଗୋଟିଏ ଉନ୍ନୟନ ପରିଷଦ ଗଢ଼ାଗଲା । ତା'ର ନାମ ରହିଲା ଶ୍ରୀରାମ ନଗର ଉନ୍ନୟନ ପରିଷଦ, ଖୋର୍ଦ୍ଧା । ଲକ୍ଷ୍ୟହେଲା ଜନସାଧାରଣଙ୍କ ଚରିତ୍ରର ଉତ୍‌ଥାନ ପାଇଁ କାର୍ଯ୍ୟକ୍ରମ ଭିତରେ ଗୋଟିଏ ରାମମନ୍ଦିର ନିର୍ମାଣ କରାଯିବ । ସେଠାରେ ଏକ ସତ୍‌ସଙ୍ଗ ଅନୁଷ୍ଠାନ ଗଠନ କରାଯିବ । ମନ୍ଦିର ପରିସର ମଧ୍ୟରେ ଏକ ସାଧାରଣ ପୁସ୍ତକାଗାର ସ୍ଥାପନ, ବ୍ୟାୟାମଶାଳା ନିର୍ମାଣ, ଏକ ହୋମିଓପାଥିକ ଔଷଧ ବିତରଣ କେନ୍ଦ୍ର, ହନୁମାନ ମନ୍ଦିର ନିର୍ମାଣ, ଏକ ସାକ୍ଷରତା କେନ୍ଦ୍ର ସ୍ଥାପିତ ହେବାର ଲକ୍ଷ୍ୟ ଧାର୍ଯ୍ୟ କରାଗଲା । ମୁଁ ସେ ପରିଷଦର ସଭାପତି ଓ କମ୍ପାଉଣ୍ଡର ବ୍ରଜବନ୍ଧୁ ଷଡ଼ଙ୍ଗୀ ସଂପାଦକ ଅଛନ୍ତି । ଏହା ଏକ ପଞ୍ଜୀକୃତ ସଂସ୍ଥା । କାମ ଆଗେଇ ଚାଲିଛି । ମୁଁ ଏପର୍ଯ୍ୟନ୍ତ ସଭାପତି ରହିଛି ଓ ବ୍ରଜବାବୁ ସଂପାଦକ ଅଛନ୍ତି । ଖୁବ୍ ଶୀଘ୍ର ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ସମ୍ପୂର୍ଣ୍ଣ ହେବବୋଲି ଆଶା କରାଯାଉଛି । ସାହିର ସାମୂହିକ ଉନ୍ନତି ପରିଷଦର ମୁଖ୍ୟ ଲକ୍ଷ୍ୟ । ସବୁ ମଙ୍ଗଳମୟ ଜଗନ୍ନାଥଙ୍କ ଉପରେ ନିର୍ଭର କରୁଛି । ତଥାପି କଥାଅଛି 'ଚେଷ୍ଟାୟା କିଂ ନ ଲଭ୍ୟତେ' । ଆମ୍ଭେମାନେ କାମ କରିଯିବୁ । ଏବେମଧ୍ୟ ହନୁମାନ ମନ୍ଦିର ପ୍ରାଙ୍ଗଣରେ ପ୍ରତ୍ୟହ ଦୁଇ ଘଣ୍ଟା ସତ୍‌ସଙ୍ଗ ସଭା ବସୁଛି । ମୁଁ ପ୍ରତ୍ୟହ ଦୁଇ ଘଣ୍ଟା ସେଠାରେ କଟାଉଛି ।

## ଶିକ୍ଷା ପ୍ରସାରରେ ମୋର ଭୂମିକା :

ଦେଶର ଅର୍ଦ୍ଧାଧିକ ଲୋକ ନିରକ୍ଷର ତଥା ଅସଚେତନ ହେତୁ ସବୁ ଯୋଜନା ବିଫଳ ହେଉଛି । ପୁଣି ଉପର କ'ଣ ତଳ କ'ଣ ସବୁସ୍ତରରେ ଦୁର୍ନୀତିର ହୀଉଆ ମାଡ଼ି ମାଡ଼ି ଯାଉଛି । ବହୁ ଟଙ୍କା କେନ୍ଦ୍ର ସରକାର ବ୍ୟୟ କରୁଛନ୍ତି ମାତ୍ର ସବୁ 'ଅଶୀ ବିଶ୍‌ରେ' ପରିଣତ ହେଉଛି । ତଥାପି ଜନସମାଜକୁ ଠିକ୍‌ବାଟରେ ନେବାପାଇଁ ବ୍ୟକ୍ତିଗତ ଉଦ୍ୟମ ଆବଶ୍ୟକ । ଯେଉଁ ଦେଶରେ ଶିକ୍ଷା ପ୍ରସାର ପାଇଁ ନାହିଁ ଶିକ୍ଷିତ ଲୋକଙ୍କର ଘୋର ଅଭାବ, ନିରକ୍ଷର ଲୋକଙ୍କ ସଂଖ୍ୟା ସର୍ବାଧିକ ସେ ଦେଶ କିପରି ଆଗେଇବ ? ଏହି ଧାରଣାର ବଶବର୍ତ୍ତୀ ହୋଇ ଦେଶର କୋଣ ଅନୁକୋଣରେ, ଅନ୍ଦି କନ୍ଦିରେ ଶିକ୍ଷାନୁଷ୍ଠାନ କିପରି ଗଢ଼ି ଉଠିବ ସେଥିପାଇଁ ଉଦ୍ୟମ ଚଳାଇଲି ।

ପ୍ରଥମେ ଡାକରା ଆସିଲା ମୁକ୍ତାପୁର ଓ ହଳଦିଆ ମଧ୍ୟବର୍ତ୍ତୀ ବଘେଇଟାଙ୍ଗି ଗ୍ରାମରୁ । ମୁଁ ବି' ସେଇଆ ଚାହୁଁଥିଲି । ସେମାନେ ମୋତେ ନେଇ ତାଙ୍କ ଗାଁ ମାଇନର ସ୍କୁଲରେ ଦୁଇ ଦୁଇ ଥର ସଭା କରେଇଲେ । ଗ୍ରାମରୁ ବହୁଲୋକ ଜମାହେଲେ, ଯୁବକ ଓ ପ୍ରୌଢ଼ । ସବୁ ସଭାରେ ଶିକ୍ଷାର ଆବଶ୍ୟକତା ଓ ଉପାଦେୟତା ସେମାନଙ୍କୁ ବୁଝାଇବାରେ ଲାଗିଲି । ହାଇସ୍କୁଲଟିଏ ଖୋଲାଗଲା । ସେ ଗ୍ରାମରେ ମୋର ବହୁ ପୁରାତନ ଛାତ୍ର ଥିଲେ । ପ୍ରଥମେ ମୋତେ ହେଡମାଷ୍ଟରରୂପେ ମାନି ଅଷ୍ଟମ ଶ୍ରେଣୀ ଖୋଲିଲେ । ମଝିରେ ମଝିରେ ସେ ସ୍କୁଲକୁ ଯାତ୍ରାକରି ସେମାନଙ୍କୁ ଉତ୍ସାହିତ କରିବାରେ ଲାଗିଲି । ସେଠାରେ ହାଇସ୍କୁଲଟିଏ ପ୍ରତିଷ୍ଠା ହେଲା ।

ତତ୍ପରେ ଟରଟୁଆରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା ନିମନ୍ତେ ଟରଟୁଆ ଓ ଶରଧାପୁର ଗ୍ରାମବାସୀଙ୍କ ମିଳିତ ସଭାରେ ନାନାଦିଗରୁ ଆଲୋଚନା କଲି ଓ କରାଇଲି । ଥରେ ନୁହେଁ ଦୁଇ ଦୁଇ ଥର । ଶିକ୍ଷିତ ବ୍ୟକ୍ତିମାନଙ୍କୁ ଡକାଇ ଶିକ୍ଷାର ପ୍ରସାର ପାଇଁ ଚେଷ୍ଟାକଲି । ମାତ୍ର ନାନା ବିଭ୍ରାଟ ସୃଷ୍ଟିକରି ହିନ୍ଦୁ ଓ ମୁସଲମାନଙ୍କ ଭିତରେ ସଂହତିର ଅଭାବ ଦେଖାଗଲା । ହୋଇପାରିଲା ନାହିଁ । ଏହି ପରିପ୍ରେକ୍ଷୀରେ ନିକଟବର୍ତ୍ତୀ ହଳଦିପଦା ଗ୍ରାମରେ ହାଇସ୍କୁଲ ଗଠନ ପାଇଁ ପ୍ରେରଣା ଦେଲି । ସେଠାରେ ହାଇସ୍କୁଲଟିଏ ଗଢ଼ାହେଲା । ଶିକ୍ଷକ ନିର୍ବାଚନରେ ମୋତେ ସେମାନେ ବହୁଥର ଲୋଡ଼ିଛନ୍ତି ଓ ମୁଁ ସେଠାକୁ ଯାଇ ଆବଶ୍ୟକ କାର୍ଯ୍ୟପନ୍ଥା ଗ୍ରହଣ କରିଛି । ପୁରସ୍କାର ବିତରଣ ସଭା ଓ ପ୍ରତିଷ୍ଠା ଦିବସ ପାଳନରେ ଯୋଗଦେଇଛି । ଏବେସୁଦ୍ଧା ସେ ହେଡମାଷ୍ଟର ମୋର ପରାମର୍ଶ ଗ୍ରହଣ କରୁଛନ୍ତି । ଶରଧାପୁର-ଟରଟୁଆ ପଞ୍ଚାୟତରେ ଆଉ ବାଳକ ସ୍କୁଲ ହୋଇପାରିବ ନାହିଁ । ଶେଷବେଳକୁ ଉଭୟ ଗୋଷ୍ଠୀର ବୁଝାମଣାରେ ଗୋଟିଏ ବାଳିକା ହାଇସ୍କୁଲ ପ୍ରତିଷ୍ଠା କରିବା ଆୟୋଜନ ଚାଲିଲା । ସେଠାରେ ଗୋଟିଏ ବାଳିକା ହାଇସ୍କୁଲ ଖୋଲାଯାଇଛି ।

ଖୋରଧାଠାରୁ ପଚିଶ କି.ମି. ଦୂରରେ ସରପାରି ହାଇସ୍କୁଲର ପ୍ରଥମ ଉଦ୍ୟୋକ୍ତା ସ୍ୱରୂପ ଓ ପ୍ରଥମ ହେଡମାଷ୍ଟରଭାବେ ବିଦ୍ୟାଳୟ ସ୍ଥାପନକୁ ତ୍ୱରାନ୍ୱିତ କରିଥିଲି । ଗ୍ରାମବାସୀଙ୍କର ଆଗ୍ରହ ପ୍ରଶଂସନୀୟ । ନିରକାରପୁରଠାରୁ ଛଅ ମାଇଲ୍ ଦୂରରେ ଖୁଣ୍ଟିଆ-ବାଣପୁର ହାଇସ୍କୁଲ ପ୍ରତିଷ୍ଠାରେ ମଧ ମୁଁ ସାହାଯ୍ୟ କରିଛି ।

ଏତଦ୍‌ବ୍ୟତୀତ ମଝିରେ ମଝିରେ ଦଧିମାଛଗାଡ଼ିଆ, ବଡ଼ତୋଟା, କୁମାରବସ୍ତ, ପୁବୁସାହି, ଝାଁଳା, ଗୁରୁଜଙ୍ଗ, କେରଙ୍ଗ ହାଇସ୍କୁଲର ବିଭିନ୍ନ ଦିବସରେ ଅନେକବାର ଯୋଗଦାନ କରି ଛାତ୍ର ଓ ଅଭିଭାବକମାନଙ୍କୁ ଉଦ୍‌ବୋଧନ ଦେଇଛି । ସେମାନଙ୍କର କଲ୍ୟାଣ

ସାଧନ କରିଛି । ଉଣେଇଶ ବର୍ଷ ହେଲା ଖୋର୍ଦ୍ଧା ସୂଚନାଭବନ ତରଫରୁ ଅଗଷ୍ଟ ପନ୍ଦର, ଜାନୁଆରୀ ଛବିଶ, ଉତ୍କଳ ଦିବସ ପ୍ରଭୃତି ଜାତୀୟ ପର୍ବମାନଙ୍କରେ ପ୍ରତ୍ୟେକ ପ୍ରତିଯୋଗିତାରେ ନିରପେକ୍ଷ ବିଚାରକରୂପେ ନିର୍ବାଚିତ ହୋଇ ଛାତ୍ରଛାତ୍ରୀମାନଙ୍କର ମଙ୍ଗଳ ସାଧନା କରୁଛି । ପ୍ରତ୍ୟେକ ଧର୍ମସଭାରେ ଯୋଗଦେଉଛି ଏବଂ ଜାତିକଲ୍ୟାଣ ନିମନ୍ତେ ସଭାସମିତିରେ ବି ଯୋଗଦାନ କରୁଛି । କେଉଁ ସଭାକୁ ଯିବାକୁ ମନା କରୁନାହିଁ । ଅବସର ସମୟରେ କିଛି ଲେଖାଲେଖି କରି ଜୀବନଟା କଟାଉଛି । ମନର ସାଦ ମେଣ୍ଟାଇବାପାଇଁ ଜୀବନର ସାୟାହ୍ନକାଳରେ ଏଣୁତେଣୁ ଗୁଡ଼ାଏ ଲେଖୁଛି । ଜୀବନର ପ୍ରାରମ୍ଭରେ ଯେପରି ଚେଷ୍ଟାଥିଲା, ମଧ୍ୟାହ୍ନରେ ଯଦି ସେହି ଚେଷ୍ଟା ଅବ୍ୟାହତ ରହିଥାଆନ୍ତା ତେବେ ସାହିତ୍ୟ କ୍ଷେତ୍ରରେ ଉଲ୍ଲେଖନୀୟ କୃତିତ୍ୱ ହାସଲ କରିଥାଆନ୍ତି । ଏବେ ଭାବିବାକୁ ବେଳନାହିଁ । ଅଧ୍ୟାପନା କାର୍ଯ୍ୟ ଓ ବିଦ୍ୟାଳୟର ସାମୂହିକ ଉନ୍ନତିରେ ଏତେଦୂର ମଜ୍ଜି ଯାଉଥିଲି ଯେ ସାହିତ୍ୟ ସାଧନା କଥା ଚିନ୍ତା କଲିନାହିଁ । ତେବେ ମୋ ଜୀବନକୁ ମୁଁ ନିରର୍ଥ କରିନାହିଁ କି ଆଳସ୍ୟବଶ ହୋଇ କଟାଇନାହିଁ । ଜୀବନକାଳ ଭିତରେ ଯାହା ଯାହା ସଂପାଦନା କରିଛି, ଦେଶ, ଜାତି, ଭାଷା ପାଇଁ ଯେଉଁ ପଦକ୍ଷେପ ନେଇଛି, କୌଣସି ମହାନ୍ କାର୍ଯ୍ୟଠାରୁ ନ୍ୟୂନ ନୁହେଁ । ଦେଶର ଭବିଷ୍ୟତ ବଂଶଧର ତାର ମୂଲ୍ୟନିର୍ଦ୍ଧାରଣ କରିବେ । କଥାରେ ଅଛି– "Life is duty, duty is God." ଜୀବନଟା ମୋର କାମ କରିକରି ଶେଷ ହେଲା । ସର୍ବଦା ମୁଁ କାମବ୍ୟସ୍ତ । ଯେତେବେଳେ ଯାହା ସହିତ ଯାହା ଆଲୋଚନା କରିଛି ତାହା ଅତ୍ୟନ୍ତ ଶିକ୍ଷାପ୍ରଦ ଏବଂ ଦେଶ ଓ ଜାତିର ମଙ୍ଗଳପ୍ରଦ ହୋଇଛି । ଏବେ ମଧ ତେୟାଅଶୀ ବର୍ଷରେ ପଦାର୍ପଣ କରି କର୍ମଠ ଅଛି, ସମସ୍ତଙ୍କ ପାଇଁ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ କାମ କରିବା ପାଇଁ ଆଗଭର ହେଉଛି । ବହୁତ ପଢୁଛି କିନ୍ତୁ ବହୁତ ବାକି ରହିଗଲା ପରି ମନେହେଉଛି । ପଢ଼ି ପଢ଼ି ଅନ୍ଧ ହେଲିଣି । ନିଶା ଛାଡୁନାହିଁ । ଅଧାକାମ ଆସନ୍ତା ଜନ୍ମରେ ଶେଷ କରିବି । କେତେବର୍ଷ ହେଲା ଖୁରୁଧା ଗୀତାଭବନ ଓ ଦି' ହୋମ ଅନୁଷ୍ଠାନ ସହ ସଂପର୍କ ରଖିଛି ଏବଂ ଅଧିବେଶନମାନଙ୍କରେ ଯୋଗଦେଉଛି । ପୁନଃ ଉତ୍କଳ ସମ୍ମିଳନୀ ଖୋରଧା ଶାଖାର ଆଜୀବନ ସଭ୍ୟଭାବେ ୧୯୯୭ ମସିହାରୁ ନିର୍ବାଚିତ ହୋଇଛି ଏବଂ ପନ୍ଦର କି କୋଡ଼ିଏ କି.ମି. ଅନ୍ତର୍ଗତ ହାଇସ୍କୁଲମାନଙ୍କରେ ଓଡ଼ିଆଭାଷା ସୁରକ୍ଷା ପାଇଁ ଛାତ୍ର ଓ ଅଭିଭାବକମାନଙ୍କୁ ପ୍ରେରଣା ଯୋଗାଉଛି । ମୋ ସହିତ ରାଜୁବାବୁ, ବିଚିତ୍ରବାବୁ, ବ୍ରଜବାବୁ, ଭୀମବାବୁ ପ୍ରଭୃତି ସଭ୍ୟମାନେ ଯୋଗ ଦେଉଛନ୍ତି । କେତେକ ଯୁବବନ୍ଧୁ ଆଗ୍ରହୀ ହୋଇ ବାହାରୁଛନ୍ତି । ସମସ୍ତେ ଦେଶକାମରେ ଅନୁପ୍ରାଣିତ ହେଲେ ଦେଶର ମୁଖ ଯେ ବଦଳିଯିବ ଏଥିରେ ସନ୍ଦେହ ନାହିଁ ।

## ଦେଶର ରାଜନୈତିକ ଚିତ୍ରପଟ

୧୯୮୦ ମସିହାରୁ ୧୯୮୯ ମସିହା ପର୍ଯ୍ୟନ୍ତ ଏପରିକି ୧୯୯୦ ମସିହା ଫେବୃଆରୀ ପର୍ଯ୍ୟନ୍ତ ଆମ ରାଜ୍ୟ ଓଡ଼ିଶାରେ କଂଗ୍ରେସ ଶାସନ ପୂରାଦମରେ ଚାଲିଥିଲା । ଉକ୍ତ ଦଶବର୍ଷ ଜାନକୀବାବୁ ଓଡ଼ିଶାର ଶକ୍ତିଶାଳୀ ମୁଖ୍ୟମନ୍ତ୍ରୀ ଥିଲେ । କେନ୍ଦ୍ରରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ୧୯୮୪ ମସିହା ଅକ୍ଟୋବର ମାସ ୩୧ ତାରିଖ ପର୍ଯ୍ୟନ୍ତ ପ୍ରଧାନମନ୍ତ୍ରୀ ଥିଲେ । ମାତ୍ର ସେ ଅକ୍ଟୋବର ମାସ ୩୦ ତାରିଖରେ ଓଡ଼ିଶା ଗସ୍ତରେ ଆସିଥିଲେ । ତାହାହିଁ ତାଙ୍କର ଶେଷ ଓଡ଼ିଶା ଗସ୍ତ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ, ଏଥିମଧ୍ୟରେ ପଞ୍ଜାବରେ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ଖୁବ୍ ଜୋରସୋରରେ ଚାଲିଥିଲା । ଶିଖ୍‌ମାନେ ସ୍ୱତନ୍ତ୍ର ଶିଖ-ସ୍ଥାନ ଦାବିକଲେ । ପାକିସ୍ଥାନ ସେମାନଙ୍କୁ ପ୍ରୋତ୍ସାହନ ଯୋଗାଉଥିଲା । ଅମୃତସର ସ୍ୱର୍ଣ୍ଣମନ୍ଦିରରେ ପ୍ରଥମେ ଶିଖ୍‌ମାନେ ଭୀଷଣ ଉତ୍ତେଜିତ ହୋଇ ଧର୍ମାନ୍ଧପରି କାର୍ଯ୍ୟ କରିବାରେ ଲାଗିଲେ । ସେଠାରେ ଶିଖମାନେ ଅସ୍ତ୍ରଶସ୍ତ୍ର ଧରି ଲୁଚି ରହିଲେ । ଇନ୍ଦିରାଗାନ୍ଧୀ ସୈନ୍ୟବାହିନୀ ପ୍ରୟୋଗକରି କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । ଗୁରୁଦ୍ୱାରରେ ବିଶେଷ କ୍ଷତି ସାଧିତହେବାରୁ ଶିଖମାନେ ପ୍ରତିଶୋଧପରାୟଣ ହୋଇ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କୁ ହତ୍ୟା କରିବାପାଇଁ ସଙ୍କଳ୍ପବଦ୍ଧ ହେଲେ । ମାନନୀୟା ଇନ୍ଦିରାଗାନ୍ଧୀ ଓଡ଼ିଶା ଗସ୍ତରୁ ଫେରି ନିଜ ସରକାରୀ ବାସଭବନରେ ସୁଖନିଦ୍ରା ଯାଇଥିବେ, ମାତ୍ର ପରଦିନ ପୂର୍ବାହ୍ଣ ଆଠଘଟିକା ସମୟରେ ବିଶିଷ୍ଟ ଆଗନ୍ତୁକଙ୍କୁ ସାକ୍ଷାତ କରିବାପାଇଁ ଯାତ୍ରା ଆରମ୍ଭ କଲାବେଳେ ନିଜର ଦୁଇଜଣ ଶିଖ ଅଙ୍ଗରକ୍ଷୀ ତାଙ୍କୁ ହତ୍ୟା କଲେ । ଏପରି ବୀଭତ୍ସ ନାରକୀୟ ହତ୍ୟାକାଣ୍ଡ ପୃଥିବୀରେ କୁତ୍ରାପି ପରିଲକ୍ଷିତ ହୁଏନାହିଁ । ରାଷ୍ଟ୍ରପତି ଜୈଲସିଂହଙ୍କ ଠାରୁ ଶୁଭେଚ୍ଛା ଗ୍ରହଣ କରି ପୁତ୍ର ରାଜୀବ ଗାନ୍ଧୀ ୧୯୮୪ ମସିହା ନଭେମ୍ବର ମାସରେ ଭାରତର ପ୍ରଧାନମନ୍ତ୍ରୀ ପଦରେ ଅବସ୍ଥାପିତ ହେଲେ । ଶ୍ରଦ୍ଧେୟ ରାଜୀବ ଦେଶଶାସନରେ ଅନଭିଜ୍ଞ ଥିଲେ ମଧ୍ୟ ମାତାଙ୍କ ସକାଶେ ଅନୁକମ୍ପା ଭୋଟ ପାଇ ଶାସନଗାଦି ଅଧିକାର କଲେ ।

ଜଣକ ହାତରେ ବା ଗୋଟିଏ ଦଳ ହାତରେ ଦୀର୍ଘକାଳ ଶାସନ ରହିଲେ ଦଳ ବା ବ୍ୟକ୍ତି ବେପରୁଆ ଭାବେ ଶାସନ କରିଥାନ୍ତି । କଂଗ୍ରେସ ଦଳରେ ମହାନ୍ ସ୍ୱାର୍ଥତ୍ୟାଗୀ, ଦେଶହିତୈଷୀ ବ୍ୟକ୍ତିମାନଙ୍କର ଅଭାବ ପଡ଼ିଲା । ଜାତିସ୍ୱାର୍ଥ ଅପେକ୍ଷା ବ୍ୟକ୍ତିସ୍ୱାର୍ଥ ବଳେଇ ପଡ଼ିଲା । ଦେଶରେ ଖର୍ଚ୍ଚ ଟଙ୍କା ଅନୁଯାୟୀ ଉନ୍ନତିମୂଳକ କାର୍ଯ୍ୟ ହେଲାନାହିଁ । ଓଡ଼ିଶା କଂଗ୍ରେସ ଶାସନରେ ଜାନକୀବାବୁ ସର୍ବେସର୍ବା ଥିଲେ । ବହୁତ କାମ କରିପାରିଥାଆନ୍ତେ । ଶାସକ ଶ୍ରେଣୀୟ ବ୍ୟକ୍ତିଗଣ ନିଜ ନିଜର ସ୍ୱାର୍ଥ, ବନ୍ଧୁବାନ୍ଧବମାନଙ୍କର ସ୍ୱାର୍ଥ,

ପରିପାରିଧିଆଙ୍କ ସ୍ୱାର୍ଥ ପ୍ରତି ନଜର ଦେବାରୁ ଦେଶର ପ୍ରଗତି ବାଧାପ୍ରାପ୍ତ ହେଲା । ସରକାର ମାନ୍ଦାଧରଣର ଚାଲିଲା । ଆଇନଶୃଙ୍ଖଳା ପ୍ରତି ଯଥୋଚିତ ଦୃଷ୍ଟି ଦିଆଗଲା ନାହିଁ । ଯିଏ ଯେତେ ମାରିପାରିଲା ତାର କିଛି ପ୍ରତିକାର ହେଲାନାହିଁ । ନାରୀଧର୍ଷଣ, ହତ୍ୟାକାଣ୍ଡ ବଢ଼ି ବଢ଼ି ଚାଲିଲା । ଓଡ଼ିଶାରେ ବିଲୁଆଖାଇ ନଦୀରେ ଛବିରାଣୀ ହତ୍ୟାକାଣ୍ଡ, ବିଳାସୁଣୀ ହତ୍ୟାକାଣ୍ଡ, ଆଦିଲକ୍ଷ୍ମୀ ହତ୍ୟାକାଣ୍ଡ, ମଣିନାଗ ଠାକୁରାଣୀ ପାଖେ କିଶୋର ବାଳକ ବଳି, ମଲାଗୁଣୀ ବାଲିରେ ଦୁଇ ଦୁଇଜଣ ନାରୀ ହତ୍ୟାକାଣ୍ଡ ପରି ବହୁ ହତ୍ୟାକାଣ୍ଡ ଘଟିଲା । ବୁର୍ଲା ଇଞ୍ଜିନିୟରିଂ କଲେଜରେ ଓଡ଼ିଶାରେ ୧୩ଜଣ ଅତି ମେଧାବୀ ଇଞ୍ଜିନିୟରିଂ ଛାତ୍ରଙ୍କୁ ହତ୍ୟା କରାଯାଇ ପାୱାର ଚାନେଲ ଭିତରକୁ ଯେତେବେଳେ ଫିଙ୍ଗି ଦିଆଗଲା ସେତେବେଳେ ସମଗ୍ର ଓଡ଼ିଶାରେ ଜନସାଧାରଣ ଅତ୍ୟନ୍ତ ବ୍ୟଥିତ ହୋଇ ଶାସନକୁ ଘୋର ନିନ୍ଦା କଲେ । ଆମର ଜନପ୍ରିୟ ମୁଖ୍ୟମନ୍ତ୍ରୀ ଏବଂ ଶକ୍ତିଶାଳୀ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀ ଏପରି ମର୍ମନ୍ତୁଦ ଘଟଣାରେ ଟିକିଏ ମାତ୍ର ଦୁଃଖ କଲେ ନାହିଁ । ସେତେବେଳେ ମୋ ହୃଦୟ ଦୁଃଖରେ ବିଦୀର୍ଣ୍ଣ ହୋଇଗଲା । ମୁଁ ହତ୍ୟାକାରୀଙ୍କୁ ଘୃଣା ନ କରି ଦେଶର ସର୍ବୋଚ୍ଚ ଶାସକଙ୍କର ଉଦାସୀନତାକୁ ଘୃଣା କରିବାରେ ଲାଗିଲି । ସମାଜ ଖବରକାଗଜ ସରକାରଙ୍କର ଏତାଦୃଶ ଆଚରଣକୁ ବାରମ୍ବାର ସମାଲୋଚନା କଲେ ମଧ୍ୟ ସରକାର ନୀରବ ରହିଲେ । ସରକାର ଭାଷଣସର୍ବସ୍ୱ ହେଲେ । ସରପଞ୍ଚ ସ୍ତରଠାରୁ ସର୍ବୋଚ୍ଚ କର୍ତ୍ତା ପର୍ଯ୍ୟନ୍ତ କେବଳ ଏଇଆ ଚାଲିଲା । କଂଗ୍ରେସର ନୀତିନିୟମ ଅତି ଉଚ୍ଚକୋଟୀର ହେଲେ ମଧ ଦୁର୍ନୀତିପରାୟଣ ବ୍ୟକ୍ତିମାନଙ୍କ ହାତରେ ଶାସନ ରହିଲା । ଲୋକେ ଅତିଷ୍ଠ ହେଲେ । ମନ୍ତ୍ରୀମାନଙ୍କର ଭାବମୂର୍ତ୍ତିରେ ଘୋର ଆଞ୍ଚ ଆସିଲା ।

କେନ୍ଦ୍ର ସରକାରରେ ବିଶ୍ୱନାଥ ପ୍ରତାପ ସିଂହ ଅର୍ଥମନ୍ତ୍ରୀ ଥିଲେ । ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ବୋଫର୍ସ କମାଣ କିଣାରେ ଘୋର ଅନିୟମିତତା ଘଟିଛି ବୋଲି ଅଭିଯୋଗ କଲେ ଏବଂ ମନ୍ତ୍ରିମଣ୍ଡଳରୁ ବିଦାୟ ନେଲେ । ରାଜୀବଗାନ୍ଧୀଙ୍କ ସମୟରେ ଭାରତର ସୈନ୍ୟବାହିନୀ ଏଲ.ଟି.ଟି. ବିରୁଦ୍ଧରେ ଶ୍ରୀଲଙ୍କା ସରକାରଙ୍କୁ ସାହାଯ୍ୟ କଲେ । ଏଥିରେ ଭାରତର କିଛି ଲାଭ ହେଲାନାହିଁ । ବହୁ ଭାରତୀୟ ସୈନ୍ୟ ଅକାରଣ ଜୀବନଦାନ କଲେ । ଏହିପରି ସମୟରେ ମାଲେଡିଭର ପ୍ରେସିଡେଣ୍ଟ ଅବଦୁଲ ଗୟୁମଙ୍କୁ ଶ୍ରୀଲଙ୍କା ଏଲ.ଟି.ଟି. ବିଦ୍ରୋହୀମାନେ ନଜରବନ୍ଦୀରେ ରଖି ତାଙ୍କୁ ଉଡ଼ାଇ ଆଣିବାକୁ ଚେଷ୍ଟା କରିଥିଲେ । ଭାରତର ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀଙ୍କର ସମୟୋଚିତ ସାହାଯ୍ୟ ହେତୁ ସେ ରକ୍ଷାପାଇଲେ । ଏହିସବୁ ଘଟଣାରେ ସନ୍ତ୍ରାସବାଦୀ ସଂଗଠନ ଏଲ.ଟି.ଟି.ଇ.ର ମୁଖ୍ୟ

ପ୍ରଭାକରନ ରାଜୀବଙ୍କ ଉପରେ କ୍ରୁଦ୍ଧ ହୋଇ ରହିଥିଲା । ୧୯୯୧ ମସିହା ମେ ମାସ ୨୧ ତାରିଖରେ ଆଗାମୀ ନିର୍ବାଚନ ପାଇଁ ଭୁବନେଶ୍ୱର ପ୍ରଚାର ଶେଷକରି ରାଜୀବ ମାନ୍ଦ୍ରାଜ ନିକଟବର୍ତ୍ତୀ ପେରେମ୍ବୁଦୁର ଯାତ୍ରା କଲେ । ସେଠାରେ ଏକ ବିରାଟ ସାଧାରଣ ସଭାରେ ଭାଷଣ ଦେବାକୁ ପ୍ରସ୍ତୁତ ହେଲାବେଳେ ଏଲ.ଟି.ଟି.ଇ ତରଫରୁ ଏକ ନାରୀ ଆତ୍ମଘାତିନୀ ବିସ୍ଫୋରଣ ସୃଷ୍ଟିକରି ରାଜୀବଙ୍କୁ ଧ୍ୱଂସ କରିଦେଲା । ଏକ ଉଦୀୟମାନ ଯୁବ ପ୍ରଧାନମନ୍ତ୍ରୀଙ୍କର ଅକାଳରେ ଜୀବନ ଅବସାନ ଘଟିଲା । ପୂର୍ବରୁ କଂଗ୍ରେସ କେନ୍ଦ୍ରରେ ପରାଜୟ ବରଣ କରିଥିଲା । ୧୯୯୦ ମସିହା ନିର୍ବାଚନରେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ବିଜୁବାବୁଙ୍କ କୂଟନୀତି ଯୋଗୁ କ୍ଷମତାକୁ ଆସିଲେ । ଦେବୀଲାଲ୍ ହେଲେ ଉପପ୍ରଧାନମନ୍ତ୍ରୀ । ଭି.ପି.ସିଂହ ଦଶ ମାସ ଶାସନ କଲାପରେ ଚନ୍ଦ୍ରଶେଖର ଚାରି ମାସ ଶାସନ କାର୍ଯ୍ୟ ଚଳାଇଲେ । ପରେ କେନ୍ଦ୍ରରେ ନିର୍ବାଚନ ହୋଇଥିଲା । କଂଗ୍ରେସ ସରକାର ବି ନିର୍ବାଚନର ସମ୍ମୁଖୀନ ହେଲେ । କଂଗ୍ରେସ ରଥିମାନେ ଗୋଟି ଗୋଟି ହୋଇ ଟଳିପଡ଼ିଲେ । କେନ୍ଦ୍ରରେ ଜାତୀୟ ସାମ୍ମୁଖ୍ୟ ଓ ଆମ ରାଜ୍ୟରେ ଜନତା ଦଳ ହାତରେ ଶାସନ ରହିଲା । ବିଜୁବାବୁଙ୍କ ପ୍ରତି ଜନସମର୍ଥନ ବୃଦ୍ଧି ପାଇଲା । ଓଡ଼ିଶାରେ ଏକୋଇଶି ଜଣ ସାଂସଦ ମଧ୍ୟରୁ ଅଠର ଜଣ ଜନତା ବା ଜନତା ସମର୍ଥିତ ହୋଇ ରାଜ୍ୟରେ ଜନତା ଦଳ ଶହେ ତେଇଶିଟି ଆସନ ଲାଭକଲା । କଂଗ୍ରେସ ଅଧିକାର କଲା ମାତ୍ର ଦଶ ଗୋଟି ଆସନ । ଆମ ରାଜ୍ୟରେ ଲୋକେ ବେଶୀ ପାଠଶାଠ ପଢ଼ିନଥିଲେ ମଧ ରାଜନୀତିକ ସଚେତନତା ସେମାନଙ୍କର ଅଛି । ଓଡ଼ିଆମାନେ ପାଠପଢ଼ାରେ ସମୃଦ୍ଧ ହୁଅନ୍ତୁ ଓ ଦାଦନ ଶ୍ରମିକ ଜାତି ହିସାବରେ ଗଣ୍ୟ ନହୁଅନ୍ତୁ ଏହାହିଁ ପରମେଶ୍ୱରଙ୍କଠାରେ ଆମର କାମନା ।

ଯେଉଁ କଳିଙ୍ଗ କେଶରୀ କଳିଙ୍ଗ ପୁରସ୍କାର ଘୋଷଣା କରି ଆନ୍ତର୍ଜାତିକ କ୍ଷେତ୍ରରେ ଓଡ଼ିଶାର ମାନସମ୍ମାନ ବଜାୟ ରଖିଛନ୍ତି ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କଲେ ।

ବିଜୁବାବୁଙ୍କ ସମୟରେ ଓଡ଼ିଆଙ୍କ ସ୍ଥାନ ସମଗ୍ରଦେଶରେ ପ୍ରତିପାଦିତ ହୋଇଥିଲା । ଦୀର୍ଘ ବୟାଳିଶ ବର୍ଷ କଂଗ୍ରେସ ଶାସନରେ ଓଡ଼ିଆମାନେ ସେମାନଙ୍କର ନ୍ୟାଯ୍ୟଦାବି କେନ୍ଦ୍ରରେ ପାଇନଥିଲେ । କାରଣ ସେତେବେଳେ ଓଡ଼ିଆ ନେତୃତ୍ୱ ଥିଲା ଦୁର୍ବଳ । କଂଗ୍ରେସ ଶାସନରେ ଓଡ଼ିଶାରୁ କୋଡ଼ିଏ ଜଣ ଏମ୍.ପି. ଥିଲେ ମଧ ଜଣେହେଲେ କ୍ୟାବିନେଟ୍ ମନ୍ତ୍ରୀ ହୋଇ ନଥିଲେ । କେବଳ ଜାନକୀବାବୁ ଦୁଇମାସ ମାତ୍ର କ୍ୟାବିନେଟ ମନ୍ତ୍ରୀ ହୋଇଥିଲେ । ଏଥିରୁ ଅନୁମିତ ହୁଏ କେନ୍ଦ୍ର କଂଗ୍ରେସ ସରକାର ଓଡ଼ିଆଜାତିକୁ ହୀନଚକ୍ଷୁରେ ଦେଖୁଥିଲା । ଏବେ ବିଜୁବାବୁଙ୍କ ପ୍ରଭାବରେ ଅଠର ଜଣ ଏମ୍.ପି.ଙ୍କ ମଧ୍ୟରୁ ଜଣେ ଶ୍ରୀଯୁକ୍ତ ରବିରାୟ

ବାଚସ୍ପତି, ଜଣେ କ୍ୟାବିନେଟ ମନ୍ତ୍ରୀ, ଦୁଇଜଣ ରାଷ୍ଟ୍ରମନ୍ତ୍ରୀ ଓ ଦୁଇଜଣ ଉପମନ୍ତ୍ରୀରୂପେ ସ୍ଥାନ ପାଇଲେ । ଏଥିରୁ ଜଣାପଡ଼େ ଓଡ଼ିଆଙ୍କର ସ୍ୱାଭିମାନ ରକ୍ଷାକରିବା ପାଇଁ ବିଜୁବାବୁ ବଡ଼ ତତ୍ପର ଥିଲେ । ସେ ଓଡ଼ିଆଜାତିର ହୀନମନ୍ୟତା ଦୂର କରିପାରିଛନ୍ତି । ନବେ ବର୍ଷ ତଳେ ଓଡ଼ିଆ ଜାତୀୟତାର ପ୍ରାଣପ୍ରତିଷ୍ଠାତା କୁଳବୃଦ୍ଧ ଜାତୀୟଗୌରବ ମଧୁସୂଦନ ଦାସ ଓଡ଼ିଶା ପାଇଁ ଓ ଓଡ଼ିଆମାନଙ୍କ ପାଇଁ ଯାହା କରିଥିଲେ ବର୍ତ୍ତମାନ ଦିଲ୍ଲୀ ଦରବାରରେ ଓଡ଼ିଆଙ୍କର ମାନ ରକ୍ଷାକରିବାପାଇଁ ବିଜୁବାବୁ ଥିଲେ ପ୍ରମୁଖ ବ୍ୟକ୍ତି । କେହି କେହି ବିଜୁବାବୁଙ୍କୁ ଦ୍ୱିତୀୟ ମଧୁବାବୁ ଆଖ୍ୟା ଦିଅନ୍ତି ।

## ୧୯୮୯ ପରେ କେନ୍ଦ୍ର ସରକାରର ରୂପରେଖ

ଗତ ଦଶନ୍ଧିରେ (୧୯୮୦-୮୯) ଶାସକ ଦଳର ମନମୁଖି ଶାସନ ହେତୁ ସବୁ କ୍ଷେତ୍ରରେ ବିପର୍ଯ୍ୟୟ ଦେଖାଗଲା । ଲୋକପ୍ରତିନିଧିଗଣ ଦେଶର ତଥା ରାଜ୍ୟର ସ୍ୱାର୍ଥପ୍ରତି ଦୃଷ୍ଟିଦେବା ଅପେକ୍ଷା ନିଜ ନିଜ ସ୍ୱାର୍ଥ ଉପରେ ଦୃଷ୍ଟିଦେଲେ । ଜନସାଧାରଣ କଂଗ୍ରେସର ନୀତି ନିୟମକୁ ଖୁବ୍ ତାରିଫ କରୁଥିଲେ ମଧ ବିଧାୟକ, ଏମ୍.ପି., ମନ୍ତ୍ରୀ, ଉପମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ଏପରିକି ପ୍ରଧାନମନ୍ତ୍ରୀ ଏବଂ ଉଚ୍ଚସ୍ତରୀୟ ଅଫିସରମାନଙ୍କ ହେତୁ ସକଳ କ୍ଷେତ୍ରରେ ଦୁର୍ନୀତିର କରାଳଛାୟା ଜାଲ ପରି ବିଛୁରିତ ହେଲା । ବ୍ୟକ୍ତିଗତ ଚରିତ୍ରର ନୈତିକ ପତନ ହେତୁ ଜାତୀୟ ଚରିତ୍ର ଧ୍ୱଂସାଭିମୁଖୀ ହେଲା । କଂଗ୍ରେସୀ ଓ ବେକଂଗ୍ରେସୀ ବଡ଼ପଣ୍ଡାମାନେ ବିଦେଶୀ ବ୍ୟାଙ୍କରେ ଟଙ୍କା ଜମାରଖି ନିଜନିଜକୁ ଦେଶପ୍ରେମୀ ବୋଲାଇଲେ । ଯୁବ ପ୍ରଧାନମନ୍ତ୍ରୀଙ୍କର ଅପାରଗତା ଦେଖାଗଲା । ତୋଷାମଦକାରୀ ଦଳ ତାଙ୍କ ପଛେ ପଛେ ଲାଗି ରହିଲେ । ଏଥର କଂଗ୍ରେସ ଦଳ ନିର୍ବାଚନରେ ସଂଖ୍ୟାନ୍ୟୁନ ହେଲା । ସେତିକିବେଳେ ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ଜାତୀୟ ସାମ୍ମୁଖ୍ୟ ଗଢ଼ିଲେ । କଂଗ୍ରେସ ବ୍ୟତୀତ ଅନ୍ୟ ସବୁଦଳ ସେଥିରେ ସାମିଲ ହେଲେ ।

ମିଳିତ ସରକାରରେ ସବୁଦଳ ସକ୍ରିୟ ସହଯୋଗ ନଦେଲେ ଶାସନ ତିଷ୍ଠି ରହେ ନାହିଁ । ଘରେ ନପଶୁଣୁ ଚାଳ ବାଜିବା ନ୍ୟାୟରେ ଉପପ୍ରଧାନମନ୍ତ୍ରୀ ମହୋଦୟ ଭି.ପି. ସିଂହଙ୍କ ଉପରେ ନିଜର ସ୍ୱାର୍ଥସିଦ୍ଧି ପାଇଁ ଚାପ ପକାଇଲେ । ଏପରି ପରିସ୍ଥିତି ସୃଷ୍ଟି ହେଲା ଯେ ଭି.ପି. ସିଂହ ଉପପ୍ରଧାନମନ୍ତ୍ରୀଙ୍କୁ ମନ୍ତ୍ରିମଣ୍ଡଳରୁ ବିଦାୟ ଦେଲେ । ଶ୍ରୀ ଭି.ପି. ସିଂହଙ୍କ କ୍ଷମତା ଚୂର୍ଣ୍ଣୀଭୂତ କରିବା ପାଇଁ ସେ ଏକ ବିରାଟ କୃଷକ ସଭାର ଆୟୋଜନ କଲେ । କଂଗ୍ରେସ ଅମଳରେ ଦେଶ ଋଣଭାରରେ ବୁଡ଼ି ରହିଥିଲା । ବିପଦ ଘନେଇଲା, ଦରଦାମ୍

ଆହୁରି ବୃଦ୍ଧି ପାଇଲା । ବହୁ ଦିନରୁ ତମାଦି ହୋଇ ପଡ଼ିରହିଥିବା ମଣ୍ଡଳ କମିଶନ ରିପୋର୍ଟ କାର୍ଯ୍ୟକାରୀ କରିବାପାଇଁ ଘୋଷଣା କଲେ । ଶ୍ରୀ ଚନ୍ଦ୍ରଶେଖର ତୁନି ହୋଇ ବସିଥାଆନ୍ତି । ସେ ଚାହୁଁଥିଲେ ପ୍ରଧାନମନ୍ତ୍ରୀ ହେବାକୁ । ଦେଶ ପ୍ରତି କିଛି ଶୁଭସୂଚନା ଦେଖାଗଲା ନାହିଁ । ସମଗ୍ର ଦେଶର ଛାତ୍ରସମାଜ ମଣ୍ଡଳ କମିଶନର ଦୃଢ଼ ପ୍ରତିବାଦ କଲେ । ପ୍ରାୟ ଏକ ହଜାର ଛାତ୍ର ପ୍ରାଣ ବିସର୍ଜନ ଦେଲେ । ଏଇଠି ପ୍ରଧାନମନ୍ତ୍ରୀଙ୍କର ଦୂରଦୃଷ୍ଟିର ଘୋର ଅଭାବ ଦେଖାଦେଲା । ଦେଶର ମୁଖ୍ୟ ଅଭାବ ଅସୁବିଧା ପ୍ରତି ଦୃଷ୍ଟି ନଦେଇ ମଣ୍ଡଳ କମିଶନର ନୀତିନିୟମ ପାଳନ କରିବାକୁ ଯାଇ ସେ ଅବମୃଶ୍ୟକାରିତାର ପରିଚୟ ଦେଲେ । ଏତିକିବେଳେ ମିଳିତ ସରକାରର ପ୍ରଧାନ ସହଯୋଗୀ ଭାରତୀୟ ଜନତା ଦଳର ଜଣେ ନେତା ଦଳବଳସହ ରାମ ଜନ୍ମଭୂମିକୁ ଯାତ୍ରା ଆରମ୍ଭ କଲେ । ଧରପଗଡ଼ ଚାଲିଲା । ସରକାରର ପତନ ଘଟିଲା ୧୯୯୦ ମସିହା ନଭେମ୍ବର ସାତ ତାରିଖରେ । ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ ସଚ୍ଚୋଟ ରାଜନୀତିଜ୍ଞ ହେଲେ ମଧ୍ୟ ଦୂରଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞ ନଥିବା ପରି ଜଣାପଡ଼ିଲା । ପୁଣି ପଛରୁ ଛୁରା ମରାଗଲା । ଯୁଗେ ଯୁଗେ ଭାରତରେ ଏହାହିଁ ଘଟିଛି ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ତାଙ୍କର ସମସ୍ତ.ନୀତିକୁ ଜଳାଞ୍ଜଳି ଦେଇ ତାଙ୍କ ଦଳର ବିରୋଧୀ ରାଜୀବଗାନ୍ଧୀଙ୍କଠାରୁ ଅଭୟ ପାଇ ସରକାର ଗଠନ କଲେ ସେହିମାସ ପନ୍ଦର ତାରିଖରେ । ଜନତାପାର୍ଟିର ବାବୁ ସୁବ୍ରମନିୟମ ସ୍ୱାମୀ ମଧ୍ୟ ତାଙ୍କ ସଙ୍ଗେ ମିଶିଲେ । ଚନ୍ଦ୍ରଶେଖର ନିଜ ଦଳର ନାମ ଲେଖିଲେ ଜନତା (ଏସ୍) । ସୁବ୍ରମନିୟମ ସ୍ୱାମୀ ତାଙ୍କ ସରକାରରେ ଜଣେ ମନ୍ତ୍ରୀ ହେଲେ । ଯେଉଁ ଜନତାଦଳ ଗତ ନିର୍ବାଚନରେ କଂଗ୍ରେସର ଦୋଷତ୍ରୁଟି ଦେଖାଇ କ୍ଷମତାକୁ ଆସିଥିଲେ ଏବେ କଂଗ୍ରେସ ମରଜିରେ ସେମାନଙ୍କ ଭିତରୁ କେତେଜଣ ସରକାର ଗଢ଼ିଲେ । ଏଇ ପରିପ୍ରେକ୍ଷୀରେ ଶ୍ରୀ ଦେବୀଲାଲ ତାଙ୍କୁ ସାହାଯ୍ୟ କଲେ । ସରକାରର ସ୍ଥାୟିତ୍ୱ ରାଜୀବଗାନ୍ଧୀଙ୍କ ଦୟା ଉପରେ ନିର୍ଭର କଲା । ଚାରି ମାସ ଏହି ପ୍ରକାର ଶାସନ ଚାଲିଲା । ପାର୍ଲାମେଣ୍ଟର ସମ୍ମୁଖୀନ ହେବାପର୍ଯ୍ୟନ୍ତ ଗଲାନାହିଁ । ଚନ୍ଦ୍ରଶେଖର ମହତ୍ତର ଚିନ୍ତାଧାରାର ଲୋକ । ସେ ନିଜ ବିବେକ ଅନୁଯାୟୀ ଚଳିବାରୁ ସରକାରର ପତନ ଘଟିଲା । ପୁନଃ ନିର୍ବାଚନ ପାଇଁ ପଥ ପ୍ରସ୍ତୁତ ହୋଇଗଲା । ନିର୍ବାଚନପାଇଁ ସମସ୍ତେ ସଜବାଜ ହେଲେ । ଏହାଥିଲା ୧୯୯୧ ମସିହା କଥା ।

ଦେଶରେ ବାରମ୍ବାର ନିର୍ବାଚନ ହେତୁ ଋଣଭାର ବଢ଼ିଚାଲିଲା । କଂଗ୍ରେସ ଦଳ ଚାହିଁଥିଲେ ଚନ୍ଦ୍ରଶେଖର ସରକାରକୁ ବହୁଦିନ ପର୍ଯ୍ୟନ୍ତ ଜିଆଇ ପାରିଥାଆନ୍ତେ । ମାତ୍ର କ୍ରୋଧ

ଓ ସ୍ୱାର୍ଥ ସେମାନଙ୍କର କାଳହେଲା । ଜନସାଧାରଣଙ୍କ ଧନରେ ସେମାନେ ହୁରି ଖେଳିଲେ । ଏଥରକ ନିର୍ବାଚନ ପ୍ରଚାରରେ ରାଜୀବ ମାନ୍ଦ୍ରାଜ ପେରେମ୍ବୁଦୁରଠାରେ ଏଲ.ଟି.ଟି.ଇ. ହାତରେ ନିହତ ହେଲେ । ନିର୍ବାଚନରେ କୌଣସି ଦଳ ସଂଖ୍ୟାଗରିଷ୍ଠତା ହାସଲ କରିପାରିଲେ ନାହିଁ । ପି.ଭି.ନରସିଂହ ରାଓଙ୍କ ନେତୃତ୍ୱରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଢ଼ିଲେ । ଅବଶ୍ୟ ଅନ୍ୟ ଦଳରୁ ସାଂସଦ ଆଣି ସେ ସଂଖ୍ୟାଗରିଷ୍ଠତା ଦେଖାଇଲେ । କଂଗ୍ରେସ ଦଳ ପାଞ୍ଚବର୍ଷ ଶାସନଗାଦିରେ ରହି କେତେକ କାମ ହାତକୁ ନେଲା । ଏଠାରେ ଆମ୍ଭେମାନେ ବାବୁ ନରସିଂହ ରାଓଙ୍କୁ ପ୍ରଶଂସା କରିବାର କଥା । ମାତ୍ର ସେ ପରେ କେସରେ ପଡ଼ିଗଲେ ।

## ବିଜୁବାବୁଙ୍କ ମୁଖ୍ୟମନ୍ତ୍ରିତ୍ୱ :

କେନ୍ଦ୍ରରେ କଂଗ୍ରେସ ଶାସନ ଚାଲିଥିବାବେଳେ ଓଡ଼ିଶାରେ ବିଜୁବାବୁ ରାଜ୍ୟ ଶାସନର ଲଗାମ ଧରିଥିଲେ । ଶୁଣାଗଲା ଚନ୍ଦ୍ରଶେଖରଙ୍କ ସମୟରେ ଟନ୍ ଟନ୍ ସୁନା ଇଂଲଣ୍ଡରେ ବନ୍ଧାପଡ଼ିଲା । ପୁଣି ଶୁଣାଗଲା ନରସିଂହ ରାଓ ମଧ୍ୟ ତାଙ୍କର ପଦାଙ୍କ ଅନୁସରଣ କଲେ । ବାହାର ପୁଞ୍ଜିପତି ଆସି କମ୍ପାନୀ ଖୋଲି ଭାରତରେ ଆଡ୍ଡା ଜମାଇଲେ । ବଜାର ଦର ହୁହୁ ହୋଇ ବଢ଼ିବାକୁ ଲାଗିଲା । କିଛି ପ୍ରତିକାର ହୋଇପାରିଲା ନାହିଁ । ତେବେ ଶ୍ରୀ ନରସିଂହରାଓ ଜଣେ ବହୁଭାଷୀ ପ୍ରବୀଣ ଜ୍ଞାନୀ ଥିଲେ । ଲୋକେ ଭାବିଥିଲେ ଜବାହରଲାଲଙ୍କ ପରିବାର ବ୍ୟତୀତ ଭାରତ ଶାସନ ଚାଲିପାରିବ ନାହିଁ । ନରସିଂହ ରାଓ ଅର୍ଥମନ୍ତ୍ରୀ ମନମୋହନ ସିଂହଙ୍କ ସାହାଯ୍ୟରେ ଆଗେଇ ଚାଲିଲେ । ପାଞ୍ଚବର୍ଷ କାଳ ବିନା ବାଧାରେ ସରକାର ଚଳେଇଦେଲେ । ସେ ମହାନ ପଣ୍ଡିତ ଥିବାରୁ ଆମେରିକାରେ ସିନେଟ ବୈଠକରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ । କିନ୍ତୁ ବାବରୀ ମସଜିଦ୍ ଘଟଣାରେ ସେ କାର୍ଯ୍ୟାନୁଷ୍ଠାନ କରିପାରିନଥିବାରୁ ନିନ୍ଦିତ ହୋଇଥିଲେ । ପଞ୍ଜାବ ନିର୍ବାଚନ ପରେ କଂଗ୍ରେସ ଦଳର ସଭ୍ୟସଂଖ୍ୟା ବୃଦ୍ଧି ପାଇଲା । ବହୁ ପ୍ରଦେଶରେ ବିରୋଧୀଦଳ ଶାସନରେ ରହିଲେ । ଆର୍ଥିକ ଦୃଷ୍ଟିରୁ ଦେଶରେ ଦେବାଳିଆ ପରିସ୍ଥିତି ସୃଷ୍ଟି ହେଲା । ପ୍ରଗତିରେ ବାଧା ସୃଷ୍ଟି ହେଲା । ଏଣେ ପାକିସ୍ଥାନ ଆମେରିକାରୁ ବଳପାଇ ଜାମ୍ମୁକାଶ୍ମୀର ଉଗ୍ରପନ୍ଥୀଙ୍କୁ ସାହାଯ୍ୟ କଲା । ଭିନ୍ନ ଭିନ୍ନ ଗୋଷ୍ଠୀ ଓ ମତବାଦର ଲୋକ ଏ ଦେଶରେ ବାସ କରୁଥିବାରୁ ଜାତୀୟ ସଂହତିରେ ବାଧାପଡ଼ିଲା । କେତେକ ମୁସଲମାନ ଏ ଦେଶର ଖାଦ୍ୟ, ପାଣି ପବନରେ ବଞ୍ଚିଲେ ମଧ ଦେଶପ୍ରେମର ନିଦର୍ଶନ ଦେଖାଇଲେ ନାହିଁ ।

ଏହି ସମୟରେ ଓଡ଼ିଶାରେ ବିଜୁବାବୁଙ୍କ ଶାସନ ଚାଲିଥିଲା । ବିଜୁବାବୁ ଅଦମ୍ୟ ଉତ୍ସାହୀ ବ୍ୟକ୍ତି ଥିଲେ । ମାତ୍ର କେନ୍ଦ୍ରରେ କଂଗ୍ରେସ ଶାସନ ରହିବାରୁ ସେ ଜାତୀୟ ସ୍ତରରେ

ଓଡ଼ିଶା ପାଇଁ କିଛି କରିପାରିଲେ ନାହିଁ । ତାଙ୍କର ସାହସିକ ପଦକ୍ଷେପ କେତେକ ସ୍ଥଳରେ ଖରାପ ଫଳ ପ୍ରଦାନ କଲା । କୃଷକମାନେ ଋଣ ନେଇଥିବା ଟଙ୍କାକୁ ଛାଡ଼ କରିବାକୁ ଯାଇ ସେ ଅଡୁଆରେ ପଡ଼ିଲେ । ତିରିଶ ଗୋଟି ଜିଲ୍ଲା ସୃଷ୍ଟି କଲେ ଏବଂ ତିନିହଜାର ହାଇସ୍କୁଲକୁ ସରକାରୀ କରିବା ପାଇଁ ଘୋଷଣା କରିଦେଲେ । ହାଇସ୍କୁଲ ନଥିବା ପ୍ରତି ପଞ୍ଚାୟତରେ ଗୋଟିଏ ସରକାରୀ ହାଇସ୍କୁଲ ଗଢ଼ିଦେଲେ । ଏହିସବୁ କାରଣରୁ ଘୋର ଆର୍ଥିକ ଅନଟନ ଘଟିଲା ।

## ଖୋରଧା ଜିଲ୍ଲା ଗଠନରେ ମୋର କାମ :

କୋଡ଼ିଏଗୋଟି ଜିଲ୍ଲା ଗଠନରେ ଖୋରଧାର ନାମ ନଥିଲା । ଅତି ଛୋଟ ଛୋଟ ଅଞ୍ଚଳ ଜିଲ୍ଲା ହେଉଛି ଅଥଚ ଖୋରଧା ଅତି ପୁରାତନ, ଐତିହ୍ୟସଂପନ୍ନ, ତାର ନାମ ନାହିଁ ! ଖୋରଧାବାସୀ ଲଢ଼େଇ ନକଲେ ଜିଲ୍ଲା ଆମକୁ ମିଳିବ ନାହିଁ ବୋଲି ଧାରଣା କରିନେଲେ ଏବଂ ପ୍ରାଣମୂର୍ଚ୍ଛା ଲଢ଼େଇ କରିବାକୁ ପ୍ରସ୍ତୁତ ହେଲେ । ଜିଲ୍ଲା ଆନ୍ଦୋଳନରେ ଶ୍ରୀଯୁକ୍ତ ରାଜକିଶୋର ରାମ ସଂପାଦକ ଓ ଆଡ୍‌ଭୋକେଟ୍ ପ୍ରଫୁଲ୍ଲ କୁମାର ମହାନ୍ତି ସଭାପତି ରୂପେ ନିର୍ବାଚିତ ହୋଇ ଜୋର୍‌ସୋର୍‌ରେ କାର୍ଯ୍ୟ ଆରମ୍ଭ କଲେ । ମୁଁ ଜିଲ୍ଲା ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ କଲି । ଖୁବ୍ ଜୋର୍‌ସୋରରେ ଆନ୍ଦୋଳନ ଚାଲିଥିଲା । ଜିଲ୍ଲା ଗଠନ ପାଇଁ ଆନ୍ଦୋଳନର ପ୍ରତ୍ୟେକ ସଭାରେ ମୁଁ ମୁଖ୍ୟ ଅଂଶଗ୍ରହଣ କରୁଥିଲି ଏବଂ ଚାନ୍ଦା ଆଦାୟ କରୁଥିଲି । ବାଣପୁର, ଟାଙ୍ଗି, ଜଟଣୀ, ନିରାକାରପୁର, ବେଗୁନିଆ, ବୋଲଗଡ଼ ଓ ହଳଦିଆରୁ ମୁଖ୍ୟ ଲୋକମାନେ ଆସି ଏବଂ ମୁରଲୀଧର ପ୍ରଧାନ, ଜିତୁମିତ୍ର, ପ୍ରଫୁଲ୍ଲ ମହାନ୍ତି, ଗଙ୍ଗାଧର ପାଇକରାୟ, ବେଣୁଧର ବଳୀୟାର ସିଂହ, ବଟକୃଷ୍ଣ ପରିଜା, ବିଶ୍ୱନାଥ ସାମନ୍ତ, ହରେକୃଷ୍ଣ ନନ୍ଦ, ସାମସୁର ଅଲ୍ଲୀ, ଗୋପାଳକୃଷ୍ଣ ଦାସ, ଲକ୍ଷ୍ମୀକାନ୍ତ ପାଇକରାୟ, ଦିଲ୍ଲୀପ ଶ୍ରୀଚନ୍ଦନ ପ୍ରଭୃତି ଅନେକ ଯୁବକ, ପ୍ରୌଢ଼ ଆନ୍ଦୋଳନରେ ମିଶି ବିପ୍ଳବାତ୍ମକ ପନ୍ଥା ଧରିଥିଲେ ଏବଂ ଶେଷରେ ବିଜୟ ଲାଭ କରିଥିଲେ । ଆନ୍ଦୋଳନର ମଧଭାଗରେ ବୋଲଗଡ଼ ଅଞ୍ଚଳରୁ ଶୁଣିପାରିଲୁ ସେମାନେ ନୟାଗଡ଼ ଜିଲ୍ଲାରେ ମିଶିବାକୁ ଯାଉଛନ୍ତି । ଏ ତ ବଡ଼ ଅଡୁଆ କଥା । ତେଣୁ ସେଠାକୁ ଦୌଡ଼ିଲୁ । ବୋଲଗଡ଼ କଲେଜରେ ଏକ ବିରାଟ ସଭା ହେଲା । ବୋଲଗଡ଼ ଅଞ୍ଚଳ ଖୋରଧାର ସଂସ୍କୃତି ପରମ୍ପରା ସଙ୍ଗେ ଜଡ଼ିତ ଥିଲା । ଏବେ ଗଡ଼ଜାତକୁ ଚାଲିଯିବ ? ଏହା ହିଁ ମୋତେ ବିଶେଷ ବ୍ୟଥିତ କଲା । ତେଣୁ ବୋଲଗଡ଼ ସଭାରେ ମୁଁ ଜୋରଦେଇ ଉଦ୍‌ବୋଧନ ଦେଲି, ''ଆପଣମାନଙ୍କର ଆଉ ପୂର୍ବ ଗୌରବ ରହିବଟି ? ଅଧଘଣ୍ଟା ପର୍ଯ୍ୟନ୍ତ ଖୋରଧା ଜିଲ୍ଲା ସପକ୍ଷରେ ଭାଷଣ ଦେଲି । ଶେଷରେ ବୋଲଗଡ଼ବାସୀ

ଖୋରଧା ଜିଲ୍ଲାରେ ରହିବା ପାଇଁ ଦୃଢ଼ମତ ପୋଷଣ କଲେ ।'' ମୋର ଗୋଟିଏ ବଡ଼ ଆଶା ପୂରଣ ହେଲା । ଶେଷରେ ଖୋର୍ଦ୍ଧା ଜିଲ୍ଲା ନାମ ଘୋଷଣା କରାଗଲା । ୧୯୯୩ ଏପ୍ରିଲ ୧ ରେ ତେରଟି ଜିଲ୍ଲାରୁ ତିରିଶଟି ଜିଲ୍ଲା ହେବାରୁ କେତୋଟି ଜିଲ୍ଲା ଛୋଟ ଛୋଟ ହୋଇଗଲା । ପ୍ରଶାସନିକ ଦୃଷ୍ଟିରୁ ଏହା ସ୍ୱାଗତଯୋଗ୍ୟ ହେଲେ ବି ଏତେଗୁଡ଼ାଏ ଜିଲ୍ଲା ସୃଷ୍ଟି ପରବର୍ତ୍ତୀକାଳର ଆର୍ଥିକ ବ୍ୟବସ୍ଥାକୁ ଦୋହଲାଇ ଦେଲା । ତେଣୁ ଏବେ ଅର୍ଥର ଘୋର ଅଭାବ ଦେଖାଦେଇଛି । ସେହିପରି ଏତେଗୁଡ଼ାଏ ସ୍କୁଲ, ଏକାରାତିକେ ସରକାରୀ କରିବାଟା ଉତ୍ତମ କଥା ମାତ୍ର ଏବେ ଅର୍ଥର ଘୋର ଅଭାବ ଅନଟନ ପଡୁଛି । ଆର୍ଥିକସ୍ଥିତି ସୁଦୃଢ଼ ହେଲେ ଆସ୍ତେ ଆସ୍ତେ ଏ ଅବସ୍ଥା ସୁଧୁରିଯିବ । କିନ୍ତୁ ଆମ ଲୋକ କର୍ମଠ ନୁହଁନ୍ତି । କାର୍ଯ୍ୟଦକ୍ଷ ନୁହଁନ୍ତି । ଆଳସ୍ୟପରାୟଣ ଜାତି ଉନ୍ନତି ପଥରେ ଧାବମାନ ହୋଇପାରିବ ନାହିଁ । ତେଣୁ ଆମ୍ଭମାନଙ୍କୁ ଜାଗ୍ରତ ପ୍ରହରୀ ରୂପେ କାମ କରିବାକୁ ପଡ଼ିବ ।

## ସଦରମହକୁମା ଖୋର୍ଦ୍ଧାକୁ ଆସିଲା :

ବିଜୁବାବୁ ଖୋରଧା ଜିଲ୍ଲା ଗଠନ କରି ଭୁବନେଶ୍ୱରରେ ତା'ର ସଦରମହକୁମା ରଖିଲେ । ଏଣୁ ଖୋରଧାବାସୀ ଘୋର ଅସନ୍ତୋଷ ପ୍ରକାଶ କଲେ । ୧୯୯୫ ମସିହାରେ ଜାନକୀବାବୁ ମୁଖ୍ୟମନ୍ତ୍ରୀ ପଦରେ ଅଧିଷ୍ଠିତ ହେବା ସମୟରେ ସଦରମହକୁମା ଖୋରଧାକୁ ଉଠାଇ ଆଣିବାରୁ ଖୋରଧାବାସୀଙ୍କର ପ୍ରିୟଭାଜନ ହେଲେ । ପୂର୍ବରୁ ଜାନକୀବାବୁ ଦଶ ବର୍ଷ ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । କିନ୍ତୁ କୌଣସି ଉଲ୍ଲେଖନୀୟ କାର୍ଯ୍ୟ ସଂପାଦନ କରିପାରିନଥିଲେ । ସେ ଖୋରଧାର ଅଧିବାସୀଥିବାରୁ ମୋର ତାଙ୍କ ପ୍ରତି ସ୍ୱତନ୍ତ୍ର ଦରଦ ଥିଲା । ଏଥରକ ସେ ଅଭିନବ ଉପାୟରେ ମୁଖ୍ୟମନ୍ତ୍ରୀ ପଦ ପାଇଥିଲେ । ସେ କୂଟନୀତିପରାୟଣ, ଚତୁର ରାଷ୍ଟ୍ରନୀତିଜ୍ଞ ଥିଲେ । ବହୁ କାରଣରୁ ତାଙ୍କ ସୁନାମରେ କାଳଦାଗ ଲାଗିଯାଇଥିଲା । ସେ ଜଣେ କୁଶଳୀ ରାଷ୍ଟ୍ରନୀତିଜ୍ଞ ହେଲେ ମଧ ବିଶେଷ କୃତିତ୍ୱ ହାସଲ କରିପାରିନଥିଲେ । ସେ ସାରସ୍ୱତ ସାଧକ, ପଣ୍ଡିତ, ଧୀର, ଗୁଣୀ ଜ୍ଞାନୀ ଓ ବୁଦ୍ଧିମାନ ଥିଲେ । ମୁହେଁ ମୁହେଁ କାହାପ୍ରତି କଡ଼ାଭାଷା ପ୍ରୟୋଗ କରୁନଥିଲେ । ଓଡ଼ିଶାରେ ତାଙ୍କ ପରି ଆଉଜଣେ ବ୍ୟକ୍ତି ନାହାନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ କୌଣସି ସାହସିକ ପଦକ୍ଷେପ ନେବାରେ ସେ ପ୍ରୟାସ କରିନାହାଁନ୍ତି । ଏଇଠି ଗୋଟିଏ କଥା ଉଲ୍ଲେଖ କରୁଛି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଓଡ଼ିଆଭାଷାକୁ ସରକାରୀ ଭାଷା କରିବାକୁ ଯେପରି ଚେଷ୍ଟା କରାଯାଉଥିଲା ସେହିପରି ଜାନକୀବାବୁଙ୍କ ସମୟରେ ମଧ ଚେଷ୍ଟା କରାଗଲା, ମାତ୍ର ଦୃଢ଼ତାର ଅଭାବଯୋଗୁଁ ତାହା ଫଳବତୀ ହୋଇପାରିଲାନାହିଁ ।

ଆମ୍ଭେମାନେ ଦୃଢ଼ ଆଶା ପୋଷଣ କରିଥିଲୁ ଏଥରକ ଜାନକୀବାବୁ ଓଡ଼ିଶାବାସୀଙ୍କ ପାଇଁ କିଛି ଆଖିଦୃଶିଆ କାମ କରିବେ । ପୁନଃ ଜାନକୀବାବୁ ଖୋର୍ଦ୍ଧାର ଅଧିବାସୀ ହୋଇଥିବାରୁ ମୁଁ ଖୁବ୍ ଆଶାବାଦୀ ହୋଇଥିଲି । ସେ ମୋତେ ମନେରଖନ୍ତୁ ବା ନରଖନ୍ତୁ ତାଙ୍କର ବହୁ ସୁଗୁଣ ସକାଶେ ମୁଁ ତାଙ୍କୁ ସର୍ବଦା ମନେରଖିବି ।

## ଖୋର୍ଦ୍ଧା ହାଇସ୍କୁଲ ଛାତ ପୁନଃନିର୍ମାଣ ପାଇଁ ତତ୍ପରତା :

୧୯୯୬ ମସିହାରେ ଖୋର୍ଦ୍ଧା ହାଇସ୍କୁଲର ଶତବାର୍ଷିକ ଉତ୍ସବ ପାଳନ କରାଯିବା କଥା । ଏ କଥା ଖୋରଧାର କାହା ମନକୁ ଆସୁ ନଆସୁ ମୁଁ କେତେକ ପୁରାତନ ପ୍ରତିଷ୍ଠିତ ଛାତ୍ରମାନଙ୍କ ଆଗରେ ବାରମ୍ବାର ପ୍ରକାଶ କରିଥାଏ । ସେତେବେଳେ ହେଡମାଷ୍ଟର ଥାଆନ୍ତି ବାବୁ ଶରତ କୁମାର ପଟ୍ଟନାୟକ, ଗୁଣୀ ଓ ଜ୍ଞାନୀ । ତାଙ୍କୁ ଏକଥା କହିଲି । ସେ ବି ତତ୍ପର ହେଲେ । ବେଳେବେଳେ କେତେକ ଖୋର୍ଦ୍ଧାବାସୀ ମୋତେ ପ୍ରଶ୍ନ କଲେ ଆପଣ ତ ଏ ସ୍କୁଲର ପୁରାତନ ଛାତ୍ର ନୁହଁନ୍ତି, ଆପଣ ଏତେ ଚିନ୍ତା କରୁଛନ୍ତି କାହିଁକି ? ଖୋରଧାର ସବୁକାମରେ ମୁଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥାଏ । ଯେ ଯାହା କହିଲେ ତାଙ୍କ କଥାରେ ମୋ ମନ ମାନେନାହିଁ । ମୁଁ ଚାହୁଁଥିଲି ସବୁକ୍ଷେତ୍ରରେ ଖୋର୍ଦ୍ଧାର ମାନସମ୍ମାନ ବୃଦ୍ଧି ହେଉ, ଗୌରବ ବୃଦ୍ଧି ହେଉ ।

ବିଦ୍ୟାଳୟ ସହିତ ମୋର ଘନିଷ୍ଠ ସଂପର୍କ ଥିଲା । ବିଦ୍ୟାଳୟର ପର୍ବପର୍ବାଣିରେ, ସଭାସମିତିରେ ମୁଁ ଯୋଗଦିଏ । ଦିନେ ହେଡମାଷ୍ଟର ମହାଶୟ ଚୌକିଟାକୁ ଟାଣିନେଇ ଦକ୍ଷିଣଦିଗ କାନ୍ଥକୁ ଆଉଜି ବସିଥାଆନ୍ତି । ମୁଁ ପଚାରିଲି, ଆଜ୍ଞା ! ଏପରି କଅଣ ? ସେ କହିଲେ, ଉପରକୁ ଚାହୁଁନାହାଁନ୍ତି ? ଉପରକୁ ଚାହିଁ ଦେଖିଲି, ଉପର ଟାଇଲ ପାଣିରେ ଭିଜି ଭିଜି ଖଣ୍ଡେ ଲେଖାଏଁ ଛିଟା ତଳକୁ ଖସୁଛି । ମନେ ମନେ ଲଜ୍ଜିତ ହେଲି । ଭାବିଲି, ''ଏଥିରେ ଶତବାର୍ଷିକୀ ଉତ୍ସବ ପାଳିତ ହେବ କିପରି ?''

ସେଦିନ ଗୃହକୁ ପ୍ରତ୍ୟାଗମନ ସମୟରେ ହାଇସ୍କୁଲ କଥା ଚିନ୍ତାକଲି । ମୁଁ ତ ରାଜନୀତିକ ଲୋକ ନୁହେଁ କି କ୍ଷମତାଶାଳୀ ନୁହେଁ । ଏକଥା କାହାକୁ କହିବି ?

ତେବେ, 'ନେଉଳ ଦଉଡ଼ି ଦଉଡ଼ି କିଆବାଡ଼କୁ ।' ଏନ୍.ଏ.ସି. ଚେୟାରମ୍ୟାନ ଜିତୁବାବୁଙ୍କୁ କହିଲି । ଜିତୁ ମୋ ଛାତ୍ର ତାଙ୍କୁ ବାରମ୍ବାର କହିଲି – ଏ'ତ କିଛି ହଜାର କି ଦି'ହଜାର କଥା ନୁହେଁ । ଲକ୍ଷ ଲକ୍ଷ ଆବଶ୍ୟକ । ଅତି ଗହନ କଥା । ବଡ଼ମୁଣ୍ଡିଆ ମୁଣ୍ଡ ନପକାଇଲେ କ'ଣ ହେବ ?

ଖୋରଧା ଅଞ୍ଚଳର ପ୍ରତ୍ୟେକ ସଭାସମିତିରେ ମୁଁ ଯୋଗଦିଏ । ଜିତୁ ବି ଯାଇଥାନ୍ତି । ସେଠାରେ ହାଇସ୍କୁଲ କଥା ମନେପକେଇ ଦିଏ । ସେ କେବଳ ହଁ ମାରୁଥାନ୍ତି । ରାଜନୀତି କରୁଥିବା ଲୋକଙ୍କର ଏପରି ପ୍ରକୃତି, କଂଗ୍ରେସ ଦଳ ହାତରେ ଶାସନ, ସେତେବେଳେ ଜିତୁବାବୁ କଂଗ୍ରେସର ଜଣେ ବଡ଼ପଣ୍ଡା । ତେଣୁ ଜାନକୀବାବୁଙ୍କ ପାଖକୁ ଯିବାକୁ ମୋତେ ଇଙ୍ଗିତ ଦେଉଥାଆନ୍ତି ।

## ଜାନକୀବାବୁଙ୍କ ପାଖକୁ ଯିବାପାଇଁ ସୁଯୋଗ :

ଥରେ ଗୁରୁଜଙ୍ଗ ହାଉସିଂ ବୋର୍ଡ କଲୋନୀର ଏକ ସାଂସ୍କୃତିକ ସଭା ଅନୁଷ୍ଠିତ ହେଉଥାଏ । ଏଥିରେ ଅତିଥି ହିସାବରେ ମୁଁ ଯାଇଥାଏ । ଜିତୁବାବୁ ବି ଯାଇଥାନ୍ତି । ଜିତୁ ବାବୁ  ସମସ୍ତଙ୍କର ଅତି ପ୍ରିୟ । ଯେ ଯୁଆଡ଼େ ଡାକେ ସେ ଯାଆନ୍ତି । ମନ୍ତ୍ରୀ ସୁରେଶବାବୁ ବି ଆସିବାର ଥାଏ । ବହୁଲୋକ ତାଙ୍କୁ ସାକ୍ଷାତ କରିବାକୁ ଆସିଥିଲେ । ମେଘବାହାଦିନ । ଅପରାହ୍ନ ସମୟ । କଳାହଣ୍ଡିଆ ମେଘ କୁଆଡ଼େ ଥିଲା ମୁହୂର୍ତ୍ତକେ ଉତ୍ତରଦିଗରୁ ମାଡ଼ି ଆସିଲା । ଟାଣରେ ଚପାକଣ ଅସରାଏ ବର୍ଷା ହୋଇଗଲା । କିଏ କୁଆଡ଼େ ଲୁଚିଲେ । ଜିତୁବାବୁ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନଙ୍କ ସହ ମୁଁ ଗୋଟିଏ ହଲରେ ଆଶ୍ରୟ ନେଲି । ଶୀତ ଶୀତ ଲାଗୁଥାଏ, ଚା କପେ କପେ ଦେହକୁ ଉତ୍ତାପ ଯୋଗାଉଥାଏ । ଏହି ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରିବାପାଇଁ ମୁଁ ଜିତୁବାବୁଙ୍କୁ ମନେପକାଇ ଦେଲି । ବର୍ଷା ବନ୍ଦ ହୋଇଗଲା । ସଭାକାର୍ଯ୍ୟ ଶେଷ ହେଲା । ମୋର ଗୃହକୁ ପ୍ରସ୍ଥାନ କରିବା ପାଇଁ ଜିତୁବାବୁ ବନ୍ଦୋବସ୍ତ କରିଦେଲେ ଏବଂ କହିଲେ, 'ସାର୍, ଆସନ୍ତାକାଲି ସକାଳ ସାତଟାରେ ଆପଣ ଟାଉନହଲ ପରିସରକୁ ଆସିବେ ।' ମୁଁ ଠିକ୍ ସାତଟାରେ ପହଞ୍ଚିଲି । ଜିତୁବାବୁ ମୋତେ କେବେହେଲେ ଭାବିନାହିଁ ଖୋରଧାର ସବୁ କାମ ପାଇଁ ମୁଁ ତାଙ୍କୁ ହଇରାଣ କରେ । ମୁଁ ଖୁବ୍ ସମୟ ସଚେତନ । ଠିକ୍ ଆଠଟାରେ ଏକ ବଡ଼ ବସ୍ ଆସିଲା, ମୁଁ ଚଢ଼ିଗଲି, ବାଟରୁ ଗୋପାଳକୃଷ୍ଣ ଦାସଙ୍କୁ ସଙ୍ଗରେ ନେଲି ।

ସେ ବସ୍‌ରେ ପ୍ରାୟ ଅଶୀ କି ନବେ ଲୋକ ଥିଲେ । ସମସ୍ତେ ସରପଞ୍ଚ ଓ ସଭ୍ୟବୃନ୍ଦ । ମୁଖ୍ୟମନ୍ତ୍ରୀଙ୍କ ପ୍ରକୋଷ୍ଠରେ ବସିଲୁ । ପ୍ରାୟ ଦଶଟା ବେଳକୁ ମୁଖ୍ୟମନ୍ତ୍ରୀ ମହୋଦୟ ଆସି ପହଞ୍ଚିଲେ । ସମସ୍ତଙ୍କ କଥା ଜଣ ଜଣ କରି ବୁଝିଲେ । ମୁଁ ତ ଘରୁ ଖାଇକରି ଆସି ନଥିଲି, ଉଦରଜ୍ୱାଳା ବଢ଼ିଗଲା । ମୁଖ୍ୟମନ୍ତ୍ରୀ ମୋତେ ସେମାନଙ୍କ ମେଳରେ ଦେଖି ଆଶ୍ଚର୍ଯ୍ୟ ହୋଇଥିବେ । ଚାଲିଯାଉଥିଲେ, ଜିତୁବାବୁ କହିଲେ ! ସାର୍ ! ମୁରଲୀ ସାର୍

ଆସିଛନ୍ତି ଆପଣଙ୍କ ସଙ୍ଗେ ଦି'ପଦ କଥା ହେବେ । ଖୋର୍ଦ୍ଧା କଲେକ୍‌ଟର ବାବୁ ସର୍ବେଶ୍ୱର ମହାନ୍ତି ସେଠାରେ ଉପସ୍ଥିତ ଥିଲେ । ମୁଁ ହଠାତ୍ ଠିଆହୋଇପଡ଼ି ମୋ ବହିରୁ ପାଞ୍ଚ ଖଣ୍ଡି ବଢ଼ାଇଦେଲି । ଜାନକୀବାବୁ ତତ୍କାଳରେ ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ । ଅଖଣ୍ଡ କ୍ଷମତାର ଅଧିକାରୀ । ତାଙ୍କ ସହିତ ମୋର ପୂର୍ବରୁ ପରିଚୟ ଥିଲା । ତେବେ ବଡ଼ଲୋକ । ମଝିରେ ଦଶ ପନ୍ଦର ବର୍ଷ ଚିଠିଦେବାରେ ଛାଡରା ହୋଇଯାଇଥିବାରୁ ସେ ଦୋଦୋଚିହ୍ନା ହେଲେ । ମୁଁ ନମ୍ରଭାବରେ ଖୋରଧା ହାଇସ୍କୁଲ ଶତବାର୍ଷିକ ପାଳନ କଥା ଓ ଛାତରୁ ପାଣି ଗଳିବା କଥା ଏକାନିଶ୍ୱାସରେ କହିଗଲି । ସେ ସ୍କୁଲ ତାଙ୍କର ନିଜ ସ୍କୁଲ । ତାଙ୍କ ମନକୁ ଛୁଇଁଲା ଭଳିଆ ଗୁଡ଼ିଏ କଥା କହିଲି । ସେ ଧୈର୍ଯ୍ୟ ସହକାରେ ଶୁଣିଲେ । ସର୍ବେଶ୍ୱରବାବୁ ଠାରୁଥାନ୍ତି ବନ୍ଦ କରିବାକୁ । ସେମାନଙ୍କର ମୁଖ୍ୟମନ୍ତ୍ରୀଙ୍କୁ ଭାରି ଡର । ମାତ୍ର ମୁଁ ତ ବାହାର ଲୋକ । ମୁଁ ରୋକ୍‌ଠୋକ ସବୁକଥା ପାଞ୍ଚ ମିନିଟରେ ଆମୂଳଚୂଳ କହିଗଲି । ସେ ସାଙ୍ଗେ ସାଙ୍ଗେ ମୋତେ ପଚାରିଦେଲେ, ଛାତକୁ କେତେ ବୟସ ହେଲାଣି । ମାତ୍ର ମୁଁ କହିବା ପୂର୍ବରୁ ସେ ନିଜେ ହିସାବକରି କହିଦେଲେ ପଞ୍ଚସ୍ତରି ବର୍ଷ । ସାଙ୍ଗେ ସାଙ୍ଗେ କଲେକ୍‌ଟରଙ୍କୁ ଆଦେଶ । ସେଦିନ ସେତିକି । ମୋ ପାଇଁ ଶୁଭମୁହୂର୍ତ୍ତ ଥିଲା ବୋଲି ଭାବିଲି । ଗୋଟିଏ ମହତ କାମ ହେବ । ମୁଖ୍ୟମନ୍ତ୍ରୀଙ୍କ ଦୁଇଟି ଲେଖାଏଁ ରସଗୋଲା ପେଟରେ କେଉଁ କୋଣରେ ପଡ଼ିଲା । ପରେ ପରେ ଜିତୁବାବୁ ଆମ୍ଭମାନଙ୍କୁ ଜଳଖିଆ ଦେଇ ଆପ୍ୟାୟିତ କଲେ । ପରଦିନଠାରୁ ଛାତ କାର୍ଯ୍ୟ ଆରମ୍ଭ ହେଲା ଏବଂ ବର୍ଷାଦିନ ପୂର୍ବରୁ କାମ ଶେଷ । ଏକ ବିରାଟ ସଫଳତା ହାସଲ ହେଲା । ବିଦ୍ୟାଳୟ ନୂତନ ରୂପ ଧାରଣକରି ଅତୀବ ମନୋରମ ଦେଖାଗଲା । ଅନ୍ୟ କାହା କଥା ମୁଁ କହିପାରିବି ନାହିଁ । ମାତ୍ର ମୋ ମନ ଆନନ୍ଦରେ ଉଦ୍‌ବେଳିତ ହେଲା । ଜାନକୀବାବୁଙ୍କ ପ୍ରତି ମୋର କୃତଜ୍ଞତା ପ୍ରକାଶ କଲି । ଭାବିଲି ଆହୁରି ପଚାଶ କି ଶହେ ବର୍ଷ ପାଇଁ ଛାତର ଚିନ୍ତା ନାହିଁ ।

## ପ୍ରଧାନଶିକ୍ଷକଙ୍କ କ୍ୱାଟର ଛାତ ନିର୍ମାଣ :

ଶରତବାବୁ ହେଡମାଷ୍ଟର କ୍ୱାଟରରେ ରହୁ ନଥିଲେ, ଭୀମବାବୁ ବି ରହିଲେ ନାହିଁ । ସେହି ଶତବାର୍ଷିକ କାର୍ଯ୍ୟରେ ଫକୀରବାବୁ ଓ ଖୋରଧାର କେତେଜଣ ଜାନକୀବାବୁଙ୍କୁ ସାକ୍ଷାତ କରିବାକୁ ସେଦିନ ଯାଇଥିଲେ । ଜିତୁବାବୁ ତ ମୂଳ । ମୋତେ ସାଙ୍ଗରେ ନେଇଥିଲେ । ମୁଁ ଧୋତି, କୁର୍ତ୍ତା ପିନ୍ଧା ଲୋକ । ଜାନକୀବାବୁ ଦିଲ୍ଲୀ ଯାତ୍ରା କରିବେ । ଠିଆରେ ଠିଆରେ କଥାଭାଷା ହେଉଥିଲେ । ମୋତେ ଅନ୍ୟମାନେ କଅଣ ଭାବି

ପଛକୁ ଠେଲି ଦେଉଥିଲେ, କିଏ କ'ଣ ଅସ୍ପଷ୍ଟ କହୁଥାଆନ୍ତି ମୋତେ ଶୁଣା ଯାଉନଥାଏ । ମୁଁ ଟିକିଏ ପଛରୁ ଜୋରରେ ପାଟିକରି କହିଦେଲି, ''ଆଜ୍ଞା, ହେଡମାଷ୍ଟର ତ କ୍ୱାଟରରେ ରହୁନାହାନ୍ତି ପାଠପଢ଼ା ହେବ କିପରି ?'' ଜାନକୀବାବୁ ଦୂରରେ ରହି ପଚାରିଲେ, ''କାହିଁକି ରହୁନାହାନ୍ତି ?'' ମୁଁ ବଡ଼ ପାଟିରେ ପୁଣି କହିଦେଲି ''ସାର୍ ତାଙ୍କ କ୍ୱାଟର ଛାତରୁ ପାଣି ଗଳି ଘରେ ଲହଡ଼ା ଭାଙ୍ଗୁଛି ।'' ସେ ପୂର୍ବପରି ଆଦେଶ ଦେଲେ । ହେଡମାଷ୍ଟର କ୍ୱାଟର ଛାତ ପୁନଃନିର୍ମାଣ ମାସକ ଭିତରେ ଶେଷ ହେଲା ।

## ଶତବାର୍ଷିକୀ ପାଳନର ପଥ ଖୋଲିଗଲା :

ଏ ଦୁଇଟି ମୋର ମୁଖ୍ୟ କାମ ଥିଲା । ତାହା ଶେଷହେଲା । ଏଣିକି ଶତବାର୍ଷିକୀ ଉତ୍ସବ ପାଳନ ପ୍ରସ୍ତୁତି ପର୍ବ । ମୁଖ୍ୟ କାମ ସିନା ଶେଷ ହେଲା– ( ୧ ) ଶତବାର୍ଷିକୀ ସ୍ମାରକୀ ହଲ ନିର୍ମାଣ, ( ୨ ) ଅଶ୍ୱ ଉପରେ ବକ୍ସି ଜଗବନ୍ଧୁଙ୍କ ପ୍ରତିମୂର୍ତ୍ତି ନିର୍ମାଣ, ଏବଂ (୩) ଶତାବ୍ଦୀ ଅବକାଶ ମାଗାଜିନ ପ୍ରକାଶ କାମ ବାକି ରହିଲା । କିନ୍ତୁ ନାନା ଘାତପ୍ରତିଘାତ ହେତୁ ଶତବାର୍ଷିକୀ ଉତ୍ସବ ଠିକ୍ ସମୟରେ ପାଳିତ ହୋଇପାରିଲାନାହିଁ । ନିର୍ବାଚନ ପରେ ନିର୍ବାଚନ, କେନ୍ଦ୍ର ସ୍ତରରେ ନିର୍ବାଚନ, ଏନ.ଏ.ସି. ନିର୍ବାଚନ, ପଞ୍ଚାୟତ ନିର୍ବାଚନ ସବୁ ଭଣ୍ଡୁର କରିଦେଲା । ତଥାପି ଖୋରଧା ସହରର କେତେକ ଆଗ୍ରହୀ ବ୍ୟକ୍ତି ଓ ଭୁବନେଶ୍ୱରରେ ଅବସ୍ଥାନ କରୁଥିବା ଖୋରଧା ହାଇସ୍କୁଲର କେତେକ ପୁରାତନ ଛାତ୍ର ବହୁଥର ଖୋରଧା ହାଇସ୍କୁଲରେ ସଭାସମିତି କଲେ । ଖୋରଧା ସହରର ଆଗ୍ରହୀ ପୁରାତନ ଛାତ୍ରମାନଙ୍କ ସହିତ ମୁଁ ଦିନରାତି ସହରର ଓ ପଡ଼ୋଶୀ ଗ୍ରାମମାନଙ୍କର, ଯଥା ଗୁରୁଜଙ୍ଗ, କୁମାରବସ୍ତ ଆଦି ପୁରାତନ ଛାତ୍ରମାନଙ୍କ ନିକଟରୁ ଚାନ୍ଦା ଆଦାୟ କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କଲି । ତଥାପି ୧୯୯୭ ମସିହା ଶେଷସୁଦ୍ଧା ଉତ୍ସବ ପାଳିତ ହୋଇପାରିଲା ନାହିଁ । 'କଟକ ଚିନ୍ତା ବାଇମୁଣ୍ଡିକୁ' । ମନରେ ଗଭୀର ଦୁଃଖ । ଏଥି ମଧରେ ସ୍ମାରକୀ ହଲର ବାରପଣ ଶେଷ ହେଲାଣି ଓ ଫକୀରବାବୁ ଏବଂ ମିହିର ନାରାୟଣଙ୍କ ଚେଷ୍ଟାରୁ ଅଶ୍ୱପୃଷ୍ଠରେ ବକ୍ସିଙ୍କ ପ୍ରତିମୂର୍ତ୍ତି ଯଥାସ୍ଥାନରେ ଅବସ୍ଥାପିତ ହୋଇସାରିଥାଏ । ମାତ୍ର ସୋଭେନିୟର କାର୍ଯ୍ୟରେ ଅଗ୍ରଗତି ହୋଇପାରୁନଥାଏ । ଭୁବନେଶ୍ୱରରୁ ଫକୀରବାବୁ, କମଳାକାନ୍ତ, ଡକ୍ଟର ବି.ସି. ରାୟ ଓ ମିହିର ନାରାୟଣ ବହୁ ସଭାରେ ଯୋଗଦିଅନ୍ତି । ମୁଁ ପ୍ରତ୍ୟେକ ସଭାରେ ଯୋଗଦିଏ । ପରାମର୍ଶ ବି ଦିଏ, କିଏ ଗ୍ରହଣ କରୁ ବା ନକରୁ । ମୁଁ ଅତ୍ୟଧିକ ଆଗ୍ରହୀ ଥିଲି ଏ ଉତ୍ସବ ପାଳନ ପାଇଁ, ମାତ୍ର ମୋ' ପରି ଅଶୀତି ବର୍ଷୀୟ ବୃଦ୍ଧ ହାତରେ କ'ଣ ହେବ ?

## ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ :

୧୯୯୭ ମସିହାଠାରୁ ମୁଁ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହୋଇ ରହିଛି ଏବଂ ଉତ୍କଳ ସମ୍ମିଳନୀର ଲକ୍ଷ୍ୟ ସାଧନ ପାଇଁ ବନ୍ଧୁମାନଙ୍କ ସଙ୍ଗେ ମିଶି ବହୁ କାର୍ଯ୍ୟ ସାଧନ କରିଛି । ଏବେ ଅଶୀତିତମ ବୟସରେ ଖୋରଧା ସାହିତ୍ୟ ସଂସଦର ଉପଦେଷ୍ଟା ହୋଇ ରହିଛି । ସଭ୍ୟମାନଙ୍କୁ ଓ କର୍ମକର୍ତ୍ତାମାନଙ୍କୁ ଉତ୍ସାହିତ କରୁଛି । ମଝିରେ ମଝିରେ ଖଣ୍ଡିଏ ଖଣ୍ଡିଏ ପୁସ୍ତକ ପ୍ରକାଶ କରୁଛି ।

## ସାମାନ୍ୟ ସମ୍ବର୍ଦ୍ଧନା :

ଏଇଠି ଗୋଟିଏ ସାମାନ୍ୟ କଥା ଉଲ୍ଲେଖ କରିବି । ଗତ ଦଶନ୍ଧି ଭିତରେ ମୋର ସାମାନ୍ୟ ସାହିତ୍ୟ ସାଧନା ଓ ଜନସେବା ପାଇଁ ରୋଟାରୀ କ୍ଲବ ଖୋର୍ଦ୍ଧା, ଗଡ଼ମାଣିତ୍ରୀ ପଲ୍ଲୀ ପ୍ରତିଭା ଅନୁଷ୍ଠାନ, କୁସୁମାଟି ହାଇସ୍କୁଲ, ଓଳସିଂହ ପ୍ରଗତି ସାଂସ୍କୃତିକ ଅନୁଷ୍ଠାନ, ଖୋରଧା ବିଜ୍ଞାପିତ ଅଞ୍ଚଳ ପରିଷଦ, ଖୋର୍ଦ୍ଧା ସହରର ନୂପୁର ସାଂସ୍କୃତିକ ଅନୁଷ୍ଠାନ, ଜଟଣୀ ଶତାବ୍ଦୀ ସାହିତ୍ୟ ଅନୁଷ୍ଠାନ, ହଳଦିଆଗଡ଼ ଗୀତା ପ୍ରକାଶନୀ ଅନୁଷ୍ଠାନ, ଜଟଣୀ ପ୍ରାଣନାଥ ଉଚ୍ଚ ବିଦ୍ୟାଳୟ, ଖୋର୍ଦ୍ଧା ସାହିତ୍ୟ ସଂସଦ, ତୁଳସୀ ସାହିତ୍ୟ ସଂସଦ, ଗଡ଼ ବାଣୀକିଲୋ, ଉତ୍କଳ ସମ୍ମିଳନୀ, ଖୋର୍ଦ୍ଧା ଶାଖା ତରଫରୁ ସମ୍ବର୍ଦ୍ଧିତ ହୋଇଛି । ବୃଦ୍ଧକାଳେ କିଏ ଟିକିଏ ଆଦର କଲେ ଆନନ୍ଦ ମିଳୁଛି । ପରମାୟୁ ବି ବଢୁଛି ।

## ସ୍ୱଗ୍ରାମରେ ବଗୁଲୀବନ୍ଧ ପୁନଃନିର୍ମାଣ :

ଏଥିମଧ୍ୟରେ ଗୋଟିଏ ଭାବନା ମନରେ ଉଦ୍ରେକ ହେଲା । ଯାହା ତ ଦେଶପାଇଁ କଲି ଏବେ ନିଜ ଗ୍ରାମାଞ୍ଚଳର ଗୋଟିଏ ବଡ଼ ଅଭାବ ଦୂର କରିବି ବୋଲି ଚେଷ୍ଟିତ ହେଲି । ଏହା ମଧ୍ୟ ଜନସେବା । ଆମ ଗାଁ ସମୀପବର୍ତ୍ତୀ ଓଗାଳପଡ଼ା, ଗୋପାଳପୁର, ଦକ୍ଷିଣମୁଣ୍ଡ ମୁହାଣ, ଛେଳଦା, ଓଗରସୁଆଁ, ଗୋପୀନାଥପୁର ଓ ଗଙ୍ଗପଡ଼ାମୌଜା ଅବସ୍ଥିତ । ଗତ ସାତ ଆଠବର୍ଷ ହେଲା ଏ ଅଞ୍ଚଳର ପ୍ରଧାନ ଫସଲ ଧାନ ଜଳ ଅଭାବରୁ ନଷ୍ଟ ହୋଇଯାଉଛି । ଉକ୍ତ ସାତ ଆଠ ଖଣ୍ଡ ଗ୍ରାମର ପ୍ରାୟ ଦଶହଜାର ଏକର ଜମି ଉଠିଆ ହେବ । ଏତଦ୍‌ବ୍ୟତୀତ ଜଳାଭାବରୁ ଶୀତଫସଲ ହୋଇପାରୁନଥିଲା । ଆମ ଗାଁରେ ଏକ ପ୍ରାକୃତିକ ନାଳ ଉପରେ ବଗୁଲୀ ବନ୍ଧ ପୂର୍ବରୁ ନିର୍ମିତ ହୋଇଥିଲା । ମାତ୍ର ଅସଲ ସମୟରେ ବନ୍ଧ ଭାଙ୍ଗିଯାଏ । ମରୁଡ଼ି ପଡ଼େ । ଫସଲ ହୁଏନାହିଁ । ବ୍ଲକ ତରଫରୁ ଯେଉଁ ବନ୍ଧ ପଡୁଥିଲା ତାର ଖଇଚା କାମ ହେତୁ କଣ୍ଟ୍ରାକ୍ଟରର ଅଣୀ ବିଶ୍ ନୀତି ଯୋଗୁଁ ଭାସିଯାଉଥିଲା । ଗୋଟିଏ ସ୍ଥାୟୀ ବନ୍ଧ ନିର୍ମାଣ କରିବାକୁ ହେବ । ମୁଁ ଗାଁରେ ରହୁନାହିଁ । ତଥାପି ବହୁ ସମୟରେ ଗ୍ରାମକୁ ଯାତ୍ରାକରି ଏ ଅବସ୍ଥା ଅନୁଧ୍ୟାନ କରିଛି । ଗାଁ ଲୋକଙ୍କ ସଙ୍ଗେ ମିଶୁଛି, ବସୁଛି, ଉଠୁଛି ।

୧୯୯୦ ମସିହାରେ ଜନତା ସରକାର ପ୍ରତିଷ୍ଠା ହେଉହେଉ ଚେଷ୍ଟା ଚଳାଇଲି । ମାତ୍ର ଫଳବତୀ ହେଲାନାହିଁ । ଜିଲ୍ଲା ଅଫିସ ପୁରୀରେ । ମୁଁ ଅବସ୍ଥାନ କଲି ଖୋର୍ଦ୍ଧାରେ । କଷ୍ଟ ସହ୍ୟକରି ଓ ପଇସା ଖର୍ଚ୍ଚ କରି ବାରମ୍ବାର ପୁରୀ ଦୌଡ଼ିପାରିଲି ନାହିଁ । କେବଳ ଜିଲ୍ଲାପାଳଙ୍କୁ ଦରଖାସ୍ତ ଦେଇଦେଲେ କାମ ହେବନାହିଁ । ସେଥିପାଇଁ ବିହିତ କାର୍ଯ୍ୟାନୁଷ୍ଠାନ ଆବଶ୍ୟକ । ଏଥିମଧ୍ୟରେ ୧୯୯୩ ମସିହାରେ ଖୋର୍ଦ୍ଧା ଜିଲ୍ଲା ଗଠିତ ହେଲା । କିନ୍ତୁ ଭୁବନେଶ୍ୱରରେ ସଦର ମହକୁମା ରହିଲା । ତଥାପି ଚେଷ୍ଟା ଚଳାଇଲି । ଆମ ଗାଁ ତଳଖେତା ଛକ ଉପରେ ଲୁଗାଦୋକାନୀ ବାବୁ ରବୀନ୍ଦ୍ର ନାଥ ସୁବୁଦ୍ଧିଙ୍କୁ ଧରି ନିଜ ହାତରୁ ପଇସା ଖର୍ଚ୍ଚକରି ବିଧାୟକ, ମନ୍ତ୍ରୀ, ଜିଲ୍ଲାପାଳଙ୍କ ନିକଟକୁ ରେଜେଷ୍ଟ୍ରି ଚିଠିମାନ ପଠାଇଲି । ଏଥିରେ କ'ଣ କାମ ହୁଏ ? ସେତେବେଳେ ଜିଲ୍ଲାପାଳ ଥିବା ଦ୍ୱିତୀୟ ଜିଲ୍ଲାପାଳ ବାବୁ ରଘୁନାଥ ମିଶ୍ରଙ୍କୁ ଖୋର୍ଦ୍ଧା ପି.ଡବ୍ଲ୍ୟୁ.ଡି. ଡାକବଙ୍ଗଳାରେ ଜନତାଦଳ ନେତା ରବି ବର୍ମାଙ୍କ ସହାୟତାରେ ସାକ୍ଷାତ କରି ସମସ୍ତ କଥା ଜଣାଇଲି । ସେ ମହାଶୟ ସବୁକଥା ଶୁଣିଲେ, ମାତ୍ର ତାଙ୍କର ଚାକିରିକାଳ ଶେଷ ହୋଇ ଆସୁଥିବାରୁ ଆଗ୍ରହ ପ୍ରକାଶ କଲେନାହିଁ । ସମସ୍ତ କାର୍ଯ୍ୟ ଥରକେ ହୋଇଯାଏ ନାହିଁ । ସେ ସମୟଟା ଗଲା ।

୧୯୯୫ ମସିହା ପ୍ରାରମ୍ଭରେ ରାଜ୍ୟରେ ପୁନଃ ନିର୍ବାଚନ ହେବାରେ କଂଗ୍ରେସ କ୍ଷମତାକୁ ଆସିବାରୁ ୧୯୯୫ ମସିହା ଏପ୍ରିଲ ପହିଲାଦିନ ଜିଲ୍ଲାପାଳ ଅଫିସ ଆସି ଖୋର୍ଦ୍ଧା ହାଇସ୍କୁଲର ରାଜକୀୟ ଛାତ୍ରାବାସ ପ୍ରାସାଦରେ ପରିଚାଳିତ ହେଲା । ମୋର ଆନନ୍ଦ କହିଲେ ନସରେ । ଛାତ୍ରାବାସ ମୋ ବସା ପାଖରେ, ତେଣୁ କାମ ତ୍ୱରାନ୍ୱିତ କରିବାରେ ସୁବିଧା ହେଲା । ସବୁ ଅଫିସରଙ୍କୁ ଭେଟି କାମଟି କରିପାରିବି ବୋଲି ଚିନ୍ତାକଲି । ଜିଲ୍ଲାପାଳ ଥିଲେ ସର୍ବେଶ୍ୱର ମହାନ୍ତି, ଆଇ.ଏ.ଏସ୍. ।

୧୯୯୬ ମସିହାରେ ପାର୍ଲିଆମେଣ୍ଟ ନିର୍ବାଚନରେ ଶ୍ରୀ ସୌମ୍ୟରଂଜନବାବୁ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ସାଂସଦ ରୂପେ ନିର୍ବାଚିତ ହେଲେ । ଶତବାର୍ଷିକୀ ଉତ୍ସବର ଶୁଭାରମ୍ଭ କରିବା ପାଇଁ ସେ ବି.ଜେ.ବି. ହେଡମାଷ୍ଟରଙ୍କ କକ୍ଷରେ ପଦାର୍ପଣ କଲେ । ଅଭ୍ୟର୍ଥନା ସମିତିର ସକ୍ରିୟ ସଭ୍ୟ ହିସାବରେ ମୁଁ ସେଠାରେ ଉପସ୍ଥିତ ରହିଲି । ସର୍ବେଶ୍ୱର ବାବୁ ସୌମ୍ୟରଂଜନବାବୁଙ୍କ ସହିତ ଥିଲେ । ମୋତେ ଗୋଟାଏ ସୁଯୋଗ ମିଳିଲା । ଖୋର୍ଦ୍ଧାରୁ ଭୁବନେଶ୍ୱରକୁ ଯାଇଥିବା ପାଞ୍ଚ ନମ୍ବର ଜାତୀୟ ରାଜପଥରେ ନିର୍ମିତ ଖରଖରୀ ଶଙ୍କଠାରୁ ନିମ୍ନଭାଗକୁ ପ୍ରାୟ ଏକ କି.ମି. ଦୂର ଯୋର ଉପରେ ବଙ୍ଗୁଲୀବନ୍ଧର ଏକ ମାନଚିତ୍ର ଅଙ୍କନ କରି ସୌମ୍ୟବାବୁଙ୍କୁ ଦେଖାଇଲି ଓ ବୁଝାଇଲି ଏବଂ ଅନୁରୋଧ କଲି ''ଟିକିଏ ଜିଲ୍ଲାପାଳଙ୍କୁ ପରାମର୍ଶ ଦିଅନ୍ତୁ ମୋ କଥା ବୁଝିବେ ।'' ସେ ତ ଲୋକପ୍ରତିନିଧି, କହିବେ ନାହିଁ କାହିଁକି ?

ତହିଁ ଆରଦିନ ଏକ ଦରଖାସ୍ତ ଧରି ଅଫିସ ସମୟରେ ଜିଲ୍ଲପାଳଙ୍କୁ ସାକ୍ଷାତ କଲି । ଜିଲ୍ଲାପାଳ ମହୋଦୟ ସେଥିରେ ଦସ୍ତଖତ କରି ସଂପୃକ୍ତ ବିଭାଗକୁ ପଠାଇଦେଲେ । ସେଠାରୁ ଚିଠି ନମ୍ବର ନେଇ ମୁଁ ଦୁଇ ଦିନପରେ ଡି.ଆର.ଡି.ଏ. ଅଫିସକୁ ଗଲି । ଜିଲ୍ଲପାଳଙ୍କ ଅଫିସଠାରୁ ତାହା ତିନି କି.ମି. ଦୂର ରାସ୍ତା । ଥରେ ଦୁଇଥର ସାକ୍ଷାତ ହୋଇପାରିଲା ନାହିଁ । ସେତେବେଳେ ନୂଆ ହୋଇ ନିର୍ବାଚିତ ହୋଇଥିବା ଜିଲ୍ଲାପରିଷଦ ଚେୟାରମ୍ୟାନ ବାବୁ ରାମଚନ୍ଦ୍ର ମହାପାତ୍ରଙ୍କୁ ଭେଟି ସବୁକଥା ବର୍ଣ୍ଣନା କଲି । ସେ ମୋର ପୂର୍ବ ପରିଚିତ ଏବଂ ମୋ ପୁଅର ପଢ଼ାସାଥୀ । ଏତେଲୋକଙ୍କୁ ସାକ୍ଷାତ କରିବାର ତାତ୍ପର୍ଯ୍ୟ ହେଉଛି ବର୍ଷାଦିନ ପୂର୍ବରୁ ବନ୍ଧ ନିର୍ମାଣ କାମଟି ଶେଷ ହେଉ ।

ଏଥିମଧ୍ୟରେ ଗ୍ରାମକୁ ଯିବାକୁ ପଡ଼ିଲା । ଛକ ଉପରେ ରବୀନ୍ଦ୍ର ସୁବୁଦ୍ଧିକୁ ଦେଖି ଉପଦେଶ ଦେଲି, "ଆରେ ରବି, ମୁଁ ତେଣେ ଚେଷ୍ଟା କରୁଛି, ତୁ ଗୋଟିଏ କାମ କର ।" ରବି ମୋର ଗାଉଁଲି ନାତିଲେଖା ହେବ । କେତେଜଣ ଗାଁ ଯୁବକଙ୍କୁ ଧରି ଆମ ବିଧାୟକ ଓ ମନ୍ତ୍ରୀ ଶ୍ରୀ ସୁରେଶ ଚନ୍ଦ୍ର ରାଉତରାୟଙ୍କ ଉପରେ ଚାପ ପକାଅ । ମୁଁ ବୁଢ଼ାଲୋକ, ରାତ୍ରିରେ ତୁମମାନଙ୍କ ସଙ୍ଗେ ଯାଇପାରିବି ନାହିଁ । ପରେ ତା'ଠାରୁ ଅବଗତ ହେଲି ଆମ ଗାଁର ବିପ୍ରଚରଣ ପାଇକରାୟ, ନଗେନ୍ଦ୍ର ମହାରଣା, ଉଲ୍ଲାସ ଚନ୍ଦ୍ର ସ୍ୱାଇଁ, ବସନ୍ତ ନାଏକ, ଧର୍ମାନନ୍ଦ ପ୍ରଧାନ ଓ ସେ ନିଜେ ସରପଞ୍ଚଙ୍କୁ ଧରି ରାତ୍ରିରେ ଯାତ୍ରାକରି ମନ୍ତ୍ରୀ ସୁର ରାଉତରାୟଙ୍କୁ ଭେଟି ସବୁକଥା ଜଣାଇଲେ । ସୁରବାବୁ ଖୁବ୍ ଆଗ୍ରହୀ ବ୍ୟକ୍ତି । ସେ ସଙ୍ଗେ ସଙ୍ଗେ ସେହି ରାତ୍ରିରେ ଭୁବନେଶ୍ୱରରେ ଅବସ୍ଥାନ କରୁଥିବା ଜିଲ୍ଲାପାଳ ବାବୁ ସର୍ବେଶ୍ୱର ମହାନ୍ତିଙ୍କୁ ଫୋନ ଦ୍ୱାରା ଅବଗତ କରାଇଲେ ଏବଂ କାର୍ଯ୍ୟଟି କିପରି ଶୀଘ୍ର ସମ୍ପନ୍ନ ହେବ ପରାମର୍ଶ ଦେଲେ । ସେମାନେ ତାଙ୍କ କାମ ଶେଷ କଲେ ଏଣିକି ମୋ କାମ ।

## ଏଣିକି ମୋ କାମ :

ଦୁଇ ଚାରିଦିନପରେ ମୁଁ ଏ କାର୍ଯ୍ୟର ଅସଲ ଅଫିସର ବାବୁ ଦୁର୍ଗାମାଧବ ଦାଶ ମହାଶୟଙ୍କୁ ସାକ୍ଷାତ କଲି । ସେ ହିଁ ଏ କାମଟା କରିବେ । ଦୁର୍ଗାମାଧବବାବୁ ବେଶ୍ ପସନ୍ଦିଆ ମଣିଷ । ପାଞ୍ଚହାତିଆ ମରଦ, ଆଡ଼ ଦୀର୍ଘ ସମାନ । ଗୋରା ତକ୍ ତକ୍ ଦେହ, ମୁହଁରୁ ଜ୍ୟୋତି ବାହାରୁଛି । ଉପରିସ୍ଥ ବଡ଼ ଅଫିସରମାନଙ୍କର ସହିତ କିପରି ବାକ୍ୟାଳାପ କରିବାକୁ ପଡ଼େ ମୋତେ ଜଣାନାହିଁ । ନିଜକୁ ନ୍ୟୂନ ମନେକରି କେବେ କହି ହୁଏନାହିଁ । ତାଙ୍କ ଅଫିସ ଭିତରକୁ ହଠାତ୍ ପଶିଯାଇ ମୋ ଗୁହାରି ଜଣାଇଲି । ମାତ୍ର ପାଟିଟା ପାଠ ପଢ଼େଇବା ଦିନଠାରୁ ବଡ଼ । ତେଣୁ ମୋ ଉପରେ ଖୁବ୍ ଚିଡ଼ିଗଲେ । ଆଉ ମୁଁ ଯେତେ ବାଗେଇ କହିଲେ ମଧ୍ୟ କର୍ଣ୍ଣପାତ କଲେ ନାହିଁ । ମୁଁ ଟିକିଏ ଚିଡ଼ା ଲୋକ । ବାଧହୋଇ ସେ ସ୍ଥାନ ପରିତ୍ୟାଗ କଲି । ଏକବାରକେ ଗୃହରେ ହାଜର । ମନରେ ଆଘାତ ଲାଗିଲା । ପରମୁହୂର୍ତ୍ତରେ ଆତ୍ମ

ସମୀକ୍ଷା କଲି । ଜାଣିଛି ''ଶ୍ରେୟାଂସି ବହୁ ବିଘ୍ନାନି'' । ସମୂହକାମ କଲାବେଳେ ଏପରି ବିଘ୍ନ ଘଟେ । ତେବେ ଦୁଃଖ କାହିଁକି ?

ମନଟା ଖଟା ଖଟା ଲାଗୁଥିଲା । ଅପରାହ୍ଣରେ ଦାଣ୍ଡ ବାରଣ୍ଡାରେ ବସି କଅଣ ଗୋଟାଏ ଭାବୁଛି ଏହି ସମୟରେ ସନ୍ଧ୍ୟାବେଳକୁ ଅଫିସରଙ୍କ ଷ୍ଟେନୋ ବାବୁ ଦେବ ଜେନା (ମୋ ଛାତ୍ର) ମୋ ଦୁଆରେ ହାଜର । ''ଦେବ ! କୁଆଡ଼େ ଆସିଛୁ ?'' ଦେବ କହିଲା, ''ସାର୍' ମୁଁ ଅଫିସରକୁ ଆପଣଙ୍କ ପରିଚୟ ଦେଲି ଏବଂ କହିଲି, ' ଆପଣ ସହରର ଜଣେ ଜଣାଶୁଣା ବ୍ୟକ୍ତି, ଲେଖକ ଏବଂ ଅବସରପ୍ରାପ୍ତ ପ୍ରଧାନଶିକ୍ଷକ' । ଏତିକି ଶୁଣି ସେ ଦୁଃଖିତ ହେଲେ ଏବଂ ଆପଣଙ୍କୁ କହିଛନ୍ତି ଯିବାପାଇଁ ।'' ଆଚ୍ଛାହେଉ ଯିବି । ମୋର ତ କାମ, ମାନକରି ଖପରାରେ ଖାଇଲେ କ'ଣ ହେବ ?

ତହିଁ ଆରଦିନ ମୋ ଲିଖିତ ପୁସ୍ତକରୁ ତିନିଖଣ୍ଡ ହାତରେ ଧରି ଅଫିସ ଭିତରକୁ ପ୍ରବେଶ କଲି । ଗୋଟିଏ ଲମ୍ବା ଚଉଡ଼ା ଦଣ୍ଡବତ ପକାଇଲି । ପୁସ୍ତକଗୁଡ଼ିକ ତାଙ୍କ ଟେବୁଲ ଉପରେ ଥୋଇଦେଲି । ସେ ସଙ୍ଗେ ସଙ୍ଗେ ଦେଖୁ ଦେଖୁ କହିଲେ, ''ହେଡମାଷ୍ଟର ବାବୁ, ଗୋଟିଏ ଭୁଲ ହୋଇଗଲା ।'' ତାଙ୍କ ମୁହଁରୁ କଥା ବାହାରିବା ପୂର୍ବରୁ ମୁଁ କହିଲି, ''ନାଇଁ ଆଜ୍ଞା, ଆପଣଙ୍କର କିଛି ଭୁଲ ନାହିଁ । ମୋର ଆଜ୍ଞା କିଛି ଲୋଡ଼ା ନାହିଁ । ଗୋଟିଏ କଥା ବଗୁଲୀବନ୍ଧ କିପରି ନିର୍ମାଣ ହେବ ? ଆଠ ଦଶଖଣ୍ଡ ଗ୍ରାମର ମହାଉପକାର ସାଧିତ ହେବ । ଆପଣଙ୍କର ବି ନାଁ ରହିବ ।'' ମୁଁ ସବୁକଥା ମୁହୂର୍ତ୍ତକେ କହିଗଲି·ଏବଂ ମୋ ଲିଖିତ ଭିନ୍ନ ଭିନ୍ନ ପୁସ୍ତକ ପ୍ରଦାନ କଲି । ଶୁଣିଥିଲି ସେ ଜଣେ ବିଦ୍ୱାନ ଗୁଣଗ୍ରାହୀ ଲୋକ, ପଠନପ୍ରିୟ । ତାଙ୍କଠାରୁ ବିଦାୟ ନେଇ ଗୃହକୁ ପ୍ରତ୍ୟାଗମନ କଲି । ଖୋର୍ଦ୍ଧାର ବହୁ ସାଧାରଣ ସାହିତ୍ୟ ସଭାରେ ତାଙ୍କ ସଙ୍ଗେ ଦେଖାସାକ୍ଷାତ ହୁଏ । ସବୁଥର ବିନୟରେ କହେ ସେହି ଗୋଟିଏ କଥା, ବଗୁଲୀବନ୍ଧ ନିର୍ମାଣ । ବୋଧହୁଏ ଦୁଇମାସପରେ କାର୍ଯ୍ୟ ଆରମ୍ଭ ହେଲା । ବାରିକ-ମିସ୍ତ୍ରୀ ବିଭାଗ ପରିବର୍ତ୍ତେ ମୃତ୍ତିକା ସଂରକ୍ଷଣ ବିଭାଗ ଦ୍ୱାରା ସେ କାମ କରେଇଲେ ବୋଲି ମୋତେ ଫୋନଦ୍ୱାରା ଜଣେଇଲେ । ମାନ୍ୟବର ମନ୍ତ୍ରୀ ସୁରେଶ ରାଉତରାଙ୍କୁ ଟିକିଏ ପ୍ରଭାବିତ କରିବାକୁ ମୋତେ ଜଣାଇଲେ । ମୁଁ ସେଥିରେ ହେଳା କଲିନାହିଁ ।

ତପ୍‌ରେ ମୃତ୍ତିକା ସଂରକ୍ଷଣ ବିଭାଗକୁ ଦୌଡ଼ି ସେମାନଙ୍କୁ ମିଷ୍ଟବାକ୍ୟରେ ସନ୍ତୁଷ୍ଟ କଲି । କାମ ଜୋରସୋରରେ ଚାଲିଲା । ବନ୍ଧ ସ୍ଥାନକୁ ଯାଇ କାର୍ଯ୍ୟ ତନଖି କଲି । ଜୁଲାଇ ମାସବେଳକୁ ନିର୍ମାଣ କାର୍ଯ୍ୟ ଶେଷହେଲା । ୧୯୯୮ ମସିହାରେ ଧାନଚାଷ ପାଇଁ ଜଳାଭାବ ପଡ଼ିଲା ନାହିଁ । ଶୁଣିଲି ବନ୍ଧକାମରେ ସାତ କି ଆଠ ଲକ୍ଷ ଟଙ୍କା ବ୍ୟୟିତ ହେଲା ।

ବନ୍ଧ ନିର୍ମାଣ କାର୍ଯ୍ୟପାଇଁ ମୁଁ କାହାକୁ ପଇସାଟିଏ ବି ଦାନ କରିନାହିଁ କି ମୋତେ କେହି କିଛି ମାଗିନାହାନ୍ତି । ଦୁର୍ଗାମାଧବବାବୁ ଓ (ପଦବାବୁ) ହେଡକିରାଣି ବାବୁଙ୍କୁ

ମୃତ୍ୟୁପର୍ଯ୍ୟନ୍ତ ମନେରଖିଥିବି । ଏବେ ଗ୍ରୀଷ୍ମକାଳେ ସେ ବାଟଦେଇ ଭୁବନେଶ୍ୱର ବା ଗ୍ରାମକୁ ଗଲାବେଳେ ନାଳରେ ଭରାପାଣି ଦେଖି ମନରେ ଆନନ୍ଦ କହିଲେ ନ ସରେ । ମହତ୍ତର କାର୍ଯ୍ୟଟିଏ ପ୍ରଭୁଙ୍କ କୃପାରୁ ହାସଲ ହେଲା । ବନ୍ଧ ପାଣିକୁ ଦେଖିଲେ ଦୁର୍ଗାମାଧବଙ୍କ ନାମ ମନରେ ଉଦୟ ହେଉଛି । ଗାଁ ଲୋକେ ଉଦ୍ୟମ କଲେ ସାରାବର୍ଷ ଜମିକୁ ଶସ୍ୟଶ୍ୟାମଳା କରିପାରିବେ । ପନିପରିବା ଉପୁଜାଇପାରିବେ ।

## ବଗୁଲୀବନ୍ଧ ପକ୍କାନିର୍ମାଣ କରିବାର ପୃଷ୍ଠଭୂମି :

ବଗୁଲୀବନ୍ଧ ପୁନଃ ପକ୍କାକରି ନିର୍ମାଣ କରିବାରେ ମୋର କିଛି ସ୍ୱାର୍ଥନିହିତ ଥିଲା । ମୋ ପିତାଙ୍କର କୌଣସି ଜମିବାଡ଼ି ନଥିଲା । ମୁଁ ଚାଉଳ କିଣି ଖାଉଥିଲି । କିଛି ଚାଷଜମି କ୍ରୟ କରିବା ପାଇଁ ମନରେ ଗୋଟିଏ ଚିନ୍ତା ଉଦ୍ରେକ ହେଲା । ଧର୍ମପତ୍ନୀ ମୋର ମୁଖ୍ୟ ପରାମର୍ଶଦାତା ଥିଲେ । ମୋର ତ ସ୍ୱଳ୍ପ ଆୟ । ଜାମୁଝିରର ମହାଜନ ବାବୁ ଲୋକନାଥ ସୁବୁଦ୍ଧି ଓ ଖୋର୍ଦ୍ଧାର ମହାଜନ ବାବୁ ଭିଖାରିଲାଲ୍‌ଙ୍କଠାରୁ ଟଙ୍କା ସୁକି ସୁଧରେ କରଜ ଆଣିଲି । ପ୍ରତି ମାସରେ ସୁଧ ଓ କିଛି କିଛି ମୂଳକୁ ଶୁଝିବାପାଇଁ ପଣ କଲି । ତାହା କଲି । ଚାରି ପାଞ୍ଚ ଏକର ଜମି ତଳକ୍ଷେତା ଗହୀରରେ କିଣିଲି । ଏକଫସଲି ପୁଣି ଆକାଶ ପାଣିଆ । ସେତେବେଳେ ଇନ୍ଦ୍ର ରଜା କୃପା କରୁଥିଲେ । ବର୍ଷା ହେଉଥିଲା । ବଗୁଲୀବନ୍ଧ ମାଟିବନ୍ଧ ଥିଲା । ପ୍ରତିବର୍ଷ ଗାଁ ଲୋକେ ମିଳିମିଶି ବନ୍ଧ ପକାଉଥିଲେ । ଫସଲ ଉଠି ଯାଉଥିଲା । କିନ୍ତୁ କାଳକ୍ରମେ ଲୋକଚରିତ୍ର ନିମ୍ନଗାମୀ ହେଲା । କେହି କେହି ଅସହିଷ୍ଣୁ ଲୋକ ବନ୍ଧ ହାଣିଦେଲେ । ପାଣି ଅଭାବ ପଡ଼ିଲା । ମୁଁ ଚାକିରିରୁ ଅବସର ନେଇ ଆସିଲି । ଜମିକୁ ହାତଚାଷ କଲି । ବଳଦ ହଳେ ରଖିଲି, ଶଗଡ଼ ରଖିଲି, ଲଙ୍ଗଳ ବି ରଖିଲି । ଚାଷ ସରଞ୍ଜାମ କିଣିଲି । ଏସବୁ ମୋର ବିଶ୍ୱସ୍ତ ବିଶି ପ୍ରଧାନଙ୍କ ଗୃହରେ ରହିଲା । ସେ ପୂର୍ବେ ଚାଷୀଟିଏ ଥିଲେ । ତାଙ୍କର ଦୁଃସମୟ ଆସିଲା । ନିଜ ଜମି ବିକ୍ରି କରିଦେଇ ଅନ୍ୟର କୃଷିକାମରେ ଲିପ୍ତ ରହିଲେ । ମୁଁ ତାଙ୍କୁ ଆପଣାର କରିବାରୁ ସେ ମୋ ଜମି ବୁଝିଲେ । ମୁଁ ପଇସା ଖର୍ଚ୍ଚ କଲି । ମଝିରେ ମଝିରେ ଖୋର୍ଦ୍ଧାରୁ ଗାଁକୁ ଯାଇ ସବୁକଥା ବୁଝୁଥିଲି । ଆଶ୍ୱିନ କାର୍ତ୍ତିକ ମାସରେ ମେଘ ଦଗାଦିଏ । ସେତେବେଳେ ରାତ୍ରିକାଳେ ବିଶି ଓ ଅନ୍ୟମାନଙ୍କୁ ଧରି ନାଳରୁ ଜମିକୁ ପାଣି ବୁହା କାମ କରେ । ଏପରିକି ସେହି ସମୟରେ ରାତିଏ କି ଦି' ରାତି ଲଣ୍ଠନ ଆଲୁଅ ଟର୍ଚ୍ଚଲାଇଟ୍ ଧରି ମୁଁ ହିଡ଼ ଉପରେ ଲମ୍ୱଜନ୍ତୁଙ୍କୁ ଭୟ ନକରି ବସି ରହେ କିମ୍ୱା ଶୁଏ । ଦୁଇଜଣଙ୍କ ପରିବର୍ତ୍ତେ ଚାରିଜଣ ଲୋକ ପାଣି ବୁହାଉ ଥାଆନ୍ତି । ମଝିରେ ମଝିରେ ଶହେ ଗଜ ଦୂରରେ ଜମିରେ ପାଣି କେଉଁଯାଏ ମାଡ଼ିଲା ଦେଖିବାକୁ ଯାଏ । ଜଞ୍ଜାଳ କେତେ ଢୋର । ପାଣି ଗୋଟାଏ ନ ଦେଲେ ଧାନ ମରିଯିବ, ସହି ହୁଏନାହିଁ । ଏଣେ ଲୋଭଥାଏ । ବର୍ଷଯାକ କାମ କରି କରି ଯଦି ଏ ସମୟରେ ମାରିଦେବା ତେବେ ମୋତେ କେହି ମଣିଷ

ରୂପେ ଗଣିବେ ନାହିଁ । ତେବେ ଏହିପରି ଅବସ୍ଥା ପ୍ରାୟ ଚାରି ପାଞ୍ଚ ବର୍ଷ ରହିଲା । ଯାର ସ୍ଥାୟୀ ପ୍ରତିକାର କ'ଣ ? ସବୁ ଚାଷୀଙ୍କର ଭଣା ଅଧିକେ ଏହିପରି ଦଶା । ଗାଁ ଲୋକଙ୍କୁ ପଚାରିଲି । ସେମାନେ କହିଲେ, 'ବଗୁଲୀବନ୍ଧଟା ପଡୁଛି ପୁଣି ଭାଙ୍ଗୁଛି, ଯଦି ବନ୍ଧଟା ପକ୍କା ହୋଇଯିବ ତେବେ କିଛି ବିଶେଷ ଅସୁବିଧା ଉପୁଜିବ ନାହିଁ । ବଗୁଲୀବନ୍ଧ ମଜଭୁତ ହୋଇଗଲେ ଏଠାରେ ସାତ ଆଠ ଖଣ୍ଡ ମୌଜାର ଉପକାର ହେବ ।' ଏଣୁ ମୋ ମୁଣ୍ଡରେ ପଶିଲା କିପରି ବଗୁଲୀବନ୍ଧ ପକ୍କା କରିବା । ସେତେବେଳେ ପୁରୀ ଜିଲ୍ଲା । ସବୁତକ ଅଫିସ୍ ପୁରୀରେ । ପୁରୀ ଦଉଡ଼ିବା ମୋ ପକ୍ଷେ ସହଜ ନଥିଲା । ଖୋର୍ଦ୍ଧାରେ ଜିଲ୍ଲାପାଳ ଅଫିସ୍ ନିର୍ମାଣ ହେବାରୁ ବଗୁଲୀବନ୍ଧ ଅନାୟାସରେ ହୋଇପାରିଲା । ଏହା ପ୍ରଭୁଙ୍କ କୃପା ନୁହେଁ ତ ଆଉ କ'ଣ ?

## ଆମ୍ଭ ଗ୍ରାମ ବାଟଭୁଆସୁଣୀ :

୧୯୮୧ ମସିହାର ଶେଷଭାଗରେ ମୁଁ ଚାକିରିରୁ ଅବସର ନେଲି । ସେତେବେଳକୁ ମୋର ପ୍ରାଣପ୍ରିୟା ପତ୍ନୀ ବନବାସିନୀ ଦେବୀ ପାଞ୍ଚ ବର୍ଷ ହେଲା ମୋ ଠାରୁ ଦୂରେଇ ହୋଇଗଲେଣି । ସେ ବଞ୍ଚିଥିବାବେଳେ ମୋତେ କହୁଥିଲେ ତଳକ୍ଷେତା ଛକ ନିକଟରେ ଚାଳଛପର ଗୃହରେ ଅବସ୍ଥାନ କରିବା ପାଇଁ । ମାତ୍ର ତାଙ୍କର ଦେହାନ୍ତ ହୋଇଯିବାପରେ ସେଠାରେ ଏକାକୀ ରହିବା ମୋ ପକ୍ଷେ ସମ୍ଭବ ହେଲାନାହିଁ । କିନ୍ତୁ ୧୯୪୬ ମସିହାଠାରୁ ସେ ସ୍ଥାନ ସହ ମୋର ବନ୍ଧୁତା ଗଢ଼ି ଉଠିଥିଲା । ବିଶେଷତଃ ୧୯୫୦ ମସିହାରେ ସେଠାରେ ଚାଳଛପର ଗୃହଖଣ୍ଡିଏ ନିର୍ମାଣ ପରେ ମୁଁ ଖୋର୍ଦ୍ଧା ତଥା ନିରାକାରପୁରରୁ ସେଠାକୁ ବାରମ୍ବାର ଯାତ୍ରା କରୁଥିଲି । ଗ୍ରୀଷ୍ମଛୁଟି ସେଠାରେ କଟାଉଥିଲି ।

ମୋ ପିଲାଦିନେ ଆମଘର ଗୋବନ୍ଦପୁର (ତଳକ୍ଷେତା) ମୌଜାରେ ଥିଲା । ଆମ ଗାଁ ଦେଇ ଖୋର୍ଦ୍ଧା-ଭୁବନେଶ୍ୱର ନାଲି ସଡ଼କରୁ ଗୋଟିଏ ସରୁ ମାଟି ରାସ୍ତା ଜଟଣୀ ସହରକୁ ପଡ଼ିଥିଲା । ଏବେ ତାହା ଏକ ସୁନ୍ଦର ଚମତ୍କାର ପିଚୁରାସ୍ତାରେ ପରିଣତ ହୋଇଛି । ମୁଁ ସତେଇଶି କି ଅଠେଇଶି ମସିହାରେ ନିମ୍ନ ପ୍ରାଥମିକ ସ୍କୁଲରେ ଅଧ୍ୟୟନ କରୁଥିବାବେଳେ ଆମ୍ବିଳିଝରର (ଓଗାଳପଡ଼ା ଗାଁର ଓହଳ ସ୍ଥାନରେ ଗହୀର ଆଡ଼କୁ ଖୋଳାହୋଇଥିବା ଏକ ଚିରନ୍ତନ ଝର ପୋଖରୀ) କୂଳରେ ଅବସ୍ଥିତ ବିରାଟ ଓଉ ଗଛରୁ ଓଉ ଆଣି ସାଆନ୍ତାଣୀ ଚୁଆରେ ଗାଧୋଇ ପାଧୋଇ ସାଙ୍ଗସାଥୀହୋଇ ଗୃହକୁ ଫେରୁଥିଲି । ଆମେ କଷି ବାଇଗଣ ଖାଉଥିଲୁ । ସେତେବେଳକୁ ନାଲି ସଡ଼କର ଉଭୟ ପାର୍ଶ୍ୱ ବୁଦୁବୁଦିକିଆ ଜଙ୍ଗଲରେ ପୂର୍ଣ୍ଣ ହୋଇଥିଲା । ସାଆନ୍ତାଣୀ ଚୁଆ ପାଖେ ଗୋଟିଏ ମାତ୍ର ଶଅର ଗୃହ ( ବୈଷ୍ଣବ ନାଏକ) ବିଦ୍ୟମାନ ଥିବାର ଆମେ ଦେଖିଛୁ । ସେ ଭାରି ଭଦ୍ର ଲୋକ, ତା' ପିଲାମାନେ ଆମ୍ଭମାନଙ୍କୁ ଖୁବ୍ ସୁଖ ପାଆନ୍ତି । ଗାଁ ଚାଟଶାଳୀରେ ପଢ଼ିଲାବେଳେ ଆମ ଶିକ୍ଷକ ଶ୍ରୀ ପୁରୁଷୋତ୍ତମ

କର ତାଙ୍କ ସ୍ୱଗ୍ରାମକୁ ଯାଉଥିବାବେଳେ ଆମେମାନେ ବହୁବାର ତେଣିକି ଯାଇଛୁ, ମାତ୍ର ସେଠାରେ ନାଲି ରାସ୍ତା ପାଖରେ ବଡ଼ ଆମ୍ବଗଛମୂଳେ ଭୁଆସୁଣୀ ଠାକୁରାଣୀ ଅଛନ୍ତି ବୋଲି ଆମ ଧାରଣାକୁ ଆସିନଥିଲା । ବୋଧହୁଏ କେହି ଶଗଡ଼ିଆ ସେଠାରେ ରାତ୍ରିକାଳେ ବଧା ମାରିଥିବାବେଳେ ଠାକୁରାଣୀଙ୍କୁ ଆବିଷ୍କାର କରିଥିବେ । ଧାରାବାହିକଭାବେ ପୂଜା ଆରାଧନା କରିବା ଦେଖାନଥିଲା କି କେହି ତେଣେ ନଜର ପକାଉ ନଥିଲେ ।

୧୯୩୩-୩୬ ଏହି ଚାରି ବର୍ଷ ଯାଁଳା ମଧ ଇଂରାଜୀ ସ୍କୁଲରେ ମୁଁ ବିଦ୍ୟା ଅଧ୍ୟୟନ କଲି । ୧୯୩୬ ମସିହାରେ ଛାତ୍ରାବାସରେ ରହିଲି । ଛାତ୍ରାବାସରେ ଜଣେ ପୂଜାରୀ ଭାଇନା ଥିଲେ । ନାମ ଭିଖାରୀ ମହାପାତ୍ର ! ତାଙ୍କ ଘର ସେହି ନିକଟରେ ଗୋପାଳପୁର ମୌଜାରେ । ସେ ନିୟମିତ ଠାକୁରାଣୀଙ୍କ ପାଖକୁ ଯାଇ ଆରାଧନା କରନ୍ତି । ସେତେବେଳେ ମଟର ଗାଡ଼ିର ଏତେ ପ୍ରଚଳନ ନଥାଏ । ଲୋକେ ପଦବ୍ରଜରେ, ସାଇକେଲରେ କିମ୍ବା ଶଗଡ଼ ଗାଡ଼ିରେ ଯାତାୟାତ କରନ୍ତି । ପଥଚାରୀ ଠାକୁରାଣୀଙ୍କ ଆମ୍ବଗଛମୂଳେ ବିଶ୍ରାମ ନିଏ । ଠାକୁରାଣୀ ନାଁ ଧରି ନିଜ ଗନ୍ତବ୍ୟ ପଥରେ ଆଗେଇ ଯାଏ । ଭିଖାରୀ ଭାଇନା ଅବସର ସମୟରେ ଠାକୁରାଣୀଙ୍କ ପାଖେ କଟାନ୍ତି । ଭାଇନା ଭାରି ମନୁଆ, ବେଳେବେଳେ ରୁଷି କରି ରୋଷେଇ କରିବାକୁ ଯାଆନ୍ତି ନାହିଁ । ତାଙ୍କର କାମ ସେହି ଭୁଆସୁଣୀଙ୍କ ପାଖେ । ସେ ତାଙ୍କୁ ଲଟା ଭୁଆସୁଣୀ ବୋଲି କହନ୍ତି । ମୁଁ ଯାଁଳା ସ୍କୁଲରୁ ପାଠସାରି ହାଇସ୍କୁଲରେ, କଲେଜରେ ପଢ଼ି ତେଣୁ ଆସି ଖୋର୍ଦ୍ଧା ହାଇସ୍କୁଲରେ ଶିକ୍ଷକତା କଲି ଏବଂ ଭୁଆସୁଣୀଙ୍କ ପାଖେ (ରାଧାଚରଣପୁର ଗାଁରେ) ଘର ଖଣ୍ଡିଏ ତିଆରି କରି କିଛିଦିନ ସେଠାରେ ଅବସ୍ଥାନ କଲି । ସବୁବେଳେ ଠାକୁରାଣୀଙ୍କ ପାଖକୁ ଯିବାଆସିବା କଲି । ଭାଇନା ମୋତେ ଆଗରୁ ପୁଅପରି ଦେଖୁଥିଲେ । ସେତେବେଳକୁ ୧୯୫୦ ମସିହା, ମୁଁ ବି.ଇଡି. ପାସ୍ କରି ଜଣେ ପକ୍କା ମାଷ୍ଟର ହୋଇଗଲି । ଠାକୁରାଣୀଙ୍କ ପୂଜାବିଧି କିଛି ହୋଇନଥାଏ । ମୋ ଶିକ୍ଷାଗୁରୁ ଅଦ୍ୱୈତବାବୁ ଉକ୍ତ ଠାକୁରାଣୀଙ୍କ କୃପାରୁ ପୁତ୍ରଟିଏ ଲାଭ କରିଥିଲେ । ସେ ବହୁ ସମୟରେ ଠାକୁରାଣୀଙ୍କୁ ମାଜଣା କରନ୍ତି । ତେବେ କେଉଁ କେଉଁ ଉତ୍ସବରେ କଣ କଣ କରାଯିବ ସେ କଥା ସେ ଭିଖାରୀ ଭାଇନାଙ୍କଠାରୁ ଶୁଣି ମହାଷ୍ଟମୀ ପୂଜାଟିକୁ ଆଦରିନେଲେ । ଷୋଳପୂଜା ସଂପନ୍ନ କରିବାକୁ ମୋ ନାମଟି ସୁପାରିଶ କଲେ । ଭିଖାରୀ ଭାଇନା ମୋ ପାଖେ ପହଞ୍ଚି ଷୋଳପୂଜାରେ ଯାହା ଖର୍ଚ୍ଚ ହେବ ଦେବାପାଇଁ ମୋତେ ଅନୁରୋଧ କଲେ । ମୁଁ ରାଜି ହୋଇଗଲି । ମୁଁ ଖୋର୍ଦ୍ଧା ହାଇସ୍କୁଲ ଛାତ୍ରାବାସରେ ରହୁଥାଏ । ପୂଜାପୂର୍ବରୁ ଗୋପାଳପୁର ଗାଁର ବାବୁ ନାଥ ଦାଶ ପୁରୋହିତଙ୍କ ପୁଅ ଛାତ୍ରାବାସକୁ ଆଗମନ କରି ଆମ ସ୍ୱାମୀ ସ୍ତ୍ରୀଙ୍କୁ ତଳେ ବସେଇ ମୁଣ୍ଡରେ ଅରୁଆ ଚାଉଳ ଚିଞ୍ଚି (ବନ୍ଦାପନା କଲାପରି) ଗୁଆଟିଏ ଓ ଟଙ୍କା ଦଶଟି ନେଉଥିଲେ । ଏ ବିଧି ବହୁଦିନ ପର୍ଯ୍ୟନ୍ତ ଚାଲିଲା । ସେହି ଟଙ୍କାରେ ସେ ଠାକୁରାଣୀଙ୍କ

ପାଖେ ବଗଳା ଗୁଣୁଥିଲେ ଓ ପୂଜା କରୁଥିଲେ । ଶ୍ରମିକର ଦୈନିକ ମଜୁରି ଏକ ଟଙ୍କାରୁ କମ୍ ଥିଲା ଅର୍ଥାତ୍ ବାର ଅଣା ଥିଲା ମାତ୍ର । ଠାକୁରାଣୀଙ୍କ ପର୍ବପର୍ବାଣି ଏହିପରି ବାଣ୍ଟିଦେଇ ଭାଇନା ନିଜର ଗୋଟିଏ ପଥର ପ୍ରତିମୂର୍ତ୍ତି ସେଠାରେ ସ୍ଥାପନ କରିଥିଲେ । ମୁଁ ଏବେ ମଧ ପ୍ରତିବର୍ଷ ଉକ୍ତ ପୂଜାପାଇଁ ପଚାଶ ଟଙ୍କା ଦେଉଛି । ମୋର ପୁତ୍ର ସନ୍ତାନଟିଏ (ନୂତନ ଅତିଥି) ଆସିଲା । ତାର ବର୍ଷକୁ ବର୍ଷ (ଷୋଳପୂଜା) ମୁଁ ସେହି ଠାକୁରାଣୀଙ୍କ ମଣ୍ଡପରେ ସଂପାଦନ କଲି । ଆସ୍ତେ ଆସ୍ତେ ଠାକୁରାଣୀ ପ୍ରସିଦ୍ଧ ହୋଇ ଉଠିଲେ ଏବଂ ଭଲ ପଇସା ବି ଆଦାୟ ହେ଼ଲା । ନାଲି ରାସ୍ତା ପିଚୁରାସ୍ତାରେ ପରଣିତ ହେଲା । ଉକ୍ତ ସଂଖ୍ୟା ବୃଦ୍ଧି ହେଲା । ସମସ୍ତେ ଶୁଭକାମନାକରି ଠାକୁରାଣୀଙ୍କ ପାଖକୁ ଆସିଲେ । ଏଥିମଧ୍ୟରେ ଭାଇନା କେତେକ ସମୃଦ୍ଧିମୂଳକ କାମ ହାତକୁ ନେଲେ କିନ୍ତୁ ଲୋକେ ଈର୍ଷାପରାୟଣ ହେଲେ । ସବୁ ଆୟ ଭାଇନା ନେଇ ତା' ଘରେ ଲଗାଉଛି ବୋଲି କହିଲେ । ତାଙ୍କଠାରୁ ଠାକୁରାଣୀଙ୍କ କାମଛଡ଼ାଇ ନେଇ ତାଙ୍କୁ ସେଠାରୁ ବାହାର କରିଦେଲେ । ଓଗାଳପଡ଼ାର ତିନିସାହିର ଲୋକେ ଠାକୁରାଣୀଙ୍କ କଥା ବୁଝିବା ପାଇଁ ବାହାରି ପଡ଼ିଲେଣି । ହେଉ ଭଲ କଥା ହେଲା । କିଛି ମନା ନାହିଁ । ମାତ୍ର ଠାକୁରାଣୀଙ୍କୁ ଯେଉଁ ବ୍ୟକ୍ତି ଲୋକଲୋଚନକୁ ଆଣିଥିଲା ଓ ଜାଗାର ମହତ୍ତ୍ୱ ବଢ଼େଇଥିଲା ତାର ସ୍ଥାପିତ ନିଜ ମୂର୍ତ୍ତିକୁ ତାଚ୍ଛଲ୍ୟଭାବେ ତଳକୁ ଗଡ଼ାଇଦେଲେ ଓ ନାମଫଳକକୁ ଭାଙ୍ଗିଦେଲେ । ଏହାହିଁ ଦୁଃଖଦାୟକ । ଦିନେ ଶୁଣିଲି ଭିଖାରୀ ଭାଇନାଙ୍କ ପୁଅ ବାବୁ ରଘୁନାଥ ମହାପାତ୍ର ତାଙ୍କ ନନାଙ୍କ ମୂର୍ତ୍ତିକୁ ନେଇ ନିଜ ଘରେ ପୂଜା କରୁଛନ୍ତି । ମୋତେ ଦେଖି ଖୁବ୍ ଦୁଃଖପ୍ରକାଶ କଲେ । ଲୋକଙ୍କ ଚରିତ୍ର ଏପରି ଦେଖି ସେ ବଡ଼ ବ୍ୟଥିତ ହେଲେ । ମୁଁ ତାଙ୍କୁ ସାନ୍ତ୍ୱନା ଦେଲି ।

କେଉଁଠି ଲୋକ ବୀରପୂଜା କରୁଛନ୍ତି ତ କେଉଁଠି ଇତିହାସକୁ କଦର୍ଯ୍ୟଭାବେ ହତ୍ୟା କରୁଛନ୍ତି । ଦିନେ ଜଙ୍ଗଲ ଭିତରେ ଲୁଚି ରହିଥିବା ଲଟା ଭୁଆସୁଣୀ ବା ବାଟଭୁଆସୁଣୀ (ଭିଖାରୀ ଭାଇନାଙ୍କ ଆରାଧ ଦେବୀ) ଆଉ ଘଞ୍ଚ ଅରଣ୍ୟରେ ପଥଚାରୀ, ଶଗଡ଼ିଆଙ୍କ ମେଳରେ ନ ରହି ଏବେ ସହର ବଜାରରେ ଆସ୍ଥାନ ଜମେଇଛନ୍ତି । କିନ୍ତୁ ତାଙ୍କର ପ୍ରିୟ ବାସଭୂମି ଆମ୍ବଗଛ ମୂଳଟି ସେହିପରି ନିଖୁଣ ଅଛି । ବହୁ ଆଡ଼ମ୍ବରରେ ଚଉଡ଼ାରେ ସ୍ଥାନଟି ଚିହ୍ନିକି ଉଠିଲାଣି । ହଜାର ହଜାର ଲୋକ ପ୍ରତିଦିନ ଦର୍ଶନ କରିବାକୁ ଆସୁଛନ୍ତି ଯାଉଛନ୍ତି । ମାତ୍ର ଭିଖାରୀ ଭାଇନାଙ୍କ ନାଁ ଲୋପପାଇଗଲାଣି । କିଏ ବା ତାଙ୍କୁ କାହିଁକି ମନେପକାଇବେ ?

ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।।

## ଖୋର୍ଦ୍ଧା ଡାକ୍ତର କଲୋନୀ ସାମନା ରାମମନ୍ଦିର ନିର୍ମାଣ :

ଏଣେ ଖୋର୍ଦ୍ଧା ଶ୍ରୀରାମ ନଗରର ମଧସ୍ଥଳରେ ଏକ ସୁରମ୍ୟ ପରିବେଶ ମଧ୍ୟରେ ରାମମନ୍ଦିର ନିର୍ମାଣ କାର୍ଯ୍ୟ ଶେଷହେବା ଉପରେ । ଏ ଅଞ୍ଚଳରେ ବିଷ୍ଣୁମନ୍ଦିର ନଥିଲା ।

ଲୋକମାନଙ୍କ ମଧ୍ୟରେ ଆଧାତ୍ମିକ ଚେତନା, ସଦାଚାର, ସଦ୍‌ଭାବନା, ଜାତୀୟ ସଂହତି, ସହନଶୀଳତା, ମଣିଷପଣିଆ ପ୍ରଭୃତି ସ୍ୱର୍ଗୀୟ ଗୁଣଗୁଡ଼ିକର ମାହାତ୍ମ୍ୟ ବୃଦ୍ଧି କରିବା ପାଇଁ ଏ ଅନୁଷ୍ଠାନର ଜନ୍ମ । ମନ୍ଦିର ସନ୍ନିକଟବର୍ତ୍ତୀ ହନୁମାନ ମନ୍ଦିର ପ୍ରାଙ୍ଗଣରେ ପ୍ରତ୍ୟହ ଅପରାହ୍ଣ ଛଅଘଟିକା ସମୟେ ବନ୍ଧୁମାନଙ୍କ ଗହଣରେ ଉପସ୍ଥିତ ହୋଇ ଭଜନ କୀର୍ତ୍ତନରେ ପ୍ରାୟ ଦୁଇ ଘଣ୍ଟା ବିତୁଛି । ନୂତନ ହନୁମାନ ମନ୍ଦିର ବାବୁ ସୀତାକାନ୍ତ ମିଶ୍ରଙ୍କ ଦ୍ୱାରା ନିର୍ମିତ ହୋଇଛି । ପ୍ରତିବର୍ଷ ଅକ୍ଷୟ ତୃତୀୟା ତିଥିରେ ରାମଚରିତ ମାନସ ନବାହ୍ନ ପାରାୟଣ ଓ ପ୍ରବଚନ ଜ୍ଞାନଯଜ୍ଞ ଆରମ୍ଭ ହୋଇ ନବଦିନରେ ପୂରଣ ହେଉଛି । ସହରର ବହୁଭକ୍ତ ଓ ସୁଧୀବୃନ୍ଦ ଏଥିରେ ଭାଗ ନେଉଛନ୍ତି । ମୋର ଦୃଢ଼ ଆଶା ଏକ ମୂଲ୍ୟବୋଧଭିତ୍ତିକ ସୁସ୍ଥ ସମାଜ ଗଠନ ପାଇଁ ଏହି ଆଧାତ୍ମିକ ଅନୁଷ୍ଠାନଟି ନିଶ୍ଚୟ ସହାୟକ ହେବ । ଏଠାରେ ଚରିତ୍ର ଗଠନ ପାଇଁ ଯେଉଁ ଚାରାଟି ରୋପଣ କରାଗଲା ତାହା ଦିନେ ବିରାଟ ଦ୍ରୁମରେ ପରିଣତ ହେବବୋଲି ମୋର ଦୃଢ଼ବିଶ୍ୱାସ । ପୁନଃ ସହରର ଭିନ୍ନ ଭିନ୍ନ ମାଇନର ଓ ହାଇସ୍କୁଲ ଛାତ୍ରଛାତ୍ରୀମାନଙ୍କର ଚରିତ୍ର ଗଠନ ନିମନ୍ତେ ଯେଉଁପ୍ରକାର ବ୍ୟବସ୍ଥା ଆରମ୍ଭ ହୋଇଛି ତାହା ନିଶ୍ଚିତ ଅଭିନନ୍ଦନୀୟ । ଆଉ ଏ ସମସ୍ତ ମାଙ୍ଗଳିକ କାର୍ଯ୍ୟ କିପରି ସୁଚାରୁରୂପେ ସଂପାଦିତ ହେବ ସେଥିପାଇଁ ପ୍ରତିଦିନ ବନ୍ଧୁମାନଙ୍କ ଗହଣରେ ଉଦ୍ୟମ ଚାଲିଛି ।

## ଖୋର୍ଦ୍ଧା ହାଇସ୍କୁଲର ବହୁ ଆକାଂକ୍ଷିତ ଶତବାର୍ଷିକୀ ଉତ୍ସବ ପାଳନରେ ତତ୍ପରତା :

ସମସ୍ତେ ଜାଣନ୍ତି ହାଇସ୍କୁଲର ଶତବାର୍ଷିକୀ ଉତ୍ସବ ୧୯୯୬ ମସିହାରେ ପାଳିତ ହେବାର କଥା ମାତ୍ର ନାନା ପ୍ରତିବନ୍ଧକ ହେବାରୁ ସେ ସମୟକୁ ବକ୍ସି ଜଗବନ୍ଧୁଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରାଯାଇପାରିଲା ନାହିଁ । ଧନ ଓ ମନର ଘୋର ଅଭାବ ଅନୁଭୂତ ହେଲା । ଅବଶ୍ୟ ମଝିରେ ମଝିରେ ପ୍ରସ୍ତୁତି କମିଟିର ବୈଠକ ବସୁଥିଲା । ଅଭ୍ୟର୍ଥନା ସମିତିର ସଭ୍ୟଭାବେ ଓ ଜଣେ ଉତ୍ସାହୀ ବ୍ୟକ୍ତି ହିସାବରେ ମୁଁ ପ୍ରତ୍ୟେକ ସଭାରେ ଯୋଗଦେଉଥିଲି । ବାବୁ ଫକୀର ହରିଚନ୍ଦନ ଉକ୍ତ ହାଇସ୍କୁଲର ପୁରାତନ ଛାତ୍ର । ତାଙ୍କର ସୁଯୋଗ୍ୟ ପୁତ୍ର ବାବୁ ପ୍ରସାଦ ହରିଚନ୍ଦନ ସେତେବେଳେ ଓଡ଼ିଶାର ସାଂସ୍କୃତିକ ବିଭାଗର ମନ୍ତ୍ରୀ ଥିଲେ । ସେ ମଧ୍ୟ ଖୋର୍ଦ୍ଧା ହାଇସ୍କୁଲର ଛାତ୍ର ଥିଲେ । ଫକୀରବାବୁ ଧାବମାନ ଅଶ୍ୱପୃଷ୍ଠରେ ସ୍ଥାପିତ ବକ୍ସିଙ୍କ ପ୍ରତିମୂର୍ତ୍ତି ଭୁବନେଶ୍ୱର ଆର୍ଟ କଲେଜରୁ ଖୋରଧାକୁ ଅଣାଇଲେ । ଏଥିରେ ତାଙ୍କୁ କଷ୍ଟ ସହିବାକୁ ପଡ଼ିଥିଲା । ଫକୀରବାବୁଙ୍କୁ ପୁରାତନ ଛାତ୍ରଦ୍ୱୟ ସର୍ବଶ୍ରୀ କମଳାକାନ୍ତ ଦାସ ଓ ମିହିର ନାରାୟଣ ବର୍ମା ସାହାଯ୍ୟ କରିଥିଲେ । ଖୋରଧାର ତତ୍କାଳୀନ ବିଧାୟକ ବାବୁ ଦିଲ୍ଲୀପ ଶ୍ରୀଚନ୍ଦନ ପେଡେଷ୍ଟାଲ ପାଇଁ ତିରିଶ ହଜାର ଟଙ୍କା ପ୍ରଦାନ କଲେ । ପ୍ରଥମେ ମୂର୍ତ୍ତି ସ୍ଥାପନରେ କେତେକ ଅସୁବିଧା ଦେଖାଗଲା । ପ୍ରଥମେ ପେଡ଼େଷ୍ଟାଲ ଭଙ୍ଗାଯାଇ ପୁନଃ ନିର୍ମାଣ

କରାଗଲା । ପ୍ରତିମୂର୍ତ୍ତି ସୁଦୃଶ୍ୟ ଅବସ୍ଥାରେ ସ୍ଥାପିତ ହେଲା । ମୂର୍ତ୍ତିସ୍ଥାପନ ପରେ ପ୍ରସ୍ତୁତି କମିଟି ବହୁବାର ବସିଥିଲା । ପ୍ରତ୍ୟେକ ସଭାରେ ମୁଁ ଉପସ୍ଥିତ ରହୁଥିଲି । ମାଗାଜିନ ଓ ସ୍ମାରକୀଭବନ ବ୍ୟତୀତ ଉତ୍ସବ ପାଳନ କରିବା ପାଇଁ କେତେକ ମତଦେଲେ । ବାବୁ ଗୋପାଳକୃଷ୍ଣ ସୋଭେନିର ଦାୟିତ୍ୱରେ ଥିଲେ । ସେ ଅନ୍ୟମାନଙ୍କ ତୁଳନାରେ ପିଲା, କିନ୍ତୁ ଆଗ୍ରହୀ । ପ୍ରତିକୂଳ ପାଗସତ୍ତ୍ୱେ ମୋତେ ସଙ୍ଗରେ ନେଇ ଚାନ୍ଦା ଆଦାୟ କରିବାକୁ ସେ କୁଆଡ଼େ ନଯାଇଛି ? ବହୁ ଜାଗାକୁ ଯାଇଛି । ଆମ୍ଭମାନଙ୍କ ମଧ୍ୟରେ ଦୃଢ଼ତାର ଘୋର ଅଭାବ ଥିଲା । ଖୋରଧା ସହରର କେତେକ ପୁରାତନ ଛାତ୍ର ସଭାକୁ ଆସୁଥିଲେ ଓ ଅନେକ ଆସୁନଥିଲେ । ହାଇସ୍କୁଲର ପୁରାତନ ଛାତ୍ର ପ୍ରଖ୍ୟାତ ଐତିହାସିକ ଡକ୍ଟର ଭବାନୀ ଚରଣ ରାୟ କେତେଥର ଆସି ଆମ୍ଭମାନଙ୍କ ସଙ୍ଗେ ଯୋଗଦେଇଥିଲେ । ମୁଖ୍ୟମନ୍ତ୍ରୀ ଜାନକୀବାବୁ ଶତବାର୍ଷିକୀ ଉତ୍ସବରେ ମୁଖ୍ୟ ପୃଷ୍ଠପୋଷକ ରହିଲେ । କିନ୍ତୁ କୁଆଡ଼ୁ କୁଆଡ଼ୁ ନାନା ପ୍ରତିକୂଳ ପରିସ୍ଥିତି ସୃଷ୍ଟି ହେଉଥିଲା । କାମ ଆରମ୍ଭ ହୋଇପାରୁନଥିଲା । ଅସଲ ଉତ୍ସବ ତିନିଦିନ ପାଇଁ ବହୁ ଟଙ୍କା ଖର୍ଚ୍ଚ ହେବବୋଲି ଅଟକଳ କରାଗଲା । ମାତ୍ର ଧନ ଆସିବ କେଉଁଠୁ ? ଆଜିକାଲି କୌଣସି ବୃହତ୍ତର କାର୍ଯ୍ୟ ସଂପାଦନା କରିବାକୁ ହେଲେ ରାଜନୀତିକ ବ୍ୟକ୍ତିଙ୍କର ସାହାଯ୍ୟ ନେବାକୁ ପଡୁଛି । ପୂର୍ବର ରାଜା, ମହାରାଜା, ଧନୀ, ଜମିଦାର ଆଉ ନାହାନ୍ତି । ସେମାନଙ୍କ ସ୍ଥାନ ଆଜିର ମନ୍ତ୍ରୀ, ବିଧାୟକ, ସାଂସଦ, ପଞ୍ଚାୟତସମିତି ଚେୟାରମ୍ୟାନ, ଜିଲ୍ଲା ପରିଷଦ ସଭାପତି ଅଧିକାର କରିଛନ୍ତି । ସେମାନେ ମୁଣ୍ଡ ନ ଟୁଙ୍ଗାରିଲେ କୌଣସି କାର୍ଯ୍ୟ ସମାହିତ ହୋଇପାରୁନାହିଁ । ୧୯୯୬ ମସିହାରେ ଉତ୍ସବ ହୋଇନପାରିଲେ ମଧ ୧୯୯୭-୯୮ ବା ୧୯୯୯ ମସିହାରେ ହୋଇପାରିଥାନ୍ତା । ରାଜ୍ୟରେ କଂଗ୍ରେସ ଶାସନ ପୁଣି ଶାସନମୁଖ୍ୟ ଖୋରଧା ସ୍କୁଲର ପୁରାତନ ଛାତ୍ର । ମାତ୍ର କେନ୍ଦ୍ର ଶାସନରେ ଅସ୍ଥିରତା ଓ ଓଡ଼ିଶା କଂଗ୍ରେସ ଦଳର ହଟଚମଟ ଉତ୍ସବକୁ ପ୍ରଭାବିତ କରୁଥାଏ । ଶାସନମୁଖ୍ୟଙ୍କ ନିଜ ସ୍ଥିତି ଟଳମଳ ପରି ଜଣାଯାଉଥିଲା । ତେଣୁ ଏ ସାମାନ୍ୟ ଉତ୍ସବ ପାଇଁ ସେ ମନଦେଇ ପାରୁନଥିଲେ ।

ପୂର୍ବ ଜନତା ସରକାର ଅମଳରେ ଖୋର୍ଦ୍ଧାରେ ବକ୍ସିଙ୍କ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ଏକଲକ୍ଷ ଟଙ୍କା ମିଳିଥିଲା । ମାତ୍ର ତାହା ବ୍ୟୟ ହୋଇପାରିନଥିଲା । ଜିଲ୍ଲାପାଳଙ୍କ ଜ୍ଞାତସାରରେ ସେ ଟଙ୍କା ମୂର୍ତ୍ତି ନିର୍ମାଣ ପାଣ୍ଠିକୁ ଆସିଲା । ତଥାପି ଆହୁରି ଦୁଇ ଲକ୍ଷ ଟଙ୍କା କଂଗ୍ରେସ ସରକାରଙ୍କ ତରଫରୁ ଆସିଲା ।

କେନ୍ଦ୍ରରେ ବାବୁ ନରସିଂହ ରାଓ କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୯୧-୯୫ ପରେ ୧୯୯୬ ମସିହାରେ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ସଂଖ୍ୟାନ୍ୟୂନ ହୋଇଗଲା । ପ୍ରଥମେ ଭାରତୀୟ ଜନତାପାର୍ଟି ଶ୍ରୀ ଅଟଳ ବିହାରୀଙ୍କ ନେତୃତ୍ୱରେ ସରକାର ଗଢ଼ିଲା ।

ମାତ୍ର ତେରଦିନ ପରେ ତାର ପତନ ଘଟିଲା । ତତ୍ପରେ ବି.ଜେ.ପି. ବ୍ୟତୀତ ଅନ୍ୟ ଦଳ ଗୁଡ଼ିକ ମିଶି ଶାସନ ଗଢ଼ିବେ ବୋଲି ନିଷ୍ପତ୍ତି ନିଆଗଲା । ଏଥରକ ବିଜୁବାବୁ କେନ୍ଦ୍ରକୁ ଯାଇଥିଲେ । ସେ ପ୍ରଧାନମନ୍ତ୍ରୀ ବାଛୁଥିଲେ । ନିଜେ ପ୍ରଧାନମନ୍ତ୍ରୀ ହୋଇପାରିଥାଆନ୍ତେ ମାତ୍ର କେତେକ ନୀତିଗତ କାରଣରୁ ହୋଇପାରିଲେ ନାହିଁ । ବାବୁ ଗୌର ମୋହନ ଷଡ଼ଙ୍ଗୀ ଏକ ପ୍ରବନ୍ଧରେ ପ୍ରକାଶ କରିଅଛନ୍ତି–''ବିଜୁବାବୁଙ୍କର ବିଶ୍ୱସ୍ତରୂପେ ପରିଚିତ କୌଣସି ଧୂର୍ତ୍ତବ୍ୟକ୍ତି ବିରୋଧୀଦଳଙ୍କ ସହିତ ହାତ ମିଳାଇ ଯଦି ବିଜୁବାବୁଙ୍କ ନାମରେ ମିଥ୍ୟା ଭିଜିଲାନ୍ସ ମକଦ୍ଦମା କରିନଥାଆନ୍ତେ ତେବେ ବିଜୁବାବୁ ଭାରତ ମୁକୁଟ ଧାରଣ କରିଥାଆନ୍ତେ । ଗୋଡ଼ ଟାଣିବା ପ୍ରବୃତ୍ତି ଓଡ଼ିଆଙ୍କର ଅଛି । କଙ୍କଡ଼ା ପ୍ରବୃତ୍ତି ଗଲାନାହିଁ । ଈର୍ଷାଭାବ ଗଲାନାହିଁ । ଓଡ଼ିଆମାନେ କେବେ ଶିଖିବେ, କେବେ ଉପରକୁ ଉଠିବେ ?''

ହଉ, ଯାହା ତ ହେବାର ହେଲା । ବିଜୁବାବୁ ଭାରତ ରାଜନୀତିରେ ''King Maker'' ହୋଇଗଲେ । ଏଥରକ ସେ ଦେବଗୌଡ଼ାଙ୍କୁ ଭାରତର ପ୍ରଧାନମନ୍ତ୍ରୀ ରୂପେ ବାଛିଲେ ।

ଦେବଗୌଡ଼ା ସରକାର ସମୟରେ ଓଡ଼ିଶାରେ ନୂତନ ରେଳପ୍ରକଳ୍ପ ପୂର୍ବତଟ ରେଳ ପ୍ରକଳ୍ପର ଶୁଭ ଦିଆଯାଇ କାମ ଆରମ୍ଭ ହେଲା । ମାତ୍ର ଏତେଗୁଡିଏ ଦଳକୁ ନେଇ ଶାସନ କରିବା ତାଙ୍କ ପକ୍ଷେ କାଠିକର ପାଠ ହେଲା । କଂଗ୍ରେସ ସମେତ ସବୁଦଳର ଇଚ୍ଛା ଭାରତୀୟ ଜନତା ପାର୍ଟିକୁ ସାଙ୍ଗରେ ନେବେନାହିଁ । ବି.ଜେ.ପି. ଏକ ସାଂପ୍ରଦାୟିକ ଦଳ ବୋଲି ଅନ୍ୟମାନଙ୍କର ଧାରଣା । ତେଣୁ ବି.ଜେ.ପି. ବ୍ୟତୀତ ଶାସନ ଚାଲିଲା । ଆଠମାସ କାଳ ବାବୁ ଦେବଗୌଡ଼ା ଶାସନ ଚଳେଇଲେ । ମାତ୍ର କଂଗ୍ରେସ ସଭାପତି ବାବୁ ସୀତାରାମ କେଶରୀ ପଛକୁ ଟାଣିଲେ । ତତ୍ପରେ ଇନ୍ଦ୍ରକୁମାର ଗୁଜୁରାଲ କଂଗ୍ରେସ ସହଯୋଗରେ ଦେଶର ଲଗାମ ଧରିଲେ ।

## ମହାନାୟକର ଜୀବନାବସାନ :

ସମୟ ବଡ଼ ବଳବାନ୍ । କାହାକୁ ତାରୁଛି ତ କାହାକୁ ମାରୁଛି । ୧୯୯୭ ମସିହାରେ କୋହିନୂର ପ୍ରେସ ପଞ୍ଜିକାରେ ପ୍ରକାଶିତ ହୋଇଥିଲା ''ଏ ବର୍ଷ ଦେଶର ଜଣେ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତିଙ୍କର ତିରୋଧାନ ଘଟିବ ।'' ମୁଁ ସର୍ବଦା ଦେଶକଥା, ଜାତିକଥା ଭାବେ । ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ । କଂଗ୍ରେସର ମୁଖ୍ୟବ୍ୟକ୍ତିମାନଙ୍କ ମଧ୍ୟରେ ସେଠାରେ କେହି ନଥିଲେ । ମୋର ଦୃଷ୍ଟି ପଡ଼ିଲା ବିଜୁବାବୁଙ୍କ ଉପରେ । ମନରେ ସନ୍ଦେହ ଉପୁଜିଲା । ବିଜୁବାବୁ ଜଣେ ଆନ୍ତର୍ଜାତୀୟ ଖ୍ୟାତିସମ୍ପନ୍ନ ଓଡ଼ିଆ । ସେ ଆମେରିକାରୁ ହୃଦରୋଗରେ ଚିକିତ୍ସିତ ହୋଇ ଫେରିଥାନ୍ତି । ତାଙ୍କ ଦୀର୍ଘଜୀବନ ମୁଁ ସର୍ବଦା କାମନା କରୁଥାଏ । କିଛିଦିନ ଅତିକ୍ରାନ୍ତ ହେଲା । ସବୁକଥା ଭୁଲିଗଲି । ଉତ୍କଳ ଗଗନରେ ଯେତେବେଳେ ଏକ

ଲଞ୍ଜାତାରାର ଆବିର୍ଭାବ ହେଲା ସେତେବେଳେ ମୋ ମନକୁ ପାପ ଛୁଇଁଲା । ଆଠ ଦିନପରେ ଖବରକାଗଜରୁ ଅବଗତ ହେଲି ବିଜୁବାବୁ ଚିକିତ୍ସିତ ହେବାକୁ ହାସପାତାଳରେ ଭର୍ତ୍ତିହେଲେ । ପୂର୍ବମାସ ମାର୍ଚ୍ଚ ଅଠେଇଶ ତାରିଖ ଦିନ ସେ ଓଡ଼ିଶାକୁ ଆସି ଭୁବନେଶ୍ୱରରେ ଛାତ୍ରଜନତା ସଭାରେ ଏକ ମୂଲ୍ୟବାନ୍ ଭାଷଣ ପ୍ରସଙ୍ଗରେ କହିଥିଲେ – ସେ ଏପ୍ରିଲ ଛଅ ତାରିଖରେ ନିଜ ନିର୍ବାଚନମଣ୍ଡଳୀ ଆସିକାକୁ ଆସିବେ । ମାତ୍ର ଅଠେଇଶ ତାରିଖ ଭାଷଣ ତାଙ୍କର ଶେଷ ଭାଷଣ ହେଲା ।

ଡାକ୍ତରଖାନାରେ ଚିକିତ୍ସିତ ହେଉଥିବାବେଳେ କହୁଥିଲେ ମୋତେ ଶୀଘ୍ର ମୁକ୍ତ କର ପାର୍ଲିଆମେଣ୍ଟ ଅଧିବେଶନରେ ଯୋଗଦେବି । ମାତ୍ର ବିଧିର ବିଧାନ ବିଚିତ୍ର । କାଳର କୁଟିଳ ଗତି । ଡାକ୍ତରଖାନାରେ ତାଙ୍କ ପୁତ୍ରକଳ୍ପ ସାଂସଦ ବାବୁ ଦିଲ୍ଲୀପ ରାୟ ବହୁ ସେବାକଲେ କିନ୍ତୁ ତାଙ୍କ ଯଶ ରହିଲା ନାହିଁ । ଏପ୍ରିଲ ସତର ତାରିଖରେ ସେହି ଡାକ୍ତରଖାନାରେ ଏକାଅଶୀ ବର୍ଷ ବୟସରେ ସେ ଶେଷନିଶ୍ୱାସ ତ୍ୟାଗକଲେ । ଉତ୍କଳ ଗଗନରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅନ୍ତର୍ହିତ ହୋଇଗଲା । ବିଜୁଯୁଗର ଅବସାନ ଘଟିଲା । ମୃତ୍ୟୁଖବର ଶୁଣିବାମାତ୍ରେ ଓଡ଼ିଶାବାସୀ ସ୍ତବ୍ଧ ହୋଇଗଲେ ।

## ବିଜୁବାବୁଙ୍କ ପ୍ରତି ଶ୍ରଦ୍ଧା ସୁମନ :

ପରଦିନ ଦିଲ୍ଲୀରୁ ଭୁବନେଶ୍ୱର ଏବଂ ଭୁବନେଶ୍ୱରରୁ ପୁରୀ ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ଲକ୍ଷ ଲକ୍ଷ ଲୋକ ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ଶୋକାକୁଳ ନେତ୍ରରେ ଶବ ଶୋଭାଯାତ୍ରାରେ ଅଂଶଗ୍ରହଣ କରିଥିଲେ । ପୁରୀ ରଥଯାତ୍ରାର ଦୃଶ୍ୟ ପ୍ରତୀୟମାନ ହେଲା । ଭୁବନେଶ୍ୱର ନବୀନ ନିବାସରୁ ଜଗନ୍ନାଥ ରାଜପଥରେ ଶବ ଶୋଭାଯାତ୍ରା ଚାଲିଥିବାବେଳେ ଜନସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । 'ବିଜୁ ପଟ୍ଟନାୟକ ଅମର ରହେ' 'କଳିଙ୍ଗ ସମ୍ରାଟ ଅମର ରହେ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଉଥିଲା । ଗାଉଁଲି ଲୋକମାନେ ଫୁଲ ତୋଡ଼ା ଧରି ମୃତ ଶରୀରକୁ ମଣ୍ଡି ଦେଉଥିଲେ । ସର୍ବଶ୍ରୀ ଦେବଗୌଡ଼ା, ଲାଲକୃଷ୍ଣ ଆଡ଼ଭାନୀ, ଅଟଳବିହାରୀ ବାଜପାୟୀ, ମଧୁ ଦଣ୍ଡବତେ, ଆନ୍ଧ୍ରର ମୁଖ୍ୟମନ୍ତ୍ରୀ, ବିହାର ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀଗଣ ଜାତୀୟସ୍ତରର ବହୁନେତା ଓ ଗଣ୍ୟମାନ୍ୟ ବ୍ୟକ୍ତି ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେଇଥିଲେ । ପୁରୀ ସ୍ୱର୍ଗଦ୍ୱାର ଶ୍ମଶାନଘାଟରେ ବିଜୁବାବୁଙ୍କ ମରଶରୀର ଅତି ଅଳ୍ପ ସମୟରେ ନିଶ୍ଚିହ୍ନ ହୋଇଗଲା ।

## ବିଜୁବାବୁଙ୍କ ଗୁଣକୀର୍ତ୍ତନ :

ବିଜୁବାବୁ ଅଟଳପଣର ଅଟଳ ମଣିଷ ଥିଲେ । ଦ୍ୱିତୀୟ ମହାସମର ସମୟରେ ସେ ବ୍ରିଟିଶ ସରକାରର ଦକ୍ଷ ପାଇଲଟ ଥିଲେ । ଭାରତ ସରକାର ଅଧୀନରେ ଚାକିରି

କରି ଭାରତ ସ୍ୱାଧୀନତା ସଂଗ୍ରାମକୁ ଗୁପ୍ତରେ ସାହାଯ୍ୟ କରୁଥିବାରୁ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ । ସେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ବିମାନ ଚାଳକ ଥିଲେ, ଏପରିକି ଆମଷ୍ଟରଡ଼ାମ୍ ବିମାନ ବନ୍ଦରରେ ସବୁଦେଶର ପାଇଲଟଙ୍କୁ ଖାନତଲାସ କରାଗଲେ ମଧ୍ୟ ତାଙ୍କୁ ଛାଡ଼ି ଦିଆଯାଇଥିଲା । ଭାରତର ସ୍ୱାଧୀନତା ପରେ ପରେ ପାକିସ୍ଥାନ ଶ୍ରୀନଗର ସମେତ ସମସ୍ତ କାଶ୍ମୀରକୁ ସମସ୍ତ ପଥ ଅବରୋଧ କଲାବେଳେ ନେହ୍ରୁଙ୍କ ଆଦେଶରେ ବିଜୁବାବୁ ଡାକୋଟା ବିମାନରେ କାଶ୍ମୀର ଅଭ୍ୟନ୍ତରରେ ପ୍ରବେଶ କରି ପାକିସ୍ଥାନର ଅପଚେଷ୍ଟାକୁ ପଣ୍ଡ କରି ଦେଇଥିଲେ । ଇଣ୍ଡୋନେସିଆର ସ୍ୱାଧୀନତା ଯୁଦ୍ଧବେଳେ ବିଜୁବାବୁ ନେହ୍ରୁଙ୍କ ଆଦେଶରେ ସେଠାରେ ବିଶିଷ୍ଟ ନେତାଦ୍ୱୟଙ୍କୁ ଆଖିପିଛୁଳାକେ ଇଣ୍ଡୋନେସିଆ ଭୂମିରୁ ଉଠେଇଆଣି ଦିଲ୍ଲୀରେ ହାଜର କରାଇଲେ । ତାଙ୍କର ଅପୂର୍ବ ସାହସିକତା ଓ ପ୍ରତ୍ୟୁତ୍ପନ୍ନମତିତାରେ ଜଗତ ସ୍ତମ୍ଭୀଭୂତ ହେଲା । ପରବର୍ତ୍ତୀକାଳରେ ଇଣ୍ଡୋନେସିଆ ସରକାର ତାଙ୍କୁ ଭୂମିପୁତ୍ର ଆଖ୍ୟା ପ୍ରଦାନ କଲେ ଏବଂ ଏକ ହଜାର କୋଟି ଟଙ୍କାର ଏକ ବିରାଟ ଅରଣ୍ୟାଞ୍ଚଳ ତାଙ୍କ ନାମରେ ଉତ୍ସର୍ଗ କଲେ, ମାତ୍ର ମହାନ୍ ବିଜୁବାବୁ ବଜ୍ର ଗମ୍ଭୀର ସ୍ୱରରେ ଉଚ୍ଚାରଣ କଲେ, 'କଳିଙ୍ଗ ବୀର ଦାନ ନିଏ ନାହିଁ, ଦିଏ... ।' ତାଙ୍କ ମହତଗୁଣର ପରିଚୟ ଦେଇ ଇଣ୍ଡୋନେସିଆବାସୀଙ୍କ ହିତାର୍ଥେ ସବୁ ଦାନ କରିଦେଇ ସବୁଦିନ ପାଇଁ ସେମାନଙ୍କ ହୃଦୟକନ୍ଦରରେ ସ୍ଥାନ ପାଇଲେ ।

ତାଙ୍କ ମରଶରୀର ଉପରେ ଦୁଇଟି ଦେଶର ଜାତୀୟ ପତାକା ସ୍ଥାନ ପାଇଲା । ଇଣ୍ଡୋନେସିଆରୁ ପ୍ରେସିଡ଼େଣ୍ଟ ସୁକର୍ଣ୍ଣଙ୍କ ପୁତ୍ରୀ ମେଘାବତୀ ଶୋଭାଯାତ୍ରାରେ ଯୋଗ ଦେଇଥିଲେ । ଏପରି ଗୌରବ କୌଣସି ଭାରତୀୟଙ୍କ ଭାଗ୍ୟରେ ଜୁଟିନାହିଁ ।

୧୯୬୨ ମସିହା ଭାରତ-ଚୀନ ଯୁଦ୍ଧରେ ସେ ନେହ୍ରୁଙ୍କ ଯୁଦ୍ଧ ପରାମର୍ଶଦାତା ରୂପେ ନିଯୁକ୍ତି ପାଇଥିଲେ । ନିଜ ବିମାନରେ ଖାଦ୍ୟଦ୍ରବ୍ୟ ନେଇ ନେଫା ଅଞ୍ଚଳର ଲୋକମାନଙ୍କୁ ବଞ୍ଚାଇ ଦେଇଥିଲେ । କି ଦୁଃସାହସ, କି ନିର୍ଭୀକତା !

ବିଜୁବାବୁ ଜାତିପ୍ରେମୀ, ଦେଶପ୍ରେମୀ ଥିଲେ । ନିଜ ଜନ୍ମଭୂମି ଓଡ଼ିଶା ରାଜ୍ୟର ମାନସମ୍ମାନ ସ୍ତରରେ ଏବଂ ଆନ୍ତର୍ଜାତୀୟ ସ୍ତରରେ ବୃଦ୍ଧି କରିବା ପାଇଁ ସେ ଆପ୍ରାଣ ଚେଷ୍ଟା ଚଳାଇଥିଲେ କିନ୍ତୁ ବହୁ କାର୍ଯ୍ୟରେ ସଫଳ ହୋଇଥିଲେ ମଧ୍ୟ ବହୁକାର୍ଯ୍ୟରେ ବିଫଳ ହୋଇଥିଲେ । କଳିଙ୍ଗ ନାମକୁ ସମଗ୍ର ପୃଥିବୀରେ ପରିଚିତ କରେଇବା ପାଇଁ ସେ କଳିଙ୍ଗ ପୁରସ୍କାର ପ୍ରବର୍ତ୍ତନ କରିଥିଲେ । ଓଡ଼ିଶାର ପାରାଦୀପ ବନ୍ଦର, କୋରାପୁଟ ଜିଲ୍ଲାରେ ମିଗ୍ ବିମାନ କାରଖାନା, ରାଉରକେଲାର ଇଞ୍ଜିନିୟରିଂ କଲେଜ, ଭୁବନେଶ୍ୱରରେ ରିଜିଓନାଲ କଲେଜ ପ୍ରତିଷ୍ଠା କରେଇବାରେ ସେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ।

ପରବର୍ତ୍ତୀ ମୁଖ୍ୟମନ୍ତ୍ରିତ୍ୱରେ ସେ କେନ୍ଦ୍ର ସରକାରର ସହାୟତା ପାଇପାରିଲେ ନାହିଁ । ତେଣୁ ପୂର୍ବରୁ ପ୍ରତିଶ୍ରୁତି ଅନୁଯାୟୀ କାର୍ଯ୍ୟ କରିପାରିଲେନାହିଁ । ସେ ଏଥରକ ତିରିଶିଟି ଜିଲ୍ଲା ସୃଷ୍ଟି କଲେ ଓ ତିନିହଜାର ହାଇସ୍କୁଲକୁ ନୂଆ ସରକାରୀ ହାଇସ୍କୁଲ ଭାବରେ ଘୋଷଣା କଲେ । ପ୍ରତ୍ୟେକ ପଞ୍ଚାୟତରେ ହାଇସ୍କୁଲ ନଥିବା ଶୁଣି ଗୋଟିଏ ଗୋଟିଏ ସରକାରୀ ହାଇସ୍କୁଲ ପ୍ରତିଷ୍ଠା କରିଦେଲେ । ଏଥିରେ ବହୁ ଅନିୟମିତତା ଦୃଷ୍ଟିଗୋଚର ହେଲା । ସେ ଆଗପଛ ନ ବିଚାରି, ଟଙ୍କାପଇସା କଥା ଚିନ୍ତା ନକରି ଗୁଡ଼ାଏ କାମ କରିଦେଲେ । ମାତ୍ର ଅର୍ଥର ବ୍ୟବସ୍ଥା କିଛି ନଥିଲା । ସେ ତ ରଜା ମିଜାସର ଲୋକ, ତେଣୁ ଦୁଃସାହସିକ ପଦକ୍ଷେପ ନେଲେ । ମାତ୍ର ଅର୍ଥର ବ୍ୟବସ୍ଥା ନକରି ଏପରି ଉଚ୍ଚ ଆଶାପୋଷଣ କଲେ ପରେ ଅସୁବିଧା ସୃଷ୍ଟିହୁଏ । ପଣ୍ଡିତ ଜବହାରଲାଲ ନେହୁରୁ କହିଛନ୍ତି —"It is very difficult to know where he will land us." ତାଙ୍କର ଦୁଃସାହସିକତା ଅନୁକରଣୀୟ । ତାଙ୍କ ପରେ ପରେ ସମ୍ପାଦକ ଉତ୍କଳମଣି ଗୋପବନ୍ଧୁଙ୍କ ପଞ୍ଚଶିଷ୍ୟ ଶତାୟୁ ପୁରୁଷ ରାଧାନାଥ ରଥ ୧୯୯୮ ମସିହା ଫେବୃଆରୀ ଏଗାର ତାରିଖରେ ପରଲୋକ ଗମନ କଲେ । ତାଙ୍କ ମୃତ୍ୟୁରେ ଜଣେ ବିଶିଷ୍ଟ ଚିନ୍ତାନାୟକ, ଦୁର୍ନୀତି ବିରୁଦ୍ଧରେ ତୀବ୍ର ସ୍ୱର ଉତ୍ତୋଳନ କରୁଥିବା ଏକ ପ୍ରଖ୍ୟାତ ଯୋଦ୍ଧାଙ୍କର ଅବସାନ ଘଟିଲା । ପରେ ପରେ ଉତ୍କଳ ସମ୍ମିଳନୀର ଲଗାମ ଧରିଥିବା ବାବୁ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କର ମଧ୍ୟ ପ୍ରୟାଣ ଘଟିଥିଲା ।

## ଉତ୍କଳ ସମ୍ମିଳନୀରେ ମଧୁବାବୁଙ୍କ ୧୫୦ତମ ଜୟନ୍ତୀ ପାଳନ :

ଶ୍ରୀଯୁକ୍ତ ବସନ୍ତ କୁମାର ପାଣିଗ୍ରାହୀ ଓଡ଼ିଆ ଜାତିର ଉନ୍ନତିକଳ୍ପେ ଉତ୍କଳ ସମ୍ମିଳନୀରେ ରାଧାନାଥ ରଥଙ୍କ ସମୟରୁ ଯୋଗଦେଇଥିଲେ । ଖୋର୍ଦ୍ଧାରେ ଉତ୍କଳ ସମ୍ମିଳନିରେ ଶାଖା ଖୋଲାଗଲା । ମୁଁ ଜୀବନର ପ୍ରାରମ୍ଭରୁ ଦେଶକୁ ଭଲପାଉଥିଲି । ଏବେ ଉତ୍କଳ ସମ୍ମିଳନୀର ଆଜୀବନ ସଭ୍ୟ ହେଲି ଏବଂ କାର୍ଯ୍ୟ କଲି । ଜାତୀୟଗୌରବ ଶ୍ରୀମଧୁସୂଦନ ଦାସଙ୍କର ଶହେ ପଚାଶତମ ଜୟନ୍ତୀ ଖୋରଧା ସହରରେ ଓ ନିକଟବର୍ତ୍ତୀ ହାଇସ୍କୁଲ (କୁମାରବସ୍ତ, ଗୁରୁଜଙ୍ଗ, ପୁରୁସାହି, ବଡ଼ତୋଟା ପ୍ରଭୃତି) ଗ୍ରାମମାନଙ୍କୁ ଯାତ୍ରାକରି ମଧୁବାବୁଙ୍କ ମହନୀୟ କାର୍ଯ୍ୟକଳାପ ସମ୍ବନ୍ଧେ ଆଗାମୀ ବଂଶଧରମାନଙ୍କୁ ଅବଗତ କରେଇଥିଲି । ମୋ ସଙ୍ଗେ ରାଜୁବାବୁ, ବିଚିତ୍ରବାବୁ ଓ ଅନ୍ୟ ସଭ୍ୟମାନେ ଥିଲେ । ବିଦ୍ୟାଳୟ ଛାତ୍ରଛାତ୍ରୀମାନଙ୍କ ଆଗରେ ଓ ଅଭିଭାବକମାନଙ୍କ ଗହଣରେ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ମୁଁ ଭାଷଣମାନ ପ୍ରଦାନ କରି ସେମାନଙ୍କ ମନରେ ଭାଷାପ୍ରେମ ଓ ଜାତିପ୍ରେମୀ ଭାବ ଉଦ୍ରେକ କଲି । ପୁନଃ ବିବାହ, ବ୍ରତ ଓ ଅନ୍ୟାନ୍ୟ ସାମାଜିକ ପର୍ବପର୍ବାଣିରେ ମାତୃଭାଷାରେ ନିମନ୍ତ୍ରଣ ପତ୍ର ଛାପିବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇ ପାରିଲି ଏବଂ ଖୋର୍ଦ୍ଧା ସହରରେ ଅଭିଯାନ କରି ଦୋକାନ ସମ୍ମୁଖରେ ଓଡ଼ିଆ ଭାଷାରେ ନାମଫଳକ ଓ ନିଜ ବାସଗୃହ ସମ୍ମୁଖରେ

ମଧ ଓଡ଼ିଆ ଭାଷାରେ ନାମଫଳକ ଟାଙ୍ଗିବା ପାଇଁ ଆମ୍ଭେମାନେ ଲୋକମାନଙ୍କୁ ପରାମର୍ଶ ଦେଲୁ । କୌଣସି ପର୍ବପର୍ବାଣି ବା ବିବାହ ବ୍ରତରେ ଇଂରେଜୀ ଭାଷାରେ ନିମନ୍ତ୍ରଣ ପତ୍ର ପାଇଲେ ମୁଁ ସେଠାକୁ ନଯିବାକୁ ନିଷ୍ପତ୍ତି ନେଲି ।

## ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପ୍ରସଙ୍ଗ :

ଷଢ଼େଇକଳା, ଖରସୁଆଁ ଓଡ଼ିଶାରେ ମିଶ୍ରଣ ସଭାରେ ମୁଁ ବହୁଥର ଯୋଗଦେଇଛି ଏବଂ ଓଡ଼ିଶା ସୀମା ସଂଲଗ୍ନ ଅଞ୍ଚଳପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଆଯାଉ ବୋଲି ଦାବି କରିଛି । ସ୍ୱାର୍ଥ ତ୍ୟାଗକରି କେତେକ ଯୁବକ ଯୁବତୀ,ପ୍ରୌଢ଼ ପ୍ରୌଢ଼ା ଯଦି ଜାତିକାମରେ ସେହିସବୁ ଅଞ୍ଚଳରେ କର୍ମରତ ରହନ୍ତେ ତେବେ ପଡ଼ୋଶୀ ପ୍ରଦେଶର ଦୌରାତ୍ମ୍ୟ କମିଯାଆନ୍ତା । ସେଥିପାଇଁ ଉତ୍ସର୍ଗୀକୃତ ଜୀବନ ଲୋଡ଼ା । କେବଳ କାଗଜପତ୍ରରେ ଉତ୍କଳ ସମ୍ମିଳନୀର ଶତବାର୍ଷିକୀ ଉତ୍ସବ କଟକ ସହରରେ ପାଳନ କରିବାର କୌଣସି ମୂଲ୍ୟନାହିଁ । ଆମ୍ଭେମାନେ ସଦା ପଛୁଆ । ଓଡ଼ିଶା ପ୍ରଦେଶ ଗଢ଼ାହେବାର ଦୀର୍ଘ ୬୫ ବର୍ଷ ହେଲାଣି ଏବଂ ଦେଶ ସ୍ୱାଧୀନ ହେବାର ୫୩ ବର୍ଷ ହେଲାଣି ଅଥଚ ଆମର ସୀମା ବିବାଦ ତୁଟିଲା ନାହିଁ । ଓଡ଼ିଶା ସରକାରର ମୁଣ୍ଡବ୍ୟଥା ହେଉନାହିଁ କି ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ନିଦ ଭାଙ୍ଗୁନାହିଁ । ମନ୍ତ୍ରୀ ବା ଲୋକପ୍ରତିନିଧିମାନେ ଦେଶକଥା, ଜାତିକଥା ଚିନ୍ତା କରୁନାହାନ୍ତି । ନିଜ ମୁଣ୍ଡରୁ ଦାୟିତ୍ୱ ଖସାଇ ଦେଇ ଜନସାଧାରଣଙ୍କୁ ଦାୟିତ୍ୱବାନ ହେବାକୁ କହିବା ନିରର୍ଥକ ଦୃରେଇ ହୋଇଯାଉଛି । କେତେଦିନ ଆଉ ଜାତି ଶୋଇରହିବ ? ଆମର ବହୁଅଞ୍ଚଳ ବାହାରେ ରହିଲା ଏବଂ ସୀମାକୁ ଲାଗି ଅଞ୍ଚଳଗୁଡ଼ିକରେ ବହୁ କାମ କରିବା ବାକି ରହିଲା । ଏବେ ତ ମୁଁ ଅକ୍ଷମ, ତଥାପି ଏ କାମ କରିବାକୁ ତତ୍ପର ।

## ଦୁର୍ବଳ ନେତୃତ୍ୱ :

ଦୁର୍ବଳ ନେତୃତ୍ୱ ସମସ୍ତ ପ୍ରଗତିର ପରିପନ୍ଥୀ । କେନ୍ଦ୍ରରେ ଦେବଗୌଡ଼ା ସରକାର ପରେ ଉଦାରପନ୍ଥୀ ନେତା ସୁମଣିଷ ଇନ୍ଦରକୁମାର ଗୁଜୁରାଲଙ୍କ ହାତକୁ କ୍ଷମତା ଆସିଲା । ଅବଶ୍ୟ ପ୍ରଥମେ କଂଗ୍ରେସ ସଭାପତି ତାଙ୍କୁ ସମର୍ଥନ କରୁଥିଲେ । କିନ୍ତୁ କଂଗ୍ରେସର ମାନ ହ୍ରାସ ହେବା ଭୟରେ ସେ ବେଶୀକାଳ ତାଙ୍କୁ ସମର୍ଥନ ଜଣାଇଲେ ନାହିଁ । କିଛିମାସ ପରେ ସଭାପତି ସୀତାରାମ କେଶରୀଙ୍କ କୌଶଳ ହେତୁ ସେ ସରକାରର ପତନ ହେଲା । ତତ୍ପରେ ପୁନଃ ନିର୍ବାଚନ ହେଲା । ଏଥିରେ ମଧ କୌଣସି ଦଳ ନୂତନ ସରକାର ସଂଖ୍ୟାଗରିଷ୍ଠତା ପାଇଲା ନାହିଁ । ମାତ୍ର ନିର୍ବାଚନର ଖର୍ଚ୍ଚ ଦେଶକୁ ରସାତଳକୁ ଟାଣିନେଲା । ଏଥର ଶ୍ରୀ ଅଟଳ ବିହାରୀ ବାଜପେୟୀ ଆଞ୍ଚଳିକ ଦଳଗୁଡ଼ିକୁ ନେଇ ସରକାର ଗଠନ କଲେ । ଏଥର ସରକାର ଭାଙ୍ଗିବାକୁ ଦଳଗୁଡ଼ିକ ସାହସ କଲେ ନାହିଁ । ଆଞ୍ଚଳିକ ଦଳଗୁଡ଼ିକ ହେଲେ ଆନ୍ଧ୍ରର

ଚନ୍ଦ୍ରବାବୁଙ୍କ ତେଲୁଗୁଦେଶମ୍ ପାର୍ଟି, ତାମିଲନାଡୁର ଜୟଲଳିତାଙ୍କର ଏ.ଡି.ଏମ.କେ. ଦଳ, ମମତା ବାନାର୍ଜୀଙ୍କ ତୃଣମୂଳ କଂଗ୍ରେସ, ଉତ୍ତରପ୍ରଦେଶର ମାୟାବତୀ ଦଳ, କାଶ୍ମୀରର ଜାତୀୟ ସାମ୍ମୁଖ୍ୟ ଦଳ (ନ୍ୟାସନାଲ କନଫରେନ୍ସ) ଏବଂ ଓଡ଼ିଶାର ବିଜୁ ଜନତା ଦଳ । କିନ୍ତୁ ଜୟଲଳିତା, ମମତା, ମାୟାବତୀ ମିଳିତ ସରକାରକୁ ବହୁ ସମୟରେ ଅଠାକାଠିରେ ପକାଉଥିଲେ । ମନ୍ତ୍ରିମଣ୍ଡଳରୁ ଖସିଯିବେ ବୋଲି ଧମକାଉଥିଲେ । ଜୟଲଳିତା ବହୁ ଅବାନ୍ତର କଥା ଗ୍ରହଣ କରିବାକୁ ଶ୍ରୀ ବାଜପେୟୀଙ୍କ ଉପରେ ଚାପ ପକାଉଥିଲେ । ମାତ୍ର ନୀତିନିଷ୍ଠ ବାଜପେୟୀ ସେଥିରେ ରାଜି ହେଉନଥିଲେ । ଅବସ୍ଥା ଏପରି ହେଲା ଯେ ଜୟଲଳିତା ତାଙ୍କ ସମର୍ଥନ ପ୍ରତ୍ୟାହାର କଲେ, କିନ୍ତୁ ମମତା, ମାୟାବତୀ, କାଶ୍ମୀର ଜାତୀୟ ଦଳ ସରକାରଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଅସଲ ଘଡ଼ିସନ୍ଧି ମୁହୂର୍ତ୍ତରେ ଭୋଟ ଦେଲାବେଳେ ମାୟାବତୀ ଦଳ ଓ କାଶ୍ମୀର ଜାତୀୟ ଦଳ ସରକାରଙ୍କ ସପକ୍ଷରେ ଭୋଟ ଦେଲେନାହିଁ । ସେତେବେଳକୁ ସୀତାରାମ କେଶରୀଙ୍କୁ ହଟେଇ କଂଗ୍ରେସ ସଭାପତି ପଦରେ ଶ୍ରୀମତୀ ସୋନିଆ ଗାନ୍ଧୀ ଅଧିଷ୍ଠିତ ହେଲେଣି । କେତେକ ବିରୋଧୀଦଳ ନେତା ସୋନିଆ ଗାନ୍ଧୀଙ୍କୁ ପ୍ରଧାନମନ୍ତ୍ରୀ କରିବାକୁ ସଜବାଜ ହେଲେ । ଏଥିରେ ସୋନିଆ ଉତ୍‌ଫୁଲ୍ଲିତ ହେଲେ । ଲୋଭ ମନୁଷ୍ୟକୁ ନାନା ଅସୁବିଧାରେ ପକାଇଥାଏ । 'ଅତିଲୋଭେ ତନ୍ତୀ ମରେ' ବୋଲି କଥାଟିଏ ଲୋକମୁଖରେ ପ୍ରଚଳିତ ।

ଏଣେ ଓଡ଼ିଶାରେ କଂଗ୍ରେସୀ ମୁଖ୍ୟମନ୍ତ୍ରୀ ବାବୁ ଜାନକୀ ପଟ୍ଟନାୟକଙ୍କ ନାମରେ ବହୁ ଅଳିଆ ଲାଗିଗଲାଣି ବୋଲି ତାଙ୍କ ଲୋକେ ପାଟିକଲେ । ତାଙ୍କ ଦଳରୁ ମଧ ତାଙ୍କ ବିରୁଦ୍ଧରେ ବହୁ ଅଭିଯୋଗ ଶ୍ରୀମତୀ ଗାନ୍ଧୀଙ୍କ ନିକଟକୁ ପହଞ୍ଚିଲା । ମୁଖ୍ୟମନ୍ତ୍ରୀଙ୍କ ଚରିତ୍ର ସଂହାର କରି ବହୁସମ୍ବାଦ ଦିଲ୍ଲୀ ଦରବାରରେ କଂଗ୍ରେସ ମହଲରେ ବିଭ୍ରାନ୍ତି ସୃଷ୍ଟି କରୁଥାଏ । ମୁଖ୍ୟମନ୍ତ୍ରୀଙ୍କ ମନ ଅସ୍ଥିର ରହୁଥାଏ । ଏହିପରି ସମୟରେ ସୋନିଆଗାନ୍ଧୀ କେନ୍ଦ୍ରରୁ ବାବୁ ଗିରିଧାରୀ ଗମାଙ୍ଗଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ବସାଇଲେ । ଗିରୀଧାରୀବାବୁ କେନ୍ଦ୍ରରୁ ସଭ୍ୟପଦ ହରାଇ ନଥିଲେ । ତେର ମାସପରେ ଯେତେବେଳେ ସରକାରଙ୍କ ଉପରେ ଆସ୍ଥାସୂଚକ ଭୋଟ ନିଆଗଲା ସେତେବେଳେ ମାୟାବତୀ, କାଶ୍ମୀର ଜାତୀୟ ଦଳ ସରକାରଙ୍କ ସପକ୍ଷରେ ଭୋଟ ଦେଲେନାହିଁ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଗମାଙ୍ଗ ମହାଶୟ ଯଦି ସରକାରଙ୍କ ବିରୁଦ୍ଧରେ ଭୋଟ ଦେଇନଥାନ୍ତେ ତେବେ ବାଜପେୟୀ ସରକାର ତିଷ୍ଠି ଯାଇଥାନ୍ତା । କିନ୍ତୁ କଂଗ୍ରେସ ସଭାପତି ସୋନିଆଙ୍କ ପରାମର୍ଶରେ ଗମାଙ୍ଗ ମହାଶୟ ସରକାରଙ୍କ ବିରୁଦ୍ଧରେ ଭୋଟଦେଲେ । ଗୋଟିଏ ଭୋଟରେ ସରକାର ହାରିଲା ଏବଂ ସରକାରର ପତନ ଘଟିଲା ।

ରାଷ୍ଟ୍ରପତି ଶ୍ରୀଯୁକ୍ତ ନାରାୟଣନ ଶ୍ରୀମତୀ ଗାନ୍ଧୀଙ୍କୁ ସରକାର ଗଢ଼ିବାପାଇଁ ଆମନ୍ତ୍ରଣ କଲେ । ଯେଉଁମାନେ ତାଙ୍କୁ ଉତ୍ସାହିତ କରିଥିଲେ ସୋନିଆ ସେମାନଙ୍କ ନିକଟକୁ ବହୁ ଧାଁଧପଡ଼ କଲେ ମାତ୍ର ସବୁ ନିଷ୍ଫଳ ହେଲା । କଂଗ୍ରେସ ଦଳ ବାଜପେୟୀ ମନ୍ତ୍ରିମଣ୍ଡଳ ପତନ ପାଇଁ ଦାୟୀ ରହିଲେ ମଧ୍ୟ ସରକାର ଗଢ଼ିବାରେ ଅସମର୍ଥ ହେଲା । ପୁନଃ ନିର୍ବାଚନ, ପୁନଃ ରଣଭାର । ସରକାର ଗଢ଼ିବା ପାଇଁ କଂଗ୍ରେସ ଅକ୍ଷମତା ପ୍ରକାଶ କରିବାରୁ ବାଜପେୟୀ ସରକାର କେୟାର-ଟେକର ସରକାର ହିସାବରେ ଦାୟିତ୍ୱ ତୁଲାଇଲେ ।

## ଜାତୀୟବୀର ବାଜପେୟୀଙ୍କ କୃତିତ୍ୱ :

ଏହାହିଁ ୧୯୯୯ ମସିହା ମାର୍ଚ୍ଚ -ଏପ୍ରିଲ ମାସର ଘଟଣା । ବାଜପେୟୀ ମହୋଦୟ ଜଣେ କୂଟନୀତିପରାୟଣ, ସଚ୍ଚୋଟ, ନିର୍ଭୀକ ବ୍ୟକ୍ତି । ସେ ଏଥରକ କ୍ଷମତାକୁ ଆସୁ ଆସୁ ପାକିସ୍ଥାନ ପ୍ରତି ବନ୍ଧୁତାର ହସ୍ତ ପ୍ରସାରଣ କରି ଦିଲ୍ଲୀରୁ ଲାହୋର ଯାତ୍ରା କଲେ ଓ ସେଠାରେ ପାକିସ୍ଥାନବାସୀଙ୍କର ପ୍ରିୟ ହୋଇଗଲେ । ପାକିସ୍ଥାନ ପ୍ରଧାନମନ୍ତ୍ରୀ ସରିଫଙ୍କ ସହ ଲାହୋର ରାଜିନାମା ସ୍ୱାକ୍ଷର କଲେ । ପରେ ପରେ ବଙ୍ଗଳାଦେଶ ପ୍ରତି ମଧ୍ୟ ବନ୍ଧୁଭାବ ପ୍ରଦର୍ଶନ କଲେ । ଅବସ୍ଥା ସୁଧୁରି ଆସୁଥିବା ବେଳେ ସରିଫ୍‌ଙ୍କ ସରକାରର ପତନ ଘଟିଲା ।

## କାରଗିଲ ଯୁଦ୍ଧ :

ଦେଶର ବିଧିବଦ୍ଧ ସରକାର ନଥିବାବେଳେ ପାକିସ୍ଥାନ ବେଳଉଣ୍ଡି ଜୁନ୍ ମାସରେ କାଶ୍ମୀରରେ  କାରଗିଲ ଅଞ୍ଚଳକୁ ନେଇଯିବାପାଇଁ ସୀମା ଆରପଟୁ ଆକ୍ରମଣ ଚଳାଇଲା । ଏଥିରେ ପାକିସ୍ଥାନର ସେନାପତି ମୁଶାରଫ ଅଘୋଷିତ ଯୁଦ୍ଧରେ ବିଜୟୀ ହେବାପାଇଁ ଦୃଢ଼ ଆଶା ପୋଷଣ କରିଥିଲେ । ମାତ୍ର ବିଜ୍ଞ ଅଟଳ ବିହାରୀ କୂଟନୀତି ପ୍ରୟୋଗକରି ପାକିସ୍ଥାନକୁ ଏକଘରକିଆ କରିଦେଲେ । ଏହି ଅଘୋଷିତ ଯୁଦ୍ଧରେ ଭାରତର ୪୨୬ ଜଣ ସୈନ୍ୟ ଓ ସେନାପତି ଦେଶପାଇଁ ପ୍ରାଣଦାନ କଲେ ଏବଂ ଦେଶର ଅଜସ୍ର ଧନ ଖର୍ଚ୍ଚ ହୋଇଗଲା । କିନ୍ତୁ ସମଗ୍ର ଭାରତ ବିଜୟ ଉଲ୍ଲାସରେ ମାତି ଉଠିଲା । ସମଗ୍ର ପୃଥିବୀବାସୀ ବାଜପେୟୀଙ୍କର ଭୂୟସୀ ପ୍ରଶଂସାରେ ଶତମୁଖ ହେଲେ । ଭାରତ ବିରୋଧୀ ଲୋକଙ୍କର ମୁହଁ ବନ୍ଦ ହେଇଗଲା । ବାଜପେୟୀ ସମଗ୍ର ଏସିୟାରେ ଅପ୍ରତିଦ୍ୱନ୍ଦ୍ୱୀ ନେତା ହୋଇ ଉଭାହେଲେ । ପାକିସ୍ଥାନରେ ପଟ୍ଟ ପରିବର୍ତ୍ତନ ହୋଇ କୁଚକ୍ରୀ ଜେନେରାଲ ମୁଶାରଫ ମିଲିଟାରୀ ଶାସନକର୍ତ୍ତା ହୋଇରହିଲେ । ଲୋକମୁଖରେ ଶୁଣାଗଲା ତତ୍କାଳୀନ ପ୍ରଧାନମନ୍ତ୍ରୀ ମହମଦ ନଓ୍ୱାଜ ସରିଫଙ୍କ କଥା ନମାନି ସେ ଭାରତ ଆକ୍ରମଣ କରିଥିଲେ ।

ଦୃଢ଼ଚେତା ବାଜପେୟୀ ମହୋଦୟ କାରଗିଲ ଯୁଦ୍ଧରେ ବିଜୟଲାଭ କରିବାରୁ ଭାରତର ଜନସାଧାରଣଙ୍କ ମନ ତାଙ୍କ ଆଡ଼କୁ ଟାଣି ହୋଇଗଲା ।  ଜାତି-ଧର୍ମ-ବର୍ଣ୍ଣ ଓ

ଦଳ ନିର୍ବିଶେଷରେ ସମସ୍ତ ଦେଶବାସୀ ଶ୍ରୀ ବାଜପେୟୀଙ୍କ ପ୍ରଶଂସା ଗାୟନ କଲେ । ବର୍ଷାଗତୁ ଶେଷଆଡ଼କୁ ଅକ୍ଟୋବର ମାସରେ ସାଧାରଣ ନିର୍ବାଚନ ପାଇଁ ଠିକଠାକ୍ ହେଲା । କଂଗ୍ରେସ ଦଳ ଓ ଅନ୍ୟ ବାମପନ୍ଥୀ ଦଳ ବି.ଜେ.ପି. ରକ୍ଷଣଶୀଳ, ସାମ୍ପ୍ରଦାୟିକବାଦୀ, ଅସ୍ପୃଶ୍ୟ ବୋଲି ଦେଶସାରା ପ୍ରଚାର କଲେ । ମାତ୍ର ଏଥିମଧ୍ୟରେ ବି.ଜେ.ପି. ର ଭାବମୂର୍ତ୍ତି ଓ ଲୋକପ୍ରିୟତା ବୃଦ୍ଧିପ୍ରାପ୍ତ ହୋଇଗଲା । ୧୯୯୬ ପାର୍ଲିଆମେଣ୍ଟ ନିର୍ବାଚନରୁ ସୌମ୍ୟବାବୁ ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ ଏବଂ ୧୯୯୮ ନିର୍ବାଚନରେ ତାଙ୍କର ପ୍ରତିଦ୍ୱନ୍ଦ୍ୱିତା କଲେ ଡାଃ. ପ୍ରସନ୍ନ ପାଟଶାଣୀ ବାବୁ । ସେ ଜିଣିକରି ଆସିଥିଲେ । ଏଥରକ ମଧ୍ୟ ଜିଣିଲେ । ୧୯୯୮ରେ ପାଟଶାଣୀ ବାବୁ କେନ୍ଦ୍ରକୁ ଯିବାରେ ବାବୁ ଦିଲ୍ଲୀପ ଶ୍ରୀଚନ୍ଦନ ଖୋରଧାର ବିଧାୟକ ହୋଇଥିଲେ । ବହୁଦିନରୁ ଆଶାୟୀ ବାବୁ ଜିତୁ ମିତ୍ର ନିରାଶ ହେଲେ । ସେ ସେହି ନଗରପାଳ ହୋଇ ରହିଲେ । କଂଗ୍ରେସ ମୁଖ୍ୟ ତାଙ୍କର ଶିରୀ ଦେଖିପାରିଲେ ନାହିଁ ବୋଲି ସେ ପ୍ରଚାର କଲେ ଏବଂ ଦଳରୁ ଚାଲିଯିବେ ବୋଲି ସ୍ଥିର କଲେ ।

## ପୁନଃ ବାଜପେୟୀ ସରକାର :

୧୯୯୯ ନିର୍ବାଚନରେ ପ୍ରସନ୍ନବାବୁ କେନ୍ଦ୍ରକୁ ଗଲେ । ଓଡ଼ିଶାର ଏକୋଇଶଟି ଆସନ ମଧ୍ୟରୁ ଉଣେଇଶ ଜଣ ବି.ଜେ.ପି.-ବି.ଜେ.ଡି. ଦଳର । ଶ୍ରୀ ଅଟଳ ବିହାରୀ ବାଜପେୟୀ ପୁନଃ  ମିଳିତସରକାର ଅକ୍ଟୋବର ତେର ତାରଖରେ ଗଢ଼ିଲେ । ଏଥରକ ବି.ଜେ.ପି. ପ୍ରମୁଖ ଦଳକୁ ନେଇ କେନ୍ଦ୍ରରେ ଶାସନ ଗଢ଼ାଗଲା ବିଜ୍ଞ ବାଜପେୟୀଙ୍କ ନେତୃତ୍ୱରେ ।

## ଆମ ରାଜ୍ୟ ଶାସନ ବ୍ୟବସ୍ଥା :

୧୯୯୮ ମସିହାରେ ଓଡ଼ିଶାରେ କଂଗ୍ରେସ ଶାସନ ଜାନକୀବାବୁଙ୍କ ନେତୃତ୍ୱରେ ଚାଲିଥିବାବେଳେ ରାଜ୍ୟରେ ନାନା ଅଶୋଭନୀୟ ଘଟଣା ପଡ଼ିଲା । ଦୁଇପୁତ୍ରଙ୍କ ସହ ପାଦ୍ରି ଷ୍ଟେନ୍ସ ପୋଡ଼ି ଘଟଣା ଓ ଅଞ୍ଜନା-ଆଡ଼ଭୋକେଟ ଜେନେରାଲ ଘଟଣା ଜାନକୀବାବୁଙ୍କ ଭାବମୂର୍ତ୍ତିକୁ ବହୁପାରିମାଣରେ କ୍ଷୁଣ୍ଣ କଲା । କଂଗ୍ରେସ ଦଳରୁ ମୁଖ୍ୟମନ୍ତ୍ରୀଙ୍କର ବହୁ ଶତ୍ରୁ ବାହାରିପଡ଼ିଲେ । ତେଣୁ କେନ୍ଦ୍ରୀୟ କଂଗ୍ରେସ ସଭାପତି ଶ୍ରୀମତୀ ସୋନିଆଗାନ୍ଧୀ କେନ୍ଦ୍ରରୁ ଗିରିଧାରୀ ଗମାଙ୍ଗଙ୍କୁ ଆଣି ରାଜ୍ୟର ମୁଖ୍ୟମନ୍ତ୍ରୀ ରୂପେ ୧୯୯୯ ମସିହା ପ୍ରାରମ୍ଭରୁ ଅବସ୍ଥାପିତ କଲେ । ଗମାଙ୍ଗ ମହାଶୟ ସାଧୁ ସଚ୍ଚୋଟ ଓ ସରଳ ପ୍ରକୃତିର ଥିଲେ । ସେ ରାଜ୍ୟ ଶାସନକୁ ଆସୁ ଆସୁ କୁହୁଡ଼ି ହତ୍ୟାକାଣ୍ଡ ଘଟିଲା । ଏଥିରେ ସେ ଯେଉଁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ ତାଙ୍କ ଦଳର କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ତାଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ

କଲେ । ସେ କେନ୍ଦ୍ର ମନ୍ତ୍ରିମଣ୍ଡଳର ପତନ ଘଟାଇଥିବାରୁ ଓଡ଼ିଶାର କେତେକ ବୁଦ୍ଧିଜୀବୀ ତାଙ୍କ ବିରୁଦ୍ଧରେ ଥିଲେ । କେତେକ କଂଗ୍ରେସ ବିଧାୟକ ତାଙ୍କ ସରଳତାର ସୁଯୋଗ ନେଇ ତାଙ୍କୁ ତାଙ୍କ ପଦରୁ ଅନ୍ତର କରିବାକୁ ଚାପ ପକାଇଲେ ।

## ରାଜ୍ୟରେ ପ୍ରଚଣ୍ଡ ଘୂର୍ଣ୍ଣିବାତ୍ୟା ଓ ହଜାର ହଜାର ଲୋକ ଓ ଗୃହପାଳିତ ପଶୁଙ୍କର ପ୍ରାଣହାନି :

୧୯୯୯ ଅକ୍ଟୋବର ୧୭ ତାରିଖରେ ଗଞ୍ଜାମ ଜିଲ୍ଲା ଉପକୂଳରେ ଝଡ଼ବାତ୍ୟାରେ ବହୁଧନ ଜୀବନହାନି ହେଲା । ପୁନଃ ସେହି ଅକ୍ଟୋବର ୨୯ ଓ ୩୦ ତାରିଖରେ ଏକ ପ୍ରଳୟଙ୍କରୀ ବାତ୍ୟା ପୂର୍ବ ବାତ୍ୟାଠାରୁ ଆହୁରି ଭୀଷଣ । ଓଡ଼ିଶା ଉପକୂଳ ବିଶେଷତଃ ଅବିଭକ୍ତ ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲାର ଉପକୂଳ ଅଞ୍ଚଳରେ ତାଣ୍ଡବଲୀଳା ସୃଷ୍ଟି କଲା । କଟକ ଜିଲ୍ଲା ଏରସମା ଓ ଜଗତସିଂହପୁରରେ ବହୁ ଅଞ୍ଚଳ ୨୧ ଫୁଟ ସମୁଦ୍ର ଜୁଆରରେ ବୁଡ଼ିଗଲା । ପ୍ରାୟ ୩୦ ହଜାର ଲୋକଙ୍କର ପ୍ରାଣହାନି ଘଟିଲା । ବହୁ ଲୋକ ଓ ଗୃହପାଳିତ ପଶୁ ଭାସିଗଲେ । ଚାରିଆଡ଼େ ହାହାକାର ଧ୍ୱନି । ରାଜ୍ୟ ସରକାର ଏ ବିପତ୍ତିରୁ ମୁକୁଳିବେ କିପରି ? ଘୂର୍ଣ୍ଣିବାତ୍ୟା ୩୦୦କି.ମି. ବେଗରେ ବହିଲା । ଆମେ ଖୋର୍ଦ୍ଧାରେ ମଧ୍ୟ ମହାବାତ୍ୟାର ପ୍ରକୋପ ଅଙ୍ଗେ ଲିଭେଇଲୁ । ଘରଭିତରୁ ଦୁଆରକୁ ମୁହଁ କାଢ଼ି ବାହାରିପାରିଲୁ ନାହିଁ । ଲକ୍ଷ ଲକ୍ଷ ବୃକ୍ଷ ଉପୁଡ଼ି ପଡ଼ିଲା । ସହରର ରାଜରାସ୍ତା ବୃକ୍ଷମାନଙ୍କଦ୍ୱାରା ଅବରୁଦ୍ଧ ହେଲା । ମୋ ନିଜର କେତୋଟି ଆମ୍ବ ଓ ଶାଗୁଆନ ବୃକ୍ଷ ଉପୁଡ଼ି ପଡ଼ିଲା । ମୁଁ ନିଜେ ଦୁଇ ଦିନ ଘରୁ ବାହାରି ପାରିଲିନାହିଁ । ଇଲେକ୍‌ଟ୍ରିକ୍ ଖୁଣ୍ଟଗୁଡ଼ିକ ଭାଙ୍ଗିପଡ଼ିଲା ଏବଂ କେତେକ ସ୍ଥାନରେ ବଙ୍କା ହୋଇଗଲା । ମୋ ଟାଇଲ ଘରଛାତ ଓ ପଥର କାନ୍ଥ ଭାଙ୍ଗିପଡ଼ିଲା । ଆଠ ଦିନ ପର୍ଯ୍ୟନ୍ତ ଅନ୍ଧାରରେ କାଳ କାଟିବାକୁ ପଡ଼ିଲା । ଖୋର୍ଦ୍ଧା ଅପେକ୍ଷା ଉପକୂଳ ଅଞ୍ଚଳରେ ଅବସ୍ଥା ଆହୁରି ଶୋଚନୀୟ ହେଲା । ଦେଶ ଭିତରୁ ଓ ଦେଶ ବାହାରୁ ନାନାରୂପରେ ସାହାଯ୍ୟମାନ ମାଡ଼ିଆସିଲା । କିନ୍ତୁ ସରକାରର ଅସାଧୁ କର୍ମଚାରୀମାନେ ଫାଇଦା ଉଠାଇଲେ । ରାଜ୍ୟ ସରକାରର ଦୁର୍ନାମ ରଟାଇଲେ । ବହୁ ସାହାଯ୍ୟପଦାର୍ଥ ବାଟ ଲୋକଙ୍କଦ୍ୱାରା ହଡ଼ପ୍ ହୋଇଗଲା । ଏହି ଦୁର୍ଦ୍ଦିନରେ ଆନ୍ଧ୍ରର ଚନ୍ଦ୍ରବାବୁ ନାଇଡୁ ସରକାର ଓଡ଼ିଶାର ପ୍ରକୃତ ବନ୍ଧୁ ହୋଇ ଠିଆହେଲେ । ଅନ୍ୟ ରାଜ୍ୟମାନଙ୍କ ମଧ୍ୟରୁ ଅନେକ ସାହାଯ୍ୟ କଲେ । ମାତ୍ର କଂଗ୍ରେସ ଶାସନର ଅପାରଗତା ହେତୁ ରାଜ୍ୟ ବହୁ ସମସ୍ୟାର ସମ୍ମୁଖୀନ ହେଲା । ପୁନଃ ସୋନିଆ ଗାନ୍ଧୀଙ୍କ ନିର୍ଦ୍ଦେଶରେ ବାବୁ ହେମାନନ୍ଦ ବିଶ୍ୱାଳ ମୁଖ୍ୟମନ୍ତ୍ରୀ ଆସନରେ ବସିଲେ । ମାତ୍ର କଂଗ୍ରେସ ଶାସନ ପାଞ୍ଚ ବର୍ଷ ପୂରିବାକୁ ଆଉ ମାତ୍ର ଦୁଇତିନି ମାସ ବାକି ଥିଲା । ଏହି ସ୍ୱଳ୍ପ ସମୟରେ ସେ ବା କ'ଣ କରିବେ ? ଧର୍ମକୁ ଆଖିଠାର

ମାରିବା ପରି ହେଲେ । 'ବୁଡ଼ିଗଲା ଗୋଡ଼ ତଳକୁ ତଳକୁ ।' ଏତିକିବେଳେ ଆମ ସାହିତ୍ୟ ସଂସଦ ଓ ଶ୍ରୀ ରାମନଗର ଉନ୍ନୟନ ପରିଷଦ ତରଫରୁ ଆମ୍ଭେମାନେ ବଳ ଅନୁଯାୟୀ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲୁ । ମୁଁ ସ୍ୱୟଂ ସମାଜ ସମ୍ପାଦକଙ୍କ ଦାୟିତ୍ୱରେ ନିଜ ସାହାଯ୍ୟ ପଠାଇଲି ।

## ଆମ ଶତବାର୍ଷିକୀ ଉତ୍ସବ କଥା ପଚାରୁଛି କିଏ :

୨୦୦୦ ମସିହା ଫେବୃଆରୀ ମାସରେ ରାଜ୍ୟ ନିର୍ବାଚନ ହେଲା । ତେବେ କେନ୍ଦ୍ରରେ ଦୁଇ ଦୁଇଥର ନିର୍ବାଚନ, ଖୋର୍ଦ୍ଧା ଏନ.ଏ.ସି. ନିର୍ବାଚନ, ପଞ୍ଚାୟତ ନିର୍ବାଚନ, କଂଗ୍ରେସ ଦଳରେ ଅସ୍ଥିରତା ଓ ସର୍ବଶେଷରେ ରାଜ୍ୟରେ ବିଧାନସଭା ନିର୍ବାଚନ ହେତୁ ଖୋର୍ଦ୍ଧା ହାଇସ୍କୁଲର ଶତବାର୍ଷିକୀ ଉତ୍ସବ ପାଳନ ବହୁତ ପଛେଇଗଲା । ପ୍ରଥମେ ଜାନକୀବାବୁଙ୍କ ଉପରେ ଆମ୍ଭେମାନେ ନିର୍ଭର କରିଥିଲୁ । ମାତ୍ର କଂଗ୍ରେସ ମୁଖ୍ୟଙ୍କ ଅସ୍ଥିରତା ସମସ୍ତ କାର୍ଯ୍ୟକୁ ଭଣ୍ଡୁର କରି ଦେଉଥାଏ । ଜିତୁମିତ୍ରଙ୍କ ମନ ବି ଅସ୍ଥିର । ସେ ବି କଂଗ୍ରେସ ଉପରେ  ବିମନା ହୋଇଥାନ୍ତି । ସେ ଆମ୍ଭମାନଙ୍କୁ ହିମତ୍ ଦେଇପାରୁନଥାନ୍ତି । ଆମର କେବଳ ହେଡମାଷ୍ଟରଙ୍କ ଅଫିସ ଗୃହରେ ବୈଠକ ବସୁଥାଏ । ଚକ୍ଷୁକୁଟିବା ସାର ହୁଏ । ଜାନକୀବାବୁଙ୍କ ଉପରେ ସମସ୍ତଙ୍କର ଦୃଢ଼ ଆଶାଥିଲା । କିନ୍ତୁ ଘଟ ପରିବର୍ତ୍ତନ ହେଲା । ବାବୁ ଜିତୁ ମିତ୍ର ନିର୍ବାଚନରେ ବିଧାୟକ ହୋଇ ଆସିଲେ । ଟିକିଏ ଆଶା ସଞ୍ଚାର ହେଲା । ମାତ୍ର ବିଦ୍ୟାଳୟର ଶୁଭସମୟ ଆସିଲେ ସିନା ହେବ ? ମୁଁ ମନ ଦୁଃଖରେ କାଳ କାଟୁଥାଏ । ଜୀବନରେ ଉକ୍ତ ଉତ୍ସବ ଦେଖିବାପାଇଁ ମୋର ଇଚ୍ଛାଥାଏ ।

## ଦୁଇ ବିଶ୍ୱବିଦ୍ୟାଳୟ ସ୍ଥାପନ :

ଏଥିମଧ୍ୟରେ ଓଡ଼ିଶାରେ ଦୁଇଟି ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା — ପ୍ରଥମଟି ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ଓ ତା'ର କିଛି ମାସ ପରେ ଦ୍ୱିତୀୟଟି ଫକୀରମୋହନ ବିଶ୍ୱବିଦ୍ୟାଳୟ । ଉତ୍ତର-ଓଡ଼ିଶା ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ମେଜର କେ.ପି. ମହାନ୍ତି ଓ ଫକୀରମୋହନ ବିଶ୍ୱବିଦ୍ୟାଳୟର ପ୍ରଥମ କୁଳପତି ଡକ୍ଟର କରୁଣାସାଗର ବେହେରା ନିଯୁକ୍ତି ପାଇଲେ । ୧୯୪୩ ମସିହାରେ କଟକରେ ପ୍ରଥମ ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଷଷ୍ଠ ଦଶକରେ କୃଷି ବିଶ୍ୱବିଦ୍ୟାଳୟ ଭୁବନେଶ୍ୱରରେ ଏବଂ  ଅଶୀଦଶକରେ ପୁରୀ ସଂସ୍କୃତ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେଲା । ସେହି ଷଷ୍ଠ ଦଶକରେ ବ୍ରହ୍ମପୁରରେ ଓ ସମ୍ବଲପୁରରେ ମଧ୍ୟ ଦୁଇଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ହୋଇଥିଲା । ଗୋଟିଏ ବିଶ୍ୱବିଦ୍ୟାଳୟ ଥିଲାବେଳେ ଶିକ୍ଷାର ମାନ ଯେପରି ଥିଲା ଏବେ ତାହା ଦ୍ରୁତଗତିରେ ଅବକ୍ଷୟ ହେବାରେ ଲାଗିଛି ।

## ଦେଶରେ କଂଗ୍ରେସ ଅନୁଷ୍ଠାନର ପ୍ରଭାବ :

ଭାରତୀୟ ଜାତୀୟ କଂଗ୍ରେସ ଏକ ବିରାଟ ଜାତୀୟ ଅନୁଷ୍ଠାନ । ସଚ୍ଚୋଟ, ନୀତିବାନ, ତ୍ୟାଗୀ, ବୀରଗଣ ଏହି ବିଶାଳବୃକ୍ଷର ଶାଖାପ୍ରଶାଖା ଥିଲେ । ବର୍ତ୍ତମାନ ଅନୁଚିତ ଯୁବକମାନଙ୍କୁ ସଙ୍ଗରେ ନ ନେଲେ କୌଣସି ରାଜନୀତିକ ଦଳ ତିଷ୍ଠିପାରୁନାହିଁ । ଚରିତ୍ରଗତ ତ୍ରୁଟି ରହିଲେ କୌଣସି ପ୍ରାନ୍ତୀୟ ବା କେନ୍ଦ୍ରୀୟ ଦଳ ଉଧେଇ ପାରିବନାହିଁ । ଦଳ ଠିକ୍ ନ ରହିଲେ ତା' ହସ୍ତେ ସବୁଦିନ ଶାସନଭାର ରହିବ ନାହିଁ । ଦଳ ଭିତରେ ଦେଶରେ ଦୁର୍ନୀତି-ପରାୟଣ ବ୍ୟକ୍ତିଙ୍କ ସଂଖ୍ୟା ବଢ଼ିବାରେ ଲାଗିଛି । ଏକାରାତିକେ ସୁଲତାନ ହେବା ନିଶା ପ୍ରବଳତର ହେଉଛି । ଦେଶରେ ଅନ୍ୟାୟ ଅନୀତି ବଢ଼ିଗଲେ ପ୍ରାକୃତିକ ବିପର୍ଯ୍ୟୟ ଯେ ବୃଦ୍ଧିପାଏ ବିଜ୍ଞାନ ଯୁଗରେ କେହି ବିଶ୍ୱାସ କରୁନାହାନ୍ତି । କିନ୍ତୁ ଏହା ନିଶ୍ଚିତ ଯେ ଯେଉଁମାନେ ଭୟଙ୍କର ଦୁଷ୍କର୍ମ କରି ଖସିଯାଉଛନ୍ତି ବିଶ୍ୱନିୟନ୍ତାଙ୍କ କୋର୍ଟରେ ଖସିଯାଇ ପାରିବେନାହିଁ । ଦେଶବାସୀ ସୁମଣିଷ ହୁଅନ୍ତୁ, ଭାଷାପ୍ରେମୀ ହୁଅନ୍ତୁ, ଚରିତ୍ରବାନ ହୁଅନ୍ତୁ, ଦେଶପ୍ରେମୀ ହୁଅନ୍ତୁ, ଜାତିପ୍ରେମୀ ହୁଅନ୍ତୁ, ଏ ଦେଶ ନିଶ୍ଚୟ ସମୃଦ୍ଧି ପଥରେ ଧାବମାନ ହେବ । ଅର୍ଥ-ସର୍ବସ୍ୱ, ସ୍ୱାର୍ଥସର୍ବସ୍ୱ ହେଲେ ପରିଣତି ଭୟାବହ ହେବ । ତେଣୁ ହେ ଭାରତବାସୀ ! ସମସ୍ତଙ୍କ ମନ ଭିତରେ ମଣିଷପଣିଆ ଜାଗରିତ ହେଉ, ଏହାହିଁ କାମ୍ୟ ।

୨୦୦୦ ମସିହା ପ୍ରାରମ୍ଭକାଳରେ ରାଜ୍ୟ ନିର୍ବାଚନ ଶେଷ ହେଲା । ଏଥରକ କଂଗ୍ରେସ ଦଳର ମହାମହାରଥୀ ଟଳିପଡ଼ିଲେ । ଏପରିକି ମହାମହିମ ମୁଖ୍ୟମନ୍ତ୍ରୀ ମହୋଦୟ ଆଠଗଡ଼ ନିର୍ବାଚନରେ ୪୦୦୦୦ (ଚାଳିଶ ହଜାର) ଭୋଟ ବ୍ୟବଧାନରେ ଜଣେ ଯୁବକ ପ୍ରାର୍ଥୀଙ୍କଠାରୁ ପରାଜିତ ହେଲେ । କଂଗ୍ରେସ ଦଳ ୨୬ଟି ଆସନ ପାଇ ବିରୋଧୀଦଳରେ ସ୍ଥାନ ପାଇଲା । ବି.ଜେ.ପି. ଓ ବି.ଜେ.ଡି. ମେଣ୍ଟ ସଂଖ୍ୟାଗରିଷ୍ଠତା ହାସଲକରି ସରକାର ଗଢ଼ିଲେ । ଖୋରଧା ଏନ୍.ଏ.ସି. ନଗରପାଳ ବାବୁ ଜିତୁ ମିତ୍ର ସ୍ୱାଧୀନ ସଭ୍ୟ ଭାବେ ଜିତିକରି ଆସିଲେ । କାର୍ ଦୁର୍ଘଟଣା ତାଙ୍କୁ ଏ ଯୁଦ୍ଧରେ ଜିତେଇ ଆଣିଲା ବୋଲି ଲୋକେ ମତ ଦେଲେ । ଜିତୁବାବୁ ପରେ ପରେ ଶାସକ ଦଳ ବି.ଜେ.ଡି.ର ସମର୍ଥନ ଲାଭ କଲେ । ମାର୍ଚ୍ଚ ୫ ତାରିଖ ବିଜୁବାବୁଙ୍କ ଜନ୍ମଦିନ ନୂତନ ମନ୍ତ୍ରିମଣ୍ଡଳ ଗଠିତ ହେଲା । ବିଜୁବାବୁଙ୍କ ଲେଖକ ପୁତ୍ର ନବୀନ ବାବୁ ମୁଖ୍ୟମନ୍ତ୍ରୀଭାବେ ଶାସନ ଦଣ୍ଡ ଧରିଲେ ।

## ସେ ବର୍ଷ ଉତ୍କଳଦିବସ ପାଳନ :

ସେଦିନ ରାତ୍ରି ସାତ ଘଟିକା ସମୟରେ ଖୋର୍ଦ୍ଧା ଟାଉନ ହଲରେ ଜିଲ୍ଲାପାଳ ମଧୁସୂଦନ ପାଢ଼ୀଙ୍କ ପୌରୋହିତ୍ୟରେ ଉତ୍କଳ ଦିବସ ମହାସମାରୋହରେ ପାଳିତ ହେଲା । ମଞ୍ଚରେ ଥିଲେ ଜିଲ୍ଲାପରିଷଦ ଚେୟାରମ୍ୟାନ ବାବୁ ରାମଚନ୍ଦ୍ର ମହାପାତ୍ର, ସ୍ଥାନୀୟ ବିଧାୟକ

ଜିତୁବାବୁ, ଉପଜିଲ୍ଲାପାଳ ଶ୍ରୀ ଗୌତମ ନାୟକ । ମୁଖ୍ୟବକ୍ତା ମୁରଲୀଧର ପ୍ରଧାନ (ଅବସରପ୍ରାପ୍ତ ପ୍ରଧାନଶିକ୍ଷକ) । ମୁଖ୍ୟବକ୍ତାଙ୍କୁ ସବୁ ସଭାରେ ବହୁସମୟ ଦିଆଯାଏ । ହଲଟି ଲୋକାରଣ୍ୟ । ଦର୍ଶକମଣ୍ଡଳୀ ଶ୍ରୀ ପ୍ରଧାନଙ୍କର ଭାଷଣ ଶୁଣିବାକୁ ଉତ୍ସୁକ ନୟନରେ ଚାହିଁ ରହିଛନ୍ତି । ପ୍ରଧାନ ମହାଶୟ ଦୀର୍ଘ ଏକ ଘଣ୍ଟାରୁ ଊର୍ଦ୍ଧ୍ୱ ସମୟ ଯେତେବେଳେ ଦିବସର ଉତ୍ପତ୍ତି , ପୂର୍ବ ଇତିହାସ ଓ ଓଡ଼ିଶାବାସୀଙ୍କ କର୍ତ୍ତବ୍ୟ ସମ୍ବନ୍ଧେ ସୁଚିନ୍ତିତ, ସାରଗର୍ଭକ ଓ ସୁମିଷ୍ଟ ଭାଷଣଟିଏ ପ୍ରଧାନ କଲେ ଶ୍ରୋତୃବର୍ଗ ମୋହିତ ହୋଇଗଲେ । ଏତେ ବିଷୟ କିପରି ମନେରଖିଛନ୍ତି ବୋଲି ସ୍ୱୟଂ ଜିଲ୍ଲାପାଳ ମହୋଦୟ ପଚାରିଦେଲେ । କେହି କେହି ଫୁସଫାସ ହେଲେ ୮୧ ବର୍ଷ ବୟସରେ ବୁଢ଼ାଙ୍କର ସ୍ମରଣଶକ୍ତି ହ୍ରାସ ପାଇନାହିଁ ।

## ମୋର ଗୋସେବାର ପରିସମାପ୍ତ ଓ ପ୍ରଷ୍ଟେଟ୍ ଅପରେସନ୍ :

ମୋ ଗୃହରେ ଦୀର୍ଘ ପଚାଶ ବର୍ଷ ହେବ ଗୋପାଳନ ସୁରୁଖୁରରେ ଚାଲିଥିଲା । କିନ୍ତୁ ଏହି ମେ ମାସରେ ତାର ପରିସମାପ୍ତି ଘଟିଲା । ଦୁଧିଆଳି ଗାଈର ବିକ୍ରୟ ପରେ ପରେ ମୋର ଦୁଃସମୟ ଉପସ୍ଥିତ ହେଲା । ଜୁନ୍ ମାସରେ ପ୍ରସାବଜନିତ ରୋଗରେ ଶିକାର ହେଲି । କଟକର ଏକ ନର୍ସିଂହୋମରେ ପ୍ରଷ୍ଟେଟ ଅପରେସନ୍ ହେବାକୁ ଭର୍ତ୍ତିହେଲି । ମୋର ସୁଯୋଗ୍ୟ ପୁରାତନ ଅବସରପ୍ରାପ୍ତ ଛାତ୍ର, ଡେପୁଟି ଡାଇରେକ୍ଟର ବାବୁ ଡକ୍ଟର ରାମଚନ୍ଦ୍ର ଷଡ଼ଙ୍ଗୀ, ଏମ.ଏସ୍.ସି. ଏବଂ ତାଙ୍କ ଡାକ୍ତର ପୁତ୍ର ରାଜା ଓ ତା' ପରିବାର ବନ୍ଧୁପରିଜନ ମଧ୍ୟ ମୋତେ ଦେଖିବାକୁ ଗଲେ । ଦୁଇପୁତ୍ର ଶିବୁ ଓ ବୁଲୁ ନିଜ ଦେହରୁ ରକ୍ତଦାନ କଲେ । ଜୁନ ମାସ ଶେଷଆଡ଼କୁ ମୁଁ ନର୍ସିଂହୋମରୁ ବିଦାୟ ନେଲି । ତିନି ମାସ ବିଛଣା ବିଶ୍ରାମ ପରେ ସେପ୍ଟେମ୍ବର ଚବିଶରେ ବାହାରକୁ ଗଲି । ଏତିକିବେଳେ କଟକ ଆକାଶବାଣୀରୁ ଡାକରା ଆସିଲା ସେଠାକୁ ଯାଇ ଏକ ଦଶ ମିନିଟିଆ କଥନି ଦେବାପାଇଁ । ମାତ୍ର ଶାରୀରିକ ଅସୁସ୍ଥତା ଶୁଭକାମରେ ବ୍ୟାଘାତ ସୃଷ୍ଟିକଲା ।

## ପୁନଃ କାର୍ଯ୍ୟରେ ଯୋଗଦାନ :

ଖୋର୍ଦ୍ଧା ସାହିତ୍ୟ ସଂସଦ ସଭାରେ ପୁନଃ ଯୋଗଦେଲି । ହାର୍ଣ୍ଣିଆର ପ୍ରକୋପ ବୃଦ୍ଧି ପାଇଲା । ପୁନଃ ମନରେ ସେହି ମହତ ଚିନ୍ତା ଶତବାର୍ଷିକୀ ଉତ୍ସବ ପାଳନ କିପରି ହେବ, କେବେ ହେବ ?

## ଶତବାର୍ଷିକୀ ଉତ୍ସବ ପାଳନ ପୁନଃ ପ୍ରସ୍ତୁତି :

ଖୋରଧା ବକ୍ସି ଜଗବନ୍ଧୁ ଉଚ୍ଚ ବିଦ୍ୟାଳୟର ଶତବାର୍ଷିକୀ ଉତ୍ସବ ପାଳନ ପାଇଁ ପୁନଃ ପ୍ରସ୍ତୁତି ଆରମ୍ଭ ହେଲା । ମନରେ ଉତ୍ସୁକତା ଜାତହେଲା । ଯେଉଁମାନେ ସଭାରେ ଯୋଗଦେଉଥିଲେ ସେମାନଙ୍କୁ ପୁନଃପ୍ରେରଣା ଦେଲି । ଗୋଟିଏ ବଡ଼ ଅସୁବିଧାର ସମ୍ମୁଖୀନ

ହେଉଥାଏ । ପ୍ରସ୍ତୁତି ସଭାରେ ଯେତେଜଣ ଯୋଗଦେଉଥିଲେ ସେମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ଦଳର ଲୋକ ଥିଲେ । ଏଥିମଧ୍ୟରେ ଜିତୁବାବୁ କଂଗ୍ରେସ ବନ୍ଧୁମାନଙ୍କ ସହିତ ବିମନା ହୋଇଥାନ୍ତି । ସେ ଅନ୍ୟଦୃଷ୍ଟିରେ କଂଗ୍ରେସକୁ ଦେଖିଲାପରି ଜଣାପଡୁଥାଏ । ମୁଁ ହଠାତ୍ ଧରିପାରିଲି ନାହିଁ । ମୁଁ କହୁଥାଏ ଗୋଟାଏ ଦିନ ଧାର୍ଯ୍ୟକର । ମାତ୍ର ଜଣେ ପ୍ରଭାବଶାଳୀ ସଭ୍ୟ କହୁଥାନ୍ତି କାନ ନାହିଁ ନୋଳି କି ଆବଶ୍ୟକ ? ମୁଁ ଲଜ୍ଜିତ ହୋଇ ରହେ କିନ୍ତୁ ଦିନ ଠିକ୍ ନହେଲେ ତତ୍ପରତା ପ୍ରକାଶ ପାଏନାହିଁ । ମୋ ମନଟା ନିରାଶରେ ଭରିଯାଏ । ଗୋଳେଇ ଘାଣ୍ଟି ହୁଏ ।

## ଗୋଟିଏ ସୁଯୋଗ ମିଳିଲା :

ଏଇମିତି ଦିନ କଟୁ କଟୁ ଦିନେ ଶୁଣିଲି ଓଲସିହ ହାଇସ୍କୁଲ ପ୍ରଧାନଶିକ୍ଷକ ଶ୍ରୀ ରମେଶ ଚନ୍ଦ୍ର ପ୍ରଧାନ ସେ ସ୍କୁଲର ୭୫ତମ ଜୟନ୍ତୀ ଦିବସ ପାଳନ କରିବା ପାଇଁ ଆଗଭର ହେଉଛନ୍ତି ଏବଂ ଖୋରଧାର ବିଧାୟକ ବାବୁ ଜ୍ୟୋତିରିନ୍ଦ୍ର ନାଥ ମିତ୍ର ତାଙ୍କୁ ସବୁପ୍ରକାର ସାହାଯ୍ୟ କରୁଛନ୍ତି । ଏହାକୁ ଏକ ସୁଯୋଗ ମନେକରି ଖୋର୍ଦ୍ଧା ହାଇସ୍କୁଲ ଶତବାର୍ଷିକୀ ଉତ୍ସବ ପାଳନ ନିମନ୍ତେ ମୋ' ମନରେ ଏକ ଉନ୍ନତ ଭାବନା ପ୍ରବେଶ କଲା । ଚିନ୍ତାକଲି ଭୀମବାବୁ ତ ଏତେ ଲାଗି ଲାଗି ପାରିଲେନାହିଁ । ନିତ୍ୟାନନ୍ଦ ବାବୁଙ୍କ ଶୁଭସମୟ ଆସିଗଲା କି ? କାରଣ ବିଦ୍ୟାଳୟର ଶୁଭଗ୍ରହ ନ ଆସିଲେ ଶୁଭ ଅନୁଷ୍ଠାନ ହୋଇପାରିବ ନାହିଁ ବୋଲି ମୋର ଧାରଣା ।

ଶ୍ରୀ ଜ୍ୟୋତିରିନ୍ଦ୍ର ନାଥ ମିତ୍ର ଓରେଫ ଜିତୁବାବୁ ମୋର ଛାତ୍ର ବୋଲି ତାଙ୍କ ଖୋର୍ଦ୍ଧା ବାସଭବନରେ ଉପସ୍ଥିତ ହୋଇ ତା' ପାଖରେ ଶତବାର୍ଷିକୀ ଉତ୍ସବ କଥା ବଖାଣିଲି । ମୁଁ ତାଙ୍କୁ ଉତ୍ସାହବାଣୀ ଶୁଣାଇଲି । ମୁଁ କହିଲି, ''ବାବୁ ଜିତୁ, ଶୁଣ । ଏ ତମର ନିଜ ସ୍କୁଲ । ଏଇ ଜାଗାରେ ପାଠପଢ଼ି ତମେ ମଣିଷ ହୋଇଛ । ସ୍କୁଲର ଗୌରବ ତମର ଗୌରବ । ତୁମେ ବି ମୂଳରୁ ପାଞ୍ଚ ବର୍ଷ ହେଲା ଏଥିରେ ସଂପୃକ୍ତ ଅଛ ଏବଂ ମୋତେ ନେଇ ସର୍ବପ୍ରଥମେ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କ ପାଖକୁ ତୁମେ ଯାଇଥିଲ । ଯେତେବେଳେ କେହି ଏ କଥା ଚିନ୍ତା କରିନଥିଲେ ସେତେବେଳେ ତୁମେ ଚିନ୍ତା କରିଛ । ମୁଁ ତୁମ ପାଇଁ ଗର୍ବିତ । ତୁମେ ଏ ଅନୁଷ୍ଠାନର ସୁଯୋଗ୍ୟ ଛାତ୍ର । ତୁମେ ବି ଏହି ଉତ୍ସବ ଆୟୋଜନର ମୁଖ୍ୟ ଅଂଶ ଗ୍ରହଣ କରିଛି । ତୁମେ ସବୁ ପ୍ରସ୍ତୁତି ସଭାରେ ମୋ ସଙ୍ଗେ ଯାଇ ବସୁଛ, ଅଥଚ ଉତ୍ସବ ହୋଇ ପାରୁନାହିଁ ? ଖୋରଧା ବୀରଭୂମି, ସଂଗ୍ରାମୀ ଭୂମି ତୁମେ ସେହି ମହାନ୍ ମାଟିର ଦାୟାଦ । ଯେ କୌଣସି ପ୍ରକାରେ ଏହି ଉତ୍ସବଟିକୁ ପାଳନ କରିଦେଲେ ତୁମର ନାମ କାଳକାଳକୁ ରହିବ ।'' ବାବୁ ଜିତୁ ମୁଁ ଶୁଣିଛି, ''ତୁମେ ଓଲସିଂହ ପାଇଁ ଏତେ ଲାଗିପଡ଼ିଛ ଅଥଚ ନିଜ ଜନ୍ମସ୍ଥାନ ଓ ନିଜ ବିଦ୍ୟାଳୟ ପାଇଁ ଲାଗିପାରିବ ନାହିଁ ? ନିଶ୍ଚୟ ପାରିବ । ତୁମର ବିନା

ସାହାଯ୍ୟରେ ଏହା ପାଳିତ ହୋଇପାରିବ ନାହିଁ । ଏ ବର୍ଷ ଯେକୌଣସି ପ୍ରକାରରେ ପାଳନ କରିବା ।'' ମୋର ଏପରି ଉତ୍ସାହ ବାଣୀରେ ପୁତ୍ରକଷ ଜିତୁ ଏତେ ପ୍ରଭାବିତ ହେଲେ ଯେ ଏତିକିମାତ୍ର ମୋତେ କହିଲେ ''ହଁ ସାର୍ ! ନିଶ୍ଚୟ କରିବା । ଆପଣ ଦମ୍ଭହୋଇ ବସନ୍ତୁ ଏବଂ ମୋତେ ପ୍ରେରଣା ଦିଅନ୍ତୁ ।'' ସେଦିନ ସେତିକି । ସୁସମୟକୁ ମୁଁ ଅପେକ୍ଷା କରିଥାଏ । ସେଦିନ ସିନା ପ୍ରେରଣା ଦେଇ ଆସିଲି ମାତ୍ର ପାଳନର କି ନିଶ୍ଚୟତା ଥିଲା ଯେ ଅପେକ୍ଷା କରିବି ? ସମୟ ତ ଗଡ଼ି ଗଡ଼ି ଯାଉଛି, ଶୁଭସମୟକୁ ଅପେକ୍ଷାରେ ରହିଲି । ପୁରାତନ ଛାତ୍ର କେତେଜଣଙ୍କ ସହିତ କେତେ ଥର ଚାନ୍ଦା ଆଦାୟ କରିବାକୁ ଯାଇଛି, କେତେ ବର୍ଷାରେ ଭିଜିଛି, କେତେ ବଣବୁଦା ଦେଇ ଯାଇଛି । କେତେକ ଅନ୍ୟମାନଙ୍କ ଗହଣରେ ଏ ବୃଦ୍ଧକୁ ଦେଖି କେତେଥର ଠୋକର ଦେଇଛନ୍ତି । ଯେପରି ଜିଲ୍ଲାଗଠନ ଆନ୍ଦୋଳନବେଳେ ଦେଇଥିଲେ । ସେସବୁ କଥା ଦେହକୁ ନେଲେ ଆମେ ଅଗ୍ରସର ହୋଇପାରିବା ନାହିଁ । ଜିତୁବାବୁଙ୍କୁ ପଛରେ ଅନ୍ୟ ବନ୍ଧୁମାନେ କହିଥିବେ ନିଶ୍ଚୟ ।

## ସୁଦିନ ଆସିଲା :

ଦିନେ ମନଦୁଃଖରେ ଦାଣ୍ଡ ଦୁଆରେ ବସି ଖବରକାଗଜରେ ଆଖି ବୁଲାଉଛି । ସଦା ଆଗ୍ରହୀ ଗୋପାଳକୃଷ୍ଣ ଆସି କହିଲା, ''ସାର୍, ଆଜି ବି.ଜେ.ବି. ହାଇସ୍କୁଲ ହେଡମାଷ୍ଟରଙ୍କ ପ୍ରକୋଷ୍ଠରେ ଶତବାର୍ଷିକୀ ଉତ୍ସବର ଏକ ସଭା ହେବ । ଆପଣ ଚାରିଟାରେ ଯୋଗଦେବେ ।'' ଶତବାର୍ଷିକୀ ସଭା କଥା ଶୁଣି ଶୁଣି ମୁଁ ଚିଟା ହୋଇପଡ଼ିଥିଲି । ଏଥରକ ବିରକ୍ତି ଭାବ ଦେଖାଇଲି । ମାତ୍ର ଠିକ୍ ସମୟରେ ସେଠାରେ ପ୍ରବେଶ କଲି । ସେଦିନ ଗୁରୁବାର ନଭେମ୍ବର ମାସ ୨୩ ତାରିଖ ୨୦୦୦ ମସିହା । ସର୍ବଶ୍ରୀ ଅଲେଖ ଦାସ, ବାସୁଦେବ ଦୋରା, ହରେକୃଷ୍ଣ ନନ୍ଦ, ମଦନ ମୋହନ ରାମ (ବସ୍ତ୍ର ବ୍ୟବସାୟୀ), ସରୋଜ ସୁନ୍ଦର ପଟ୍ଟନାୟକ, ଗୋପାଳକୃଷ୍ଣ ଦାସ, ପ୍ରଜେଶନାଥ ବାଗ୍‌ଚୀ, ବଟକୃଷ୍ଣ ପରିଡ଼ା, ଗିରୀଶ ଚନ୍ଦ୍ର ପଟ୍ଟନାୟକ, ବୈକୁଣ୍ଠନାଥ ରାଜଗୁରୁ, ଜିତୁବାବୁ ଓ ବାନୁ ପ୍ରଭୃତି ତାଙ୍କର ସହଯୋଗୀଗଣ, ପ୍ରଧାନ ଶିକ୍ଷକ ଓ ତାଙ୍କର ସହକାରୀ ଗଙ୍ଗାଧର ପୃଷ୍ଟି ସଭାରେ ଉପସ୍ଥିତ ଥିଲେ । ବହୁକଥା ଆଲୋଚନା ହେଲା । ରାତି ବି ହେଲା । ଜନୈକ ବରିଷ୍ଠ କର୍ମୀ ବଡ଼ ଜୋରରେ କହିଲେ, ''କିପରି ହେବ ? ପଇସା କାହିଁ ?'' ସବୁ ସଭାରେ ସେ ଏହି କଥା କହି ମୂଳରୁ ଭଣ୍ଡୁର କରିଦିଅନ୍ତି । ମୁଁ ତ ବିରକ୍ତ ହୋଇପଡ଼ିଥାଏ । ସେଦିନ ମୁଁ ଖୁବ୍ ଦୃଢ଼ସ୍ୱରରେ କହିଲି, ''ନିଶ୍ଚୟ ପାଳନ କରିବା ।'' ପ୍ରଶ୍ନ ଆସିଲା, ''ଧନ କାହିଁ ?'' ''ଆହେ ଏତେ ଧନ ତ ଆଦାୟ ହେଲା ଏବେ ଏଇଠୁ ଉଠ, ଚାଲ ପଇସା ଆଦାୟ କରିବା ଆଉ ପଛ ଘୁଞ୍ଚା ଦିଅନାହିଁ ।'' ସେତେବେଳେ ମୋତେ କେତେଜଣ ସମର୍ଥନ କଲେ । କେତେଜଣ କହିଲେ ''ଯଦି କରିବା ଏଇ ୨୦୦୦ ମସିହା ଶେଷ ସୁଦ୍ଧା କରିବା । ଆଉ

ପାଖକୁ ଡେଇଁବା ନାହିଁ ।'' ସମସ୍ତେ ସହମତ ପ୍ରଦାନ କଲେ । ବିଧାୟକ ଝିଟୁବାବୁ ବି ରାଜି ହୋଇଗଲେ ।

## ଶୁଭ ସମୟ ଆଗତପ୍ରାୟ :

ଆୟୋଜନରେ ସେହିଦିନଠାରୁ ସମସ୍ତେ ଲାଗିପଡ଼ିଲେ । ଡିସେମ୍ବର ୨୮, ୨୯, ୩୦ ତାରିଖରେ ଉତ୍ସବ ପାଳନ କରିବା ପାଇଁ ନିଷ୍ପତ୍ତି ନିଆଗଲା । ତପୂର ସେହି ନଭେମ୍ବର ମାସ ୩୦ ତାରିଖରେ ପୁନଃ ଅଧିବେଶନ ବସିଲା । ଡିସେମ୍ବର ମାସ ୩ ତାରିଖ ରବିବାର ଦିନ ହାଇସ୍କୁଲ ବଡ଼ ହଲରେ ଯେଉଁ ସଭା ବସିଲା ସେହିସଭାରେ ପୁରାତନ ଛାତ୍ର ବାବୁ ରାଜକିଶୋର ରାମ ସଭାପତିତ୍ୱ କରିଥିଲେ ଏବଂ ଜିଲ୍ଲାପାଳ ଶ୍ରୀ ମଧୁସୂଦନ ପାଢ଼ୀ ଯୋଗଦେଇ ସମସ୍ତ ପ୍ରକାର ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଆମ୍ଭମାନଙ୍କର ଆଶା ବଳବତ୍ତର ହେଲା । ସେଦିନ କିଏ କେଉଁ କାର୍ଯ୍ୟ କରିବେ ପୁରାତନ ଛାତ୍ରମାନଙ୍କ ମଧ୍ୟରେ ବାଣ୍ଟି ଦିଆଗଲା । ନିକଟରେ ଅବସର ନେଇଥିବା ଭୀମବାବୁ ଓ ପୁରାତନ ଛାତ୍ରଗଣ ଉତ୍ସାହ ସହକାରେ ଲାଗିପଡ଼ିଲେ । ପୁରାତନ ଛାତ୍ରଗଣ ବାବୁ ବିଧାନ ଚନ୍ଦ୍ର ମହାନ୍ତିଙ୍କ ନିର୍ଦ୍ଦେଶନାରେ ବକ୍ସି ଜଗବନ୍ଧୁ ନାଟକ ମଞ୍ଚସ୍ଥ କରିବେ ବୋଲି ନିଷ୍ପତ୍ତି ନିଆଗଲା । ବିଦ୍ୟାଳୟର ପୂର୍ବଦିଗରୁ ସଂଲଗ୍ନ ଏକ ପ୍ରକୋଷ୍ଠରେ ଶତବାର୍ଷିକ କାର୍ଯ୍ୟ ପରିଚାଳନା କରିବା ପାଇଁ ଫୋନ ସଂଯୋଗ କରାଗଲା । ବାବୁ ସରୋଜ ସୁନ୍ଦର ପଟ୍ଟନାୟକ ଏହି ହଲ ଦାୟିତ୍ୱରେ ଅହୋରାତ୍ର ରହିଲେ । ଚାନ୍ଦା ଆଦାୟ ମାନ୍ଦା ପଡ଼ିଯାଇଥିଲା । ବାବୁ ବାସୁଦେବ ଦୋରା କୋଷାଧ୍ୟକ୍ଷ ଦାୟିତ୍ୱ ବହନ କରିଥିଲେ । ସମୟ ଖୁବ୍ ସ୍ୱଳ୍ପ । ଯୁଦ୍ଧଭିତ୍ତିରେ କାମ ଚାଲିଲା । ଆମ୍ଭେମାନେ ଭୁବନେଶ୍ୱର ଯାତ୍ରାକରି ଅତିଥିମାନଙ୍କ ସହ ଯୋଗଯୋଗ କଲୁ । ପୁରାତନଛାତ୍ର ବାବୁ ଶ୍ରୀ ଅଲେଖ ଦାଶ କଟକ ଯାତ୍ରାକରି ଅତିଥିମାନଙ୍କୁ ନିମନ୍ତ୍ରଣ କରି ଆସିଲେ । ଅତିଥିମାନଙ୍କ ସହିତ ଯୋଗାଯୋଗ କରିବାପାଇଁ ବାବୁ ଗୋପାଳକୃଷ୍ଣ ଦାସ ଅଗ୍ରଣୀ ଭୂମିକା ଗ୍ରହଣ କଲେ । ଝିଟୁବାବୁଙ୍କ ଅତିଥି ଯୋଗାଯୋଗ ଅତୀବ ପ୍ରଶଂସନୀୟ । ଆମ୍ଭେମାନେ ଝିଟୁବାବୁଙ୍କ ଉପରେ ପୂରା ନିର୍ଭର କରି ରହିଥିଲୁ । ଚାନ୍ଦା ଆଦାୟ କରିବାପାଇଁ ସେ ଉପଯୁକ୍ତ ପୁରାତନ ଛାତ୍ରମାନଙ୍କୁ ବାଛିଦେଲେ । ସେଥର ଚାନ୍ଦା ଆଦାୟରେ ସର୍ବଶ୍ରୀ ଗିରୀଶ ଚନ୍ଦ୍ର ପଟ୍ଟନାୟକ, ଜୟନ୍ତ ସାହୁ, ବାସୁ ଦୋରା, ରବୀନ୍ଦ୍ରକୁମାର, ଚଣ୍ଡୀଚରଣ, ରାଜକିଶୋର ସାହୁ, କାଶୀନାଥ ପ୍ରଭୃତି ଅନେକେ ଲାଗିପଡ଼ିଲେ । ବହୁଲୋକ ସାହାଯ୍ୟ କଲେ । ସମସ୍ତଙ୍କର ନାମ ଦେବା ଏଠାରେ ସମ୍ଭବ ହେଉନାହିଁ । ତେବେ ସର୍ବଶ୍ରୀ ପ୍ରଫୁଲ୍ଲ କୁମାର ଦାସ, ନାରାୟଣ ଦାସ, ଖୋର୍ଦ୍ଧା ଫୁଟବଲ ଖେଳ ସେକ୍ରେଟାରୀ ବିଜୟ କୁମାର ମହାନ୍ତି, ଉଦୟନାଥ ପଟ୍ଟନାୟକ, ଗୋକୁଳ ମୋହନ ସିଂହସାମନ୍ତ, ଦେବୀ ପ୍ରସାଦ ମଜୁମଦାର, ବାବୁ ପଟୁ, ସପନ ମିତ୍ର, ଝିଟୁ ମିତ୍ରଙ୍କ ସହଯୋଗୀଗଣ ପ୍ରଭୃତି ସେହିଦିନଠାରୁ

କାର୍ଯ୍ୟବ୍ୟସ୍ତ ରହିଲେ । ସରୋଜ ସୁନ୍ଦରର କାମ ସର୍ବାଗ୍ରେ ରହିଲା । ଶୁଣିଲି କଲେଜ ଅଧକ୍ଷ ଶ୍ରୀକାନ୍ତ ମିଶ୍ର ଆଖିଦୃଶିଆ ଦାନକରି ଆମ୍ଭମାନଙ୍କର ପ୍ରିୟ ହେଲେ । ମେଜର କ୍ଷୀରୋଦ ବାବୁ ଓ ଦେବାଶିଷବାବୁ ମଧ ସହଯୋଗ କଲେ । ପୁରାତନଛାତ୍ର ବାବୁ ପୁଣ୍ୟରଞ୍ଜନ ଓ ସୌମ୍ୟକାନ୍ତ ଛୋଟରାୟ ଆଖିଦୃଶିଆ ସାହାଯ୍ୟ ଦେଲେ ବୋଲି ଶୁଣିଲି । ଏତଦ୍‌ବ୍ୟତୀତ ଆମେରିକାରେ ବାସ କରୁଥିବା ଶରଧାପୁର ଗ୍ରାମର ଛାତ୍ର ମିଷ୍ଟର ଖାନ୍ ଓ ଖୋରଧା ଡାକ୍ତରଖାନା ସନ୍ନିକଟ ସାହିର ବାବୁ ସନ୍ତୋଷ କୁମାର ମହାନ୍ତି ମୋଟା ଚାନ୍ଦା ଦେବାର ମୋ କାନକୁ ଆସିଲା । ପୁନଃ ଖୋରଧା ହାଇସ୍କୁଲର ପୁରାତନ ଛାତ୍ର ବରିଷ୍ଠ ଆଡଭୋକେଟ ଶ୍ରୀ ରବିନାରାୟଣ ବର୍ମାଙ୍କ ଜ୍ୟେଷ୍ଠଭ୍ରାତା ପୁରାତନ ଛାତ୍ର ଡକ୍ଟର ଆଦିତ୍ୟ ନାରାୟଣ ବର୍ମା ଆମେରିକାରୁ ଆସି ଓ ତାଙ୍କର ସହଧର୍ମିଣୀ, କନିଷ୍ଠ ଭ୍ରାତା ମିହିର ନାରାୟଣ ଉକ୍ତ ଉତ୍ସବ ପାଇଁ ମୋଟାଅଙ୍କର ଚାନ୍ଦା ପ୍ରଦାନ କଲେ । ଏତଦବ୍ୟତୀତ  ବାବୁ ଗିରୀଶ ଚନ୍ଦ୍ର ଖୋରଧା ସହରର ବହୁ କର୍ମଚାରୀଙ୍କଠାରୁ ଚାନ୍ଦା ଆଦାୟ କରିଥିଲେ ବୋଲି ଶୁଣିଲି । ଫଜୁଲବାବୁଙ୍କ ପୁଅ କିଛି ଦେଲେବୋଲି ଶୁଣିଲି । ଭୁଲକ୍ରମେ ମୁଁ ଦୁଇଥର ଚାନ୍ଦା ଦେଲି ।

ଡିସେମ୍ବର ୨୪ତାରିଖ ରବିବାର ଦିନ ସେହି ପ୍ରକୋଷ୍ଠରେ ପୁରାତନ ଛାତ୍ରମାନଙ୍କୁ ନେଇ ଏକ ବଡ଼ଧରଣର ସଭା ଅନୁଷ୍ଠିତ ହେଲା । ଛିତୁବାବୁ, ରବିବାବୁ, ଅରବିନ୍ଦବାବୁ, ଜିଲ୍ଲାପାଳ ପ୍ରଭୃତି ଉପସ୍ଥିତ ଥିଲେ । ଅତିଥିମାନଙ୍କ ସମ୍ବନ୍ଧେ ବହୁ ନିଷ୍ପତ୍ତି ନିଆଗଲା । ସେ ନିଷ୍ପତ୍ତିରେ ମୁଁ ମୁଖ୍ୟଭାଗ ନେଇଥିଲି । ସମସ୍ତେ ମୋ ନିଷ୍ପତ୍ତିକୁ ସମ୍ମାନ ଦେଲେ । ସର୍ବଶ୍ରୀ ବୈକୁଣ୍ଠନାଥ ରାଜଗୁରୁ, ଅଲେଖ ଦାଶ ଓ ଗୋକୁଳବାବୁ ପୁରସ୍କାର ଦାୟିତ୍ୱରେ ରହିଲେ । ଶେଷ ଦଶ ଦିନ ଧମାଧମ କାମ ଚାଲିଥିଲା । ଶୀତର ପ୍ରକୋପ ବଢ଼ି ବଢ଼ି ଚାଲିଥାଏ । ଅନେକ ଆସୁଥିଲେ । ମୁଁ ପ୍ରତିଦିନ ଭଗ୍ନସ୍ୱାସ୍ଥ୍ୟ ସତ୍ତ୍ୱେ ସକାଳ ଓ ସନ୍ଧ୍ୟା ସାତଟାରେ ଆସି କାର୍ଯ୍ୟରତ ନିରୁ, ଦେବୀପ୍ରସାଦ, ପ୍ରଜ୍ଞେଶ ପ୍ରଭୃତି ପୁରାତନ ଛାତ୍ରମାନଙ୍କୁ ଉତ୍ସାହିତ କରୁଥିଲି । ଏଥିମଧ୍ୟରେ ବିଦ୍ୟାଳୟ ପରିସର ମଧ୍ୟରେ ପୂର୍ବରୁ ପ୍ରସ୍ତୁତ ହୋଇଥିବା ଓଡ଼ିଶା ପ୍ରାକୃତିକ ମାନଚିତ୍ର ବାବୁ ହରିକୃଷ୍ଣ ନନ୍ଦ ଓ ଭାରତ ପ୍ରାକୃତିକ ମାନଚିତ୍ର ବାବୁ ପ୍ରଜ୍ଞେଶନାଥ ବାଗ୍‌ଚୀଙ୍କ ଦ୍ୱାରା ପରିମାର୍ଜିତ ଓ ପରିଶୋଭିତ ହୋଇ ବିଦ୍ୟାଳୟ ପରିସରକୁ ସୁନ୍ଦର ଓ ଆକର୍ଷଣୀୟ କଲା ।

ବଟବାବୁ ପ୍ରତିଦିନ ଆସୁଥିଲେ । ବିଦ୍ୟାଳୟର ବିରାଟ କ୍ରୀଡ଼ାପ୍ରାନ୍ତରରେ ଅସ୍ଥାୟୀ ପ୍ରେକ୍ଷାଳୟର ସୁବିଧା କରାଗଲା । ଜିଲ୍ଲାପାଳ ବାବୁ ମଧୁସୂଦନ ପାଢ଼ୀ, ଆଇ.ଏ.ଏସ.ଙ୍କ ନିର୍ଦ୍ଦେଶରେ କେତେଗୁଡ଼ିଏ ଷ୍ଟଲ ଖୋଲାଗଲା । ଉତ୍ସବ ତିନିଦିନଯାକ ମୁଁ ଦୁଇଓଳି ସେଠାକୁ ଯାତ୍ରା କରୁଥିଲି ଏବଂ ପୂର୍ଣ୍ଣ ସହଯୋଗ କରୁଥିଲି ।

## ଉତ୍ସବ ପାଳନ ଦିବସଗୁଡିକର ଅନୁଭୂତି :

ଉତ୍ସବଟି ପାଳନ ହେବ ହେବ ବୋଲି ହୋଇପାରୁନଥିଲା । ଯେତେବେଳେ ନିଶ୍ଚିତ ପାଳିତ ହେବବୋଲି ପ୍ରତୀୟମାନ ହେଲା ସମସ୍ତଙ୍କ ମନରେ ଆନନ୍ଦ ପୂରିଉଠିଲା । ମୁଁ ଥିଲି ମୂଳ ଉଦ୍ୟୋକ୍ତା, ମୋ ମନର ଭାବ ସମସ୍ତେ ଜାଣିପାରୁଥିବେ । ତେଣୁ ୨୮ ତାରିଖ ଦିନ ପୂର୍ବାହ୍ନ ୮ଘଟିକା ସମୟେ ସ୍ନାନ ସମାପନ ସାରି ସଫା ଧୋତିକୁର୍ତ୍ତା ପରିଧାନ କରି ଠିକ୍ ୯ଘଟିକା ସମୟରେ ବିଦ୍ୟାଳୟ ପ୍ରାଙ୍ଗଣରେ ପଦାର୍ପଣ କଲି । ଜନସମାଗମ ବଢୁଥିଲା । ଉତ୍ସବର ଶୁଭାରମ୍ଭ କରିବା ପାଇଁ ଆୟୋଜନ ଚାଲିଲା । ଉତ୍ସବର କେନ୍ଦ୍ରବିନ୍ଦୁ ଖୋର୍ଦ୍ଧାର ବିଧାୟକ ଜିତୁବାବୁ, ବରିଷ୍ଠ ନାଗରିକ ବଟବାବୁ ଓ ୩ ଜଣ ବୟସ୍କ ପୁରାତନ ଛାତ୍ର ଖୋଲାଜିପ୍ ମଧ୍ୟରେ ନିଜନିଜ ସ୍ଥାନ ବାଛିନେଲେ । ଜିତୁବାବୁ ଓ ବିଜୟ କୁମାର ମହାନ୍ତି ମୋତେ ଗୋଟିଏ ଫୁଲମାଳ ପିନ୍ଧାଇଦେଲେ । ଏକ ଖୋଲାଜିପ୍ ଉପରେ ଏକ ସୁଦୃଶ୍ୟ ସ୍ଥାନରେ ବସାଇଲେ ଓ ମୋ ଡାହାଣ ପାର୍ଶ୍ୱରେ ପୁରାତନଛାତ୍ର ପ୍ରହରାଜ ଫୁଟବଲ ଖେଳର ସେକ୍ରେଟାରୀ ବାବୁ ବିଜୟ କୁମାର ଉପବେଶନ କରି ମାଇକ ଧରି ଶତବାର୍ଷିକୀ ଉତ୍ସବ ପାଳନ ଉପଲକ୍ଷେ ସ୍ଲୋଗାନଦେଇ ସହର ପରିକ୍ରମା କଲେ । ଠିକ୍ ସାଢ଼େ ୧୦ଟା ସମୟରେ ସହର ପରିକ୍ରମାରୁ ଫେରି ବିଦ୍ୟାଳୟ ପରିସରରେ ପ୍ରବେଶ କଲେ । ସେଦିନ ପୁରାତନ ଛାତ୍ରମାନେ ମୋ ପ୍ରତି ଯେଉଁ ଶ୍ରଦ୍ଧା ସମ୍ମାନ ପ୍ରଦର୍ଶନ କଲେ ତାହା ମୋ ମନରେ ସବୁଦିନ ପାଇଁ ଲାଖିରହିଲା । ମୋ ମାନସମ୍ମାନ ବୃଦ୍ଧିପ୍ରାପ୍ତ ହେଲା ।

ଉତ୍ସବ ତିନିଦିନପାଇଁ ମୁଁ ଦୁଇଓଳି ସେଠାକୁ ଯାଇ ଉତ୍ସବ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରୁଥାଏ । ୨୮ତାରିଖ ଦିନ ପୂର୍ବାହ୍ନରେ ବିଦ୍ୟାଳୟ ପ୍ରକୋଷ୍ଠଗୁଡ଼ିକରେ ବିଜ୍ଞାନ ମେଳା ଅନୁଷ୍ଠିତ ହୋଇଥିଲା । ସର୍କଲ ସ୍କୁଲ ଇନସ୍‌ପେକ୍ଟର, ଜିଲ୍ଲାପାଳ ଓ ବିଧାୟକ ମେଳା ପରିଦର୍ଶନ କରି ସଂପୃକ୍ତ ଶିକ୍ଷକ ଓ ଛାତ୍ରମାନଙ୍କୁ ଅଭିନନ୍ଦନ ଜଣାଇଲେ । ସେଦିନ ଅପରାହ୍ନରେ ମାନ୍ୟବର ରାଜସ୍ୱ ମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଆଗମନ କରି ପ୍ରଖ୍ୟାତ ଯୋଦ୍ଧା ଖୋର୍ଦ୍ଧାପାଇକ ବିଦ୍ରୋହର କର୍ଣ୍ଣଧାର ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ କଲେ ଓ ସାନ୍ଧ୍ୟ ଅଧିବେଶନରେ କେନ୍ଦ୍ର ଇସ୍ପାତ ମନ୍ତ୍ରୀ ମାନ୍ୟବର ବ୍ରଜକିଶୋର ତ୍ରିପାଠୀ ଉଦ୍‌ବୋଧନ ଦେଲେ । ସେଦିନ ପୁରାତନ ପ୍ରଧାନ ଶିକ୍ଷକମାନଙ୍କୁ ସମ୍ବର୍ଦ୍ଧନା ଦିଆଗଲା ।

ଦ୍ୱିତୀୟ ଦିନ ପୂର୍ବାହ୍ନ ଏଗାରଟା ବେଳେ ବିଶିଷ୍ଟ ପୁରାତନ ଛାତ୍ରମାନଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ଏକ ଦଶନ୍ଧିରୁ ଉର୍ଦ୍ଧ୍ୱକାଳ ରାଜ୍ୟ ଶାସନର ଲଗାମ ଧାରଣ କରିଥିବା ଜ୍ଞାନୀ, ଗୁଣୀ ଓ ସାରସ୍ୱତ ସାଧକ ପ୍ରାକ୍ତନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ, ଜ୍ଞାନପୀଠ ପୁରସ୍କାର ଲାଭ କରିଥିବା ପ୍ରଖ୍ୟାତ କବି ଓ ପୁରାତନ ଛାତ୍ର ଶ୍ରୀଯୁକ୍ତ ସଚ୍ଚିଦାନନ୍ଦ

ରାଉତରାୟ, ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ସାରସ୍ୱତ ସାଧକ ଡକ୍ଟର ବୈଦ୍ୟନାଥ ମିଶ୍ର, ପ୍ରଖ୍ୟାତ ଐତିହାସିକ ଓ ପୁରାତନ ଛାତ୍ର ଡକ୍ଟର ଭବାନୀ ଚରଣ ରାୟ, ସମାଜସେବୀ ପୁରାତନ ଛାତ୍ରୀ ଡାକ୍ତର ଯୋଗମାୟା ପଟ୍ଟନାୟକ, ପୂର୍ବତନ ଛାତ୍ର ଡାକ୍ତର ବେଣୁଧର ବଳୀୟାରସିଂହଙ୍କୁ ମାନପତ୍ର ଓ ଉପଢୌକନ ପ୍ରଦାନ କରାଗଲା । କବି ସଚ୍ଚିରାଉତ ରାୟ ପତ୍ରିକା 'ଶତାବ୍ଦୀ ଅବକାଶ' ଉନ୍ମୋଚନ କଲେ । ସାନ୍ଧ୍ୟ ଅଧିବେଶନରେ ରାଜ୍ୟପାଳ ମାନ୍ୟବର ଏମ୍. ଏମ୍. ରାଜେନ୍ଦ୍ରନ ବିଦ୍ୟାଳୟ ପ୍ରସ୍ତୁତ "First day cover" ଉନ୍ମୋଚନ କଲେ । ତାଙ୍କ ସହଧର୍ମିଣୀଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ଶିକ୍ଷାସଚିବ ଶ୍ରୀଯୁକ୍ତ ତ୍ରିପାଠୀ, ଆଇ.ଏ.ଏସ୍. ଯୋଗଦେଇଥିଲେ ଏବଂ ସାଂସଦ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ ସଭାପତିତ୍ୱ କରିଥିଲେ । ୩ୟ ଦିନ ପୂର୍ବାହ୍ଣ ଦଶଘଟିକା ସମୟରେ ବିଦ୍ୟାଳୟର ପୁରସ୍କାର ବିତରଣ ସଭା ଅନୁଷ୍ଠିତ ହୋଇଥିଲା । ସର୍କଲ ଇନ୍‌ସପେକ୍ଟର ବିଧାୟକ ଓ ପୁରାତନ ପ୍ରଧାନ ଶିକ୍ଷକମାନେ ଯୋଗଦେଇ କୃତୀ ଛାତ୍ରମାନଙ୍କୁ ପୁରସ୍କାର ପ୍ରଦାନ କରିଥିଲେ ।

ଅପରାହ୍ଣ ଅଧିବେଶନ ରାଜ୍ୟର ନବନିଯୁକ୍ତ ମୁଖ୍ୟମନ୍ତ୍ରୀ ମାନ୍ୟବର ନବୀନ ପଟ୍ଟନାୟକଙ୍କ ଦ୍ୱାରା ଶତବାର୍ଷିକୀ ସ୍ମାରକୀ ଭବନ ଉଦ୍‌ଘାଟିତ ହୋଇଥିଲା । ଅପରାହ୍ଣ ପାଞ୍ଚ ଘଟିକା ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ଖୋର୍ଦ୍ଧା ପୌରାଞ୍ଚଳ ପ୍ରାରମ୍ଭରୁ ସମ୍ମିଳନୀ ମଣ୍ଡପ ପର୍ଯ୍ୟନ୍ତ ଖୋରଧାର ପାରମ୍ପରିକ ପାଇକ ଆଖଡ଼ାଦଳ ଗହଣରେ ଏକ ବର୍ଣ୍ଣାଢ଼୍ୟ ଶୋଭାଯାତ୍ରାରେ ଅଣାଯାଇଥିଲା । ଶହ ଶହ ଲୋକ ଏଥିରେ ଅଂଶଗ୍ରହଣ କରି ପରିବେଶକୁ ଆନନ୍ଦ ମୁଖରିତ କରିଥିଲେ । ଉତ୍ସବ ମଣ୍ଡପଠାରେ ମୁଖ୍ୟମନ୍ତ୍ରୀ ଓ ଅନ୍ୟାନ୍ୟ ମନ୍ତ୍ରୀମାନଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏହି ଅବସରରେ ମୁଖ୍ୟମନ୍ତ୍ରୀ ଏକ କମ୍ପ୍ୟୁଟର ହଲର ଶିଳାନ୍ୟାସ କଲେ । ତାଙ୍କ ସହିତ ବିଧାୟକ ଦେବାଶିଷ ନାୟକ ଓ ମାନ୍ୟବର ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି, ପ୍ରଶାନ୍ତ ନନ୍ଦ ଓ ଭାଗବତ ବେହେରା ଯୋଗଦେଇଥିଲେ ।

ସେଦିନ ପୂର୍ବତନ ଛାତ୍ର ବାବୁ ଫକୀର ହରିଚନ୍ଦନ ଓ ଡକ୍ଟର ବାସୁଦେବ ରାଉତରାୟଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ରାତ୍ରି ଦଶଟା ସମୟରେ ମୋ' ଲିଖିତ ପୁସ୍ତକର ଛାୟାରେ ରଚିତ 'ଶହେ ବର୍ଷର ଗାଥା, ବି.ଜେ.ବି. କହେ କଥା' ନାଟିକା ହାଇସ୍କୁଲର ଛାତ୍ରମାନଙ୍କ ଦ୍ୱାରା ଶିକ୍ଷକ ପ୍ରଦୀପ୍ତ ସାହୁଙ୍କ ନିର୍ଦ୍ଦେଶନାରେ ସଫଳ ଅଭିନୀତ ହୋଇଥିଲା । ଦର୍ଶକମଣ୍ଡଳୀ ପିଲା କାଳକାରମାନଙ୍କୁ ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଇବାରେ କୁଣ୍ଠାବୋଧ କରିନଥିଲେ ।

ଜଣାଗଲା ଖୋରଧା ହାଇସ୍କୁଲ ଶତବାର୍ଷିକୀ ଉତ୍ସବ ପାଳନ ଏକ ବିରାଟ ସାଫଲ୍ୟ । ବିଧାୟକ ବାବୁ ଜିତୁ ଓ ତାଙ୍କର ଜ୍ୟେଷ୍ଠଭ୍ରାତା ବାବୁ ଅରବିନ୍ଦ ମିତ୍ରଙ୍କ ପ୍ରଚେଷ୍ଟାରେ

ଉକ୍ତ ତିନିଦିନର ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । କିନ୍ତୁ 'ଶତାବ୍ଦୀ ଅବକାଶ' ସବୁ ସଭ୍ୟମାନଙ୍କୁ ଦିଆଯାଇପାରିଲା ନାହିଁ । ଏହା କର୍ମକର୍ତ୍ତାଙ୍କର ଅପାରଗତାର ପରିଚୟ ଦିଏ । ପରେ ଯେତେ ଚେଷ୍ଟାକଲେ ମଧ ଦାୟିତ୍ୱ ମୁଣ୍ଡାଇବାକୁ କେହି ଅଗ୍ରସର ହେଲ ନାହିଁ ।

୨୦୦୦ ମସିହାର ଶେଷ ଦିନ ୩୧ ତାରିଖ ଜିତୁବାବୁ ଉତ୍ସବରେ ଅଂଶଗ୍ରହଣ କରିଥିବା ସମସ୍ତ ସହକର୍ମୀଙ୍କୁ ଏକ ସୁମିଷ୍ଟ ଭୋଜନରେ ଆପ୍ୟାୟିତ କଲେ । ମୁଁ ଭାବିଲି ମୋ ମୁଣ୍ଡରୁ ବୋଝ ଖସିଲା । ଦୀର୍ଘ ନିଶ୍ୱାସଟିଏ ପକେଇଲି । ପରଦିନ ନୂତନ ବର୍ଷ ନୂତନ ସମ୍ଭାର ନେଇ ଧରାବକ୍ଷରେ ଅବତୀର୍ଣ୍ଣ ହେଲା ।

## ଶ୍ରୀରାମ ନଗର, ଖୋର୍ଦ୍ଧା ରାମମନ୍ଦିର କଥା :

ଉକ୍ତ ଉତ୍ସବ ପାଳନ ପରେ ରାମମନ୍ଦିର ପ୍ରତିଷ୍ଠା କଥା ମନରେ ପୁନଃ ଜାଗରିତ ହେଲା । ସୁବିଧା ସୁଯୋଗ ଆସିଲେ ସେ ମହତ କାମଟି କିପରି ଶେଷ କରାଯିବ ଏହି ଚିନ୍ତାରେ ରହିଲି । ତେବେ ମୋ ସମୟ ଭିତରେ ଶ୍ରୀରାମ ମନ୍ଦିର ପ୍ରତିଷ୍ଠା ଉତ୍ସବ ଅନୁଷ୍ଠିତ ହେବ ଏ ଆଶା ମୋର ରହିଲା । ସମୟ ପାଖେଇ ଆସୁଛି ।

## ପ୍ରାଣବାବୁଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଇଁ ଚେଷ୍ଟା :

ଏବେ ପ୍ରାଣନାଥଙ୍କ ପ୍ରତିମୂର୍ତ୍ତି ଖୋର୍ଦ୍ଧା ସହର ମଧରେ ଏକ ଛକଜାଗାରେ ସ୍ଥାପିତ ହେବବୋଲି ଖୋରଧା ବିଧାୟକଙ୍କ ସଭାପତିତ୍ୱରେ ସ୍ଥିର ହେଲା । ପୂର୍ବତନ ଅଧ୍ୟକ୍ଷ କ୍ଷୀରୋଦ ବାବୁଙ୍କ ଚେଷ୍ଟା ପ୍ରଶଂସନୀୟ । କିନ୍ତୁ ଖୋର୍ଦ୍ଧା କଲେଜର ପୂର୍ବତନ ଅଧକ୍ଷ ଅମୂଲ୍ୟକୃଷ୍ଣ ମିଶ୍ରଙ୍କ ଅକାଳ ବିୟୋଗ ଆମ୍ଭମାନଙ୍କୁ ବ୍ୟଥିତ କଲା । ତେବେ ବାରମ୍ବାର ଅଧିବେଶନ ବସିଲା । ପାଣ୍ଠି ସଂଗ୍ରହ ଚାଲିଲା । ଉକ୍ତ ପ୍ରତିମୂର୍ତ୍ତି ୨୦୦୨ ମସିହା ପ୍ରାଣବାବୁଙ୍କ ଜନ୍ମଦିନ ଅକ୍ଟୋବର ୫ ତାରିଖରେ ବ୍ୟାଙ୍କ ଛକରେ ପ୍ରତିଷ୍ଠା ହୋଇପାରିଲା ।

## ୨୦୦୧ର ଗଣତନ୍ତ୍ର ଦିବସ :

୨୦୦୧ର ପ୍ରାରମ୍ଭରେ ଗଣତନ୍ତ୍ର ଦିବସ ଦିନ ଗୁଜୁରାଟରେ ପ୍ରଚଣ୍ଡ ଭୂମିକମ୍ପ ଅପୂରଣୀୟ କ୍ଷତି ଘଟାଇଲା । ଆମେରିକାର ପୂର୍ବତନ ରାଷ୍ଟ୍ରପତି ବିଲ କ୍ଲିଣ୍ଟନ ବନ୍ଧୁତ୍ୱର ହସ୍ତ ପ୍ରସାରଣ କରି ସାହାଯ୍ୟ ଦେବାକୁ ଆଗେଇ ଆସିଲେ । ସେ ସ୍ଥାନକୁ ଆମ୍ଭେମାନେ ରାମମନ୍ଦିର ତରଫରୁ ଆର୍ଥିକ ସାହାଯ୍ୟ ପଠାଇଲୁ । ଏହା ତ ବିଧିନିର୍ଦ୍ଦେଶ ପରି ଜଣାପଡ଼ିଲା ।

## ଓଡ଼ିଶାରେ ମରୁଡ଼ି ଓ ବନ୍ୟା :

ଏବର୍ଷ ଓଡ଼ିଶାରେ ଅଭୂତପୂର୍ବ ମରୁଡ଼ି ସାଙ୍ଗକୁ ଜୁଲାଇ-ଅଗଷ୍ଟ ମାସରେ ପ୍ରଳୟଙ୍କରୀ ବନ୍ୟା ବିଶେଷ କ୍ଷତି କଲା । ନୂତନ ମୁଖ୍ୟମନ୍ତ୍ରୀ ବିପଦକୁ ସମ୍ଭାଳି ନେବାରେ ସମସ୍ତେ ସନ୍ତୋଷ ପ୍ରକାଶ କଲେ ।

**ସନ୍ତ୍ରାସବାଦର ଜନ୍ମଦାତା :**

ସେପ୍ଟେମ୍ବର ୧୧ତାରିଖ ଓସମାବିନ ଲାଡ଼େନ ଆମେରିକାର ବିଶ୍ୱବାଣିଜ୍ୟ କେନ୍ଦ୍ରର ବହୁତଳ ପ୍ରାସାଦ ଧ୍ୱଂସ କଲା । ଏ ପର୍ଯ୍ୟନ୍ତ ଭାରତ ସନ୍ତ୍ରାସବାଦ ବିରୁଦ୍ଧରେ ଦୀର୍ଘ ୧୦ବର୍ଷ ହେଲା ପାଟିତୁଣ୍ଡ କଲେ ମଧ୍ୟ ଆମେରିକା ଏବଂ ବିଶ୍ୱବାସୀ କର୍ଣ୍ଣପାତ କରୁନଥିଲେ । ଏବେ ଆମେରିକାର ନିଦ ଭାଙ୍ଗୁଛି । ସେ ଅକ୍ଟୋବର ୭ ତାରିଖ ରବିବାର ଦିନ ଆଫଗାନିସ୍ଥାନ ବିରୁଦ୍ଧରେ ଯୁଦ୍ଧ ପରିଚାଳିତ କରି ତାଲିବାନ ବିରୁଦ୍ଧରେ ବିମାନ ଆକ୍ରମଣ କରିଛି । ଆଫଗାନିସ୍ଥାନ ଉପରେ ବୋମାମାଡ଼ କଲେ ମଧ୍ୟ ଲାଡ଼େନ ଏପର୍ଯ୍ୟନ୍ତ ଧରାପଡ଼ିନାହିଁ । ତେବେ ଆଫଗାନିସ୍ଥାନରେ ନୂଆ ସରକାର ପ୍ରତିଷ୍ଠା ହୋଇଛି । ମୁଶାରଫ ଭାରତ ଉପରେ ଆକ୍ରମଣ କରିବା ପାଇଁ ତିଆର । ସେପଟୁ ଆକ୍ରମଣ ବନ୍ଦ ନକରି କାଶ୍ମୀର ବିଷୟ ନିଷ୍ପତ୍ତି କରିବାକୁ ସେ ବାଜପେୟୀଙ୍କୁ ବାଧ୍ୟ କରୁଛି । କାଶ୍ମୀର ସମସ୍ୟା ତୁଟିଲା ପରି ଲାଗୁନାହିଁ ।

ଏଠାରେ ଆନ୍ତର୍ଜାତିକ ସ୍ଥିତି ବର୍ଣ୍ଣନା କରିବାକୁ ଯାଇ ଏତିକି ଉଲ୍ଲେଖ କରୁଛି ଆମେରିକା ଯେଉଁ ତାଲିବାନ ସୃଷ୍ଟି କରିଥିଲା ଭସ୍ମାସୁର ସଦୃଶ ସେହି ତାଲିବାନ ନେତା ଲାଡ଼େନର ପରାମର୍ଶରେ ଆମେରିକାର ଦୁଇଟି ମୁଖ୍ୟ କାର୍ଯ୍ୟାଳୟ ଧ୍ୱଂସପ୍ରାପ୍ତ ହେଲା । ତେଣୁ ଆମେରିକାର ରାଷ୍ଟ୍ରପତି ବୁଶ ଲାଡ଼େନକୁ ଧ୍ୱଂସ କରିବାକୁ ଆଫଗାନିସ୍ଥାନ ଉପରେ ବୋମାବୃଷ୍ଟି କଲେ । ଆଫଗାନିସ୍ଥାନରୁ ଶାସନ ପରିବର୍ତ୍ତନ ହେଲେ ମଧ୍ୟ ଲାଡ଼େନ ଧରାପଡ଼ିଲାନାହିଁ । ଜୀବିତ ରହି ଆମେରିକାକୁ ଉପହାସ କଲା । ଏବେ ଲାଡ଼େନ ପାକିସ୍ଥାନରେ ଅଛି ବୋଲି ଗୁଇନ୍ଦା ସଂସ୍ଥା କହୁଛି ।

**ମୋର ପୁନଃ କର୍ମତତ୍ପରତା :**

ମୋର ଚିନ୍ତା ମୁଁ ଏବେ ଚାଲିବାକୁ ଅକ୍ଷମ ହେଲେ ମଧ୍ୟ ପ୍ରତ୍ୟହ ରାମମନ୍ଦିର ପରିସରକୁ ଯାଇ ସତସଙ୍ଗରେ ସମୟ କଟାଉଛି । ବର୍ତ୍ତମାନ ୮୨ ବର୍ଷ ପୂରି ୮୩ ବର୍ଷ ଚାଲିଛି । ଦେଶକୁ ଭଲ ସମୟ ଆସିବବୋଲି ମନେକରୁଛି । ଓଡ଼ିଶା ପ୍ରଗତି ପଥରେ ଆଗଉ, ଭାରତବର୍ଷ ଧନଧାନ୍ୟପୂର୍ଣ୍ଣ ହେଉ, ଲୋକେ ଭଲ ମଣିଷ ହୁଅନ୍ତୁ, ସୁଖଶାନ୍ତିରେ କାଳକାଟନ୍ତୁ ଏହାହିଁ ପରମେଶ୍ୱରଙ୍କଠାରେ ମୋର ପ୍ରାର୍ଥନା ।

ଓଡ଼ିଆରେ ଗୋଟିଏ କଥା ଅଛି– ଯେ ପକ୍ଷୀ ଉଡ଼େ ଯେତେ ଦୂର ସେ ଜାଣେ ତହିଁର ବେଭାର । ମୁଁ ଜୀବନରେ କୁଆଡ଼େ ବୁଲିପାରିଲି ନାହିଁ । କୂପମଣ୍ଡୁକଟିଏ ହୋଇ ରହିଗଲି । ଆଉ ଜୀବନରେ ଉନ୍ନତି ହେବ କ'ଣ ?

ତେବେ ଗୋଟିଏ ବଡ଼ କାର୍ଯ୍ୟ ପୂର୍ଣ୍ଣ କରିବାକୁ ବାକିରହିଲା । ଆଠବର୍ଷ କାଳ ସାହିତ୍ୟ ସଂସଦର ସଭାପତି ଆସନରେ ରହିଲି ମାତ୍ର ଏତେବର୍ଷ ବିତିଗଲେ ମଧ୍ୟ ସଂସଦ

ପାଇଁ ଦୁଇବଖରା ଗୃହ ନିର୍ମାଣ ହୋଇପାରିଲା ନାହିଁ । ତଥାପି ଆଶା ଅଛି । ସବୁ ସମୟରେ ପ୍ରସନ୍ନ ପାଟଶାଣୀ ଓ ବିଧାୟକ ଜିତୁମିତ୍ରଙ୍କ ପଛରେ ଗୋଡ଼ାଉଛି । ସାହିତ୍ୟ ସଂସଦ ଗୃହ ନିର୍ମାଣ କରିବା ପାଇଁ କେତେ ନିବେଦନ କରୁଛି, ମାତ୍ର ଏ ପର୍ଯ୍ୟନ୍ତ ହୋଇନାହିଁ । ହେବବୋଲି ଆଶା କରିବା ସ୍ୱାଭାବିକ ।

## ରାମମନ୍ଦିର ଓ ହନୁମାନ ବିଗ୍ରହ ପ୍ରତିଷ୍ଠା ଉତ୍ସବ ପାଳନ :

୨୦୦୧ ମସିହାରେ କାର୍ଯ୍ୟକାରୀ ସମିତିର ଯେତେଥର ଅଧିବେଶନ ବସିଥିଲା ଓ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ପ୍ରତ୍ୟେକ ସଭାରେ ରାମମନ୍ଦିର, ହନୁମାନ ମନ୍ଦିର ଓ ବିଗ୍ରହମାନ ପ୍ରତିଷ୍ଠା କିପରି ହେବ ଏହି ଚିନ୍ତା ମୋ' ମୁଣ୍ଡକୁ ବେଶି ଘାରିଲା । ଏବର୍ଷ ପ୍ରତିଷ୍ଠାତା ସଭ୍ୟମାନଙ୍କ ମଧ୍ୟରୁ ଲଡୁବାବାଙ୍କୁ କାଳ ହୋଇଗଲା । ମୁଁ ବି ପ୍ରମାଦ ଗଣିଲି । ପ୍ରତିଷ୍ଠା ଉତ୍ସବ ଦେଖିପାରିବି ନାହିଁ କି ? ଆମ ଭିତରୁ ଦୁଇଜଣ ଚାଲିଗଲେ । ମୋ ପାଳି ଯେ ନ ପଡ଼ିବ କିଏ କହିବ ? ବାବୁ କୃଷ୍ଣଚରଣ ସିଂହଙ୍କ ଏକ ପ୍ରକୋଷ୍ଠରେ ଠାକୁରମାନଙ୍କ ମୂର୍ତ୍ତିଗଡ଼ିକ ସୁରକ୍ଷିତ ହୋଇ ଥାଏ । ସେ ତନାଘନା ଲଗେଇଲେ ତାଙ୍କ କନ୍ୟାର ବିଭାଘର ହେବ । ତେବେ ଗୃହପ୍ରତିଷ୍ଠା ପାଇଁ ଫେବୃଆରୀ ୨୦୦୨ରେ ଗୋଟିଏ ତିଥି ଅଛି, ସେହିଦିନଟି ଛାଡ଼ିଦେଲେ ପୁଣି ନୂଆପାଞ୍ଜି ଖୋଲିଲେ । ତେଣୁ ସେହି ୨୨ ତାରିଖକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଏ ବର୍ଷ କ୍ୟାପଟେନ ଯଦୁମଣି ମିଶ୍ର ଆମ ଗହଣକୁ ଆସି ଉପାସନା ହଲର ମୂଳପତନ ପକାଇବାରେ ବହୁ ସାହାଯ୍ୟ କଲେଣି । ଷଡ଼ଙ୍ଗୀବାବୁ ବ୍ରାହ୍ମଣ ସମିତି ଅଧିବେଶନରେ ଯୋଗଦେବାପାଇଁ ସାରାଭାରତ ଗସ୍ତ କରୁଛନ୍ତି । ପୁନଃ ସେ ସମୟରେ ଉତ୍ସାହୀ କୃଷ୍ଣବାବୁଙ୍କର କନ୍ୟା ଓ ପୁତୁରା ବାହାଘର । ଅବଶ୍ୟ ପ୍ରତିଷ୍ଠା ତାରିଖଟି ପୂର୍ବରୁ ସ୍ଥିରୀକୃତ ହୋଇଥିଲା । ଆମ୍ଭେମାନେ ସେଥିରୁ ଓହରି ପାରିଲୁନାହିଁ । ଯଦୁମଣିବାବୁ, ଜେନାବାବୁ, ବାସୁବାବୁ, ପାତ୍ରବାବୁ, ବିଜୟବାବୁ, ଶରତଚନ୍ଦ୍ର ମହାପାତ୍ର ପ୍ରଭୃତି ପ୍ରତିଦିନ ସନ୍ଧ୍ୟାରେ ରୁଣ୍ଡ ହେଉଥାଆନ୍ତି । ସମସ୍ତେ ଫେବୃଆରୀ ୫ତାରିଖ ପରଠାରୁ ଖୁବ୍ ଲାଗିଗଲେ । ଯଦୁବାବୁ ମୋତେ ସଙ୍ଗରେ ନେଇ ଚାନ୍ଦା ପାଇଁ ଦ୍ୱାର ଦ୍ୱାର ବୁଲିଲେ, ଦୟାନିଧି ବାବୁ, ଗୋକୁଳିବାବୁ, ପଦ୍ମଲୋଚନବାବୁ, ଯଦୁମଣିବାବୁ କିଛି ପଇସା ଆଦାୟ କଲେ । ବ୍ରାହ୍ମଣସଭା ବାତିଲ କରି ଷଡ଼ଙ୍ଗୀବାବୁ ଆମ୍ଭମାନଙ୍କ ସଙ୍ଗେ ବହୁ ବିଳମ୍ବରେ ଯୋଗଦେଲେ । ତେବେ ସମସ୍ତଙ୍କର ପୂର୍ଣ୍ଣ ସହଯୋଗ ମିଳିଲା । ମୁଁ ଏବଂ ଯଦୁବାବୁ ପ୍ରାୟ ୩୨ହଜାର ଟଙ୍କା ଆଦାୟ କଲୁ । ଫେବୃଆରୀ ୧୯ତାରିଖ ମଙ୍ଗଳବାର ଅଙ୍କୁରାରୋପଣ ଦିନ । ୨୦ତାରିଖରେ ପୁରୁଷ ଓ ନାରୀ ଭକ୍ତମାନେ ଗୋଡ଼ିପୋଖରୀରୁ ଜଳଘଟ ଆଣିବାରେ ସାହାଯ୍ୟ କଲେ । ଯାଜ୍ଞିକ ବ୍ରାହ୍ମଣ ୭ଜଣଙ୍କ ସାହାଯ୍ୟରେ ୨୦,୨୧,୨୨ ତିନିଦିନକାଳ ଯଜ୍ଞ ଯଥାବିଧି ଚାଲିଲା । ସମଗ୍ର ଶ୍ରୀରାମନଗର ଓ ଖୋରଧା ସହରର ଅନ୍ୟ ଭକ୍ତମାନେ ଖୁବ୍ ଉତ୍ସାହ ସହକାରେ ଏ ଉତ୍ସବରେ ଯୋଗଦେଲେ । ଶ୍ରୀରାମନଗର ଉନ୍ନୟନ ପରିଷଦର

ବ୍ରାହ୍ମଣ ସଭ୍ୟମାନେ ଯଜ୍ଞରେ କେତେକ କାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କଲେ । ଗୀତାଭବନର ଭକ୍ତବୃନ୍ଦ ରାଧାଗୋବିନ୍ଦ ଦାସ, ସନାତନବାବୁ, ଅସୀମାନନ୍ଦ, ଅମୁଭାଇ ଓ ସରୋଜସୁନ୍ଦର ସହଯୋଗ କଲେ । ଆମ ଅନୁଷ୍ଠାନର ସର୍ବଶ୍ରୀ ମୁରଲାଧର ପ୍ରଧାନ, ବ୍ରଜବନ୍ଧୁ ଷଡ଼ଙ୍ଗୀ, ଗୁରୁଦତ୍ତ ପଟ୍ଟଯୋଶୀ, ଭାସ୍କର ପାତ୍ର, ବାସୁଦେବ ନାୟକ, ଗୋଲୋକ ବିହାରୀ ଜେନା, ବିଜୟ ଚନ୍ଦ୍ର ସାମନ୍ତ ସିଂହାର, ଯଦୁମଣି ମିଶ୍ର, ପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ର, ଗୋକୁଳ ଚନ୍ଦ୍ର ସାହୁ, ଦୟାନିଧି ସାହୁ, ବୀରବର ସାହୁ, ଚୈତନ୍ୟ ମହାପାତ୍ର, ମୁରଲୀଧର ପଟ୍ଟନାୟକ, ଦୀନବନ୍ଧୁ ନନ୍ଦ, ଶଙ୍କର୍ଷଣ ତ୍ରିପାଠୀ ପ୍ରଭୃତି ବହୁ ଭକ୍ତ ଯୋଗଦେଇଥିଲେ । ବହୁ ସ୍ଥାନୀୟ ନରନାରୀ ଅଂଶଗ୍ରହଣ କରିଥିଲେ । ବଡ଼ବଜାରର ବାବୁ ଭଗବାନ ରାମ, ବାବୁ ରାମାନନ୍ଦ, କିଶନ ରାମ, ବଦ୍ରିପ୍ରସାଦ ରାମ, ମହାବୀର ରାମ ଓ ମହାବୀର ସାହା ପ୍ରଭୃତି ଭଦ୍ରବ୍ୟକ୍ତିଗଣ ଯଜ୍ଞ ଉପଯୋଗୀ ଘୃତ ପ୍ରଦାନ କଲେ । ବହୁ ସରକାରୀ ବେସରକାରୀ ଭକ୍ତମାନେ ବି ଯୋଗଦେଇଥିଲେ । ଏପରିକି ପୌରାଞ୍ଚଳର ପ୍ରଶାସକ ମାନସବାବୁ, ଡେପୁଟି, ଆର୍.ଟି.ଓ. ରାଓବାବୁ, ପ୍ରୋଜେକ୍ଟ ଡାଇରେକ୍ଟର ଶ୍ରୀଯୁକ୍ତ ବିଶ୍ୱାଳବାବୁ ଓ ସର୍ବୋପରି ଜିଲ୍ଲାପାଳ ଶ୍ରୀମଧୁସୂଦନ ପାଢ଼ୀ ମହୋଦୟ ଯୋଗଦେଇ ଆମ୍ଭମାନଙ୍କୁ ଉତ୍ସାହିତ କରିଥିଲେ । ରାମମନ୍ଦିର ନିର୍ମାଣ ସମ୍ମୁଖ ହଲରେ ମୂଳଭିତ୍ତି ନିର୍ମାଣ ଓ ହନୁମାନଜୀଙ୍କ ମନ୍ଦିର ନିର୍ମାଣ ଯୋଗୁଁ ସର୍ବଶ୍ରୀ ଜିତୁମିତ୍ର, ପ୍ରସନ୍ନ କୁମାର ପାଟଶାଣୀ ଓ ସୀତାକାନ୍ତ ମିଶ୍ରଙ୍କୁ ସର୍ବଦା ମନେରଖିବୁ । ମନ୍ଦିର ସମ୍ମୁଖସ୍ଥ ସ୍ଥାପିତ ଚମତ୍କାର ସିଂହମୂର୍ତ୍ତି ଶିଳ୍ପୀ ଶରତଚନ୍ଦ୍ର ବଳିୟାରସିଂହଙ୍କର କଳାପାଟବର ପରିଚୟ ଦିଏ । ସେହି କମନୀୟ ସିଂହ ମୂର୍ତ୍ତିଦ୍ୱୟ ବାବୁ ଅଭିଷେକ ମିଶ୍ରଙ୍କର ଆର୍ଥିକ ସହାୟତାରେ ପ୍ରାପ୍ତ । ସେ ମହାଶୟ ଆମ୍ଭମାନଙ୍କର ଆଦରର ପାତ୍ର । ସେମାନଙ୍କ ବ୍ୟତୀତ ଯେଉଁ ବନ୍ଧୁମାନେ ଶ୍ରୀରାମଙ୍କ ବିଜେପ୍ରତିମା, ହନୁମାନଙ୍କ ଗଦା ଓ ଅନ୍ୟାନ୍ୟ ଆବଶ୍ୟକୀୟ ମୂର୍ତ୍ତି ଓ ବିଗ୍ରହ ଦାନ କରିଛନ୍ତି ସେମାନଙ୍କୁ ଧନ୍ୟବାଦ ନଦେଇ ରହିପାରୁନାହିଁ । ସୁକାନ୍ତି ମିଶ୍ର ଓ ଅନ୍ୟମାନଙ୍କୁ ମଧ୍ୟ ଧନ୍ୟବାଦ ନଦେଇ ରହିପାରୁନାହିଁ । ବାସୁଦେବ ନାୟକଙ୍କ ଦାନ ମଧ୍ୟ ଊଣା ନୁହେଁ । ପୁନଶ୍ଚ ରାମମନ୍ଦିର ନିର୍ମାଣ ସମୟରେ ବାବୁ ସତ୍ୟ ପାଇକରାୟ, ଡାକ୍ତର ବିଶ୍ୱନାଥ ପଟ୍ଟଯୋଶୀ, ବିଜୟ ଚନ୍ଦ୍ର ସାମନ୍ତସିଂହାର ପ୍ରଭୃତି ଭକ୍ତମାନଙ୍କର ମାର୍ବଲ ପଥର ଦାନ ଉଲ୍ଲେଖଯୋଗ୍ୟ । ହନୁମାନ ମନ୍ଦିର ଅଭ୍ୟନ୍ତର ମାର୍ବଲ ପଥର ଛିଆଣି ସଭାପତିଙ୍କ ଦ୍ୱାରା ସମାହିତ ହେଲା ଏବଂ ଶ୍ରୀରାମ, ଲକ୍ଷ୍ମଣ, ସୀତାଦେବୀଙ୍କ ପ୍ରତିମୂର୍ତ୍ତି ପାଇଁ ବାବୁ ଦୟାନିଧି ସାହୁ ଆଖିଦୃଶିଆ ଧନ ପ୍ରଦାନ କରିଥିଲେ ।

୨୨-୨-୨୦୦୨ ତାରିଖରେ ପୂର୍ଣ୍ଣାହୁତି ସଂପନ୍ନ ହେଲା । ଠାକୁରମାନେ ନିଜନିଜ ବିଜେସ୍ଥଳୀରେ ବିଜେହେଲେ । ଗୋଟିଏ ବିରାଟ କାର୍ଯ୍ୟ ସମସ୍ତଙ୍କ ସହଯୋଗରେ ସାଫଲ୍ୟମଣ୍ଡିତ ହେଲା । ପୁନଶ୍ଚ ଦିନେ ଦୁଇ ଦିନପରେ ଖୋର୍ଦ୍ଧା ହାଇସ୍କୁଲର ପୂର୍ବତନ

ପ୍ରଧାନ ଶିକ୍ଷକ ବାବୁ ସୁରେନ୍ଦ୍ର ମିଶ୍ରଙ୍କ ଆଖିଦୃଶିଆ ଦାନ ପାଞ୍ଚହଜାର ଟଙ୍କା ଠାକୁରଙ୍କ ରୋଷଘର ନିର୍ମାଣରେ ବ୍ୟୟିତ ହେଲା । ସେ ମଧ୍ୟ ଆମ୍ଭମାନଙ୍କର ଧନ୍ୟବାଦର ପାତ୍ର । ମୋର ବୟସ ଦୃଷ୍ଟିରୁ ମୁଁ ଏ ସଂସ୍ଥାରେ ଆଉ ରହିପାରିବି ନାହିଁ ବୋଲି ସିଦ୍ଧାନ୍ତ ନେଲି ମାତ୍ର ବନ୍ଧୁମାନେ ମୋତେ ଛାଡ଼ିବାକୁ ନାରାଜ । ପ୍ରଭାବଶାଳୀ ଉପସଭାପତି କ୍ୟାପଟେନ୍ ଯଦୁମଣି ମିଶ୍ର ମୁଁ ବଞ୍ଚିଥିବା ପର୍ଯ୍ୟନ୍ତ ସେ ସଂସ୍ଥାରେ ରହିବାପାଇଁ ଅନୁରୋଧ କଲେ । ରାମମନ୍ଦିର ସମ୍ମୁଖସ୍ଥ ବିରାଟ୍ ଉପାସନା ଗୃହଟି ଏଥିମଧ୍ୟରେ ବିଧାୟକ ପାଣ୍ଠିରେ ନିର୍ମାଣ କରାଗଲା । ଉକ୍ତ ସୁଦୃଶ୍ୟ ପ୍ରାର୍ଥନା ଗୃହ ନୂତନ ଭକ୍ତମାନଙ୍କୁ ଆକର୍ଷଣ କରୁଛି । ଏଥିମଧ୍ୟରେ କୂପଖନନ ଓ ତା'ର ପ୍ରତିଷ୍ଠା କାର୍ଯ୍ୟ ସମ୍ପନ୍ନ ହୋଇଛି । ୨୦୦୩ ଜାନୁଆରୀ ପହିଲା ତାରିଖରୁ ମୁଁ କଳାଷ୍ଟର ହରପିସ୍ ରୋଗରେ ଆକ୍ରାନ୍ତ ହୋଇ ଆହୁରି ଦୁର୍ବଳ ହେଲି । ତେଣୁ ମନ୍ଦିର ଚାନ୍ଦା ଆଦାୟ ବାଧାପ୍ରାପ୍ତ ହେଲା । ତେବେ ଯଦୁମଣିବାବୁଙ୍କ ଉତ୍ସାହ ଓ ଉଦ୍ଦୀପନା ଅଭିନନ୍ଦମୟ । ଗତ ଏପ୍ରିଲ ମାସଠାରୁ ପୁନଃ ରାମମନ୍ଦିର କାର୍ଯ୍ୟରେ ଲିପ୍ତ ରହିଲି । ଯଦୁମଣିବାବୁ ବର୍ତ୍ତମାନ ମନ୍ଦିର କାର୍ଯ୍ୟରେ ମନପ୍ରାଣ ଢାଳି ଦେଇଛନ୍ତି । ତାଙ୍କ ହସ୍ତରେ ମନ୍ଦିର ପାଣ୍ଠି ସୁରକ୍ଷିତ । ପୂର୍ବରୁ ମନ୍ଦିରର ସମସ୍ତ ପାଣ୍ଠି ତାଙ୍କ ହସ୍ତକୁ ପ୍ରଦାନ କରି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ । ଏପରି ଜଣେ ବ୍ୟକ୍ତି ଆମ୍ଭମାନଙ୍କ ଗହଣକୁ ପୂର୍ବରୁ ଆସିଥିଲେ ତାଙ୍କ ସାହାଯ୍ୟରେ ମୁଁ ବହୁତ କାର୍ଯ୍ୟ ସମାହିତ କରିଥାନ୍ତି । ତଥାପି ଯେତିକି ଦିନ ତାଙ୍କ ସଙ୍ଗେ ରହିବି, ମୁଁ ମନ୍ଦିର କାର୍ଯ୍ୟ କରିପାରିବି, ନିଜକୁ ଭାଗ୍ୟବାନ ମନେକରିବି ।

ଏବେ ମନ୍ଦିରର ବହୁକାମ ବାକୀ । ପ୍ରଥମ ପଦକ୍ଷେପ ସ୍ୱରୂପ ସମ୍ମୁଖସ୍ଥ ବିରାଟ ଗ୍ରୀଲଗେଟ୍ ଓ ଅନ୍ୟାନ୍ୟ ପାର୍ଶ୍ୱ କ୍ଷୁଦ୍ର କ୍ଷୁଦ୍ର ଗ୍ରୀଲ୍ ଗେଟ୍ ପାଇଁ ତନାଘନା ଉଦ୍ୟମ ଚାଲିଛି । ମୁଖ୍ୟ ଗ୍ରୀଲ୍‌ଗେଟ୍ ନିର୍ମାଣର ଆର୍ଥିକ ବୋଝଟି ମୋ ଉପରେ ପଡ଼ିଛି । ଛୋଟ ଛୋଟ ଗ୍ରୀଲଗେଟ୍ ପାଇଁ ଡାକ୍ତର ଲକ୍ଷ୍ମୀଧର ସାହୁ ଆମ୍ଭମାନଙ୍କୁ ସାହାଯ୍ୟ କରୁଛନ୍ତି । ଏବେ ପଇସା ମନକୁମନ ଆସୁଛି । ମୋର ପ୍ରସ୍ଥାନ ପୂର୍ବରୁ ଶ୍ରୀରାମନଗର ରାମ ମନ୍ଦିର ପରିସର ସୁଦୃଶ୍ୟ ପର୍ଯ୍ୟଟନ କ୍ଷେତ୍ର ରୂପେ ପରିଗଣିତ ହେବବୋଲି ମୋର ଆଶା । ତେବେ ସବୁ ତ ସେହି ସୃଷ୍ଟିକର୍ତ୍ତାଙ୍କ ଇଚ୍ଛା ।

## ଅନ୍ୟାନ୍ୟ କାର୍ଯ୍ୟରେ କିଞ୍ଚିତ୍ ଯୋଗଦାନ :

ଖୋର୍ଦ୍ଧା ଶ୍ରୀରାମନଗରରେ ଶ୍ରୀରାମ ମନ୍ଦିର ଓ ହନୁମାନ ମନ୍ଦିର ପ୍ରତିଷ୍ଠା କାର୍ଯ୍ୟ ଶେଷ ହେବାପରେ ଟିକିଏ ସମୟ ମିଳିଲା । ପୁନଃ ଭିନ୍ନ ଭିନ୍ନ ଅନୁଷ୍ଠାନରେ ଉଦ୍‌ବୋଧନ ଦେବାକୁ ପ୍ରସ୍ତୁତ ହେଲି । ୨୦୦୨ ମସିହା ଏପ୍ରିଲ ମାସ ୨୬ତାରିଖରେ ପଲାତୋଟାପଡ଼ା ହାଇସ୍କୁଲ ଓ ୨୮ତାରିଖରେ ଜଙ୍କିଆ ହାଇସ୍କୁଲରେ ଉତ୍କଳ ସମ୍ମିଳନୀ ଖୋରଧା ଶାଖା ସଭ୍ୟମାନଙ୍କ ଗହଣରେ ଯାତ୍ରାକରି ଜାତୀୟ ବୀରମାନଙ୍କ ମଧ୍ୟରୁ ମଧୁବାବୁ ଓ କୃଷ୍ଣଚନ୍ଦ୍ର ଗଜପତିଙ୍କ ଜୀବନୀ ଓ କାର୍ଯ୍ୟକଳାପ ସମ୍ବନ୍ଧେ ବିଶଦ ଆଲୋଚନା କଲି । କିନ୍ତୁ ଭୟଙ୍କର

ରୌଦ୍ରତାପ ମୋ ସ୍ୱାସ୍ଥ୍ୟ ଉପରେ ଗଭୀର ପ୍ରଭାବ ପକାଇଲା । ପୁନଃ ଦିନେ ଦୁଇଦିନ ବ୍ୟବଧାନରେ ମେ ମାସ ୨ତାରିଖରେ ବିରତୁଙ୍ଗ ନିଗମାନନ୍ଦ ଆଶ୍ରମ, କୋଣାର୍କ, ପୁରୀ, ରାମଚଣ୍ଡୀ ଯାତ୍ରାକରି ନୂଆ ଜଗନ୍ନାଥ ରୋଡ଼ରେ ନିରାକାରପୁର ଯାତ୍ରାକଲି । ଉକ୍ତ ଯାତ୍ରାରେ ଦୁଇ ଶହ ତିରିଶ କି.ମି. ପଥ ଅତିକ୍ରମ କରିବାକୁ ପଡ଼ିଲା । ପ୍ରାତଃ ୮ଘଟିକା ସମୟରୁ ସନ୍ଧ୍ୟା ୭ଘଟିକା ପର୍ଯ୍ୟନ୍ତ କାର ଭିତରେ ବସିବାକୁ ପଡ଼ିଲା । କେବଳ କୋଣାର୍କଠାରେ ମନ୍ଦିର ପରିକ୍ରମା ସମୟରେ ରୌଦ୍ରତାପ ଅନୁଭବ କରିବାକୁ ପଡ଼ିଲା । ସବୁ କଷ୍ଟକୁ ସିନା ସହ୍ୟକରିବାକୁ ପଡ଼ିଲା । ମାତ୍ର ତାର ଫଳ ୪ତାରିଖରେ ଫୁଟି ବାହାରିପଡ଼ିଲା । ଦୌଡ଼ିଲି ଡାକ୍ତରଙ୍କ ପାଖକୁ । ଛାତିରେ ଯନ୍ତ୍ରଣା ଅନୁଭବ କଲି । ଇ.ସି.ଜି. ପରୀକ୍ଷା କଲି, ଅବଶ୍ୟ କିଛି ସୁରାକ ମିଳିଲା ନାହିଁ । ଗ୍ୟାଷ୍ଟ୍ରିକ କଷ୍ଟପରି ଜଣାପଡ଼ିଲା । ତାକୁ ମାଡ଼ିମକଚି ଚାଲିଲି । ମନୋବଳ ଖୁବ୍ ଦୃଢ଼ । ତେଣୁ ଫେରି ୨୦୦୩ରେ ରାମ ମନ୍ଦିର ପରିସରରେ ଶ୍ରୀରାମଚରିତ ନବାହ୍ନପାରାୟଣ ପ୍ରବଚନ ମହାଯଜ୍ଞ ନବମ ବର୍ଷ ପାଳନ ପାଇଁ ପ୍ରସ୍ତୁତ ହେଲି । ମେ ମାସ ୧୫ ତାରିଖଠାରୁ ୨୩ ତାରିଖ ପର୍ଯ୍ୟନ୍ତ ଉତ୍ସବ ଖୁବ୍ ସୁନ୍ଦର ଭାବରେ ପାଳନ କରାଗଲା । ଏଠିକୁ ସେଠିକୁ ଯିବାକୁ ପଡିଲା । ଅତିଥିମାନଙ୍କ ସଙ୍ଗେ ସାକ୍ଷାତ କରିବାର ଆବଶ୍ୟକତା ପଡ଼ିଲା । ଏ କାମରେ ମୋତେ ଅବଶ୍ୟ ସାହାଯ୍ୟ କଲେ ସର୍ବଶ୍ରୀ ବ୍ରଜବନ୍ଧୁ ଷଡ଼ଙ୍ଗୀ, ଯଦୁମଣି ମିଶ୍ର, ରଣସିଂହ ଓ ଜେନାବାବୁ । ପ୍ରତ୍ୟହ ସନ୍ଧ୍ୟା ୬ଘଣ୍ଟା ଠାରୁ ରାତ୍ରି ୧୨ଘଣ୍ଟା ପର୍ଯ୍ୟନ୍ତ ପ୍ରବଚନ ସମୟରେ ବ୍ୟସ୍ତ ରହିବାକୁ ପଡ଼ିଲା । ଉଦ୍‌ଯାପନ ଦିନ କୃତୀ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରାଗଲା । ଏହାହିଁ ମୋର ଆନନ୍ଦ ।

ଦୁଇ ଚାରିଦିନ ପରେ ଏକ ନୂତନ ରୋଗର ଆବିର୍ଭାବ ହେଲା । ରକ୍ତପରିସ୍ରା ହେଲା । ଭୟଭୀତ ହେଲି । ପୁଣି ଡାକ୍ତର, ପୁଣି ଇ.ସି.ଜି । ଅଲଟ୍ରାସାଉଣ୍ଡ । ଶେଷରେ ସିଦ୍ଧାନ୍ତ ହେଲା କଟକରେ ଯାଇ ସିଷ୍ଟୋସ୍କୋପି କରିବାକୁ ପଡ଼ିବ । ଡାକ୍ତରଙ୍କ ପରାମର୍ଶ ବେଶି କଥା ନକହିବାକୁ । ଏବେ ଆଜିଠାରୁ ସଭାସମିତିରେ ଭାଷଣ ଦେବା ବନ୍ଦକଲି । ମୋ ଜୀବନ ବୃଥା ହେଲା । ଆଉ କୌଣସି ଜନଜୀବନ କାର୍ଯ୍ୟରେ ଯୋଗ ଦେଇ ପାରିବି ନାହିଁ । ପୂର୍ବପରି ଲେଖାପଢ଼ାରେ ମନଦେଇ ପାରିବିନାହିଁ । ଜୀବନ ସରି ସରି ଆସୁଛି, ମନ ବି ମରି ମରି ଯାଉଛି । ତେବେ ଯେଉଁ କାମଗୁଡ଼ିକ ସଂପୂର୍ଣ୍ଣ ହୋଇପାରିନାହିଁ ସେଗୁଡ଼ିକ କିପରି ପୂର୍ଣ୍ଣତା ଲାଭ କରିବ, ସେଥିପାଇଁ ଚେଷ୍ଟା କରିବା ଆବଶ୍ୟକ ହୋଇପଡୁଛି । ଜୀବନଟାଯାକ କେବଳ କାମ । ଆଳସ୍ୟପରାୟଣ ହୋଇ ସମୟ ଅପଚୟ କରିନାହିଁ ।

କବିଙ୍କ ଭାଷାରେ —

''ମନୁଷ୍ୟ ଜୀବନ ନୁହଇ କେବଳ ବର୍ଷମାସ ଦିନ ଦଣ୍ଡ,
କର୍ମେ ଜିଏ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।।''

ଦେଖୁ ଦେଖୁ ରଜ ଆସିଗଲା । ଖୋର୍ଦ୍ଧା ସାହିତ୍ୟ ସଂସଦ ତରଫରୁ ବ୍ୟାସକବି ଫକୀରମୋହନଙ୍କ ଶ୍ରାଦ୍ଧଦିବସ ପାଳନ କରାଯିବ । ଆଜି ରଜସଂକ୍ରାନ୍ତି । ତାଙ୍କ ଶ୍ରାଦ୍ଧ ଉତ୍ସବ ଡାଏଟ ପରିସରରେ ପାଳନ କରାଗଲା । ମୁଖ୍ୟବକ୍ତା ଥିଲେ ଖୋର୍ଦ୍ଧା କଲେଜର ଅବସରପ୍ରାପ୍ତ ଓଡ଼ିଆ ପ୍ରାଧାପକ ଶ୍ରୀ ପ୍ରଫୁଲ୍ଲ କୁମାର ପାଇକରାୟ, ମୁଁ ଫକୀରମୋହନଙ୍କ ଗଳ୍ପର ଆଲୋଚକ ଥିଲି । ଶ୍ରାଦ୍ଧଉତ୍ସବ ପାଳନ କରିସାରି ଗୃହକୁ ପ୍ରତ୍ୟାବର୍ତ୍ତନ କରି ଦାଣ୍ଡଦୁଆରେ ବସିଛି ଆସନ୍ତାକାଲି "The Home" (ଅନାଥାଶ୍ରମ) ତରଫରୁ ବିଧାୟକଙ୍କୁ ସାକ୍ଷାତ କରିବାକୁ ଯିବାକୁ ପଡ଼ିବ ବୋଲି ଅନୁରୋଧଟିଏ ଆସି ପହଞ୍ଚିଲା । ତହିଁ ଆରଦିନ "The Home" ର ଗୃହନିର୍ମାଣ ସ୍ଥାନରେ ବନ୍ଧୁମାନଙ୍କସହ ପ୍ରବେଶ କରି କାର୍ଯ୍ୟକୁ ତ୍ୱରାନ୍ୱିତ କଲି । ସାମର୍ଥ୍ୟ ଥିବା ପର୍ଯ୍ୟନ୍ତ ସମାଜ କାମରେ ବ୍ୟସ୍ତ ରହିବି । ତେବେ ଜୀବନକୁ ସରସ ସୁନ୍ଦର ନୀତିମୟ କରିବାପାଇଁ ଚାଲ ଆମେ ସମସ୍ତେ ମିଶି ପ୍ରଭୁଙ୍କର ବନ୍ଦନା କରିବା । ଏଇ ପରିପ୍ରେକ୍ଷୀରେ ଉପନିଷଦର ଏକ ପଂକ୍ତି ଉଦ୍ଧାର କରି ପୃଥିବୀବାସୀଙ୍କର ଶୁଭକାମନା କରିବା —

ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖଭାଗ୍ ଭବେତ୍ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।।

## ମୋର ଦୈନନ୍ଦିନ ଜପ ଓ ପ୍ରାର୍ଥନା ସଙ୍ଗୀତ :

ପ୍ରତିଦିନ ସନ୍ଧ୍ୟା ୬ ଘଣ୍ଟା ୩୦ମି.ରେ ସ୍ଥାନୀୟ ଶ୍ରୀରାମ ଓ ହନୁମାନ ମନ୍ଦିରରେ ପ୍ରବେଶ କରି ରାମାଷ୍ଟକ ପ୍ରାର୍ଥନାସଙ୍ଗୀତ, ହନୁମାନ ଚାଳିଶା ଓ ଅନ୍ୟ କେତେଗୋଟି ବିଷ୍ଣୁସ୍ତୋତ୍ର ଆବୃତ୍ତି କରି ପୁରାଣପାଠ କରାଯାଏ । ୮ ଘଣ୍ଟା.୩୦ମିନିଟ୍‌ରେ ମନ୍ଦିରରୁ ଗୃହକୁ ପ୍ରସ୍ଥାନ କରେ ।

ରାତ୍ର ନଅ ଘଟିକାରେ ଗୋଡ଼ ହାତ ପ୍ରକ୍ଷାଳନ କରି ମଠାପିନ୍ଧି, ଆସନରେ ବସି ଚଉବନ ଥର ଗାୟତ୍ରୀ ମନ୍ତ୍ର ଜପକରେ । ରୁଦ୍ରାକ୍ଷମାଳା ଧାରଣକରି ପଦ୍ମାସନରେ ଉପବେଶନ କରି ଅଧଘଣ୍ଟାଏ ଉପରେ କଟାଇବାକୁ ପଡ଼େ ।

ପ୍ରଥମେ ଗାୟତ୍ରୀମନ୍ତ୍ର ଜପ କରାଯାଏ ।

**ଗାୟତ୍ରୀମନ୍ତ୍ର :**

ଓଁ ଭୂଃ ଭୂବଃ ସ୍ୱଃ ତତ୍ ସବିତୁଃ ବରେଣ୍ୟଂ
ଭର୍ଗୋ ଦେବସ୍ୟ ଧୀ ମହୀ
ଧୀୟୋ ୟୋନଃ ପ୍ରଚୋଦୟାତ୍ ।।

ତାପରେ ସଂକ୍ଷିପ୍ତ ନବଗ୍ରହ ସ୍ତୋତ୍ର ଆବୃତ୍ତି କରେ—

**ନବଗ୍ରହ ସ୍ତୋତ୍ର :**

ଜବାକୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ
ଧ୍ୱାନ୍ତାରିଂ ସର୍ବପାପଘ୍ନଂ ପ୍ରଣତୋସ୍ମିଂ ଦିବାକରଂ ।।
ଦିବ୍ୟ ଶଙ୍ଖଂ ତୁଷାରଭଂ କ୍ଷୀରୋଦାର୍ଣ୍ଣବ ସମ୍ଭବଂ
ନମାମି ଶଶୀନଂ ଭକ୍ତ୍ୟା ଶମ୍ଭୋଃ ମୁକୁଟ ଭୂଷଣଂ ।।
ଧରଣୀ ଗର୍ଭସମ୍ଭୂତଂ  ବିଦ୍ୟୁତ୍‌ପୁଞ୍ଜ ସମପ୍ରଭଂ
କୁମାରଂ ଶକ୍ତି ହସ୍ତଞ୍ଚ ଲୋହିତାଙ୍ଗଂ ନମାମ୍ୟହଂ ।।
ପ୍ରିୟଙ୍ଗୁ କଳିକାଶ୍ୟାମଂ ରୂପେଣ ପ୍ରତିମ ବୁଧଂ
ସୋମ୍ୟଂ ସର୍ବଗୁଣ ପେତଂ ନମାମି ଶଶୀ ନୋସୁତଂ ।।
ଦେବତାନାଂ ଋଷିଣାଞ୍ଚ ଗୁରୁଂକନକସନ୍ନିଭଂ
ଜଗତ୍ ବନ୍ଦ୍ୟଂତ୍ରିଲୋକେଶଂ ପ୍ରଣମାମି ବୃହସ୍ପତିଂ ।।
ହିମକୁନ୍ଦ ମୃଣାଳାଭଂ ଦୈତ୍ୟାନାଂ ପରମ ଗୁରୁଂ
ସର୍ବଶାସ୍ତ୍ର ପ୍ରବକ୍ତାରଂ ଭାର୍ଗବଂ ପ୍ରଣାମାମ୍ୟହଂ ।।
ନୀଳାଃଞ୍ଜନ ଚୟପ୍ରେକ୍ଷଂ ରବିସୁନୁ ମହାଗ୍ରହଂ
ଛାୟାୟା ଗର୍ଭ ସମ୍ଭୂତଂ ବନ୍ଦେଭକ୍ତ୍ୟା ଶନୈଶ୍ଚରଂ ।।
ଅର୍ଦ୍ଧକାୟଂ ମହାଘୋରଂ ଚନ୍ଦ୍ରାଦିତ୍ୟ ବିମର୍ଦ୍ଦନଂ
ସିଂହକାୟା ସୁତଂ ରୌଦ୍ରଂତଂ ରାହୁଂ ପ୍ରଣାମାମ୍ୟହଂ ।।
ପଲାଳଧୂମ ସଂକାଶଂ ତାରାଗ୍ରହ ବିମର୍ଦ୍ଦନଂ
ରୌଦ୍ରଂ ରୌଦ୍ରାତ୍ମିକଂ କ୍ରୁରଂ ତଂ କେତୁଂ ପ୍ରଣାମାମ୍ୟହଂ ।।
ବ୍ୟାସନୋକ୍ତଂ ମିଦଂ ସ୍ତୋତ୍ରଂ ଯଃ ପଠେତ୍ ପ୍ରାୟତଃ ଶୁଚିଃ
ଦିବା ବା ଯଦି ବା ରାତ୍ରିଃ ଶାନ୍ତି ତତ୍ର ନ ସଂଶୟଃ ।।
ଐଶ୍ୱର୍ଯ୍ୟଂ ଅତୁଳଞ୍ଚାପି ଆରୋଗ୍ୟଂ ପୁଷ୍ଟି ବର୍ଦ୍ଧନଂ
ନରନାରୀ ପ୍ରିୟାତ୍ୱଞ୍ଚ ନିତ୍ୟଂ ତସ୍ୟ ପୂଜାୟତେ ।।
ତକ୍ଷକୋଗ୍ନି ର୍ଯମୋ ବାୟୁ ର୍ଯେ ଚାନେ ଗ୍ରହପୀଡ଼କାଃ
ତେ ସର୍ବେ ପ୍ରଶମଂ ଯାନ୍ତି ବ୍ୟାସବୃୟାନ୍ନ ସଂଶୟଃ ।।

## ବିଷ୍ଣୁ ସ୍ତୋତ୍ର :

ନାରାୟଣଂ ନମସ୍କୃତ୍ୟ ନରୋଶ୍ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀ ବ୍ୟାସ୍ୟଂ ତତୋ ଜୟଂ ଉଦିରୟେତ୍
ମୂକଂ କରୋତି ବାଚାଳଂ ପଙ୍ଗୁଃ ଲଘଂୟତେ ଗିରିଂ
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦ ମାଧବଂ ।।
ଶାନ୍ତାକାରଂ ଭୂଜଗଶୟନଂ ପଦ୍ମନାଭଂ ସୁରେଶଂ
ବିଶ୍ୱାଧାରଂ ଗଗନ ସଦୃଶଂ ମେଘବର୍ଣ୍ଣଂ ସୁଭାଗଂ
ଲକ୍ଷ୍ମୀକାନ୍ତଂ କମଳନୟନଂ ଯୋଗିଭିଃ ଧ୍ୟାନଗମ୍ୟଂ
ବନ୍ଦେ ବିଷ୍ଣୁଂ ଭବ୍‌ଭୟ ହରଂ ସର୍ବ ଲୋକୈକ ନାଥଂ ।।

## ସୂର୍ଯ୍ୟନାମ ସ୍ମରଣ :

ଓଁ ବିଷ୍ଣବେ ନମଃ, ଧାତ୍ରେ ନମଃ, ବରୁଣାୟ ନମଃ ।
ୟାମାୟ ନମଃ, ପୂଷ୍ଣେ ନମଃ, ବରୁଣାୟ ନମଃ ।।
ଭଗାୟ ନମଃ, ଇନ୍ଦ୍ରାୟ ନମଃ, ଅଂଶୁମତେ ନମଃ ।
ପର୍ଯନ୍ୟାୟ ନମଃ, ମିତ୍ରାୟ ନମଃ, ବିବିସ୍ୱତେ ନମଃ ।।

## ରୋଗମୁକ୍ତ ହେବାପାଇଁ ସୂର୍ଯ୍ୟସ୍ତୋତ୍ର :

ଶୀର୍ଣଂ ଘ୍ରାଣାଘ୍ରି ପ୍ରାଣୀନ୍, ବଣିଭର ପଘ ନୈ ଘର୍ଘରାବ୍ୟକ୍ତ
ଘୋଷାନ୍ ଦୀର୍ଘାଘ୍ରାଣିନ୍ ଘେଷି ।
ପୁନରପି ଘଟୟୋତକ ଉଲ୍ଲାଘୟେନଃ ତଃ, ଘର୍ମାସ୍ତୋଦସ୍ୟ
ବୋ ଅନ୍ତଃଦ୍ୱିଗୁଣା ଘନ ଘୃଣା ନିଘ୍ନ ନିର୍ବିଘ୍ନ ବୃତ୍ତେଃ,
ଦର୍ତ୍ତାର୍ଘ୍ୟ ସିଦ୍ଧ ସଂଘୈ ବିବଧତୁ ।
ଘୃଣୟଂ ଶୀଘ୍ରଂ ଘୋବିଘାତଂ ।

ଏହାପରେ ଶଂକରାଚାର୍ଯ୍ୟ କୃତ :

## ଜଗନ୍ନାଥାଷ୍ଟକ ଜପ ୧ଥର :

କଦାଚିତ୍ କାଳିନ୍ଦୀ ତଟବିପିନେ ସଙ୍ଗୀତ କବେରୋ ।
ମୁଦାଭିରି ନାରୀ ବଦନ କମଳା ସ୍ୱାଦ ମଧୁପଃ ।।
ରମା ଶମ୍ଭୁଃ ବ୍ରହ୍ମା ସୁରପତି ଗଣେଶାର୍ଚ୍ଚିତ ପଦେ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୧

ଭୁଜେ ସବ୍ୟେ ବେଣୁଂ ଧିରସି ଶିଖିପୁଚ୍ଛଂ କଟିତଟେ ଦୁକୁଳଂ ।
ନେତ୍ରାନ୍ତେ ସହର କଟାକ୍ଷଂ ବିବିଧତେ ।।
ସଦା ଶ୍ରୀମଦ୍ ବୃନ୍ଦାବନ ବସତି ଲୀଳା କରିଚୟୋ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୨
ମହାମ୍ଭୋଧେ ସ୍ତୀରେ କନକ ରୁଚିରେ ନୀଳଶିଖରେ ।
ବସନ ପ୍ରସାଦାନ୍ତେ ସହଜ ବଳଭଦ୍ରେଣ ବଳିନାଂ ।।
ସୁଭଦ୍ରା ମଧ୍ୟସ୍ଥଃ ସକଳ ସୁରଦେବ୍ୟ ବରରବୋ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୩
କୃପାପାରାବାରଃ ସଜଳ ଜଳଦ ଶ୍ରେଣୀ ରୁଚିରେ ।
ରମାବାଣୀ ରାମ ସ୍ଫୁରଦମଳ ପଦ୍ମେ କ୍ଷଣ ମୁଖୌ ।।
ସୁରୈ ରିନ୍ଦ୍ରୈରାଧ୍ୟ ଶ୍ରୁତିଗଣଶିଖା ଗୀତ ଚରିତୋ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୪
ରଥାରୂଢ଼ୋ ଗଚ୍ଛତ୍ ପଥି ମିଳିତ ଭୂଦେବ ପଟଳୈ ।
ସ୍ତୁତି.ପ୍ରାଦୁଃଭାବ ପ୍ରତିପଦ ମୁପାକର୍ଣ୍ୟ ସଦୟଃ ।।
ଦୟାସିନ୍ଧୁଃ ବନ୍ଧୁଃ ସକଳ ଜଗତାଂ ସିନ୍ଧୁ ସୁତୟାଃ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୫
ନେବୈ ଯାଚେ ରାଜ୍ୟଂ ନଚ କନକ ମାଣିକ୍ୟ ବିଭବଂ ।
ନଯାଚେ ଅହଂରମ୍ୟାଂ ସକଳଜନକାମ୍ୟାଂ ବରବଧୂଂ ।।
ସଦାକାଳେ କାଳେ ପ୍ରମଥ ପତିନାଂ ଗୀତ ଚରିତଂ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୬
ପରଂବ୍ରହ୍ମଂ ପୀଡ୍ୟଃ କୁବଳୟୋ ବଳତୋତ୍ଫୁଲ ନୟନଂ ।
ନାବାସୀଲାଳାଦୌ ନିହିତ ଚରଣ ଅନନ୍ତ ଶିରସି ।।
ରସାନେଦାରାଧା ସରସ ବପୁରାଲିଙ୍ଗନ ସୁଖଃ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୭
ହରତଂ ସଂସାରଂ ଦ୍ରୁତରଂ ଅସାରଂ ସୁରପତେ ।
ହରତଂ ପାପାନାଂ ବିତତି ମପରାଂ ଯାଦବପତେ ।।
ଅହୋ ଦୀନନାଥ ନିହିତ ଅଚଳଂ ନିଶ୍ଚିତପଦ ।
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁମେ ।। ୮

ଜଗନ୍ନାଥାଷ୍ଟକ ପୁଣ୍ୟଂ ଯଃପଠେତ୍ ପ୍ରୟଶୃତି ।
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁଲୋକଂ ସଃଗଚ୍ଛତି ।।

ଗଙ୍ଗାଧର ମେହେରଙ୍କ କୃତ —

## ବିଶ୍ୱନିୟନ୍ତାଙ୍କୁ ବନ୍ଦନା :

ବିଶ୍ୱଜୀବନ ହେ ତୁମଙ୍କୁ କରୁଣା ସିନ୍ଧୁ
ବୋଲିବାକୁ ମନ କହୁନାହିଁ ଯେଣୁ ସିନ୍ଧୁତବ କୃପାସିନ୍ଧୁ
ତୁମ ଭଜନରେ ହେବିନାହିଁ ନାଥ ମାଳା ଜପିବାକୁ ବାଧ
କୋଟି କୋଟି ଗ୍ରହ କଣ୍ଢିସେ ମାଳାର କେଜପି ପାରିବ ସାଧ୍ୟ ।
ଦେଇନାହୁଁ ବଳ ପଦଧୂଳି ଘେନି ପାରିବ ନାହିଁ ମୋ ମୁଣ୍ଡ
କୋଟି କୋଟି ରବି ଧୂଳିରୂପେ ତୁମ ପାଦେ ହୋଇଛନ୍ତି ରୁଣ୍ଡ ।
ହୃଦୟର କଥା ଜାଣିବା ପାଇଁକି ତୁମ୍ଭର ଅସୀମ ଶକ୍ତି
ସେତିକି ଘେନିବ ଯେତିକି ଅଛି ମୋ ହୃଦେ ତୁମପ୍ରତି ଭକ୍ତି ।
ଥାପିବାକୁ ତୁମ ମୂରତି ମୋ କ୍ଷୁଦ୍ର ହୃଦୟରେ ନାହିଁ ସ୍ଥାନ
ସର୍ପଥଗରଭେ ରହିକି ପାରଇ ହିମାଳୟ ସାନୁମାନ ।
କିଦେଇ ପୂଜିବି ଯାହା ମୁଁ ଦେଖୁଛି ସବୁ ତୁମରି ପ୍ରସାଦ
ଯାହା ପରସାଦ ତାକୁ ଅରପିଲେ ହେବସିନା ଅପରାଧ ।
ମୁଁକାର ମାତର ମୋର ନୁହେଁ ବୋଲି କହିବାକୁ ନାହିଁ ବାଟ
ଦୂରୁ ଶ୍ରୀଚରଣେ ପ୍ରଣାମ କରୁଛି ଘେନ ହେ ବିଶ୍ୱସମ୍ରାଟ ।

ଶେଷରେ ମହାମୃତ୍ୟୁଞ୍ଜୟ ମନ୍ତ୍ର ୨୪ ଥର ଜପ କରି ପ୍ରାର୍ଥନା ଶେଷ କରେ —

## ମହାମୃତ୍ୟୁଞ୍ଜୟ ମନ୍ତ୍ର :

ଓଁ ତ୍ର୍ୟମ୍ବକଂ ଯଜାମହେ, ସୁଗନ୍ଧିଂ ପୁଷ୍ଟିବର୍ଦ୍ଧନଂ
ଉର୍ବାରୁକ ମିବ ବନ୍ଧନାତ୍ ମୃତ୍ୟୁମୁକ୍ଷୀୟ ମା ଅମୃତାତ୍ ।
ଓଁ ତତ୍‌ସତ୍ ।।

ଉପାସନା ଶେଷ

ସମାପ୍ତ

# ପରିଶିଷ୍ଟ

## ସେକାଳ ଓ ଏକାଳ ମଧ୍ୟରେ ଏକ ତୁଳନାତ୍ମକ ବିବରଣୀ :

ଆମେ ଯଦି ସେକାଳ ଓ ଏକାଳ ମଧ୍ୟରେ ଏକ ତୁଳନାତ୍ମକ ବିବରଣୀ ପ୍ରଦାନ କରିବା ତେବେ ବିଶେଷ ପାର୍ଥକ୍ୟ ଦେଖିବାକୁ ପାଇବା । ବେଶିଦୂରକୁ ନଯାଇ ସ୍ୱାଧୀନତା ପ୍ରାପ୍ତିର ପୂର୍ବ ୫୦ ବର୍ଷ ଓ ପର ୫୦ ବର୍ଷ ସମୟକୁ ବିଚାରକୁ ନେବା ।

ଆମ ଦେଶରେ ଅନେକ ବର୍ଷ ହେଲା ବ୍ରିଟିଶ ଶାସନ ଚାଲିଥିଲା । ସେ ସମୟରେ ଜନସାଧାରଣ ଭୟଭୀତ ହୋଇ ଚଳୁଥିଲେ । ନାଲି ପଗଡ଼ିଆଙ୍କୁ ରାସ୍ତାରେ ଦେଖିଲେ ଘର ଭିତରେ ଲୁଚୁଥିଲେ । ଶାସନ ଖୁବ୍ କଡ଼ା ଥିଲା । ସାମାନ୍ୟ ଦୋଷକୁ କଠୋର ଦଣ୍ଡ ଦିଆଯାଉଥିଲା । ସେତେବେଳେ କୌଣସି ବ୍ୟକ୍ତି କାରାବରଣ କଲେ ଜାତି ଚାଲିଯାଏ ବୋଲି ଲୋକଙ୍କର ବିଶ୍ୱାସ ଥିଲା । ଦେଶରେ ଅପରାଧଜନିତ କାର୍ଯ୍ୟକଳାପ କମ୍ ଘଟୁଥିଲା । ଜନସାଧାରଣଙ୍କର ବାକ୍‌ସ୍ୱାଧୀନତା ଆଦୌ ନଥିଲା କହିଲେ ଚଳେ । ସରକାରକୁ ସମାଲୋଚନା କଲେ ଦଣ୍ଡ ପାଇବାର ଭୟ ଥିଲା । ଜ୍ୱଳନ୍ତ ଉଦାହରଣ କବିବର ରାଧାନାଥ ରାୟ ।

ସମାଜରେ ଧନୀ, ଜମିଦାର ମହାଜନମାନଙ୍କର ପ୍ରଭୁତ୍ୱ ଅଧିକ ଅନୁଭୂତ ହେଉଥିଲା । ନାନାଧରଣର ଅନ୍ଧବିଶ୍ୱାସ ଭାରି ରହିଥିଲା । ଛୁଆଁ ଅଛୁଆଁ ଭେଦଭାବ ଗଭୀରତର ଥିଲା । ଲୋକେ ପାଠଶାଠରେ ଆଗୁଆ ନଥିଲେ । ଶତକଡ଼ା ୯୦ ଜଣ ନିରକ୍ଷର ଥିଲେ । ଅଫିସ୍‌ମାନଙ୍କରେ ବାହାର ପ୍ରଦେଶର ବଙ୍ଗାଳୀ, ବିହାରୀ ଓ ତେଲେଙ୍ଗାମାନଙ୍କର ପ୍ରତିପତ୍ତି ଥିଲା । ବିଦ୍ୟାରେ ଅନଗ୍ରସରତା ହେତୁ ଅଫିସମାନଙ୍କର କିରାଣି ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କ ଦ୍ୱାରା ଓଡ଼ିଆମାନେ ନିର୍ଯ୍ୟାତିତ ହେଉଥିଲେ । ଗୋଟିଏ ଗୋଟିଏ ଗ୍ରାମରେ ଦୁଇ ଚାରିଜଣ ଲେଖିପଢ଼ି ଜାଣୁଥିଲେ । ୧୯୨୦ ମସିହା ପର୍ଯ୍ୟନ୍ତ ଲୋକମାନଙ୍କର ଶିକ୍ଷାଗତ ଯୋଗ୍ୟତା ଖୁବ୍ ନିମ୍ନରେ ଥିଲା । ଏହିପରି ୧୯୨୫ ମସିହା ପର୍ଯ୍ୟନ୍ତ ଗଡ଼ଜାତ ସମେତ ଓଡ଼ିଶା ରାଜ୍ୟରେ ମୋଟେ ୨୫ ଟି ହାଇସ୍କୁଲ ଥିଲା । ଜନସାଧାରଣଙ୍କର ପରିବେଶ ଜ୍ଞାନ ମୋଟେ ନଥିଲା । ସ୍ୱାସ୍ଥ୍ୟରକ୍ଷା ସମ୍ବନ୍ଧେ କିଛି ଜ୍ଞାନ ନଥିଲା । ରାଜ୍ୟର ବଡ଼ ବଡ଼ ପଦବୀ ବାହାର ଲୋକଙ୍କ ହସ୍ତେ ନ୍ୟସ୍ତ ଥିଲା । ଓଡ଼ିଆମାନେ ନିଜ ରାଜ୍ୟରେ ବିଦେଶୀପରି ଚଳୁଥିଲେ । ନାନା ରୋଗ ସମାଜ ଜୀବନକୁ ଧ୍ୱଂସ କରୁଥିଲା । ଜନସାଧାରଣଙ୍କର ଆର୍ଥିକ ସ୍ଥିତି ଭଲ ନଥିଲା । ଦେଶର ଶିଳ୍ପ, କୃଷି ବା କୃଷକର କୌଣସି ଉନ୍ନତି ସାଧିତ ହୋଇନଥିଲା । କେତେକ ଧୂର୍ତ୍ତ ଲୋକ ବ୍ରିଟିଶ ସରକାରକୁ ହାଁଜୀ ହାଁଜୀ କହି ଫାଇଦା ଉଠାଉଥିଲେ ।

ରାଜାରାଜୁଡ଼ା ଅଞ୍ଚଳର ଲୋକେ ଆହୁରି ଦୈନ୍ୟ ଥିଲେ । ଓଡ଼ିଶାର କେତୋଟି ରାଜା ଓ ଜମିଦାରଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଅତ୍ୟାଚାରୀ ଥିଲେ । ସେମାନେ ବ୍ରିଟିଶ ଶାସନର ସହାୟକ ଥିଲେ । ମହାତ୍ମାଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ତେଜି

ଉଠିଥିଲା, ମାତ୍ର ବିଦେଶୀ ଶାସନ ନିର୍ଦ୍ୱନ୍ଦ୍ୱରେ ଚାଲିଥିଲା । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ରପ୍ରଦେଶ ହେବାରୁ ଓଡ଼ିଆଙ୍କର ମାନସମ୍ମାନ ବୃଦ୍ଧି ପାଇଲା । ୧୯୪୦ ମସିହା ପରେ ସ୍ୱାଧୀନତା ଲାଭ କରିବାର ଅଳ୍ପ କିଛି ବର୍ଷ ପୂର୍ବରୁ ବିଭିନ୍ନ ସ୍ଥାନରେ ଶିକ୍ଷାନୁଷ୍ଠାନମାନ ଗଢ଼ିଉଠିଲା । ଲୋକେ ଶିକ୍ଷାର ମହତ୍ତ୍ୱ କିଛିଟା ବୁଝିଲେ କିନ୍ତୁ ବହୁ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହିଥିଲେ । ଦେଶରେ ଜଙ୍ଗଲ ସମ୍ପଦ ଲୋଭନୀୟ ଥିଲା । ବୃକ୍ଷକୁ ଦେବବୃକ୍ଷ ମନେକରି ଲୋକେ କାଟୁ ନଥିଲେ । ମାଫିଆ ଗୋଷ୍ଠୀଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ସେତେବେଳେ ଅଧିକାଂଶ ଲୋକଙ୍କର ଭଗବତ ପ୍ରୀତି ଗଭୀର ଥିଲା । ରୁଚି ଅନୁଯାୟୀ ଲୋକଙ୍କ ଅଭାବ କମ୍ ଥିଲା । ନୀତି ଅନୀତି ସେମାନଙ୍କୁ ମାଲୁମ ଥିଲା । ବୈଜ୍ଞାନିକ ଉଦ୍ଭାବନ ବିଶେଷ ଜଣା ନଥିଲା । ଲୋକେ ଅଳ୍ପକେ ଚଳିଯାଉଥିଲେ । ଭାରତ ସ୍ୱାଧୀନତା ପାଇଲା ବେଳକୁ ସାକ୍ଷର ସଂଖ୍ୟା ଶତକଡ଼ା ୧୦ କି ୧୨ ଥିଲା । ଲୋକେ ସାଧୁ, ସଚ୍ଚୋଟ, ନୀତିପରାୟଣ ଥିଲେ । ନିଜ ନିଜ କର୍ତ୍ତବ୍ୟ କ'ଣ ସେମାନେ ଜାଣୁଥିଲେ । ନିଃସ୍ୱାର୍ଥପର ଜୀବନକୁ ଆଦର କରୁଥିଲେ । କିନ୍ତୁ ଯୁଗର ପରିବର୍ତ୍ତନ ହୋଇଯିବା ସଙ୍ଗେ ସଙ୍ଗେ ରୁଚି ବଦଳିଗଲା । ୧୯୪୭ ଅଗଷ୍ଟ ପନ୍ଦର ତାରିଖରେ ଯୋଗୀ ଶ୍ରୀ ଅରବିନ୍ଦଙ୍କ ଜନ୍ମଦିବସରେ ଭାରତ ସ୍ୱାଧୀନତା ଲାଭ କଲା । କିନ୍ତୁ ବ୍ରିଟିଶ ଶାସକର କୂଟନୀତି ଫଳରେ ଭାରତ ଦ୍ୱିଖଣ୍ଡିତ ହୋଇଥିଲା । ଭାରତୀୟ ନେତାମାନେ ଆଶା କରିଥିଲେ ପାକିସ୍ଥାନବାସୀ ସ୍ୱତନ୍ତ୍ର ଦେଶ ପାଇଲାପରେ ନିଜ ଉନ୍ନତିରେ ଲାଗିପଡ଼ିବେ । ମାତ୍ର ତାହା ଭୁଲ ପ୍ରମାଣିତ ହେଲା । ସେହିଦିନଠାରୁ ପାକିସ୍ଥାନ ଭାରତ ବିରୋଧରେ ବିଷ ଉଦ୍‌ଗିରଣ କରିଚାଲିଛି ଏବଂ ବହୁ ଗହନ ସମସ୍ୟା ସୃଷ୍ଟି କରୁଛି । ତାକୁ ସାହାଯ୍ୟ କରିବାପାଇଁ ଦେଶର ଅଭାବ ନାହିଁ ।

ସ୍ୱାଧୀନତା ପରେ ରାଜ୍ୟରେ ତଥା ଦେଶରେ ନାନା ଶିକ୍ଷାନୁଷ୍ଠାନ ଗଢ଼ାହେଲା । ସାକ୍ଷରତା ବଢ଼ିବା ସଙ୍ଗେ ସଙ୍ଗେ ବିଜ୍ଞାନ ଶିକ୍ଷାପ୍ରତି ଲୋକେ ଆକୃଷ୍ଟ ହେଲେ । ସ୍ୱାଧୀନତା ପୂର୍ବରୁ ରାଜ୍ୟରେ ମାତ୍ର ଗୋଟିଏ ବିଶ୍ୱବିଦ୍ୟାଳୟ ଥିଲା । ଏବେ ଓଡ଼ିଶା ରାଜ୍ୟରେ ପ୍ରାୟ ସାତ ଆଠଗୋଟି ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଛି । ଯେଉଁ ଦେଶପ୍ରେମୀ ସଂଗ୍ରାମୀମାନେ ବିଦେଶୀଶାସନ ବିରୁଦ୍ଧରେ ଲଢ଼ିଥିଲେ ମୁଖ୍ୟତଃ ସେମାନେ ଦେଶରେ ସମ୍ବିଧାନ ଗଠନ କଲେ । ଓଡ଼ିଶାର ମୋଗଲବନ୍ଦି ଅଞ୍ଚଳ ସହିତ ଗଡ଼ଜାତଗୁଡ଼ିକ ମିଶି ବୃହତ୍ତର ଓଡ଼ିଶା ରୂପ ନେଲା । ନୂତନ ସମ୍ବିଧାନ ଅନୁଯାୟୀ ଭାରତ ଏକ ସାର୍ବଭୌମତ୍ୱ ଗଣତନ୍ତ୍ର ରାଜ୍ୟରେ ପରିଣତ ହେଲା । ଜାତି- ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କର ସମାନ ଅଧିକାର ରହିଲା । ପ୍ରଥମ ଦୁଇଦଶନ୍ଧି ପର୍ଯ୍ୟନ୍ତ ଶାସନ ଭଲ ଚାଲିଲା । କୃଷି ଶିଳ୍ପର ଉନ୍ନତି ପାଇଁ ପଞ୍ଚବାର୍ଷିକ ଯୋଜନାମାନ ପ୍ରଚଳନ ହେଲା ।

ବିଦେଶରୁ ଅଜସ୍ର ଅର୍ଥ ଋଣ କରାଯାଇ ଶାସନ କାର୍ଯ୍ୟରେ ବିନିଯୋଗ କରାଗଲା । ଦେଶ ସବୁକ୍ଷେତ୍ରରେ ଉଲ୍ଲେଖନୀୟ ଅଗ୍ରଗତି କଲା । ମାତ୍ର ଟଙ୍କା ଅନୁଯାୟୀ କାମ ହୋଇପାରିଲା ନାହିଁ । ଋଣ ସୂତ୍ରରେ ଅଣାଯାଇଥିବା ଅର୍ଥର ସିଂହଭାଗ ବାଟମାରଣା ହେବାରେ ଲାଗିଛି ।

କିନ୍ତୁ ୫୫ବର୍ଷ ବିତିଯାଇଥିଲେ ମଧ ବହୁଭାଗ ଲୋକ ନିରକ୍ଷର ଅଛନ୍ତି । ଏହି ନିରକ୍ଷରତା ଗାଁ ଗହଳରେ ସର୍ବାଧିକ ଅନୁଭୂତ ହେଉଛି । ତେଣୁ ପଞ୍ଚାୟତଶାସନ ଫଳପ୍ରଦ ହେଉନାହିଁ । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ସମାନ ଅଧିକାର ପାଇଛନ୍ତି । ଦାୟିତ୍ୱ ତୁଲାଇବାରେ ଉପଯୁକ୍ତ ଲୋକର ଅଭାବ ଘଟୁଛି । ତେଣୁ ସର୍ବପ୍ରଥମେ ସମସ୍ତେ ଶିକ୍ଷାଲୋକ ପ୍ରାପ୍ତ ହୁଅନ୍ତୁ । ସ୍କୁଲ କଲେଜମାନଙ୍କରେ ମୂଲ୍ୟବୋଧଭିତ୍ତିକ ଶିକ୍ଷାର ଘୋର ଅବନତି ଦେଖାଦେଇଛି । କ୍ଷୁଦ୍ର ୱାର୍ଡ଼ମେମ୍ବରଠାରୁ ଆରମ୍ଭ କରି ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀଙ୍କ ପର୍ଯ୍ୟନ୍ତ ଏବଂ ସାମାନ୍ୟ ଚପରାସୀଠାରୁ ଦେଶର ସର୍ବୋଚ୍ଚ ଶାସକ ପର୍ଯ୍ୟନ୍ତ ସମସ୍ତେ ଅର୍ଥପାଗଳ ହୋଇପଡ଼ିଛନ୍ତି । ଇଞ୍ଜିନିୟର, ଡାକ୍ତରଙ୍କ କଥା ଛାଡ଼ । ନୀତି ବା ଅନୀତିରେ ଅର୍ଥ ଉପାର୍ଜନ କରିବା ପ୍ରତ୍ୟେକ ବ୍ୟକ୍ତିଙ୍କର ବିଶେଷତଃ ଜାଣିବା ଶୁଣିବା ଲୋକଙ୍କର ମୁଖ୍ୟ କାର୍ଯ୍ୟ ବୋଲି ମନେହେଉଛି । ଦେଶକଥା, ରାଜ୍ୟକଥା, ଭାଷା ସାହିତ୍ୟ କଥା ଚିନ୍ତା କରିବାକୁ କାହାରି ବେଳ ନାହିଁ । ଯେ ଯେତେ ଟଙ୍କା ବିଦେଶୀ ବ୍ୟାଙ୍କରେ ରଖିପାରିଲା ସେ ସେତିକି ମହତ୍ତର ବ୍ୟକ୍ତି ବୋଲାଇଲା । ବ୍ୟକ୍ତିଗତ ଚରିତ୍ର ତଥା ଜାତୀୟ ଚରିତ୍ର ଧ୍ୱଂସମୁଖୀ ହେବାକୁ ବସିଲାଣି । ସ୍ୱାର୍ଥପରତା ଆମ୍ଭମାନଙ୍କୁ ଏତେ ଗ୍ରାସିଲାଣି ଯେ ସମୂହକଥା ଚିନ୍ତା ନକରି ନିଜ କଥାରେ ସମୟ କଟୁଛି । ସର୍ବୋପରି ଅପରାଧପ୍ରବଣ ବ୍ୟକ୍ତିମାନେ ଓ ମାଫିଆ ଦଲାଲମାନେ ଶାସନର ଶୀର୍ଷସ୍ଥାନରେ ବସିଯାଉଛନ୍ତି । କୋଟି କୋଟି ଟଙ୍କା ହଡ଼ପ କରି ମଧ ପୁନଃ ଶାସନଗାଦିରେ ବସିଯାଉଛନ୍ତି । ଏପରିସ୍ଥଳେ ଦେଶ ଆଗେଇବ କିପରି ? ଆହୁରି ମଧ ହିନ୍ଦୁ ମୁସଲମାନ ଉଭୟଙ୍କ ପାଇଁ ଏକ ଦେୱାନୀ ଆଇନର ଆବଶ୍ୟକତା ପଡୁଛି । ଜନ ବିସ୍ଫୋରଣ ଦେଶର ଉନ୍ନୟନ କାର୍ଯ୍ୟରେ ଘୋର ବାଧା ସୃଷ୍ଟି କରୁଛି । ଶିକ୍ଷା ସମସ୍ୟା, ପରିମଳ ସମସ୍ୟା, ପରିବେଶ ସମସ୍ୟା, ସ୍ୱାସ୍ଥ୍ୟ ପ୍ରଭୃତି ପ୍ରତ୍ୟେକ କ୍ଷେତ୍ରରେ ଜନ ବିସ୍ଫୋରଣର କୁପ୍ରଭାବ ଅନୁଭୂତ ହେଉଛି । ଏଣେ ପାଶ୍ଚାତ୍ୟ ଅପସଂସ୍କୃତି ଦେଶର ସଂସ୍କୃତିକୁ ଧ୍ୱଂସଆଡ଼କୁ ଟାଣୁଛି ଏବଂ ବହୁଦେଶୀୟ କମ୍ପାନୀର ରାଜୁତି ଯୋଗୁଁ ଅର୍ଥନୈତିକ ଦୁର୍ଗତି ପରିଦୃଷ୍ଟ ହେଉଛି । ଦେଶବାସୀଙ୍କୁ ଠିକ୍ ମାର୍ଗରେ ପରିଚାଳିତ କରିବା ପାଇଁ ଉପଯୁକ୍ତ ମାର୍ଗଦର୍ଶକଙ୍କର ଅଭାବ । ତଥାପି ରାଜ୍ୟରେ ଆଧ୍ୟାତ୍ମିକ ଚିନ୍ତାଧାରା ଜାଗ୍ରତ ହେବାରୁ ଆଲୋକର ସନ୍ଧାନ ମିଳୁଛି । ଆଶା କରାଯାଉଛି ଦେଶ ଭବିଷ୍ୟତରେ ନିଶ୍ଚୟ ପରିବର୍ତ୍ତନ ହେବ ।

ଆଜକୁ ଏକଶହ ବର୍ଷ ପୂର୍ବେ ଉନବିଂଶ ଶତାବ୍ଦୀର ଶେଷଦଶକରେ ମହାଶକ୍ତିର ଅମର ମନୀଷୀ ସ୍ୱାମୀ ବିବେକାନନ୍ଦ ଯେଉଁ ମହତବାକ୍ୟ ଉଚ୍ଚାରଣ କରିଥିଲେ ତାହା ଆମର ପ୍ରଣିଧାନଯୋଗ୍ୟ– "ସମଗ୍ର ପୃଥିବୀ ଆଲୋକ ଆବଶ୍ୟକ କରେ । ସେହି ଆଲୋକ କେବଳ ଭାରତବର୍ଷରେ ଅଛି । ତାହା ସମଗ୍ର ପୃଥିବୀକୁ ଉଦ୍‌ଭାସିତ କରିବ । ବର୍ତ୍ତମାନ ସେ ସମୟ ଆଗତପ୍ରାୟ ।"



## ଗୀତାଭବନ, ହଳଦିଆ, ଜି - ଖୋର୍ଦ୍ଧା

ସେବାକ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ

**ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନଙ୍କୁ**

# ମାନପତ୍ର

ମହାଶୟ,

ଆପଣ ଖୋର୍ଦ୍ଧା ଜିଲ୍ଲା, ଜଟଣୀ ଥାନା ଅନ୍ତର୍ଗତ ଗୋବିନ୍ଦପୁର, ତଳଖେତା ମୌଜାରେ ୧୯୧୯ ମସିହା ଡିସେମ୍ବର ମାସ ୪ ତାରିଖ ମାର୍ଗଶିର ମାସ ଶେଷ ମାଣବସା ଗୁରୁବାର ଦିନ ପିତା ବସୁଦେବ ପ୍ରଧାନ ଓ ମାତା ସେରନ୍ତୀ ଦେଈଙ୍କ କୋଳମଣ୍ଡନ କରି ସମସ୍ତଙ୍କୁ ଆନନ୍ଦିତ କରିଥିଲେ । ୧୯୪୨ ମସିହାରେ ଆପଣ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇଥିଲେ । ବି.ଜେ.ବି. ହାଇସ୍କୁଲ ଓ ନିରାକାରପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ଆପଣ କୃତିତ୍ୱର ସହ କାର୍ଯ୍ୟକରି ୧୯୮୧ ମସିହା ଅକ୍ଟୋବର ୩୧ ତାରିଖରେ ଅବସର ନେବାପରେ ଆପଣ ଏବେ ସୁଦ୍ଧା ବାଣୀ ଆରାଧନାରେ ନିୟୋଜିତ ।

ଆପଣଙ୍କ ରଚିତ ସାମାଜିକ ଶିକ୍ଷା, ବୁକ୍ ଅଫ ସିମ୍ପୁଲ୍ ଟ୍ରାନ୍ସଲେସନ, ଦରିଆପାରିର ଆଠଟି ରତ୍ନ, ମରଦେହେ ଅମର ମଣିଷ, ଲାଲମାଟିର ସପ୍ତରଥୀ, କିଶୋର କୌମୁଦୀ, ଜତୁଗୃହରେ ଜରଦ୍‌ଗବ, ନିର୍ବେଦର ବେଦଧ୍ୱନି, ତୁଣ୍ଡଭର ବିଷଜ୍ୱାଳା, ଲାଲମାଟିର ସୌରଭ ଓ ଆଜିର ପ୍ରବନ୍ଧ ଓଡ଼ିଆ ଜାତିର ଅମୂଲ୍ୟ ସମ୍ପଦ ।

ଆପଣଙ୍କର ଏ ଦେଶସେବା ଓ କାବ୍ୟ ପାଇଁ ଆପଣଙ୍କୁ ସମ୍ବର୍ଦ୍ଧିତ କରି ହଳଦିଆ ଗୀତାଭବନ ଆନନ୍ଦିତ । ଭଗବାନ ଜଗନ୍ନାଥ ଆପଣଙ୍କୁ ଆୟୁରାରୋଗ୍ୟ ପ୍ରଦାନ କରନ୍ତୁ ।

*ଜୟ ଜଗନ୍ନାଥ*

ଚତୁର୍ଥ ବାର୍ଷିକ ଗୀତାଯଜ୍ଞ | ଗୀତାଭବନ
ତା ୦୬.୦୩.୧୯୯୯ | ହଳଦିଆ

# ନୂପୁର

ରୌପ୍ୟଜୟନ୍ତୀ ସମ୍ମାନ - କୁମାରୋତ୍ସବ - ୧୯୯୮

## ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ

(ଐତିହାସିକ ଓ ସାହିତ୍ୟିକ)

ମହାଶୟ,

ଖୋର୍ଦ୍ଧାର ଐତିହାସିକ ଓ ସାରସ୍ୱତ ଜାଗରଣକୁ ଋଦ୍ଧିମନ୍ତ ଓ ମର୍ଯ୍ୟାଦାସମ୍ପନ୍ନ କରିବାରେ ଆପଣଙ୍କ ସାହିତ୍ୟ ସାଧନା ଚିରସ୍ମରଣୀୟ । ଛାତ୍ରାବସ୍ଥାରେ ୧୯୪୨ ମସିହାରେ ଭାରତଛାଡ଼ ଆନ୍ଦୋଳନରେ ଅଂଶଗ୍ରହଣ କରି ଶିକ୍ଷା ସମାପ୍ତ ପରେ ୧୯୪୪ ମସିହାରେ ଶିକ୍ଷକତା ଭଳି ଏକ ମର୍ଯ୍ୟାଦାପୂର୍ଣ୍ଣ ପଦବୀରେ କାର୍ଯ୍ୟ ଆରମ୍ଭ କରି ପ୍ରଧାନଶିକ୍ଷକ ଭାବରେ ୧୯୮୧ ମସିହାରେ ଅବସର ଗ୍ରହଣ କରିଅଛନ୍ତି । ଶିକ୍ଷକତା ସମୟରେ ଆପଣଙ୍କ ଲିଖିତ ବୁକ୍ ଅଫ୍ ସିଂପୁଲ ଟ୍ରାନ୍ସଲେସନ ଓ ମାଟ୍ରିକ୍ ଶ୍ରେଣୀ ପାଇଁ ଏକ ସାମାଜିକ ପୁସ୍ତକ ଆପଣଙ୍କ ବିଜ୍ଞତା ଓ ସାଧନାର ପରିଚୟ ଦିଏ । ଅଦ୍ୟାବଧି ଦରିଆପାରିର ଆଠଟି ରତ୍ନ, ମରଦେହେ ଅମର ମଣିଷ, ପ୍ରଥମ ଓ ଦ୍ୱିତୀୟ ଭାଗ, ଲାଲ୍‌ମାଟିର ସପ୍ତରଥୀ, କିଶୋର କୌମୁଦୀ, ଜତୁଗୃହରେ ଜରଦ୍‌ଗବ, ନିର୍ବେଦର ବେଦଧ୍ୱନି, ତୁଣ୍ଡୁଭର ବିଷଜ୍ୱାଳା, ଲାଲମାଟିର ସୌରଭ ପ୍ରଭୃତି ପ୍ରକାଶିତ ପୁସ୍ତକ ଆପଣଙ୍କ ସାରସ୍ୱତ ସାଧନାର ପ୍ରତିଫଳନ । ଅପରନ୍ତୁ ସଂଖ୍ୟାଧିକ ଗବେଷଣାମୂଳକ ପ୍ରବନ୍ଧ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ।

ଖୋର୍ଦ୍ଧାର ସାଂସ୍କୃତିକ ଓ ସାରସ୍ୱତ ଅନୁଷ୍ଠାନମାନଙ୍କ ସହିତ ସମ୍ପୃକ୍ତି ଆପଣଙ୍କ କର୍ମପ୍ରବଣତାର ଏକ ବିଶେଷ ଅଂଶ । ନିରବଚ୍ଛିନ୍ନ ସାହିତ୍ୟ ସାଧନା, ଐତିହାସିକ ଗବେଷଣା, ଶିକ୍ଷା ତଥା ସମାଜସେବା କାର୍ଯ୍ୟରେ ଉଲ୍ଲେଖନୀୟ ଅବଦାନ ପାଇଁ ଆପଣ ପ୍ରଗତି ସାଂସ୍କୃତିକ ଅନୁଷ୍ଠାନ, ଓଲସିଂହ, ରୋଟାରୀ କ୍ଲବ, ଖୋର୍ଦ୍ଧା, ଗୀତା ଗବେଷଣା କେନ୍ଦ୍ର, ଖୋର୍ଦ୍ଧା, ଖୋର୍ଦ୍ଧା ଏନ୍.ଏ.ସି, ଶତାବ୍ଦୀ, ଜଟଣୀ, ମନସ୍ୱିନୀ ଓ ପୌରସଦନ, ପୁରୀ ଦ୍ୱାରା ଉଚ୍ଚପ୍ରଶଂସିତ ଓ ସମ୍ବର୍ଦ୍ଧିତ ।

ମହାଶୟ, ଖୋର୍ଦ୍ଧାର ଜନଜୀବନ ଓ ଐତିହାସିକ ତଥ୍ୟ ଉପରେ ଗବେଷଣା କରି ଅତୀତର ସେହି ଅଭୁଲା ଘଟଣା ଓ ବ୍ୟକ୍ତିବିଶେଷମାନଙ୍କୁ ଲୋକଲୋଚନକୁ ଆଣିବାରେ ଆପଣଙ୍କ ସାରସ୍ୱତ ସାଧନା ଚିରଦିନ ଅମ୍ଳାନ ରହିବ ।

ହେ ଦିଗଦ୍ରଷ୍ଟା, ସାରସ୍ୱତ ସାଧକ, ଆଜି କୁମାର ପୂର୍ଣ୍ଣମୀର ମାହେନ୍ଦ୍ର ବେଳାରେ ନୂପୁର ସାଂସ୍କୃତିକ ଅନୁଷ୍ଠାନର ରୌପ୍ୟଜୟନ୍ତୀ ଅବସରରେ ଆପଣଙ୍କ ନିରବଚ୍ଛିନ୍ନ ସାହିତ୍ୟ ସାଧନା, ଐତିହାସିକ ଗବେଷଣା, ଶିକ୍ଷା ଓ ସମାଜସେବା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଆପଣଙ୍କୁ ସମ୍ବର୍ଦ୍ଧିତ କରି ଆପଣଙ୍କ ନିରାମୟ ଜୀବନ ପାଇଁ ବିଭୁ ପଦରେ ପ୍ରାର୍ଥନା କରୁଛୁ ।

ମୁଖ୍ୟ ଅତିଥି

ସଭାପତି
ନୂପର, ଖୋର୍ଦ୍ଧା

# ତୁଳସୀ ସାହିତ୍ୟ ସଂସଦ

ସ୍ଥାପିତ - ୧୯୯୩

ଗଡ଼ବାଣିକିଲୋ

ଷଷ୍ଠ ବିଷୁବ ମିଳନ ଓ ଓଡ଼ିଆ ନବବର୍ଷ

ତୁଳସୀ ସମ୍ମାନ - ୧୯୯୮

ପ୍ରାପ୍ତେଷୁ, **ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ,** ଶ୍ରୀରାମ ନଗର, ଖୋର୍ଦ୍ଧା

ମହାଭାଗ,

ଏକାଧାରରେ ଆପଣ ଜଣେ ସ୍ୱାଧୀନତା ସଂଗ୍ରାମୀ, ଆଦର୍ଶ ଶିକ୍ଷକ, ସାହିତ୍ୟିକ, ଦକ୍ଷ ସଂଗଠକ ତଥା ସମାଜସେବୀ ରୂପେ ପରିଚିତ । ନାନା ଝଡ଼ଝଞ୍ଜା ଓ ପ୍ରତିବନ୍ଧକର ସମ୍ମୁଖୀନ ହୋଇ ମଧ କର୍ତ୍ତବ୍ୟ ସାଧନରୁ ଆପଣ ତିଳେମାତ୍ର ବିଚ୍ୟୁତ ହୋଇନାହାନ୍ତି । ରେଭେନ୍ସା କଲେଜରେ ଅଧ୍ୟୟନ କରୁଥିବା ସମୟରେ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶଗ୍ରହଣ ଆପଣଙ୍କ ଜ୍ୱଳନ୍ତ ନିଦର୍ଶନ । ଜଣେ ଆଦର୍ଶ ଶିକ୍ଷକଭାବେ ଆପଣ ଅନେକ ଯୋଗ୍ୟ ପ୍ରତିଭାଧରଙ୍କ ସ୍ରଷ୍ଟା । ପ୍ରବନ୍ଧ, ଗଳ୍ପ, ଉପନ୍ୟାସ ଆଦି ସାହିତ୍ୟର ଅନେକ ବିଭାଗରେ ଲେଖନୀ ଚାଳନାକରି ଆପଣ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ କରିଛନ୍ତି ପୁଷ୍ଟ ଓ ସମୃଦ୍ଧ । ଦରିଆପାରିର ଆଠଟି ରତ୍ନ, ମରଦେହେ ଅମର ମଣିଷ, ଲାଲ୍‌ମାଟିର ସପ୍ତରଥୀ, କିଶୋର କୌମୁଦୀ, ଜତୁ ଗୃହେ ଜଗଦ୍‌ଗବ, ନିର୍ବେଦର ବେଦଧ୍ୱନି, ତୁଣ୍ଡୁଭର ବିଷଜ୍ୱାଳା, ଲାଲ୍‌ମାଟିର ସୌରଭ ଆଦି ଅନେକ ପୁସ୍ତକ ପାଇଁ ଆପଣ ପାଠକମାନଙ୍କଠାରୁ ପାଇଛନ୍ତି ଭୂରିଭୂରି ପ୍ରଶଂସା ଓ ଲେଖକୀୟ ସଫଳତା ।

ହେ କର୍ମଯୋଗୀ ! ଆଜି ତୁଳସୀ ସାହିତ୍ୟ ସଂସଦ ଏହାର ଷଷ୍ଠ ବାର୍ଷିକ ମିଳନ ଓ ଓଡ଼ିଆ ନବବର୍ଷ ଉତ୍ସବ ଅବସରରେ ଆପଣଙ୍କ ସାମଗ୍ରିକ ସୃଷ୍ଟିକୁ ସମ୍ମାନ ଜଣାଇ ଚଳିତ ବର୍ଷର ତୁଳସୀ ସମ୍ମାନ - ୧୯୯୮ ପ୍ରଦାନ କରି ନିଜକୁ ଗୌରବାନ୍ୱିତ ମନେକରୁଛି ।

ଆପଣଙ୍କ ଲେଖନୀ ମୁନରେ ଈଶ୍ୱର ପୁଷ୍ପବୃଷ୍ଟି କରନ୍ତୁ ।

# ନିଉ ଥିଙ୍କିଙ୍ଗ୍ ଫୋରମ୍

ଖୋରଧା

ସ୍ୱର୍ଣ୍ଣ ଉତ୍ସବ ସମ୍ମାନ - ୧୯୯୮

## ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ

ମହାଭାଗ,

ସ୍ୱାଧୀନତା ସଂଗ୍ରାମରେ ଆପଣଙ୍କ ସକ୍ରିୟ ଭୂମିକା, ଜାତି ପ୍ରତି ଶ୍ରଦ୍ଧା ଓ ସମ୍ମାନ ଏବଂ ସ୍ୱାଧୀନୋତ୍ତର ସମାଜସେବା ପାଇଁ ଆପଣଙ୍କୁ ଭାରତ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଅବସରରେ ନିୟୁ ଥିଙ୍କିଙ୍ଗ୍ ଫୋରମ୍ ତରଫରୁ ସ୍ୱର୍ଣ୍ଣଉତ୍ସବ ସମ୍ମାନ - ୧୯୯୮ ପ୍ରଦାନ କରାଯାଉଅଛି ।

ଆପଣଙ୍କର ସୁନାର ଭାରତ ସ୍ୱପ୍ନ ସାକାର ହେଉ, ଏହାହିଁ ଆମର ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

## ସ୍ୱାଧୀନତାର ସ୍ୱର୍ଣ୍ଣଜୟନ୍ତୀ ଅବସରରେ

ରାଜ୍ୟସ୍ତରୀୟ କବି, ଲେଖକ, କଳାକାର ସମାବେଶ, ସଙ୍କଳନ ଉନ୍ମୋଚନ,

କବିତା ପାଠୋତ୍ସବ ଓ ସାରସତ୍ୱ ସମ୍ବର୍ଦ୍ଧନା ସମାରୋହ – ୧୯୯୭

ଆୟୋଜକ - ମନସ୍ୱିନୀ, ଗାଁକଥା, ବନପୁଷ୍ପ, ଗାଁଗଣ୍ଡା ସାହିତ୍ୟ ସଂସଦ

ସ୍ଥାନ - ପୌରସଦନ, ପୁରୀ (ଓଡ଼ିଶା)

**ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ** ସା/ପୋ/ଜି - ଖୋରଧା

ଆପଣ ଏକାଧାରରେ ଜଣେ ଛାତ୍ରବତ୍ସଳ, ସୁଦକ୍ଷ ଶିକ୍ଷକ, ପ୍ରଶାସକ, କବି, ସାହିତ୍ୟିକ, ଗାଳ୍ପିକ, ପ୍ରାବନ୍ଧିକ, ଐତିହାସିକ ତଥା ସମାଜସେବୀ ଭାବରେ ସୁନାମ ଅର୍ଜନ କରିଛନ୍ତି । ଆପଣଙ୍କ ଲେଖନୀ ନିସୃତ ଦରିଆପାରିର ଆଠଟି ରତ୍ନ, ଲାଲ୍‌ମାଟିର ସପ୍ତରଥୀ, କିଶୋର କୌମୁଦୀ, ଜତୁଗୃହରେ ଜଗଦ୍‌ଗବ,ନିର୍ବେଦର ବେଦଧ୍ୱନି, ତୁଣ୍ଡୁଭର ବିଷଜ୍ୱାଳା ଆପଣଙ୍କୁ ଅମର କରି ରଖିବ ।

ଆଜି ଏଇ ରାଜ୍ୟସ୍ତରୀୟ ସାରସ୍ୱତ ମହୋତ୍ସବରେ ଆମେ ଆପଣଙ୍କୁ ସମ୍ବର୍ଦ୍ଧିତ କରି ନିଜକୁ ଧନ୍ୟ ମଣୁଛୁ । ଶ୍ରୀଜଗନ୍ନାଥ ଆପଣଙ୍କର ମଙ୍ଗଳ କରନ୍ତୁ ।

ଗିରିଜା ଶଙ୍କର ଶ୍ରୀଚନ୍ଦନ ମହାପାତ୍ର

*ମୁଖ୍ୟ ସଂପାଦକ*

# ଉତ୍କଳ ସମ୍ମିଳନୀ

ଖୋରଧା ଶାଖା

## ଗୁରୁଦିବସ ସମ୍ମାନ - ୨୦୦୧

## ସମ୍ମାନନୀୟେଷୁ ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ
## ଶ୍ରୀରାମନଗର, ଖୋର୍ଦ୍ଧା, ମହୋଦୟେଷୁ

ମହାଶୟ,

ଅଧୁନା ଖୋର୍ଦ୍ଧା ଭୂମିର ଆପଣ ଜଣେ ସୁଯୋଗ୍ୟ ସନ୍ତାନ । ଆପଣ ଏକାଧାରରେ ଜଣେ ଆଦର୍ଶ ଶିକ୍ଷକ, ସାହିତ୍ୟିକ, ଐତିହାସିକ, ସଂଗଠନ ତଥା ସମାଜସେବୀ । ଆପଣଙ୍କ ନିର୍ଭୀକ ଦୃଢ଼ମନା ସ୍ପଷ୍ଟବାଦୀ ଜ୍ଞାନଦୀପ୍ତ ବ୍ୟକ୍ତିତ୍ୱ ଖୋରଧାର ଜନସମାଜରେ ଏକ ଉଜ୍ଜ୍ୱଳ ଆଲୋକସ୍ତମ୍ଭ ।

ଜଣେ ଆଦର୍ଶ ଶିକ୍ଷକ ଭାବରେ ଆପଣ ବହୁ ପ୍ରତିଭାବାନ ବ୍ୟକ୍ତିତ୍ୱର ସ୍ରଷ୍ଟା । ପ୍ରବନ୍ଧ, ଗଳ୍ପ ତଥା ଶିଶୁସାହିତ୍ୟ ଭଣ୍ଡାରକୁ ଆପଣଙ୍କ ଅବଦାନ ଅମୂଲ୍ୟ । ଆପଣଙ୍କ ରଚିତ ସାମାଜିକ ଶିକ୍ଷା, ବୁକ୍ ଅଫ୍ ସିଂପୁଲ୍ ଟ୍ରାନସ୍‌ଲେସନ, ଦରିଆପାରିର ଆଠଟି ରତ୍ନ, ମରଦେହେ ଅମର ମଣିଷ, ପ୍ରଥମ ଓ ଦ୍ୱିତୀୟ ଭାଗ, ଲାଲ୍‌ମାଟିର ସପ୍ତରଥୀ, କିଶୋର କୌମୁଦୀ, ଜତୁ ଗୃହର ଜରଦ୍‌ଗବ, ନିର୍ବେଦର ବେଦଧ୍ୱନି, ତୃଷ୍ଣାଭରା ବିଷଜ୍ୱାଳା, ସାଧାରଣ ମଣିଷର ଜୀବନ ଯନ୍ତ୍ରଣା ଓ ଅନ୍ତର୍ଦ୍ୱନ୍ଦ୍ୱର ନିଛକ ଛବି ଟୋକିଧରିଛି । ଆଞ୍ଚଳିକ ଅବହେଳିତ ଓ ଲୁପ୍ତପ୍ରାୟ ଐତିହାସିକ ତଥ୍ୟାବଳୀର ପୁନରୁଦ୍ଧାର କରିବାରେ ଆପଣ ଶ୍ରମ ସ୍ୱୀକାର ପୂର୍ବକ ଯେଉଁ ବିଦ୍‌ବତ୍ତାର ପରିଚୟ ପ୍ରଦାନ କରିଛନ୍ତି ତାହା ପ୍ରକାଶିତ ହୋଇଛି ଲାଲ୍ ମାଟିର ସୌରଭ ଓ ଇତିହାସର ଝଲକ ପୁସ୍ତକ ଦ୍ୱୟରେ । ଆପଣଙ୍କ ସାଂଗଠନିକ ଭୂମିକା ଅବିସ୍ମରଣୀୟ । ଖୋରଧା ସାହିତ୍ୟ ସଂସଦଠାରୁ ଆରମ୍ଭ କରି ବହୁ ବିଦ୍ୟାଳୟ ଓ ଅନ୍ୟାନ୍ୟ ଅନୁଷ୍ଠାନ ସ୍ଥାପନ କରିବାରେ ଆପଣଙ୍କ ପ୍ରେରଣା, ଶ୍ରମ ଓ ସଦୁପଦେଶ ଫଳପ୍ରସୂ ହୋଇପାରିଛି । ସର୍ବୋପରି ପଙ୍କରୁ ପଦ୍ମଜାତ ସହଜ ହେଲେ ମଧ୍ୟ ଯେଉଁ କଷ୍ଟସାଧ୍ୟ ଜୀବନ ସଂଗ୍ରାମ ଚଳାଇ ଆପଣ ନିଜକୁ ବିକଶିତ କରିପାରିଛନ୍ତି ତାହାର ପଟାନ୍ତର ନାହିଁ । ଖୋର୍ଦ୍ଧା ଜିଲ୍ଲା ପ୍ରତିଷ୍ଠାରେ ଆପଣ ଜଣେ ମାଇଲଖୁଣ୍ଟ ।

ଜ୍ଞାନ ଓ କର୍ମଯୋଗର ହେ ଦୃଢ଼ନିଷ୍ଠ ସାଧକ ! ଆଜି ଗୁରୁଦିବସ ପାଳନ ପରିବେଶରେ ଖୋରଧା ଶାଖା ଉତ୍କଳ ସମ୍ମିଳନୀ ଆପଣଙ୍କୁ ସମ୍ମାନିତ କରିବା ସଙ୍ଗେ ସଙ୍ଗେ ଆପଣଙ୍କ ମହନୀୟ ବ୍ୟକ୍ତିତ୍ୱ ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କରୁଛି ।

**ଜୟହିନ୍ଦ୍**

ବନ୍ଦେ ଉତ୍କଳ ଜନନୀ

ଆପଣଙ୍କ ସାରସ୍ୱତ ସୁଗୁଣଧାୟୀ

| ବିଚିତ୍ର ବଡ଼ଜେନା | ମେଜର କ୍ଷୀରୋଦ ପ୍ରସାଦ ମହାନ୍ତି | ରାଜକିଶୋର ରାମ |
|---|---|---|
| *ସଂପାଦକ* | *ମୁଖ୍ୟ ଅତିଥି* | *ସଭାପତି* |

୩୮ତମ ସାମ୍ବତ୍ସରିକ ଗୀତା ଜୟନ୍ତୀ ମହୋତ୍ସବ
ସ୍ୱାଧୀନତାର ସୁବର୍ଣ୍ଣଜୟନ୍ତୀ ତଥା ଦିବ୍ୟସିଂହ ଜନ୍ମ
ଶତବାର୍ଷିକ ମହୋତ୍ସବ ଅବସରରେ ଗୀତା ଗବେଷଣା
ପରିଷଦ, ଗୀତାଭବନ, ଖୋର୍ଦ୍ଧା ତରଫରୁ ପ୍ରଦତ୍ତ

# ଅଭିନନ୍ଦନ ପତ୍ର

ପ୍ରାପ୍ତେଷୁ, **ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ,** ଖୋର୍ଦ୍ଧା

ତାରିଖ : ତା ୨୧ । ୧୨ । ୧୯୯୭ (ରବିବାର)

ମହାଶୟ,

ଗୀତା ଗବେଷଣା ପରିଷଦ ସହିତ ଆପଣଙ୍କର ଦୀର୍ଘକାଳର ସମ୍ପର୍କ ଓ ଆନ୍ତରିକତାପୂର୍ଣ୍ଣ ସହଯୋଗ ଯଥାର୍ଥରେ ଅତୁଳନୀୟ ଅଟେ ।

ଆପଣଙ୍କ ମହତ ଆଦର୍ଶର ସ୍ୱୀକୃତି ଓ ସ୍ମାରକୀରୂପେ ଗୀତା ଗବେଷଣା ପରିଷଦର ପ୍ରତିଷ୍ଠାତା ଓ ପ୍ରଥମ ସଭାପତି ସ୍ୱର୍ଗତ ଦିବ୍ୟସିଂହ ପଟ୍ଟନାୟକଙ୍କ ଜନ୍ମ ଶତବାର୍ଷିକ ପାଳନ ଅବସରରେ ଏହି ପରିଷଦ ଆପଣଙ୍କୁ ସସମ୍ମାନେ ଅଭିନନ୍ଦନ କରୁଅଛି ।

| ଶତ୍ରୁଘ୍ନ ନାଥ | ସୁରସିଂହ ପଟ୍ଟନାୟକ | ସନାତନ ମିଶ୍ର |
|---|---|---|
| *ମୁଖ୍ୟ ଅତିଥି* | *ଉପଦେଷ୍ଟା* | *ସଭାପତି* |

# ଶତାବ୍ଦୀ

ଏକ ଅଗ୍ରଣୀ ସାମାଜିକ ସାଂସ୍କୃତିକ ସଂଗଠନ

ସରକାରୀ ପଞ୍ଜିକରଣ ସଂଖ୍ୟା-୫୯୨୫-୧୪୩-୧୯୯୪-୯୫

ଜଟଣୀ, ଜି-ଖୋର୍ଦ୍ଧା

# ମାନପତ୍ର

## ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ

ମହାଶୟ/ ମହାଶୟା,

ଆପଣଙ୍କର ଇତିହାସ ଗବେଷଣା ଓ ସାହିତ୍ୟ କ୍ଷେତ୍ରରେ ଅତୁଳନୀୟ ଅବଦାନ ନିମନ୍ତେ ଶିଳ୍ପୀ ସମ୍ବର୍ଦ୍ଧନା ଓ ନେତାଜୀ ଜୟନ୍ତୀ ଅବସରରେ ଶତାବ୍ଦୀ ଆପଣଙ୍କୁ ସମ୍ବର୍ଦ୍ଧିତ କରୁଛି ।

ମିହିର କୁମାର ସାହୁ

ମୁଖ୍ୟ ଅତିଥି

*ମୁଖ୍ୟବକ୍ତା*

ଦିଲ୍ଲୀପ ଶ୍ରୀଚନ୍ଦନ

*ସମ୍ମାନିତ ଅତିଥି*

ଚନ୍ଦ୍ରଭାନୁ ସାମଲ

*ସଂପାଦକ*

ସଭାପତି

# ଖୋର୍ଦ୍ଧା ବିଜ୍ଞାପିତ ଅଞ୍ଚଳ ପରିଷଦ

**ଖୋର୍ଦ୍ଧା-୭୫୨୦୫୫**

**ନିଖିଳ ଭାରତ ସ୍ୱାୟତ୍ତଶାସନ ଦିବସ**

**ଅଗଷ୍ଟ ୩୧, ୧୯୯୮**

ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ, ସାହିତ୍ୟିକଙ୍କୁ ତାଙ୍କର କର୍ତ୍ତବ୍ୟନିଷ୍ଠା/ପ୍ରତିଭା ଓ ଉଲ୍ଲେଖନୀୟ ସାହିତ୍ୟସେବା/ଅବଦାନ ନିମିତ୍ତ ଆଜିର ଦିବସରେ ଆମ ପରିଷଦ ସମ୍ମାନିତ କରି ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଛି ।

**କାଳୀଚରଣ ମିଶ୍ର**
ମୁଖ୍ୟବକ୍ତା

**ସୌମ୍ୟରଂଜନ ପଟ୍ଟନାୟକ**
ମୁଖ୍ୟଅତିଥି

**ଜ୍ୟୋତିରିନ୍ଦ୍ରନାଥ ମିତ୍ର**
ନଗରପାଳ
ଖୋର୍ଦ୍ଧା ବିଜ୍ଞାପିତ ଅଞ୍ଚଳ ପରିଷଦ

# ବଣ୍କି ଜଗବନ୍ଧୁ ବିଦ୍ୟାଧର ଉଚ୍ଚ ବିଦ୍ୟାଳୟ

ଖୋରଧା

**ଶତବାର୍ଷିକୋତ୍ସବ**

ତା ୨୮/୧୨/୨୦୦୦

## ମାନପତ୍ର

ପ୍ରାପ୍ତି : **ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ**

ସମ୍ମାନନୀୟେଷୁ,

ଓଡ଼ିଶାର ପ୍ରାଚୀନ ଶିକ୍ଷାନୁଷ୍ଠାନ ପ୍ରଜ୍ଞତୀର୍ଥ ବଣ୍କି ଜଗବନ୍ଧୁ ବିଦ୍ୟାଧର ଉଚ୍ଚ ବିଦ୍ୟାଳୟର ପ୍ରଧାନଶିକ୍ଷକ ରୂପେ ଆପଣ ସୁପରିଚିତ, ସମ୍ମାନିତ । ଏହି ବିଦ୍ୟାଳୟକୁ ବିଦ୍ୟାମନ୍ଦିର କରିବାରେ, ଅଗଣିତ ଛାତ୍ରଙ୍କୁ ଜ୍ଞାନାଲୋକରେ ଉଦ୍‌ଭାସିତ କରିବାରେ ଆପଣଙ୍କ ପ୍ରୟାସ ଓ ଆନ୍ତରିକତା ସଦା ପ୍ରଶଂସନୀୟ ।

ସଂପ୍ରତି ଆପଣଙ୍କ ଅଗଣିତ ଛାତ୍ର ଦେଶବିଦେଶରେ ଉଚ୍ଚପଦବୀରେ ଅଧିଷ୍ଠିତ । ସେମାନଙ୍କ ହୃଦୟରେ ଆପଣଙ୍କ ସହଜ ସ୍ମୃତି ସଂଜୀବିତ ।

ହେ ବରେଣ୍ୟ ଗୁରୁ, ନିରଳସ ସାଧକ, ଆଜି ଶତବାର୍ଷିକୀ ପାଳନ ଅବସରରେ ଆପଣଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରି ଆମେ ଆନନ୍ଦିତ ଉଲ୍ଲସିତ । ଆପଣଙ୍କ ଉତ୍ତର ଅବସର ଜୀବନ ସୁଖପ୍ରଦ ହେଉ, ଭବିଷ୍ୟତର ସେତୁ ନିର୍ମାଣରେ ଆପଣଙ୍କ ଅନୁଭୂତି ସହାୟକ ହେଉ, ଏହାହିଁ ପ୍ରଭୁ ଜଗନ୍ନାଥଙ୍କଠାରେ ପ୍ରାର୍ଥନା ।

**ପ୍ରସନ୍ନ ପାଟ୍ଟଶାଣୀ**
ସଭାପତି

**ଜ୍ୟୋତିରିନ୍ଦ୍ରନାଥ ମିତ୍ର**
ଉପସଭାପତି

**ନିତ୍ୟାନନ୍ଦ ନାୟକ**
ପ୍ରଧାନ ଶିକ୍ଷକ

**ଗୋପାଳକୃଷ୍ଣ ଦାସ**
ସମ୍ପାଦକ

ଶତବାର୍ଷିକ ପାଳନ ସମିତିର ସଭ୍ୟ ଓ ପ୍ରାକ୍ତନ ଛାତ୍ରବୃନ୍ଦ

## କ୍ଷେତ୍ରବାସୀ ଏକାଡ଼େମୀ

ନିରାକାରପୁର, ପୁରୀ

## ବିଦାୟ ସମ୍ବର୍ଦ୍ଧନା ଅଶ୍ରୁଳ ମାନପତ୍ର

ମାନନୀୟ,

**ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ,** ଏମ୍.ଏ.ବି.ଇଡି.(O.E.S.II)

ପୂଜ୍ୟାସ୍ପଦ ଗୁରୁଦେବ,

ଆଜି ଆପଣ ଆମ୍ଭମାନଙ୍କ ନିକଟରୁ ଦୂରେଇ ଯାଉଅଛନ୍ତି । ଏହି ବିଦ୍ୟାଳୟରେ ଆପଣଙ୍କର ସୁଦୀର୍ଘ କାର୍ଯ୍ୟକାଳ ଆମ୍ଭମାନଙ୍କ ପାଇଁ ଏକ ଅବିସ୍ମରଣୀୟ ଅଧ୍ୟାୟ । ଆପଣଙ୍କର କର୍ମନିଷ୍ଠା, କର୍ତ୍ତବ୍ୟପରାୟଣତା, ଛାତ୍ରଛାତ୍ରୀମାନଙ୍କ ପ୍ରତି ଅକପଟ ବାତ୍ସଲ୍ୟ ସ୍ନେହ ଆମ୍ଭମାନଙ୍କ ହୃଦୟରେ ଅଲିଭା ଲେଖା ହୋଇ ଚିରକାଳ ଅଙ୍କିତ ରହିବ । ଆପଣଙ୍କର କାର୍ଯ୍ୟକାଳ ମଧ୍ୟରେ ବିଦ୍ୟାଳୟର ଯେଉଁ ବହୁବିଧ ଅଭୂତପୂର୍ବ ଉନ୍ନତି ସାଧିତ ହୋଇପାରିଛି, ତାହା ଇତିହାସରେ ଏକ ମାଇଲ୍‌ଖୁଣ୍ଟ ପରି ଜାଜ୍ୱଲ୍ୟମାନ ହେଉଥିବ କାଳ କାଳ ପାଇଁ । ବିଶେଷତଃ ଆପଣଙ୍କର ପ୍ରସ୍ଥାନର ଶେଷ ତିନିବର୍ଷ ମଧ୍ୟରେ ବିଦ୍ୟାଳୟର ବିଦ୍ୟୁତ୍‌କରଣ, ପ୍ରଧାନ ଶିକ୍ଷକ ଓ ଶିକ୍ଷକ କ୍ୱାଟରର ସମ୍ୟକ୍ ଉନ୍ନତି ସାଧନ, ପୁରାତନ ଛାତ୍ରାବାସ ଗୃହର ରୂପ ପରିବର୍ତ୍ତନ, ହତା ମଧ୍ୟରେ ନାରିକେଳ ବୃକ୍ଷରୋପଣ, ନୂତନ କୂପ ଖନନ, କ୍ରୀଡ଼ା ପ୍ରାନ୍ତର ନିର୍ମାଣ, ବିଦ୍ୟାଳୟ ରଙ୍ଗମଞ୍ଚର ଉନ୍ନତି ସାଧନ ସର୍ବୋପରି ବିଦ୍ୟାଳୟର ପକ୍କାଗୃହ ନିର୍ମାଣ ଆପଣଙ୍କୁ ଏ ବିଦ୍ୟାଳୟରେ କାହିଁକି ଏ ଅଞ୍ଚଳରେ ଚିରସ୍ମରଣୀୟ କରି ରଖିଥିବ । ସୁରମ୍ୟ ଅଟ୍ଟାଳିକା ନିର୍ମାଣ କରିବାପରେ ଏକ ଚମତ୍କାର ପ୍ରବେଶ ପଥର ଅଭାବ ଅନୁଭୂତ ହେବାରୁ ଆପଣ ବହୁ ଶ୍ରମକରି ପଥ ପାଇଁ ଯେଉଁ ଭୂମି କଲେ, ତାହା ଗ୍ରାମବାସୀମାନଙ୍କର ତଥା ଛାତ୍ରଛାତ୍ରୀମାନଙ୍କର ଅଶେଷ କଲ୍ୟାଣ ସାଧନ କରିବା ସଙ୍ଗେ ସଙ୍ଗେ ବିଦ୍ୟାଳୟକୁ ସୁନ୍ଦର କରିପାରିଛି ।

ଏ ବିଦ୍ୟାଳୟର ଶିକ୍ଷାଦାନ ପଦ୍ଧତି, ଶୃଙ୍ଖଳାରକ୍ଷା, ଛାତ୍ରଛାତ୍ରୀମାନଙ୍କର ଚରିତ୍ରଗଠନ, ବୋର୍ଡପରୀକ୍ଷାରେ ଫଳାଫଳ ସର୍ବଦା ଆଦର୍ଶ ତଥା ଅନୁକରଣୀୟ ହୋଇ ରହିବ । ଆପଣଙ୍କ ପରେ ଏକ ଶୃଙ୍ଖଳିତ ଯୁଗର ଅବସାନ ହେବାକୁ ଯାଉଛି । କିନ୍ତୁ ଆପଣଙ୍କର ନାମ ଓ କାମ ବିଦ୍ୟାଳୟର ବାୟୁମଣ୍ଡଳରେ ସର୍ବଦା ଘୂରି ବୁଲୁଥିବ ଏଥିରେ ସନ୍ଦେହ ନାହିଁ ।

ଆପଣଙ୍କର ଅକପଟ ସ୍ନେହ, ଅମାୟିକ ବ୍ୟବହାର, ନିଷ୍କଳଙ୍କ ଚରିତ୍ର, ସରଳ ନୀତିମୟ ଜୀବନଯାପନ, ନିରଳସ କର୍ତ୍ତବ୍ୟନିଷ୍ଠ, ନୀତୀକଥାପୂର୍ଣ୍ଣ ଉପଦେଶ, ହୃଦୟଭରା ହାସ୍ୟୋଲ୍ଲାସମୟ ଅଧ୍ୟାପନା ପ୍ରଣାଳୀ ସର୍ବୋପରି ସହକର୍ମୀମାନଙ୍କ ପ୍ରତି ଗଭୀର ସହାନୁଭୂତି ଛାତ୍ର ଜଗତରେ ତଥା ଆମର ପୂଜ୍ୟ ଶିକ୍ଷକମଣ୍ଡଳୀ ମଧ୍ୟରେ ଆପଣଙ୍କୁ ସମ୍ମାନାସ୍ପଦ କରି ରଖିଆସିଛି ଓ ରହିଥିବ । ଜ୍ଞାତସାରରେ ବା ଅଜ୍ଞାତସାରରେ ଆପଣଙ୍କ ନିକଟରେ ଅନେକ ଭୁଲ୍ ତ୍ରୁଟି କରିଅଛୁ । ସେଥିପାଇଁ ଆଜି ଏ ବିଦାୟ ମୁହୂର୍ତ୍ତରେ ଅନୁଶୋଚନାରେ ଅଶ୍ରୁଅଞ୍ଜଳି ପାତି ଦେଉଛୁ । ହୃଦୟର ଉଦାର ମହାନୁଭବତାରେ ସବୁ କ୍ଷମାକରି ଯାଆନ୍ତୁ, ଗୁରୁଦେବ !

ଶେଷରେ ସବୁଦିନ ପାଇଁ ଆମ୍ଭମାନଙ୍କୁ ମନେରଖିଥିବେ । ଏ ଅଧମ ଛାତ୍ରଛାତ୍ରୀମାନଙ୍କଠାରେ ଗଭୀର ଆଶିଷ ଢାଳି ଦିଅନ୍ତୁ । ଆପଣଙ୍କର କର୍ମହୀନ ପରବର୍ତ୍ତୀ ଜୀବନ କର୍ମମୁଖର ତଥା ଶାନ୍ତିପୂର୍ଣ୍ଣ ହେଉ ଏହାହିଁ ପରମେଶ୍ୱରଙ୍କଠାରେ ପ୍ରାର୍ଥନା ।

॥ ଇତି ॥

ନିରାକାରପୁର — ବିନୟାବନତ ଛାତ୍ରଛାତ୍ରୀବୃନ୍ଦ

ତା ୩୧।୧୦।୮୧ — କ୍ଷେତ୍ରବାସୀ ଏକାଡେମୀ, ନିରାକାରପୁର

# ଖୋର୍ଦ୍ଧା ସାହିତ୍ୟ ସଂସଦ, ଖୋର୍ଦ୍ଧା

## ସାମ୍ବତ୍ସରିକ ଉତ୍ସବ

ଏପ୍ରିଲ୍ ଛବିଶ, ୧.୯୯୯

ପ୍ରାପ୍ତି : **ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ** ଜନ୍ମ ତା ୪/୧୨/୧୯୧୯

***ସାହିତ୍ୟିକ*** ଜନ୍ମସ୍ଥାନ:ଗୋବିନ୍ଦପୁର (ତଳଖେତା), ଜଟଣୀ

ମାନନୀୟେଷୁ,

ବୀରପ୍ରସବିନୀ ଖୋର୍ଦ୍ଧର ସାରସ୍ୱତ ପରିମଣ୍ଡଳରେ ଆପଣଙ୍କ ସାହିତ୍ୟ ସାଧନା ସୁସ୍ପଷ୍ଟ । ଜଣେ ଗବେଷଣାଧର୍ମୀ ପ୍ରାବନ୍ଧିକ ଓ ପ୍ରଗତିଶୀଳ ଗାଳ୍ପିକ୍ ଭାବରେ ଆପଣ ଜନମାନସରେ ସୁପରିଚିତ । ସରଳ ଭାଷାଶୈଳୀ, ଭାବ ବିଭବ ଓ ଆକର୍ଷଣୀୟ ପରିପ୍ରକାଶ ପାଇଁ ଆପଣଙ୍କ ଲିଖିତ ଏଗାରଟି ପୁସ୍ତକ ପାଠକୀୟ ମର୍ଯ୍ୟାଦାର ଅଧିକାରୀ । ଅଧିକନ୍ତୁ ଆପଣଙ୍କ ରଚିତ ଉପାଦେୟ ପୁସ୍ତକ ଲାଇମାଟିର ସୌରଭ ଆବାଳବୃଦ୍ଧବନିତାଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ । ଖୋର୍ଦ୍ଧାର ଜନଜୀବନ ସହିତ ଜଡ଼ିତ ଅନେକ ଅନୁଷ୍ଠାନର ଆପଣ ଦିଗ୍‌ଦର୍ଶକ । ଏହି ଖୋର୍ଦ୍ଧା ସାହିତ୍ୟ ସଂସଦର ଆପଣ ଜଣେ ପ୍ରତିଷ୍ଠାତା ସଦସ୍ୟ ଏବଂ ୧୯୮୬ରୁ ୧୯୯୩ ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବରେ ଏହାର ସଭାପତି ରହି ଅନୁଷ୍ଠାନର ଉତ୍ତରୋତ୍ତର ଉନ୍ନତି ଦିଗରେ ବନ୍ଧୁର ପଥର ସାର୍ଥକ ପଥପ୍ରଦର୍ଶକ ।

ଜଣେ ଶିକ୍ଷାବିତ୍ ଭାବରେ ଆପଣ ଯେପରି ସିତପ୍ରଜ୍ଞ, ଖୋର୍ଦ୍ଧାର ଐତିହାସିକ ଓ ସାଂସ୍କୃତିକ ପରମ୍ପରା ରକ୍ଷା ଦିଗରେ ଆପଣଙ୍କର ନିରବଚ୍ଛିନ୍ନ ପ୍ରଚେଷ୍ଟା ସେହିପରି ସମୁଜ୍ଜ୍ୱଳ । ସାରସ୍ୱତ ସାଧନା ପାଇଁ ଆପଣ ଗଡ଼ମାଣିତ୍ରିର ପଲ୍ଲୀ ପ୍ରତିଭା, ଖୋର୍ଦ୍ଧା ରୋଟାରୀ କ୍ଲବ, ନୂପୁର, ବିଜ୍ଞାପିତ ଅଞ୍ଚଳ ପରିଷଦ, ଗୀତା ଗବେଷଣା ପରିଷଦ, ଜଟଣୀର ଶତାବ୍ଦୀ ପ୍ରଭୃତି ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ।

ହେ ଯଶସ୍ୱୀ ସାହିତ୍ୟିକ, ହେ ମହିମ୍ନ ସାଧକ, ଆପଣଙ୍କୁ ଖୋର୍ଦ୍ଧା ସାହିତ୍ୟ ସଂସଦ ତାର ସାମ୍ବତ୍ସରିକ ଉତ୍ସବରେ ସମ୍ମାନିତ କରି ଆପଣଙ୍କ ଦୀର୍ଘ ନିରାମୟ ଜୀବନ କାମନା କରିବା ସଙ୍ଗେ ସଙ୍ଗେ ଖୋର୍ଦ୍ଧାର ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିବାକୁ ପ୍ରାର୍ଥନା କରୁଛି ।

| ବୈକୁଣ୍ଠନାଥ ରାଜଗୁରୁ | ରମାକାନ୍ତ ରଥ | ମିହିର କୁମାର ସାହୁ |
|---|---|---|
| ସଭାପତି | ମୁଖ୍ୟ ଅତିଥି | ସଂପାଦକ |

## ଶ୍ରୀଯୁକ୍ତ ମୁରଲୀଧର ପ୍ରଧାନ, ଏମ୍.ଏ.ଡି.ଇଡି.

ପ୍ରଧାନ ଶିକ୍ଷକ

ବକ୍ସି ଜଗବନ୍ଧୁ ବିଦ୍ୟାଧର ଉଚ୍ଚ ବିଦ୍ୟାଳୟ, ଖୋର୍ଦ୍ଧା

ପୂଜ୍ୟାସ୍ପଦ ସାର୍,

ପୃଥିବୀର ବୁକୁ ଭସାଇ ବେଳେ ବେଳେ ବନ୍ୟା ଆସେ । ଆଖି ନାହିଁ, କାନ ନାହିଁର ହୃଦୟହୀନ ବନ୍ୟା । ଅସହାୟ ଭାବରେ ଭାସିଯାଏ କେତେ ପୂରନ୍ତା ହସର ଭରା ସଂସାର... । କେତେ ଭରନ୍ତା ମନର ଫୁଲ ଫସଲ । ତାପରେ କେତେ ଆହାକାର...କେତେ ହାହାକାର... । କିନ୍ତୁ କିଏ ତାହା ଶୁଣେ ?

ଆମର ଜୀବନ-ପୃଥିବୀରେ ସେହି ବନ୍ୟା ଆଜି ମାଡ଼ି ଆସିଛି । ଲୁହର ନଦୀ ଫୁଲି ଉଠିଛି । ନାହିଁ କୂଳ...ନାହିଁ କିନରା...ସବୁଆଡ଼େ ହଜି ଯାଇଛି...ଲିଭି ଯାଇଛି...

ଆପଣ ଆଜି ଚାଲି ଯାଉଛନ୍ତି ସାର୍ ! ଜନଶ୍ରୁତିର ଇତିହାସ କହେ—ଆପଣଙ୍କର ଦୀର୍ଘ ୨୫ ବର୍ଷ ଉପାସନାର କ୍ଷେତ୍ର ଏହି ବିଦ୍ୟାଳୟ । ସମୟର ଏହି ଦୀର୍ଘତମ ପର୍ଯ୍ୟାୟ ମଧ୍ୟରେ ଆପଣ ଶତଶତ ଛାତ୍ରର ଜୀବନରେ କେବଳ ଶ୍ରୀ-ସଂଯୋଜନା କରିନାହାନ୍ତି, ଜୀବନ ଗଠନର ଜଣେ ସୁଦକ୍ଷ ଶିଳ୍ପୀ ଭାବରେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ଶିକ୍ଷଣ ଜଗତର ସର୍ବୋଚ୍ଚ ଉପାଧିରେ ନିଜର ଜୀବନ ମଧ୍ୟ ଅଳଙ୍କୃତ କରି ନେଇଛନ୍ତି । ତେଣୁ ଆପଣଙ୍କର ଛାତ୍ର ଆପଣଙ୍କଠାରୁ କେବଳ ଶିକ୍ଷାଗ୍ରହଣ କରିଯାଇନାହିଁ, ଯାଇଛି ଜୀବନର ଉଚ୍ଚତର ସମ୍ଭାବନାର ଅନନ୍ତ ଆକାଂକ୍ଷା, ଅଜସ୍ର ସାଧନା ଏବଂ ଆଗେଇ ଚାଲିବାର ଆଦର୍ଶ ଉନ୍ମାଦନାର ଅଭୂତ ସ୍ପର୍ଶ ନେଇ ।

ଆପଣଙ୍କର ଅକପଟ ସ୍ନେହ, ଅମାୟିକ ବ୍ୟବହାର, ନିରଳସ-କର୍ତ୍ତବ୍ୟନିଷ୍ଠ, ନୈତିକତାପୂର୍ଣ୍ଣ ଉପଦେଶ, ସର୍ବୋପରି ହୃଦୟଭରା ହାସ୍ୟୋଚ୍ଛ୍ୱାସମୟ ଅଧ୍ୟାପନା ପ୍ରଣାଳୀ ଆପଣଙ୍କୁ ଛାତ୍ରଜଗତର ପ୍ରିୟ ଶିକ୍ଷକରୂପେ ସମ୍ମାନାସ୍ପଦ କରି ଏ ପର୍ଯ୍ୟନ୍ତ ରଖିଆସିଛି, ରଖିଥିବ ମଧ୍ୟ ଚିରଦିନ ।

ଆମର ଜୀବନ ନିର୍ମାଣରେ ଆପଣଙ୍କ ହାତର ଶେଷ ସ୍ପର୍ଶ ଟିକକ ଯେ ବାକି ରହିଗଲା, ସେଥିପାଇଁ ଆଜି ଏହି ବିଦାୟ ମୁହୂର୍ତ୍ତରେ ଅନୁଶୋଚନାର ଅଶ୍ରୁ-ଅଞ୍ଜଳି ପାତି ଦେଇଛୁ । ହୃଦୟର ଉଦାର ଦାନରେ ତାହା ପୂର୍ଣ୍ଣ କରିଯାଆନ୍ତୁ ଗୁରୁଦେବ !

ଯାଆନ୍ତୁ ସାର୍ ! ଆପଣ ଭୁଲି ହେବାର ନୁହନ୍ତି । ଭୁଲି ବି ହେବେନି କୌଣସି ଦିନ...ଖରାପ ପିଲାଙ୍କ କଥା ମନେପଡ଼ିଲେ ଆମ କଥା ଟିକିଏ ମନେପକାଇବେ ସାର୍ !

ଶେଷରେ ଆପଣଙ୍କର ଶୁଭଯାତ୍ରାର ପଥପାର୍ଶ୍ୱରେ ଆମର ଆନତ ମଥାରେ ଆଭୂମି ପ୍ରଣାମ ଲୋଟାଇ ଦେଇଛୁ । ଆଶୀର୍ବାଦ ଦିଅନ୍ତୁ ସାର୍ ! ତାହାହିଁ ଆମର ଜୀବନ ପଥର ପାଥେୟ ହେଉ ।

॥ ଇତି ॥

ଖୋର୍ଦ୍ଧା — ବିନୟାବନତ ଛାତ୍ରଗଣ

ତା ୧୧-୨-୭୦ — ବକ୍ସି ଜଗବନ୍ଧୁ ବିଦ୍ୟାଧର ଉଚ୍ଚବିଦ୍ୟାଳୟ, ଖୋର୍ଦ୍ଧା

## ଲେଖକଙ୍କ ଲିଖିତ ଅନ୍ୟାନ୍ୟ ପୁସ୍ତକ

- ନିର୍ବେଦର ବେଦଧ୍ୱନି - ଗଳ୍ପ - ୧୯୯୩
- ମରଦେହେ ଅମର ମଣିଷ ଜୀବନୀ- ୧୯୯୩
- ଦୁଣ୍ଡୁଭର ବିଷଜ୍ୱାଳା - ଗଳ୍ପ - ୧୯୯୬
- ଲାଲମାଟିର ସୌରଭ - ଜୀବନୀ - ୧୯୯୮
- ଲାଲମାଟିର ସପ୍ତରଥୀ - ଜୀବନୀ - ୨୦୦୦
- ଇତିହାସର ଝଲକ - ପ୍ରବନ୍ଧ - ୨୦୦୧



## ମୁରଲୀଧର ପ୍ରଧାନ

ମୁରଲୀଧର ପ୍ରଧାନଙ୍କ ଜନ୍ମ ବର୍ତ୍ତମାନ ଖୋର୍ଦ୍ଧା ଜିଲ୍ଲା ଗୋବିନ୍ଦପୁର (ତଳକ୍ଷେତା) ନାମକ ଏକ ଅଖ୍ୟାତ ପଲ୍ଲୀ ଗ୍ରାମରେ ୧୯୧୯ ମସିହା ଡିସେମ୍ବର ମାସ ୪ ତାରିଖ ଦିନ । ପିତା ବାସୁଦେବ ପ୍ରଧାନ, ମାତା ସେରନ୍ତି ଦେଈ । ବାଲ୍ୟକାଳ କୁହେଳିକାମୟ । ୧୯୪୧ ମସିହାରେ ମାଟ୍ରିକ୍ ପାସ୍ । ରେଭେନ୍ସା କଲେଜରେ ଅଧ୍ୟୟନ ଢ଼କାଳେ ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ ।

୧୯୪୪ ମସିହାରେ ଆଇ.ଏ. ପାସ୍ । ପିର୍‌କୁଳି ମାଇନର ସ୍କୁଲରେ ପ୍ରଧାନଶିକ୍ଷକ ପଦରେ ଯୋଗଦାନ । କିଛି ଦିନପରେ ଖୋର୍ଦ୍ଧା ହାଇସ୍କୁଲରେ ଶିକ୍ଷକପଦ ଗ୍ରହଣ । ୧୯୪୮ ମସିହାରେ ଘରୋଇଭାବେ ବି.ଏ. ପାସ୍ ଏବଂ ୧୯୫୦ରେ ରାଧାନାଥ ଟ୍ରେନିଂକଲେଜରୁ ଡି.ଇଡି. ପାସ୍ ଏବଂ ୧୯୬୫ ମସିହାରେ ଘରୋଇଭାବେ ଉଚ୍ଚ ନମ୍ବର ସହ ଇତିହାସରେ ଏମ୍.ଏ ପାସ୍ । ୧୯୬୮ ମସିହାରେ ଓଡ଼ିଶା ସେକେଣ୍ଡରୀ ବୋର୍ଡ, କଟକରେ ଇତିହାସ ବିଶେଷଜ୍ଞରୂପେ ନିଯୁକ୍ତି । ୧୯୬୯ ଜୁଲାଇ ୬ ତାରିଖରେ ଖୋର୍ଦ୍ଧା ହାଇସ୍କୁଲରେ ପ୍ରଧାନଶିକ୍ଷକ ପଦକୁ ଉନ୍ନୀତ । ଅବସର ଗ୍ରହଣ ୧୯୮୧ ମସିହା ଅକ୍ଟୋବର ୩୧ ତାରିଖରେ । ପୂର୍ବରୁ ଏକାନ୍ତଭାବେ ଲେଖିବା ସମ୍ଭବ ହୋଇପାରିନଥିଲା । ଅବସରପରେ ନିଃସଙ୍ଗ ଜୀବନକୁ କର୍ମବହୁଳ କରିବାପାଇଁ ସାହିତ୍ୟସାଧନାରେ ନିଜକୁ ନିୟୋଜିତ କଲେ । ଖୋର୍ଦ୍ଧା ସାହିତ୍ୟ ସଂସଦରେ ସଭାପତି ପଦରେ ବରିତ ହୋଇ ଗବେଷଣାମୂଳକ ପ୍ରବନ୍ଧ ଲେଖିବାରେ ସମୟ ଅତିବାହିତ କଲେ । ବାର୍ଦ୍ଧକ୍ୟ ଆସିଗଲାଣି ମାତ୍ର ଛୁଇଁବାକୁ ସାହସ କରୁନାହିଁ । ବାଣୀ ଆରାଧନା ବାର୍ଦ୍ଧକ୍ୟକୁ ଦୂରେଇ ରଖିଛି । ଏଥିମଧ୍ୟରେ ୧୦ଖଣ୍ଡ ପୁସ୍ତକ ଓ ବହୁ ଗବେଷଣାମୂଳକ ପ୍ରବନ୍ଧ ପ୍ରକାଶ କରିସାରିଲେଣି ।

ଫ୍ରେଣ୍ଡସ୍ ପବ୍ଲିଶର୍ସ

ISBN 81-7401-515-9